# କବିବର ରାଧାନାଥ ଗ୍ରନ୍ଥାବଳୀ


କବିବର ରାଧାନାଥ ରାୟ

ଯୁଗ୍ମ-ସଂପାଦକ :

ଡକ୍ଟର ପ୍ରସନ୍ନ କୁମାର ମିଶ୍ର

ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ



ଗ୍ରନ୍ଥମନ୍ଦିର

**KAVIBARA RADHANATH GRANTHABALI**

( Collected works of Kavibara Radhanath Roy )

Published by Manoj Kumar Mohapatro

**GRANTHA MANDIR,** Binod Behari, Cuttack - 2

Printed by Tapan Kumar Mohapatro

**OPTIMA (OFFSET) PRINTS**

Sutahat, Cuttack - 1

Revised and enlarged New Edition

by **Grantha Mandir :** November, 1998

Re-print : 2010

Price : Rs. 330.00

ପ୍ରକାଶକ : ମନୋଜ କୁମାର ମହାପାତ୍ର

**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨

ମୁଦ୍ରକ : ତପନ କୁମାର ମହାପାତ୍ର

**ଅପ୍ଟିମା (ଅଫ୍‌ସେଟ୍) ପ୍ରିଣ୍ଟସ୍**

ସୂତାହାଟ, କଟକ-୧

ପ୍ରଥମ ସଂସ୍କରଣ : (ପ୍ରକାଶକ : ଶ୍ରୀ ଶିବନାରାୟଣ ଦେବ, ଖଡ଼ିଆଳୟ) – ୧୯୦୨

ପରିବର୍ଦ୍ଧିତ ନୂତନ ସଂସ୍କରଣ – ନଭେମ୍ବର, ୧୯୯୮

ପୁନର୍ମୁଦ୍ରଣ : ୨୦୦୪, ୨୦୧୦

ମୂଲ୍ୟ : ଟ. ୩୩୦.୦୦

# ସୂଚୀପତ୍ର

□□□

# ନୂତନ ପରିବର୍ଦ୍ଧିତ ସଂସ୍କରଣର (୧୯୯୮) ଭୂମିକା

କଥାପ୍ରସଙ୍ଗରେ, ନିଜ ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ 'ରାଧାନାଥ ଗ୍ରନ୍ଥାବଳୀ'ରେ ଅଧିକ କିଛି ସଂଯୋଜନା କରାଯାଇପାରେ କି ଏହି ପ୍ରଶ୍ନ ବିଶିଷ୍ଟ ପ୍ରକାଶକ ଶ୍ରୀଯୁକ୍ତ ଅଭିରାମ ମହାପାତ୍ର ମୋତେ ପଚାରିଥିଲେ। 'ଗ୍ରନ୍ଥ' କହିଲେ ଯଦି ରାଧାନାଥଙ୍କର ସମସ୍ତ 'ରଚନା'କୁ (ସରକାରୀ ରିପୋର୍ଟ ସମେତ) ବୁଝାଏ, ତେବେ ରାଧାନାଥ ଗ୍ରନ୍ଥାବଳୀ ଯେ ବହୁ ଖଣ୍ଡ ବ୍ୟାପୀ ଏକ ବିରାଟ ପୁସ୍ତକ ହେବ ତାହା ସେହି ପ୍ରସଙ୍ଗରେ ମୁଁ କହିଥିଲି। କିନ୍ତୁ ଏଭଳି ଏକ ଉଦ୍ୟମ ଆନୁଷ୍ଠାନିକ ଉଦ୍ୟମ ଓ ସହଯୋଗ ବିନା ଅସମ୍ଭବ। ତାର ସୂଚନା ମଧ୍ୟ ମୁଁ ଦେଇଥିଲି।

'ରାଧାନାଥ ଗ୍ରନ୍ଥାବଳୀ' ୧୯୦୨ ମସିହାରେ କବି ରାଧାନାଥ ଜୀବିତାବସ୍ଥାରେ ପ୍ରଥମେ ପ୍ରକାଶିତ ହୋଇଥିଲା। କବିପୁତ୍ର ପ୍ରଖ୍ୟାତ ଗଦ୍ୟଶିଳ୍ପୀ ଶଶିଭୂଷଣ, ପରବର୍ତ୍ତୀ କାଳରେ, ତାହାର ପରିବର୍ଦ୍ଧନ କରିଥିଲେ। ସମୟକ୍ରମେ, ବିଭିନ୍ନ ପ୍ରକାଶନ ସଂସ୍ଥାର ସହଯୋଗରେ ରାଧାନାଥ ଗ୍ରନ୍ଥାବଳୀର କଳେବର ବୃଦ୍ଧି ଘଟିଛି। ପରିଣାମରେ 'ରାଧାନାଥ ଗ୍ରନ୍ଥାବଳୀ'ର ଯାହା ମୌଳିକ ଆଭିମୁଖ୍ୟ ଥିଲା, ତାହା ଅନେକାଂଶରେ କ୍ଷୁଣ୍ଣ ହୋଇଛି। ପରିବର୍ଦ୍ଧିତ ସଂସ୍କରଣରେ ରାଧାନାଥ ଗ୍ରନ୍ଥାବଳୀର (ଶଶିଭୂଷଣଙ୍କ ଦ୍ୱାରା ସଂପାଦିତ?) ପ୍ରାଥମିକ ଆଭିମୁଖ୍ୟ ରକ୍ଷା କରିବାକୁ ଚେଷ୍ଟା କରାଯାଇ କେତେକ ନୂତନ ରଚନା 'ସଂଯୋଜନ' ଅଂଶରେ ସ୍ଥାନିତ। ଫଳରେ ସାହିତ୍ୟ-ସମ୍ପର୍କଶୂନ୍ୟ ପାଠ୍ୟପୁସ୍ତକ ଓ ବଙ୍ଗଳା କବିତାବଳୀକୁ ଏହି ସଂସ୍କରଣରେ ଅନ୍ତର୍ଭୁକ୍ତ କରାଯାଇନାହିଁ।

କୌଣସି ଲେଖକଙ୍କର 'ରଚନାବଳୀ'ର ଅବବୋଧ, ଅଧ୍ୟୟନ ଐତିହାସିକ ପରିଶୀଳନ ଲାଗି ଲେଖକ ଜୀବନର ବିଶିଷ୍ଟ ଘଟଣାବଳୀ ଓ ତାଙ୍କ ରଚନାବଳୀର କାଳାନୁକ୍ରମ ସଂପର୍କରେ ଅବଗତ ହେବା ଆବଶ୍ୟକ। ସେହି ଉଦ୍ଦେଶ୍ୟକୁ ଦୃଷ୍ଟି ସମ୍ମୁଖରେ ରଖି ରାଧାନାଥଙ୍କ ଜୀବନର ମୁଖ୍ୟ ଘଟଣାବଳୀ ଓ ତାଙ୍କ ରଚନାର କାଳାନୁକ୍ରମ ସଂପର୍କରେ ଏକ ସ୍ପଷ୍ଟ ଚିତ୍ର ଦେବାର ଉଦ୍ୟମ କରାଯାଇଛି। ରାଧାନାଥ ସାହିତ୍ୟର ବସ୍ତୁନିଷ୍ଠ ଅଧ୍ୟୟନକୁ ଏଭଳି ଉଦ୍ୟମ ତ୍ୱରାନିତ କରିବ ବୋଲି ଆଶା।

ରାଧାନାଥଙ୍କ ସପକ୍ଷ ଓ ବିପକ୍ଷରେ ବହୁତ କଥା କୁହାଯାଇପାରେ। ତାଙ୍କର ପ୍ରତିଷ୍ଠା ଓ ପ୍ରାଧାନ୍ୟ ଏଭଳି ବାଦ-ବିସମ୍ବାଦର କାରଣ। ଓଡ଼ିଶାର ଶିକ୍ଷା, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ତାଙ୍କର କର୍ତ୍ତୃତ୍ୱ ଏବେ ମଧ୍ୟ ଅନସ୍ୱୀକାର୍ଯ୍ୟ। ଓଡ଼ିଶାରେ ସେ ଏବେ ମଧ୍ୟ ଏକ ପ୍ରଚଣ୍ଡ ସାମାଜିକଶକ୍ତି ଯାହାର ବଳକ୍ରିୟାର ପରୋକ୍ଷ ପ୍ରଭାବ ବିବିଧ ସ୍ତରରେ ଅନୁଭବ କରାଯାଇପାରେ। କିନ୍ତୁ ଦୁଃଖର ବିଷୟ – 'ରାଧାନାଥ ଗ୍ରନ୍ଥାବଳୀ'ର ପାଠନିର୍ଣ୍ଣୟରେ ସଂଶୋଧନ ଉପରେ ଏ ପର୍ଯ୍ୟନ୍ତ ଯଥାର୍ଥ ଗୁରୁତ୍ୱ ଦିଆଯାଇନାହିଁ। ଫଳରେ 'ମହାଯାତ୍ରା' ଓ 'ଯଯାତିକେଶରୀ' ବହୁ ଭ୍ରାନ୍ତ-ପାଠରେ ପରିପୂର୍ଣ୍ଣ। ରାଧାନାଥଙ୍କ ଜୀବଦ୍ଦଶାରେ ପ୍ରକାଶିତ ପୁସ୍ତକଗୁଡ଼ିକର ବିବିଧ ସଂସ୍କରଣ ଭିତ୍ତିରେ ତାହାର ପାଠ ନିର୍ଣ୍ଣୀତ ଓ ସଂଶୋଧିତ କରାଯିବା ଉଚିତ। ସଂପୃକ୍ତ ଗ୍ରନ୍ଥାବଳୀରେ ମଧ୍ୟ ତାହାର ସୁଯୋଗ ସ୍ୱଳ୍ପ। ତଥାପି ସେହି ଆବଶ୍ୟକତା ହେତୁ 'ମହାଯାତ୍ରା' ପଞ୍ଚମ ସର୍ଗର ଶେଷାଂଶ ପୁନର୍ବିନ୍ୟସ୍ତ ହୋଇଛି।

ରାଧାନାଥଙ୍କ ଦୁର୍ଲଭ ରଚନାବଳୀର ଆବିଷ୍କାର ଓ ପୁନର୍ମୁଦ୍ରଣ କ୍ଷେତ୍ରରେ ଓଡ଼ିଶାର ଦୁଇଜଣ ବିଶିଷ୍ଟ ଗବେଷକ – ଡକ୍ଟର ନଟବର ସାମନ୍ତରାୟ ଓ ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି – ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିଛନ୍ତି। ସେମାନଙ୍କର ଗବେଷଣାଲବ୍ଧ ଉପାଦାନକୁ ଏହି ସଂସ୍କରଣରେ ବ୍ୟବହାର କରାଯାଇଛି। ତେଣୁ ସେହି ଦୁଇ ବରିଷ୍ଠ ସାଧକଙ୍କୁ ମୋର ପ୍ରଣାମ ଜଣାଉଛି। ସ୍ୱର୍ଗତ ଦୁର୍ଗାଚରଣ ରାୟଙ୍କ ରଚିତ 'ରାଧାନାଥ ଜୀବନୀ'ରୁ କେତେକ ଚିଠିପତ୍ର ମଧ୍ୟ ଏଠାରେ ଗୃହୀତ।

'ରାଧାନାଥ ଗ୍ରନ୍ଥାବଳୀ'ର ଏହି ପରିବର୍ଦ୍ଧିତ ନୂତନ ସଂସ୍କରଣ ପ୍ରସ୍ତୁତି କାର୍ଯ୍ୟରେ ମୋତେ ସଂଶ୍ଳିଷ୍ଟ କରାଇଥିବାରୁ ଓ ମୁଦ୍ର[illegible]ବରେ କାର୍ଯ୍ୟ କରିବାର ସୁଯୋଗ ଦେଇଥି[illegible]ରୁ [illegible]ଯୁକ୍ତ ଅଭିରାମ ମହାପାତ୍ରଙ୍କ ନିକଟରେ କୃତଜ୍ଞ '[illegible]ଧାନାଥ ଗ୍ରନ୍ଥାବଳୀ'ର ଏହି ସଂସ୍କରଣରେ ଯ[illegible]ଛି ତ୍ରୁଟି/ଅସଂପୂର୍ଣ୍ଣତା ଥିବା ପାଠକ ବିଚାର [illegible] – ତେବେ ସେମାନଙ୍କ ସଦୟ ସହଯୋଗରେ ପରବର୍ତ୍ତୀ ସଂସ୍କରଣରେ ସେଗୁଡ଼ିକର ପରିମାର୍ଜନ ସମ୍ଭବପର ହେବ ବୋଲି ଆଶା।

ରାଉରକେଲା,
୨୦।୧୧।୧୯୯୮

ଦେବେନ୍ଦ୍ର କୁମାର ଦାଶ

# ପ୍ରଥମ ସଂସ୍କରଣର (୧୯୦୨) ଭୂମିକା

ପ୍ରାଚୀନ ଉତ୍କଳରେ ଅନେକ କବି ଜନ୍ମଗ୍ରହଣ କରି ଉତ୍କଳଭାଷାର ଅବୟବ ପରିପୁଷ୍ଟ ଏବଂ ସମଳଂକୃତ କରିଥିଲେ। ଏମାନଙ୍କ ମଧ୍ୟରେ ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ ଏବଂ ବଳଭଦ୍ର ସର୍ବପ୍ରଧାନ। ପ୍ରାଚୀନ ଉତ୍କଳସାହିତ୍ୟାକାଶରେ ଏହି ଚାରି ମହୋଜ୍ଜ୍ୱଳ ଜ୍ୟୋତିଷ୍କ ଚିରଦେଦୀପ୍ୟମାନ।

ରାଧାନାଥ ନବ୍ୟଯୁଗର କବି। କେବଳ ପ୍ରତିଭାର ବିଚାର କଲେ ରାଧାନାଥ ପୂର୍ବ ଚାରି କବିମାନଙ୍କ ସହିତ ଆସନ ପାଇବାର ଯୋଗ୍ୟ କି ନା, ଏ ବିଷୟରେ ମତଭେଦ ହୋଇପାରେ, ମାତ୍ର ରାଧାନାଥଙ୍କର ଯେଉଁ ବିଶେଷତ୍ୱ ଅଛି, ତଦ୍ୱାରା ତାହାଙ୍କର ଦାବି ବହୁପରିମାଣରେ ସମର୍ଥିତ ହୋଇପାରେ। ରାଧାନାଥଙ୍କ ରଚନା ଅପେକ୍ଷାକୃତ ସହଜ ଓ ସରଳ ଏବଂ ଶବ୍ଦାଳଙ୍କାରଦ୍ୱାରା ଅଯଥା ଭାରାକ୍ରାନ୍ତ ନୁହେଁ। ରାଧାନାଥଙ୍କ କାବ୍ୟାବଳୀରେ ପ୍ରାୟ ସମସ୍ତ ରସର ଅବତାରଣା ହୋଇଅଛି। ଏହାଙ୍କର ଅଧିକାଂଶ ରଚନା କରୁଣ ରସ ପ୍ରଧାନ। ପ୍ରାଚୀନ କାବ୍ୟମାନଙ୍କରେ ଯେ କରୁଣ ରସ ନାହିଁ, ଏମନ୍ତ ନୁହେଁ। ମାତ୍ର ତାହା ନାୟକ ନାୟିକାର ସାମୟିକ ବିରହସମ୍ଭୂତ। ରାଧାନାଥଙ୍କ କରୁଣ ରସ ଏହା ଅପେକ୍ଷା ବହୁ ପରିମାଣରେ ଗଭୀରତର ଏବଂ ଗାଢ଼ତର। ଗୌରୀ, କୌଶଲ୍ୟା, ପାର୍ବତୀ, ଅନ୍ନପୂର୍ଣ୍ଣା, ନନ୍ଦିକା ପରି କରୁଣରସୋଭାସିତା ନାୟିକା ପ୍ରାଚୀନ କାବ୍ୟମାନଙ୍କରେ ସୁଲଭ ନୁହେଁ।

''ମହାଯାତ୍ରା'' ଅସମ୍ପୂର୍ଣ୍ଣ ହେଲେହେଁ ସେଥିରେ ବୀରରସର ଯେପରି ସ୍ଫୂର୍ତ୍ତି ଦେଖାଯାଏ, ପ୍ରାଚୀନ ଉତ୍କଳସାହିତ୍ୟରେ ସେଥିର ପଟାନ୍ତର ଅଛି କି ନାହିଁ ସନ୍ଦେହ। ମହାଯାତ୍ରାର ଚତୁର୍ଥ ସର୍ଗର ରୂପକାବଳୀ ପରି ସଂସାରଚିତ୍ର ଭାରତର ଉନ୍ନତ ସାହିତ୍ୟମାନଙ୍କରେ ସୁଦ୍ଧା ଆଦରଣୀୟ ବୋଲି ପରିଗୃହୀତ ହୁଅନ୍ତା। ଆଦିରସରେ ସୁଦ୍ଧା ଯଯାତିକେଶରୀ-ପ୍ରଣେତା ରାଧାନାଥ ପ୍ରାଚୀନ କବିମାନଙ୍କର ନିତାନ୍ତ ଅଯୋଗ୍ୟ ପ୍ରତିଦ୍ୱନ୍ଦ୍ୱୀ ନୁହନ୍ତି।

ଉତ୍କଳୀୟ ପ୍ରକୃତିବର୍ଣ୍ଣନ ବିଷୟରେ ରାଧାନାଥଙ୍କର ବିଶେଷତ୍ୱ ଯେ ସର୍ବାପେକ୍ଷା ପରିସ୍ଫୁଟ, ଏ ସମ୍ବନ୍ଧରେ କାହାରି ମତଦ୍ୱୈଧ ହେବ ନାହିଁ। ଫଳତଃ ରାଧାନାଥଙ୍କୁ ନିସର୍ଗମନୋହର ଉତ୍କଳୀୟ ପ୍ରକୃତିପୀଠର ପଟ୍ଟ-ପୁରୋହିତ ବୋଲାଯାଇପାରେ। ତାହାଙ୍କର ଅଧିକାଂଶ କାବ୍ୟରେ ଉତ୍କଳ ପ୍ରକୃତିର ଯେଉଁ ଆଲେଖ୍ୟମାନ ପ୍ରଦତ୍ତ ହୋଇଅଛି, ତାହା ଭାରତୀୟ ଯେ କୌଣସି କବିଙ୍କ ପକ୍ଷରେ ଗୌରବାବହ ହୁଅନ୍ତା। ଉତ୍କଳ-ବାସୀଙ୍କର ନିଜ ମାତୃଭୂମି ପ୍ରତି ଶ୍ରଦ୍ଧା ଏବଂ ପ୍ରୀତି ଉଦ୍ଦୀପନ କରାଇବା ବିଷୟରେ 'ରାଧାନାଥ ଗ୍ରନ୍ଥାବଳୀ' ପରି ଗ୍ରନ୍ଥ ଉତ୍କଳସାହିତ୍ୟରେ ନାହିଁ।

ପରିଶେଷରେ ବକ୍ତବ୍ୟ ଏହି ଯେ, ଗ୍ରନ୍ଥାବଳୀର ସକଳ ତତ୍ତ୍ୱାବଧାରଣ ଓ ପ୍ରୁଫ୍ ସଂଶୋଧନ ପ୍ରଭୃତି ବିଷୟରେ ମୋହର ଶ୍ରଦ୍ଧେୟ ବନ୍ଧୁବର ଶ୍ରୀଯୁକ୍ତ ବାବୁ ଶଶିଭୂଷଣ ରାୟ ମହାଶୟ ଯଥେଷ୍ଟ ଶ୍ରମ ସ୍ୱୀକାର କରିଥିବାରୁ ତାହାଙ୍କଠାରେ କୃତଜ୍ଞତା ପାଶରେ ଆବଦ୍ଧ ରହିଲି। ଇତି ।

ଖଡ଼ିଆଳୟ — ପ୍ରକାଶକ

୧୩।୪।୧୯୦୨ — ଶ୍ରୀ ଶିବନାରାୟଣ ଦେବ

ମହାବିଷୁବ ସଂକ୍ରାନ୍ତି

# ଦ୍ୱିତୀୟ ସଂସ୍କରଣର (୧୯୧୩) ଭୂମିକା

କବିବର ୰ ରାଧାନାଥ ଆଧୁନିକ ଉତ୍କଳର ସାହିତ୍ୟିକ ସମ୍ପ୍ରଦାୟ ଏବଂ ଗୁଣଗ୍ରାହୀ ବିଦ୍ୱନ୍ମଣ୍ଡଳୀ କର୍ତ୍ତୃକ ସାହିତ୍ୟସମ୍ରାଟର ସୁବର୍ଣ୍ଣ ସିଂହାସନରେ ଅଭିଷିକ୍ତ ହୋଇଅଛନ୍ତି। ବସ୍ତୁତଃ ୰ ରାଧାନାଥ ଆଧୁନିକ ଉତ୍କଳ ସାହିତ୍ୟ-ମନ୍ଦିରର ସର୍ବପ୍ରଧାନ ନିର୍ମାତା ଏବଂ ସେ ପ୍ରାଚୀନ ସାହିତ୍ୟ ଅପେକ୍ଷା ଆଧୁନିକ ସାହିତ୍ୟକୁ ଯେପରି ସମ୍ପୂର୍ଣ୍ଣ ନୂତନ ଓ ମନୋହର ଭାବରେ ଗଠିତ କରିଅଛନ୍ତି, ତହିଁରେ ତାଙ୍କଠାରେ କବିବର ଆଖ୍ୟା ଆରୋପଣ ସମ୍ପୂର୍ଣ୍ଣରୂପେ ସ୍ୱାଭାବିକ ବୋଲି ଅନୁମିତ ହୁଏ। ୰ରାଧାନାଥଙ୍କର ସରଳ, ସୁନ୍ଦର ଏବଂ ସରସ ଭାରତୀ ପ୍ରାଚୀନ ସାହିତ୍ୟ ଅପେକ୍ଷା ଅନେକାଂଶରେ ମନୋହାରିଣୀ, ଏଥିରେ ବୋଧହୁଏ କାହାରି ମତଦ୍ୱୈଧ ହେବ ନାହିଁ। ଅଧିକନ୍ତୁ କମନୀୟକାନ୍ତି ଉତ୍କଳୀୟ ପ୍ରକୃତିର ସୌନ୍ଦର୍ଯ୍ୟ ବର୍ଣ୍ଣନ ବିଷୟରେ କବିବର ଅପୂର୍ବ ରଚନା କୌଶଳ ପ୍ରଦର୍ଶନ କରିଅଛନ୍ତି। ଭୂମଣ୍ଡଳର କୋମଳତା ଏବଂ କଠୋରତା ସଙ୍ଗେ ଘନିଷ୍ଠ ସମ୍ପର୍କ କବିନ୍ଦ୍ରର ପ୍ରକୃତ ପ୍ରାଣ ଏବଂ ଗୂଢ଼ ଅର୍ଥ। ଗଗନପ୍ରାଙ୍ଗଣରେ ବିଚିତ୍ରବର୍ଣ୍ଣା କାଦମ୍ବିନୀର ବିଚିତ୍ର ଲୀଳା, ସ୍ୱଚ୍ଛସଲିଳା ସ୍ରୋତସ୍ୱିନୀ ବକ୍ଷରେ ସାନ୍ଧ୍ୟସମୀରଣସଞ୍ଜାତ ସୁବର୍ଣ୍ଣପ୍ରଭ ବୀଚିମାଳା ଏବଂ ବସନ୍ତକାଳରେ ଅପୂର୍ବ ପୁଷ୍ପାବରଣାବୃତା ବସୁନ୍ଧରା ଯେପରି ପ୍ରକୃତ କବିଙ୍କର ଅବଲମ୍ବନ, ଭୀଷଣ ଦୁର୍ନିରୀକ୍ଷ ଶ୍ମଶାନ-କ୍ଷେତ୍ର ଏବଂ ରଣ-ରଙ୍ଗଭୂମିର ଦୃଶ୍ୟାବଳୀ ମଧ୍ୟ ସେହିପରି। କବିବରଙ୍କର ସମଗ୍ର ଗ୍ରନ୍ଥାବଳୀ ପାଠ କଲେ ଏହି ଉକ୍ତିର ଯାଥାର୍ଥ୍ୟ ସ୍ପଷ୍ଟରୂପେ ଅନୁଭୂତ ହେବ।

ରାଧାନାଥ-ଗ୍ରନ୍ଥାବଳୀର ଦ୍ୱିତୀୟ ସଂସ୍କରଣ ପ୍ରାୟ ଏକ ଯୁଗ ଅର୍ଥାତ୍ ଦ୍ୱାଦଶ ବର୍ଷ ପରେ ପ୍ରକାଶିତ ହେଲା। ଏଥିରେ ଅସମ୍ପୂର୍ଣ୍ଣ କାବ୍ୟ ପାର୍ବତୀ ଏବଂ ଉର୍ବଶୀର ଅବଶିଷ୍ଟାଂଶ ଗଦ୍ୟାକାରରେ ସନ୍ନିବିଷ୍ଟ ହୋଇଛି। ଅନ୍ୟାନ୍ୟ ଅପ୍ରକାଶିତ ଏବଂ ପଶ୍ଚାତ୍ ପ୍ରକାଶିତ ଅନେକଗୁଡ଼ିଏ ରଚନା ମଧ୍ୟ ପ୍ରଦତ୍ତ ହୋଇ ପୁସ୍ତକର କଳେବର ପ୍ରାୟ ଦ୍ୱିଗୁଣିତ ହୋଇଅଛି। କବିବରଙ୍କର ବଙ୍ଗୀୟ ରଚନାବଳୀ ଏହି ସଂସ୍କରଣରେ ପ୍ରକାଶ କରିବାର ଏକାନ୍ତ ବାସନା ଥିଲେ ମଧ୍ୟ ଅନିବାର୍ଯ୍ୟ କାରଣବଶତଃ ତାହା ହୋଇପାରିଲା ନାହିଁ। ଗ୍ରନ୍ଥାବଳୀର ପ୍ରଥମ ସଂସ୍କରଣର ପ୍ରକାଶ ସମୟରେ କବିବର ସ୍ୱୟଂ ଜୀବିତ ଥିଲେ, କିନ୍ତୁ ଯେତେବେଳେ ତାଙ୍କର କାବ୍ୟସୁଧାକର ସଂସ୍ପର୍ଶରେ ବିଦ୍ୱାନ୍ ଚକୋରବୃନ୍ଦ ବିମଳାନନ୍ଦ ସମ୍ଭୋଗ କରି ପାରିବେ, ସେତେବେଳେ ସେ ଲୋକଚକ୍ଷୁର ଅନ୍ତରାଳସ୍ଥିତ ଜରାମରଣ-ଭୟର ଅତୀତ ଯଶଃକାୟରେ ବର୍ତ୍ତମାନ – ସାହିତ୍ୟମନ୍ଦିରର ଦେବତା ରୂପେ ସମଗ୍ର ଉତ୍କଳର ହୃଦୟ ସିଂହାସନ ଅଧିକାର କରିଅଛନ୍ତି।

ମୋହର ପୂଜ୍ୟପାଦ ପରମାରାଧ୍ୟ ୰ ପିତୃଦେବଙ୍କ ସମ୍ବନ୍ଧରେ ଯାହା ବକ୍ତବ୍ୟ, ତାହା ଜନସମାଜରେ ପ୍ରଚାର କରିବାକୁ ବାଧ୍ୟ ହେଲି। ସୁଧୀବର୍ଗ ମୋହର ଅଜ୍ଞାନତା ଦୋଷ ମାର୍ଜନା କରିବାହେବେ। ବର୍ତ୍ତମାନ ସେ ଜୀବିତ ଥିଲେ ତାଙ୍କର ସ୍ୱରଚିତ ଗ୍ରନ୍ଥାବଳୀର ବର୍ଦ୍ଧିତାକାର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେବାର ଦେଖି ଅଭୂତପୂର୍ବ ଆହ୍ଲାଦ ସମ୍ଭୋଗ କରିଥାନ୍ତେ, କିନ୍ତୁ କାଳର କୁଟିଳ ଚକ୍ରାବର୍ତ୍ତନ ତାହା କରି ଦେଲା ନାହିଁ।

ପରିଶେଷରେ ବକ୍ତବ୍ୟ ଏହି ଯେ, ଗ୍ରନ୍ଥାବଳୀର ଦ୍ୱିତୀୟ ସଂସ୍କରଣର ନିର୍ଦ୍ଦୋଷ ମୁଦ୍ରଣ ଏବଂ ପ୍ରୁଫ ସଂଶୋଧନାଦି କାର୍ଯ୍ୟରେ ମୋହର ପରମମାନନୀୟ ଶ୍ରୀଯୁକ୍ତ ବିଶ୍ୱନାଥ କର ମହୋଦୟ ଆଶାତୀତ ଶ୍ରମ ସ୍ୱୀକାର କରିଥିବା ହେତୁରୁ ତାହାଙ୍କ ନିକଟରେ ଚିରକୃତଜ୍ଞ ରହିଲି।

ଶ୍ରୀ ଶଶିଭୂଷଣ ରାୟ

କାଳୀଗଳି, କଟକ — ୨୫।୮।୧୯୧୩

ଜନ୍ମାଷ୍ଟମୀ

# ନୂତନ ସଂସ୍କରଣର (୧୯୯୪) ଅଗ୍ରଲେଖ

ଓଡ଼ିଆ ସାହିତ୍ୟର କ୍ରମ-ବିକାଶରେ କବିବର ରାଧାନାଥ ରାୟଙ୍କର ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ରହିଛି। ତାଙ୍କ ରଚନାବଳୀ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି ଏବଂ ଭାଷା ଓ ଜାତୀୟତାର ପୁନର୍ଜାଗରଣରେ ହୋଇଛି ସହାୟକ। କବିବରଙ୍କ ଯୁଗାନ୍ତକାରୀ ସୃଷ୍ଟି ମାଧ୍ୟମରେ ଊନବିଂଶ ଶତାବ୍ଦୀରେ ଓଡ଼ିଆ କବିତା ଯେ ନୂଆ ଜୀବନ, ନୂଆ ବିଭବ ଓ ନବୀନ ଆବେଦନ ଲାଭକରିଥିଲା – ଏଥିରେ ଦ୍ୱିମତର ଅବକାଶ ନାହିଁ।

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ। ସେଇ ସମୟ ଥିଲା ଓଡ଼ିଶା ଓ ଓଡ଼ିଆ ଭାଷା ପାଇଁ ଏକ ସନ୍ଧିକ୍ଷଣ। ଓଡ଼ିଆ ଜାତି ସେତେବେଳେ ଶାରୀରିକ ଓ ମାନସିକ, ଏଇପରି ଦୁଇଧରଣର ମୃତ୍ୟୁ ଭୋଗୁଥିଲା କହିଲେ ଅତ୍ୟୁକ୍ତି ହେବନାହିଁ। ରାଜ-ଅତ୍ୟାଚାର, କୁଶାସନ, ବନ୍ୟା ଓ ମରୁଡ଼ି କାରଣ ହୋଇଥିଲା ଦୈହିକ ମୃତ୍ୟୁର, ଯାହାର ଭୟଙ୍କର ଗ୍ରାସ ଥିଲା ନ'ଅଙ୍କ ଦୁର୍ଭିକ୍ଷ, ଖ୍ରୀ : ଅ : ୧୮୬୬ ରେ। ଗୋଟିଏ ଇତିହାସ ପ୍ରସିଦ୍ଧ ବୀରଜାତି ବିନା ଲଢ଼େଇରେ, ବିନା ରକ୍ତପାତରେ ଭୋଗୁଥିଲା 'ମରିବାର' ଯାତନା। ଦ୍ୱିତୀୟ ଧରଣର ମୃତ୍ୟୁଟି ଥିଲା ମାନସିକ। ଦୀର୍ଘ ପରାଧୀନତା, ବିଭିନ୍ନ ସାମ୍ମୁଖ୍ୟରେ ପରାଜୟ, ସ୍ୱଦେଶୀ ପରମ୍ପରାର ଅବମୂଲ୍ୟାୟନ, ପାରମ୍ପରିକ ଶିକ୍ଷା ବ୍ୟବସ୍ଥାର ଅଚଳାବସ୍ଥା, ବୈଦେଶିକ ଆଚାର-ବିଚାରର ପ୍ରଲୋଭନମୟ ବାତାବରଣରେ ସ୍ୱଦେଶୀ ସଂସ୍କୃତିର ହୀନାବସ୍ଥା କାରଣରୁ ଓଡ଼ିଆଙ୍କ ସାଂସ୍କୃତିକ ମାନସ ପ୍ରତିକ୍ଷଣରେ ମୃତ୍ୟୁ ଯନ୍ତ୍ରଣା ଭୋଗୁଥିଲା। ପରିଶେଷରେ କିଛି ବଙ୍ଗୀୟଙ୍କ 'ଓଡ଼ିଆ ଭାଷା-ବିଲୋପ' ଚକ୍ରାନ୍ତ କିପରି ଏକ ମର୍ମନ୍ତୁଦ ସାଂସ୍କୃତିକ ଓ ମାନସିକ ମୃତ୍ୟୁ ପାଇଁ ଜାଲ ବିସ୍ତାର କରିଥିଲା – ତାହା କାହାକୁ ଅଛପା ନାହିଁ।

ବାସ୍ତବିକ ଏକଦା ମୃତ୍ୟୁ ଓ ମୃତ୍ୟୁର ରାହୁ-ଗ୍ରାସ କବଳରେ ଓଡ଼ିଆ ଜାତିର ଓ ଭାଷାର ଅବସ୍ଥା ଥିଲା ଏକାନ୍ତ ଶୋଚନୀୟ। ମନେ ହେଉଥିଲା ଓଡ଼ିଶା ଓ ଓଡ଼ିଆ – ଉଭୟର ବିଲୋପ ଘଟିଯିବ। କିନ୍ତୁ ତା' ଘଟିନାହିଁ। ଭକ୍ତକବି ଜଗନ୍ନାଥ ଦାସଙ୍କ ଭାଷାରେ – "କାଷ୍ଠ ମଧ୍ୟରେ ଅଗ୍ନି ଥାଇ, ଘର୍ଷଣେ ତାହା ଉପୁଜଇ।" ମୃତ୍ୟୁ ସହିତ ସଂଘର୍ଷରୁ ଜାଗ୍ରତ ହେଲା ଓଡ଼ିଆଙ୍କର ସୁପ୍ତ ବଳ ଓ ଚେତନା। ଭସ୍ମ ଭିତରୁ ପୌରାଣିକ ଫେନିକ୍ସ ପକ୍ଷୀର ଜାଗରଣ ଭଳି ହେଲା ଓଡ଼ିଆ ଜାତିର ଓ ଓଡ଼ିଆ ଭାଷାର ପୁନରଭ୍ୟୁଦୟ।

ଯେଉଁ ଯୁଗପୁରୁଷଗଣ ଓଡ଼ିଆ ଜାତିର ପୁନରଭ୍ୟୁଦୟରେ ପ୍ରଧାନ ଭୂମିକା ଗ୍ରହଣ କରିଥିଲେ, ଜାତି ପ୍ରାଣରେ ଭରି ଦେଇଥିଲେ ଉତ୍ସାହ, ଶକ୍ତି, ନିଷ୍ଠା ଓ ମମତ୍ୱ – ସେମାନଙ୍କ ମଧ୍ୟରେ କବି ରାଧାନାଥ ଅନ୍ୟତମ। ତାଙ୍କ ସୃଷ୍ଟି-ସମ୍ଭାର ଅନେକ କାରଣରୁ ତାତ୍ପର୍ଯ୍ୟପୂର୍ଣ୍ଣ।

ଅଭ୍ୟୁଦୟ ନିମନ୍ତେ ସମ୍ଭବତଃ ସର୍ବ-ପ୍ରଧାନ ଆବଶ୍ୟକତା ଥିଲା ଆତ୍ମ-ପରିଚୟ ଓ ଆତ୍ମ-ପ୍ରତ୍ୟୟ ସୃଷ୍ଟି। ଏଇ ଲକ୍ଷ୍ୟରେ ସାହିତ୍ୟ ହେବ ଏକ ସାଧନ। ସାହିତ୍ୟ ମାଧ୍ୟମରେ ଜାତି ନିଜକୁ ଚିହ୍ନି ଶିଖିବ, ଆପଣା ଅତୀତ ପାଇଁ ଗର୍ବିତ ହେବ ଓ ସ୍ୱ-କାଳର ମୂଲ୍ୟାୟନ କରିପାରିବ। ତାହା ହିଁ ହେବ ତା' ପାଇଁ ପରୋକ୍ଷ ଉଦ୍‌ବୋଧନ।

ରାଧାନାଥ କଲମ ଧରିବା ବେଳକୁ ସାହିତ୍ୟ ତାଳପତ୍ର ପୋଥିରେ ଆବଦ୍ଧ ନରହି କ୍ରମେ ଛାପା ବହି ରୂପ ନେବାକୁ ଆରମ୍ଭ କରିସାରିଲାଣି। ପତ୍ରିକା ଛପାଗଲାଣି। ଓଡ଼ିଆରେ ମଧ୍ୟ ସେ ଶୁଭ ଅବସର ଆସିସାରିଥିଲା। ପତ୍ରିକାର ସମ୍ପାଦକଗଣ ଖୋଜୁଥିଲେ ନୂଆ ଲେଖା ଓ ନୂଆ ଲେଖକ। ପାଶ୍ଚାତ୍ୟ ସାହିତ୍ୟ ଓ ନବ-ଚେତନା ସହିତ ପରିଚିତ ହୋଇଥିବା ଶିକ୍ଷିତଙ୍କ ନିମନ୍ତେ ତା'ଥିଲା

ଏକ ଆହ୍ୱାନ। ସେଇ ଆହ୍ୱାନ ବଶତଃ ରାଧାନାଥ ଓଡ଼ିଆ ଭାଷାରେ ଲେଖିବାକୁ ଆରମ୍ଭ କରିଥିଲେ। କହିବା ବାହୁଲ୍ୟ– ତାଙ୍କର ସେ ଆରମ୍ଭରେ ଥିଲା ଗଭୀର ଆତ୍ମ-ପ୍ରତ୍ୟୟ, ଆନ୍ତରିକତା ଓ ମମତା। ନୂଆ ଶୈଳୀ, ନୂଆ ଭାବ ଓ ନବ-ଚେତନାର ପ୍ରବର୍ତ୍ତନ କରି ସେ ସିଦ୍ଧି ଅର୍ଜନ କରିବା ସହିତ ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟରେ ଅଗ୍ରପୂଜ୍ୟ ରୂପେ ପ୍ରତିଷ୍ଠା ପାଇଲେ।

ପ୍ରକାଶ ଥାଉକି, ଯୁବକ ରାଧାନାଥ ପ୍ରଥମେ ସଂସ୍କୃତ ଓ ବଙ୍ଗଳା ଉଭୟ ଭାଷାରେ ହାତ ପରୀକ୍ଷା କରି ସଫଳ ହୋଇଥିଲେ। ତାଙ୍କର ସଂସ୍କୃତ ରଚନା– 'ଭାରତ ଗୀତିକା' (ସର୍ବେଷାମ୍ ନୋ ଜନନୀ ଭାରତ . . . ) ଏବେ ବି ଗୀତହୁଏ। ବଙ୍ଗଳା ଭାଷାରେ ସେ ଲେଖିଥିବା କବିତାଗୁଡ଼ିକ ତିନିଟି ସଂକଳନରେ ପ୍ରକାଶ ପାଇ ଆଦୃତ ହୋଇଥିଲା। ସେସବୁରେ ତାହାଙ୍କ ଉଚ୍ଚାଙ୍ଗ ପ୍ରତିଭାର ଅମଳିନ ସ୍ୱାକ୍ଷର ରହିଛି। ଏହି ଗ୍ରନ୍ଥାବଳୀରେ ତଦୀୟ ବଙ୍ଗଳା ରଚନାର କେତେକ ଦୃଷ୍ଟାନ୍ତ ସନ୍ନିବିଷ୍ଟ।

ପରେ ବିମ୍‌ସ୍ ସାହେବଙ୍କ ଉତ୍ସାହ, ଭୂଦେବ ବାବୁଙ୍କ ପରାମର୍ଶ ଓ କେତେକ ପ୍ରିୟଜନଙ୍କ ଅନୁରୋଧ କ୍ରମେ ସେ ଓଡ଼ିଆ ସାହିତ୍ୟ ଜଗତକୁ ଆସିଲେ। ଓଡ଼ିଆ ଭାଷାକୁ କଲେ ପ୍ରାଣର ଧନ, ଗଳାର ମାଳି– ଆଉ ବଙ୍ଗଳା ସାହିତ୍ୟକୁ ଫେରିନାହାନ୍ତି। ଶେଷ ପର୍ଯ୍ୟନ୍ତ ତାଙ୍କର ସମସ୍ତ କଳା ଓ କଳ୍ପନାର ପରୀକ୍ଷା ଓ ପ୍ରୟୋଗ ସେ ଓଡ଼ିଆ ଭାଷାରେ ହିଁ କରିଥିବା ପରିଦୃଷ୍ଟ ହୁଏ।

ରାଧାନାଥ କିଛି ଶୂନ୍ୟ ବେଦୀ ଉପରେ ଠିଆ ହୋଇ ନଥିଲେ। ତାଙ୍କ ପୂର୍ବର ଓଡ଼ିଆ କାବ୍ୟ-ଜଗତ୍ ନିଜ ଗୁଣରେ ବଳିଷ୍ଠ ଓ ମହତ୍ତ୍ୱପୂର୍ଣ୍ଣ ଥିଲା। ସାରଳା, ବଳରାମ, ଜଗନ୍ନାଥଦାସଙ୍କଠାରୁ ଆରମ୍ଭ କରି ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ, କବିସୂର୍ଯ୍ୟ, ଗୋପାଳକୃଷ୍ଣ, ଯଦୁମଣି ପ୍ରଭୃତି ରଥୀ ମହାରଥୀଙ୍କ ସାଧନା ଦ୍ୱାରା ତା'ଥିଲା ଉନ୍ନତ ଓ ପରିପୁଷ୍ଟ। ସାହିତ୍ୟ ଭଣ୍ଡାରର ଅମୂଲ୍ୟ ରତ୍ନ ରୂପେ ଶୋଭା ପାଉଥିଲା ରାଶି ରାଶି ମହାକାବ୍ୟ, ପୁରାଣ, ଶାସ୍ତ୍ର, କାବ୍ୟ ଓ ସହସ୍ର ଗୀତିକବିତା। ଏହି ବିଶାଳ ସାହିତ୍ୟ-ବିଭବ ରାଧାନାଥଙ୍କୁ ମୁଗ୍ଧ କରିଥିଲା। ସେ ଭଞ୍ଜ ଓ ଅଭିମନ୍ୟୁ ଆଦି କବିଗଣଙ୍କ ସଂପର୍କରେ ବଙ୍ଗଳା ଭାଷାରେ କବିତା ଲେଖି ପ୍ରକାଶ କରିଥିଲେ। ସେଥିରୁ ପୂର୍ବ-କବିଙ୍କ ପ୍ରତି ତାଙ୍କର ଆଦର ଓ ସମ୍ମାନ କେତେ ଥିଲା ତାହା ଜାଣିହୁଏ।

ରାଧାନାଥଙ୍କ ସମୟକୁ ଭଞ୍ଜ-ଦୀନକୃଷ୍ଣ ଆଦି ମହତ୍ କବିଙ୍କ ଦ୍ୱାରା ପୁଷ୍ଟ ରୀତି-କାବ୍ୟର ଯୁଗ ଅତୀତ ହୋଇଯାଇଥିଲେ ହେଁ, ସେସବୁର ଲୋକପ୍ରିୟତା କମିନଥିଲା। କିନ୍ତୁ ତା'ଥିଲା ବୈଷ୍ଣବ-ଗୀତି କବିତାର ରାଜତ୍ୱ କାଳ। ରାଧା-କୃଷ୍ଣଙ୍କ ରୂପ-ଗୁଣ-ସମ୍ପର୍କକୁ ଭିତ୍ତି କରି ପ୍ରେମପୂର୍ଣ୍ଣ ସଂଗୀତାବଦ୍ଧ ପଦଟିଏ ଲେଖିବା ପାଇଁ କବିଗଣ ତତ୍ପର ଥିଲେ। ସେଇସବୁ ପଦର ଉତ୍କର୍ଷରୁ କବି-ପ୍ରତିଭାର ନିର୍ଣ୍ଣୟ କରାଯାଉଥିଲା। ବାସ୍ତବିକ ଯୁଗ ଯୁଗ ଧରି ଛାନ୍ଦ, ଚଉପଦୀ, ଚଉତିଶା, ମଙ୍ଗଳ-କାବ୍ୟ ଓ ଗୀତିକବିତାର ଆଙ୍ଗିକ ଅବଲମ୍ବନରେ କବିଗଣ ଭକ୍ତି, ଶୃଙ୍ଗାର ଓ ଶୃଙ୍ଗାର-ମିଶ୍ରିତ ଭକ୍ତିଭାବ ପ୍ରକାଶ କରୁଥିଲେ। ଶ୍ରୀରାଧା ଓ ଶ୍ରୀକୃଷ୍ଣ ଓଡ଼ିଆ କାବ୍ୟଜଗତର ହୋଇଯାଇଥିଲେ ଆତ୍ମାସ୍ୱରୂପ। ପାଠକ ତାଙ୍କୁ ହିଁ ସାକ୍ଷାତ କରୁଥିଲା କାବ୍ୟ-କବିତାରେ। ଗୋଲୋକ, ବୃନ୍ଦାବନ, ଗିରି ଗୋବର୍ଦ୍ଧନ, ଯମୁନା ନଈର ଚିତ୍ର ପାଠକର ଭାବ-ଜଗତକୁ ମଣ୍ଡନ କରୁଥିଲା। ଓଡ଼ିଆ ରସଲିପ୍ସୁଗଣ ସେଇସବୁ ଚିତ୍ରମୟତା ଭିତରେ ବୁଡ଼ିରହିଥିଲେ।

କାବ୍ୟର ଏକ ବିଶାଳ ପରମ୍ପରା ଥିଲେ କ'ଣ ହେବ, ସେସବୁରେ ନଥିଲା କୌଣସି ସ୍ୱଦେଶୀ ଜୀବନର ପ୍ରାସଙ୍ଗିକତା, ନଥିଲା ଓଡ଼ିଶାର ବା ଓଡ଼ିଆଙ୍କ କଥା। ଓଡ଼ିଶା ଇତିହାସର ଗୌରବ-ଗାଥା, କୀର୍ତ୍ତି, ସୁଖ-ଦୁଃଖ, ଜୟ-ପରାଜୟର ଉଲ୍ଲେଖ ସେଥିରେ ନଥିଲା, ନଥିଲା ବି ଓଡ଼ିଶାର ନଦ-ନଦୀ-ହ୍ରଦ-ଗିରି-ବନ-ସାଗର-ଦ୍ୱୀପ ଓ ଦୁର୍ଗାଦିର ବର୍ଣ୍ଣନା। ଓଡ଼ିଆ ଭାଷାରେ ଓଡ଼ିଆଙ୍କ ପାଇଁ ଲିଖିତ ହୋଇଥିଲେ ହେଁ ସାହିତ୍ୟରୁ ଓଡ଼ିଆ ବଂଚିତ ଥିଲା। ଧାର୍ମିକ ମହାନତା ଓ କଳା-ପାଟବତା ସତ୍ତ୍ୱେ ଗୋଟିଏ 'ମୃତପ୍ରାୟ' ଜାତିର ପ୍ରାଣରେ ବଞ୍ଚିବାର ନୂଆ ଉତ୍ସାହ ସୃଷ୍ଟି କଲା ଭଳି ସେଥିରେ କୌଣସି ଉପାଦାନ ନଥିଲା। ସମ୍ଭବତଃ ଏଇ ଅଭାବ ଲକ୍ଷ୍ୟକରିଥିଲେ ରାଧାନାଥ ଏବଂ ତଦନୁସାରେ ସେ ନିଜର ମାର୍ଗ ପ୍ରସ୍ତୁତ କରିନେଇଥିଲେ।

ପ୍ରଥମତଃ କୃଷ୍ଣ-କାବ୍ୟର ପରମ୍ପରାରୁ ଓ ବୈଷ୍ଣବ-ଗୀତିର ମାୟାପୁରୀରୁ ସେ ନିଜ ସାହିତ୍ୟ-କଳ୍ପନାକୁ ମୁକ୍ତ କଲେ । ମନରୁ ବିଦାୟ ଦେଲେ ପ୍ରଚଳିତ ଲୋକପ୍ରିୟ ରାଧା-କୃଷ୍ଣ ଭାବ । ଧର୍ମୀୟ ପରିସରରୁ ଦୂରରେ ସେ ଖୋଜିଲେ ନୂଆ ଆଙ୍ଗିକ ଓ ଆତ୍ମିକ ସଂପଦ । ତାଙ୍କ ସଂଧାନର ସଫଳତା ଓଡ଼ିଆ କବିତା କ୍ଷେତ୍ରରେ ନୂଆ ଦିଗନ୍ତର ଉନ୍ମୋଚନ କରିପାରିଥିଲା ।

ପୂର୍ବରୁ ସଂସ୍କୃତ ଓ ବଙ୍ଗଳା ଭାଷାରେ କ୍ଷୁଦ୍ରକ୍ଷୁଦ୍ର କବିତା ଲେଖିଥିଲେ ହେଁ ରାଧାନାଥ ବର୍ଣ୍ଣନାତ୍ମକ ଦୀର୍ଘ-କାବ୍ୟ ମାଧ୍ୟମରେ ଓଡ଼ିଆ ସାହିତ୍ୟରେ ପ୍ରବେଶ କଲେ । ଓଡ଼ିଆ କାବ୍ୟ-ପରମ୍ପରାର ପ୍ରଭାବ ରୂପେ ତାହା ଗ୍ରହଣୀୟ । ବୋଧହୁଏ ଅଣ-କୃଷ୍ଣଚେତନା ସମ୍ବଳିତ କ୍ଷୁଦ୍ର-କବିତା ବା ଗୀତ ଗ୍ରହଣ କଲାଭଳି ମାନସିକତା ସେତେବେଳେ ଓଡ଼ିଆ ପାଠକଠାରେ ସୃଷ୍ଟି ହୋଇନଥିଲା ବୋଲି ରାଧାନାଥ ସେପରି ପ୍ରୟାସରୁ ନିବୃତ୍ତ ରହିଥିଲେ ।

ପ୍ରଥମେ ରାଧାନାଥଙ୍କ କାବ୍ୟ-କାରିଗରିର ସ୍ପଷ୍ଟ ମୁଦ୍ରାଙ୍କ ବହନ କରି ପ୍ରକାଶିତ ହୋଇଥିଲା 'କେଦାରଗୌରୀ' । ତା' ମାଧ୍ୟମରେ ସେ ଗୀତି-କାବ୍ୟର ବାତାବରଣରେ ବଢ଼ିଥିବା ମୁଗ୍ଧ-କାବ୍ୟପାଠକଙ୍କ ମନରେ ଏକ ଚମକ-ସ୍ପର୍ଶ ଦେଲେ । ଏମିତି ଏକ ପ୍ରଣୟ-କାହାଣୀ ଖଂଜିଲେ ଯାହା ଓଡ଼ିଶାର ଗୋଟିଏ ଐତିହାସିକ ଘଟଣା ଭଳି ଲାଗିଲା । ପରିଚ୍ଛନ୍ନ ବର୍ଣ୍ଣନା, ସଙ୍ଗତି ଓ କାବ୍ୟ-ଯୁକ୍ତି ଏପରି ଅପୂର୍ବ ଥିଲା ଯେ କ୍ରମେ 'କେଦାରଗୌରୀ' ଏକ ମିଥ୍‌ରେ ପରିଣତ ହୋଇଗଲା । ତା'ର ସତ୍ୟତା ନେଇ ପାଠକ ସନ୍ଦେହ କରିବାର ଅବକାଶ ହିଁ ପାଇଲେ ନାହିଁ । ହୁଏତ କଥାବସ୍ତୁଟି ବୈଦେଶିକ ସାହିତ୍ୟରୁ ଆହୃତ । କିନ୍ତୁ ବିଦେଶୀ ନାୟକ ରୂପାନ୍ତରିତ ହୋଇଛି ଓଡ଼ିଆ ନାୟକରେ । ତାହା ହିଁ କବିବରଙ୍କ କାରିଗରିର ସାଫଲ୍ୟ । ଭୁବନେଶ୍ୱରର 'କେଦାରଗୌରୀ' ପୀଠ ପରିଦର୍ଶନ କଲେ ଆଜି ବି ରାଧାନାଥଙ୍କ ସୃଷ୍ଟି ମନେପଡ଼ିଥାଏ ।

ଓଡ଼ିଶାର ଭୂମି ସହିତ ସଂପୃକ୍ତ କଥା-ବସ୍ତୁମାନ ଖଂଜି ରାଧାନାଥ ଗୋଟିକ ପରେ ଗୋଟିଏ କାବ୍ୟ ଲେଖି ଚାଲିଲେ, କାବ୍ୟ-ନିର୍ମାଣର ତୃଷା ମେଣ୍ଟିଲା ଯାଏଁ । ଅନେକ କାରଣରୁ ଓଡ଼ିଶାର ନବ୍ୟ-ଶିକ୍ଷିତଙ୍କୁ ସେସବୁ ଭଲ ଲାଗିଲା । କାବ୍ୟଗୁଡ଼ିକର ଅନୁଶୀଳନ କଲେ ଦେଖାଯାଏ ଯେ – ଗୀତିକାବ୍ୟ ପରି ରାଧାନାଥ ପ୍ରାରମ୍ଭରେ 'ମଙ୍ଗଳାଚରଣ' କରି ନାହାନ୍ତି । କାବ୍ୟର କୁଶଳ ସମାପ୍ତି ପାଇଁ ଯେ କେଉଁ ଦେବତାଙ୍କ ଶରଣାପନ୍ନ ହେବାକୁ ହେବ ଏପରି 'ମିଥ୍' ଉପରେ ତାଙ୍କର ଆସ୍ଥା ନଥିଲା । ସେ ସିଧା ସଳଖ କଥାବସ୍ତୁର ପରିବେଷଣରେ ଯତ୍ନବାନ୍ ଥିଲେ । ତାଙ୍କର ଏଇ ପ୍ରୟାସ ନିର୍ମଳ କବିତ୍ୱ ଶକ୍ତି ଓ ସମ୍ମାନ ବୃଦ୍ଧିରେ ସହାୟକ ହୋଇଛି । ତାଙ୍କ ପରେ ଆଉ କୌଣସି କବି 'ମଙ୍ଗଳାଚରଣ'ର ଅନୁବର୍ତ୍ତନ କରିବା ଦେଖାଯାଇନାହିଁ ।

କାବ୍ୟର ଆରମ୍ଭରୁ ଶେଷ ଯାଏଁ ରାଧାନାଥ ଏକମାତ୍ର ରାଗ ବା ବୃତ୍ତ ବ୍ୟବହାର କରିଛନ୍ତି । ତା' ପୁଣି ସହଜ, ଯେ କୌଣସି ପାଠକ ଏକା ଏକା ଆବୃତ୍ତି କରିପାରିବା ଭଳି । ଦରକାର ପଡ଼ିଲେ ବୋଲି ଅନ୍ୟକୁ ଶୁଣାଇ ହେବ । ସେଥିପାଇଁ ବିଶେଷ ଗାୟନ ପଦ୍ଧତି ଆୟତ୍ତ କରିବା ଆବଶ୍ୟକ ନାହିଁ ।

ଯଥାସମ୍ଭବ ସହଜ-ସରଳ ଭାଷାରେ ସେ କାବ୍ୟ ଲେଖିଲେ । ଅତୀତରେ ଉପେନ୍ଦ୍ର ଭଂଜ 'ଲାବଣ୍ୟବତୀ'ରେ 'ପଦ ସରଳ ଧ୍ୱନିରେ ମାନସ ମୋହିବ' ବୋଲି ଘୋଷଣା କରିଥିଲେ; କିନ୍ତୁ ସରଳ ପଦାବଳୀ ଥିଲା ତାଙ୍କ ସାହିତ୍ୟ ଭଣ୍ଡାରର ସବୁଠାରୁ ଦୁର୍ଲଭ ରତ୍ନ । ପକ୍ଷାନ୍ତରେ, ପଦ-ସରଳ-ଧ୍ୱନିକୁ ରାଧାନାଥ ନିଜ ଶୈଳୀର ଦର୍ଶନ ରୂପେ ଗ୍ରହଣକରିନେଇଥିଲେ ।

ଗୀତି-କାବ୍ୟ ପରି ନାମକୁ ମାତ୍ର କଥା-ବସ୍ତୁ ନରଖି ରାଧାନାଥ ଘଟଣା-ପ୍ରଧାନ କଥା-ବସ୍ତୁ ଖଂଜିଛନ୍ତି । ସେସବୁରେ ଚମତ୍କାରିତା ଅଛି । ବର୍ଣ୍ଣନା ପାଇଁ ବର୍ଣ୍ଣନା ରୀତି ପରିହାର କରି ବର୍ଣ୍ଣନା ଓ ଘଟଣା ମଧ୍ୟରେ ଭାରସାମ୍ୟ ରକ୍ଷା କରିଛନ୍ତି । ଫଳରେ କାବ୍ୟ-ପାଠ ସୁଖକର ଓ ଆସ୍ୱାଦନ ତୃପ୍ତିକର ହୋଇଥିବା ପରିଦୃଷ୍ଟ ହୁଏ । ବିରହ-ମିଳନ ଓ ଶୃଙ୍ଗାରିକ ଚେଷ୍ଟାର ବର୍ଣ୍ଣନା ପ୍ରତି ଜୋର୍ ନଦେଇ ନାୟକ-ନାୟିକାଙ୍କ ମାନବୀୟ ଯାତନା ଓ କ୍ରିୟା-କଳାପକୁ ସେ ଗୁରୁତ୍ୱ ପ୍ରଦାନ କରିଛନ୍ତି ।

ଯାହା ଫଳରେ ସେମାନଙ୍କ ଜୀବନରେ ସୌନ୍ଦର୍ଯ୍ୟ ଫୁଟିଉଠିଛି ।

ରାଧାନାଥ କାବ୍ୟଗୁଡ଼ିକୁ ବିୟୋଗାନ୍ତ କରିଛନ୍ତି । ମିଳନର ସମସ୍ତ ସମ୍ଭାବନା ଥିବା ସତ୍ତ୍ୱେ ନାୟକ-ନାୟିକାଙ୍କ ମିଳନ-ଅବସରକୁ ସେ ନିରାଶାରେ ବା ମୃତ୍ୟୁରେ ଅନ୍ତ କରି ପାଠକର ଚିତ୍ତକୁ ଶୋକରେ ପୋତି ପକାଇଛନ୍ତି । ଉଷା ମରିଛି ନାୟକର ସ୍ପର୍ଶ ଲାଭକରି, ନନ୍ଦିକେଶ୍ୱରୀ ଫେରିଆସିଛି ହତାଶାରେ । କେଦାର-ଗୌରୀରେ ମଧ ସେଇ ଦୁଃଖ ।

ସମ୍ଭବତଃ କାବ୍ୟରେ ରୀତିଯୁଗୀୟ ପରିସ୍ଥିତି ଓ ଘଟଣା ସୃଷ୍ଟି ନକରିବା ରାଧାନାଥଙ୍କ ଅଭିପ୍ରାୟ ଥିଲା । ଏପରିକି ଯେଉଁ ସ୍ଥଳରେ ରତି-ସଂପାଦନର ଅବସର ଆସିଚି, ସେଠି କବି ଇନ୍ଦ୍ରୀୟ ରସ-ସ୍ଫୁର୍ତ୍ତିକୁ ପ୍ରଶ୍ରୟ ନଦେଇ ପାଠକଙ୍କ ମନରେ (ଶୃଙ୍ଗାର ପ୍ରତି) ଅଶେଷ ଘୃଣା ଓ ନାରକୀୟ ଅନୁଭବର ଢ଼େଉ ସୃଷ୍ଟି କରିଛନ୍ତି, ଯେପରି 'ପାର୍ବତୀ'ରେ ।

ମନେହୁଏ ରାଧାନାଥ କାବ୍ୟଗୁଡ଼ିକୁ ଭିନ୍ନ ଗୁଣରେ ମଣ୍ଡିତ କରିବାକୁ ଚାହୁଁଥିଲେ । ଅଳଙ୍କାର, ଶୃଙ୍ଗାର ବର୍ଣ୍ଣନା ପ୍ରତି ଗୁରୁତ୍ୱ ନଦେଇ ସେ ନିଜର ସାମାଜିକ ଦୃଷ୍ଟି, ଅନୁଭବ ଓ ପ୍ରଜ୍ଞାର ଅଭିବ୍ୟକ୍ତି ଖୋଜିଲେ । କାବ୍ୟରେ କବିର ବକ୍ତବ୍ୟ ରହିଲା । ସେ ବକ୍ତବ୍ୟ ଭିତରେ ରହିଲା ପ୍ରାଚ୍ୟ ଓ ପାଶ୍ଚାତ୍ୟ ଖଣ୍ଡର ଜୀବନ-ଦୃଷ୍ଟି, ସୌନ୍ଦର୍ଯ୍ୟଚେତନା ଓ କାଳଜୟୀ ପ୍ରଜ୍ଞା । ଚିନ୍ତାଶୀଳ ପାଠକ ପାଇଁ ରହିଲା ତୃପ୍ତିଦାୟକ ଉପାଦାନ । ଭାଗବତ ପରମ୍ପରାରେ ବଢ଼ିଥିବା ଓଡ଼ିଆ ବୁଦ୍ଧିଜୀବୀ ଓ ସାଧାରଣ ପାଠକଙ୍କ ପ୍ରିୟ ହେଲା ଭଳି ବହୁ ଆଦରଣୀୟ ପଂକ୍ତି (ଯଥା : "କେହି ରହିନାହିଁ ରହିବେ ନାହିଁଟି/ଭବରଙ୍ଗଭୂମି ତଳେ/ସର୍ବେ ନିଜ ନିଜ ଅଭିନୟ ସାରି/ବାହୁଡ଼ିବେ କାଳବଳେ ।")

ରାଧାନାଥଙ୍କ କାବ୍ୟମାଳାରେ ଉତ୍କୀର୍ଣ୍ଣ ନାରୀଚରିତ୍ରଗୁଡ଼ିକ ତାଙ୍କ ପ୍ରତିଭାର ଉଜ୍ଜ୍ୱଳ ନିଦର୍ଶନ । ସେ ନାରୀମାନଙ୍କୁ ଅବଳା-କୋମଳା କରିବାରେ ସନ୍ତୋଷ ପ୍ରକାଶ କରିନାହାନ୍ତି । ତାଙ୍କୁ ଶକ୍ତି ଦେଇଛନ୍ତି ଓ ତାଙ୍କ ପାଇଁ ନୂଆ ପରିଚୟ ସୃଷ୍ଟି କରିଛନ୍ତି । କେବଳ ରୂପ ବାଚକ ନୁହଁ, ଗୁଣବାଚକ ଭୂଷଣରେ ବିଭୂଷିତ କରି ସେ ସେମାନଙ୍କ ମହତ୍ତ୍ୱ ବଢ଼େଇଛନ୍ତି । ଇତିହାସର ବୀରାରମଣୀଙ୍କ ସମତୁଲ କରି ରାଧାନାଥ 'ଉଷା'କୁ କରିଛନ୍ତି ବୀରାଙ୍ଗନା, ନନ୍ଦିକେଶ୍ୱରୀକୁ ଦେଇଛନ୍ତି ଅନ୍ଧାର ରାତିରେ ଏକା ଏକା ଯିବାର ସାହସ, ପାର୍ବତୀରେ ପ୍ରତିବାଦର ଶକ୍ତି । ଓଡ଼ିଆ ରମଣୀଙ୍କ ଐତିହାସିକ ସତ୍ତାର ଆବିଷ୍କାର ସ୍ୱରୂପ 'ଉଷା' ପାଠକଙ୍କୁ ଚମତ୍କୃତ କରେ । ମୌଳିକ ଆହରଣ, ଇତିହାସ-ଦୃଷ୍ଟି ଓ ଉତ୍କଳ-ପ୍ରୀତିର ଅପୂର୍ବ ମିଶ୍ରଣରେ ତାଙ୍କର ନାରୀଚରିତ୍ରଗୁଡ଼ିକ ରୂପାୟିତ । ଇତିହାସର ଅନ୍ଧକାରମୟ ଯୁଗକୁ ସେ ଏଇପରି ସ୍ୱକୀୟ କଳ୍ପନାବଳରେ ଆଲୋକିତ କରିଛନ୍ତି । ଏଥିପାଇଁ ହୁଏତ ସେ କେଉଁ ସାହିତ୍ୟରୁ, କେଉଁ ଇତିହାସରୁ, କେଉଁ ଲୋକ-କଥାରୁ କିଛି ଉପାଦାନ ସଂଗ୍ରହ କରିଥିଲେ । ସେସବୁର ଉଦ୍ଦେଶ୍ୟ ଯେ ମହତ୍ତ୍ୱପୂର୍ଣ୍ଣ ଥିଲା ଏଥିରେ ସନ୍ଦେହ ନାହିଁ । ପରିଚ୍ଛନ୍ନ କଳା-ଦୃଷ୍ଟି ରାଧାନାଥଙ୍କର ଆଉ ଏକ ଅବଦାନ, ଯେଉଁଥିପାଇଁ ବୌଦ୍ଧିକ ପାଠକର ସେ ପ୍ରିୟ-କବି ହୋଇ ଉଠିଥିଲେ । ତାଙ୍କ କଳା-ଦୃଷ୍ଟିରେ ପାପ-ପୁଣ୍ୟ ସମମୂଲ୍ୟର ଅଧିକାରୀ; ନନ୍ଦିକେଶ୍ୱରୀ ବା ଗଙ୍ଗେଶ୍ୱର କାହାରି ପ୍ରତି ସେ ଅବିଚାର କରିନାହାନ୍ତି । କୌଣସି ଆଦର୍ଶର ଅନୁଧାବନ କରି କୌଣସି କ୍ଷେତ୍ରରେ କଳାତ୍ମକ ଭାରସାମ୍ୟ ହରାଇ ବସିଥିବା ପରିଦୃଷ୍ଟ ହୁଏନାହିଁ । ସବୁଠାରୁ ବଡ଼ କଥା, ପାଠକ ପ୍ରଥମ କରି ରାଧାନାଥଙ୍କ କାବ୍ୟରେ ଉତ୍କଳ-ପ୍ରକୃତିର ସାକ୍ଷାତ ଲାଭକଲା । ମହେନ୍ଦ୍ରରୁ ମେଘାସନ ଯାଏଁ ସବୁ ପାହାଡ଼, ସବୁ ନଦୀ, ସବୁ ବଣ ଓ ସମସ୍ତ ପ୍ରାକୃତିକ ବୈଚିତ୍ର୍ୟର ବର୍ଣ୍ଣନା ସେ ପ୍ରସଙ୍ଗ କ୍ରମେ କରିଯାଇଛନ୍ତି । ଉତ୍କଳ ପ୍ରକୃତିର ଏପରି ରୂପାୟନ ତାଙ୍କ ପୂର୍ବରୁ ଆଉ କେଉଁ ଓଡ଼ିଆ କବି କରିଥିବାର ଦୃଷ୍ଟାନ୍ତ ନାହିଁ । ସେ ବର୍ଣ୍ଣନା ଥିଲା ଆବେଗପୂର୍ଣ୍ଣ । ବାସ୍ତବିକ ରାଧାନାଥ ଉତ୍କଳ-ପ୍ରକୃତି ସହିତ ଏକାତ୍ମ ହୋଇଯାଇଥିଲେ, ଯେଉଁଥିପାଇଁ ଶ୍ରଦ୍ଧାରେ ତାଙ୍କୁ ସାହିତ୍ୟଶାସ୍ତ୍ରୀମାନେ ପ୍ରକୃତି-କବି କହିଆସୁଛନ୍ତି । ଓଡ଼ିଶାର ଇତିହାସ ଓ ଐତିହ୍ୟ ପ୍ରତି ରାଧାନାଥଙ୍କର ଥିଲା ଗଭୀର ଶ୍ରଦ୍ଧା ଓ ସମ୍ମାନ । ଅତୀତର ମୂକ-କୀର୍ତ୍ତିଗୁଡ଼ିକ ସହିତ ଆବେଗ-ସମ୍ବନ୍ଧରୁ ତାଙ୍କ କାବ୍ୟ-ଭାଷା ପ୍ରସ୍ତୁତ ହୋଇଥିଲା । ଏହାକୁ ତାଙ୍କର ଉତ୍କଳ-ଚେତନା କୁହାଯାଇପାରେ । ଉତ୍କଳ ତାଙ୍କ ଭିତରେ ଯେଉଁ ସ୍ୱାଭିମାନ ସୃଷ୍ଟି କରିଥିଲା – ତାହା ତାଙ୍କର କବି-ସତ୍ତାକୁ

ଭିନ୍ନ ଉଚ୍ଚତା ପ୍ରଦାନ କରିଥିଲା । ତାଙ୍କର ସ୍ୱାଭିମାନ ସଂଚରି ଯାଇଥିଲା ପାଠକର ହୃଦୟକୁ ଏବଂ ଓଡ଼ିଆଙ୍କ ପ୍ରାଣରେ ଜାତୀୟତାବୋଧର ନବ-କଲ୍ଲୋଳ ସୃଷ୍ଟି ହୋଇଥିଲା । ମାତୃଭୂମି ଓ ମାତୃଭାଷା ପ୍ରତି ଅନୁରାଗ ତାଙ୍କୁ ଦୁଃଖ ଦେଇଥିଲା । ଗଭୀର ମମତ୍ୱ ବଶତଃ ସେ ଲେଖିଥିଲେ– "ଦେବୀ ବୀଣାପାଣି କେଉଁ ପାପ ଫଳେ / କରୁଣା ତୋହର ଊଣା ଏ ଉତ୍କଳେ ।" ଜାତୀୟତାବୋଧ ଓଡ଼ିଆ ପାଠକଙ୍କ ପାଇଁ ପ୍ରକୃତରେ ଥିଲା ଏକ ନୂତନ ଚେତନା, ଯାହା ସେମାନେ କେବେ ବି ସାହିତ୍ୟ ପାଠରୁ ପାଇନଥିଲେ । ବାସ୍ତବିକ, ସାହିତ୍ୟ ସୃଷ୍ଟିର ଯେ ଏକ ଜାତୀୟ ଦାୟ ଅଛି– କବି ରାଧାନାଥ ହିଁ ତାହା ପ୍ରଥମେ ପ୍ରତିପାଦନ କରିଯାଇଛନ୍ତି । ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ, ସେ ପାଠକଙ୍କୁ ପ୍ରତ୍ୟେକ ରଚନାରେ ଇତିହାସ ସଚେତନ କରି ଉଦ୍‌ବୁଦ୍ଧ କରିଯାଇଛନ୍ତି । ଯଥା–

"ଗୋଦାବରୀଠାରୁ ଗଙ୍ଗାଯାଏ ବ୍ୟାପୀ,<br>
କୀର୍ତ୍ତିମାଳା ଯା'ର ବିରାଜେ ଅଦ୍ୟାପି ।<br>
ଏକାମ୍ରେ କୋଣାର୍କେ ଯା'କୀର୍ତ୍ତି ଭାସ୍ୱର,<br>
ଯୋଗ୍ୟ ପୁତ୍ର ତୁମ୍ଭେ ସେହି ଉତ୍କଳର ।"

ରାଧାନାଥ ସୌନ୍ଦର୍ଯ୍ୟଗ୍ରାହୀ ଥିଲେ । ପ୍ରକୃତି ଭିତରେ ଲୁକ୍‌କାୟିତ ଅନିର୍ବଚନୀୟ ସୁଷମାର ସେ ଥିଲେ ଆବିଷ୍କାରକ । କିନ୍ତୁ ତାଙ୍କ ଉପାସ୍ୟ ଶ୍ରୀ ସହିତ ଧୀ ଏକାମ୍ ହୋଇଯାଇଥିଲା । ଶାସ୍ତ୍ରୀୟ ଚିନ୍ତାଧାରା ଓ ରୋମାଣ୍ଟିକ୍ ଭାବପ୍ରବଣତା ତାଙ୍କ ସୌନ୍ଦର୍ଯ୍ୟ ଦୃଷ୍ଟିକୁ ନୂଆ ମୂଲ୍ୟ ଦେଇଥିଲା । ନିଜ ଅନୁଭବ ବ୍ୟକ୍ତ କରିବାକୁ ଯାଇ ସେ କହିଛନ୍ତି– "ସୁନ୍ଦରେ ତୃପ୍ତିର ଅବସାଦ ନାହିଁ / ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।" ସୌନ୍ଦର୍ଯ୍ୟ ଗ୍ରହଣ କରିବାକୁ ସେ ଚିରକାଳ ଉନ୍ମୁଖ ଥିଲେ ଏବଂ ତାଙ୍କ ଗଦ୍ୟ ଓ ପଦ୍ୟ ସବୁଥିରେ ସେଇ ଉନ୍ମୁଖତା ପ୍ରକାଶପାଇଛି ।

ଅଧିକାଂଶ କାବ୍ୟରେ ପ୍ରସଙ୍ଗକ୍ରମେ ରାଧାନାଥ ଓଡ଼ିଶାର ବହୁ ସ୍ଥାନର ନାମୋଲ୍ଲେଖ କରିଥିବା ପରିଲକ୍ଷିତ ହୁଏ । କେବଳ ନାମ ନୁହେଁ, ତା' ସହିତ ସ୍ଥାନର ମାହାତ୍ମ୍ୟ, ଐତିହାସିକ ତାତ୍ପର୍ଯ୍ୟ ଓ ଭୌଗୋଳିକ ବୈଚିତ୍ର୍ୟ ସେ ବର୍ଣ୍ଣିଛନ୍ତି । ଏହା ତାଙ୍କର ରୁଚି । ତେଣୁ ତାଙ୍କ କାବ୍ୟ-ପାଠକର ଉତ୍କଳ ଭ୍ରମଣ ହୋଇଯାଏ, ଭୌଗୋଳିକ ପରିଚୟ ହୋଇଯାଏ ମଧ୍ୟ । ବର୍ଣ୍ଣନାଗୁଡ଼ିକ କେତେକ କ୍ଷେତ୍ରରେ ବିସ୍ତାରିତ ହୋଇଥିଲେ ହେଁ ତଥ୍ୟଭିତ୍ତିକ ହୋଇଥିବାରୁ ଜ୍ଞାନ-ପ୍ରଦ ।

କ୍ରମେ ରାଧାନାଥ କଥା-କାବ୍ୟ ରଚନା ମୋହ ତ୍ୟାଗ କରିଥିବା ଦେଖାଯାଏ । ଉତ୍କଳ-ପ୍ରକୃତି ସହିତ ତାଙ୍କର ସଂପର୍କ ଘନିଷ୍ଠ ହେଲା । ତାଙ୍କ କଳା ଓ କଳ୍ପନାକୁ ନୂଆ ରୂପ ଓ ମାଧୁରୀ ପ୍ରଦାନ କଲା ପ୍ରକୃତି । ପ୍ରକୃତିଠାରେ ତାଙ୍କ କାବ୍ୟାତ୍ମା ଶାନ୍ତି ଓ ସନ୍ତୋଷ ଖୋଜିଲା, ନିଜ ଦୁଃଖସୁଖ ବଖାଣିବାର ସ୍ପୃହା ରଖିଲା । ସୌନ୍ଦର୍ଯ୍ୟବୋଧ, ପ୍ରକୃତିପ୍ରେମ ଓ ଉତ୍କଳ ଚେତନାର ଅପୂର୍ବ ସମାବେଶରେ କ୍ରମେ ଅଧିକ ପରିପୁଷ୍ଟ ଓ ପ୍ରବୀଣ ହେଲା ରାଧାନାଥଙ୍କ କାବ୍ୟ-ବ୍ୟକ୍ତି । ସେହି– 'ଚିରଦିନ ଦୁଃଖ ପ୍ରହାରେ ଜର୍ଜର' କାବ୍ୟ-ବ୍ୟକ୍ତିର ସ୍ୱପ୍ରକାଶ ଘଟିଛି 'ଚିଲିକା'ରେ, ଯେଉଁଠି ପାଠକ ରାଧାନାଥଙ୍କ ସମଗ୍ର ବ୍ୟକ୍ତିତ୍ୱକୁ ସାକ୍ଷାତ କରେ ଓ ଉଦ୍‌ବୁଦ୍ଧ ହୁଏ । ସମ୍ଭବତଃ 'ଚିଲିକା' ହିଁ ରାଧାନାଥ-ପ୍ରତିଭାର ଉଜ୍ଜ୍ୱଳ ନିଦର୍ଶନ । ସେଇ ଅମର ରଚନାକୁ ରାଧାନାଥଙ୍କ ଶ୍ରେଷ୍ଠ କବିତା ଓ ଭାରତୀୟ କାବ୍ୟ-ଜଗତ୍‌ର ଏକ ଅମୂଲ୍ୟ ରତ୍ନଭାବେ ଗ୍ରହଣ କରିବାରେ ବାଧା ନାହିଁ ।

ତେବେ ରାଧାନାଥ କେବଳ ଭାବପ୍ରବଣ ସୌନ୍ଦର୍ଯ୍ୟାନୁରାଗୀ କବି ନଥିଲେ । ସେ ଥିଲେ ତତ୍‌କାଳୀନ ଓଡ଼ିଶାର ଜଣେ ସ୍ୱାଭିମାନୀ ନାଗରିକ ଓ ବୌଦ୍ଧିକ ବ୍ୟକ୍ତି । ସେ ସମୟର ସାଂସ୍କୃତିକ ଓ ପ୍ରଶାସନିକ ଅବସ୍ଥା ଦେଖି ସେ କ୍ଷୁବ୍ଧ ହୋଇଥିଲେ । ସମକାଳୀନ ଓଡ଼ିଆଙ୍କ ମୂର୍ଖତା, ସ୍ୱାର୍ଥପରତା ଓ ଗୌଣ ମନୋଭାବ ତାଙ୍କୁ ଦୁଃଖିତ କରିଥିଲା । ତାଙ୍କ ସ୍ୱାଭିମାନୀ କବି-ପ୍ରାଣ ବିଦ୍ରୋହ କରି ଉଠିଥିଲା । ପ୍ରାଣର ବିଦ୍ରୋହ ରୂପାୟିତ ହୋଇଥିଲା 'ବିଦ୍ରୂପ'ରେ । ସେ ଲେଖିଲେ– 'ବଗବାଗ' । ଓଡ଼ିଶାର ଅନ୍ୟତମ ବରପୁତ୍ର ପଠାଣି ସାମନ୍ତଙ୍କ ସଦୃଶ ମହାନ୍ ବୁଦ୍ଧିଜୀବୀଙ୍କ ପାଇଁ ସ୍ୱତନ୍ତ୍ର ସମ୍ମାନର ବ୍ୟବସ୍ଥା କରାଯିବା ଉଚିତଥିଲା । ଅତି ସାଧାରଣ ତୋଷାମୋଦପ୍ରିୟ ସ୍ୱାର୍ଥପରମାନଙ୍କୁ ଦିଆଯାଉଥିବା ଉପାଧି-ପ୍ରଦାନ

ଉସବରେ ତାଙ୍କୁ ବସିଥିବା ଦେଖି ରାଧାନାଥଙ୍କୁ ଆଉରି ବାଧୁଥିଲା। ସେଇ କ୍ଷୋଭ ଓ ବିଦ୍ରୂପ 'ଦରବାର'ରେ ପ୍ରକାଶିତ। ଆଧୁନିକ ବିଦ୍ରୂପ ରଚନାର ସମ୍ଭବତଃ 'ଦରବାର' ହିଁ ପ୍ରଥମ କାଳି। କିନ୍ତୁ ଗାଳି-ବର୍ଷଣ କରିବା କିମ୍ବା ବିଦ୍ରୂପ କରିବା ରାଧାନାଥଙ୍କ ସ୍ୱଭାବର ଅନୁକୂଳ ନଥିଲା। ତାଙ୍କ ଭିତରେ ପୂରି ରହିଥିଲା ଗୀତିମୟତା। ତେଣୁ 'ବିଦ୍ରୂପ' ଅବସରରେ ମଧ୍ୟ ତାଙ୍କ କାବ୍ୟ-ବ୍ୟକ୍ତି ପାଠକର ସାମ୍ନାକୁ ଆସିଯାଏ ଓ ଆତ୍ମପକ୍ଷକୁ ଉପହାସ କରି କହିଯାଏ– "ଥୋଇ ଏ ମୁକୁର ତୁମ୍ଭ ଆଗେ ଭାଇ / ନିଜ ମୁଖ ମୁଁ କି ନିଜେ ଦେଖୁ ନାହିଁ"। (ଦରବାର)

କିନ୍ତୁ ପୁରୋଦୃଷ୍ଟି ନଥାଇ କୌଣସି କବି ବଡ଼ହୋଇନାହାନ୍ତି। ପୁରୋଦୃଷ୍ଟି ବଳରେ ସମସାମୟିକ ଘଟଣାବଳୀକୁ ଅତିକ୍ରମ କରି କବି ପାଠକଙ୍କୁ ଭବିଷ୍ୟ ଆଡ଼କୁ ଟାଣିନିଅନ୍ତି, ମାର୍ଗଦର୍ଶନ କରାଇ ଦିଅନ୍ତି। ରଚନା ସମୂହର ଅନୁଶୀଳନ କଲେ ଜାଣିହୁଏ ଯେ ପୁରୋଦୃଷ୍ଟି ସଦା-ସର୍ବଦା ରାଧାନାଥଙ୍କ କବି-କର୍ମର ସହଚର ଥିଲା। ତା'ର ସୁପ୍ରକାଶ ଲକ୍ଷ୍ୟ କରିହୁଏ ତାଙ୍କ ଅସଂପୂର୍ଣ୍ଣ କାବ୍ୟ 'ମହାଯାତ୍ରା'ରେ। ଅମିତ୍ରାକ୍ଷର ଛନ୍ଦରେ ଲିଖିତ ଏହି କାବ୍ୟଟିକୁ ରାଧାନାଥ-ପ୍ରତିଭାର ଶ୍ରେଷ୍ଠ ନିଦର୍ଶନ ବୋଲି କେତେକ ଯେ ମନେକରନ୍ତି ତାହା ହିଁ ପ୍ରମାଣ କରେ କବିଙ୍କ ନବତମ ପ୍ରୟୋଗର ସଫଳତା।

ରାଧାନାଥଙ୍କ ପ୍ରତ୍ୟେକଟି ସୃଷ୍ଟିର ଯେ ତାତ୍ପର୍ଯ୍ୟ ରହିଛି– ଏହା ସ୍ୱୀକାର କରିବାରେ କାହାରି ଆପତ୍ତି ନାହିଁ ନିଶ୍ଚୟ। ଏ ସମସ୍ତ ସୃଜନ-ଗୌରବ ଭିତରେ କବିଙ୍କ ରଚନା 'ତୁଳସୀ ସ୍ତବକ' ଓ 'ମେଘଦୂତ'କୁ ଭୁଲିଗଲେ ଚଳିବ ନାହିଁ। ଆକ୍ଷରିକ ନୁହଁ, ମୁକ୍ତ ଅନୁବାଦର ଏକ ସଫଳ ନିଦର୍ଶନ ରୂପେ ସେସବୁ ଗ୍ରହଣୀୟ।

ପୁନର୍ଜାଗରଣର ପ୍ରଧାନ ତପସ୍ୱୀ, ଆଧୁନିକ ଓଡ଼ିଆ ସାହିତ୍ୟର ପଥପ୍ରଦର୍ଶକ ଓ ଯୁଗ-ପ୍ରବର୍ତ୍ତକ କବିବର ରାଧାନାଥଙ୍କ ସୃଷ୍ଟିପ୍ରତିଭାର ଆକଳନ ସହଜ କଥା ନୁହେଁ। ବହୁଚର୍ଚ୍ଚିତ ହେଲେ ହେଁ ତଥାପି ତାଙ୍କ କାବ୍ୟ-ବ୍ୟକ୍ତିର ବୈଶିଷ୍ଟ୍ୟ ଅନାଲୋ[illegible] ରହିଥିବା ପରି ମନେହୁଏ। କବିତାର ଧାରାରେ ଯେତେ ପରିବର୍ତ୍ତନ ସଂସାଧିତ ହେଉ ନା [illegible]– କାଳକାଳକୁ 'ଓଡ଼ିଶାର ଗୌରବ କେତନ' ରୂପେ ରାଧାନାଥ ସ୍ମରଣୀୟ ହୋଇ ରହିବେ। କବି ରାଧାନାଥ କାଳଜୟୀ ସ୍ରଷ୍ଟା। ତାଙ୍କ ସୃଷ୍ଟି-ସମ୍ଭାରର ପ୍ରାସଙ୍ଗିକତା ଓ ଆବେଦନ ଆଗାମୀ ଶତାବ୍ଦୀମାନଙ୍କରେ ମଧ୍ୟ ରହିବ।

ରାଧାନାଥ ଜଣେ ସଚେତନ ଗଦ୍ୟ ଲେଖକ ଥିଲେ, ଯଦିଓ ସେ କ୍ଷେତ୍ରରେ ତାଙ୍କର ଉଚ୍ଚାଭିଳାଷ ନଥିଲା। କିନ୍ତୁ 'ବିବେକୀ' ଓ 'ଇତାଲୀୟ ଯୁବା' ରଚନା କରି ସେ ଯେ ଆଧୁନିକ ଗଦ୍ୟର ଆଦର୍ଶ ସୃଷ୍ଟି କରିଯାଇଛନ୍ତି– ଏହା ସ୍ୱୀକାର କରିବାକୁ ହେବ। ପ୍ରସ୍ତୁତ ସଂସ୍କରଣରେ ତାଙ୍କର ସମସ୍ତ ଗଦ୍ୟରଚନା ସହିତ ସେ କବି ଗଙ୍ଗାଧରଙ୍କୁ ଲେଖିଥିବା 'ଚିଠି-ପତ୍ର' ସଂଯୋଜିତ ହୋଇଛି। ଗବେଷକ ଓ ପ୍ରଖ୍ୟାତ ଭାଷାବିଜ୍ଞାନୀ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ସୌଜନ୍ୟରୁ ଏ ପତ୍ରାବଳୀ ପାଇଥିବାରୁ ତାହାଙ୍କୁ କୃତଜ୍ଞତା ଜଣାଉଛୁ। ଚିଠି-ପତ୍ର ଗୁଡ଼ିକ ମନ୍ମୟ ରଚନା ଶ୍ରେଣୀର। ଅନୁଭବ ଓ ପ୍ରଜ୍ଞାର ସ୍ୱାକ୍ଷରରେ ବିମଣ୍ଡିତ ହେବା ସହିତ ସେଗୁଡ଼ିକ ତଥ୍ୟପୂର୍ଣ୍ଣ ହୋଇଥିବା ପରିଲକ୍ଷିତ ହୁଏ। ରାଧାନାଥଙ୍କ 'ଚିଠିପତ୍ର' ଆଧୁନିକ ଓଡ଼ିଆ ଚିଠି-ସାହିତ୍ୟର ସର୍ବପ୍ରଥମ ନିଦର୍ଶନ ରୂପେ ଗୃହୀତ ହେବ ଏବଂ ମାନ୍ୟତା ପାଇବ।

ପ୍ରସ୍ତୁତ 'କବିବର ରାଧାନାଥ ଗ୍ରନ୍ଥାବଳୀ'ର ଏହି ସୁଶୋଭନ ନବୀନ ସଂସ୍କରଣ ପ୍ରକାଶନରେ ସମଧିକ ଆଗ୍ରହ ପ୍ରଦର୍ଶନ କରିଛନ୍ତି ପ୍ରକାଶକ ଶ୍ରୀଯୁକ୍ତ ଅଭିରାମ ମହାପାତ୍ର। ଗ୍ରନ୍ଥଟିକୁ ଯଥାସମ୍ଭବ ସୁନ୍ଦର ଓ ନିର୍ଭୁଲ କରିବା ଦିଗରେ ସେ ଯତ୍ନବାନ୍ ହୋଇଛନ୍ତି। ଆଧୁନିକ କମ୍ପ୍ୟୁଟର୍-ପ୍ରୟୋଗ ଯୋଗେ ଅକ୍ଷରସଜ୍ଜା ପ୍ରସ୍ତୁତ ହୋଇଛି– ଏଥିପାଇଁ ଶ୍ରୀ ମହାପାତ୍ରଙ୍କୁ ସାଧୁବାଦ।

କଟକ
୧୪।୯।୧୯୯୪

ଡକ୍ଟର ପ୍ରସନ୍ନ କୁମାର ମିଶ୍ର

ତାପିତ ଜନଙ୍କର ଅଟ ଶରଣ,
ହେ ନୀରଦ ! ରଖ ମୋ ପ୍ରିୟା ଜୀବନ ।
ଧନପତି ଶାପେ ମୁଁ କାତର ଅଚି,
ମୋ ବିନା କାତର ସେ ବରଯୁବତୀ । ୫୨ ।
ଯାଅ ମୋ ବାର୍ତ୍ତା ଘେନି ହେ ନୀରଧର !
ଅଳକା ନଗରୀକି,* ଯହିଁ ସୁନ୍ଦର
ବହିରୁଦ୍ୟାନେ ଛନ୍ତି ଶଶିଶେଖର,
ସେ ଶଶିକରେ ଧଳା ସୌଧନିକର । ୫୬ ।
ତୁମ୍ଭ ଦର୍ଶନେ ପାନ୍ଥବନିତାକୁଳ—
ହୃଦୟେ ବିକସିବ ଆଶାମୁକୁଳ ।
ଧରିଣ ବେଣୀ ବାମ କରକମଳେ
ଦେଖିବେ ଗତି ତୋର ଅମ୍ବର-ତଳେ । ୬୦ ।
କେ କ୍ରୂର ଏକାକରେ ବିଦେଶେ ଥାଇ
ବନିତାମନ ଖେଦହ୍ରଦେ ବୁଡ଼ାଇ
ନିଶ୍ଚିନ୍ତରେ ରହଇ କହ ମୋ ବିନା ?
ପରାଧୀନର ଘନ ! ଏ ଗତି ସିନା ! ୬୪ ।
ଅନୁକୂଳ ସମୀର ଧୀରେ ବହଇ,
ବାମେ ଚାତକ ମନୋହର କୂଜଇ ।
ତୋହୋ ଉଦୟେ ତାର ଗର୍ବ ଉଦିତ,
ଆକାଶ ଝଙ୍କାରଇ ଏଣୁ ତା ଗୀତ । ୬୮ ।
ତୋହ ଆଗମ କାଳେ ଯାହା ଉପୁରି,
ତୋତେ ସେବିବେ ସେହି ବକପଙ୍କତି ।
ଧବଳ ପୁଣ୍ଡରୀକମାଳ ପରାୟେ
ଦିଶିବେ ଅଭିରାମ ତୋ ଶ୍ୟାମକାୟେ । ୭୨ ।
ନିଶ୍ଚେ ନାଗରୀ ମୋର ଥିବ ଜୀବନେ,
ବାସର ଗଣୁଥିବ ଉତ୍ସୁକ ମନେ ।
ଅବଳାମନଃପଦ୍ମ ଆଶାମୃଣାଳେ
କଷ୍ଟେ ରହଇ ଘୋର ବିରହକାଳେ । ୭୬ ।
ଶ୍ରୁତିମଧୁର ତୋର ନାଦ ଗଭୀର
(ଭୂଷଇ ଯେହୁ ଧରାଦେବୀ ଶରୀର
ନବ କନ୍ଦଳୀଦଳ ଶ୍ୟାମଳ ବାସେ)
ମିଳାଇବ ତୋ ସଙ୍ଗୀ ଆଣି ଆକାଶେ । ୮୦ ।
ରାଜହଂସେ ଶୁଣିଲେ ତୋର ଗର୍ଜନ,
ନୀଳାମ୍ବୁ ମାନସକୁ ଯିବେ ବହନ ।
ପାଥେୟରୂପେ ଘେନି ମୃଦୁ ମୃଣାଳ
କୈଳାସ ଯାଏ ସଙ୍ଗେ ଯିବେ ମରାଳ । ୮୪ ।
ପ୍ରିୟସଖା ତୋହର ଏ ଧରାଧର,
ଦେହେ ଧରନ୍ତି ରାମଚନ୍ଦ୍ର-ପୟର ।
ତେଣୁ ଅଟନ୍ତି ଗିରି ଅତି ପବିତ୍ର,
ମିତ୍ର ତୁମ୍ଭର ଗିରି ନୋହେ ବିଚିତ୍ର । ୮୮ ।

ଉଭୟେ ଯଥାକାଳେ ହେଲେ ମିଳିତ,
ପ୍ରେମଅଶ୍ରୁପ୍ରବାହ ବହେ ତ୍ୱରିତ ।
ଅମ୍ବୁଦ ! ଗିରିଠାରୁ ମାଗ ମେଲାଣି,
କାତର ଅଟଇ ମୁଁ, ରଖ ମୋ ବାଣୀ । ୯୨ ।
ତୁମ୍ଭ ଗମନଯୋଗ୍ୟ ମାର୍ଗ ନିର୍ଦ୍ଦେଶ
କରଇ, ଅବଧାନ ହେଉ ବିଶେଷ ।
ଆତ୍ମସନ୍ଦେଶ ପୁଣି କହିବି ପରେ,
ଶୁଣି ହରଷ ଜାତ ହେବ ଅନ୍ତରେ । ୯୬ ।
କ୍ଲାନ୍ତ ହୋଇଲେ ଗିରିଶୃଙ୍ଗେ ରହିବ,
କ୍ଷୀଣ ହୋଇଲେ ନଦୀବାରି ସେବିବ ।
ଏଣୁ ହୋଇବ ସୁଖେ ତୁମ୍ଭ ଗମନ,
କଷ୍ଟ ନୋହିବ ମୋହୋ ବାଞ୍ଛା ପୂରଣ । ୧୦୦ ।
ଘନ ! ବେତସପୂର୍ଣ୍ଣ ଏ ସ୍ଥାନ ତ୍ୟଜି
ବେଗେ ଗଗନେ ଉଠ ଧୀରେ ଗରଜି ।
ଚକିତ ନୟନରେ ସିଦ୍ଧରମଣୀ
ଅନାଇବେ ତୁମ୍ଭଙ୍କୁ ବିସ୍ମୟ ମଣି । ୧୦୪ ।
ପରସ୍ପରେ ଭାଷିବେ "ଦେଖ ଗୋ ସଖି !
କି ଅବା ବାୟୁ ଗିରିଶୃଙ୍ଗ ହରଇ !"
ଅନନ୍ତରେ ଅମ୍ବୁଦ ! ଦିଗବାରଣେ
ତ୍ୟଜିବେ କର-ଗର୍ବ ତୁମ୍ଭ ଦର୍ଶନେ । ୧୦୮ ।
ବଲ୍ମୀକଶିଖାଗ୍ରରୁ ହୋଇ ବାହାର
ସୁରେନ୍ଦ୍ରଚାପ-ଲତା ଦିଶେ ବାହାର ।
ରତନକାନ୍ତି-ସ୍ରୋତ ଯେହ୍ନେ ଉଚ୍ଛଳେ,
କି ଶୋଭା ପାଉଅଛି ତୋ ଉରସ୍ଥଳେ । ୧୧୨ ।
ଏହି ରୂପେ ଜଳଦ, କୃଷ୍ଣ ଦେହରେ
ମୟୂର-ପୁଚ୍ଛ-ଶୋଭା ନୟନ ହରେ ।
ଯାହା ରୂପେ ମଜ୍ଜିଲା ଗୋପିକା ମନ
ତାହା ଉପମା ପାଇଁ ତୁମ୍ଭେ ଭାଜନ । ୧୧୬ ।
କ୍ଷମତା ଅଛି ତୋର ଶସ୍ୟବର୍ଦ୍ଧନେ,
ଏଣୁ କୃଷକବାଳା ସ୍ଥିର-ଲୋଚନେ
ଦେଖିବେ ତୋ ମୋହନ ଛବି ଆକାଶେ
ଅନଭିଜ୍ଞ ସରଳା ନେତ୍ର ବିଳାସେ । ୧୨୦ ।
ମାଳକ୍ଷେତ୍ରକୁ ଘନ ! କର ପ୍ରୟାଣ,
ହଳ-କର୍ଷଣ-ଜାତ ମୃତ୍ତିକା ଘ୍ରାଣ ।
ତୋଷିବ ନାସା ତୋର, ତହୁଁ ଉତ୍ତରେ
ଲଘୁଗତି ଗମିବୁ ଶୂନ୍ୟସାଗରେ । ୧୨୪ ।
ଗିରିଙ୍କର ତୁ ଅଟୁ ମଙ୍ଗଳକାରୀ,
ନିଭାଉ ଦାବାନଳ ବିସର୍ଜି ବାରି ।
ଶ୍ରାନ୍ତ ହୋଇଲେ ଆମ୍ରକୂଟ ସଦନେ
ଗଲେ, ସେବିବେ ଗିରି ଅତି ଯତନେ । ୧୨୮ ।

* ଅଳକା — କୁବେରପୁରୀ ।

କ୍ଷୁଦ୍ରେ ଭଦ୍ରଭବନେ ନେଲେ ଶରଣ,
ନିରାଶ ନ ହୁଅନ୍ତି ଯାଚକଗଣ।
ଗିରି ମହତ, ପୁଣି ତୁ ହିତକର,
ମସ୍ତକେ ସ୍ଥାନ ତୋତେ ଦେବେ ଭୂଧର। ୧୩୨।
ସେକାଳେ ଦାବାନଳ ଗିରି-କାନନେ
ଜଳୁଥିବ ହେ ଯେବେ ବାରିବର୍ଷଣେ
ନିଭାଇବ ଅନଳ, ସଂଶୟ ନାହିଁ,
ମହତ ଲୋକର ଏ ସୁରୀତି ଭାଇ। ୧୩୬।
ମହତ ଜନଠାରେ କରୁଣା କଲେ,
ସେ କରୁଣା ନ ଯାଏ କେବେ ବିଫଳେ।
ଆଶୁ ସୁଫଳ ଜାତ ନିଶ୍ଚେ ହୁଅଇ,
କରୁଣାପ୍ରଭା ପୁଣି ପ୍ରତିଫଳଇ। ୧୪୦।
ରସାଳଦ୍ରୁମ ହେମକାନ୍ତି ଫଳରେ
ବିନତ ହୋଇଥିବ ଗିରି ପ୍ରାନ୍ତରେ।
ତୁ ପୁଣି ଗିରିଶିରେ ବସିବୁ ଯାଇଁ,
ଦୂରୁଁ ସୁରମିଥୁନ ବିମାନେ ଥାଇ। ୧୪୪।
ମନୋରଞ୍ଜନ ଗିରି ଶୋଭା ଦେଖିବେ,
ନଗକୁ ପୃଥ୍ୱୀସ୍ତନ ବୋଲି ମଣିବେ।
ସୁମେରୁ ଶିରେ ନୀଳକାନ୍ତ ଶିଖର
ପରାଯେ ଦିଶୁଥିବ ତୋ କଳେବର। ୧୪୮।
ବନେଚରଲଳନା କେଳି-ନିଳୟ
ରାଜଇ କୁଞ୍ଜ, ତହିଁ ଅଳ୍ପ-ସମୟ
ରହି, ଆସାର ଦାନେ ନବ ଜୀବନ
ତରୁ ଦଳକୁ ଦେଇ, କର ଗମନ। ୧୫୦।
ଏଥୁଅନ୍ତେ ଅଗ୍ରତେ ରେବା* ଦିଶଇ,
ଶିଳା-ବିଷମ ବିନ୍ଧ୍ୟ ପାଦେ ବହଇ।
କରିଅଙ୍ଗେ ରଚିତ ଭୂତି ଯେସନ,
ତେସନେ ଏ ତଟିନୀ ରମ୍ୟଦର୍ଶନ। ୧୫୬।
ଅବଗାହନ୍ତି ବନ୍ୟ ବାରଣେ ତହିଁ,
ଗଣ୍ଡରୁ ମଦ ସ୍ରବି ଜଳେ ମିଶଇ,
ତେଣୁ ନର୍ମଦାନୀର ନିତ୍ୟ ବାସିତ,
ଆଦରେ ସେ ସଲିଳ ନେବ ତ୍ୱରିତ। ୧୬୦।
ସବଳକାୟା ତୋର ଦେଖି ପବନ
ତୁଚ୍ଛ ନ ମଣି ଦେବେ ପୁଷ୍ପେ ଆସନ,
ସର୍ବତ୍ର ବଳହୀନ ହତ ଆଦର,
ବଳୀ ଲଭଇ ମାନ ରୀତି ଭବର। ୧୬୪।
ହରିତ ପୀତ ନୀପ କୁସୁମେ ବସି
ମଧୁ ପିଅଇ ଭୃଙ୍ଗ ସୁରସେ ରସି,
ଭ୍ରମନ୍ତି ମୃଗୀକୁଳ ସଦା ଆତୁର,
ଭୁଞ୍ଜନ୍ତି ନବଜାତ ତୃଣ ଅଙ୍କୁର। ୧୬୮।

ପ୍ରମତ୍ତ ମତଙ୍ଗଜ ଶୁଣ୍ଡେ କାନନେ
ଘେନଇ ଭୂମି-ଗନ୍ଧ ଶ୍ୱାସ ପବନେ,
ଚାତକେ ଊର୍ଦ୍ଧ୍ୱମୁଖେ ତରୁ ଉପରେ
ଅମ୍ବୁକଣ ଯାଚନ୍ତି ଆରତ ସ୍ୱରେ। ୧୭୨।
ତୋହୋ କୃପାରେ ଧରାଦେହ ଶୀତଳ
ନବପଲ୍ଲବମୟ ତରୁ ସଫଳ,
ସାନନ୍ଦ ତୃଣଜୀବୀ ଏକାଳ ପାଇ
ଶୁଝିବେ ତୋହୋ ଋଣ ମାର୍ଗ ଦର୍ଶାଇ। ୧୭୬।
ବାରିଶୀକର ଯେବେ ତୋ ଦେହୁଁ ଖସେ
ଉଡ଼ନ୍ତି ଚାତକାଳି ନଭେ ରଭସେ,
ଏକାଳେ ସିଦ୍ଧଗଣ ବନିତା ସଙ୍ଗେ
ଚାତକପଂକ୍ତି ଦେଖି ହସିବେ ରଙ୍ଗେ। ୧୮୦।
ସରଳା ମନୋରମା ସିଦ୍ଧରମଣୀ
ଅଙ୍ଗୁଳିନିର୍ଦ୍ଦେଶରେ ବଳାକା ଗଣି,
ଚାହୁଁଥିବେ କାନ୍ତକୁ ସ୍ନିଗ୍ଧ ଲୋଚନେ,
ଏକାଳେ ବଳାହକ! ଭୀଷଣ ସ୍ୱନେ। ୧୮୪।
ପୂରିବ ବନଭୂମି, କୌତୁକେ ଭୟେ
ଭିଡ଼ିବେ କାନ୍ତ ତନୁ ବାଳା ନିଶ୍ଚୟେ,
ସିଦ୍ଧ ମାନସ ତହୁଁ ତୁଷ୍ଟ ହୋଇବ
ତୋ ଆଗମନକୁ ସେ ଶ୍ଳାଘ୍ୟ ମଣିବ। ୧୮୮।
ହେ ନୀଳନୀରଧର! ତୁମ୍ଭ ଗମନେ
ବିଳମ୍ବ ଉପୁଜିବ ଭାଳଇ ମନେ,
ତୁଙ୍ଗ ପର୍ବତରାଜି ବର୍ତ୍ମେ ରାଜିତ
ଅର୍ଜ୍ଜୁନପୁଷ୍ପ ବାସେ ଦେହ ବାସିତ। ୧୯୨।
ସେ ସୌରଭ କର୍ଷଣେ ଲୁବ୍ଧ ହୃଦୟ
ଗମିବ ଶୈଳେ ଘନ! ବହୁ ସମୟ,
କଳାପି-କୁଳ-କେକା ତା'ପରେ ଶୁଣି
ମନେପଡ଼ିବ ପୁଣି ମୋର ମାଗୁଣି। ୧୯୬।
ଦଶାର୍ଣ୍ଣ ଦେଶ ଘନ! ଦିଶେ ତା ପରେ,
ଏ ଦେଶ ସମାକୁଳ ବଟଦ୍ରୁମରେ,
ଦ୍ରୁମେ ବାୟସ-ବାର ନୀଡ଼ ରଚନ୍ତି,
ଏକାରଣେ ପ୍ରାବୃଟେ ସୁଖେ ରହନ୍ତି। ୨୦୦।
କେତକ-ଜାଳବୃତି ତହିଁ କାନନ
କେତକ ପରାଗରେ ପାଣ୍ଡୁ ବରଣ,
ଜମ୍ବୁପାଦପ ନତ ଶ୍ୟାମଳ ଫଳେ
ସରସେ କଳହଂସ ନାଦ ଉଛଳେ। ୨୦୪।
ତହୁଁ ଉତ୍ତରେ ଯିବ ନଭ ସନ୍ତରି
ଅଗ୍ରେ ବିଦିଶା ନାମେ ରମ୍ୟ ନଗରୀ,
ରମିବ ତୋ ନୟନ ସେ ରାଜଧାନୀ
ଅଟଇ ଧରାତଳେ ନଗରୀରାଣୀ। ୨୦୮।

* ରେବା – ନର୍ମଦା।

ବେତ୍ରବତୀ ତଟିନୀ ତହିଁ ବହଇ
ନୀଳଊର୍ମିବିଳାସେ ନେତ୍ର ହରଇ,
ଭ୍ରୂଭଙ୍ଗୀ-ବିମୋହନ ବାମା-ବଦନ
ଚୁମ୍ବଇ କାନ୍ତ ଯେହ୍ନେ ରସେ ମଗନ । ୨୧୨ ।
ବେତ୍ରବତୀବଦନ ଚୁମ୍ବି ହରଷେ
ତୁ ପୁଣି ନବଘନ ! ମଜ୍ଜିବୁ ରସେ,
ଲାଜେ ଲଳନା ଯେହ୍ନେ ଅସ୍ଫୁଟ ସ୍ୱନେ
ନଦୀ ଭାଷିବ ତୋତେ କଳନିସ୍ୱନେ । ୨୧୬ ।
ଶୋହେ ଅଦୂରେ ପୁଣି ନୀଚଶିଖରୀ
ସୁଖେ ବିଶ୍ରାମ ଲଭ ତହିଁ ଉଭରି,
ଗିରି ତୋ ସଙ୍ଗ ପାଇ ରାଜିବ ଭଲେ,
ରୋମାଞ୍ଚ ପ୍ରକଟିବ କଦମ୍ବଛଳେ । ୨୨୦ ।
ଶିଳାସଦନେ ତହିଁ ନବନାଗରୀ
ବାନ୍ଧି ପ୍ରାଣନାଥଙ୍କୁ ଭୁଜବଲ୍ଲରୀ,
ପାଶରେ ସନ୍ତୋଷନ୍ତି ରମଣମନ
ଶରୀର ପରିମଳ ବହେ ପବନ । ୨୨୪ ।
ନୀଚ ଗିରିରୁ ଚାରୁ ନିର୍ଝର ଝରେ
ପୁଷ୍ପବନ ବିରାଜେ ବେନି ପାର୍ଶ୍ୱରେ,
ଯୂଥିକଫୁଲଜାଳ ତହିଁ ଫୁଟଇ
ମନୋଜ୍ଞ ସୌରଭରେ ନାସା ତୋଷଇ । ୨୨୮ ।
ଫୁଲ ତୋଳନ୍ତି ତହିଁ ମାଳିନୀଦଳ
ସ୍ୱେଦେ ମଳିନ ତାଙ୍କ କର୍ଣ୍ଣ-ଉତ୍ପଳ,
ତୋର ଶୀତଳ ଛାୟା ହେଲେ ପତିତ
ଊର୍ଦ୍ଧ୍ୱେ ଚାହିଁବେ ବାଳା ହୋଇଣ ପ୍ରୀତ । ୨୩୨ ।
ଉତ୍ତରଦେଶ ପ୍ରତିଗମନେ ମନ
ଉଜ୍ଜୟିନୀକି ଗଲେ ମାର୍ଗବର୍ଦ୍ଧନ
ନିଶ୍ଚେ ହୋଇବ, ଜାଣୁଅଛି ବିଶେଷ,
ମାତ୍ର ସେଠାବେ ସୁଖଲାଭ ଅଶେଷ । ୨୩୬ ।
ସୌଧଉତ୍ସଙ୍ଗେ ତହିଁ ପୁର-ଅଙ୍ଗନା
ମନ୍ଦେ ବିହରୁଥିବେ ହଂସଗମନା,
ଦେଖି ତୋ ଗାତ୍ରେ କ୍ଷଣପ୍ରଭା ସ୍ଫୁରଣ
ଚକିତ ହେବ ବାମା ବାମନୟନ । ୨୪୦ ।
ଚାରୁ ଚାହାଣି ଭ୍ରୂରୁଶୋଭିନୀଙ୍କର
ବିଦ୍ୟୁ୍ୟ ଝଟକେ ପୁଣି ଚଞ୍ଚଳତର,
ନ ଦେଖି ଯିବୁ ଯେବେ ତହିଁ ତୁ, ଘନ !
ବୃଥା ଜନମ ତୋର, ବୃଥା ଜୀବନ । ୨୪୪ ।
ମାର୍ଗେ ନିର୍ବିନ୍ଧ୍ୟା ନଦୀ ତୋ ପ୍ରଣୟିନୀ
ଅଳି-ଶ୍ୟାମଳ-ଚାରୁ-ଊର୍ମିମାଳିନୀ,
ଊର୍ମିକ୍ଷୋଭେ ଆକୁଳ ମରାଳସ୍ୱନ
ଶୁଭିବ କାଞ୍ଚିଶବ୍ଦ ପ୍ରାୟେ ମୋହନ । ୨୪୮ ।
ଆବର୍ତ୍ତରୂପେ ନାଭି ନେତ୍ର ମୋହିବ
ତୋଠାରେ ନାରୀ ସ୍ନେହ ସେହି ସୂଚିବ,
ରସିକ ତୁ ଜଳଦ ! କହିବି କେତେ ?
କାମିନୀ ପ୍ରକାଶନ୍ତି ଭାବ ସଙ୍କେତେ । ୨୫୨ ।
କୃଶ ସଳିଳରେଖା ବେଣୀ ପରାୟେ
ଦିଶଇ, ପୁଣି ନଦୀ ପୁଳିନକାୟେ,
ସ୍ଖଳିତ ତୀର-ତରୁ-ପର୍ଣ୍ଣ-ନିବହ
ତେଣୁ ପାଣ୍ଡୁର କାନ୍ତି ନଦୀବିଗ୍ରହ । ୨୫୬ ।
ଶୈବଳିନୀ ବିରହଦଶା ପ୍ରକାଶି
ସୂଚିବ ତୋଠାରେ ସେ କେଡ଼େ ପ୍ରୟାସୀ,
ଯେଉଁ ଉପାୟେ ପୂର୍ବରୂପ ଲଭିବ
ନିଦାନେ ସେ ବିଧାନ ଘନ କରିବ । ୨୬୦ ।
ଅଗ୍ରେ ବିରାଜେ ତାର ଅବନ୍ତୀ ପୁରୀ
ଯେ ପୁରେ ଉଦୟନ କଥା ମାଧୁରୀ,
ଗଳ୍ପପ୍ରିୟ ସ୍ଥବିର ତୁଣ୍ଡୁ ଝରଇ,
ତା ପରେ ଉଜ୍ଜୟିନୀ ପୁରୀ ରାଜଇ । ୨୬୪ ।
ବର୍ଣ୍ଣି ନୁହଇ ତାର ଚାରୁ ସୁଷମା;
ଭୂତଳେ ନାହିଁ ଘନ ! ତାହା ଉପମା,
ସ୍ୱର୍ଗର କାନ୍ତିମାନ ଖଣ୍ଡ ସ୍ଖଳିତ
ପ୍ରାୟେ ଦିଶଇ ପୁରୀ ସୌଧରାଜିତ । ୨୬୮ ।
ଯହିଁ ପ୍ରତ୍ୟୁଷେ ସିପ୍ରାନଦୀ* ପବନ
ଦ୍ୱିଗୁଣିତ କରଇ ହଂସ କୂଜନ,
ପ୍ରଫୁଲ୍ଲ ସରସିଜ ସୌରଭ ହରି
ସେବଇ ଅଙ୍ଗନାଙ୍କୁ ମନ୍ଦେ ସଞ୍ଚରି । ୨୭୨ ।
କ୍ଳାନ୍ତ କାମିନୀକୁଳ ନିଶି ଜାଗରେ
ଅନୁକୂଳ ସମୀର ସେ କ୍ଳାନ୍ତି ହରେ,
ନିତମ୍ବ ନୀଳାମ୍ବର ମନ୍ଦେ ଧୂନାଇ
ଦୟିତ ପ୍ରାୟେ କେତେ ଚାଟୁ କରଇ । ୨୭୬ ।
କେଶ ସଂସ୍କାର ଧୂପ ଗବାକ୍ଷ ଦ୍ୱାରେ
ବାହାରି ମିଶୁଥିବ ତୋହୋ କାୟାରେ,
ନାଚିବେ ତୋ ଦର୍ଶନେ ଗୃହ ମୟୂର
ଗଭୀର କେକାରବେ ପୂରିବ ପୁର । ୨୮୦ ।
କୁସୁମ-ଶୋଭି-ସୌଧପୃଷ୍ଠ ଆସନେ
ପଥଶ୍ରମ ଶମିବୁ ସୁଖ-ଶୟନେ,
ସୀମନ୍ତିନୀ ପଦାଙ୍କ ତହିଁ ଉପରେ
ଦେଖିବୁ, ହର୍ମ୍ୟେ ଯେହ୍ନେ ରକ୍ତିମା ଝରେ । ୨୮୪ ।
ଉଜ୍ଜୟିନୀ ସନ୍ନିଧେ ଶିବସଦନ
ଅତି ପବିତ୍ର ଧାମ ଲୋକପାବନ,
ଗନ୍ଧବତୀ ତଟିନୀ ବହଇ ପାଶେ
କୁବଳୟ ସୁରଭି ସମୀର ଶ୍ୱାସେ । ୨୮୮ ।

* ସିପ୍ରା – ଆଧୁନିକ ନାମ ସପରା ।

ଜଳେ କ୍ରୀଡ଼ନ୍ତି ତହିଁ କେତେ ସୁନ୍ଦରୀ
ନୀଳ ତମାଳେ ଯେହ୍ନେ ସ୍ୱର୍ଣ୍ଣବଲ୍ଲରୀ,
ହରକଣ୍ଠ ବରଣ ରାଜେ ତୋ ଦେହେ
ଚାହିଁବେ ଶିବଗଣ ତୁମ୍ଭଙ୍କୁ ସ୍ନେହେ ।୨୯୨।
ପୂର୍ବକଥିତ ମହାକାଳ ନିଳୟେ (୧)
ହେବୁ ପ୍ରବେଶ ଯେବେ ଆନ ସମୟେ,
ନଳିନୀସଖାଙ୍କର ଅସ୍ତଗମନ –
ଯାଏ ଅନାଇ ତହିଁ ରହିବୁ ଘନ ! ୨୯୬।
ସନ୍ଧ୍ୟା ଆଗମେ ତୋର ଧ୍ୱନି ଗଭୀର
ପୂଜାପଟହ ପ୍ରାୟେ ମନ୍ଦ୍ରେ, ମନ୍ଦିର
ଝଙ୍କାରି ସନ୍ତୋଷିବ ଶିବଶ୍ରବଣ,
ଶ୍ଳାଘ୍ୟ ସଫଳ ତହୁଁ ହେବ ଗର୍ଜନ ।୩୦୦।
ମନ୍ଦିର ପାର୍ଶ୍ୱେ ବାରବାଳାନିକର
ରତ୍ନ-ଛାୟା-ଖଚିତ ଚାରୁ ଚାମର,
ଘେନିଣ ବିଞ୍ଚୁଥିବେ ଲୀଳାବ୍ୟଞ୍ଜନେ;
ସିଞ୍ଚିବୁ ତାଙ୍କୁ ନବ ସଲିଳ-କଣେ ।୩୦୪।
ଭ୍ରମର-ରାଜି-ରମ୍ୟ ନୟନେ ଚାହିଁ
ତୋ ମନ ନୀରଧର ! ନେବେ ଭୁଲାଇ,
ତୋ ଶ୍ରବଣ ତୋଷିବ ରମ୍ୟ ଶିଞ୍ଜିତ
ବୀଣା-ଝଙ୍କାର-ଗଞ୍ଜି ମଧୁସଙ୍ଗୀତ ।୩୦୮।
ମଣ୍ଡଳାକାରେ ଘେରି ତରୁ କାନନ
ଶୋଭିବ ଉଚ୍ଚେ ତହିଁ ଘୋଟି ଗଗନ,
ସନ୍ଧ୍ୟା ସିନ୍ଦୂରରାଗେ ହୋଇ ରଞ୍ଜିତ
ଦିଶିବ ନବ-ଜବା ପ୍ରାୟେ ଲୋହିତ ।୩୧୨।
ନର୍ତ୍ତନ କାଳେ ଶିବ ତୋତେ ଚାହିଁବେ
ଆର୍ଦ୍ର-ଗଜ-ଅଜିନ ଲାଳେ ତ୍ୟଜିବେ,
ଭବସୁନ୍ଦରୀ ଦେଖି ତୋର ଭକତି
ସୁଆଶିଷ କରିବେ ହରଷେ ସତୀ ।୩୧୬।
ରଜନୀ କାଳେ ଦାଣ୍ଡେ କେତେ ଯୁବତୀ
ଉଦ୍‌ବେଗେ ଯାଉଥିବେ କାନ୍ତବସତି,
ଘୋର ଅନ୍ଧାରେ ମାର୍ଗ ଦିଶିବ ନାହିଁ
କମ୍ପିବେ ଭୟେ ଚଉଦିଗେ ଅନାଇ ।୩୨୦।
ତୋ ସଙ୍ଗେ ଥିବ ପ୍ରଭାମୟୀ ତଡ଼ିତ
ଏକାଳେ ବାଳାଙ୍କର ସାଧିବ ହିତ,
ଘନ ! ମୁଞ୍ଚିବୁ ନାହିଁ ଭୀମ ନିନାଦ
ନାଦ ମଣିବେ ବାମା ଘୋର ପ୍ରମାଦ ।୩୨୪।
କ୍ଳାନ୍ତ ହେଲେ ତଡ଼ିତ ଚିରନର୍ତ୍ତନେ
ଥୋଇବୁ ଅବଳାକୁ କ୍ରୋଡ଼ଶୟନେ,
ଚନ୍ଦ୍ରଶାଳାରେ ଯାପି ଶେଷ ରଜନୀ
ଶେଯ ତ୍ୟଜିବୁ ଶୁଣି କପୋତଧ୍ୱନି ।୩୨୮।

ଫିଟାଇ ପୂର୍ବ ଆଶା ସ୍ୱର୍ଣ୍ଣତୋରଣ
ମୌକ୍ତିକବୃନ୍ଦ ପଦ୍ମ କରେ ବହନ,
ବୁଣିବ ରଙ୍ଗେ ଯେବେ ଉଷାରଙ୍ଗିଣୀ
ସେ ସମୟେ ଛାଡ଼ିବୁ ତୁ ଉଜ୍ଜୟିନୀ ।୩୩୨।
ପ୍ରାତେ ଖଣ୍ଡିତା ପାଶେ ନାୟକ ଆସି
ସ୍ନେହେ ପୋଛନ୍ତି ନେତ୍ରସଲିଳରାଶି,
ଏଣୁ ନଳିନୀ-ପଦ୍ମ-ନୟନ-ନୀର
ପୋଛିବେ ନିଜ କରେ କାନ୍ତ ମିହିର ।୩୩୬।
ଏକାଳେ ତାଙ୍କ ମାର୍ଗ ରୋଧିବୁ ନାହିଁ
ଗତି କରିବୁ ବହୁ ଦୂରରୁ ଥାଇ,
ମାର୍ଗ ରୋଧିଲେ ନିଶ୍ଚେ ରୋଷିବେ ହରି
ଏଣୁ କରିବୁ କାର୍ଯ୍ୟ ମୋ ବାଣୀ ସ୍ମରି ।୩୪୦।
ସୁଗଭୀର ଗମ୍ଭୀରା ନଦୀ ଜୀବନ
ନିତ୍ୟ ପ୍ରସନ୍ନ ଯେହ୍ନେ ମହତ ମନ,
ଦେଖିବୁ ଘନ ! ନଦୀ-ଦର୍ପଣ-ତଳେ
ନିଜ ମୂରତି ବହୁ ଯୋଜନ ତଳେ ।୩୪୪।
ମାର୍ଜିତ ହୀରା-ଖଣ୍ଡ ପ୍ରାୟେ ସଫରୀ
ଚଞ୍ଚଳେ ଖେଳୁଥିବେ ନୀରେ ସଞ୍ଚରି,
ତଟିନୀ ନେତ୍ରମାଳ ପ୍ରାୟେ ଦିଶିବେ
ଉନ୍ମେଷ କଲା ପ୍ରାୟେ ବୁଡ଼ି ଭାସିବେ ।୩୪୮।
ତୀରଜଘନୁଁ ନୀଳ ସଲିଳବାସ
ସ୍ରସ୍ତ ଦେଖି ଅନ୍ତରେ ହେବ ଉଲ୍ଲାସ,
ଲମ୍ବମାନ ହୋଇଣ ନଦୀ ଉପରେ
ଧରିବ ନୀଳବାସ ବେତସ କରେ ।୩୫୨।
ବନ୍ଧୁ ମାଗୁଣି ପୁଣି ହେଲେ ସ୍ମରଣ
ହୋଇବ ଅତି କଷ୍ଟେ ତହୁଁ ଗମନ,
ଯେହୁ ଲଭିଛି ଘନ ! ସେ ରସ ସ୍ୱାଦ,
ପ୍ରସ୍ତୁତ ରସେ ବିଘ୍ନ ଗଣେ ପ୍ରମାଦ ।୩୫୬।
ସମ୍ପ୍ରତି ଦେବଗିରି ଦିଶେ ଅଗ୍ରତେ
ବେଗେ ଯାଅ ଜଳଦ ! ସେ ପରବତେ,
ନବ-ଆସାର-ସିକ୍ତ ମୃତ୍ତିକା-ବାସେ
ସୁରଭି ଶୀତ ବାୟୁ ସନ୍ତାପ ନାଶେ ।୩୬୦।
ଶୁଣ୍ଢେ ପିଅନ୍ତି ଦନ୍ତୀ ସେ ସମୀରଣ
ତହୁଁ ଉପୁଜି ସ୍ୱନ ତୋଷେ ଶ୍ରବଣ,
ଉଡ଼ୁମ୍ବର ଫଳ ଏ ବାୟୁ ପରଶେ
ପରିପୂର୍ଣ୍ଣ ହୁଅଇ ମଧୁର ରସେ ।୩୬୪।
ସେ ନଗେ ନିବସନ୍ତି କାନ୍ତ କୁମାର, (୨)
ପୁଷ୍ପମିଶ୍ରିତ-ବ୍ୟୋମ-ଗଙ୍ଗା-ଆସାର,
ବରଷି ଧୋଇବୁ ତୁ ସେ କଳେବର,
ପୁଲକିତ ଚମ୍ପକ ପ୍ରାୟେ ସୁନ୍ଦର ।୩୬୮।

୧ । ଉଜ୍ଜୟିନୀରେ ମହାକାଳ ମହାଦେବଙ୍କ ମନ୍ଦିର ଅବସ୍ଥିତ ।
୨ । କୁମାର – କାର୍ତ୍ତିକେୟ ।

ବାସବୀ ସୈନ୍ୟଦଳ ରକ୍ଷା କାରଣେ
ଶଙ୍କର ବିସର୍ଜିଲେ ତେଜ ଦହନେ,
ତହୁଁ ସମ୍ଭବି ଶୂର ଶିଖିବାହନ
କୋଦଣ୍ଡ ଧରି କଲେ ଦୈତ୍ୟ ନିଧନ।୩୭୨।
ବାହନ-ଶିଖୀ ବସିଥିବ ଶିଖରେ
ଧଳା ଅପାଙ୍ଗ ହର-ଚନ୍ଦ୍ରମାକରେ,
ପୁତ୍ରବତ୍ସଳା ଯାର ଚନ୍ଦ୍ରକ ଘେନି
ଭୂଷନ୍ତି ହୈମବତୀ ଶ୍ରବଣ ବେନି।୩୭୬।
କାନ୍ତି-ବଳୟ ଚାରୁ ଚନ୍ଦ୍ରକ ଧରି
ଦିଶନ୍ତି ରମ୍ୟତର ହର-ସୁନ୍ଦରୀ,
ନୀଳ କୁମୁଦ ପ୍ରାୟେ ବର୍ହ ଲୟଇ
ଇନ୍ଦ୍ରନୀଳ ଭୂଷଣ ଶୋଭା କଳଇ।୩୮୦।
ନୀରଦ! ମନ୍ଦ୍ର-ନାଦ ଶୁଣି ତୋହର
ନାଚିବ ପୁଚ୍ଛ ଟେକି ସେ ଶିଖିବର;
ଶୈଳକନ୍ଦରେ ପଶି ସେ ନାଦ ପୁଣ
ଗମ୍ଭୀର ପ୍ରତିନାଦେ ହେବ ଦ୍ୱିଗୁଣ।୩୮୪।
କୁମାର ପୂଜା ଅନ୍ତେ ନଭପ୍ରାଙ୍ଗଣେ
ଉଠ ଜୀମୂତ-ଇନ୍ଦ୍ର! ମନ୍ଦ୍ରନିଃସ୍ୱନେ;
ହେମବିମାନଚାରୀ ସିଦ୍ଧ ଯୁଗଳ
ପଥ ଛାଡ଼ିବେ ଜଳ ଭୟେ ବିହ୍ୱଳ।୩୮୮।
ସିଦ୍ଧରଙ୍ଗିଣୀ-ବୀଣା-ତନ୍ତ୍ରୀ ଝଙ୍କାର
ଶୁଣି ଲଭିବ ନଭେ ମୁଦ ଅପାର;
ରନ୍ତି-ଭୂପତି (୧) କୀର୍ତ୍ତି ଗୋମତୀ ନଈ
ସଲିଳରେଖା ଏବେ ନେତ୍ର ହରଇ।୩୯୨।
କଜ୍ଜଳନିଭ ଅଟେ ତୋହୋ ଶରୀର,
ବିମଳ ଶୁଭ୍ର କାନ୍ତି ଗୋମତୀ ନୀର,
ଅବତରିବୁ ଯେବେ ସେ ନଦୀ ଜଳେ,
ସୁରେ ଦେଖିବେ ଥାଇ ଗଗନ ତଳେ।୩୯୬।
ବିଦ୍ୟାଧରୀନିକର ଦୂରୁଁ ଚାହିଁବେ
ବାମନୟନା ନିଶ୍ଚେ ଏହା ମଣିବେ,
ଧରା ଉପରେ ମୋତିହାର ରାଜିତ
ସେ ହାର ମଧ୍ୟେ ଇନ୍ଦ୍ରମଣି ଗୁମ୍ଫିତ।୪୦୦।
ଯାଅ ଉତ୍ତରେ ରମ୍ୟ ଗୋମତୀ ତରି
ବରବର୍ଣ୍ଣିନୀ ଦଶପୁର ନାଗରୀ,
କୁତୂହଳେ ଚାହିଁବେ ତୋତେ ଆକାଶେ
ମୋହିବେ ଚିତ୍ତ ତୋର ମଧୁର ହାସେ।୪୦୪।
ପକ୍ଷ୍ମବିକ୍ଷେପ-ଜାତ ସ୍ନିଗ୍ଧ ନୀଳିମା
କଳିବ କୃଷ୍ଣସାର ପ୍ରଭା ଗରିମା,
କଳା ଡୋଳା ଲଳିତ ବାଳା ଲୋଚନେ
ଦିଶିବ କୁନ୍ଦଦଳେ ଭୃଙ୍ଗ ଯେସନେ।୪୦୮।
ବ୍ରହ୍ମାବର୍ତ୍ତେ (୨) ନଭେ ହୋଇ ଉଡ୍ଡୀନ
କୃଷୀ-ବଳଙ୍କୁ ଛାୟା ଦାନେ ତୋଷିଣ,
ତହୁଁ କୌରବକ୍ଷେତ୍ରେ ଯିବୁ ତ୍ୱରିତେ
ଧରା ଲୋହିତ ଯହିଁ କ୍ଷତ୍ରଶୋଣିତେ।୪୧୨।
ଗର୍ଜି ପ୍ରଚଣ୍ଡେ ସିଞ୍ଚି ଘନ ଆସାର
ଯେହ୍ନେ କମଳବଂଶ କରୁ ସଂହାର,
ଗାଣ୍ଡୀବୀ ସେହି ରୂପେ କୁରୁ ସମରେ
ସିଞ୍ଚିଲେ ନୃପକୁଳ ଆନନ ଶରେ।୪୧୬।
ସରସ୍ୱତୀ ସରିତ ସୁସ୍ୱାଦୁ ଜଳ
ସେବି ହୋଇବ ତୋର ହୃଦ ନିର୍ମଳ,
ସରସ୍ୱତୀ ମହିମା ଲୋକେ ବିଦିତ,
ସରସ୍ୱତୀ ମୋହିଲା ମୁଷଳି-ଚିତ୍ତ।୪୨୦।
ରେବତୀ ସଙ୍ଗେ ଯେହୁ ମଦିରାରସ–
ପାନେ ନିରତେ ହେଉଥିଲେ ହରଷ,
ବିମୁଖ ହୋଇଣ ସେ ଭାରତ ରଣେ
ବସିଲେ ଏ ତଟିନୀ ତୀର କାନନେ।୪୨୪।
କନଖଳ ପ୍ରଦେଶ (୩) ଛାଡ଼ି ଉତ୍ତରେ
କର ନୀରଦ! ଗତି ଖରେ ଅମ୍ବରେ,
ପର୍ବତରାଜ ହିମ-ପର୍ବତୁଁ ଯହିଁ
ଧବଳଗଙ୍ଗା ସ୍ରୋତ ଅବତରଇ।୪୨୮।
ସଗରବଂଶ-ସ୍ୱର୍ଗ-ସୋପାନ-ରାଜି
ପ୍ରାୟେ ଦିଶଇ ଗଙ୍ଗା ନଗେ ବିରାଜି,
ଧୂର୍ଜ୍ଜଟୀ ଜଟାଜୂଟେ ବହି ଝର୍ଝରେ
ଧରଇ ବାଳଚନ୍ଦ୍ର ତରଙ୍ଗ କରେ।୪୩୨।
ତହୁଁ ଭ୍ରୂକୁଟୀ ବହେ ଉମା ଆନନ
ରୁଷ୍ଟ ସପତ୍ନୀ-ସୁଖେ ସପତ୍ନୀ ମନ;
ଧବଳ ଫେଣ ଛଳେ ଜାହ୍ନବୀ ହସେ,
ଈର୍ଷା ଅନଳ ଜଳେ ଉମା ମାନସେ।୪୩୬।
ସ୍ୱଚ୍ଛ ସ୍ଫଟିକ ପ୍ରାୟେ ଜାହ୍ନବୀ ବାରି
ଆକାଶୁ ପିଇବୁ ତୁ କାୟା ପ୍ରସାରି,
ପିଅଇ ନୀର ସୁରକରୀ ଯେସନେ
ବକ୍ରଭାବରେ ଝୁଲୁଥିବ ଗଗନେ।୪୪୦।
ଲହରୀ ଖେଳୁଥିବ ମନ୍ଦ ଅନିଳେ
ପଡ଼ିବ ତୋର ଶ୍ୟାମଛବି ସଲିଳେ,
ଅସ୍ଥାନେ ଭାନୁସୁତା ଲହରୀ-ହାର
ମିଶିଲା ପ୍ରାୟେ ଶୋଭା ହେବ ଉଦାର।୪୪୪।

(୧) ରନ୍ତିଦେବଙ୍କ ଅନୁଷ୍ଠିତ ଗୋମେଧଯଜ୍ଞରୁ ଗୋମତୀ ଜାତ ହୋଇଥିବା କଥା ପୁରାଣରେ ପ୍ରସିଦ୍ଧ।
(୨) ବ୍ରହ୍ମାବର୍ତ୍ତ– ସରସ୍ୱତୀ ଓ ଦୃଷଦ୍ୱତୀ ନଦୀର ଅନ୍ତର୍ବର୍ତ୍ତୀ ପ୍ରଦେଶ।
(୩) କନଖଳ– ହରିଦ୍ୱାରର ଚତୁଷ୍ପାର୍ଶ୍ୱବର୍ତ୍ତୀ ପ୍ରଦେଶ।

ତୁଷାର-ଗୌର ହିମଗିରି ମସ୍ତକେ
ବସି ଶମିବୁ ମାର୍ଗ-ଶ୍ରମ ପୁଲକେ,
କସ୍ତୁରିକା-କୁରଙ୍ଗ ଅଙ୍ଗ ପରଶେ
ସୁରଭିତ ଶିଳା ସେ ଶୈଳ ଉରସେ । ୪୪୮ ।
ଶଶିଶେଖର-ଶ୍ୱେତ-ବୃଷ-ବିଷାଣ
ଦେହେ ଉତ୍‌ଖାତି ଯେହ୍ନେ ପଙ୍କପିଧାନ,
ମୂରତି ତୋର ନୀଳ କଜ୍ଜଳନିଭ
ଶିଖରେ ବିରାଜି ସେ ଶୋଭା ବଳିବ । ୪୫୨ ।
ସରଳ ଦ୍ରୁମେ ଯେବେ ଶାଖା ଘର୍ଷଣେ
ଜ୍ୱଳିବ ବହ୍ନି, ବାୟୁ ବହି ଭୀଷଣେ,
କନକକାନ୍ତି ଅଗ୍ନି ଶିଖା ଦାପିବେ,
ଗହ୍ୱରୁଁ ଚମରୀଙ୍କୁ (୧) ବେଗେ ତଡ଼ିବେ । ୪୫୬ ।
ଅନଳ ଯୋଗେ ଚାରୁ-ପୁଚ୍ଛ ଚାମର
ଜ୍ୱଳି କରିବ ତାଙ୍କୁ ତ୍ରାସେ କାତର,
ତେଣୁଁ ପଡ଼ିଲା ପ୍ରାୟେ ଦାବ-ଦହନ
ଦ୍ରୁମୁଁ ଦ୍ରୁମେ ଲଗନ ହେବେ ବହନ । ୪୬୦ ।
ବହ୍ନି ଉପରେ ସିଞ୍ଚି ନବ-ଆସାର
ଗିରି-ପ୍ରାଣୀ-ଜୀବନ କର ଉଦ୍ଧାର;
ଦୋଷହୀନ ଜନର ହେଲେ ବିପଦ
ବିପଦୁଁ ନିସ୍ତାରଇ ସାଧୁ ସମ୍ପଦ । ୪୬୪ ।
ଗାତ୍ରଭଙ୍ଗ ସକାଶେ ତହିଁ ଶରଭେ
ଶିଖରିଶୃଙ୍ଗେ ଡେଇଁଥିବେ ଗରବେ,
ଧରିବାପାଇଁ ତୋତେ ହେବେ ଉତ୍ସୁକ
ତ୍ୱରିତେ କରିବୁ ତୁ ତାଙ୍କୁ ବିମୁଖ । ୪୬୮ ।
ଅବହେଳେ ଧବଳ କରକା-ହାସେ
ପଳାଇବେ ଶରଭେ ଦୂରୁଁ ତରାସେ,
ନିଷ୍ଫଳ କର୍ମେ ଯାର ମନ ଦୀକ୍ଷିତ,
ପରଠାରେ ନିଶ୍ଚେ ସେ ହୁଏ ଲଜ୍ଜିତ । ୪୭୨ ।
ତ୍ରିଶୂଳୀ-ପଦ-ଚିହ୍ନ ତହିଁ ପ୍ରସ୍ତରେ
ବିମଣ୍ଡିତ କାନନଜାତ ପୁଷ୍ପରେ,
ଦେଖି ବାରିଦପତି ! କରିବୁ ନତି
ବିଫଳ ନୋହେ ଶିବପାଦେ ଭକତି । ୪୭୬ ।
ଗିରି-ନିବାସି-ମୁନି ହର ଚରଣ
ପୂଜନ୍ତି ନିତ୍ୟ ଶାନ୍ତିରସେ ମଗନ
ଏ ପାଦେ ଭକ୍ତି ଥିଲେ କଳୁଷ ନାଶ
ହୋଇ ସୁଖରେ ଅନ୍ତେ ସ୍ୱରଗେ ବାସ । ୪୮୦ ।
ଘନ କୀଚକରାଜି, ବାୟୁ-ପୂରିତ
ବଂଶୀ ବାଜିଲା ପ୍ରାୟେ ହୁଏ ନାଦିତ,
ତ୍ରିପୁର-ଜୟ-ଗୀତ ମଧୁର ସ୍ୱରେ
କିନ୍ନରୀ-କୁଳ-କଳ-କଣ୍ଠୁଁ ନିଃସରେ । ୪୮୪ ।
ତୋ ନାଦେ ମୁଖରିତ କନ୍ଦରବୃନ୍ଦ
ମୁଞ୍ଚିବ ମନ୍ଦ୍ର ନାଦ ଯେହ୍ନେ ମୁରଜ;
ସଂଗୀତ ଅଭିଳାଷ ବାମଦେବର
ଚରିତାର୍ଥ କରିଣ ଲଭିବୁ ବର । ୪୮୮ ।
ହିମାଦ୍ରି ତଟେ ସବୁ କରି ଦର୍ଶନ
ଶୀଘ୍ର କର ଉଦୀଚୀ ଅନୁସରଣ,
କ୍ରୌଞ୍ଚ-ରନ୍ଧ୍ର ଭେଦିଣ ଶୈଳଶରୀରେ
ଲଭିଲେ ରାମ ନିତ୍ୟ ଯଶଃ ମହୀରେ (୨) । ୪୯୨ ।
ମାନସରକୁ ବେଗେ ବରଷାଗମେ
ଏମାର୍ଗେ ହଂସେ ଯାନ୍ତି ଉଡ଼ି ସଂଭ୍ରମେ,
ତିର୍ଯ୍ୟକେ ରନ୍ଧ୍ର ଦେଇ ଉତ୍ତରେ ଯିବ,
ହଂସ ଅଗ୍ରତେ ଦେଖି ମାର୍ଗ କଳିବ । ୪୯୬ ।
ବଳିଛଳନ ବେଳେ ପ୍ରଭୁ ବାମନ
ଯେ ପାଦ ବିସ୍ତାରିଲେ ଘୋଟି ଗଗନ,
ସେ ପାଦ ବର ଶୋଭା ଲଭିବୁ ଭଲେ
ସେ ରନ୍ଧ୍ର ମାର୍ଗେ ଯେବେ ଯିବୁ ଚଞ୍ଚଳେ । ୫୦୦ ।
ତହୁଁ ଊର୍ଦ୍ଧ୍ୱେ ରାଜଇ କୈଳାସଗିରି
ନବ ପ୍ରଫୁଲ୍ଲ-ଶ୍ୱେତ-କୁମୁଦ-ଶିରୀ,
କିଅବା ରାଶୀଭୂତ ତ୍ର୍ୟମ୍ବକ-ହାସ,
ତାରାମାଳ ଚୁମ୍ବଇ ବ୍ୟାପି ଆକାଶ । ୫୦୪ ।
ଦୁର୍ଦ୍ଦଣ୍ଡ ଦଶଗ୍ରୀବ ରୋଷେ ହୁଂକାରି
ଝିଙ୍କିଲା ଶୈଳ ଯେବେ ଭୁଜ ପ୍ରସାରି,
ନାଗେ, ନରେ, ଅମରେ ଜନ୍ମିଲେ ତ୍ରାସେ
ମିଳିଲା ଅମ୍ବୁରାଶି ଉର୍ମି ଆକାଶେ । ୫୦୮ ।
ଗମ୍ଭୀର ବଜ୍ରଘୋଷେ ଘୋଷି କନ୍ଦର
ପଳାଇଲେ ଜୀମୂତେ ଛାଡ଼ି ଭୂଧର,
ଗର୍ଜିଲେ ପ୍ରଭଞ୍ଜନ, ହେଲା ଅନ୍ଧାର
ଉଡ଼ିଲା ସ୍ତୂପାକାର ସାନ୍ଦ୍ର ତୁଷାର । ୫୧୨ ।
ଆତଙ୍କେ ଗିରିବାସୀ ଗଉରୀ-ସାଇଁ-
ପାଦେ ଶରଣ ବେଗେ ପଶିଲେ ଯାଇଁ,
ହସିଲେ ତହୁଁ ପ୍ରଭୁ ଭକ୍ତ-ବତ୍ସଳ
ଅଚଳ ପୂର୍ବପରି ହେଲା ଅଚ । ୫୧୬ ।
ସୁରବନିତାବୃନ୍ଦ ନଭୋମଣ୍ଡଳେ
ଭ୍ରମନ୍ତି ଯେବେ, ଗିରିମୁକୁର-ତଳେ,
ପଡ଼ଇ ପ୍ରତିବିମ୍ବ ନେତ୍ରରଞ୍ଜନ;
ସେ ଦର୍ପଣେ ସ୍ୱମୁଖ ଦେଖିବୁ ଘନ । ୫୨୦ ।
ଦଳାଅଞ୍ଜନପ୍ରଭା ବୋଲା ପରାୟେ
ତୋ ଦେହ ନୀଳ-କାନ୍ତି ପ୍ରକାଶୁଥାଏ,

(୧) ଚମରୀ ଗୋ— ହିମାଳୟରେ ଏବଂ ତିବ୍ବତରେ ଅନେକ ଦେଖାଯାନ୍ତି ।
(୨) କ୍ରୌଞ୍ଚ-ରନ୍ଧ୍ର— ପରଶୁରାମଙ୍କ କାର୍ଯ୍ୟବିଶେଷ । ଏହା ସମ୍ଭବତଃ ଘୋଟିଏ ଟନେଲ୍ ।

ଧଳା କୈଳାସ ଦେହେ ହେଲେ ଲଗନ
ଦିଶିବ ଧରାଧର ଶୋଭା ଯତନ । ୫୨୪ ।
ଅମରେ ସ୍ଥିର ନେତ୍ରେ ଥିବେ ଅନାଇ
ଏଡ଼େ ବିଚିତ୍ର ଦୃଶ୍ୟ ଭୂତଳେ କାହିଁ ?
ନୀଳବସନେ ହଳିସ୍କନ୍ଧ ଯେସନ, (୧)
ଦିଶିବ ହରଶୈଳ ରମ୍ୟ ତେସନ । ୫୨୮ ।
ପାର୍ବତୀ କାନ୍ତ କର ଧରି ସ୍ୱକରେ
ପଦବ୍ରଜରେ ଚଢୁଥିବେ ଭୂଧରେ,
ସ୍ତମ୍ଭିତ କରି ନିଜ ସଲିଳରାଶି
ତଦ୍‌ଗତ ହୃଦୟରେ ଭକ୍ତି ପ୍ରକାଶି । ୫୩୨ ।
ଅଗ୍ରତେ ଗାତ୍ରଭଙ୍ଗେ ହୋଇ ଶୟାନ
ସେବିବୁ ଯେହ୍ନେ ଇନ୍ଦ୍ରନୀଳ ସୋପାନ;
ନଗେନ୍ଦ୍ରବାଳା ପଦ୍ମପାଦଯୁଗଳ
ତୁହ୍ମ ଦେହ ଧାରଣ ହେବ ସଫଳ । ୫୩୬ ।
ତହିଁ ସୁର ଯୁବତୀ ନିତ୍ୟ ଚପଳା
ଘଷି ତୋ ଦେହେ ଚାରୁହୀରକବଳା,
ତୋ ଶରୀରୁଁ ନିଃସୃତ ନୀର ଲଭିବେ
ଜଳଯନ୍ତ୍ର ପରାୟେ ତୋତେ ମଣିବେ । ୫୪୦ ।
ଛାଡ଼ି ନଦେବେ ଯେବେ ବାଳାନିକର,
ସଲିଳ ଦାନେ ଯେବେ ହେବ କାତର,
ମୁଞ୍ଚିବ ହେ ନୀରଦ ! ଗମ୍ଭୀର ନାଦ,
ଅବଳା ପଳାଇବେ ଗଣି ପ୍ରମାଦ । ୫୪୪ ।
ହେମକମଳଛନ୍ନ ମାନସ ନୀର
ଘେନି ହୋଇବ ତୋର ଚାରୁ ଶରୀର,
ସୁରେନ୍ଦ୍ର-କରି-କର ରଙ୍ଗେ ଘୋଡ଼ାଇ
ନବସଲିଳେ ତାର ପ୍ରୀତି ବଢ଼ାଇ । ୫୪୮ ।
ଶୀକରସୁଶୀତଳ ମନ୍ଦ ପବନେ
କମ୍ପାଇ କଳ୍ପତରୁ-ପଲ୍ଲବ ବନେ,
ସ୍ଫଟିକ-ଗୌର ତନୁ ସେ ମହୀଧରେ
ପ୍ରବେଶିବୁ ନୀରଦ ! ପରମାଦରେ । ୫୫୨ ।
ନାଗର ଉତ୍ସଙ୍ଗେ ଯେହ୍ନେ ନାଗରୀ
ସେ ଗିରି ଉରସେ ରମ୍ୟ ନଗରୀ,
ଜାହ୍ନବୀ-ଦୁକୂଳ ସ୍ରସ୍ତ ଜଘନେ,
ଅଳକା ଅଗ୍ରତେ ଦିଶେ ନୟନେ । ୫୫୬ ।
ଭବେ ଅତୁଳ ସେ ପୁରୀ ହେ
ନିଶ୍ଚେ ବିମୋହିତ, ହୋଇବ ତୋ ଚିତ୍ତ
ଦେଖି ତା ରୂପମାଧୁରୀ ହେ ।
ଜଳଧରକାଳେ ଘନ ନିକର
ଆବରି ଅଳକା ସୌଧ ଶିଖର । ୫୬୦ ।
କାମିନୀ-ଚିକୁର-ଶ୍ୟାମ ମୂରତି,
ମୁଞ୍ଚି ନବ ନୀର ବିନ୍ଦୁ ପଙ୍କତି,
ଅଳକା ଶିର ଭୂଷଇ ହେ,
ମୁକ୍ତାଖଚିତ, ରୁଚିର ରଚିତ,
ବାମା ଅଳକ ଜଳଇ ହେ । ୫୬୪ ।

□ □ □

## ଉ ତ୍ତ ର ମେ ଘ

( ରାଗ – କଳହଂସକେଦାର )

ଅଳକା ହର୍ମ୍ମ୍ୟେ ରାଜେ ନବ ଯୋଷିତ
ତୋ ଅଙ୍ଗେ ନୀରଧରସ୍ୱର୍ଣ୍ଣ ତଡ଼ିତ;
ଅଳକା ସୌଧେ ଚିତ୍ର ମୋହେ ନୟନ
ଇନ୍ଦ୍ର କୋଦଣ୍ଡ ତୋର ଅଙ୍ଗେ ଯେସନ । ୪ ।
ତୋ ସ୍ନିଗ୍ଧ ମନ୍ଦ୍ର ନାଦ ପରାଏ ତହିଁ
ମୁରଜ ମନ୍ଦ୍ରନାଦ ନିତ୍ୟ ସ୍ଫୁରଇ;
ଉଜ୍ଜ୍ୱଳ ମଣି-ରଶ୍ମି ପ୍ରାଙ୍ଗଣେ ତାର
ଯେସନେ ଗର୍ଭେ ତୋର ଶୁଭ୍ର ଆସାର । ୮ ।
ପୁଷ୍ପଭୂଷଣପ୍ରିୟ ନାଗରୀ ଦଳ-
କରେ ଶୋଭଇ ଯହିଁ ଲୀଳାକମଳ,
ଅଳକେ କୁନ୍ଦକଳି ରାଜେ ମୋହନ
ଲୋଧ୍ର ପରାଗେ ପାଣ୍ଡୁ ଚାରୁ ଆନନ । ୧୨ ।
ରମ୍ୟ ଶିରୀଷେ ଶୋହେ ଶ୍ରବଣ-ମୂଳ
ସୀମନ୍ତେ ଶୋହେ ନବ କଦମ୍ବ ଫୁଲ,
ବକୁଳମାଳ-ଶୋଭି ଘନ ଜଘନ
ମନ୍ଦାର-ଶୋଭି କେଶ ଚୁମ୍ବେ ଚରଣ । ୧୬ ।
ନିତ୍ୟ କୁସୁମ ଯହିଁ ତରୁନିକରେ
ନିତ୍ୟ ମୁଖର ମଧୁକର ଗୁଞ୍ଜରେ,
ରାଜହଂସ-ରସନା ସରସୀକୂଳ
ଫୁଲ୍ଲପଙ୍କଜ-ବ୍ରଜେ ନିତ୍ୟ ମଞ୍ଜୁଳ । ୨୦ ।
ଉଦ୍‌ଗ୍ରୀବ ହୋଇ ନିତ୍ୟ ଗୃହମୟୂର
ଗମ୍ଭୀର କେକାରବେ ପୂରନ୍ତି ପୁର,
ସୁଧାକର କିରଣେ ନିତ୍ୟ ତିମିର
ଦୂର ହୋଇ ପ୍ରଦୋଷ ଦିଶେ ରୁଚିର । ୨୪ ।
ଅଳକାରେ ଲୋକଙ୍କ ସୁଖରୁ ବହେ
ଆନ ପୀଡ଼ା ଅଭାବେ ଅନଙ୍ଗ ଦହେ,

(୧) ହଳୀ – ବଳରାମ

ଅନଙ୍ଗ ପୀଡ଼ା ପ୍ରତିକାର ପ୍ରଚୁର
ଅଛି ତହିଁ, ତେଣୁ ସେ ପୀଡ଼ା ମଧୁର । ୨୮ ।
ମାନ ବିହୁନେ ନାହିଁ ଆନ କଳହ,
ମାନଜ ବିନୁ ନାହିଁ ଆନ ବିରହ,
ଆନ ବୟସ ନାହିଁ ବିନା ଯୌବନ
ଏକତ୍ରେ ସର୍ବ ଋତୁ-ସୁଖ ମିଳନ । ୩୨ ।
କୁସୁମତାରକିତ ମଣି-ପ୍ରାସାଦେ
ମଧୁ ପିଅନ୍ତି ଯକ୍ଷେ ମନ ପ୍ରସାଦେ,
ଅବସର ଲଭିଣ ମୀନକେତନ
ପୁଷ୍ପ-ବିଶିଖେ ଅଙ୍ଗ ବିନ୍ଧେ ବହନ । ୩୬ ।
ବର ଯୁବତୀବ୍ରଜ ବସନ୍ତି ପାଶେ
ବାସଇ ସମୀରଣ ସୁରଭି ଶ୍ୱାସେ,
ମୁରଜ ମନ୍ଦ୍ରନାଦ ପୂରଇ ପୁର
କାମିନୀ କଳକଣ୍ଠ ଶୁଭେ ମଧୁର । ୪୦ ।
ମନ୍ଦାକିନୀ ପୁଳିନେ ମନ୍ଦାର ତଳେ
ଖେଳନ୍ତି ବାଳାବ୍ରଜ ବସି କୁଶଳେ,
ନିର୍ମଳ ବାରିବିନ୍ଦୁ ବହି ପବନ
ସେବନ ଛଳେ ବକ୍ଷ୍ର ପରଶେ ଘନ । ୪୪ ।
କନକ ସିକତାରେ ଲୁଚାଇ ମଣି
ଲୋଡ଼ନ୍ତି କଉତୁକେ ବରବରନୀ,
ରଙ୍ଗ ଅମ୍ବରେ ବପୁ ଶୋହେ ସୁନ୍ଦର
ରଙ୍ଗ ଅମ୍ବୁଜେ ଯେହ୍ନେ ପୀତ କେଶର । ୪୮ ।
କାମେ ଉନ୍ମତ୍ତ କାନ୍ତ ଦୁକୂଳ ହରେ
ସୁନ୍ଦରୀ ଦିଗମ୍ବରୀ ଥରେ ଲାଜରେ,
ସମ୍ମୁଖେ ରତ୍ନଦୀପ ଉଜ୍ଜ୍ୱଳ ଜଳେ
ନିର୍ବାଣ ଆଶେ ହିମରଜ ବିଫଳେ । ୫୨ ।
ଫିଙ୍ଗଇ ବରାଙ୍ଗନା ପ୍ରଦୀପ ପ୍ରତି
ବ୍ୟର୍ଥ ଯତନ ଦେଖି କୌତୁକୀ ପତି;
ଭାସନ୍ତି ପ୍ରେମନୀରେ ତହୁଁ ଉଭୟେ
ଭିଡ଼ନ୍ତି ପରସ୍ପର ଅଙ୍ଗ ନିର୍ଦ୍ଦୟେ । ୫୬ ।
ସରମେ ରସବତୀ ରମଣ ଚିତ୍ତ
ରସାଇ ଅନୁରାଗ କରେ ଦୀପିତ;
ସରମେ ଶଶି-ମୁଖୀ ମୁଖମାଧୁରୀ
ଧୈର୍ଯ୍ୟ ଅଙ୍କୁରକୁ ସେ କାମ କତୁରୀ । ୬୦ ।
ପଦ୍ମୋଦରସୋଦର ବର ବଦନେ
ଲାଜରାଗ ଉଜଳେ ରାଗ ରମଣେ,
ସୁନ୍ଦର ଦରସ୍ମିତ ତା ସଙ୍ଗେ ମିଶେ
କମଳେ ରବିବିଭା ତା ସରି କି ସେ ? । ୬୪ ।
ଜଳଦମାଳ ତହିଁ ପବନ ବଳେ
ତୁଙ୍ଗ ସୌଧ ଗବାକ୍ଷେ ପଶି ଚଞ୍ଚଳେ,
ତିନ୍ତାଇ ଭିତ୍ତି ଚିତ୍ର ପଳାନ୍ତି ତ୍ରାସେ,
ଧୂମରାଶି ପରାୟେ ଦିଶି ଆକାଶେ (୧) । ୬୮ ।
ସୂତ୍ର ଲମ୍ବିତ ଚନ୍ଦ୍ରକାନ୍ତି ନିକର
ଯହିଁ ନିଶିରେ ଲଭି ଚନ୍ଦ୍ରମା କର,
କରଇ, ମୁଞ୍ଚି ଜଳବିନ୍ଦୁ ବିମଳ
ଅଙ୍ଗନା ରତିଖିନ୍ନ ଅଙ୍ଗ ଶୀତଳ । ୭୨ ।
କୁବେର ଯଶଗୀତ ଗାଇ କୌତୁକେ
କଳକଣ୍ଠ କିନ୍ନର ଭ୍ରମନ୍ତି ସୁଖେ,
ଯକ୍ଷ ବିଳାସିଦଳ ବୈଭ୍ରାଜବନେ
ସୁରକାମିନୀ ସଙ୍ଗେ ଅନଙ୍ଗରଣେ । ୭୬ ।
ମାତନ୍ତି – ନାଦେ ପିକ, ନାଦେ ଭ୍ରମର
ଅଳଙ୍କାର ଝଙ୍କାର ମିଶେ ସୁନ୍ଦର,
ଲାଜେ ନିକୁଞ୍ଜେ ଥରେ କୁଞ୍ଜବଲ୍ଲରୀ
ଦୋଳେ ମଞ୍ଜୁଳେ ଫୁଲ୍ଲ ଫୁଲମଞ୍ଜରୀ । ୮୦ ।
ଅଭିସାରିକାକୁଳ କାନ୍ତ ସଦନେ
ନିଶି ଅନ୍ଧାରେ ଯହିଁ ଯାନ୍ତି ବିଜନେ,
କମ୍ପଇ ଅଙ୍ଗଲତା ବେଗେ ସାଧ୍ୱସେ
କୁଟିଳ କୁନ୍ତଳରୁ ମନ୍ଦାର ଖସେ । ୮୪ ।
ଚାହାଁନ୍ତି ଚଉଦିଗେ ଭୟେ ବିକଳ
ଖସଇ କର୍ଣ୍ଣ-ଶୋଭି ସ୍ୱର୍ଣ୍ଣ କମଳ,
ଘନ ଉରଜୁଁ ଛିଣ୍ଡି ମୁକ୍ତାହାର
ସୂଚଇ ପ୍ରାତେ ବାଳା-ନିଶି-ବେଭାର । ୮୮ ।
ଅଳକାପୁରେ ଛନ୍ତି ଶଶିଶେଖର
ଅଳି-ଶିଞ୍ଜିନୀ ଧନୁ କୁସୁମଶର,
ନ ଧରେ ତ୍ରାସେ, ତହୁଁ ଲାବଣ୍ୟମୟୀ -
ବାଳା-କଟାକ୍ଷ ତାର କାର୍ଯ୍ୟ କରଇ । ୯୨ ।
କାମିନୀ ଭ୍ରୂରୁ କାମ କୋଦଣ୍ଡ ପରି
କାମିନୀ ବାମନେତ୍ର ବିଶିଖ ସରି,
ଅନଙ୍ଗର ପ୍ରୟାସ ତେଣୁ ସଫଳ
ଅସ୍ତ୍ରେ କି କାର୍ଯ୍ୟ ଯାର ଅବଳା ବଳ । ୯୬ ।
ନବ ଦୁକୂଳ ନାନା ରାଗେ ରଞ୍ଜିତ,
ନେତ୍ର-ବିଳାସକର ମଧୁ ବାସିତ,
ସପଲ୍ଲବ କୁସୁମ, ରମ୍ୟ ଭୂଷଣ
ଅଳତା ଲଳିତାଙ୍ଗୀ ପାଦମଣ୍ଡନ । ୧୦୦ ।
କଳ୍ପତରୁ ଦେହରୁ ସବୁ ପ୍ରସୂତ
ଇଚ୍ଛାମାତ୍ରକେ ସବୁ ହୁଏ ପ୍ରସ୍ତୁତ,
ସେ ତରୁକୁଞ୍ଜେ ବସି କୁଞ୍ଜରଗତି
ଲେଖନ୍ତି ପ୍ରେମଲିପି ପ୍ରେମିକ ପ୍ରତି । ୧୦୪ ।
ଧନପତି (୨) ବସତି ଛାଡ଼ି ଉତ୍ତରେ
ଇନ୍ଦ୍ରଧନୁ-ତୋରଣ ନୟନ ହରେ,

(୧) ଦାର୍ଜିଲିଂରେ ଏହି ଦୃଶ୍ୟ ପ୍ରତ୍ୟକ୍ଷ ଦେଖାଯାଏ ।
(୨) ଧନପତି – କୁବେର ।

ସେ ଅଟେ ନୀରଧର ! ମୋର ନିଳୟ,
ଦୂରୁଁ ଦିଶଇ ଚାରୁ ସୁଷମାମୟ । ୧୦୮ ।
ତହିଁ ଉଦ୍ୟାନେ ରାଜେ ଶିଶୁମନ୍ଦାର,
ତା'ଠାରେ ପୁତ୍ରପ୍ରାୟେ ସ୍ନେହ ପ୍ରିୟାର,
କନକ-ପୁଷ୍ପ-ରାଜି ଶୋହେ ସ୍ତବକେ
ତରୁଣ ରବିକରେ ଚାରୁ ଝଟକେ । ୧୧୨ ।
ମରକତ ସୋପାନ ତହିଁ ସରସୀ
ନୀଳଘନବେଷ୍ଟିତ ଯେସନ ଶଶୀ,
ହେମକମଳକଳି ବହୁ ବିକସେ,
ନୀଳକାନ୍ତ ବୃନ୍ତରେ ଉଜ୍ଜ୍ୱଳ ହସେ । ୧୧୬ ।
ସୁଖେ ବସନ୍ତି ତହିଁ ହଂସ ସାରସ
ବର୍ଷାଗମେ ମାନସେ ନାହିଁ ମାନସ,
ବାରିବିହଙ୍ଗେ ନୀଳ ଲହରୀ ପରେ
ଦୋଳନ୍ତି, ସରୋବର ପୂରି ରାବରେ । ୧୨୦ ।
ସରସୀ-ତୀରେ ଇନ୍ଦ୍ରନୀଳ-ଶିଖର
କ୍ରୀଡ଼ା ପର୍ବତେ ରାଜେ କେଡ଼େ ସୁନ୍ଦର,
ସ୍ୱର୍ଣ୍ଣ-କଦଳୀ-ଦଳ ଚଉଦିଗରେ
ଶୋହେ ବିଜୁଳି ଯେହ୍ନେ ତୋ କଳେବରେ ।
ପ୍ରିୟା ବିହାର ସ୍ଥଳ ସେହୁ ଅଟଇ,
ତୋ ଦରଶନେ ଘନ ! ମନେପଡ଼ଇ,
ନୟନୁ ନୀର ଝରେ ତାର ସ୍ମରଣେ
ଝୁରୁଥିବ ପ୍ରେୟସୀ ନିକି ବିଜନେ । ୧୨୮ ।
ରକ୍ତ ଅଶୋକ ତରୁ ସେ ଉପବନେ
ନବପଲ୍ଲବ ନିତ୍ୟ କମ୍ପେ ପବନେ,
ମାଧବୀ-ବିମଣ୍ଡିତ ମଣ୍ଡପ ତହିଁ
ରମ୍ୟ ପୁଷ୍ପେ ମଧୁପ ମଧୁ ପିଅଇ । ୧୩୨ ।
କୁରୁବକ ବେଷ୍ଟନ ସେ ମଣ୍ଡପର
ରାଜେ ପାଶେ ପୁଷ୍ପିତ କାନ୍ତ କେଶର,
ଦ୍ୱନ୍ଦ୍ୱୀ ଅଟଇ ମୋର ତରୁଯୁଗଳ
ନିତ୍ୟ କରଇ ମନ ଈର୍ଷାଚଞ୍ଚଳ । ୧୩୬ ।
ବାଞ୍ଛେ ଅଶୋକ ପ୍ରିୟା ପଦପରଶ
ବାଞ୍ଛେ ବକୁଳ ମୁଖମଦିରା ରସ,
ଏକାନ୍ତେ କାନ୍ତା ତହିଁ ପ୍ରଦୋଷେ ବସେ
ବାୟୁ ବାରିଜ ସଙ୍ଗେ ବକ୍ତ୍ର ପରଶେ । ୧୪୦ ।
କନକଯଷ୍ଟି ତହିଁ ରାଜେ ଉଜ୍ଜ୍ୱଳ
ଶିରେ ସୁନ୍ଦର ଶୋହେ ସ୍ଫଟିକଫଳ,
ମୂଳ ମଣ୍ଡଣୀ ତାର ଇନ୍ଦ୍ରନୀଳରେ
ତୋ ମିତ୍ର ନୀଳକଣ୍ଠ ତହିଁ ବିହରେ । ୧୪୪ ।
ସରୋଜବନ୍ଧୁ ଚଢ଼ି ଚରମାଚଳେ
ସ୍ୱର୍ଣ୍ଣକିରଣେ ତରୁ ଶିର ଉଜଳେ,
ସରୋଜନେତ୍ରୀ ବାଳା ତହିଁ ବିଳାସେ
କରତାଳି ଦିଅଇ ମୟୂର ପାଶେ । ୧୪୮ ।
ବାଜଇ ରଣରଣ ବାଜେଣୀ ବଳା
ନାଚଇ ଘନଘନ କେକୀ ଉରଳା,
ତାଳେ ବାଜଇ କରେ ଶିଞ୍ଜା ଭୂଷଣ
ତାଳେ ମୟୂର ରାବେ ରଞ୍ଜି ଶ୍ରବଣ । ୧୫୨ ।
ନୀଳକମଳ-ରଞ୍ଜି କଳାପ ଟେକି
କୌତୁକେ ଉପବନେ ନାଚୁଇ କେକୀ,
ଉରେ ଏ ଛବି ଘେନି ନାଚେ ତରଙ୍ଗ
ଝୁରେ ନୟନ ଘନ ! ସ୍ମରି ସେ ରଙ୍ଗ । ୧୫୬ ।
ଏ ଲକ୍ଷଣ ଜାଣିବ ମୋହୋ ଆଗାର
ଖୋଦିତ ଶଙ୍ଖପଦ୍ମେ ଶୋଭେ ତା ଦ୍ୱାର,
ନାହିଁ ସେ ପୂର୍ବ ଭାବ ପୂର୍ବ ମାଧୁରୀ
ରବି ବିହୁନେ ପଦ୍ମ ପରାଏ ଝୁରି । ୧୬୦ ।
କରଭ ପ୍ରାୟେ କରି ଶରୀର କ୍ଷୀଣ
କ୍ରୀଡ଼ାଶଇଳେ ସୁଖେ ହୋଇ ଆସୀନ,
ଭେଟିବ ନାଗରୀକୁ ଆଗାରେ ତହିଁ
ଖଦ୍ୟୋତ ପ୍ରାୟେ କାନ୍ତି ନିଭି ଜଳଇ । ୧୬୪ ।
ମଳିନ ସେ ସୁଷମା ଦେଖି ହେ ଘନ !
କରୁଣା ଉପୁଜିବ, ଦ୍ରବିବ ମନ,
ସ୍ଫୁରିବ ସୌଦାମିନୀ ନଭେ ଉଜ୍ଜ୍ୱଳେ
ଚମକି ଚାରୁନେତ୍ରୀ ଚାହିଁବ ଭଲେ । ୧୬୮ ।
କୃଶାଙ୍ଗୀ କୃଶୋଦରୀ କୁନ୍ଦଦଶନା
ଗୁରୁ ଜଘନଭାରେ ମନ୍ଦଗମନା,
ଚକିତ-ମୃଗନେତ୍ରୀ, ଜବାଅଧରୀ,
ଉଚ୍ଚ ଉରଜେ ନତ ଗାତ୍ରବଲ୍ଲରୀ । ୧୭୨ ।
ତପ୍ତ-କନକ-କାନ୍ତି କାନ୍ତ ଶରୀର
ମୃଣାଳଗଞ୍ଜି ଭୁଜ, ନାଭି ଗଭୀର,
ଯୁବତୀକୁଳେ ଶ୍ରେଷ୍ଠ ସେହି ରଙ୍ଗିନୀ
କୁସୁମକୁଳେ ଶ୍ରେଷ୍ଠ ଯେହ୍ନେ ନଳିନୀ । ୧୭୬ ।
ବିଳାସ-ପଦ୍ମାକର-ହଂସୀ ନବୀନା
ରସାଳସୀ, ସୁକେଳି-କଳାପ୍ରବୀଣା,
ମଞ୍ଜୁବାହିନୀ ମଞ୍ଜୁକଞ୍ଜବଦନୀ
ରୂପଖଣିରେ ନାହିଁ ତା ତୁଳେ ମଣି । ୧୮୦ ।
ସେ ଅଟେ ନୀରଧର ! ମୋହୋ ନାଗରୀ
ପ୍ରେମପ୍ରତିମା ମୋର ପରାଣ ସରି,
ଚକ୍ରବାକୀ ପରାଏ ମୋହୋ ବିଚ୍ଛେଦେ
ମଉନେ ଥିବ ଝୁରି ହୃଦୟ ଖେଦେ । ୧୮୪ ।
ନୀହାରପାତେ ପଦ୍ମ ପ୍ରାୟେ ପ୍ରେୟସୀ
ନିରାଶେ ଝୁରୁଥିବ ନିଭୃତେ ବସି,
ରବି ପ୍ରଖର କର ପ୍ରାୟେ କମଳେ
ନ ଥିବ ପୂର୍ବ ଜ୍ୟୋତି ନେତ୍ରଯୁଗଳେ । ୧୮୮ ।

ନୀଳ-ନଳିନ-ନେତ୍ର ରୋଦନେ ସ୍ଫୀତ
ଲୋତକେ ହୋଇଥିବ ନିଶ୍ଚେ ଲୋହିତ,
ବିମ୍ବାଧରୀ ଅଧର ଉଷ୍ଣ ନିଶ୍ୱାସେ
ବିବର୍ଣ୍ଣ ହୋଇଥିବ ଘନ ! ନିରାଶେ । ୧୯୨ ।
କରେ ବଦନ ଥୋଇ ଥିବ ବସିଣ
ଶ୍ଳଥ କୁନ୍ତଳ ପଡ଼ିଥିବ ଲମ୍ବିଣ,
ତୋ ଗ୍ରାସେ ଶଶଧର ପରାଏ, ଘନ !
ଦୀନ ଦିଶିବ କାନ୍ତା କାନ୍ତ-ବଦନ । ୧୯୬ ।
ମିଳନ କାମନାରେ କାନ୍ତା ମୋହର
ମାଗୁଣ ଥିବ ଇଷ୍ଟଦେବଙ୍କୁ ବର,
ନବ ବିରହେ କୃଶ ମୋର ମୂରତି
ଯତନେ ନିଜି ଚିତ୍ରୁଥିବ ଯୁବତୀ । ୨୦୦ ।
ପିଞ୍ଜରେ ଅବା ସାରୀ ମୁହଁକୁ ଚାହିଁ
ଭାଷୁଥିବ ତା ଶୋକେ ଶୋକ ମିଶାଇ,
'କାନ୍ତକୁ ସ୍ମରି କିଲୋ ହେଉ ବିକଳ ?
ତୋଠାରେ ସ୍ନେହ ତାର ଥିଲା ଅଟଳ' । ୨୦୪ ।
ବାମନୟନା ମନ୍ଦ ମଳିନ ବାସ
ଉଡ଼ାଉଥିବ ଉଷ୍ଣ ଶୋକ-ଉଲ୍ଲାସ,
ଗାଉଣଥିବ ବୀଣା ଉତ୍ସଙ୍ଗେ ଘେନି,
ଚୁମ୍ବି ଅବନୀ ଲମ୍ବିଥିବ ତା ବେଣୀ । ୨୦୮ ।
ତାରସ୍ୱରେ ମୋ ନାମ ସଙ୍ଗୀତ ଗାଇ
ନୟନ ନୀରେ ବୀଣା-ତାର ତିନ୍ତାଇ,
ପୋଛି ପଣନ୍ତେ ବୀଣା ଗାଆନ୍ତେ ପୁଣି,
ମୂର୍ଚ୍ଛନା ପାସୋରିବ ବେଗେ ତରୁଣୀ । ୨୧୨ ।
ବିରହ-ବହ୍ନି ଶୋଷୁଥିବ ଜୀବନ
ଭୂତଳେ ଗୋଟି ଗୋଟି ଥୋଇ ସୁମନ,
ଶେଷ ବିରହ ମାସ ଦୁଆରେ ବସି
ବିମନା ହୋଇ ଗଣୁଥିବ ପ୍ରେୟସୀ । ୨୧୬ ।
କାନ୍ତ ସଙ୍ଗେ ସଙ୍ଗମ କଳ୍ପନାବଳେ
ହୃଦୟେ ଲଭୁଥିବ ବସି ବିରଳେ;
କାମିନୀଏ ଏରୂପେ ବିରହ କ୍ଲେଶ
ବାରନ୍ତି, ବାରିଦ ! ତୁ ଜାଣୁ ବିଶେଷ । ୨୨୦ ।
ଦିବସେ ଗୃହକର୍ମେ ଥିବ ସେ ରତ
ଦିବସେ ଶୋକ ତାର ଥିବ ଗୁପତ,
ବାସର ଅନ୍ତେ ଅବସର ଲଭିଣ
ବାଳିକମୁଖୀ ମନ କରିବ କ୍ଷୀଣ । ୨୨୪ ।
କାତରେ ଥିବ ଶୋଇ ଭୂମିଶୟନେ
ବିରହ ଦିନୁ ନାହିଁ ନିଦ୍ରା ନୟନେ,
ନିଶିରେ ବାତାୟନ ସନ୍ନିଧେ ରହି
ପ୍ରବୋଧିବୁ ବାଳାକୁ ବାରତା କହି । ୨୨୮ ।
ବିରହ ଶଯ୍ୟାପରେ ଅନଙ୍ଗ ଶର
ଅଙ୍ଗନା କ୍ଷୀଣ ଅଙ୍ଗ କରେ ଜର୍ଜର;
ବିକଳେ ପଡ଼ିଥିବ ଏକା ସେ ତହିଁ
ଚରମା ଚନ୍ଦ୍ରକଳା କୃଶତା ବହି । ୨୩୨ ।
ଯେ ରଜନୀ ସଜନୀ ମୋହ ସଙ୍ଗତେ
ବିଳାସେ ବଞ୍ଚୁଥିଲା ଇଚ୍ଛା ସୁରତେ,
ଏକାକେ ସେ ରଜନୀ ହୋଇବ କାଳ
ବୁଡ଼ାଇବ ଲୋତକେ ନେତ୍ର ବିଶାଳ । ୨୩୬ ।
କପୋଳଲମ୍ବୀ ନାଳ ଚୂର୍ଣ୍ଣକୁନ୍ତଳ
(କରୁଥିଲା ପୂର୍ବେ ଯା ସ୍ନେହେ ଉଜ୍ଜ୍ୱଳ)
ରୁକ୍ଷ ସ୍ନାନରେ ହୋଇଥିବ କର୍କଶ
ଉଷ୍ଣ ନିଶ୍ୱାସେ ଉଡ଼ୁଥିବ ଅବଶ । ୨୪୦ ।
ସେ ଶ୍ୱାସେ ବିମ୍ବାଧରୀ ବିମ୍ବ ଅଧର
ବିବର୍ଣ୍ଣ ଦେଖି ହେବ ହୃଦ କାତର,
ସ୍ୱପନେ ସୀମନ୍ତିନୀ ମୋ ଆଲିଙ୍ଗନ
ଲଭିବା ଆଶେ ଲୋଡ଼ୁଥିବ ଶୟନ । ୨୪୪ ।
ନିଦ୍ରାକୁ ନିଦ୍ରାପଥ ନୟନ ନୀର
ରୋଧିଣ କରୁଥିବ ମନ ଅସ୍ଥିର,
ସୁଖ ସମୟେ ଯେହୁ ନ ଲୋଡ଼ି ମିଳେ
ନ ମିଳଇ ଯତନେ ଦୁଃଖେ ଲୋଡ଼ିଲେ । ୨୪୮ ।
ମେଲାଣି କାଳେ ଫୁଲମାଳ ଖସାଇ
ବାନ୍ଧିଲି ଯେ ବେଣୀ ମୁଁ ଆବାସେ ଥାଇ,
ଶାପଅନ୍ତେ ଯେ ବେଣୀ ବାନ୍ଧିବି ପୁଣି
ଅରଞ୍ଜିତ-ନଖର-କରେ ତରୁଣୀ । ୨୫୨ ।
କ୍ଷଣେ-କ୍ଷଣେ କପୋଳୁଁ ଘୁଞ୍ଚାଉଥିବ
ଛାର ଅଦୃଷ୍ଟେ ଏହା କଲା ଦଇବ !
ନାହିଁ ସେ ପୂର୍ବ ଶୋଭା ପୂର୍ବ ଯତନ
କଳିନ୍ଦ-କନ୍ୟା-କାନ୍ତି ପୂର୍ବ ବରଣ । ୨୫୬ ।
ଗବାକ୍ଷ ମାର୍ଗେ ସୌମ୍ୟ ସୁଧାଂଶୁ କର
ପଡ଼ି ଉଜଳୁଥିବ ସୌଧ ଅନ୍ତର,
ପୂର୍ବ ପ୍ରୀତିରୁ ଭୀରୁ ଅନାଇ ଥରେ
ଶଶିକୁ, ବୁଜାଇବ ନେତ୍ର ସତ୍ୱରେ । ୨୬୦ ।
ପୀୟୂଷକର ତାହା ପକ୍ଷେ ଗରଳ
ତେଣୁ ଝରିବ ନେତ୍ରୁଁ ଲୋତକ ଜଳ,
ଆବରିବ ଅବଳା ପକ୍ଷ୍ମେ ବଦନ
ଦୁର୍ଦ୍ଦିନ ପଦ୍ମପ୍ରାୟେ ଆର୍ଦ୍ର ନୟନ । ୨୬୪ ।
ଭୂଷଣହୀନ ମୃଦୁ ଅଙ୍ଗ ଅଙ୍ଗନା
ଥୋଉଥିବ ଶୟନେ ଶୋକେ ଉନ୍ମନା,
ତା ଦେଖି ନୀର-ଅଶ୍ରୁ ମୁଞ୍ଚିବୁ ଘନ
ପରଦୁଃଖେ କାତର ମହତ ମନ । ୨୬୮ ।
ସ୍ନେହମୟ ମୋ ପ୍ରତି ପ୍ରେୟସୀ ଚିତ୍ତ
ତେଣୁ ଏ ଦଶା ତାର ହୁଏ ପ୍ରତୀତ,

ଆପଣାଠାରେ ପକ୍ଷପାତରୁ ଏତେ
କହିଲି ଘନ ! ପୁଣି ନ ଘେନ ଚେତେ ।୨୭୨।
ଯା କହିଲି ଝଟକେ ନେତ୍ରଗୋଚର
ହେବ ଭବନେ ମୋର ହେ କାମଚର !
ଅନୁମାନ ଚିତ୍ରଇ ଏବେ ଯେ ଛବି
ନୋହିବ ତହୁଁ ଆନ ପ୍ରାଣବାନ୍ଧବୀ ।୨୭୬।
ସୁସନ୍ଦେଶ ବହି ତୁ ହେଲେ ପ୍ରବେଶ
ଉପୁଜିବ ହରଷ ହୃଦେ ଅଶେଷ,
ମୀନଚଳେ ଚଳ କମଳ ପରି
ସ୍ଫୁରିବ ବାମନେତ୍ର ବେଗେ ସଞ୍ଚରି ।୨୮୦।
କଜ୍ଜଳକେଶୀ ନେତ୍ରେ ନାହିଁ କଜ୍ଜଳ
ଅପାଙ୍ଗେ ଲମ୍ୱିଥିବ ଶ୍ଲଥ କୁନ୍ତଳ,
ମଧୁ ତିଆଗୁଁ ଆଉ ଭ୍ରୂବିଳାସ
ନ ଥିବ ସେ ପୂରୁବ ବକ୍ର ବିକାଶ ।୨୮୪।
ଅନଖକ୍ଷତ ବାମ ଊରୁ ବର୍ତ୍ତୁଳ,
କନକ ରମ୍ଭାତରୁ ଗଞ୍ଜି ମଞ୍ଜୁଳ,
ନ ଶୋହେ ଯହିଁ ଏବେ ମୁକ୍ତାହାର
( ବିରହେ ହାରେ ଲୋଡ଼ା କାହିଁ ବାଳାର ? )
ସଂବାହନେ ଯାହାର ସୁରତ ପରେ
କୃତାର୍ଥ ହେଉଥିଲି ଶେଯ ଉପରେ,
ତୋ ମିଳନେ ସେ ଊରୁ ସ୍ଫୁରିବ ଘନ !
ଭାଳିବ "ଦୁଃଖ ପରା ହେଲା ଖଣ୍ଡନ" ।୨୯୨।
ସେକାଳେ ବାଳା ଯେବେ ଥିବ ନିଦ୍ରିତ
ଅନାଇ ଅବସର ଥିବ ସ୍ତମ୍ଭିତ,
ଦୁଃଖୀ ପକ୍ଷେ ନୀରଦ ! ନିଦ୍ରା ଶରଣ
ନିଦ୍ରା ଦିଅଇ ସ୍ୱପ୍ନ, ସ୍ୱପ୍ନ ରମଣ ।୨୯୬।
ସ୍ୱପ୍ନବଳେ ଅବଳା ମୋହୋ ଉତ୍ସଙ୍ଗେ
ବିହରୁଥିବ ସୁଖ-ସୁରତ-ରଙ୍ଗେ,
ନିଦ୍ରାଭଙ୍ଗେ ଅଙ୍ଗନା ହେବ ଆକୁଳ,
ତିନ୍ତାଇବ ଲୋତକେ ମଳି ଦୁକୂଳ ।୩୦୦।
କାଳେ ଅବଳା ନେତ୍ର ମୁଦିବ ଡରି
ରକ୍ଷିବୁ ଚପଳାକୁ କୋଳେ ଆବରି,
ପେଷି ଶୀକର-ସ୍ନିଗ୍ଧ ମୃଦୁ ସମୀର
ନବମାଳତୀ ସଙ୍ଗେ ସୁପ୍ତଶରୀର ।୩୦୪।
କରି କାନ୍ତାକୁ, ସୌଧ-ଗବାକ୍ଷେ ବସି
ତୋଷିବୁ ତହୁଁ ବାକ୍ୟସୁଧା ବରଷି,
ହେବ ହରଷ ମୋହ ସନ୍ଦେଶ ଲଭି
କରେ ଶଶୀ ଲଭିଲା ପ୍ରାୟେ ବଲ୍ଲଭୀ ।୩୦୮।
କହିବୁ କାମିନୀକୁ ଘନ ! ଏସନ,
"ଜୀବନେ ଅଛି ବାଳା ତୋ ଜୀବ-ଧନ,
ମୁଁ ଅଟେ ନୀରଧର ତାର ତାହାର
ଆଣିଅଛି ତୋ ପ୍ରତି ସୁସମାଚାର ।୩୧୨।
ସୀମନ୍ତିନୀ କୁନ୍ତଳ ବନ୍ଧନ ଆଶେ
ପ୍ରବାସୁଁ କାନ୍ତ ଯେବେ ଆସଇ ବାସେ,
ମାର୍ଗେ ନିନାଦ ମନ୍ଦ୍ର, ଶୁଣି ମୋହର
ଭବନ ଲଭିବାକୁ ହୁଏ ସତ୍ୱର" ।୩୧୬।
ଏ ବାଣୀ ଶୁଣି ବାଳା ଉତ୍କଣ୍ଠାଭରେ
ବେଗେ ଚାହିଁବ ତୋତେ ଘନ ! ଅମ୍ବରେ,
ଅଶୋକ ଉପବନେ ଅଶୋକ ମୂଳେ
ରାମରମଣୀ ଯେହ୍ନେ ଉତ୍କଣ୍ଠାକୁଳେ ।୩୨୦।
ସମ୍ଭାଷିଲେ ହନୁକୁ ତରୁ ଉପରେ
ତେସନ ତୋତେ ସମ୍ଭାଷିବ ଆଦରେ,
କାନ୍ତବାରତା କାନ୍ତମିତ୍ର ମୁଖରୁ
ଊଣା ନୁହଇ କାନ୍ତସଙ୍ଗସୁଖରୁ ।୩୨୪।
ପର ଦୁଃଖ ଫେଡ଼ିଲେ ମହତ ମନ
ପରମ ପ୍ରୀତିରସେ ହୁଏ ମଗନ;
ପ୍ରିୟା ହରଷେ ସୁଖ ହେବ ଅଶେଷ
କହି ଏ ସୁବାରତା ବାର ତା କ୍ଲେଶ ।୩୨୮।
"ରାମଗିରିରେ ଥାଇ ଶୋକେ ବିହ୍ୱଳ
ତୋ ନାଥ ପଚାରଇ ତୋହ କୁଶଳ ।"
କ୍ଷଣଭଙ୍ଗୁର ଭବେ ପ୍ରାଣୀ-ପରାଣ,
ତେଣୁ ଏ ପ୍ରଶ୍ନ ଆଦ୍ୟ ସମ୍ଭାଷ ଜାଣ ।୩୩୨।
"ତୋ ପ୍ରାୟେ କ୍ଷୀଣ ବାଳା ! ତୋ ନାଥତନୁ
ନିତ୍ୟ ବିନ୍ଧଇ ପୁଷ୍ପଶରେ ଅତନୁ ।"
ନୟନୁ ଅଶ୍ରୁନୀର ବହେ ନିୟତ
ଉଷ୍ଣ ନିଶ୍ୱାସେ ଦେହ ଦହେ ସତତ ।୩୩୬।
ଉତ୍କଳିକା-ଆକୁଳ ନିତ୍ୟ ହୃଦୟ
ରୋଧିଲା ମାର୍ଗ ବାମ ବିଧି ନିର୍ଦ୍ଦୟ,
ସଂକଳ୍ପେ ଅଙ୍କୋଦରି ! ଦୂରେ ସେ ଥାଇ
ଲଭେ ସଙ୍ଗ ତୋ ଅଙ୍ଗେ ଅଙ୍ଗ ମିଶାଇ ।
ବଦନ-ଅରବିନ୍ଦ ପରଶ ଆଶେ
କୌତୁକେ କାନ୍ତ ତୋର ସଖୀ ସକାଶେ,
ନିଗୂଢ଼ କଥା ବୋଲି ଡାକି ନିକଟେ
ହସଇ ଆନ କଥା ଭାଷି ଶ୍ରବଣେ ।୩୪୪।
ଏବେ ସେ କାନ୍ତ ତୋର ଘୋର ପ୍ରବାସେ
ଦିନ ଗମଇ ଦହି ଖେଦ-ହୁତାଶେ;
ଆକୁଳ ହୋଇ ମୋତେ ଦେଲା ମେଲାଣି
ପେଷିଲା ତୋ ସକାଶେ ଶୁଣ ଯେ ବାଣୀ—
"ବିରହେ କ୍ଷିପ୍ତ ପ୍ରାୟେ ଭ୍ରମଇ ଗିରି
ଶ୍ୟାମା ଅଙ୍ଗେ ଦେଖଇ ତୋ ଅଙ୍ଗଶିରୀ,
ଚକିତ ମୃଗୀ ନେତ୍ରେ ଚାରୁ ନୟନ
ଚନ୍ଦ୍ରେ-ଚନ୍ଦ୍ରମାମୁହାଁ ବର ବଦନ ।୩୫୨।

ନୀଳକଣ୍ଠ ପୁଚ୍ଛେ ତୋ ନୀଳ କୁନ୍ତଳ
ନୀଳତରଙ୍ଗେ ଭୂରୁଭଙ୍ଗୀ ଚଞ୍ଚଳ,
ଏକତ୍ରେ ଦେଖିବାର ଏ ଶୋଭାମାନ
ନାହିଁ, ନୋହିବ ଅନ୍ୟେ ତୋ ବିନୁ ପ୍ରାଣ ।୩୫୬।
ମାନବତୀ ମୂରତି ତୋର ଏ ବନେ
ଧାତୁରାଗେ ଶିଳାରେ ଚିତ୍ରି ଯତନେ,
ପାଦେ ପଡ଼ିଲାବେଳେ ନୟନ ଜଳ
ଦୃଷ୍ଟି ରୋଧି କରଇ ମନ ବିହ୍ୱଳ ।୩୬୦।
କ୍ରୂର ଦଇବ ବାଳା କଲା ଏସନ
ନ ସହିଲା ଚିତ୍ରେ ତୋ ସଙ୍ଗେ ମିଳନ !
ଏଥୁଁ ବଳି କଷଣ କାହିଁ ମହୀରେ ?
ନାହିଁ କରୁଣା ଲେଶ ବିହି ଶରୀରେ ।୩୬୪।
ତୋ ବିରହେ ଏ ଦେହ ନିତ୍ୟ ଜର୍ଜର
ପୁଣି ବିନ୍ଧଇ ମୁହୁ ଅନଙ୍ଗ ଶର,
ଜଳଦ କାଳ ଆସି ହେଲା ପ୍ରବେଶ
ନୀଳଘନ ଘୋଟିଲା ଅମ୍ବର ଦେଶ ।୩୬୮।
ଗଗନେ ସୌଦାମିନୀ ଘନ ଝଟକେ
ଦମ୍ଭୋଳି ଭୀମନାଦେ ମନ ଚମକେ,
କିରୂପେ ଗମିବି ମୁଁ ଏ ଘୋରକାଳ !
ଭାବ ଭାବିନି ! କଷ୍ଟ କେଡ଼େ କରାଳ ।୩୭୨।
ସ୍ୱପନେ ବାଳା ତୋତେ ଲଭି ସକାଶେ
ପ୍ରସାରି ବେନି ବାହୁ ଆଶ୍ଳେଷ ଆଶେ,
ଶୂନ୍ୟକୁ ଭିଡ଼ଇ ମୁଁ, ତା ଦେଖି ଧନ !
ବର୍ଷଇ ଅଶ୍ରୁ ବନଦେବୀ ନୟନ ।୩୭୬।
ଅଶ୍ରୁ ବିନ୍ଦୁ ମୁକୁତାପନ୍ତି ସୁନ୍ଦର
ପ୍ରାତେ ପାଦପ ପର୍ଣ୍ଣେ ଝରେ ବିସ୍ତର,
ମୋ ଦୁଃଖେ ବିଳପନ୍ତି ଗିରି କାତରେ
ଅଶ୍ରୁ ଛଳେ ଦେହରୁ ନିର୍ଝର ଝରେ ।୩୮୦।
ହିମଗିରିରୁ ବହେ ଶୀତ ସମୀର
ଦେବଦାରୁ ପାଦପ ସୁରଭି କ୍ଷୀର-
ସୌରଭ ହରି, ତରୁ ପତ୍ରେ ମର୍ମରି,
ଦକ୍ଷିଣେ ହିମ-ପକ୍ଷେ (୧) ବେଗେ ପ୍ରସରି ।୩୮୪।
ବହଇ ବାଳା ! ସେ ତୋ ଦେହ ସୌରଭ
ଯେ ସୌରଭ ମନ୍ଦାରେ ନୋହେ ସୁଲଭ,
ସେ ସୌରଭ ଆଶେ ମୁଁ ସେ ଗନ୍ଧବହେ
ସେବଇ ସୀମନ୍ତିନି ! ସଦା ଆଗ୍ରହେ ।୩୮୮।
ତୋ ବିରହ ସନ୍ତାପେ ସଦା ତପତ
କିରୂପେ କ୍ଷଣପ୍ରାୟେ କ୍ଷଣଦା ଗତ
ହୋଇବ, ମନ୍ଦ ହେବ ମିହିର କର,
କରଇ ଏ କାମନା ନିତ୍ୟ ମନର ।୩୯୨।

ଶାପ ମୋଚନେ ପୂର୍ବ ସୁଖ ପ୍ରାପତି
ନିଶ୍ଚେ ହୋଇବ, ଏହି ଆଶେ ଯୁବତି !
ସମ୍ଭାଳିଛି ହୃଦୟ; ତେଣୁ କାତର
ନ ହୁଅ, ଭବିଷ୍ୟତେ କର ନିର୍ଭର ।୩୯୬।
ସୁଖ ଦୁଃଖ ଜଗତେ ନୁହଇ ଚିର
ଚକ୍ରଗତି ପରାଏ ଚିର ଅସ୍ଥିର,
ସୁଖ ଅନ୍ତେ ଆସିଲା ଏ ଦୁଃଖ ଦିନ
ପୁଣି ଲଭିବା କାଳେ ସୁଖ ନବୀନ ।୪୦୦।
ଭୁଜଗ-ଶେଯୁଁ ଯେବେ ଉଠିବେ ହରି, (୨)
ଲଭିବି ବାସେ ତୋତେ ପୁଣି ସୁନ୍ଦରି !
ଗମ ଏ ଚାରିମାସ ମୁଦି ଲୋଚନ,
ଏ ଅନ୍ତେ ନିଶ୍ଚେ ମୋର ଶାପ ମୋଚନ ।୪୦୪।
ବିରହେ ବାଞ୍ଛା ଯେତେ ଉପୁଜେ ମନେ
ଶରତ-ପୂର୍ଣ୍ଣ-କଳାକର-କିରଣେ,
ସାଧ୍ୱି ! ତୋ ସଙ୍ଗେ ସବୁ ସାଧିବି ବାସେ
ନିହିବି ହୃଦଶଶୀ ହୃଦ ଆକାଶେ ।୪୦୮।
ଫୁଟିବେ ତାରାବଳୀ ନୀଳଗଗନେ
ଫୁଟିବ ଫୁଲ-କଳି ଫୁଲ୍ଲ କାନନେ,
କୌମୁଦୀ ହସୁଥିବ କୁମୁଦ ସଙ୍ଗେ
ପ୍ରମୋଦେ ଭାସୁଥିବ ସରସୀ ଅଙ୍ଗେ ।୪୧୨।
ସୌଧେ, ଭୂଧରେ, ସରେ, ସ୍ୱର୍ଣ୍ଣଦୀ ନୀରେ
ବିରାଜିବ ରଜତ ଜ୍ୟୋସ୍ନା ରୁଚିରେ;
ନିର୍ଭର ବିକସିତ ରଙ୍ଗ ବଧୂଳୀ –
ବନୁ ପରାଗ ପଡୁଥିବ ଉଚ୍ଛୁଳି ।୪୧୬।
ଦିଗବିଦିଗ ଦିଶୁଥିବ ଲଳିତ
କରୁଣେ ଗାଉଥିବେ ଝିଙ୍ଗିଏ ଗୀତ,
ଦୂରେ ମାନସନୀରେ ଶଶିନର୍ତ୍ତନ
ସୌଧ ଶିଖରୁ ଦିଶୁଥିବ ଯତନ ।୪୨୦।
ଶଶିଙ୍କୁ ଚାହିଁ ଧାରବାଟେ ଅଥୟ
ଶିଶିର ପିଉଥିବେ ମୁକୁଳଚୟ;
ଲଳିତା ! ତୋ ସଙ୍ଗତେ ରଙ୍ଗେ ଭ୍ରମିବି
ଲଳିତ ତୋ ସଙ୍ଗୀତେ ଚିତ୍ତ ରମିବି ।୪୨୪।
ପଡ଼ଇ କିରେ ମନେ ପରାଣମିତ !
ଭିଡ଼ି ଭୁଜ ମୋ କଣ୍ଠେ ଥିଲୁ ନିଦ୍ରିତ,
ଜାଗି କାନ୍ଦିଲୁ ଦିନେ କାତର ସ୍ୱରେ
ପଚାରନ୍ତେ କହିଲୁ ହସି ଉତ୍ତରେ ।୪୨୮।
ଦେଖିଲି ଅପରୂପ, ଶଠ ! ସ୍ୱପନେ
ଆନ ରଙ୍ଗିନୀ ତୁମ୍ଭ ସଙ୍ଗେ ଶୟନେ,
ସ୍ମିତ-ଲଳିତ ଚାରୁ-ଚନ୍ଦ୍ରବଦନ

(୧) ହିମପକ୍ଷେ – ହିମଋତୁ ଦେଶାରେ

(୨) ହରିଶୟନ ପରେ ଶରଦ୍ କାଳ

ସ୍ମରଇ ଚନ୍ଦ୍ରାନନି ! ମନ ବହନ । ୪୩୨ ।
ଏ ଅଭିଜ୍ଞାନ ଲଭି ଏ ଚାରିମାସ
ଗମିବୁ, ନ ହୋଇବୁ ଖେଦେ ହତାଶ ।
ଅଳୀକ ପ୍ରବାଦକୁ ନ ଯିବୁ ପ୍ରତେ,
ଜୀବନେ ଅଛି ଧନ ! ଜାଣିବୁ ସତେ । ୪୩୬ ।
ଦୀର୍ଘ ବିରହ ଅଟେ ସ୍ନେହନାଶକ
ଭୋଗ ଅଭାବେ ସେହୁ ସ୍ନେହପୋଷକ,
ଭୋଗ ଅଭାବେ ପ୍ରିୟା ପ୍ରେମସରିତ
ପ୍ଲାବନେ ପ୍ରିୟ ପାଶେ ହୁଏ ଧାବିତ । ୪୪୦ ।
ମଉନେ ଅଛ ଘନ ! ନାହିଁ ମୋ ଭୟ,
ଫଳିବ ମୋ ଅଭୀଷ୍ଟ ନାହିଁ ସଂଶୟ;
ଚାତକ ଜଳ ମାଗେ, ପ୍ରତିଉତ୍ତର
ନ ଦେଇ ନୀର ତାକୁ ଦିଅ ସତ୍ୱର । ୪୪୪ ।
ମହତ ଜନର ଏ ରୀତି ଅଟଳ,
ଅଭୀଷ୍ଟ-ଦାନ ପ୍ରତିବାଣୀ କେବଳ,
ବଚନେ ଲୋଡ଼ା ମୋର ନାହିଁ ଜଳଦ !
ମଉନେ ଇଷ୍ଟଲାଭ ପରମପଦ । ୪୪୮ ।
ବିରହିଣୀ କାନ୍ତାକୁ ଦେଇ ଆଶ୍ୱାସ,
ଶଙ୍କର-ବୃଷ-ଖୁର-କ୍ଷତ କୈଳାସ
ଛାଡ଼ି, ନେଉଟି ଏଥି ପ୍ରିୟା ସନ୍ଦେଶେ
ଅଭିଜ୍ଞାନେ ତୋଷିବ ମୋତେ ବିଦେଶେ । ୪୫୨ ।
ପ୍ରାତେ ଶିଥିଳ ଯେହ୍ନେ କୁନ୍ଦ ସୁମନ
ଶିଥିଳ ତହୁଁ ଘନ ! ମୋହ ଜୀବନ;
ଜୀବ ଧାରଣ ହେବ ବାରତା ଲାଭେ,
ବାରତା ଲଭିବି ମୁଁ ତୋହୋ ପ୍ରଭାବେ । ୪୫୬ ।
ଦୀନ ଅଟଇ ମୁଁ ତୁମ୍ଭେ ମହତ,
ଏଣୁ ଏ ମାଗୁଣି ନୋହେ ସଙ୍ଗତ ।
ମାତ୍ର ଅଟ ଘନ ! ଦୟା-ଆକର
ଦୟା ନ ଜାଣଇ ଶ୍ରେଷ୍ଠ ଇତର । ୪୬୦ ।
ତେଣୁ କହିଲି ଏସନ ହେ,
ଦୀନ ଦୁର୍ବଳର ସମ ହିତକର
ଅଟ, ତେଣୁ ଏ ଯାଚନ ହେ ।
କାତର ଜନର ହୋଇ ବାନ୍ଧବ
ଜଗତେ ପ୍ରକଟି ନିଜ ଗୌରବ । ୪୬୪ ।
ଅଳକା ପ୍ରବେଶି ପ୍ରିୟା ସଦନେ
ଦେଇ ମୋ ବାରତା ହରଷ ମନେ,
ଘନ ! ଯାଅ ଇଷ୍ଟ ଦେଶ ହେ,
ତଡ଼ିତ ସଙ୍ଗତେ ବିହର ନିରତେ
[illegible] ମ୍ବାଯେ ନୋହୁ ବିଶ୍ଳେଷ ହେ । ୪୬୮ ।

□ □ □

# କ ବି ତା ବ ଳୀ

## (କ) ପବନ

କେ ତୋ ସମ ବଳୀ କହ ସମୀର ?
ଅସୀମ ଅନନ୍ତ ତୋହୋ ଶରୀର
କେତେ ଭଙ୍ଗି କରି କେତେ ଆଡ଼େ ଚରି
ନ ହୁଅଇ କ୍ଲାନ୍ତି, ନିତ୍ୟ ଅସ୍ଥିର
ଅଟୁ ତୁ, ତୋ ଗୁଣ ବଳଇ ଗିର । ୧ ।
ଶରୀରୀ ଜୀବର ଜୀବ ଧାରଣ
ତୋ ଯୋଗୁଁ ହୁଅଇ ହେ ସମୀରଣ !
ସ୍ଥଳଚର ସ୍ଥଳେ ମୀନ ଆଦି ଜଳେ
ତୋ ପ୍ରଭାବେ ନଭେ ଖଗ ଚେତନ,
ତୋ ବିନୁ ସମସ୍ତେ ହେବେ ନିଧନ । ୨ ।
କେ କହିବ କେତେ ତୋହୋ ବୟସ ?
ନରବର କାଳି ନର ପୌରୁଷ
ଦେଖାଇ ଜଗତେ ରାଜଧାନୀ କେତେ
ଲୋପିଲେ ହୋଇଣ କାଳର ବଶ,
ମାତ୍ର ତୋ ଦେହେ ଯୌବନରସ । ୩ ।
ଆଦି ସୃଷ୍ଟି କାଳେ ଈଶ ଆଦେଶେ
ଅବତୀର୍ଣ୍ଣ ହୋଇ ଅମର ଦେଶେ
ହେମ-ଘନାସନେ ବସି ସୁରଗଣେ
କ୍ଷେପିଲେ କୁସୁମ ଅବନୀ କେଶେ,
ବାସିଲା ତୋ ତନୁ ତହିଁ ବିଶେଷେ । ୪ ।
ଅଗ୍ରତେ ଯେ ଫୁଲ [illegible] ବିକସି
କମ୍ପୁଅଛି ମୃଦୁ ତୋ କୋଳେ ହସି
ଏତିକି ସମନ୍ଧ, ସୁମନ ସୁଗନ୍ଧ
ତୋ ଗାତ୍ରେ ଲେପିବ ଆରେ ସୁରସି ।

କ୍ଷଣକେ ପଡ଼ିବ ଭୂତଳେ ଖସି । ୫ ।
ବିମଳା ତଟିନୀ ତଟ କାନନେ
ବସନ୍ତେ କୋକିଳ ଭ୍ରମର ସ୍ୱନେ
ନଦୀ କଳ କଳ ଶୁଣିଣ ଚଞ୍ଚଳ
ହୁଅଇ ତୋ ମନ, ଚାଟୁ ବଚନେ,
ନଦୀକୁ ରହସ୍ୟ ଭାଷୁ ବିଜନେ । ୬ ।
ବାସର ଯୌବନେ ବିଟପି ତଳେ
ବସନ୍ତି କଳାପିକୁଳ କୁଶଳେ,
ରତନଖଚିତ— ପୁଚ୍ଛ ଆନ୍ଦୋଳିତ
କରୁ ତୁ ସେକାଳେ ବହି ଶୀତଳେ,
ସେ ଛବି ରସିକ ରସନା ବଳେ । ୭ ।
ନିଦାଘ ପ୍ରଭାତେ କମଳାକରେ
ନବୋଦିତ ରବି ଛବି ଆଗରେ
ଦେଖି ହରଷିତ ସରୋଜିନୀ ଚିତ୍ତ
ତୋ ସ୍ପର୍ଶେ ସେ ହସେ ପ୍ରମୋଦଭରେ,
ଇନ୍ଦିରା ଯେସନ ନୀଳ ସାଗରେ । ୮ ।
ବିଷ୍ଣୁ ପ୍ରାୟେ ନୀଳ ନୀରଦବର
ବନମାଳା ପ୍ରାୟେ ଚାପ ଇନ୍ଦ୍ରର
ଯା ଦେହେ ଶୋଭଇ, ଯା କୋଳେ ଥରଇ
ଚପଳା ଅବଳା ଦୀପ୍ତି ଅମ୍ବର
ଶ୍ୟାମସୀମନ୍ତିନୀ ସମ ସୁନ୍ଦର । ୯ ।
ସେ ଘନ ଉତ୍ତୁଙ୍ଗ ଶିଖରି ଶିରେ
କନ୍ଦର ଝଙ୍କାରି ନାଦେ ଗଭୀରେ
ତାକୁ ପୃଷ୍ଠାସନେ ଘେନି ବ୍ୟୋମାଙ୍ଗନେ
ଯେବେ ତୁ ଉଠୁ, ମୋ ହୃଦମନ୍ଦିରେ
ସ୍ଫୁରଇ ଖଗେନ୍ଦ୍ର ଛବି ରୁଚିରେ । ୧୦ ।
ପ୍ରଫୁଲ୍ଲ ସୁରଭି କଦମ୍ବ ମୂଳେ
କଳବେଣୀ ରମ୍ୟ କାଳିନ୍ଦୀ କୂଳେ
ରସରାଜ ହରି ବଂଶୀନାଦ କରି
ମୋହିଲେ ଗୋପାଳ କାମିନୀକୁଳେ,
ସେ ଧ୍ୱନି ଜନମ ବାୟୁ ତୋ କୁଳେ । ୧୧ ।

ପଞ୍ଚାପ୍‌ସରସରେ ରାମରମଣୀ
ବୀଣା ଧ୍ୱନି ଶୁଣି ଏଣୀ-ନୟନୀ
ନୟନ ବୁଲାଇ ଏଣେ ତେଣେ ଚାହିଁ
ବିଭ୍ରମେ ହରଷେ ହସିଲେ ଧନୀ,
ତୁ ତାଙ୍କୁ ସେବିଲୁ ବହି ସେ ଧ୍ୱନି । ୧୨ ।
ବୈରୀ ତୁ ଯାହାର କାହିଁ ତା ଗତି ।
ତୋ ନିର୍ଘୋଷେ ଜାଗି ନୀଳାମ୍ବୁପତି
ଚଳଗିରି ପ୍ରାୟେ ହିଲ୍ଲୋଳ ଉଠାଏ
ପିଙ୍ଗଳ ଅମ୍ବରେ ପୋତପଙ୍କତି,
ଉପୁଜାଏ ଚରାଚରେ ଆରତି । ୧୩ ।
କାମଚାରୀ ଅଟୁ ତୁ ପବମାନ
ସର୍ବ୍ବସ୍ଥଳେ ତୋର ସମାନ ସ୍ଥାନ
ପଦ୍ମପରାଗରେ ଶ୍ମଶାନ ରଜରେ
ଲେପିତ ତୋ ତନୁ ବାରିବିତାନ,
ବହ୍ନିଶିଖା ତୋହଠାରେ ସମାନ । ୧୪ ।
କାଳ ପରି ଅଟୁ ତୁ ପୁରାତନ
କାଳଗତି ପ୍ରାୟେ ତୋହ ଗମନ
ତୋ ଦେହେ ଅଙ୍କିତ କେତେ ପୁରାବୃତ୍ତ
କେତେ ଲୋକଙ୍କର ହାସ୍ୟ ରୋଦନ
ମିଶିଛି ତୋ ଦେହେ, ନାହିଁ ଗଣନ । ୧୫ ।
ବିଶ୍ୱରାଜଙ୍କର ତୁ ରାଜଦୂତ
ଜୀବ ଆରାଧନା ଘେନି ବହୁତ
ଈଶ୍ୱରଙ୍କ ପ୍ରୀତି ସାଧିଣ ଝଟତି
ବାହୁଡୁ ମୁହୂର୍ତ୍ତ ମଧ୍ୟେ ମରୁତ,
ଏ ମୋ ମନେ ଲାଗେ ବଡ଼ ଅଦ୍ଭୁତ । ୧୬ ।
ଚିତ୍ର ଲୀଳା ତୋର ହେ ପ୍ରଭଞ୍ଜନ !
ତୁ ପରଶୁ ସବୁ, ମାତ୍ର ଭାଜନ
କିଏ ରବିତଳେ ଛୁଇଁବ କୌଶଳେ
ତୋ ତନୁ ? ମହେଶ ମାୟା ଏସନ,
କେମନ୍ତେ ବୁଝିବି ମୁଁ ଅକିଞ୍ଚନ । ୧୭ ।

□ □ □

## (ଖ) ବେଣୀସଂହାର

ପ୍ରଭାତିଲା ବିଭାବରୀ, ହସିଲେ ଉତ୍କଳେ
ପଙ୍କଜବରଣୀ ଊଷା ଉଦୟ ଅଚଳେ ।
ନବୋଦିତ ଦିନମଣି ଆରକ୍ତ କିରଣ
କାଞ୍ଚନ ଶିବିରଚୂଡ଼ା ଚୁମ୍ବିଲା ବହନ,
ଝର ଝର ଝରେ ନିଶିପତିତ ତୁଷାର ।
ଦୁଇ ଦଳେ ରଣସଜ୍ଜା କଲେ ଯେ ଯାହାର,

ବାଜିଲା ବିବିଧ ବାଦ୍ୟ, ମାତି ବୀରରସେ
ଆୟୁଧ ଆସ୍ଫାଳି ବୀରେ ଧାଇଁଲେ ସାହସେ ।
ବୀରମଦେ କେହି ବୀର କାର୍ମୁକ ଟଙ୍କାରେ,
କେ ଅବା ଆସ୍ଫାଳି ଅସି ଭୀଷଣ ହୁଙ୍କାରେ ।
ଦୋଳେ ଝକ ଝକ ପୃଷ୍ଠେ ଫଳକ ବର୍ତ୍ତୁଳ,
କେ ଅବା ଉନ୍ମଦ ଶୂନ୍ୟେ ଭୂଷଇ ତ୍ରିଶୂଳ ।

ଭାବୀ ପ୍ରତିପକ୍ଷ ବକ୍ଷ ଲକ୍ଷି କେହି ବୀର
ଧାଆନ୍ତେ କବଚେ ବାଜି ବାଜଇ ତୂଣୀର ।
ଗମ୍ଭୀର ସମରବାଦ୍ୟ, ଅସ୍ତ୍ର ଝନ୍‌ଝନି,
ସିଂହନାଦ ଶଙ୍ଖନାଦ ବ୍ୟାପଇ ଅବନୀ ।
ପ୍ରଚଣ୍ଡ ପାଣ୍ଡବ ଯୋଧେ ଆୟୁଧ ଭାସ୍ୱର
ଧରି କ୍ରୋଧେ ମହାଯୁଦ୍ଧେ ଧାଇଁଲେ ସତ୍ୱର,
ଯେସନ ଭୀଷଣଘୋଷୀ ପଶ୍ଚିମ ଅନିଳ –
ଆଘାତେ ସଂଘାତେ ଧାଏଁ ତରଙ୍ଗ ଫେନିଳ,
ଆଗେ ସିନ୍ଧୁ ନୀଳବକ୍ଷେ ଉଚ୍ଛୁଳି ଉଲ୍ଲାସେ
ହଲାଇ ଖେଳାଇ ଚୂଡ଼ା ଟେକଇ ଆକାଶେ ।
ଦମ୍ଭୋଳି ଆରବେ ପୁଣି ଗରଜି ଗମ୍ଭୀର
ସ୍ତରେ ସ୍ତରେ ତଟେ ଲାଗି ପିଟେ ତହିଁ ଶିର ।
ଉତ୍ତୁଙ୍ଗ ମଳୟଗିରି ଚରଣେ ଆଶ୍ରିତ
ଇତର ଶିଖରିକୁଳ କରେ କବଳିତ,
ତେସନ ମୁଖରି କ୍ଷେତ୍ର ଭୈରବ ଆରବେ
କ୍ଷତ୍ରିୟହର୍ଯ୍ୟକ୍ଷ ଶୂରେ ଧାଇଁଲେ ଆହବେ ।
ଦେବାକୃତି ଶୂରବୃନ୍ଦ ସର୍ବେ ବୀର୍ଯ୍ୟଶାଳୀ,
ତେଜସ୍ୱୀ ମଧ୍ୟାହ୍ନେ ଯେହ୍ନେ ଦେବ ଅଂଶୁମାଳୀ ।
ଧର୍ମଙ୍କ ଛାମୁରୁ ପାର୍ଥ ଘେନିଣ ମେଲାଣି
କପିଧ୍ୱଜେ ବିଜେ କଲେ ସଙ୍ଗେ ଚକ୍ରପାଣି ।
ବିଶୋକ ସାରଥି ପ୍ରତି କହେ ଭୀମ ବୀର,
"ରଖ ରଥେ ସୂତ ! ବହୁ ଖରଶାଣ ତୀର,
ଆଜି ଧୃତରାଷ୍ଟ୍ର ହେବେ ପୁତ୍ରପୌତ୍ରହୀନ,
ଆଜି ବସୁନ୍ଧରା ହେବ ଧର୍ମଙ୍କ ଅଧୀନ ।
ଆଜି ଦୁର୍ଯ୍ୟୋଧନ ରାଜା ଶୋଇବ ଭୂତଳ,
କପଟ ପାଶାର ଆଜି ଦେବି ପ୍ରତିଫଳ ।
ଯାବତ ନ ମିଳେ ଆସି ପାର୍ଥ ମହାରଥୀ,
ସସଜ୍ଜ ମୋ ରଥ ବେଗେ କର ତୁ ସାରଥି ।"
ଏ ସମୟେ ଉତ୍ତରେ ଶୁଭିଲା କୋଳାହଳ,
ଆବରେ ଅର୍ଜୁନ ବାଣ ଗଗନମଣ୍ଡଳ ।
କପିଧ୍ୱଜ ଅଶ୍ୱହ୍ରେଷା, ଦେବଦତ୍ତ ସ୍ୱନ
ଶୁଭିଲା, ଦିଶିଲା ଦୂରେ ବାନରକେତନ ।
ଦୁଇ ବଳେ ମହାରୋଷେ ମିଳିଲେ ସମରେ,
ଶନଶନ ଶରକୁଳ ଚାଲିଲା ଅମ୍ବରେ ।
ଖଡ଼ଗେ ଖଡ଼ଗ ବାଜେ, ଫଳକେ ଫଳକ,
ଶୂଳେ ଶୂଳ, ଭଲ୍ଲେ ଭଲ୍ଲ, ସାୟକେ ସାୟକ ।
ଆର୍ତ୍ତନାଦ ସିଂହନାଦ ଉଠଇ ଅମ୍ବରେ,
ଘାତକ ଆହତ ପରେ ନାଦେ ଦମ୍ଭଭରେ ।
ଘୋଟକ ଝପଟ ଧୂଳି ଘୋଟେ ନଭସ୍ଥଳ,
ଘର୍ଘରି ଘୂରଇ ଚକ୍ର ଉଗାରି ଅନଳ ।
ତୁରୀ ଭେରୀ ଆଦି ବାଦ୍ୟ ବାଜେ ଅଗଣନ,
ଘନଘଟା ଘୋରଧ୍ୱନି ବଧିର ଶ୍ରବଣ ।
ପଡ଼ିଲେ କିରୀଟି ଶରେ କୁରୁ ଚତୁରଙ୍ଗ,
ଭୟେ କୁରୁବୀରବୃନ୍ଦ ରଣେ ଦେଲେ ଭଙ୍ଗ ।
ଦେଖିଣ ସୌବଳ କହେ ରଜାଙ୍କ ଛାମୁର,
"ଦେଖ ରାଏ ! ସୈନ୍ୟ କ୍ଷୟ କଲା ପାର୍ଥଶୂର;
ମୁଁ ଯାଇଁ କରିବି ଆଗେ ଭୀମକୁ ସଂହାର,
ନୋହିଲେ କୁରୁଙ୍କୁ ଆଜି ନାହିଁ ଯେ ନିସ୍ତାର ।"
ମହାବଳ ସୌବଳ ଧାଇଁଲେ ଭୀମ ପ୍ରତି,
ଯୁଝନ୍ତି କେଶରୀ ପ୍ରାୟେ ବେନି ସେନାପତି ।
ପ୍ରହାରଇ ଶକ୍ତି ଭୀମ ସଉବଳ ମାଥେ,
ହୁଣ୍ଡୁଡ଼ି ସେ ଶକ୍ତି ବୀର ନେଲା ବାମହାତେ ।
ସେହି ଶକ୍ତି ଘେନି ପୁଣି ଭୀମଙ୍କୁ ପ୍ରହାରେ,
ମୂର୍ଚ୍ଛିତ ହୋଇଣ ଭୀମ ପଡ଼ିଲେ ଧରାରେ ।
ମୂର୍ଚ୍ଛାଭଙ୍ଗେ ରଣରଙ୍ଗେ ମାତିଲେ ମାରୁତି,
ବାଣେ କୁରୁବୀରଙ୍କୁ ସେ ପକାଇଲେ ପୋତି ।
କ୍ରୋଧାନ୍ଧେ ବିନ୍ଧିଲା ବୀର ସୌବଳ ଶରୀର,
ଭେଦିଲା ସୌବଳ କର୍ଣ୍ଣମୂଳେ ଭୀମ ତୀର ।
ମୂର୍ଚ୍ଛିତ ହୋଇଣ ବୀର ହେଲା ରଥଶାୟୀ,
ବେଗେଣ ସାରଥି ରଥ ନେଲା ବାହୁଡ଼ାଇ ।
ଧ୍[illegible]ଡ଼ି ଗଦା ନେଲେ ପବନ କୁମର,
ଗଦା[illegible]ତେ ଅରାତିଙ୍କୁ କଲେ ସେ ଜର୍ଜର ।
ଧୂମକେତୁ ଭୀମ ପୁଚ୍ଛ ସଂଚାଳି ବହନ
ନିଶୀଥେ ଆକାଶେ ଥାଇ ବୁଣଇ ଯେସନ
ଦୁର୍ଭିକ୍ଷ ମଡ଼କ ରାଷ୍ଟ୍ରେ, ସୁବର୍ଣ୍ଣମଣ୍ଡିତ
ପ୍ରଚଣ୍ଡ ଆୟସୀ ଗଦା ବୁଲାଇ ତ୍ୱରିତ
ବିପକ୍ଷଙ୍କୁ ତେସନ ପ୍ରେରଇ ପ୍ରେତପୁର
କରୁକୁଳଧୂମକେତୁ ଭୀମ ମହାଶୂର ।
ମାତଙ୍ଗେ ମାହୁନ୍ତ ପଡ଼େ, ତୁରଙ୍ଗେ ରାଉତ,
ପଡ଼ନ୍ତି ପଦାତି ରଣେ ଅୟୁତ ଆୟୁତ ।
ବେଗେ କୁରୁବଳେ ନେଲେ କର୍ଣ୍ଣଙ୍କ ଶରଣ,
କର୍ଣ୍ଣଙ୍କୁ କାତରେ କହେ ରାଜା ଦୁର୍ଯ୍ୟୋଧନ,
"ଦେଖ ଅଙ୍ଗରାଜ ! ବେଗେ ଆସେ ପାର୍ଥବୀର,
ସୁରାସୁର ଯୁଦ୍ଧେ ଯାର ନିର୍ଭୟ ଶରୀର ।
ତୁଳାରାଶି ମହାବାତେ ଉଡ଼ଇ ଯେସନ,
ତେସନ ପଳାନ୍ତି ତ୍ରାସେ କୁରୁସୈନ୍ୟଗଣ;
ତୁମ୍ଭେ ସାହା ଥାଉଁ ସଖା ଘଟେ ଏ ଦୁର୍ଗତି !"
ଶୁଣିଣ ରୁଷିଲା ବୀର କର୍ଣ୍ଣ ମହାମତି ।
ଶଲ୍ୟଙ୍କୁ ଆଦେଶେ [illegible] "ବେଗେ ନିଅ ରଥ,
ଆଜି ନିଶ୍ଚେ ପାର୍ଥକୁ କରିବି ରଣେ ହତ ।"
ଅଶ୍ୱଙ୍କୁ ସାରଥି କଲେ ଛାଟଣି ପ୍ରହାର,
ଗଲା ଗଜଧ୍ୱଜ ବେଗେ ନକ୍ଷତ୍ର ଆକାର ।

ହ୍ରେଷାରବେ ଦ୍ରୁତଗତି ଧାଇଁଲେ ଘୋଟକ,
ଘର୍ଘରି ଘୂରଇ ଚକ୍ର ଉଗାରି ପାବକ।
ମହାବୀର୍ଯ୍ୟବନ୍ତ ବୀର ସୂର୍ଯ୍ୟଙ୍କ କୁମର,
ଧୈର୍ଯ୍ୟ ବୀର୍ଯ୍ୟ ମହୀତଳେ ନାହିଁ ପଟାନ୍ତର।
ଗହନ ବିପିନେ ଯେହ୍ନେ ଅନଳ ଦୁର୍ବାର,
ତେସନେ ପାଣ୍ଡବବଳ କଲା ନାରଖାର।
ମସ୍ତକେ ଉଜ୍ଜ୍ୱଳ ଶୋହେ ସୁବର୍ଣ୍ଣ ମୁକୁଟ,
ମେରୁ ମହୀଧରେ ଯେହ୍ନେ ଶୋହେ ହେମକୂଟ।
ଗଜଧ୍ୱଜ ରଥେ ବିଜେ ବୀରଚୂଡ଼ାମଣି,
କୋଦଣ୍ଡ ଟଙ୍କାରେ ମୁହୁ କମ୍ପଇ ଅବନୀ।
ଶ୍ରବଣେ କୁଣ୍ଡଳ ଦୋଳେ, ଶରଦେ ଯେମନ୍ତ
ପ୍ରାଚୀମୂଳେ ନିଶାଅନ୍ତେ ତାରା ଦୀପ୍ତିମନ୍ତ।
ଯେବେ ମହୋଦଧି ଜଳେ ଦେହ ଅବଗାହି,
ହସେ ପ୍ରାଚୀ ଶିରେ ଧନୀ ଉଷାକୁ ଅନାଇ
ସଦ୍ୟ ସିନ୍ଧୁ ସ୍ନାନେ ତନୁ ଦ୍ୱିଗୁଣ ଝଟକେ,
ଶିରୋମଣିରୂପେ ରାଜେ ରଜନୀ ଅଳକେ।
ଦୈତ୍ୟଯୁଦ୍ଧେ ଚଣ୍ଡତେଜା ଶିଖଣ୍ଡିବାହନ
ନର୍ତ୍ତିତକିରୀଟ ଦେବ କାର୍ତ୍ତିକ ଯେସନ।
କୌରବଗୌରବରବି ରବିଙ୍କ ନନ୍ଦନ
କୁରୁଯୁଦ୍ଧେ ଧନୁର୍ଦ୍ଧର ଦୁର୍ଦ୍ଧର୍ଷ ତେସନ।
କର୍ଣ୍ଣ ଦେଖି କୁରୁବଳ କଲେ ସିଂହନାଦ,
ଆତଙ୍କେ ପାଣ୍ଡବବଳ ଗଣିଲେ ପ୍ରମାଦ।
କର୍ଣ୍ଣ ଦେଖି ଭୀମସେନ ହେଲେ ଅଗ୍ରସର,
ବେଗେଣ ବିନ୍ଧଇ ବୀର ଖରଶାଣ ଶର।
ଭୀମଙ୍କ ସହାୟ ହେଲେ ପାଣ୍ଡୁ ଯୋଧଗଣ,
ସହଦେବ, ଧୃଷ୍ଟଦ୍ୟୁମ୍ନ ଦ୍ରୁପଦନନ୍ଦନ।
ଶିଖଣ୍ଡି, ନକୁଳ ଆସି ମିଳିଲେ ସତ୍ୱର,
ସମସ୍ତଙ୍କୁ ନିବାରିଲା କର୍ଣ୍ଣ ଏକେଶ୍ୱର।*
ବେନି ଶରେ ନକୁଳକୁ କଲା ଅଚେତନ,
କଟାକ୍ଷେ ଛେଦିଲା ସହଦେବ ଶରାସନ।
ଚାରିବାଣେ ଧୃଷ୍ଟଦ୍ୟୁମ୍ନ ହୋଇଲେ ବିରଥ,
ହେଳେ ସଂହାରିଲା ପାଣ୍ଡୁ ସୈନ୍ୟ ଶତ ଶତ।
ଏକ ଶରେ ଭୀମର କାଟିଲା ଧନୁଗୁଣ,
ସୈନ୍ୟଭଙ୍ଗ ଦେଖି ଦୂରେ ଗର୍ଜିଲେ ଅର୍ଜୁନ।
ସଂଶପ୍ତକ ଗଣେ ରତ ପାର୍ଥ ଧନୁର୍ଦ୍ଧର,
ଏଣେ ଆସିବାକୁ ତିଳେ ନାହିଁ ଅବସର।
ସଂଶପ୍ତକ ସେନାପତି କୃପ ମହାଶୟ
ଯୁଝନ୍ତି ଅର୍ଜୁନ ସଙ୍ଗେ ନିର୍ଭୟହୃଦୟ।
ମହାରୋଷେ ବିନ୍ଧେ ବାଣ ପାର୍ଥ ମହାଶୂର
ଶତ ଶତ ସଂଶପ୍ତକ ଗଲେ ପ୍ରେତପୁର।
କୃପଙ୍କୁ ବିନ୍ଧିଲେ ବକ୍ଷେ ତୀକ୍ଷ୍ଣତର ଶରେ,
ଶୋଣିତ ଉଗାରେ କୃପ ପଡ଼ି ରଥପରେ।
କଟାକ୍ଷେ ପୁଣ୍ଡରୀକାକ୍ଷ ନେଲେ କପିଧ୍ୱଜ,
ଯୁଝଇ ଦୁର୍ଦ୍ଧର୍ଷ ଯହିଁ ଭାସ୍କରଆତ୍ମଜ।
କର୍ଣ୍ଣକୁ ଦେଖିଣ ଗର୍ଜେ ପାର୍ଥ ବୀରମଣି,
ପକ୍ଷୀନ୍ଦ୍ର ଗରୁଡ଼ ଯେହ୍ନେ ଦେଖି ଭକ୍ଷ୍ୟ ଫଣୀ।
କର୍ଣ୍ଣାର୍ଜୁନମହାରଣ ନାହିଁ ପଟାନ୍ତର,
ଅନ୍ତରିକ୍ଷେ କୁତୂହଳେ ଦେଖନ୍ତି ଅମର।
କଳିଙ୍ଗ ସଙ୍ଗତେ ଯୁଝେ ଦ୍ରୁପଦକୁମର,
ଉଭୟେ ଯୁଝନ୍ତି ଯେହ୍ନେ ମତ୍ତ କରିବର।
ଧୃଷ୍ଟଦ୍ୟୁମ୍ନ ବିଶିଖେ କଳିଙ୍ଗ ହେଲେ ନାଶ,
ନିକାଶି ଦେବାକୁ ଗଲେ ଶମନ ସକାଶ।
ମହୋଦଧିତୀରେ ରମ୍ୟ ପ୍ରାସାଦେ ସେ ଥିଲେ,
ରଣ-ନିମନ୍ତ୍ରଣ ରାଏ କ୍ଷଣେ ଘେନିଲେ।
ସିନ୍ଧୁବାୟୁ-ବିଧୂନିତ ରମ୍ୟ ଉପବନ,
ସୁରମ୍ୟ ରମଣୀ ଛାଡ଼ି କଲେ ଆଗମନ।
ଆସିଥିଲେ ବୀରପଣ ଦେଖାଇବା ଆଶେ,
କୁରୁକ୍ଷେତ୍ରେ ପଡ଼ିଲେ ସେ ଗୋମାୟୁଗରାସେ।
କର୍ଣ୍ଣ ଏଡ଼ି କୃତବର୍ମା ସଙ୍ଗେ ଯୁଝେ ଭୀମ,
ପ୍ରତାପେ ଅନନ୍ତ ସମ ରଣେ ଅପ୍ରତିମ।
କୃତବର୍ମା ସହାୟ ହୋଇଲେ ଦୁର୍ଯ୍ୟୋଧନ,
ଉଗ୍ରାୟୁଧ ଦୁଃଶାସନ ବୀର ବିରୋଚନ।
ସମସ୍ତଙ୍କୁ ନିବାରଇ ଭୀମ ଅବହେଳେ,
ମତ୍ତ ମତଙ୍ଗଜ ଯେହ୍ନେ ନଳବନେ ଖେଳେ।
ଗଦାଘାତେ ଦୁର୍ଯ୍ୟୋଧନ ରଥ ହେଲା ଚୂର୍ଣ୍ଣ,
ଶୋଣିତେ ସମରସ୍ଥଳୀ ହେଲା ସେ ପିଶୁନ।
ସାରଥି ସହିତେ କୃତବର୍ମା ରଥ ହୟ,
ଉଗ୍ରାୟୁଧ ବିରୋଚନ ଗଲେ ଯମାଳୟ।
ରଥୁଁ ଖସି ବେନି ଭାଇ ପଡ଼ିଲେ ଧରାରେ,
ପୁଷ୍ପିତ ଶାଳ୍ମଳୀ ଯେହ୍ନେ ପଡ଼ଇ ବାତାରେ।
ଚଡ଼ଚଡ଼ ରଡ଼େ ଯେବେ ପଡ଼ଇ ଚଡ଼କ
ଉପୁଜାଇ ବିଶ୍ୱବାସିହୃଦୟେ ଦମକ।
ପତନେ କବଚ ଗାତ୍ରେ ବଜାଇ ଝନ୍‌ଝନ,
ଇଷ୍ଟଦେବ ସ୍ମରି ଶୂରେ ମୁଦିଲେ ନୟନ।
ବଡ଼ ପ୍ରିୟ ବେନି ଏହୁ ଥିଲେଟି ରାଜାର,
ଦୁରନ୍ତ କୃତାନ୍ତ କିଛି ନ କଲା ବିଚାର।
କୋମଳ ଶୟନେ ଦୁହେଁ ନିତ୍ୟ ଶୋଉଥିଲେ,
କୁରୁକ୍ଷେତ୍ରେ ଏବେ ମହାନିଦ୍ରାକୁ ଭଜିଲେ।
ଭ୍ରାତୃଶୋକେ ଦୁଃଶାସନ ନେତ୍ରୁ ଜଳ ଝରେ,
ମହାକ୍ରୋଧେ ଅଗ୍ରସର ହେଲେ ସେ ସମରେ।

* ସାହାଯ୍ୟନିରପେକ୍ଷ।

ଦେଖି କ୍ଷେତ୍ରେ କ୍ଷତ୍ରଗ୍ଲାନି ଦୁଷ୍ଟ ଦୁଃଶାସନ
ବଜ୍ରନାଦେ ଗର୍ଜି ଭୀମ ଧାଇଁଲେ ତକ୍ଷଣ ।
ରୌଦ୍ରରୂପୀ ମହାବୀର ଧାଇଁଲେ ସରୋଷେ,
ବାଜଇ ଉରୁରେ ଆସି ଗୁରୁ ଅସିକୋଷେ ।
"ଏତେ ଦିନେ" କହେ ଭୀମ ଗର୍ଜିଣ ନିର୍ଘାତେ,
"ଏତେ ଦିନେ ଆରେ ଦୁଷ୍ଟ ! ପଡ଼ିଲୁ ମୋ ହାତେ ।
କ୍ଷତ୍ରକୁଳ କୁଳାଙ୍ଗାର ଆରେ ରେ ନିର୍ବୋଧ !
ପୂର୍ବ ଋଣ ଆଜି ରେ କରିବି ପରିଶୋଧ !"
ପ୍ରଚଣ୍ଡ ଆୟସୀ ଗଦା ଆସ୍ଫାଳି ଭୀଷଣେ
ଧାଏଁ ଭୀମ, ଧକଧକେ ଅନଳ ଲୋଚ଼ା ।
ତ୍ରାସେ ଦୁଃଶାସନ ବୀର ବେଗେ କ୍ଷେପେ ଶର,
ନିବାରେ ବୁଲାଇ ଗଦା ଭୀମ ଗଦାଧର ।
ତ୍ରସ୍ତେ ବ୍ୟସ୍ତେ ଦୁଃଶାସନ ଅନ୍ୟ ଅସ୍ତ୍ର ମାରେ,
ସେହି ରୂପେ ବୃକୋଦର ସେ ଅସ୍ତ୍ର ନିବାରେ ।
ଗଦାଘାତେ ଦୁଃଶାସନ ରଥ ଭୀମ ନାଶେ,
ଲଜ୍ଜା ଏଡ଼ି ଦୁଃଶାସନ ପଳାନ୍ତି ଡରାସେ ।
ଅନ୍ତରିକ୍ଷେ କପୋତକୁ ଦେଖିଣ ସଞ୍ଚାଣ
ବଜ୍ରନଖ ଧାଏଁ ଯେହ୍ନେ ବିଜୁଳି ସମାନ ।
ଇତର ପକ୍ଷୀଏ କରୁଥାନ୍ତି କୋଳାହଳ,
ଏଣେ ତେଣେ ନିଜ ପ୍ରାଣ ଆତଙ୍କେ ବିକଳ ।
କପୋତ ସଞ୍ଚାଣ ମୁଖ ଏଡ଼ାଇବା ଆଶେ,
ଆତଙ୍କେ ବିବିଧ ରଙ୍ଗେ ଉଡ଼ଇ ଆକାଶେ ।
କ୍ଷଣେ ଉଠେ, କ୍ଷଣେ ପଡ଼େ, କ୍ଷଣେ ଉଲଟଇ,
କିଛି ଦୂର ଯାଇ ପୁଣି ଖରେ ଲେଉଟଇ ।
ଅନ୍ତରିକ୍ଷେ ବ୍ୟଗ୍ର ନେତ୍ରେ ଆଶ୍ରା ଲୋଡୁଥାଏ,
ଜୀବନ ବିକଳେ ମୁହୁ ସଞ୍ଚାଣକୁ ଚାହେଁ ।
ତେସନେ ପଳାଏ ରଣେ ଦୁଷ୍ଟ ଦୁଃଶାସନ,
ଯଣେ ରହେ, ଯଣେ ଧାଏଁ, ଭୟେ ଉଚାଟନ ।
ଆକୁଳେ କୌରବଦଳ କଲେ ହାହାକାର,
ଧାଏଁ ଭୀମସେନ ବେଗେ ନକ୍ଷତ୍ର ଆକାର ।
କାଞ୍ଚନ-କିରୀଟ-ଚୂଡ଼ା ଦୋଳଇ ମସ୍ତକେ,
କାଞ୍ଚନ କଞ୍ଚୁକ ଦେହେ ଉଜ୍ଜ୍ୱଳ ଝଟକେ ।
କଟାକ୍ଷେ ଧରିଲା ଯାଇଁ ଦୁଃଶାସନ ବାଳ,
ଗର୍ଜଇ ବିକ୍ରମେ ମୁଖ କରି ବିକଟାଳ ।
ଆତଙ୍କେ କମ୍ପଇ ମୁହୁ ଦୁଃଶାସନ ଅଙ୍ଗ,
କେଶରୀ କବଳେ ଯେହ୍ନେ ପଡ଼ିଲା କୁରଙ୍ଗ ।
କହେ ଦୁଃଶାସନ ବୀର ବିନୟ ବଚନ,
"ଆହେ ବୀରମଣି ! ରଖ ରଖ ଏ ଜୀବନ,
ପଳାୟକ ଅଟଇ ମୁଁ, ନିରସ୍ତ୍ର ଆବର,
ବୀରଧର୍ମ ଅବିଦିତ ନୁହଇ ତୁମ୍ଭର ।"
କହେ [illegible] ଭୀମବୀନ୍ଦ୍ର, "ଆରେ ରେ ପାମର !
ବିପଦେ ପଡ଼ିଣ ଏବେ ଧର୍ମକୁ ସୁମର ।
କାହିଁ ଥିଲା ଧର୍ମ ରେ କପଟପାଶା ବେଳେ
କୃଷ୍ଣାକୁ ବିବସ୍ତ୍ର ଯେବେ କଲୁ ଅବହେଳେ ?
ଅଧର୍ମୀ ସହିତେ ଧର୍ମ ନୁହେ ପାଳିବାର,
କପଟୀ ସହିତେ ଯୁକ୍ତ କପଟ ବେଭାର ।
ମୃଗ ସଙ୍ଗେ ଯେଉଁ ଧର୍ମ ଆଚରେ ଶାର୍ଦ୍ଦୂଳ,
ଭେକ ସଙ୍ଗେ ଭୁଜଙ୍ଗମ, ଭୁଜଙ୍ଗେ ନକୁଳ ।
କରୀ ସଙ୍ଗେ ଯେଉଁ ଧର୍ମ ଆଚରେ କେଶରୀ,
ଶତ୍ରୁ ସଙ୍ଗେ ଶତ୍ରୁପଣେ ସେହି ଧର୍ମ ଧରି ।
ନୁହଇ ମୁଁ କାପୁରୁଷ, ଅସ୍ତ୍ର ନ ଧରିବି,
ବିନା ଅସ୍ତ୍ରେ ପାମର ! ତୋ ପରାଣ ହରିବି ।
ବାନ୍ଧ ତୁ ସାହସ ହୃଦେ ଆରେ ଦୁରାଶୟ !
ଏ କାଳେ ସାହସ ତୋର ଲୋଡ଼ା ଅତିଶୟ ।"
ଏହା ବୋଲି ଗଦା ଫିଙ୍ଗି ଦେଲେ ବୃକୋଦର,
ନିରାଶେ ସାହସ ଦୁଃଶା ବାନ୍ଧିଲା ମନର ।
ମହାବଳେ ଭୀମଙ୍କୁ ସେ ଧରିଲା ଆକଟି,
ବେନି ଭୁଜେ ଭିଡ଼ି ଧରେ ବୃକୋଦର କଟି ।
ପଡ଼ିଲେ ଭୂତଳେ ଭୀମ ଗର୍ଜି ଭୀମନାଦେ,
ମାଡ଼ିବସି ଦୁଃଶାସନ ବୈରିଶୋଧ ସାଧେ ।
ନିର୍ଘାତେ ପ୍ରହାରେ ମୁଷ୍ଟି ଭୀମଙ୍କ ମସ୍ତକେ,
କୁରୁବଳ ସାଧୁବାଦ ଦେଲେ ସେ ପୁଳକେ ।
ଭୟେ ପାଣ୍ଡବଳେ ପଡ଼ିଗଲା ହାହାକାର,
ଆକୁଳ ନକୁଳ ନେତ୍ରୁ ବରଷେ ଆସାର ।
ଆକୁଳ ଅର୍ଜୁନ ନେତ୍ରୁ ଝରେ ଅଶ୍ରୁଜଳ,
ବିକଳେ ପାଣ୍ଡବଦଳ କାନ୍ଦିଲେ ସକଳ ।
ଶ୍ରୀଭୁଜେ ବାନରଧ୍ୱଜେ ପୋଛି ଅଶ୍ରୁନୀର
କାନ୍ଦନ୍ତି ନୀରବେ ବସି ପ୍ରଭୁ ଯଦୁବୀର ।
ଯେସନ ବରଷାଗମେ ମାନସରୋବର
ଅସଂଖ୍ୟ ମରାଳ ରବେ ହୁଅଇ ମୁଖର,
ତେସନ ମୁଖରି କ୍ଷେତ୍ର ଦୁଃଖ କଳରବେ
ସୋଦର ବିପଦ ଦେଖି କାନ୍ଦିଲେ ପାଣ୍ଡବେ ।
ମହାବୀର ସହଦେବ ବଦନ ସହାସ,
ବିସ୍ମୟେ ପୁଚ୍ଛନ୍ତି ତାଙ୍କୁ ପ୍ରଭୁ ଶ୍ରୀନିବାସ –
"କହ ବୀର କିପାଁ ତୋର ହରଷ ବଦନ ?
ଅଗ୍ରଜ ବିପଦେ ହର୍ଷ ନୁହଇ ଶୋଭନ ।"
ଶୁଣି ବାସୁଦେବ ବାଣୀ କହେ ମାଦ୍ରୀସୁତ,
"କାହିଁକି କାତର ଏଡ଼େ ହେଉ ତୁ ଅଚ୍ୟୁତ ?
କି ଅବା ନ ଜାଣୁ ନାଥ ଜଗତର ସ୍ୱାମୀ,
ଜାଣୁ ଜାଣୁ କାହୁ ନାଥ, ଅଟୁ ଅନ୍ତର୍ଯାମୀ ।
ବାଲ୍ୟେ ଲଭିଥିଲେ ଭୀମ ଶତଶୃଙ୍ଗ ଶାପ,
ତହୁଁ ଆଦ୍ୟ ରଣେ ପାଉଛନ୍ତି ମନସ୍ତାପ ।

ତୁ ନାଥ ଭୀମଙ୍କୁ ବେଗେ କରାଅ ଚେତନ,
ଶତଶୃଙ୍ଗ ଗିରିଙ୍କୁ ସେ କରନ୍ତୁ ସ୍ମରଣ।
କାହିଁ ଭୀମ ରଣସିଂହ, କାହିଁ ଦୁଃଶାସନ!
ଶାପ ଯୋଗୁଁ ଉପୁଜିଲା ଦୁର୍ଗତି ଏସନ।''
ପାଞ୍ଚଜନ୍ୟ ଶଙ୍ଖନାଦ କଲେ ନାରାୟଣ,
ନିଜ ତେଜ ଭୀମକୁ ସେ ଦେଲେ ସେହି କ୍ଷଣ।
''ଶତଶୃଙ୍ଗ,'' ''ଶତଶୃଙ୍ଗ'' ଘୋଷେ ଶଙ୍ଖବର,
ପଶିଲା ଶବଦ ଯାଇ ଭୀମଙ୍କ କର୍ଣ୍ଣର।
ଚେତନା ଲଭିଣ ବୀର କଟାକ୍ଷେ ଉଠିଲା,
ଲେଉଟାଇ ଦୁଃଶାକୁ ସେ ମାଡ଼ିଣ ବସିଲା।
ରଣରଙ୍ଗେ ସିଂହ ସମ ଅଟେ ବାୟୁସୁତ,
ମହାବୀର୍ଯ୍ୟବନ୍ତ ସେହୁ ବିକ୍ରମେ ଅଦ୍ଭୁତ।
ମହାବିଷ୍ଣୁତେଜେ ବୀର ତେଜସ୍ୱୀ ଆବର,
ହେଲା ସେ ବିରାଟ ମୂର୍ତ୍ତି ମହାଭୟଙ୍କର।
ମହାଶବ୍ଦେ ଭୂତଳେ ପଡ଼ିଲା ଦୁଃଶାସନ,
ବଜ୍ରାଘାତେ ଶାଳତରୁ ପଡ଼ଇ ଯେସନ।
ବିନ୍ଧ୍ୟାଚଳ ତୁଙ୍ଗ ଶୃଙ୍ଗେ, କୁରୁପାଣ୍ଡୁ ବଳ
ଆତଙ୍କେ ଅବଶ ଚକ୍ଷୁ ବୁଜିଲେ ସକଳ।
ପର୍ବତ ଆକାରେ ପଡ଼ିଅଛି ଦୁଃଶାସନ,
ବସିଅଛି ତା ଉପରେ ପବନନନ୍ଦନ।
ଭୟଙ୍କର ହୁଙ୍କାରେ ଅଧରେ ଦନ୍ତ ଚାପି
ରେରେକାର କରିଣ ଗର୍ଜଇ କାଳରୂପୀ।
ଗଗନ ମାର୍ଗକୁ ତୋଳୁଅଛି ବଜ୍ରମୁଷ୍ଟି,
କିଅବା ମନ୍ଦରଗିରି ପଡୁଅଛି ତୁଟି।
କାଳଚକ୍ର ପ୍ରାୟେକ ବୁଲାଇ ବେନି ଡୋଳା
ଚରଣେ ଚାପଇ ଭୀମ ଦୁଃଶାସନ ଗଳା।
''ଆରେ ଆରେ ଦୁଃଶାସନ ଦୁରନ୍ତ କୌରବ,
ଏବେ ତୋ ଗରବ ରଣେ ହେଲା ପରାଭବ!
ଶତ ପୁତ୍ର ଜାତ କଲା ତୋହର ଜନନୀ,
ସମସ୍ତେ ମୋ ଅସ୍ତ୍ରାଘାତେ ଶୋଇବେ ଅବନୀ!
ଧାତାର ଲେଖନ ଏହୁ କେ କରିବ ଆନ?
ଆରେ ଦୁଷ୍ଟ! ଆଜି ତୋର ନାହିଁ ପରିତ୍ରାଣ।
କାଲିରେ ସମରେ ପଳାଇଲୁ ମୋ ଆଗରୁ,
ଆଜି ରେ ପାଇଲି ଭେଟ ଦଇବଯୋଗରୁ।
ଆରେ ମୂର୍ଖ! ଆଜି ତୋତେ କରିଣ ସଂହାର
କରିବି ଦ୍ରୌପଦୀ ଚିର-ଦୁଃଖ ଆଜି ପାର।
ଆରେ ଦୁଷ୍ଟ! କେ ରଖିବ ତୋତେ ରବିତଳେ,
ଦୁରନ୍ତ ପଡ଼ିଲୁ ନିଷ୍ଠେ କୃତାନ୍ତ କବଳେ।''
ତରାଟି ଚାହିଁଲା ଭୀମ ବିରାଟ ମୂରତି,
ତରାଟି ଚାହିଁଲା ରୋଷେ ଅନ୍ତରିକ୍ଷ ପ୍ରତି।
ଗର୍ଜିଣ କହିଲା, ''ଆହେ ଆହେ ସୁରଗଣ!
ଆହେ ସୁରନାଥ ଇନ୍ଦ୍ର ଶୈଳ-ବିଦାରଣ।
ପବନ, ତପନ, ଯମ, ବ୍ରହ୍ମା ଆଦିକରି,
ମିଳ ଏ ସମରେ ଆସି କରେ ଶସ୍ତ୍ର ଧରି।
ଆସ କେ ରଖିବ ରଖ କୌରବ ପାମର,
ଆସ ଆସ ବେଗ କରି ବିଳମ୍ବ ନ କର।''
ଭୀମର ଭୀଷଣ ବାଣୀ ଶୁଣି ସୁରଗଣେ,
ତ୍ରାସିଲେ ଦାନବ-ତ୍ରାସ ବାସବ ଆପଣେ।
ଥରହର କମ୍ପିଲା ସୁବର୍ଣ୍ଣ-ନିକେତନ,
ମଣିଚୂଡ଼, ଥରହର କମ୍ପିଲା ଆସନ।
ମହାପ୍ରଳୟେ ଯେସନ ପ୍ରଭୁ ଦିଗମ୍ବର-
-ଭୀଷଣ-ବିଷାଣନାଦେ କମ୍ପେ ଥରହର
ତିନିପୁର, ଭୀମସେନ ଭୟଙ୍କର ନାଦ,
ଶୁଣି ମରାମର ଜୀବେ ଗଣିଲେ ପ୍ରମାଦ।
ମହାଭୟେ ପାଣ୍ଡୁ-ଗଣ୍ଡ ହେଲେ ଆଖଣ୍ଡଳ,
ମହାଭୟେ ପାଣ୍ଡୁ-ଗଣ୍ଡ ହେଲେ ଦେବଦଳ।
କେହି ଅଗ୍ରସର ଯହୁଁ ନ ହେଲେ ତରାସେ,
ଦୁଃଶାସନେ ଚାହିଁ ଭୀମ କହନ୍ତି ସହାସେ।
ସେ ବିକଟ ହାସ୍ୟ ଦେଖି ଡରିଲା ସଂସାର!
ଗର୍ଜିଣ କହନ୍ତି ଭୀମ, ''ଆରେ କୁଳାଙ୍ଗାର!
ଆରେ ଦୁଃଶାସନ କେହି ରଖି ନ ପାରିଲେ!''
ପାତାଳପୁରକୁ ଭୀମ ପୁଣି ସେ ଚାହିଁଲେ,
''ଆହେ ନାଗଲୋକ, ହେ ଅନନ୍ତ ଧରାଧର!
ଧରଣୀ ଧାରଣ ତୁମ୍ଭେ କର ମସ୍ତକର।
ସପ୍ତଲୋକେ ଶ୍ରେଷ୍ଠ ଅଟ ତୁମ୍ଭେ ନାଗେଶ୍ୱର,
ପାରିଲେ ରଖ ହେ ଆସି କୌରବ ପାମର।''
କାମରୂପୀ ବୃକୋଦର ଚାହାଁନ୍ତେ କରାଳ,
ଥରହର କମ୍ପିଲା ସେ ସପତ ପାତାଳ।
ନାଗଲୋକ ତ୍ରାସିଲେ ଭୀମର ମୂର୍ତ୍ତି ଚାହିଁ,
ଆତଙ୍କେ ଅସ୍ଥିର ହେଲେ ନାଗଲୋକସାଇଁ।
କେହି ନ ଆସିଲେ ଯହୁଁ ଭୀମଙ୍କର କତି,
ସରୋଷେ ଚାହିଁଲେ ଭୀମ କୁରୁଥାଟ ପ୍ରତି।
କୁରୁବଳ ପାଣ୍ଡବଳ ହେଲେ ସ୍ତମ୍ଭୀଭୂତ,
ଗମ୍ଭୀରେ ଅମ୍ବରେ ଯେହ୍ନେ ହୁଙ୍କାରେ ଜୀମୂତ।
ଗର୍ଜିଣ କହଇ ଭୀମ ଭୀମପରାକ୍ରମ,
କୌରବସଂହାରେ ଯେହ୍ନେ କାଳାନ୍ତକ ଯମ।
ଦୁଇବଳ ଅନାଇ ସେ ରହିଲେ ସ୍ତିମିତେ,
ଭୈରବ ହୁଙ୍କାରେ ଭୟ ଉପୁଜିଲା ଚିତେ।
''ଆରେ ଦୁର୍ଯ୍ୟୋଧନ, ଆରେ କୁରୁ ଦୁରାଚାର!
ଆରେ କର୍ଣ୍ଣ ଅବିନୟ-ତରୀ-କର୍ଣ୍ଣଧାର!
ଆହେ କୁରୁ ସେନାପତି ମହାଧନୁର୍ଦ୍ଧର,
ହେ ସୌବଳ ଦ୍ୟୂତଜୟୀ ହେ ଦ୍ରୋଣକୁମର!

ଆହେ ମହାବୀର! ଏହା କେମନ୍ତେ ସହିବ?
ତୁମ୍ଭେ ଥାଉଁ ଥାଉଁ ଦୁଃଶାସନ ନାଶ ଯିବ!
ବଡ଼ ପ୍ରିୟ ଦୁଃଶାସନ ଅଟଇ ତୁମ୍ଭର,
ଆସି ରକ୍ଷା କର ବେଗେ ପ୍ରିୟ ସହୋଦର।
ସମ୍ପଦକାଳକୁ ସଖା ସମସ୍ତେ ତ ଥିଲ,
ବିପଦ କାଳରେ କେହି କତି ନ ପଶିଲ!''
ପୁଣି କୁରୁଯୋଧଙ୍କୁ ସମ୍ବୋଧି ବୃକୋଦର
ସଦର୍ପେ କହଇ, ''ଆହେ ଆହେ ଅସ୍ତ୍ରଧର
ଶୂରେ! ଭଲା ଆସି ରଖ ଦୁଃଶାସନ ଜୀବ!
ଏତେ ସଖା ଥାଉଁ ଦୁଃଶାସନ ନାଶ ଯିବ!
କୁରୁ ନୃପତିର ଧନ ଭଣ୍ଡାର ଖାଇଲ,
ବିପଦକାଳକୁ କେହି ସାହା ନ ହୋଇଲ!''
କେହି ନ ଆସିଲେ ଯହୁଁ ଗର୍ଜି ବୃକୋଦର,
ଦୁଃଶାସନ ମୁଖ ଚାହିଁ କହିଲେ, 'ବର୍ବର',
ଆରେ ରେ ଦୁରନ୍ତ! କେହି ନ ଆସିଲେ କତି,
ଯାର ଆଜ୍ଞାବଳେ ଯାଜ୍ଞସେନୀଙ୍କ ଦୁର୍ଗତି
କଲୁ ଦୁଷ୍ଟ! ନୋହିଲା ସେ ଏତେବେଳେ ସାହା,
ରଖି ନ ପାରିଲା ତୋର ଶିର କୁରୁନାହା!''
ପୁଣି ସେ ଚାହିଁଲା ବୀର ନିଜ ଥାଟ ପ୍ରତି,
''ଆସି ସାହା ହୁଅ ଯାର ଅଛଇ ଶକତି।
କେ ଆସିବ ବେଗେ ଆସ, ରଖ ଦୁଃଶାସନ,
ଦେଖାଅ ଯାହାର ଯେତେ ଅଛି ବୀରପଣ।''
''ହେ କିରୀଟି! ଧର ତୁମ୍ଭେ କୋଦଣ୍ଡ ଗାଣ୍ଡୀବ
ପାରିଲେ ରଖ ହେ ବୀର ଦୁଃଶାସନ ଜୀବ।
ତ୍ରିଭୁବନେ ମହାବୀର ବୋଲାଉ ଅର୍ଜୁନ!
ଅଛି ତୋର ଅକ୍ଷୟ ସେ ଶରପୂର୍ଣ୍ଣ ତୂଣ।
ଧ୍ୱଜେ ବିରାଜଇ ତୋର ବୀର ହନୁମାନ,
ସାରଥି ଅଟନ୍ତି ତୋର ପ୍ରଭୁ ଭଗବାନ।
ପାଶୁପତ ଅସ୍ତ୍ର ସିଦ୍ଧ ଅଟଇ ତୋହର,
ତୁ ପାରିଲେ ରଖ ବୀର! କୌରବ ପାମର।''
''ହେ ମୁରାରି! ସୁଦର୍ଶନଧାରୀ ଯଦୁବୀର!
ତୁ ପାରିଲେ ରଖ ଦୁଷ୍ଟ ଦୁଃଶାସନ ଶିର।''
ନିଜ ନିନ୍ଦା ଶୁଣି ପାର୍ଥ ଥିଲେ ନିରୁତ୍ତର,
ବାସୁଦେବ ନିନ୍ଦା ଶୁଣି ରୁଷିଲେ ଆବର।
ବିଜୟ ଗାଣ୍ଡୀବେ ବୀର ଖଞ୍ଜିଲେ ସାୟକ,
ଧରିଲେ କିରୀଟି-କର ରୁକ୍ମିଣୀନାୟକ,
ବୋଲନ୍ତି ଗାଣ୍ଡିବୀ, ''ପ୍ରଭୁ! ନ କର ବାରଣ,
ନିଶ୍ଚେ ମୁଁ ରଖିବି ଭୀମ କୋପୁଁ ଦୁଃଶାସନ।
ସହି ମୁଁ ପାରଇ ସବୁ, ତୁମ୍ଭ ନିନ୍ଦାବାଣୀ
କେବେଁ ନ ସହିବି, ଏ ମୋ ପଣ ଚକ୍ରପାଣି!
ନିଶ୍ଚେ [illegible] ନାରାଚେ ମୁଣ୍ଡ ହାଣିବି ଭୀମର,
ତୁମ୍ଭ ନିନ୍ଦା ଯେ କରେ ସେ ନୁହେ ମୋ ସୋଦର।''
ହୁଙ୍କୁଡ଼ି ଗାଣ୍ଡୀବ ନେଲେ ପ୍ରଭୁ ଚକ୍ରପାଣି,
''ଛାଡ଼ ଛାଡ଼ ଭୀମ ମୁଣ୍ଡ ନ ପକାଅ ହାଣି!
କାହାକୁ କରୁ ତୁ କୋପ ଆହେ ଧନଞ୍ଜୟ!
ଯାର ଇଚ୍ଛାବଳେ କ୍ଷଣେ ହୁଅଇ ପ୍ରଳୟ,
ତା ତେଜେ ତେଜସ୍ୱୀ ଭୀମ ଅଟଇ ସମ୍ପ୍ରତି,
ଧରିଅଛି ମହାବୀର ସଂହାର ମୂରତି।
ନାହିଁ ବିଶ୍ୱେ ଭୀମକୁ ଯେ ସମରେ ଜିଣିବ,
ତୁ ପୁଣି ଦେଖାଉ ତାକୁ ଏ ଛାର ଗାଣ୍ଡୀବ!
ଏ ରୂପେ ନାଶିଲି ମୁହିଁ ହିରଣ୍ୟକଶିପୁ,
ଏ ରୂପେ ନାଶଇ ମୁହିଁ ଧର୍ମର ଯେ ରିପୁ,
ଧର୍ମର ସହାୟ ସଦା ଏ ମୂର୍ତ୍ତି ମୋହର,
ଧର୍ମଦ୍ରୋହୀ ପାପୀ ପକ୍ଷେ ମହାଭୟଙ୍କର।''
ଏମନ୍ତ ବୋଲନ୍ତେ ସିନ୍ଧୁସୁତା-ପ୍ରାଣଧନ,
ନିଶ୍ଚଳେ ବସିଲେ ରଥେ ନରନାରାୟଣ।
ଚାହିଁ ସହଦେବ ପ୍ରତି କହେ ଭୀମବୀର,
''ବେଗେ ବିଜେକର ବାବୁ! ପାଣ୍ଡବଶିବିର,
ପାଣ୍ଡବ-କେଶରୀ-ରାଣୀ ଆଣ ଯାଜ୍ଞସେନୀ,
ଦୁଃଶାରକ୍ତଲିପ୍ତହସ୍ତେ ବାନ୍ଧିବି ତା ବେଣୀ।''
ଶୁଣି ଭୀମସେନ-ବାଣୀ ମନ୍ତ୍ରିଚୂଡ଼ାମଣି
ବେଗେ ବିଜେ କଲେ ଯହିଁ ପାଣ୍ଡବରମଣୀ,
ବସିଥିଲେ ସତୀ ପତି-ଆଗମନ ଆଶେ,
ମିଳିଲେ ଶୂରେନ୍ଦ୍ର ଯାଇଁ ସତୀଙ୍କ ସକାଶେ।
ଦରହସିତ ବଦନ ଦେଖିଣ ତାଙ୍କର
ପଚାରନ୍ତି ଦେବୀ, କହ ବାରତା ଯୁଦ୍ଧର।
ବୋଲେ ସହଦେବ, ''ଦେବି! ବିଜେ କର ରଥେ,
ଏହିକ୍ଷଣି ଚାଲ ଭୀମସେନଙ୍କ ଅଗ୍ରତେ।
ଭୀମସେନ ଠାକୁରଙ୍କ ଅଟେ ଏ ଆଦେଶ,
ବାନ୍ଧିବେ ସେ ଆଜି ତୋର ଚିରମୁକ୍ତ କେଶ।
ଏତେଦିନେ କଷ୍ଟ ଦେବି! ହେଲା ଅବସାନ,
କପଟପାଶାରେ ଦୁଷ୍ଟ କଲା ଅପମାନ,
ଲଭିବ ଉକ୍ରଟ ଆଜି ତାର ପ୍ରତିଫଳ,
ଦୁଃଶାସନ ରକ୍ତେ ଧରା ହେବ ସେ ଶୀତଳ।''
ଶୁଣିଣ ଦ୍ରୌପଦୀ ଦେବୀ ଅନ୍ତରେ ସତ୍ରାସ,
ବେଗେଣ ମିଳିଲେ ଯାଇ ଭୀମସେନ ପାଶ।
ମହାମନ୍ତ୍ରୀ ପାଣ୍ଡବ-ସମ୍ରାଟ-ପାଟରାଣୀ-
-ହସ୍ତ ଧରି ଭୀମ ଆଗେ ଭେଟାଇଲେ ଆଣି।
ପଡ଼ିଅଛି ଦୁଃଶାସନ ପର୍ବତଆକାରେ,
ବସିଣ ଉପରେ ଭୀମ ନିର୍ଘାତେ ପ୍ରହାରେ।
କାଳରୂପୀ ଭୀମସେନ ଭୈରବ ମୂରତି
ଦେଖିଣ ତ୍ରାସିଲେ ମନେ ପାଣ୍ଡବଯୁବତୀ।

ଆସନ୍ତେ ଦ୍ରୌପଦୀ କର ଧରିଣ ମନ୍ତ୍ରୀର,
"ଆସ ଆସ ଦେବୀ ଗୋ !" ଡାକଇ ଭୀମବୀର,
"କୁରୁସଭାତଳେ ବସ୍ତ୍ର କଲା ଯେ ହରଣ,
ଚିହ୍ନିବଟି ଏହିଟିକି ସେହି ଦୁଃଶାସନ ।
ଭଲକରି ଦେଖ ମୋର ଭ୍ରାତାଙ୍କ ବଦନ,
ଉପକାରୀ ପୁରୁଷ ଗୋ ଅଟନ୍ତି ଏ ଜନ ।
କେତେ କେତେ ଦଣ୍ଡ ତୋତେ କୁରୁସଭାତଳେ
ଦେଇଥିଲେ ବିଜ୍ଞମଣି କୁରୁଆଜ୍ଞାବଳେ !"
ଉତାନେ ପତିତ କୁରୁ ଭ୍ରାତା ମୁଖ ଚାହିଁ,
ଜଳଦଗମ୍ଭୀର ସ୍ୱନେ କହେ ଭୀମ ରାଇ,
"ଆରେ ଦୁଃଶାସନ ! ତୋତେ ଛାଡ଼ିଲା ଦଇବ,
ତିନିପୁରେ ରଖି ନ ପାରିଲେ ତୋର ଜୀବ,
ଦ୍ୱିଜକୁଳଚୂଡ଼ାମଣି ଦ୍ରୁପଦରାଜନ
ଶତ ଋଷି ଘେନି କଲେ ଯଜ୍ଞ ଆୟୋଜନ,
ହୋମାନଳ ବିଦାରି ଉଠିଲେ ଯେ ରମଣୀ,
ସାଧ୍ୱୀପଣେ ଯେ ନାରୀକୁ ଶ୍ରେଷ୍ଠ ବୋଲି ଗଣି,
ତୁ ଛାର ପାମର ରେ ଧରିଲୁ ତାର କେଶ,
ଗୁରୁ ଆଗେ ଅପମାନ କଲୁ ରେ ଅଶେଷ ।
ପାଣ୍ଡୁ-କୁଳ-ପାଟରାଣୀ କୃଷ୍ଣା ଯାଜ୍ଞସେନୀ,
ଆକର୍ଷି ଝିଙ୍କିଲୁ ରେ ପାମର ! ତାର ବେଣୀ ।
କାଳେ କର୍ମବୃକ୍ଷ ଫଳେ ଶାସ୍ତ୍ରର ଏ ଲେଖା,
ତୋହୋ କର୍ମ୍ମଫଳ ଏତେ ଦିନେ ଦେଲା ଦେଖା ।
ଦଶନଖେ ବିଦାରିବି ତୋର ବକ୍ଷସ୍ଥଳ,
ତେବେ ସେ ମୋହର ହିଆ ହୋଇବ ଶୀତଳ ।
ଏବେ ଇଷ୍ଟଦେବଙ୍କୁ ସ୍ମର ରେ ବୀର ଦୁଃଶା !
କରିବି ସମ୍ପ୍ରତି ତୃପ୍ତ ମୋ ରୁଧିରତୃଷା ।
ପଡ଼ଇ କି ମନେ ତୋର ଆରେ କୁରୁ କ୍ରୂର !
ଦାସୀପଣେ କୃଷ୍ଣାକୁ ଝିଙ୍କିଲୁ ଅନ୍ତଃପୁର
ଯେ କାଳେ, ସହସା ମହୀ କମ୍ପିଲେ ବିକଳେ,
ଟଳିଲା ହସ୍ତିନାହର୍ମ୍ମ୍ୟରାଜି ଟଳଟଳେ ।
ଚନ୍ଦ୍ରଶାଳାଚୂଡ଼େ ବସି ରାବିଲେ ପେଚକ,
ଆଚମ୍ବିତେ ନଭୋଦେଶେ ଶୁଭିଲା ଚଡ଼କ ।
ରାବିଲେ ଭୀଷଣ ରାବେ ଗୋମାୟୁ ଗର୍ଦ୍ଦଭ,
ସଭାସ୍ଥଳେ ଶୁଭିଲା ସେ ଭୟଙ୍କର ରବ ।
ଚକିତ ହୋଇଲେ ସର୍ବେ ଭୀଷ୍ମ ଦ୍ରୋଣ ଆଦି,
ସ୍ୱସ୍ତି ସ୍ୱସ୍ତି ଉଚ୍ଚାରିଲେ ଋଷି ବ୍ରହ୍ମବାଦୀ ।
ନିୟତି ଘୋଷଣା ସେହି ଜାଣି ନ ଜାଣିଲୁ,
ଅନିତ୍ୟ ଐଶ୍ୱର୍ଯ୍ୟ ମଦେ ଧର୍ମ୍ମକୁ ପାଡ଼ିଲୁ
ଅଗ୍ରଜ ବାତ୍ସଲ୍ୟେ ଦୃଢ଼ କରିଣ ନିର୍ଭର
ଉପହାସ-ରସିକ ତୁ ଥିଲୁ ରେ ବର୍ବର !
ସେହି ଧର୍ମ ଅନ୍ତେ ଏବେ ହେଲାଟି ପ୍ରବଳ,
ସେହି ଧର୍ମ ଏ ଭୁଜେ ଦେଉଛି ପ୍ରତିଫଳ ।"
କହନ୍ତି ଦ୍ରୌପଦୀ, "ନାଥ ! ହେଉଛି ସ୍ମରଣ,
ଅନ୍ତଃପୁରେ କୁନ୍ତୀ ସଙ୍ଗେ ଥିଲି, ଏ ଦୁର୍ଜନ
ନିରଦୟ, ନିରପେକ୍ଷ, ନିର୍ଭୟେ ଚଣ୍ଡାଳ
ବାମ କରେ କରଷି ଧରିଣ ମୋର ବାଳ
ଆଣନ୍ତେ ଚରଣ ନ ପଡ଼ଇ ଭୂମିତଳେ,
ପଦ ବିପ୍ଳାବିତ ନାଥ ! କଲି ଅଶ୍ରୁଜଳେ ।
କୁରୁସଭାତଳେ ଗୁରୁଜନଙ୍କ ଛାମୁର
ଅବହେଳେ ବିବସନ କଲା ମତେ କ୍ରୂର ।
ଆକୁଳେ ଡାକିଲି, ନାଥ ! କେହି ନ ଶୁଣିଲେ,
ଭୀଷ୍ମ ଦ୍ରୋଣ ଆଦି କରି ବସିଣ ଯେ ଥିଲେ ।
ସମସ୍ତଙ୍କୁ ତ୍ରସ୍ତେ ବ୍ୟସ୍ତେ ଡାକିଲି ବହନ,
ଦୟା ନ ବହିଲେ ଶୁଣି ଅବଳା ରୋଦନ ।
ଲଜ୍ଜାନିବାରଣବାନା ପ୍ରଭୁ ଭଗବାନ
ଧର୍ମର ସହାୟ ହୋଇ କଲେ ପରିତ୍ରାଣ ।
ସେକାଳେ ବିକଳ ଯେତେ ହେଲା ଏ ହୃଦୟ,
ଜାଣନ୍ତି କେବଳ ସେହି ପ୍ରଭୁ ଦୟାମୟ ।"
ତରୁଣୀ-କରୁଣ-ବାଣୀ ଶୁଣିଲେ ମାରୁତି,
ହେଲା ସେ ବିଷମ-ରୋଷ-ଅନଳେ ଆହୁତି ।
ପୂର୍ବ ଦୁଃଖ ଅପମାନ କଲେକ ସ୍ମରଣ,
ବିଷଦାନ, ଜତୁଗୃହ, ବନବିବାସନ ।
ମହାକୋପେ ଗରଜିଲେ ପବନତନୁଜ,
ଆକ୍ରୋଶେ ଧରିଲେ ଦୁଃଶାସନ ବାମ ଭୁଜ ।
ବକ୍ଷେ ଶିରେ ପାଦ ଚାପି ଉପାଡ଼େ ସେ କର,
ଶବଦେ ଅବନୀ ଭୟେ କମ୍ପେ ଥରହର ।
ଭୁଜ ଉପାଡ଼ନ୍ତେ ଶବ୍ଦ ଶୁଭେ ଭୟଙ୍କର,
କି ଅବା ଉପୁଡ଼ି ପଡ଼େ ହିମାଦ୍ରି ଶିଖର ।
ପ୍ରଚଣ୍ଡ ବୈଷ୍ଣବ ତେଜେ ଗର୍ଜଇ ପାବନି,
କି ଅବା ଗଗନୁ ଖସେ ଭୀଷଣ ଅଶନି ।
ଅଷ୍ଟକୁଳାଚଳ କମ୍ପେ, କମ୍ପେ ତିନିପୁର,
ଆତଙ୍କେ କମ୍ପିଲେ ନାଗ ନର ସୁରାସୁର ।
ରବିରଥେ ଶୂନ୍ୟପଥେ କମ୍ପିଲେ ଅରୁଣ,
କୂଳ-ପ୍ରକମ୍ପନ-ଦେବ କମ୍ପିଲେ ବରୁଣ ।
କମ୍ପିଲା ସଘନେ ରମ୍ୟ ମୁକୁତାସଦନ
ନୀଳ ଅମ୍ବୁରାଶି ତଳେ, କମ୍ପିଲା ଆସନ ।
ସୁରଙ୍ଗ ପ୍ରବାଳମୟ ଭେଦି ଜଳରାଶି
ଖସିଲେ ତରଙ୍ଗାବେଗ ପାଶାଘାତେ ପାଶୀ ।
ମହିଷ-ମର୍ଦ୍ଦିନୀ-ଚଣ୍ଡୀ-ପ୍ରଚଣ୍ଡ-ଶବଦ
ପ୍ରାଏକ କଲା ସେ ଶବ୍ଦ ତ୍ରିଲୋକ ସ୍ତବଧ ।
ଶୋଣିତ-ପାଟଳ ଭୁଜ ଭୀମ ଉପାଡ଼ିଣ
ଗଗନକୁ ଫିଙ୍ଗିଦେଲା ବେଗେ ବୁଲାଇଣ ।

ବରଷେ ରୁଧିର ବିନ୍ଦୁ ଆକାଶ ବିସ୍ତାରି,
ଅନ୍ତରିକ୍ଷେ ଶ୍ୟେନପକ୍ଷୀ ଭୁଜ ନେଲା ମାରି ।
ପୁଣି ଦକ୍ଷ ଭୁଜ ଧରି ଉପାଡ଼ିଲା ବଳେ,
ଏ ଭୁଜେ ଧର୍ମଙ୍କୁ ବସାଇଲୁ ସଭାତଳେ ।
ବୁଲାଇଣ ଫିଙ୍ଗି ଦେଲା ସେ ଭୁଜ ହୁଙ୍କାରି,
ଅନ୍ତରିକ୍ଷେ ଶ୍ୟେନପକ୍ଷୀ ପୁଣି ନେଲା ମାରି ।
କୃଷ୍ଣା କୃଷ୍ଣକେଶେ ରକ୍ତ ବର୍ଷଇ ପ୍ରଚୁର,
ବିଦାରିଲା ବୃକୋଦର ଦୁଃଶାସନ ଉର ।
ଦନ୍ତ କଡ଼ମଡ଼ି ସିଂହ ପଡ଼େ ଆଚମ୍ବିତ
ବୃଷସ୍କନ୍ଧେ, ପଡ଼ି ଯେହ୍ନେ ପିଅଇ ଶୋଣିତ ।
ତେସନେ ବିକ୍ରମ-ସିଂହ ଭୀମ ମହାବୀର,
ରକ୍ତାକ୍ଷ, ଅରାତି ବକ୍ଷେ ପିଅଇ ରୁଧିର ।
ଦୂରେ ବୃଷପତି ରହେ ସନ୍ତ୍ରାସେ ଅନାଇ,
ତେସନେ ସନ୍ତ୍ରାସେ ଦୂରୁ ଚାହେଁ କୁରୁସାଇଁ ।
ରକ୍ତହସ୍ତେ ଯାଜ୍ଞସେନୀ ମୁକ୍ତ ଲମ୍ବ କେଶ
ବାନ୍ଧିଲା ଆନନ୍ଦେ ବାୟୁନନ୍ଦନ ବୀରେଶ ।
ଅସ୍ତଗିରିଶୃଙ୍ଗେ ଏବେ ପ୍ରବେଶ ତପନ,
ପଶ୍ଚିମ ଆକାଶ ଦିଶେ ଲୋହିତ ବରଣ ।
ଅସ୍ତଗାମୀ ରବିପ୍ରଭା ପଡ଼ି ରଣସ୍ଥଳେ
ଦିଶଇ ମିଶ୍ରିତ ଯେହ୍ନେ ପାଟଳ ପାଟଳେ ।
ସନ୍ଧ୍ୟା ଜାଣି ଦୁଇଦଳ ଗଲେ ନିଜ ସ୍ଥାନ,
ମହାସୁଖେ ଏକ, ପୁଣି ମହାଶୋକେ ଆନ ।
ଦ୍ରୁପଦନନ୍ଦିନୀ ସଙ୍ଗେ ସୁନ୍ଦର ସ୍ୟନ୍ଦନେ
ବାହୁଡ଼ିଲେ ଭୀମବାହୁ ଭୀମ ହୃଷ୍ଟମନେ ।
ଯମୁନା ନିର୍ମଳ ନୀରେ ପଖାଳି ଶରୀର
ମିଳିଲେ ସାନନ୍ଦେ ଯାଇଁ ପାଣ୍ଡବ ଶିବିର ।

□ □ □

## (ଗ) ଭାରତଈଶ୍ୱରୀ – (ଭିକ୍ଟୋରିୟା)

ସୁନୀଳ ସାଗରେ ରାଜେ ଶ୍ୱେତ ଦ୍ୱୀପ
ଅଜେୟ ଜଗତେ ନାମ ବ୍ରିଟାନୀୟା,
ପ୍ରାକାର ଯାହାର ନୀଳ ପାରାବାର
ଅଖିଳ ଅବନୀ ମଧ୍ୟେ ମାନନୀୟା,
ଅଖିଳ ଅବନୀ-ପତି ପୂଜନୀୟା । ୫ ।
ଅଜେୟ ଜଗତେ ବ୍ରିଟିଶ-କେଶରୀ
ବ୍ୟାପିଛି ଯା ଯଶ ସର୍ବ ମର୍ତ୍ତ୍ୟପୁର,
ଜଗତ-ନୟନ ସୁଧାଂଶୁ ତପନ
କିରଣର ଗତି ଯାଏ ଯେତେ ଦୂର,
ଦୁର୍ଜୟ ସର୍ବତ୍ର ଶ୍ୱେତଦ୍ୱୀପ ଶୂର । ୧୦ ।
ନିରପେକ୍ଷ ଯେହୁ ଶମନ ସମାନ
ରୋଷେ ବୈଶ୍ୱାନର ପ୍ରାଏ ସର୍ବନାଶୀ,
ନୟେ ବୃହସ୍ପତି, ପାଳନେ ଶ୍ରୀପତି
ଦୟାର ଆଧାର ଶ୍ୱେତଦ୍ୱୀପବାସୀ,
ଶକ୍ତି ସଙ୍ଗେ କ୍ଷମା ଗୁଣ ପରକାଶି । ୧୫ ।
ଖଟନ୍ତି ଯା ପଦେ ନୀଳଅମ୍ବୁପତି
ଗୌରୀପଦେ ଯେହ୍ନେ ହରି କରି-ତ୍ରାସ,
ବିଜ୍ଞାନ କୌଶଳେ ଉଠି ନଭସ୍ଥଳେ
ତାରା ସଙ୍ଗେ ଯେହୁ କରନ୍ତି ସମ୍ଭାଷ ।
ତଡ଼ିତ ସଙ୍ଗେ ଯେ କରନ୍ତି ବିଳାସ । ୨୦ ।
ମେରୁ ମହାର୍ଣ୍ଣବ ତୁଷାର ଉରସେ,
ନିରକ୍ଷମଣ୍ଡଳ ଆଗ୍ନେୟ ଉତ୍ସଙ୍ଗେ,
ସାଗର ବକ୍ଷରେ, ଭୂଧର କନ୍ଦରେ,
ସର୍ବତ୍ର ଶ୍ୱେତାଙ୍ଗେ ବିହରନ୍ତି ରଙ୍ଗେ,
ରତ ଅବିରତ ବିଜ୍ଞାନ ପ୍ରସଙ୍ଗେ । ୨୫ ।
ସାଗର-କେଶରୀ ସଞ୍ଚାଳି କେଶର
ଗରଜେ ଯେ କାଳେ ଉଗାରି ଅନଳ,
କମ୍ପେ ବସୁମତୀ, କମ୍ପେ ଅମ୍ବୁପତି ।
ବୁଡ଼ାଇ ଦିଅଇ ସାଗର ତହଳ,
ଅନୁକରେ ବଜ୍ରଧ୍ୱନି ଅବିକଳ । ୩୦ ।
ସ୍ୱାଧୀନତା ଦେବୀ ପ୍ରିୟ ନିକେତନ
ଅଟେ ଯେ ବ୍ରିଟନ, ସେ ଦ୍ୱୀପ ଈଶ୍ୱରୀ,
ପୂର୍ବ ଭାଗ୍ୟଫଳେ, ପୂର୍ବ ତପୋବଳେ,
ଆର୍ଯ୍ୟଙ୍କର ଆଜି ରାଜରାଜେଶ୍ୱରୀ,
ମଣି କାଞ୍ଚନର ସଂଯୋଗ ଏପରି । ୩୫ ।
ମାନବ ଦାସତ୍ୱ-ଶୃଙ୍ଖଳ ମୋଚନ
କଲା ଯେଉଁ ଜାତି, ସ୍ୱାଧୀନତା ଦାନ,
ଯାର ନିତ୍ୟବ୍ରତ, ତାର ଅନୁଗତ
ଆଜି ଏ ଯାବନ୍ତ ଭାରତ ସନ୍ତାନ,
ଏ ଅଟେ ଭାରତ ମଙ୍ଗଳନିଦାନ । ୪୦ ।
ଆଜି ଭାରତର ବଦନ ଉଜ୍ଜ୍ୱଳ
ନବ ବିକଶିତ ଭାରତ-କମଳ,
ଭାରତ ଆକାଶେ ସୁଖେ ପରକାଶେ
ନବ ଅରବିନ୍ଦବନ୍ଧୁ ସୁବିମଳ,

ଉପୁଜଇ ଆର୍ଯ୍ୟ ଦେହେ ନବବଳ । ୪୫ ।
ଉରୁପା (୧) ଦଳନ ଦମ୍ଭୀ ନେପୋଲ୍ୟନ,
ଦୁର୍ଜୟ ଜଗତେ କାର୍ଯବୀର୍ଯ୍ୟ ପରି,
ଯାର ଭୁଜବଳେ ନମ୍ର କଲେ ତଳେ
ନିଜ ଶିର, ସେହି ବ୍ରିଟନ-ଈଶ୍ୱରୀ,
ଆର୍ଯ୍ୟଙ୍କର ଆଜି ରାଜରାଜେଶ୍ୱରୀ । ୫୦ ।
ନବ ଇନ୍ଦ୍ରପ୍ରସ୍ଥେ ନବ ରାଜସୂୟେ
ଉପସ୍ଥିତ ଆଜି ରାଜନ୍ୟମଣ୍ଡଳ
ରାଜେନ୍ଦ୍ର-ଉଚିତ ଭୂଷଣ ଭୂଷିତ,
ଯୋଗ୍ୟ ଉପହାର ଅର୍ପନ୍ତି ସକଳ,
ବନ୍ଦନ୍ତି ଈଶ୍ୱରୀ ଚରଣଯୁଗଳ । ୫୫ ।
ମହାରାଷ୍ଟ୍ର ଶୂର ବୀରେନ୍ଦ୍ର ସିନ୍ଧିଆ,
ମହାରାଷ୍ଟ୍ରକୁଳ-ଗୌରବ-ଭାସ୍କର
ପ୍ରୌଢ଼ ହୁଲକାର, କିଶୋର ଗୁଇକାର,
ଯବନ ନିଜାମ-ଦାକ୍ଷିଣାତ୍ୟେଶ୍ୱର,
ଉଦେପୁରପତି ରବି-ବଂଶଧର । ୬୦ ।
କାବେରୀମେଖଳ ଶ୍ରୀରଙ୍ଗପତ୍ତନ
ତୁଷାର-ଉଜ୍ଜ୍ୱଳ ସୁରମ୍ୟ କାଶ୍ମୀର,
ଶିଖ ପଟିଆଲ, ଭୁଟାନ, ନେପାଳ
ଏ ଆଦି ଯେତେକ ଦେଶ ରାଜବୀର,
ନତ ପଦେ ଆଜି ଭାରତେଶ୍ୱରୀର । ୬୫ ।
ନବ ଇନ୍ଦ୍ରପ୍ରସ୍ଥେ ନୂତନ କେତନ
ଉଡ଼ଇ ଅମ୍ବରେ, ବାଦିତ୍ରନିଃସ୍ୱନ,
ଶୁଭଇ ଗମ୍ଭୀର, ଯେହ୍ନେ ଯଦୁବୀର
ପାଞ୍ଚଜନ୍ୟ ନାଦ କରନ୍ତି ସଘନ,
ଚକିତେ ଶୁଣନ୍ତି ନୃପ ଅଗଣନ । ୭୦ ।
ଏ ନବ ଘୋଷଣା ପ୍ରତିଧ୍ୱନି ଛଳେ
ଗାଇବେ ଭୀଷଣ ତୁଷାରଶିଖରୀ,
ବିନ୍ଧ୍ୟ ଧରାଧରେ କନ୍ଦରେ କନ୍ଦରେ
ଉଠିବ ଏ ଧ୍ୱନି ଅମ୍ବରେ ସଞ୍ଚରି,
"ଜୟ ଭିକ୍ଟୋରିୟା ରାଜରାଜେଶ୍ୱରୀ" । ୭୫ ।
"ଜୟ ଭିକ୍ଟୋରିୟା ରାଜରାଜେଶ୍ୱରୀ"
ଉଲ୍ଲାସେ କଲ୍ଲୋଳେ ଗାଇବେ ସାଗର,
ବେନି ଉପକୂଳେ ନୀଳ ଊର୍ମିତୁଲେ
ଗାଇବେ ଗମ୍ଭୀରେ ମଳୟ ଭୂଧର,
ଝର୍ଝର ଶବଦେ ଗାଇବେ ନିର୍ଝର । ୮୦ ।
"ଜୟ ଭିକ୍ଟୋରିୟା ରାଜରାଜେଶ୍ୱରୀ"
ଏ ଘୋଷଣା ଆଜି ବ୍ୟାପଇ ଉତ୍କଳ,
ଗାଏ ମହାନଦୀ, ଗାଏ ମହୋଦଧି
ଗାବନ୍ତି ହରଷେ ପ୍ରତୀଚୀ ଅଚଳ,
ଗାବନ୍ତି ଦକ୍ଷିଣେ ହ୍ରଦ ଊର୍ମିଦଳ । ୮୫ ।
କାଞ୍ଚନ ବିମାନେ ଗଗନେ ସଞ୍ଚରି
କର ପୁଷ୍ପବୃଷ୍ଟି ସୁର-ବିଦ୍ୟାଧରି ।
ଏକାମ୍ର କାନନେ ଲତା-ଦୋଳାସନେ
ଗାଅ ବନଦେବି ! କରେ ବୀଣା ଧରି,
"ଜୟ ଭିକ୍ଟୋରିୟା ରାଜରାଜେଶ୍ୱରୀ" । ୯୦ ।
"ଜୟ ଭିକ୍ଟୋରିୟା ରାଜରାଜେଶ୍ୱରୀ"
ପ୍ରତିଧ୍ୱନି ଛଳେ ଗାଉନ୍ତୁ ଦେଉଳ,
ଖଣ୍ଡଗିରି ଦରୀ ଉଦରେ ସଞ୍ଚରି
କୁଞ୍ଜେ କୁଞ୍ଜେ ରବ ଉଠୁ ସୁମଞ୍ଜୁଳ,
ମଧୁପଗୁଞ୍ଜିତେ ହେଉ ସେ ପୁଷ୍ଟଳ । ୯୫ ।
ଚନ୍ଦ୍ରଭାଗାତୀରେ ସାଗର ସୈକତେ
ଚନ୍ଦ୍ରାଲୋକେ ସୁଖେ କର ଯେ ବିହାର,
ଜଳଦେବୀକୁଳ ! ସର୍ବେ ହୋଇ ଠୁଳ
କର ଏ ଘୋଷଣା ସଂଗୀତେ ପ୍ରଚାର,
ତାଳେ ତାଳେ ହେଉ ଲହରୀପ୍ରହାର । ୧୦୦ ।
କର ଭାରତର ବାସନା ପୂରଣ
ପ୍ରଭୁ ନିରଞ୍ଜନ ! ଏ ଭିକ୍ଷା ଶ୍ରୀପଦେ,
ଭାରତ-ତପନ ପ୍ରସାରି କିରଣ
ପ୍ରକାଶୁ ଏ ମୃତ ଆର୍ଯ୍ୟ-ମନଃପଦ୍ମେ,
ଏକତା ବିରାଜୁ ଏ ଭାରତ-ସଦ୍ମେ । ୧୦୫ ।

□ □ □

## (ଘ) ଶିବାଜୀଙ୍କର ଉତ୍ସାହବାକ୍ୟ

ଉଠ ଉଠ ଆହେ ସମଯୋଧଗଣ
କରେ କରବାଳ ପଣ ସମରେ,
ଦେଖ ଦେଖ ଦୂରେ ଆସୁଛି ଯବନ
ଉଡ଼ୁଛି କେତନ ବାୟୁଲହରେ । ୧ ।

ଆସୁଅଛି ଅଶ୍ୱ ଆସୁଛି ଦ୍ୱିରଦ
ଆସୁଛନ୍ତି ସେନା ଜିଣିବା ଆଶେ,
ବାଜେ ରଣଶିଙ୍ଗା, ଶୁଭୁଛି ଶବଦ
ମେଦିନୀ ସ୍ତବଧ ହେଉଛି ତ୍ରାସେ । ୨ ।

୧ । ଉରୁପା – ଇଉରୋପ ।

ବଜା ରଣଶିଙ୍ଗା ଆରେ-ଶୃଙ୍ଗଧର
ଶତ୍ରୁ ଶିଙ୍ଗା ଶୁଣି କେବେ ନୀରବ
ମହାରାଷ୍ଟ୍ର ଶିଙ୍ଗା ? କେବେ ନିରୁତ୍ତର
ମହାରାଷ୍ଟ୍ର ଶୁଣି ଶତ୍ରୁ ଗରବ ? । ୩ ।
ଏ ଭାରତଭୂମି ଆମ୍ଭର ଜନନୀ
ପୁଣ୍ୟଭୂମି ନାହିଁ ସରି ଏହାର,
ଅମୂଲ୍ୟ ଦୁର୍ଲ୍ଲଭ ରତନର ଖଣି
ସବୁ ଦେଶ ମଧ୍ୟେ ଏ ଦେଶ ସାର । ୪ ।
ଏ ଦେଶ କୀରତି, ଏ ଦେଶ ଗୌରବ
ଏ ଦେଶ ବିଭବ ଏ ଜଗତରେ
ଆଉ କାହିଁ ନାହିଁ, ସମସ୍ତ ନିଷ୍ପ୍ରଭ
ହେଲାଟି ମନୁଷ୍ୟ କରମଫଳେ । ୫ ।
ଏ ମାନ ଆମ୍ଭଙ୍କୁ ପ୍ରଭୁ ଦେଇଥିଲେ,
ଦେଇଥିଲେ ବାହୁ ଦେଶରକ୍ଷଣେ,
ଯେ ଦିନୁ ହିନ୍ଦୁଏ ଏକତା ଛାଡ଼ିଲେ
ପ୍ରମାଦ ପାତିଲେ ଦୁଷ୍ଟ ଯବନେ । ୬ ।
ସେହି ଦିନୁ ଆର୍ଯ୍ୟ- ଗୌରବ-ତପନ
ଦାସ୍ୟତମଃସିନ୍ଧୁ ନୀରେ ବୁଡ଼ିଲେ,
ସେହି ଦିନୁ ଆର୍ଯ୍ୟେ ଲଭିଲେ ବନ୍ଧନ
ଅନ୍ଧ ହୋଇ ଆର୍ଯ୍ୟ ଧର୍ମ ବୁଡ଼ିଲେ । ୭ ।
ଦୁରନ୍ତ ଯବନ ହେଲା ଏକେଶ୍ୱର
କ୍ଷତ୍ରିୟ ପ୍ରଭାବ ହେଲା ଅଳୀକ,
ଆମ୍ଭର ସ୍ୱଦେଶ ନୁହେ ଏ ଆମ୍ଭର,
ଧିକ ଧିକ ଆମ୍ଭ ବାହୁକୁ ଧିକ । ୮ ।
ନାହିଁ ଆମ୍ଭ ଲୋଭ ଅନ୍ୟ ଦେଶ ପରେ
ସ୍ୱଦେଶରେ ସୁଖ ଅଛି ପ୍ରଚୁର,
ନିଜ ଘର ସୁଖ ଭୁଞ୍ଜିବାକୁ ଘରେ
ଇଚ୍ଛା ଯେବେ, କର ଯବନ ଦୂର । ୯ ।
ସମସ୍ତ ଭାରତ, କଲା କରଗତ
ଦୁରନ୍ତ ଯବନ ସବୁ ଗ୍ରାସିଲା,
ତେବେହେଁ ଅତୃପ୍ତ, ଜନ୍ମ ପରବତ ଆମ୍ଭର
ନେବାକୁ ସେନା ପେଷିଲା । ୧୦ ।
ବାନ୍ଧ ହେ ସାହସ, ଉଠ ଅସି ଘେନି
ବୀରର ସମ୍ବଳ ସେତିକି ସିନା,
ମହାରାଷ୍ଟ୍ର ପାଶେ ଯାବତ ଏ ବେଣି
ତାବତ ଏ ଭୂମି ନୋହେ ଅଧୀନା । ୧୧ ।
ଶୁଣିଅଛ ଯୋଧେ ! ଦୁର୍ଗାବତୀ କଥା,
ଶୁଣି ତ ଅଛ ତା ଧୀର ସାହସ,
ନାରୀ ହୋଇ ଯୁଦ୍ଧେ ଦେଲା ନିଜ ମଥା
ଜୀବନ୍ତେ ନ ହେଲା ଯବନବଶ । ୧୨ ।
ସରି କି ନୋହିବ ସେହି ଅବଳାର ?
କ୍ଷତ୍ରିୟ ବୋଲାଅ ଅଟ ପୁରୁଷ ?
ଦାସତ୍ୱ-ଶୃଙ୍ଖଳ ପିନ୍ଧିବ ଗଳାରେ
ଶିରେ କି ସହିବ ରିପୁଅଙ୍କୁଶ ? । ୧୩ ।
ଶୂରକୁଳେ ଜାତ ଅଟ ତୁମ୍ଭେ ଶୂର,
ଶୂରକୁଳବିଧି ଅରାତି-ବଧ,
ନୋହିଲେ ମରଣ ଅଟଇ ମଧୁର
ବୁହାଇ ଅରାତି-ଶୋଣିତ ନଦ । ୧୪ ।
ସୋମନାଥ ତୀର୍ଥ ଦୁର୍ଦ୍ଦଶା ସୁମର,
କି ନ କଲେ ତହିଁ କ୍ରୂର ଯବନେ ?
ହରିଲେ ରତନ କାଞ୍ଚନ ବିସ୍ତର
ଦେଖି ନ ଥିଲେ ଯା କେବେ ସ୍ୱପନେ । ୧୫ ।
ସ୍ତ୍ରୀ ବାଳକ ଦଶା କି ହେବ ସୁମର,
ଶୂର ତୁମ୍ଭେ, ନିଜ ନାରୀ-ଲାଞ୍ଛନା
କେମନ୍ତେ ସହିବ ? ଏ ଜୀବ ଦେହରେ
ଥାଉଁ କି ଭୋଗିବ ଏଡ଼େ ଯନ୍ତ୍ରଣା ? । ୧୬ ।
କୋମଳା କାମିନୀ- କୁନ୍ତଳ କରଷି
ନିଜ ଅନ୍ତଃପୁରେ ନେବ ଯବନ,
ଏ ଘୋର ଲାଞ୍ଛନା ଦେଖିବ କି ବସି
ସମଅଶ୍ରୁ ସିକ୍ତ କରି ନୟନ ? । ୧୭ ।
ଅରାତିର ତେଜ କର ହେ ନିର୍ବାଣ
ଅରାତିଶୋଣିତେ କର ତିଳକ,
ଅରାତିଭବନ କର ହେ ଶ୍ମଶାନ,
ଅରାତିକୁ ଆଶୁ ପ୍ରେର ନରକ । ୧୮ ।
ଆସୁଛି ଦୁରନ୍ତ ମହାଦମ୍ଭରେ,
ବୀରସିଂହେ, କର ଚୂର୍ଣ୍ଣ ସେ ଦମ୍ଭ,
ରଚ ରଣରଙ୍ଗେ ରଣଭୂମି ପରେ
ଅରାତିମସ୍ତକେ ବିଜୟ-ସ୍ତମ୍ଭ । ୧୯ ।
ଉଠ ଉଠ ମହା- ରାଷ୍ଟ୍ର ଶୂରକୁଳ
ଆର୍ଦ୍ର କର ମହୀ ରିପୁ ରକତେ,
ନନ୍ଦି ମହାବୀର ତ୍ରିଶୂଳୀ-ତ୍ରିଶୂଳ
କରେ ଘେନି ଯିବେ ଆମ୍ଭ ସଙ୍ଗତେ । ୨୦ ।
ସ୍ମରି ଦେବଦେବ ପଶ ରଣସ୍ଥଳେ
ତ୍ରିଶୂଳର ଛାୟା ଦେଖି ଆକାଶେ,
ଧୂମକେତୁ ପ୍ରାୟ ଭୟଙ୍କର ଜ୍ୱଳେ
ଧୂମକେତୁ ଏହୁ ରିପୁ ବିନାଶେ । ୨୧ ।
ଯାବତ ଦେହରେ ବହେ ପ୍ରାଣ-ବାୟୁ
ଶୂରେ ! ନ ବିମୁଖ ହୁଅ ସମରେ,
ମାର ଅବା ମର ଏଥୁଁ ଅନ୍ୟ ଆଉ
ନ ଘଟୁ ଯେମନ୍ତେ ତୁମ୍ଭ ଭାଗ୍ୟରେ । ୨୨ ।
ଏ ରେବା-ତଟିନୀ ଯାବତ ବହିବ,
ଯାବତ ଏ ଗିରି ଟେକିବ ଶିର,
ତୁମ୍ଭ ଶୁକ୍ଳଯଶଃ ତାବତ ରହିବ,
ମରି ଅମରତା ଲଭ ମହୀର । ୨୩ । ☐ ☐ ☐

# କେ ଦା ର ଗୌ ରୀ

ହେମାଚଳ ଶିରେ ଲଲାଟକେଶରୀ
ରଚିଲେ ରମ୍ୟ ନଗର,
ଉତ୍କଳଭୁବନେ ଦେଶେ ଦେଶେ ଖ୍ୟାତ
ହେଲା ଭୁବନ-ଈଶ୍ୱର।
ବିନ୍ଦୁ ସରୋବର ଚାରିପାଶେ ସୌଧ
ସୌଧ ଅନ୍ତେ ଘୋର ବନ,
ଇନ୍ଦୁ ଚାରିଦିଗେ ଧଳା ମେଘମାଳା
ନୀଳ ଗଗନେ ଯେସନ।
କେଦାର ଗଉରୀ କିଶୋର କିଶୋରୀ
ଥିଲେ ଭୁବନ-ଈଶ୍ୱରେ,
ତରୁଣୀତିଳକ ଗଉରୀ, ତରୁଣ-
ତିଳକ କେଦାର ନରେ।
ଖୁଧଣପଣକୁ ନାହିଁ ପଟାନ୍ତର
ଏକକୁ ଆରେକ ବିନା,
ବାଲ୍ୟକାଳରୁ ଦୁହେଁ ଦୁହିଙ୍କର
ହୃଦୟମୂଲ୍ୟରେ କିଣା।
ପାଖ ପଡ଼ିଶା ଯେ ବେନି, କାଳ ହେଲା
ବେନି ମଧ୍ୟେ ଅନ୍ତରାଳ,
ଦାରୁଣ କାଳକୁ ଅନୁକ୍ଷଣ ଶାପ
ଦେଲା ପ୍ରେମ ଅସମ୍ଭାଳ।
କାଳକୁ ବଳିଣ ହେଲେ ନିଦାରୁଣ
ବେନିଙ୍କର ଗୁରୁଜନେ,
ମଙ୍ଗଳ-ନିର୍ବନ୍ଧ ଅନ୍ଧ ହୋଇ ଭାଙ୍ଗି
ଦେଲେ ଅତି ବିଜ୍ଞପଣେ।
ବେନି ହୃଦୟରେ ଖରତର ହୋଇ
ଜଳିଲା ପ୍ରୀତି-ଅନଳ,
ମର୍ଯ୍ୟାଦା ପ୍ରକୃତି-ପଥେ ଦେଲେ ବାଧା
ଫଳେ ସିନା ଏହି ଫଳ।
ଭେଟ ସମ୍ଭାଷଣ ବାରିଲେ ବାରଣ
ମାନେ କି ପ୍ରେମିକ ମନ?
ସ୍ରୋତକୁ ସ୍ଥଳରେ ପଥ ଓଗାଳିଲେ
ସ୍ଥଳ କି ତହିଁ ଭାଜନ?
ନିର୍ମାଣ ଦିନରୁ ପ୍ରାଚୀର ସନ୍ଧିରେ
ରନ୍ଧ୍ର ଥିଲା ଅଲକ୍ଷରେ,
ତରୁଣ ତରୁଣୀ ଝୁରୁଥାନ୍ତି ତହିଁ
କରୁଣ-ଅସ୍ଫୁଟ-ସ୍ୱରେ।

ପ୍ରଣୟ-ଉଚ୍ଛ୍ୱାସ ବେଗେ ବହୁଥିଲା
ଗୁପତେ ସେ ରନ୍ଧ୍ରପଥେ,
ବାଧା ପାଇ ସିନା ସାଧଇ ପୀରତି
ନିଜ କାର୍ଯ୍ୟ ଏହି ମତେ।
ରବି ଅସ୍ତ ହେଲେ ବ୍ୟସ୍ତେ ଦୁହେଁ ଯାଇ
ବସନ୍ତି ସେ ରନ୍ଧ୍ର ପାଶେ,
ବେନିଙ୍କ ବଦନ ଆପ୍ଲୁତ ହୁଅଇ
ବେନିଙ୍କର ଶୋକଶ୍ୱାସେ।
କହନ୍ତି କାନ୍ଥକୁ– "ନିଦାରୁଣ! ଏଥି
କେଉଁ ବଡ଼ପଣ ତୋର?
ତନୁରୁ ତନୁକୁ ଅନ୍ତର କରି ତୁ
ଲଭିବୁ ଦୁଷ୍କୃତ ଘୋର।
ତନୁ ମେଳେ ବାଧା ଦେଇ ଆଚରିଲୁ
ଭଗାରିପଣ ଆମ୍ଭର,
ଲବେ ହୋଇ ଦ୍ୱିଧା ଚୁମ୍ବନ ସୁବିଧା
ବିଧାନେ ସୁଦୟା କର।
ସାଧିଅଛୁ ହିତ କାନ୍ଥ! ତୁ ବହୁତ,
ଋଣୀ ଆମ୍ଭେ ତୋହଠାରେ,
ବେନିଙ୍କ ବଚନ ବେନିଙ୍କ ଶ୍ରବଣେ
ଆସଇ ତୋହ କୃପାରେ।"
ଏହିରୂପେ ଝୁରି ଚତୁର ଚତୁରୀ
ମେଲାଣି ନିଅନ୍ତି ଦୁଃଖେ,
ଯେ ଯାହା ପାଖରେ ଚୁମ୍ବ ଦେଉଥାନ୍ତି
ପ୍ରେମଭୋଳେ ରନ୍ଧ୍ରମୁଖେ।
କେତେ ଦିନ ଅନ୍ତେ ବେନିହେଁ ଏକାନ୍ତେ
ଏ ମନ୍ତ୍ରଣା କଲେ ସାର,
ପ୍ରେମର ସନ୍ୟାସୀ ସନ୍ୟାସିନୀ ହୋଇ
ଦୁହେଁ ଯିବେ ଦେଶ ପାର।
ନଗର ପ୍ରାନ୍ତରେ ନିର୍ମଳ ନିର୍ଝର
କୁଞ୍ଜ-ବନ-ବେଷ୍ଟିତ,
ବେନିଙ୍କର ଭେଟ ତହିଁ ହେବ ବୋଲି
ବେନିହେଁ କଲେ ନିଶ୍ଚିତ।
ଅସ୍ତଗାମୀ ରବି- ବିମ୍ବ ଝଟକିଲା
ବଡ଼ଦେଉଳ ତ୍ରିଶୂଳେ,
ଭାର୍ଗବୀ ପୁଳିନୁଁ ହଂସରାଜୀ ଉଡ଼ି
ଗଲେ ଖଣ୍ଡଗିରି ଚୂଳେ।

ବିନ୍ଦୁ ସରୋବରେ ସିନ୍ଦୂରଲହରୀ
ଖେଳିଲା ମନ୍ଦ ସମୀରେ,
ରଥାଙ୍ଗମିଥୁନ ଦୀପଦଣ୍ଡି ଛାଡ଼ି
ଗଲେ ବିପରୀତ ତୀରେ ।
ତିମିର ରଜନୀ ଘୋଟିଲା ଅବନୀ,
ଫୁଟିଲେ ତାରା ଗଗନେ,
ବନେ ଉପବନେ କୁସୁମ ଫୁଟିଲା
ବାସ ଚହଟି ପବନେ ।
ଅନ୍ଧାରେ ବାହାରି ପଙ୍କେରୁହମୁଖୀ
ସଙ୍କେତ ସ୍ଥଳକୁ ଗଲା,
ପ୍ରେମରେ ମଜ୍ଜିଲେ ଅସାଧ ସାଧନ
ହେଳେ କରନ୍ତି ଅବଳା ।
କୁଟିଳକେଶୀ କୂଟଜମୂଳେ ବସି
କାନ୍ତକୁ ରହିଲା ଚାହିଁ,
ପ୍ରୀତିରେ ଢାଳିଛି ମନ ପ୍ରାଣ ବାଳା,
ଆନ କଥା ମନେ ନାହିଁ ।
ଚୌଦିଗେ ଅନ୍ଧାର, ହୃଦାକାଶେ ତାର
ରାଜେ ପ୍ରେମ-ସୁଧାକର,
କଣ୍ଟକକାନନ ପୁଷ୍ପ-ଉପବନ
କଲା ପ୍ରେମ-ବାଜିଗର ।
ଉଇଁଲାଣି ଶଶୀ, ଅନ୍ଧକାରରାଶି
ଛାଡ଼ି ପଳାଏ ଗଗନ,
ବାରୁଣୀତିଳକ ପ୍ରାୟେ ଦିଶେ ଦେଖ
ଲିଙ୍ଗରାଜ ନିକେତନ ।
ସହସା ଭୀଷଣ ଶାର୍ଦ୍ଦୂଳ ଆସିଲା
ମୃଗ ମାରି ସେ ନିର୍ଝରେ,
ଶୋଣିତେ ଆପ୍ଳୁତ ନଖ ଦନ୍ତ ତାର,
ମୁଖରୁ ଶୋଣିତ କ୍ଷରେ ।
ବ୍ୟାଘ୍ର ଦେଖି ଭୀରୁ ଗହ୍ୱର ଭିତରେ
ଲୁଚିଲା ଭୟବିହ୍ୱଳେ,
ତରତରେ ଯାଉଁ ଉତ୍ତରୀୟ ଦେହୁଁ
ଖସି ପଡ଼ିଲା ଭୂତଳେ ।
ଜଳ ପିଇ ବନେ ବାହୁଡ଼ନ୍ତେ ବ୍ୟାଘ୍ର
ଭେଟିଲା ସେହି ବସନ,
ରକ୍ତଲିପ୍ତମୁଖେ ଖଣ୍ଡ ଖଣ୍ଡ କରି
ପକାଇଲା ସେହି କ୍ଷଣ ।
ବ୍ୟାଘ୍ରେ ଗୌଣେ ଆସୁଁ ମାର୍ଗରେ କେଦାର
ଦେଖିଲା ବ୍ୟାଘ୍ର ପାହୁଲ,
ଗୌରୀ କଥା ଭାଳି ଅନିଷ୍ଟ ଶଙ୍କାରେ
ହୃଦୟ ହେଲା ଆକୁଳ ।

ସଙ୍କେତ ସ୍ଥଳରେ ରକ୍ତାକ୍ତ ଓଢ଼ଣା
ଭେଟି ପଡ଼ିଗଲା ଭ୍ରମେ,
ତୁଟିଲା ଛଟକେ ହୃଦୟର ତନ୍ତ୍ରୀ
ଶଲ୍ୟ ଫୁଟିଲା ମରମେ ।
ଗୌରୀକି ସମ୍ବୋଧି କହେ ବୀର କାନ୍ଦି-
"ଆହା ରେ ପରାଣେଶ୍ୱରି !
ତୋ ନିଧନଭାଗୀ ମୁହିଁ ସିନା, ଯେଣୁଁ
ନ ଆସିଲି ବେଗକରି ।
ଶ୍ୱାପଦସଙ୍କୁଳ ବନକୁ ନିଶିରେ
ପ୍ରାଣାଧିକାକୁ ପେଷିଲି,
ଧିକ ଏ ପ୍ରାଣକୁ ! ଛାର ପ୍ରାଣ ନେଇ
କିପାଁ ଭବନେ ବସିଲି ?
ମୋତେ ମାରିବାକୁ ଦୁଃଖୁଁ ତାରିବାକୁ
ନାହିଁ କି ବନେ ଶାର୍ଦ୍ଦୂଳ ?
କରେ ଏ କୃପାଣ ଥାଉଁ କିପାଁ ମୁହିଁ
ହେଉଛି ଏଡ଼େ ଆକୁଳ ?"
ଆଦରେ କେଦାର ହୃଦେ ଜଡ଼ାଇଲା
ରୁଧିରେ ଆର୍ଦ୍ର ଓଢ଼ଣା,
ଦରଦର ବାରି ନୟନୁ ଝରିଲା,
ସରିଲା ସର୍ବ ବାସନା ।
କୃପାଣ ଉଦରେ ଭୁଷିଦେଇ ପୁଣି
ନିଜ କରେ ନେଲା କାଢ଼ି,
ରକ୍ତସ୍ରୋତେ ତିନ୍ତି ଅବଶେ ଅବନୀ-
ତଳେ ପଡ଼ିଲା କଚାଡ଼ି ।
ଗହ୍ୱରୁ ବାହାରି ଗୌରୀ ସୁକୁମାରୀ
ମିଳିଲା ଆସି ତକ୍ଷଣ,
ଭେଟ ନ ପାଇ ନିରାଶେ ଯିବ ବନ୍ଧୁ
ଏ ଭାବେ ମନ ଉଚ୍ଛନ୍ନ ।
ଚମକି ଦେଖିଲା ଚନ୍ଦ୍ରାନନୀ ବାଳା
ପୁଂସ ପଡ଼ିଛି ଅଗ୍ରତେ,
ମୃତ୍ୟୁ-ଯନ୍ତ୍ରଣାରେ କମ୍ପୁଛି ଶରୀର
ରୁଧିର ଝରି ସନ୍ତତେ ।
ରମ୍ଭାପତ୍ର ପ୍ରାୟେ ଥରିଲା ରମ୍ଭୋରୁ
ସ୍ତମ୍ଭିତେ ହେଲା ସେ ଉଭା,
ମନ ପ୍ରାଣ ଯାକୁ ଦେଇଛି, ନିରେଖି
ଦେଖିଲା ଏ ସେହି ଯୁବା ।
ମୁଣ୍ଡେ କର ମାରି ବିଧିକି ଧିକ୍କାରି
ଧରାରେ ଲୋଟିଲା ଧନୀ,
କାନ୍ତ ତନୁ କୋଳେ ଧରି ଦୁଃଖଭୋଳେ
ଚୁମ୍ବ ଦେଲା ଚନ୍ଦ୍ରାନନୀ ।

ଗଦଗଦସ୍ୱରେ କାନ୍ଦି କହେ ବାଳା,
"ଏ ଥିଲା ମୋ ଭାଗ୍ୟେ ପୁଣ !
ଏ କି ପ୍ରାଣନାଥ ! କି ଦୋଷ କଲି ମୁଁ ?
କିପାଁ ହେଲ ନିଦାରୁଣ ?
ତୁମ୍ଭ ବିନୁ ଗତି ନାହିଁ ଏ ଜଗତେ,
ବିକା ମୁଁ ତୁମ୍ଭ ପୟରେ,
ପୟରେ ପଡ଼ି ମୁଁ କାତରେ ଡାକୁଛି
ଅନାଥ ଦାସୀକି ଥରେ।"
ଚିରପରିଚିତ ବୀଣାଜିଣା ବାଣୀ
ପ୍ରାଣମିତଣୀର ଶୁଣି
ଚାହିଁଲା କେଦାର, ଅନନ୍ତ ନିଦ୍ରାରେ
ମୁଦିଲା ନୟନ ପୁଣି।
ଗଉରୀ କଷଣ ଏକାଳେ ଯେସନ
ତାକୁ କି ଅଛି ବଚନ ?
ଅନୁମାନ ପରାଭବ ମାନେ ଏଥି,
ଅନୁଭବହିଁ ଭାଜନ।
ନିଜ ଉତରୀୟ କାନ୍ତ ହୃଦେ ଦେଖି
ଜାଣିଲା ସବୁ ବୃତ୍ତାନ୍ତ,
ଆତ୍ମଘାତୀ ହେଲା ପ୍ରାଣନାଥ ତାର
ଭ୍ରମରେ ପଡ଼ି ଏକାନ୍ତ।
କାନ୍ଦି କହେ ବାଳା– "କର୍ମେ ଏହା ଥିଲା,
ଦୈବ କଲା ଏତେ ସରି !
ପ୍ରେମେ ଭ୍ରାନ୍ତ ହୋଇ ପ୍ରାଣ ଦେଲେ କାନ୍ତ,
ମୁଁ କି ଥିବି ପ୍ରାଣ ଧରି ?
ଅମୂଲ୍ୟ ଜୀବନ ଏ ଛାର ଜୀବନ
ହେତୁ କଲେ ବିସର୍ଜନ !
ସଖୀକି ହରାଇ ପ୍ରାଣରଙ୍କ ହେବି,
ମୁଁ କି ଏଡ଼େ ଅଭାଜନ ?
ପରଲୋକ ପଥେ କାନ୍ତପଦଚିହ୍ନ
ଯିବି ମୁହିଁ ଅନୁସରି,
ମୃତ୍ୟୁ ଘଟାଇଲା ଏ ବିରହ, ମୃତ୍ୟୁ
କରିଦେବ ସହଚରୀ।"

ଏକାମ୍ର-ଈଶ୍ୱର ପ୍ରଭୁ ଦିଗମ୍ବର
ପାଦପଦ୍ମ ଧ୍ୟାୟି ଚିତ୍ତେ,
ସାହସ ବାନ୍ଧିଲା ହୃଦୟେ ଅବଳା
ପ୍ରାଣ ଦେବ କାନ୍ତପ୍ରୀତେ।
ଧନ୍ୟ ସେ ପ୍ରୀତିକି ! ମରଣ ଭୀତିକି
ପ୍ରୀତି ସେ ପାରଇ ଜିଣି,
ଶିରୀଷମୃଦୁଳା ଲବଣୀପିତୁଳା
ପ୍ରୀତି କଲା ସାହସିନୀ।
ପଡ଼ିଲା କୃପାଣ- ମୁନେ ମହାବେଗେ
ମୃତ କାନ୍ତମୁଖ ଧ୍ୟାୟି,
ବକ୍ଷୋରୁହ ସନ୍ଧି- ତଳେ ଫୁଟି ଅସ୍ତ୍ର
ପୃଷ୍ଠେ ବାହାରିଲା ଯାଇଁ।
ସ୍ୱପ୍ନାଦେଶ ପାଇ ଊଷାଯୋଗେ ଯାଇ
ଲଲାଟକେଶରୀ ବୀର,
ଦେଖିଲେ ଯୁଗଳ କିଶୋରୀ କିଶୋର
ଶୋଇଛନ୍ତି ଝରତୀର।
ସନ୍ଧ୍ୟାରାଗବୋଳା ରଥାଙ୍ଗମିଥୁନ
ମୃତ କି ନବବିଚ୍ଛେଦେ ?
ଶ୍ରୀମୁଖଲାବଣ୍ୟ ଦିଶେ ସୁପ୍ରସନ୍ନ
ମୃତ୍ୟୁ ଛୁଇଁ ନାହିଁ ଖେଦେ।
ବନଦେବତାଏ ବନପୁଷ୍ପ ତୋଳି
ଢାଳିଛନ୍ତି ବେନି ପରେ,
ଦେବେ ଯଥା ପ୍ରେମ ମହିମା ବୁଝନ୍ତି,
ତା କାହୁଁ ବୁଝିବେ ନରେ ?
ବେନିଙ୍କର ଗୁଣ ସ୍ମରି ଝୁରିହେଲେ
ଏକାମ୍ର ନଗର ଲୋକେ,
ବେନିଙ୍କ ଅନ୍ତିମ- ମଣ୍ଡନ ବିହିଲେ
ଜରଜର ହୋଇ ଶୋକେ।
ବେନିଙ୍କ ଅନଳ- ସଂସ୍କାର କରାଇ
ଦେଉଳ ତୋଳାଇ ତହିଁ,
ବେନିଙ୍କ ନାମରେ ପ୍ରତିମା ସ୍ଥାପିଲେ
ନରପତି ଆଜ୍ଞା ବହି।

□ □ □

## ଚ ନ୍ଦ୍ର ଭା ଗା

### ଉ ତ୍ସ ର୍ଗ ପ ତ୍ର

ପବିତ୍ରକୀର୍ତ୍ତି ଶ୍ରୀଯୁକ୍ତ ବାମଣ୍ଡାଧିପ ବାସୁଦେବ ସୁଡ଼ଳଦେବ ମହୋଦୟ
ଶ୍ରୀ କରକମଳେଷୁ – ସବିନୟ ନିବେଦନମିଦଂ ।

ଶ୍ରୀମାନ୍ ମହାରାଜ,

ପରସ୍ପରବିରୋଧୀ ଶ୍ରୀ, ସରସ୍ୱତୀ ଏବଂ ବିନୟ ଆପଣଙ୍କଠାରେ ଏକତ୍ରାବସ୍ଥିତ ହୋଇ ପରସ୍ପରର ଶୋଭା ବୃଦ୍ଧି କରୁଅଛନ୍ତି, ଏହା ସମସ୍ତେ ଏକବାକ୍ୟରେ ସ୍ୱୀକାର କରନ୍ତି । ବିଶେଷତଃ ଅଳଙ୍କାରବୋଧୋଦୟ ଗ୍ରନ୍ଥ ପ୍ରଣୟନଦ୍ୱାରା ଉତ୍କଳସାହିତ୍ୟଚର୍ଚ୍ଚାର ମାର୍ଗ ପ୍ରଶସ୍ତ କରି ସେହି ସାହିତ୍ୟର ଗତିକୁ ସୁରୁଚିସମ୍ମତ ପଦବୀରେ ପ୍ରବର୍ତ୍ତିତ କରାଇବା ସକାଶେ ଆପଣ ସମଧିକ ପ୍ରୟାସ ସ୍ୱୀକାର କରିଅଛନ୍ତି । ଏହି କ୍ଷୁଦ୍ର ପଦ୍ୟଗ୍ରନ୍ଥ ଯତ୍‌ସାମାନ୍ୟ ହେଲେହେଁ ଅଳଙ୍କାରବୋଧୋଦୟପ୍ରଣେତାଙ୍କ ଚକ୍ଷୁରେ ଏହା ନିତାନ୍ତ ଉପେକ୍ଷଣୀୟ ହେବ ନାହିଁ, ଏହି ଆଶାରେ ମୁଁ ଏହା ଛାମୁରେ ଅର୍ପଣ କରିବାକୁ ସାହସୀ ହେଲି ।

କଟକ
୨୫ । ୮ । ୧୮୮୬

ବଶମ୍ବଦ
ଶ୍ରୀ ରାଧାନାଥ ରାୟ

[ରାଗ-ରାମକେରୀ।]

ଅଭିଷେକୋତ୍ସବ (୧) ଦର୍ଶନ
ଆଣେ ସିଂହଦୁଆରେ (୨)
ବିଜେ ଆଜ ଦେବ-ଦେବୀଏ
ଯେଝା ପୂଜାସମ୍ଭାରେ।
କେତକୀ-କାନନ-ସଙ୍କୁଳ
ରମ୍ୟ ସିକତାସ୍ଥଳ
ଛାଡ଼ି ହରଚଣ୍ଡୀ (୩) ଆଗତ
ଆଜ ଶ୍ରୀନୀଳାଚଳ (୪)।
ଭଗବତୀ ବାଣପୁରରୁ
ଉପନୀତ ସ୍ୱଗଣେ,
ଖୋଲଗୀ (୫) ଦେଖଇ ସ୍ୱମୁଖ
ଯହିଁ ହ୍ରଦ-ଦର୍ପଣେ।
ପ୍ରଭାମଣ୍ଡଳରେ ମଣ୍ଡିତ
ତନୁ କନକଗୋରା,
ଟୈଳଙ୍ଗୀ ବସନ ଭୂଷଣେ
ପୁଣି ଦିଶଇ ଚୋରା।
ଉଭା ସେ ଭୁବନ-ଈଶ୍ୱରୀ (୬)
ହେମଗିରି ...ନୀ,
ଏକାମ୍ରକାନନ ଦେବତା
ବନପୁଷ୍ପଶୋଭିନୀ।
ନରେନ୍ଦ୍ର (୭) -ମଉଳି-କୁସୁମ-
ରେଣୁ-ରଞ୍ଜିତଚରଣା,
ମୈନାକଶିଖର-ବାସିନୀ (୮)
ରଣପୁରମଣ୍ଡନା।
ନାବିକ-ଅର୍ଚ୍ଚିତ ଚର୍ଚ୍ଚିକା-
ଦେବୀ ବାଙ୍କି ଈଶ୍ୱରୀ,
ମହାନଦୀକୂଳେ ଯାହାଙ୍କ
ଅଧିଷ୍ଠାନ-ଶିଖରୀ,
ମଣ୍ଡନ୍ତି ବଦନମଣ୍ଡଳ
ଯେହ୍ନେ ସଦା ସୁହାଗେ
ସରଣ୍ଡା-ଦର୍ପଣ ଅଂଶୁପା (୯)
ଶତଦଳପରାଗେ।

ବରୁଣୀ (୧୦) -ଶଇଳ-ଶିଖରେ
ପୁଣି ଯେହୁ ବସନ୍ତି,
ଧୁଅନ୍ତି ଯାହାଙ୍କ ଚରଣ
ଝର-ଲହରୀପନ୍ତି।
ଏକାନ୍ତେ ସୁକାନ୍ତି-ତନୁଜା- (୧୧)
ତୀର-ଶୈଳବିହାର
ଛାଡ଼ି ଦେବୀଦ୍ୱାର- (୧୨) ଚଣ୍ଡିକା
ବିଜେ ସିଂହଦୁଆର।
ହାଟକଗଉରୀ କଟକ-
ଚଣ୍ଡୀ ନାଗରୀବେଶେ,
ଅମଳ ରଜତକୁସୁମ
ଶୋଭେ ଶ୍ୟାମଳ କେଶେ।
ସଂକଟତାରିଣୀ ଝଙ୍କଡ଼-
ଦେବୀ ସିଂହସାରଳା (୧୩),
ଭଲ୍ଲୁକ-ବିକଟ କାକଟ-
ପୁର ମହାମଙ୍ଗଳା (୧୪)।
ଚିଲିକା-ଲହରୀ-ମାଳିକା
ଭେଦି ଗିରି ଉତ୍‌ଥିତ,
ଚଉଦିଗେ ନୀଳ ଚିଲିକା-
ବକ୍ଷ ତରଙ୍ଗାୟିତ।
ଚନ୍ଦ୍ରାଲୋକେ ଯହିଁ ନିଶୀଥେ
ଜଳଦେବୀ ସଙ୍ଗୀତ
ଶୁଣନ୍ତି ଚକିତେ ନାବିକେ
ଦୂରେ ବାହୁଁ ବୋଇତ।
କାଳୀଜାଈ ଦେବୀ (୧୫) ଆଗତ
ଛାଡ଼ି ସେ ଗିରିଚୂଡ଼ା,
ଦିଶଇ ପରମ ମଞ୍ଜୁଳ
ଶିରେ ଟୈଳଙ୍ଗୀ ଚୂଡ଼ା।
ମହୋଦଧି ଫେନପୁଞ୍ଜରୁ
ଜାତ ଯେତେ ଅପ୍‌ସରୀ,
ରମାଙ୍କର ବାଲ୍ୟସଙ୍ଗିନୀ
ସିନ୍ଧୁ-ଶିରୀ-ସୁନ୍ଦରୀ।

(୧) ପୌଷ ମାସରେ ରାମାଭିଷେକ। (୨) ପୁରୀ ବଡ଼ଦେଉଳର ସିଂହଦ୍ୱାର। (୩) ଚିଲିକା କୂଳ ନିକଟସ୍ଥ ହରଚଣ୍ଡୀ। (୪) ପୁରୁଷୋତ୍ତମକ୍ଷେତ୍ର। (୫) ବାଣପୁର ନିକଟସ୍ଥ ଚିଲିକୂଳବର୍ତ୍ତୀ ପର୍ବତ। (୬) ଭୁବନେଶ୍ୱରକ୍ଷେତ୍ରର ଅଧିଷ୍ଠାତ୍ରୀଦେବତା। (୭) ନରେନ୍ଦ୍ର, ରଣପୁର ରାଜାଙ୍କ ଉପାଧି। (୮) ମୈନାକଦୁର୍ଗ। (୯) ଆର୍ଦ୍ରଣପାହ୍ନଦ, ସରଣ୍ଡାଗିରିର ପାଦଦେଶରେ ଅବସ୍ଥିତ। (୧୦) ଖୋରଧାର ବରୁଣୀ ପର୍ବତ। (୧୧) ସୁକାନ୍ତି ଋଷିଙ୍କ ତପଃପ୍ରଭାବରୁ ମହାନଦୀ ଜାତ ହୋଇଥିବାର କିମ୍ବଦନ୍ତୀ ଅଛି। (୧୨) ଦେବୀଦ୍ୱାର-ତମପଡ଼ା ଅନ୍ତର୍ଗତ ମହାନଦୀ ତୀରବର୍ତ୍ତୀ ସ୍ଥାନ। (୧୩) କଟକ ଜିଲ୍ଲାର ଝଙ୍କଡ଼ ପ୍ରଗନାରେ। (୧୪) ପୁରୀ ଜିଲ୍ଲା ଗୋପ ଥାନାରେ। (୧୫) ଚିଲିକା ମଧ୍ୟବର୍ତ୍ତୀ ପର୍ବତରେ କାଳୀଜାଈ ଠାକୁରାଣୀଙ୍କର ମନ୍ଦିର ଅଛି।

ସବିତା, କୋଣାର୍କ (୧) ଦେବତା
ନବଗ୍ରହ ବେଷ୍ଟିତ,
ମହାତେଜଃପୁଞ୍ଜବିଗ୍ରହ
ସିଂହଦ୍ୱାରେ ଶୋଭିତ।
ରତି, ରତିପତି ସେଠାବେ
ଆସି ମିଳିଲେ ଶେଷେ,
ଆଣିଥିଲେ ପୁଷ୍ପଭୂଷଣ
ସିନ୍ଧୁସୁତା ଆଦେଶେ।
ରୂପରଚନାରେ ବିରଞ୍ଚି-
ଶିଳ୍ପସୀମା ଏ ବେନି,
ଅବନୀରେ ଅବା ଉପମା
କହ କି ଦେବି ଘେନି?
ପ୍ରତିହାରୀ ଜୟ ବିଜୟ (୨)
ଛାଡ଼ିଦେଲେ ସରଣୀ,
ପଛେ ଆସି ଆଗେ ପଶିଲେ
ସ୍ମର, ସ୍ମରରମଣୀ।
ସ୍ୱଭାବେ ସର୍ବତ୍ର ବେନିଙ୍କ
ଗତି ଅପ୍ରତିହତ,
ସୂର୍ଯ୍ୟ ନ ବୁଝିଲେ ଏ କଥା,
ହେଲେ ମର୍ମ-ଆହତ।
ମହୋତ୍ସବ ସାରି ସକଳେ
ସ୍ୱର୍ଗଦ୍ୱାରେ (୩) ମିଳିଲେ,
ଯେଝା ପୁର ଯିବା ମାନସେ
ନିଜ ଯାନେ ଚଢ଼ିଲେ।
ବେଗେ, ଦେବ ଦେବୀ ସ୍ୱପୁରେ
ଗଲେ ନ ପାହୁଁ ନିଶି,
ସିନ୍ଧୁଜାତ ଯେତେ ଅପ୍ସରୀ
ଗଲେ ତରଙ୍ଗେ ମିଶି।
ଯିବାବେଳେ ରବି କାମକୁ
କୋପଚକ୍ଷୁରେ ଚାହିଁ
କହିଲେ, "ଛଡ଼ାଇ ଦେବିଟି
ତୋର ଏହି ବଡ଼ାଇ,
ସ୍ତ୍ରୈଣଜନ ମନ ମଜାଇ
ତୋର ଏଡ଼େ ଗୁମାନ।
ତେଜସ୍ୱି-ଧର୍ଷଣ-ପ୍ରମାଦେ
ଦିନେ ଯିବ ତୋ ପ୍ରାଣ।
ହର-କୋପାନଳେ ଥରେ ତୁ
ଜଳିଥିଲୁ ମଦନ
ପୁଣି ଜଳିବାକୁ ଏ ଦେହେ
ପରା ବଳିଛି ମନ।
ସଂସାରେ ଯାବତ କଳଙ୍କ
ତାର ଅଟୁ କରତା,
ନାରୀ, ନାରୀରଙ୍କ ନରଙ୍କ
ତୁହି ଅଟୁ ଦେବତା।
ଛାର ଫୁଲଧନୁ ଧରି ତୁ
ସୁରେ ବୋଲାଉ ଶୂର,
ଲଜ୍ଜା ଯାର ନାହିଁ ପାରେ ସେ
ହେଲେ ଜିଣି ତ୍ରିପୁର।"
ଶୁଣି ସୂର୍ଯ୍ୟବାଣୀ କହନ୍ତି
ହସି ହସି ମଦନ,
"ଜଗତେ କେ ଲଂଘି ପାରିବ
ଫୁଲଧନୁ ଶାସନ?
ଯେଡ଼େ ଦମ୍ଭ କର ହେଲେ ମୁଁ
ଦମ୍ଭ ହରିବି ଦିନେ
ତୁମ୍ଭ ପ୍ରତିକୂଳେ ତୁମ୍ଭଙ୍କୁ
ସାକ୍ଷୀ କରିବି ଦିନେ।
ତମୋଦମ୍ଭହର ଜଗତେ
ତୁମ୍ଭ କର ସରି କେ?
ଦମ୍ଭି-ଦମ୍ଭ-ହର ତେସନ
ଫୁଲଶର ସରି କେ?
ଦ[illegible] ଦକ୍ଷମ ଭ୍ରମର
ପଶି କମଳ କୋଳେ
ପାସୋରେ ଆପଣା ବିକ୍ରମ
ପ୍ରେମ-ମୋହନ-ଭୋଳେ।
ସୁକୁମାରପଣେ ନଳିନୀ
ତୁଲେ କେ ଅଛି ଆନ?
ତା ସଙ୍ଗେ ଛନ୍ଦିଲା ତୁମ୍ଭକୁ
ସିନା ଫୁଲକମାଣ?
ଯେ ଯେଡ଼େ ତେଜସ୍ୱୀ ତା ତେଜ
ମୋତେ ଅଛଇ ଜଣା
ଫୁଲଶର ଆଗେ ପଡ଼ିଲେ
ବୁଦ୍ଧି ହୁଅଇ ବଣା।"
ଏହା କହି ଦେବ କୁସୁମ-
ଧନୁ ପ୍ରିୟା ସଙ୍ଗତେ
ଅନ୍ତରୀକ୍ଷେ ଲୁଚି ରହିଲେ
ମୀନକେତନ ରଥେ।
ପ୍ରତି କ୍ଷଣ ଦେବ ପାଞ୍ଚିଲେ
ପ୍ରତିଶୋଧ ଭିଆଣ,
ବେଳେଶ୍ୱରେ (୪) ଦିବ୍ୟ ସୁଯୋଗ
ଜାଣି ଶାଣିଲେ ବାଣ।

(୧) କୋଣାର୍କ ଦେଉଳ। (୨) ଜୟ ବିଜୟ ପୁରୀ ବଡ଼ଦେଉଳର ଦ୍ୱାରୀ ବୋଲି ପ୍ରସିଦ୍ଧ। (୩) ପ୍ରବାଦ ଅଛି ଯେ ଦେବତାମାନେ ବଡ଼ଦେଉଳକୁ ଆସି ସ୍ୱର୍ଗଦ୍ୱାର ନାମକ ସ୍ଥାନରେ ଗୁଣ୍ଡ ହୋଇ ସ୍ୱ ସ୍ୱ ସ୍ଥାନକୁ ଯା'ନ୍ତି। (୪) ପୁରୀଠାରୁ ଚାରି ପାଞ୍ଚ କ୍ରୋଶ ଦୂରରେ ସମୁଦ୍ରକୂଳରେ ବେଳେଶ୍ୱର ନାମକ ସ୍ଥାନ ଅଛି।

ସୁମନ୍ତୁ ନାମରେ ପରଶୁ
ରାମ ଶିଷ୍ୟପ୍ରବର
ମହୋଦଧିତୀରେ ସମାଧି
ଯୋଗେ ଥିଲେ ତତ୍ପର ।

ଚନ୍ଦ୍ରଭାଗା ନାମେ ଦୁହିତା
ସେହି ଋଷି ପ୍ରଭାବେ
ସାଗର ଅପ୍ସରୀ ଗର୍ଭରୁ
ଜନ୍ମିଥିଲା ସେଠାବେ ।

ପାଳିଲେକ ଅତି ଯତନେ
ଯତି କନ୍ୟାରତନ,
ଯଥାକାଳେ ଅଙ୍ଗ ମଣ୍ଡିଲା
ଅଭିନବ ଯୌବନ ।

ନେତ୍ରଯୁଗେ ଯୁବା ପିଅନ୍ତି
ଯେଉଁ ରୂପ-ଅମୃତ,
ସେ ଅମୃତ କଳା ଯୌବନ
ବାଳା ତନୁ ଧଉତ ।

ଶୋଭା ସେ ଲଭିଲା ଅପ୍ସରୀ
ଦିବ୍ୟ ଶୋଭାକୁ ବଳି,
ଫୁଟିଲା ଲାବଣ୍ୟ-ସରସେ
ନବ କ[illegible] ।

ସ୍ୱଭାବେ ସୁବର୍ଣ୍ଣ, ଯୌବନ
ହେଲା ଯୋଗ୍ୟ ରସାଣ,
ରୂପାସ୍ତ୍ର (୧) ହେଲା ରୂପସୀ
ଷଷ୍ଠ ଅମୋଘ ବାଣ ।

ସତ୍ୟେ ଶକୁନ୍ତଳା ଯେମନ୍ତ
ରୂପରାଜ୍ୟେ ଅତୁଳା,
ଚନ୍ଦ୍ରଭାଗା ହେଲା କଳିରେ
ଦିବ୍ୟ ଶୋଭାପିତୁଳା ।

ଥିଲେ ଚନ୍ଦ୍ରଭାଗା ଜନନୀ
ପୂର୍ବେ ବାଲ୍ୟ ସମୟେ
ପ୍ରିୟ ସହଚରୀ ରମାଙ୍କ
ନୀଳ ବରୁଣାଳୟେ ।

ସଖୀ ଅନୁରୋଧେ ଇନ୍ଦିରା
ଦେଲେ କୋଠଭଣ୍ଡାରୁ
ଚନ୍ଦ୍ରଭାଗାପାଇଁ ବିବିଧ
ବସ୍ତ୍ର ଭୂଷଣ ଚାରୁ ।

କୁମୁଦହାସିନୀ ସୌନ୍ଦର୍ଯ୍ୟ-
ମଦେ ସଦା ବିହ୍ୱଳ,
ପ୍ରମୋଦେ ଭ୍ରମଇ ପ୍ରମଦା
ସଦା ବିଜନ-ସ୍ଥଳ ।

ବିଷ ପ୍ରାୟେ ପ୍ରେମପ୍ରସଙ୍ଗେ
ସଦା ଅରୁଚି ତାର,
ପୁରୁଷ କଥାକୁ ଡ଼ରେ ସେ
କରେ ଦୂରୁ ଜୁହାର ।

କିନ୍ତୁ ରୂପ ଥିଲେ ପ୍ରଚ୍ଛନ୍ନେ
କେବେ ରସିକ ଛାଡ଼େ ?
ମଧୁ ଥିଲେ ପୁଷ୍ପେ ଯତନେ
ଖୋଜି ମଧୁପ କାଢ଼େ ।

ଯେ ଅଟେ ଜଗତଜନର
ମନ-ନୟନ ତାରା,
ଅପ୍ରକଟ ହୋଇ ରହିବା
ପାଇଁ କାହିଁ ତା ଚାରା ?

ରୂପ-ଆକର୍ଷଣ ପ୍ରବଳ
ନରେ କିବା ଅମରେ,
ଭୈମୀ ସ୍ୱୟମ୍ବରେ (୨) ପ୍ରମାଣ
ହୋଇଅଛି ସତ୍ୟରେ ।

ମଧୁର ପ୍ରଦୋଷ ସମୟ,
ସ୍ୱର୍ଣ୍ଣ-କିରଣବୋଳା
କାଦମ୍ବିନୀ ଖେଳେ ଗଗନେ
ଧୀର ସମୀରଭୋଳା ।

ଗୋଧୂଳି ଗଗନ ସୁଚିତ୍ର
ଦିଶେ ଶତବରଣେ,
ଶତ ମନୋରଥ ଝଲକେ
ଯେହ୍ନେ ଆଶା-କାନନେ ।

କଇଁସାରିଲତା-ଶ୍ୟାମଳ
ବାଲିସ୍ତୂପର ଛାୟା
ଦିବା ଅବସାନ ଦେଖିଣ
କ୍ରମେ ବିସ୍ତାରେ କାୟା ।

ବାରୁଣୀ-ଦର୍ପଣ ପରାୟେ
ଝଲେ ସରସଲିଳ, (୩)
ସୁବର୍ଣ୍ଣ-ଲହରୀ ସୃଜଇ
ତହିଁ ମନ୍ଦ ଅନିଳ ।

ନୀଳ ପାରାବାର ଅଦୂରେ
ଗାଏ ଅମରଗୀତ,
ଅମର ତରଙ୍ଗ ନର୍ତ୍ତନେ
ବେଳା ହୁଏ ଧ୍ୱନିତ ।

(୧) ରୂପାସ୍ତ୍ର— ମଦନ । (୨) ଦମୟନ୍ତୀ ସ୍ୱୟମ୍ବରରେ । (୩) ପୁରୀର ଉତ୍ତରକୁ ଚାରି ପାଞ୍ଚ କ୍ରୋଶ ଦୂରରେ ସର ନାମରେ ଗୋଟିଏ ହ୍ରଦ ଅଛି ।

ଶୁକ୍ତି-ତାରକିତ-ସୈକତେ
ଫେନଚୂଡ଼ ଲହରୀ
ଚୁମ୍ବେ ଚନ୍ଦ୍ରଚୂଡ଼ (୧) ଚରଣ
ସ୍ତରେ ସ୍ତରେ ସଞ୍ଚରି।
ନାନାଜାତି ପୁଷ୍ପପରାଗ
ଧୀରେ ହରେ ସମୀର,
ଗୁଡ଼ଜଙ୍କ ଘେନି କନ୍ଦୁକ-
କ୍ରୀଡ଼ା କରେ ସମୀର।
ଯୂଥ ଯୂଥ ହୋଇ ଭ୍ରମନ୍ତି
ନାନାରଙ୍ଗେ ହରିଣ,
ତରଙ୍ଗ ଚାହାଣି ଚାହାନ୍ତି
ଚାରୁ ଗ୍ରୀବା ତୋଳିଣ।
କନ୍ଦୁକକ୍ରୀଡ଼ାରେ ସୁନ୍ଦରୀ
ଆଜ ରତ ଏ ସ୍ଥଳେ,
ଉଠୁଛି ପଡ଼ୁଛି କନ୍ଦୁକ
ଚାରୁ କରକମଳେ।
କନ୍ଦୁକର ଗତି କଳନ୍ତେ
କ୍ରୀଡ଼ା-ଲୋଳ-ଲୋଚନ,
ଚଳଭ୍ରୂ-ଚାରୁ-ନର୍ତ୍ତନ
ଦିଶେ କିବା ଶୋଭନ।
ଲମ୍ବିତ ସୁଗୋଲ ନିତମ୍ବ-
ବିମ୍ବେ ହେମମେଖଳା,
ସ୍ତନାଙ୍କୁରେ ବ୍ୟସ୍ତେ ଦୋଳଇ
ମୋତିମାଳା ତରଳା।
ଶ୍ରବଣେ ଦୋଳଇ କୁଣ୍ଡଳ,
ଦୋଳେ ନୀଳ ଅଳକ,
ଲାବଣ୍ୟଦର୍ପଣ ପରାୟେ
ଝଳେ ଗଣ୍ଡ-ଫଳକ।
ଅର୍ଦ୍ଧେନ୍ଦୁ ଲଲାଟେ ସିନ୍ଦୂର-
ବିନ୍ଦୁ ରମଇ ଆଖି,
ନୁହଇ ସିନ୍ଦୂର, ରହିଛି
ସ୍ମର-ହୃଦୟ ଲାଖି।
ଦଶନ-ଅଂଶୁକ ମିଶଇ
ନାସାମଣି-ଅଂଶୁକେ,
ମୃଗମଦବିନ୍ଦୁ ସୁନ୍ଦର
ଶୋଭେ ଚାରୁ ଚିବୁକେ।
କାମ-କାଳକୂଟ-କାଳିମା
ଭ୍ରୂଯୁଗଳ ଧରେ,
ପ୍ରବାଳଲତା କି ଅଧର,
ଆହା, ରୂପସାଗରେ।

ବିଳାସ-ବିଲୋଳ-ଲୋଚନ-
ତାରା କନ୍ଦୁକ ସଙ୍ଗେ
ଉଦ୍‌ବେଗେ ଭ୍ରମଇ ଚୌଦିଗେ
କିବା ମଧୁରରଙ୍ଗେ।
ତୁଟେ ଯୁବା ଧୈର୍ଯ୍ୟ-କବଚ
ପ୍ରତି କଟାକ୍ଷ-ତୀରେ,
ଉଠେ ନବଶୋଭା-ତରଙ୍ଗ
ପ୍ରତି ଅଙ୍ଗଭଙ୍ଗୀରେ।
ଅସମ୍ଭାଳେ ଫିଟି କୁନ୍ତଳ
ଭୂମି ଯାଏ ପରଶି,
ଯେଣେ ଅନାଉଛି ଲଳନା
ଫୁଲ ଯାଏ ବରଷି।
ଦୁକୂଳ କବରୀ ସମ୍ଭାଳୁ-
ଅଛି ଦକ୍ଷିଣେତରେ,
ଫିଙ୍ଗୁଛି ଧରୁଛି କନ୍ଦୁକ
ବାମା ଦକ୍ଷିଣକରେ।
ଶୋଭା-ସଦନାକୁ ମଦନ
ଦେଖି ହେଲେ ହରଷ,
ତୁ[illegible]ମଳ ଦେବେ ରବିଙ୍କି
ମନେ ହେଲା ସାହସ।
ଅକେ [illegible]ାଣାର୍କଗୁ ଏକାଳେ
ଆସୁଥିଲେ ଆକାଶେ,
ନୟନ ତାଙ୍କର ଦଇବେ
ଗଲା ସୁନ୍ଦରୀ ପାଶେ।
ବନ୍ଧୁକ- ଅଧରୀ କନ୍ଦୁକ
ଫିଙ୍ଗି କର ପତାଇ,
ଚାରୁ ଭ୍ରୂରୁ ରଙ୍ଗେ ନଚାଇ
ଦେଲା ଊର୍ଦ୍ଧ୍ୱକୁ ଚାହିଁ।
ଏହି କାଳେ ଦୃଷ୍ଟି ରବିଙ୍କ
ବାଳା ବରବଦନେ
ପଡ଼ିଲା, ଉଡ଼ିଲା ହୃଦୟ,
ଧୈର୍ଯ୍ୟ ବୁଡ଼ିଲା କ୍ଷଣେ।
ଉଭା ଶୋଭା ଦେଖି ରବିଙ୍କ
ଭାବସିନ୍ଧୁ ଉଚ୍ଛଳେ,
ଅବସର ଏବେ ବୁଝିଲେ
ମନୋଭବ କୌଶଳେ।
ଫୁଲକାଣ୍ଡ ଫୁଲକୋଦଣ୍ଡ
ଚାଣ୍ଡେ ଆକର୍ଣ୍ଣ ଟାଣି
ସମ୍ମୋହନବାଣ ରବିଙ୍କ
ଦେଲେ ହୃଦୟେ ହାଣି।

(୧) ଚନ୍ଦ୍ରଶେଖର ନାମକ ମହାଦେବ।

ବିପରୀତେ ମୀନକେତନ
ଖଞ୍ଜି ସେ ଫୁଲଶର
ବିରାଗେ ମୃଗାକ୍ଷିଗଞ୍ଜିନୀ
ତନୁ କଲେ ଜର୍ଜର ।
ଅନୁରାଗ ମନେ ଉପୁଜେ
ଯେଉଁ କୁସୁମବାଣେ,
ଓଲଟା ଯୋଖିଲେ ସେ ବାଣ
ପୁଣି ବିରାଗ ଆଣେ ।
ଫଳେ ଅନୁରାଗ, ବିରାଗ
କଙ୍କପତ୍ରେ ତାହାର,
ପରିଣାମେ ତେଣୁ ବିରସ
ମନୋଭବ ବିକାର ।
ବିପ୍ରଯୁବାବେଶେ ମିହିର
ବାଳା ସମୀପେ ଗଲେ,
ସ୍ୱର୍ଣ୍ଣତାଳ ପ୍ରାୟେ ଶରୀର
ଚଉଦିଗ ଉଜଳେ ।
ମେରୁ ଗିରି ତଟେ ଅମର
ଧୁନୀ ଯଥା ଶୋଭିତ,
ଶୁଭ୍ର ଉପବୀତ ତେସନ
ସ୍କନ୍ଧଦେଶେ ଲମ୍ବିତ ।
ମିହିରଙ୍କୁ ଦେଖି ନିକଟେ
ନାରୀମୁକୁଟହୀରା
ବେଗେ ପଳାଇଲା ଛଇଳା
ଲାଜ ଭୟେ ଅଧୀରା ।
ବିଦ୍ୟୁତବରନୀ ବିଦ୍ୟୁତ-
ବେଗେ ଧାଏଁ ବେଳାରେ,
ଯେତେ ଦୂର ଯାଏ ରବିଙ୍କ
ମନ ତେତେ ଓଟାରେ ।
ଅଧୀରେ ସହସ୍ରଦୀଧିତି
ଧୀରା ପଛେ ଗୋଡ଼ାଇ,
ଧନୀକି ସମ୍ବୋଧି କାତର-
ସ୍ୱରେ କହନ୍ତି ରାଇ ।
"କାହିଁ ପଳାଉଛୁ ସୁନ୍ଦରି,
ହୋଇ ଏଡ଼େ କାତର ?
ଚରଣକିଙ୍କର ଜନକୁ
କିପାଁ ଏଡ଼େ ତୋ ଡର ?
ଚଞ୍ଚଳାକ୍ଷି ! ତୁ କି ପାଞ୍ଚିଲୁ
ମୋତେ ବ୍ରାହ୍ମଣ କରି ?
ବଞ୍ଚାଇ ରଖିଛି ବିଶ୍ୱକୁ
ସିନା ତେଜ ମୋହରି ।

ବିଶ୍ୱଚକ୍ଷୁ ମୁହିଁ ତପନ,
ଦ୍ୱିଷାମ୍ପତି ମୋ ନାମ,
ପ୍ରଭାପୁଞ୍ଜ ଯେତେ ଜଗତେ,
ତାର ଅଟେ ମୁଁ ଧାମ ।
ବନ୍ଧା ମୋର ସ୍ନେହ-ରଜ୍ଜୁରେ
ଏହି ଚାରୁ ସୃଜନ,
ଛିଣ୍ଡିଲେ ସେ ରଜ୍ଜୁ ଉତ୍ପାତେ
ସର୍ବେ ହେବେ ନିଧନ ।
ବର୍ଷ ମାସ ଦିନ ତିଥିର
ମୁହିଁ ଅଟେ ଅଧିପ,
ଖଟନ୍ତି ଋତୁଏ ସେବକ
ପ୍ରାୟେ ମୋର ସମୀପ ।
ଚିତ୍ରକର ପ୍ରାୟେ ମୋ କର
ଚିତ୍ରୁଅଛି ସଂସାର,
ତହୁଁ ନବ ଶୋଭାତରଙ୍ଗ
ଭବେ ଉଠେ ଅପାର ।
ଅସଂଖ୍ୟ କ୍ଷତ୍ରିୟ ଭୂପତି
ମୋର ବଂଶସମ୍ଭୂତ,
ପୂତ କଲେ ବଂଶ ଏ ବଂଶେ
ଜନ୍ମ ଲଭି ଅଚ୍ୟୁତ ।
କୋଣାର୍କ କ୍ଷେତ୍ରରେ ମୋହର
ଏହି ତୁଙ୍ଗ ମନ୍ଦିର
ଉତ୍କଳ ଦେବୀଙ୍କ ମୁକୁଟ
ପ୍ରାୟେ ରାଜେ ରୁଚିର ।
ସୁରତରୁ- (୧) କୁଞ୍ଜେ ମଞ୍ଜୁଳ
ମୋର ମୈତ୍ରେୟ ବନ (୨),
କୁସୁମସମ୍ପଦେ ବିରାଜେ
ଯହିଁ ଋତୁରାଜନ ।
ଭୋଜରାଜସୁତା ଲଭିଲା
ମୋତେ ଭଜି ଦ୍ୱାପରେ
ମହାବୀର୍ଯ୍ୟବନ୍ତ କୁମର (୩)
ନର-ହର୍ଯ୍ୟକ୍ଷ ନରେ ।
ମନ୍ତ୍ରବଳେ କୁନ୍ତୀ ଆକର୍ଷି
ମୋତେ ଆଣିଣ ଥିଲା,
ଆଣିଲୁ ଲାବଣ୍ୟ-ରଜ୍ଜୁରେ
ବାନ୍ଧି ତୁହି ଛଇଳା ।
ରାଜରାଜେଶ୍ୱରୀ ସୁଷମା-
ରାଜ୍ୟେ ତୁହି, ସୁନ୍ଦରି,
ଛାୟାମୟୀ ଛାୟା ନୁହେଁ ତୋ
ଦାସ୍ୟାପଣକୁ ସରି ।

(୧) ସୁରତରୁ – ପୁନ୍ନାଗ । (୨) ମୈତ୍ରେୟ – କୋଣାର୍କସ୍ଥିତ ପବିତ୍ର ବନ । (୩) କୁନ୍ତୀପୁତ୍ର – କର୍ଣ୍ଣ ।

ପ୍ରଦକ୍ଷିଣ କରେ ମୋ ରଥ
ନିତ୍ୟ ମେରୁ ପର୍ବତ,
ଅସଂଖ୍ୟ ଅପ୍ସରୀ ଦେଖଇ
ବେଶଭୂଷାରେ ରତ।
ଦେଖି ନାହିଁ କେବେ ଏମନ୍ତ
ମନୋହର ମାଧୁରୀ,
ଶୋଭା ଦେଖି ଶୋଭା-କମଳା
ଦୁଃଖେ ମରିବେ ଝୁରି।
ନୟନ ନିମେଷ-ବିହୀନ
କରି ରଚିଲେ ବିଧି,
ସାର୍ଥକ କଲୁ ଏ ବିଧିକି
ତୁହି, ଲାବଣ୍ୟନିଧି।
ଶତ୍ରୁ ମୁଁ ନୁହଇ ତୋହର,
କର ଯୋଡ଼ି ମାଗଇ,
ସ୍ଥିର ହୁଅ, ମୃଦୁ ଚରଣେ
ବଡ଼ ବ୍ୟଥା ଲାଗଇ।
ତହୁଁ ବଳି ବ୍ୟଥା ଲାଗଇ
ବାଳା, ହୃଦେ ମୋହରି,
ସୁକୁମାରୀ ହୋଇ କଷଣ
ଏଡ଼େ ଲଭିଲୁ ଗୋରି!"
ମୁହଁ ମାଡ଼ି କାଳେ କଚାଡ଼ି
ବାଳା, ପଡ଼ିବୁ ଝୁଣ୍ଟି,
କୁଶାଙ୍କୁର ଯିବ କୋମଳ
ଚାରୁ ଚରଣେ ଫୁଟି।
ସଞ୍ଚାଣ ମୁଖରୁ କପୋତ
ଏହି ରୂପେ ପଳାଏ,
ଶ୍ୱାନଠାରୁ ଭୀରୁ ଶଶକ
ପ୍ରାଣ ବିକଳେ ଧାଏଁ।
ସିଂହଠାରୁ ଖରେ ପଳାଏ
ମୃଗ ଏରୂପେ ସିନା,
କିଣା କିଙ୍କରକୁ ଏ ଶଙ୍କା
କିପାଁ କରୁ ନବୀନା?
ରଖ ଏ ଜୀବନ ସେବକ
ପଦେ ବରି, ସୁନ୍ଦରି!
ତୋହ ଦୟା ବିନା ଗନିଁ
ନିଶ୍ଚେଁ ମରି, ସୁନ୍ଦରି।"
ବୃଥା ହେଲା ଏତେ ମିନତି,
ଏତେ ଚାଟୁ ବଚନ,
ପଳାଇଲା ଋଷିକୁମାରୀ
ବେଗେ ହୋଇ ଉନ୍ମନ।

ବିରାଗେ ଧାଉଁଛି ଲଳନା,
ରାଗେ ଲୋକଲୋଚନ,
ବେନି ଭାବ ବେନି ହୃଦୟେ
କରେ ବେଗ ବର୍ଦ୍ଧନ।
ମାୟାବିପ୍ରରୂପେ ପଶ୍ଚାତେ
ଅନୁସରନ୍ତି ହରି (୧),
ଡ଼ୋରଲଗ୍ନ ଥୋପ ଯେସନ
ଅନୁସରେ ଶଫରୀ।
ପଳାୟନେ ପୁଣି ସୁନ୍ଦରୀ
ଦିଶେ ସୁନ୍ଦରତର,
ଅସମ୍ଭାଳ-ବେଶ-ଭୂଷଣେ
ଆହା କି ମନୋହର!
ଶୀର୍ଣ୍ଣଶୀର୍ଣ୍ଣ ପ୍ରାୟେ ଅଙ୍ଗନା-
ଅଙ୍ଗ ଚାରୁ ବସନ
ବସନ ଉଡ଼ାଇ ଦେଖାଏ
ରଙ୍ଗେ ସିନ୍ଧୁ ପବନ।
ଚୁମ୍ବି ଚରଣକୁ ଚିକୁର-
ରାଜି ଦୋଳେ ଚରମେ,
ମଦନ-କେତନ ଉଡ଼ଇ
କିବା ଶୋଭା-ଆଶ୍ରମେ।
କଳିବାକୁ ଏହି ସୌନ୍ଦର୍ଯ୍ୟ
ଧୈର୍ଯ୍ୟ ସୂର୍ଯ୍ୟଙ୍କୁ କାହିଁ?
ନ ଧରିଲେ ସେହି ବାଳାକୁ
ତାଙ୍କ ତ୍ରାହି ତ ନାହିଁ।
ହେମାଙ୍ଗ ହଳଦୀବସନ୍ତ
ଦେଖି ଯେହ୍ନେ ସଞ୍ଚାଣ
ଅତରୀକ୍ଷେ ଧାଏଁ ସଳଖେ
କ୍ଷଣପ୍ରଭା ସମାନ।
ଜୀବନ ବିକଳେ ସଭୟେ
ଖରେ ଧାଏଁ ଦୁର୍ବଳ,
ଖରତରବେଗେ ଜୀବିକା
ଆଶେ ଧାଏଁ ପ୍ରବଳ।
ମୁହୁ ଚଞ୍ଚୁମୁନ ସଞ୍ଚାଣ
ପକ୍ଷ କରେ ବିସ୍ତାର,
ମଣେ କରଗତ ପଲକେ
ପରା ହେଲା ଶିକାର।
ହଳଦୀବସନ୍ତ ଏକାନ୍ତ
ପ୍ରାଣଭୟେ ଅସ୍ଥିର,
କ୍ଷଣେ ଧୃତ କ୍ଷଣେ ମୁକ୍ତ
ମଣେ ନିଜ ଶରୀର।

(୧) ପୂର୍ଣ୍ଣ।

କାଞ୍ଚନ-ପୁଚ୍ଛକୁ ସଞ୍ଚାଣ
ଚଞ୍ଚୁ କ୍ଷଣେ ପରଶେ,
ଚଞ୍ଚଳେ ଏଡ଼ାଇ ଶିକାର
ଖରେ ତିର୍ଯ୍ୟକେ ଖସେ।
ଏହି ରୂପେ ହରି ଧାଆନ୍ତି
ପ୍ରେମଲୋଭେ ବିହ୍ୱଳ,
ଅବଳା ବାଳାକୁ ଏରୂପେ
ଭୀତି ଦିଅଇ ବଳ।
ହରିଣଲୋଚନା ଏରୂପେ
ଧାଏଁ ଉତ୍ତରମୁଖେ,
ଉତ୍‌ପକ୍ଷ୍ମଲୋଚନେ ହରିଣେ
ଦୂରୁ ଦେଖନ୍ତି ଦୁଃଖେ।
ଅତି ଦ୍ରୁତବେଗେ ଦଉଡ଼ି
ଅବସାଦେ ଜଡ଼ିତ,
ଭର୍ଷ୍ଟ୍ୱାସେ ଧନୀ ଉଦଧି-
କୂଳେ ହେଲା ସ୍ଖଳିତ।
କଣ୍ଠାଗତପ୍ରାଣ କାରୁଣ୍ୟ-
ମୂର୍ତ୍ତି ପ୍ରାୟେ ବରାକୀ
ହାତ ଯୋଡ଼ି ନିଜ ମାତାକୁ
କହେ ଉଦ୍ଦେଶ୍ୟେ ଡ଼ାକି—
"ଦୁଃଖ ଫେଡ଼ ମୋର, ଜନନି,
ହର ଏ ରୂପ ମୋର,
ବିଭୂଷଣ ହୋଇ ହେଲା ଏ
ସିନା ଦୂଷଣ ଘୋର।
ଦିବ୍ୟ ରୂପ ତୋର, ତା ସଙ୍ଗେ
ଅଛି ଦିବ୍ୟ ଶକତି,
ଶକ୍ତିହୀନ ରୂପ କେବଳ
ସିନା ଲଭେ ଦୁର୍ଗତି।
ଭୂତଧାତ୍ରି ମାତଃ, ବସୁଧେ,
ଦ୍ୱିଧା ହୁଅ ତୁ ଲବେ,
ଶରଣ ସମ୍ଭାଳ, ଆଶ୍ରୟ
ମୋତେ ଦିଅ ଗରଭେ।"
ଏମନ୍ତ କହନ୍ତେ ଉଠିଲା
ଊର୍ମି ପର୍ବତାକାର,
ନୀଳ ବାହୁ ନୀଳ ସାଗର
କିବା କଲେ ବିସ୍ତାର।
ମହାକଳରବେ ଉଡ଼ିଲେ
ନଭେ ଜଳ-ବିହଙ୍ଗ,
ବେଳାମୁଖେ ମାଡ଼ି ଆସିଲା
ବିଶ୍ୱଗ୍ରାସୀ ତରଙ୍ଗ।

ମିଶିଯାଏ ଯଥା ପ୍ରଭାତୀ
ତାରା ରବିକିରଣେ,
ମିଶିଯାଏ ଯଥା ଜୀବାତ୍ମା
ବିଶ୍ୱ-ଆତ୍ମା ଚରଣେ;
ମିଶିଯାଏ ଯଥା ଚପଳା
ନୀଳ ଜଳଦ ଅଙ୍ଗେ,
ମିଶିଗଲା ତଥା ଅବଳା
ସେହି ନୀଳ ତରଙ୍ଗେ।
ସ୍ତମ୍ଭୀଭୂତ ହୋଇ ରହିଲେ
ରବି ମହାବିସ୍ମୟେ,
ଭୟ ଏତେ ଦିନେ ପଶିଲା
ଭୟଶୂନ୍ୟ ହୃଦୟେ।
ଘନଘୋଷ ପ୍ରାୟେ ଏକାଳେ
ହେଲା ଶବ୍ଦ ଭୈରବ,
ଚକିତେ ଚାହିଁଲେ ପଶ୍ଚିମେ
ପ୍ରଭୁ ଅବ୍ଜବାନ୍ଧବ।
ଭୂମିସାତ ଦେବ ଦେଖିଲେ
ନିଜ ପ୍ରିୟ ଦେଉଳ,
ଉତ୍କଳଭୁବନେ ଦେଉଳେ
ଯାହା ଥିଲା ଅତୁଳ।
ଧ୍ୟାନଯୋଗେ ଜାଣି ସୁମନ୍ୟୁ
ସୂର୍ଯ୍ୟ କାର୍ଯ୍ୟକଳାପ
କୋପାନଳେ ଜଳି ତପସ୍ୱୀ
ଦେଲେ ଦାରୁଣ ଶାପ।
ସେହି ଶାପ ଯୋଗୁଁ ପଡ଼ିଲା
ତଳେ ଦେଉଳରାଜ,
ଦିବୁଁ ଦେବଶିଳ୍ପୀ ଯା ଦେଖି
ଲଭୁଥିଲେକ ଲାଜ।
ବିଷମ କୁସୁମକୋଦଣ୍ଡ
ଦଣ୍ଡ ଲଭିଣ ଭଲେ
ବିମନା ହୋଇଣ ମାର୍ତ୍ତଣ୍ଡ
ଗଲେ ନିଜ ମଣ୍ଡଳେ।
କୋଣାର୍କକ୍ଷେତ୍ରରୁ ଉଠିଲା
ଅର୍କପୂଜା ବିଧାନ,
ପରିଣତ ହେଲା ସେଦିନୁ
ମରୁରୂପେ ସେ ସ୍ଥାନ।
ସେ ପୂର୍ବ-ଗୌରବ-ସାକ୍ଷିଣୀ
ମୁଖଶାଳା ମାତର
ପ୍ରତିଧ୍ୱନି ଛଳେ ପାନ୍ଥକୁ
ଏବେ ଦିଏ ଉତ୍ତର। □ □ □

# ନନ୍ଦିକେଶ୍ୱରୀ

## ଉତ୍ସର୍ଗପତ୍ର

ଗଙ୍ଗବଂଶାବତଂସ ଶ୍ରୀଳ ଶ୍ରୀଯୁକ୍ତ ବାମଣ୍ଡାଧିପ ମହାରାଜ
ବାସୁଦେବ ସୁଢ଼ଳଦେବ ମହୋଦୟ ପରମମାନ୍ୟବରେଷୁ
ସବିନୟ ନିବେଦନମିଦଂ –

ମହାରାଜ,

ଆପଣଙ୍କ ସହିତ ପରିଚିତ ହେବା ପୂର୍ବରୁ ଆପଣଙ୍କର ଯଶଃ-ସୌରଭରେ ଆକୃଷ୍ଟ ହୋଇ 'ଚନ୍ଦ୍ରଭାଗା' ପୁସ୍ତିକା ଆପଣଙ୍କ ଗୌରବାନ୍ୱିତ ନାମରେ ଉତ୍ସର୍ଗ କରିଥିଲି। ବିଗତ ବର୍ଷ ଦେବଦୁର୍ଗ ରାଜଧାନୀରେ ଶ୍ରୀଛାମୁଙ୍କର ସାକ୍ଷାତ୍‌କାର ଲାଭ କରି ଭବଦୀୟ ପାଣ୍ଡିତ୍ୟ-ଗ୍ରାହକତା ଏବଂ ସୌଜନ୍ୟର ଚାକ୍ଷୁଷ ପ୍ରମାଣ ପ୍ରାପ୍ତ ହୋଇ ମୁଁ କି ପର୍ଯ୍ୟନ୍ତ ଚମତ୍କୃତ ଏବଂ ଆହ୍ଲାଦିତ ହୋଇଅଛି, ତାହା ଭାଷାରେ ବ୍ୟକ୍ତ କରିବାର ଅସମ୍ଭବ। ଏହି କ୍ଷୁଦ୍ର ପୁସ୍ତକର ନାୟକ ଆପଣଙ୍କର ପୂର୍ବପୁରୁଷ ଅଟନ୍ତି ଏବଂ ବର୍ତ୍ତମାନ କାଳରେ ଆପଣ ସେହି ଉଜ୍ଜ୍ୱଳ ବଂଶର ଗୌରବକେତନରୂପେ ଉତ୍କଳଭୂମିକୁ ଅଳଂକୃତ କରିଅଛନ୍ତି। ଆପଣଙ୍କ ସହିତ ପ୍ରଥମ ସାକ୍ଷାତର ସ୍ମାରକସ୍ୱରୂପ ଏହି ପୁସ୍ତକ ଆପଣଙ୍କ ନାମରେ ଉତ୍ସୃଷ୍ଟ କରିବାକୁ ସାହସୀ ହୋଇ ସବିନୟରେ ପ୍ରାର୍ଥନା କରୁଅଛି ଯେ 'ଚନ୍ଦ୍ରଭାଗା' ପ୍ରତି ଶ୍ରୀଛାମୁଙ୍କର ଯେମନ୍ତ ଅନୁକୂଳ ଦୃଷ୍ଟି ପତିତ ହୋଇଥିଲା, 'ନନ୍ଦିକେଶ୍ୱରୀ' ପ୍ରତି ସେହି ଆନୁକୂଲ୍ୟ ପ୍ରଦର୍ଶିତ ହେଉ।

କଟକ — ବଶମ୍ବଦ

୪।୯।୧୮୮୭ — ଶ୍ରୀ ରାଧାନାଥ ରାୟ

# ପ୍ରଥମ ସର୍ଗ

[ ନଟବାଣୀ ବୃତ୍ତ ]

କାଠଯୋଡ଼ି ତୀରେ ଶୋଭଇ ଶିବିର,
କୋଳାହଳପୂର୍ଣ୍ଣ କାଠଯୋଡ଼ି ତୀର ।
ଧାଡ଼ି ଧାଡ଼ି ହୋଇ ମହାନଦୀ ଯାଏ
ଶୁଭ୍ର ତମ୍ବୁ ଶୋଭେ ଖଡ଼ିଶୈଳ ପ୍ରାୟେ ।
ଉଡ଼ଇ କେତନ ମନ୍ଦ ସମୀରଣେ,
ଝଳଝଳେ ଅସ୍ତ୍ର ପ୍ରଦୋଷ କିରଣେ ।
ବାଦିତ୍ର ଶବଦେ କମ୍ପଇ ଅବନୀ,
ନଦୀଗର୍ଭୁଁ ଉଠେ ଶତ ପ୍ରତିଧ୍ୱନି ।
ଲାଖ ବିନ୍ଧୁଛନ୍ତି କାହିଁ ଯୋଧଦଳ,
କ୍ଷଣେ କ୍ଷଣେ ଉଠେ ହର୍ଷକୋଳାହଳ ।
କାହିଁ ତଲବାର ଖେଳବାଡ଼କରେ
ବିଜୁଳି ପରାୟେ ଝଳେ ସୌରକରେ ।
ମଲ୍ଲଯୁଦ୍ଧେ କାହିଁ କମ୍ପେ ରଙ୍ଗସ୍ଥଳୀ,
ତାଳି ଦେଉଛନ୍ତି ଦର୍ଶକମଣ୍ଡଳୀ ।
କାହିଁ ଅଶ୍ୱାରୋହୀ ଘେନି ଅଶ୍ୱବର
କଦମେ ବୁଲାଇ ଦିଅଇ ଚକ୍କର ।
କାହିଁ ବସି ଅସ୍ତ୍ର ମାଜୁଛନ୍ତି ଲୋକେ,
କାହିଁ ଅବା ଗଳ୍ପ କରୁଛନ୍ତି ଥୋକେ ।
ଅବଗାହୁଛନ୍ତି କରୀ ଦଳେ ଦଳେ
ବିଷମ ପରାୟେ ଦିଶି ସ୍ରୋତ ଜଳେ ।
ଦାସେରକ (୧) ଆଶ୍ରା କରି ତରୁତଳ
ଚୋବାଉଛି ଗ୍ରୀବା ଟେକି ନିମ୍ବଦଳ ।
ଭାରବାହୀ ଯେତେ ଗର୍ଦ୍ଦଭାଦି କରି
ଭ୍ରମୁଛନ୍ତି ଦୂରେ ଦଳେ ଦଳେ ଚରି ।
ବିପଣି ବସିଛି କାଠଯୋଡ଼ି ବନ୍ଧେ,
ବିକା କିଣା ଲାଗିଅଛି ନାନା ଛନ୍ଦେ ।
ନଦୀଶଯ୍ୟା ନଦୀବନ୍ଧ ନଦୀକୂଳ,
ସବୁଠାରେ ଲୋକେ ହୋଇଛନ୍ତି ଠୁଳ ।
କୁଶଭଦ୍ରା-ଦୟା-ପ୍ରସୃତି ଭାର୍ଗବୀ

କାଠଯୋଡ଼ିଠାରୁ ଯହିଁ ଜନ୍ମ ଲଭି
ବହୁଛି ଦକ୍ଷିଣେ, ବିପରୀତେ ତାର
ଚୋରଗଙ୍ଗଙ୍କର ଶୋଭେ ସ୍କନ୍ଧାବାର ।
ଶୂନ୍ୟ ଥିଲା ଆଜି ପ୍ରଭାତେ ଶିବିର,
ଏବେ ବେଢ଼ିଅଛି ମନୁଷ୍ୟ ପ୍ରାଚୀର ।
ବହୁବର୍ଷ ବ୍ୟାପି ଲାଗିଛି ସଂଗ୍ରାମ
ବହୁଅଛି ରକ୍ତସ୍ରୋତ ଅବିଶ୍ରାମ ।
ସମଗ୍ର ଉତ୍କଳୁଁ କେତେ ମହାବୀର
ରଣାଙ୍ଗନେ ଆସି ଦେଲେ ନିଜ ଶିର ।
ତାଳାବନଶ୍ୟାମ (୨) କନିକା କୁଜଙ୍ଗ,
ମରିଚ ହରିଶପୁର ଅନ୍ତରଙ୍ଗ,
ବରାହପାଳିତ (୩) ବାଲିପୂର୍ଣ୍ଣ ଆଳି,
କ୍ଷତ୍ରବୃନ୍ଦ ଯାର ମହାବୀର୍ଯ୍ୟଶାଳୀ ।
ପବିତ୍ର ତୁଳସୀକ୍ଷେତ୍ର (୪) ବହି ମୁଦ
ବିରାଜନ୍ତି ଯହିଁ ପ୍ରଭୁ ହଳାୟୁଧ ।
ଅସୁରଈଶ୍ୱର ଯହିଁ ରକ୍ତପାନ
ନିତ୍ୟ କରେ ଚଣ୍ଡୀ (୫) ତୃଷାର୍ତ୍ତ କୃପାଣ ।
ଶାଳିପୁର ଯହିଁ ଚିତ୍ରୋତ୍ପଳା ନୀର
ପୂତ ଅଭିଷେକେ ଶ୍ରୀଭଗବତୀର, (୬)
ବହୁଦ୍ୱାରଶୋଭୀ ପୁର ଚଉଦ୍ୱାର,
ଉତ୍ତରକୋଶଳା (୭) ମୌଳି-ଅଳଙ୍କାର ।
ସ୍ନେହ ବଢ଼ାଇଲେ ବଳାରାତିପ୍ରିୟା (୮)
ଯା କଟକ ଟେକ ଟଙ୍କିଳ ଛତିଆ ।
ବିନାୟକଶୈଳ ଦର୍ପ ଦର୍ପଣୀର,
ଉପବୀତ ଯାର ଶୁଭ୍ର ଝରନୀର ।
ଚନ୍ଦନନିକୁଞ୍ଜ ମଞ୍ଜୁଳା ଅଳତୀ, (୯)
ସୁରୂପା ବିରୂପା ଯହିଁ କରେ ଗତି ।
ବିରଜାମଣ୍ଡଳେ ଯେତେ ବୀରପଲ୍ଲି,
ପୂଗମାଳେ ଯହିଁ ଚଢ଼େ ନାଗବଲ୍ଲୀ ।

(୧) ଦାସେରକ– ଉଷ୍ଟ୍ର (୨) ତାଳାବନ– ହେନ୍ତାଳବନ (୩) ବରାହ– ଆଳିର ସର୍ବପ୍ରଧାନ ଦେବତା । (୪) ତୁଳସୀକ୍ଷେତ୍ର– କନ୍ଦରାପଡ଼ା; ଲଳିତଗିରିବାସୀ କନ୍ଦରାସୁରକୁ ସଂହାର କରି ବଳରାମ ତାହାର କନ୍ୟା ତୁଳସୀକୁ ବିବାହ କରିଥିବାର ସ୍ଥାନୀୟ କିମ୍ବଦନ୍ତୀ ଅଛି । ସେହିହେତୁରୁ କନ୍ଦରାପଡ଼ାର ଅନ୍ୟତମ ନାମ ତୁଳସୀକ୍ଷେତ୍ର । ବଳଦେବ କନ୍ଦରାପଡ଼ାର ପ୍ରଧାନ ଦେବତା । (୫) ଚଣ୍ଡୀ– ଅସୁରେଶ୍ୱରର ପ୍ରଧାନ ଦେବତା ହରଚଣ୍ଡୀ । ଏଠାରେ ପ୍ରାୟ ପ୍ରତ୍ୟହ ବଳିଦାନ ହୁଏ । ଏପରି ବଳିଦାନ ଓଡ଼ିଶାରେ ଅନ୍ୟତ୍ର ଦେଖାଯାଏ ନାହିଁ । (୬) ଶାଳିପୁରରେ ପ୍ରବାହିତ ମହାନଦୀର ଶାଖା ଚିତ୍ରୋତ୍ପଳା ତୀରରେ ଭଗବତୀଙ୍କର ମନ୍ଦିର ପ୍ରତିଷ୍ଠିତ । (୭) ପ୍ରାଚୀନ କାଳରେ ମହାନଦୀର ଉତ୍ତରାଂଶ ଉତ୍ତରକୋଶଳ ନାମରେ ଅଭିହିତ ହେଉଥିଲା । (୮) ବଳାରାତିପ୍ରିୟା – ଶଚୀ ଛତିଆର ଅଧିଷ୍ଠାତ୍ରୀ ଦେବୀ ଥିଲେ । ଟଙ୍କିଳ – ଟାଙ୍ଗି ପରିପୂର୍ଣ୍ଣ । (୯) ଅଳତୀରେ ଅଦ୍ୟାପି ଚନ୍ଦନବୃକ୍ଷ ଦେଖାଯାଏ ।

ପରସ୍ପରେ ଭୂଜ ଛନ୍ଦିବାରେ ସଦା
ଚମ୍ପା ଚୂତ ଯହିଁ ବଳାନ୍ତି ଶରଧା ।
ଭଦ୍ରକ ଯା ପାଦେ ବେଢ଼ିଅଛି ଛନ୍ଦି
ଉତ୍କଳେ କାଳିନ୍ଦୀରୂପିଣୀ ଶାଳନ୍ଦୀ ।
ଯୋର ଗର୍ବ ଯାର କରଇ ପ୍ରସାର
ପଶ୍ଚିମେ ପର୍ବତ ପୂର୍ବେ ପାରାବାର ।
ନୀଳଗିରି ଯହିଁ ମର୍କତମହୁଡ଼
ଟେକିଛି ଅମ୍ବରେ ଶୈଳ ସ୍ୱର୍ଣ୍ଣଚୂଡ଼ । (୧)
ପୁନଙ୍ଗ ବିରହେ ଯହିଁ ବରାଙ୍ଗନା
ସ୍ଥଗୁରି ପରି ମଣେ ଜ୍ଵରିଅନା । (୨)
ଗ୍ରାମ୍ୟସୀମନ୍ତିନୀ ନିଶା-ଅଭିସାର
ଅନୁକୂଳ ବାଲି-ସ୍ତୁପାବଳୀ ଯାର ।
ସୁଗଭୀରା ପ୍ରାଚୀ ତୀରେ ଅଭିରାମ
ମାଧବସନାଥ-ମାଧବାଖ୍ୟ ଗ୍ରାମ । (୩)
ନିଆଳୀ ଯା କୁଞ୍ଜେ ପାଟଳିପ୍ରସୂନ
କାମିଙ୍କି ତରଙ୍ଗେ ଯେହ୍ନେ କାମତୂଣ ।
କୋଠଦେଶ ମଞ୍ଜୁ ପୁନ୍ନାଗକେଶରେ,
ମଠେ ଗତି ଯହିଁ କୁଞ୍ଜଭ୍ରମା କରେ ।
କୋଠରାଙ୍ଗ ଯହିଁ ବଦନ ବିଜନେ
ଧଉଳୀ ଦେଖଇ ଦୟା-ଦରପଣେ । (୪)
ରାହାଙ୍ଗ ରଚନ୍ତି ଯହିଁ କେଳିକଳା
ଭଞ୍ଜଜନିକୁଞ୍ଜେ କଜ୍ଜଳ କୁନ୍ତଳା ।
ଅଧାରି ସିକତାକୂଦେ ତରଙ୍ଗିତ,
ସୁନ୍ଦର ରଙ୍ଗଣେ (୫) ସଦା ସିନ୍ଦୂରିତ ।
ପାରିକୁଦ ଅରି-ଗରବ-ଚର୍ବକ,
ନୀଳଦ୍ୟୁତି-ହ୍ରଦ-ହୃଦୟପଦକ ।
ଦାଣ୍ଡିମାଳ ଯାର ଶଇଳବକ୍ଷରେ
ବୀରଯଶ ଲେଖା ଅଷୟ ଅକ୍ଷରେ । (୬)
ଖଲ୍ଲିକୋଟ ଯହିଁ ରୋଟ ମଲ୍ଲମାନେ
ନିର୍ମଳାନିର୍ଝର ନୀରାମୃତ ପାନେ । (୭)
ସ୍ୱର୍ଗୁଁ ଖଣ୍ଡେ ପଡ଼ିଥିଲା ପ୍ରାୟେ ଛିଡ଼ି,
ଶୈଳେ, ସ୍ରୋତେ, ସରେ ସୁରମ୍ୟ ଖିମିଡ଼ି ।

ଜଗଜନମନୋରଞ୍ଜନୀ ମଞ୍ଜୁଷା,
ଗିରୀନ୍ଦ୍ର ମହେନ୍ଦ୍ର ଯାର ମହାଭୂଷା । (୮)
ଏହି ଦେଶ ଅନ୍ୟ ଦେଶବାସୀ ଶୂର
କାଠଯୋଡ଼ି ତୀରେ ଗଲେ ପ୍ରେତପୁର ।
ଚଣ୍ଡାୟୁଧ ଗଣ୍ଡ ଯୁଦ୍ଧେ ହୋଇ ରୁଣ୍ଡ
ଶତ୍ରୁଖଣ୍ଡାଘାତେ ଗଡ଼ାଇଲେ ମୁଣ୍ଡ ।
ମାଲ୍ୟଗିରି- (୯) ବାସୀ ଦୁର୍ଦ୍ଧର୍ଷ ଜୁଆଙ୍ଗ,
କେତେ ହେଲେ ରଣଭୂମେ ବିକଳାଙ୍ଗ ।
କ୍ରୌଞ୍ଚପକ୍ଷଚୂଡ଼ା ବାଦ୍ୟ ତାଳେ ତାଳେ
ନାଚଇ ଯାହାଙ୍କ ବୀରନୃତ୍ୟ କାଳେ ।
ହରିଦ୍ରାହରିତ ଅଧିତ୍ୟକାଚାରୀ (୧୦)
କନ୍ଦଯୋଧବୃନ୍ଦ ମହାଧନୁର୍ଦ୍ଧାରୀ ।
ଗାଲମୋଚାଧାରୀ ତାଳଚେର ଶୂର,
ଭଲ୍ଲାସ୍ତ୍ରେ ଦଳନ୍ତି ଦର୍ପ ଯେ ରିପୁର ।
ସ୍ୱାହାସହଚରୀ ହିଙ୍ଗୁଳାଙ୍କ ବରେ (୧୧)
ଦାବାନଳରୂପୀ ରିପୁ-କାନନରେ ।
କପିଳାସଖୋଲନିବାସୀ ଶବର,
ରଣରଙ୍ଗ ଢେଙ୍କା ଯା ବଂଶଶେଖର । (୧୨)
ପର ନାଶେ ପଟୁ ଯାହାଙ୍କ ପରଶୁ,
କେତେ ହେଲେ ଆସି ରଣଯଜ୍ଞପଶୁ ।
ଯୁଦ୍ଧ-ଅଶ୍ୱ କେତେ ଯୁଦ୍ଧେ ହୋଇ ହଣା
ଗୃଧ୍ରଙ୍କର ହେଲେ ରୁଧିରପାରଣା ।
ସପ୍ତକ୍ରୋଶୀ ଗଣ୍ଡ ରାଜେ ଶୈଳକୁଞ୍ଜେ, (୧୩)
ସୁଶୀତଳ ତୁଙ୍ଗ ଶୈଳଚ୍ଛାୟାପୁଞ୍ଜେ ।
ନିର୍ଜ୍ଜନେ ଦିଅନ୍ତି ବନଦ୍ରୁମାବଳୀ
ଜଳଦେବତାଙ୍କୁ ଯହିଁ ପୁଷ୍ପାଞ୍ଜଳି ।
ତହିଁ ମହାନଦୀ ପ୍ରବାହେ ନିଦାଘେ
ପ୍ରିୟା ସଙ୍ଗେ ଖେଳୁଥିଲା ଅନୁରାଗେ
ମତ୍ତ ଦନ୍ତାବଳ, ଏବେ ରଣସ୍ଥଳ
କରିଅଛି ନିଜ ଅସ୍ଥିରେ ଧବଳ ।
ଭଗ୍ନାୟୁଧ, ଭିନ୍ନ ବର୍ମ୍ମ, ଛିନ୍ନ ତାଳ
ସଙ୍ଗେ ପଡ଼ିଅଛି ଅସଂଖ୍ୟ କଙ୍କାଳ ।

(୧) ସ୍ୱର୍ଣ୍ଣଚୂଡ଼ – ପ୍ରଚଳିତ ନାମ ସୁନଚଟ୍ । (୨) ପୁନଙ୍ଗରେ ଅନେକ ଜ୍ଵରିଅନାବୃକ୍ଷ ଦେଖାଯାଏ । (୩) ପ୍ରାଚୀତୀରବର୍ତ୍ତୀ ମାଧବ ଗ୍ରାମରେ ମାଧବଙ୍କର ମନ୍ଦିର ପ୍ରତିଷ୍ଠିତ । (୪) ଐତିହାସିକ ଧଉଳୀ ପର୍ବତ ଦୟାନଦୀତୀରରେ ଅବସ୍ଥିତ । (୫) ରଙ୍ଗଣ – କାଠରଙ୍ଗଣୀ ପୁଷ୍ପ । (୬) ଖଣ୍ଡଗିରିର ଗୁମ୍ଫାମାନ ବୀରରାଜାଙ୍କ ପ୍ରଧାନକୀର୍ତ୍ତି । (୭) ନିର୍ମଳା-ନିର୍ଝର ଖଲ୍ଲିକୋଟ ରାଜଧାନୀର ଅଦୂରବର୍ତ୍ତୀ । ଏହାର ଜଳ ସ୍ୱାସ୍ଥ୍ୟକର ବୋଲି ପ୍ରସିଦ୍ଧ । (୮) ମହେନ୍ଦ୍ର ଓଡ଼ିଶାର ସର୍ବୋଚ୍ଚ ପର୍ବତ । କୁଳାଚଳ ମଧ୍ୟରେ ଏହା ପରିଗଣିତ । (୯) ମାଲ୍ୟଗିରି– ଉତ୍କଳର ସର୍ବୋଚ୍ଚ ପର୍ବତ ପାଲଲହଡ଼ାରେ ଅବସ୍ଥିତ । (୧୦) କନ୍ଦମାଳର ପାର୍ବତୀୟ କ୍ଷେତ୍ରମାନଙ୍କରୁ ହରିଦ୍ରା ଯଥେଷ୍ଟ ପରିମାଣରେ ଉତ୍ପନ୍ନ ହୁଏ । (୧୧) ହିଙ୍ଗୁଳାଦେବୀ ତାଳଚେରର ପ୍ରଧାନ ଦେବତା । (୧୨) ଢେଙ୍କାନାମକ ଶବରରାଜାଙ୍କ ନାମରୁ ଢେଙ୍କାନାଳ ନାମ ହୋଇଅଛି । (୧୩) ସାତକୋଶିଆଗଣ୍ଡ – ଦଶପଲ୍ଲା ଏବଂ ବୌଦର ଅନ୍ତର୍ଗତ । ବଡ଼ମୂଳଘାଟି ଏହି ଗଣ୍ଡର ପୂର୍ବସୀମା । ଏହି ଗଣ୍ଡ ଗୋଟିଏ ପ୍ରଧାନ ଦୃଶ୍ୟ ।

ଏକାଳେ ତୁଳସୀପୁର ସ୍ଥିତ ଯହିଁ,
ପିଉଥିଲେ ତହିଁ ରଣରକ୍ତ ମହୀ।
ବିକଟେ ଓଟାରି ତହିଁ ଶବସ୍ନାୟୁ
ଯୁଝୁଥିଲେ ଗୃଧ୍ର ସଙ୍ଗତେ ଗୋମାୟୁ।
ତହିଁ ବେନି ପକ୍ଷେ ରଣଦେବୀଙ୍କର
ସ୍ୱଶିରକମଳେ ପୂଜିଲେ ପୟର।
ଜୀବନେ ହେଲେ ହେଁ ପରସ୍ପରେ ବାଦୀ
ମରଣେ ଲଭିଲେ ଏକତ୍ରେ ସମାଧି।
ବିଡ୍ରାନାସିଗଡ଼େ ସୁବର୍ଣ୍ଣକେଶରୀ
ରୁଦ୍ଧ, ରୁଦ୍ଧ ଯଥା ପିଞ୍ଜରେ କେଶରୀ।
ଯୁଦ୍ଧ ପରେ ଯୁଦ୍ଧ ହାରି ଅବଶେଷେ
ରୁଦ୍ଧ ଦୁର୍ଗଦ୍ୱାର ନୃପତି ଆଦେଶେ।
ଅନଶନେ ରାୟେ ଚଣ୍ଡିକାଦେଉଳେ
ଅଧା ପଡ଼ିଥିଲେ ହୃଦୟ ଆକୁଳେ।
ସ୍ୱପନେ ଚଣ୍ଡିକା ଭୂପତି ଅଗ୍ରତେ
ଉଭା ହୋଇ ଆଜ୍ଞା ଦେଲେ ଏହିମତେ,
"ଶତ୍ରୁ ତୋର ଦେବବଳେ ବଳିଆର
ସମ୍ମୁଖସଂଗ୍ରାମେ ଅଟେ ଦୁର୍ନିବାର,
ଦୁର୍ନିବାର ଦାବବହ୍ନି ଯଥା ବନେ,
ଶୈଳସ୍ରୋତସ୍ୱତୀ ଅଥବା ପ୍ଲାବନେ।
ଦେବୀ ଚନ୍ଦ୍ରଚୂଡ଼-ମୌଳିନିବାସିନୀ
ସହାୟ ତାହାର ସୁରତରଙ୍ଗିଣୀ।
ଗଙ୍ଗା ବାକ୍ୟେ ତାକୁ ଦେବ ଚନ୍ଦ୍ରଚୂଡ଼
ବାଞ୍ଛନ୍ତି ଦେବାକୁ ଉତ୍କଳେ ମହୁଡ଼।
ମନାସନ୍ତି ମହାରୁଦ୍ର ଯାହା ମନେ,
ନିୟତିରୂପେ ତା ଫଳେ ତ୍ରିଭୁବନେ।
ଶକ୍ତି ନାହିଁ, ବତ୍ସ, କାହାରି ଜଗତେ
ନିୟତିକି ନେବ ନିଜ ଇଚ୍ଛାପଥେ।
ସମ୍ମୁଖ ସଂଗ୍ରାମେ ଶତ୍ରୁ ଜିଣିବାର
ଆଶା ଛାଡ଼ି ରୁଦ୍ଧ କର ଗଡ଼ଦ୍ୱାର।
ଶତ୍ରୁଦର୍ପହାରୀ ଏହି ଜୈତ୍ରମଣି
ଶିରୋମଣିରୂପେ ପିନ୍ଧବୁ ନୃମଣି।
ଯାବତ ଏ ମଣି ଥିବ ତୋର ଶିରେ,
ଭେଦି ନ ପାରିବେ ଦୁର୍ଗ ଶତ୍ରୁବୀରେ।
ରଖି ନ ପାରିଲେ ଏହା ଯତ୍ନ କରି
ରାଜଦଣ୍ଡ ଯିବ କରୁଁ ଅପସରି।"
ଏହା କହି ଦେବୀ ହେଲେ ଅଦର୍ଶନ,
ଏଣେ ଭୂପତିଙ୍କ ଭାଙ୍ଗିଲା ସ୍ୱପନ।

ପାତ୍ରଙ୍କୁ ଛାମୁରେ ଡକାଇ ସେକ୍ଷଣି
ଦେବୀ ଆଜ୍ଞା ଜଣାଇଲେ ନୃପମଣି।
ସେହିଦିନୁ ରୁଦ୍ଧ ବିଡ୍ରାନାସିଦ୍ୱାର,
ବ୍ୟାଧ କରୁଁ ମୁକ୍ତ ହୋଇଛି ଶିକାର।
ଶିବିରେ ପ୍ରତୀକ୍ଷା କରି ବହୁଦିନ
ଶତ୍ରୁଯୋଧେ ହୋଇଛନ୍ତି ଧୈର୍ଯ୍ୟହୀନ।
ସ୍ୱଦେଶେ ବାହୁଡ଼ି ଯିବାକୁ ବାସନା –
ବର୍ଣ୍ଣୁଁ କରୁଛନ୍ତି ବିଜନେ ମନ୍ତ୍ରଣା।
ଜୟ ଆଶା ହେଲା ହୃଦୟୁଁ ଅନ୍ତର,
ସେନାପତି ଭାଗ୍ୟେ ତୁଟିଲା ନିର୍ଭର।
ସେନାପତି ବାକ୍ୟେ ଆସ୍ଥା ଗଲା ଚାଲି,
ଅସନ୍ତୋଷ ହେଲା ହୃଦର ସଙ୍ଖାଳି।
ଇଙ୍ଗିତେ ଚତୁର ଚୋର ସେନାପତି
ହେଳେ କଳିନେଲେ ତାଙ୍କ ମତିଗତି।
ହେଲେହେଁ ଆପଣେ ଅନ୍ତରେ ଚିନ୍ତିତ
ଦେଖାଇଲେ କାର୍ଯ୍ୟେ ତହିଁ ବିପରୀତ –
"କାଲି ରାତ୍ରିଯାଏ ରହ ଧୈର୍ଯ୍ୟ ଧରି,
ଏହିପରି ଯେବେ ପାହିଲା ଶର୍ବରୀ,
ଛାଡ଼ି ଏ ନଗର ଯିବ ନିଜ ସ୍ଥାନ,
ଏ ବାଣୀକି ମୋର ଧ୍ରୁବ କରି ଜାଣ।"
ଏହା କହି ତାଙ୍କୁ ଚୋର ବୀରବର
ରାତ୍ରୁଁ ହୋଇଥିଲେ ଶିବିରୁ ଅନ୍ତର।
ଆସିଲେଣି ବୀର ଶିବିରେ ବାହୁଡ଼ି,
ମୁହୂର୍ତ୍ତେ ଚୌଦିଗେ ପଡ଼ିଗଲା ହୁଡ଼ି।
ଆସିଲେ ସାମନ୍ତେ ପାତ୍ର ମିତ୍ର ଆଦି,
ଆସିଲେ ସୈନିକେ ମନେ ଆଶାବାନ୍ଧି।
ମନ୍ତ୍ରୀ ବାସୁଦେବ (୧) ମିଳିଲେ ଅଗ୍ରତେ,
ସମ୍ଭାଷି ସାମନ୍ତଦଳେ ବିଧିମତେ।
ଜଳଦଗମ୍ଭୀର ସ୍ୱନେ ସେନାପତି
ଆଶାଉଦ୍ଦୀପନୀ ଭାଷିଲେ ଭାରତୀ –
"କାଠଯୋଡ଼ି ଶୁଭ୍ରସିକତାଶୟନ
ଭେଦି କୁଆଁତାରା ମଣ୍ଡିଲେ ଗଗନ।
ଅବଗାହି କାଠଯୋଡ଼ି ପୂତ ଜଳେ,
ତନୁଛଦେ ତନୁ ଆବରି ଚଞ୍ଚଳେ।
ମାତୃ (୨) ପାଦପଦ୍ମ ଉଦ୍ଦେଶ୍ୟେ ଜୁହାରି,
ଅସିହସ୍ତେ ମୁହିଁ ହେଲି ନଦୀ ପାରି।
ଏହି ଯେ ଦିଶଇ ନୀଳଗିରିରେଖା,

(୧) ବାସୁଦେବ ନାମକ ଜଣେ ଉତ୍କଳୀୟ ବ୍ରାହ୍ମଣ ଚୋରଗଙ୍ଗଙ୍କର ମନ୍ତ୍ରିତ୍ୱ ସ୍ୱୀକାର କରିଥିଲେ। ପ୍ରଥମେ ସୁବର୍ଣ୍ଣକେଶରୀଙ୍କ ମନ୍ତ୍ରୀ ଥାଇ ତାହାଙ୍କ ସହିତ ବିବାଦ ହେବାରୁ ଚୋରଗଙ୍ଗଙ୍କୁ ଉତ୍କଳୀୟ ସିଂହାସନରେ ବସାଇବାର ବାସୁଦେବଙ୍କର ଲକ୍ଷ୍ୟ ଥିଲା। (୨) ମାତୃପାଦପଦ୍ମ– ଗଙ୍ଗାଦେବୀ ଚୋରଗଙ୍ଗଙ୍କର ଜନନୀ, ଏହି କିମ୍ବଦନ୍ତୀ ଉତ୍କଳ ଇତିହାସରେ ପ୍ରସିଦ୍ଧ।

ଏହି ମୁଖେ ବନେ ବନେ ଗଲି ଏକା ।
ଧ୍ୟାନମଗ୍ନ ପ୍ରାୟେ ସ୍ତବ୍ଧ ବନସ୍ଥଳୀ,
ବନସ୍ପତିପନ୍ତୁଁ ବ୍ୟୋମ୍ନ ପଡ଼େ ଝଳି ।
ମାତୃପାଦ ଧାୟି ଗଲି ମୁଁ ନିଃଶଙ୍କେ,
ବନାନ୍ତେ ପଶିଲି ଯାଇ ଗିରିଟଙ୍କେ ।
ଟଙ୍କେ ଟଙ୍କେ ଯାଇ ପଶ୍ଚିମମାର୍ଗରେ
ପଶିଲି ବିଜନ ପର୍ବତ କନ୍ଦରେ ।
ପର୍ବତମେଖଳେ ବସି ତରୁତଳେ
ମାତୃପାଦପଦ୍ମ ଧାୟିଲି ନିଶ୍ଚଳେ ।
କଜ୍ଜଳପତ୍ରୀର ପବିତ୍ର ନିଃସ୍ୱନ
ଜଗତେ ସୂଚିଲା ଉଷାଆଗମନ ।
କ୍ରମେ କ୍ରମେ ହେଲେ ଚନ୍ଦ୍ରମା ନିଷ୍ପ୍ରଭ,
ଉଷାରାଗେ ରକ୍ତ ହେଲା ପ୍ରାଚୀନଭ ।
ମାତାଙ୍କ ପ୍ରବାହ ଯଥା ସିନ୍ଧୁଜଳେ,
ଉଛୁଳିଲା ପ୍ରଭା ନୀଳନଭସ୍ତଳେ,
ନୀଳକାନ୍ତିବ୍ୟୋମ ଅନ୍ତରାଳେ ଝଳି
ବିରାଜିଲା ବିଭା ଯେହ୍ନେ ଅରାବଳୀ ।
ଶୁଆତାରା ତହିଁ ମଧ୍ୟେ ବିରାଜିତା,
ପ୍ରାଚୀ କରିଛି କି ରାମାନନ୍ଦୀ ଚିତା ।
କୁମ୍ଭାଟୁଆ ଖଗ ପ୍ରଭାତତଗରା
ରଙ୍ଗେ ବଜାଇଲା କାନନନାଗରା,
ବିହିଲେ କାନ୍ତାରେ କୁକ୍କୁଟ, କୌଶିକ,
ଚଷାପୁଏ (୧) ମିଳି ଉଷା-ତ୍ରୌର୍ଯ୍ୟତ୍ରିକ ।
ସେ ଘୋର ନିର୍ଜନେ ବସି ଏକାସନେ
ମାତାଙ୍କୁ ଧାୟିଲି ଏକତାନମନେ ।
ଅର୍ଦ୍ଧଯାମ କାଳ ଗଲା ଏହିମତେ,
ସହସା ପଶିଲା ମୋ ଶ୍ରବଣପଥେ,
ଆଶା ମୃଦୁଭାଷା ନିରାଶେ ଯେସନ
ପରିଚିତ ସେହି ଜଳଦଳ ସ୍ୱନ;
ନୟନ ଫେଡ଼ି ମୁଁ ଦେଖିଲି କନ୍ଦରେ
ଭେଦି ପୂଜାବେଦି କୂପାଝର ଝରେ ।
କାଚ୍‌ଧାର ପ୍ରାୟେ ସ୍ୱଚ୍ଛ ଜଳଧାର,
ଦେବମନ ପ୍ରାୟେ ଦିଶଇ ଉଦାର ।
ଚାହୁଁ ଚାହୁଁ ହେଲା ଛାୟାବାଜିବତ
ଗଭୀର କନ୍ଦରା ହ୍ରଦେ ପରିଣତ ।
ବନଦେବୀଙ୍କର ବିଳାସଦର୍ପଣ,
କିମ୍ବା ବରୁଣର ସ୍ଫଟିକଭବନ,
ଅବା ଜଗତର ସତ୍ତ୍ୱଗୁଣରାଶି
ଗୁପତରେ ତହିଁ ପୁଣ୍ଡ ହେଲା ଆସି ।
ମଧ୍ୟେ ସୁଗଭୀର ଜଳ ନୀଳାକାର,
କିବା ସେ ଅତଳ ପାତାଳର ଦ୍ୱାର ।
ହ୍ରଦ ଆସ୍ତରଣ ଶୋଭନ ଅଞ୍ଚଳ-
ରୂପେ ବିକସିଲେ ଜଳପୁଷ୍ପଦଳ ।
ରମ୍ୟ ତାମରସ ସରସୀସମ୍ପଦ,
କୁମୁଦ, କହ୍ଲାର, ରକ୍ତକୋକନଦ ।
ସ୍ୱର୍ଗୀୟ ସୌରଭେ ପୂରିଲା ଅଟବୀ,
ଜଳରାଶି ଭେଦି ଶୋଭିଲେ ଜାହ୍ନବୀ ।
ଶଙ୍ଖସିଂହାସନେ, ସଙ୍ଗେ ସହଚରୀ
ଉତ୍କଳୀୟବେଶେ ଅପୂର୍ବ ସୁନ୍ଦରୀ ।
ଇନ୍ଦ୍ର-ଧନୁ-ପ୍ରଭା-ମଣ୍ଡଳେ ମଣ୍ଡିତ,
ଶତଦଳେ ନୀଳକବରୀ ଭୂଷିତ ।
ମନ୍ଦାନିଳେ ଝୁଲୁଅଛି ସିଂହାସନ,
ବର୍ହ ଟେକି ବର୍ହୀ ତାଣ୍ଡବେ ଯେସନ ।
ହେଲେ ଯହୁଁ ଦେବୀ ଜଳେ ସମାସୀନା,
ବାଜିଣ ଉଠିଲା ବନଦେବୀ ବୀଣା ।
ତା ସଙ୍ଗେ ମିଶିଲା ଭ୍ରମର ସଂଗୀତ,
ବନବିହଙ୍ଗର କାକଳି ଲଳିତ ।
ଦରୀକୋଳେ ଶୋଇଥିଲେ ପ୍ରତିଧ୍ୱନି,
ଜାଗି ଉଠିଲେ ସେ ଗୀତେ ସେହିକ୍ଷଣି ।
ହଂସ ଚକ୍ରବାକ ଜଳେ ଅବତରି
ବେଢ଼ିଣ ଦେବୀଙ୍କି ବୁଲିଲେ ପହଁରି ।
ମୃଗ ମୃଗୀ ତୀରେ ତୃଣାହାର ଛାଡ଼ି
ଉଦ୍‌ଗ୍ରୀବେ ଚାହିଁଲେ ହୋଇ ଧାଡ଼ି ଧାଡ଼ି ।
ସେ ସ୍ୱର୍ଗୀୟ ଦୃଶ୍ୟ ପିଇଲେ ନୟନେ,
ସେ ସ୍ୱର୍ଗୀୟ ଗୀତ ପିଇଲେ ଶ୍ରବଣେ ।
ମାତାଙ୍କ ଶ୍ରୀମୂର୍ତ୍ତି ଦେଖି ଜଳପରେ
ତୀରୁଁ ନମ୍ରଶିରେ ନମିଲି ପୟରେ ।
ଗୋଦାବରୀ ହ୍ରଦେ କମଳକାନନେ
ଦେଖିଥିଲି ଯେଉଁ ମୂରତି ବିଜନେ,
ସେହି ରୂପେ ଦେବୀ ଦେଖାଦେଲେ ଆଜ,
ଲାଞ୍ଛିତ ଯେ ରୂପେ କୋଟି ଦ୍ୱିଜରାଜ ।
କୁନ୍ଦପ୍ରଭା ନିନ୍ଦି ଶ୍ରୀମୁଖମୟୂଖ
ଦର୍ଶନେ ଖଣ୍ଡିଲା ହୃଦୁଁ ସର୍ବ ଦୁଃଖ ।
ସ୍ଥାବର ଜଙ୍ଗମ ଆଦିକରି ଯେତେ
ସ୍ତବ୍ଧ ହେଲେ ସର୍ବେ ଦେବୀଙ୍କ ସଙ୍କେତେ ।
ଚିତ୍ରାର୍ପିତ ପ୍ରାୟେ ହେଲେ ସବୁ ପ୍ରାଣୀ,
ଶ୍ରୀମୁଖପଙ୍କଜୁଁ ନିଃସରିଲା ବାଣୀ—
"ସପତ୍ନୀର (୨) ପୂଜା ଉଠାଇବା ଆଶେ
ଆଣିଲି, ବାଳୁତ, ତୋତେ ଏ ପ୍ରବାସେ ।
ବୀର ଦେବବ୍ରତ (୩) ଦ୍ୱାପରେ ଯେମତେ

(୧) ଚଷାପୁଅ – ପକ୍ଷିବିଶେଷ । (୨) ପାର୍ବତୀ (ଶକ୍ତି) ଗଙ୍ଗାଙ୍କର ସପତ୍ନୀ । (୩) ଦେବବ୍ରତ – ଭୀଷ୍ମ

ସ୍ଥାପିଲେ ବୈଷ୍ଣବ ଧର୍ମ ଭୂଭାରତେ।
କ୍ରୂର ଶାକ୍ତ ମତ, ଶାକ୍ତ ଅନାଚାର
ଉଠାଇ ବୈଷ୍ଣବ ଭକତି ପ୍ରଚାର,
କରିବାକୁ ଏକା ତୁହି ସେ ଭାଜନ
ଅଛି ଶକ୍ତି ତୋର, ଅଛି ପୁଣି ମନ।
ରଣେ ଦେଖାଇଲୁ ସାହସ ବିଷମ,
ନ ଡରିଲୁ ଅଗ୍ରେ ଉଭା ଦେଖି ଯମ।
ଯୁଦ୍ଧବୀରଙ୍କର ଯେତେ ଗୁଣମାନ
ତୋଠାରେ ସକଳ ହୋଇଛି ପ୍ରମାଣ।
ମାତ୍ର ଯୁଦ୍ଧବୀର ନୁହେଁ ଧର୍ମବୀର,
କରକା ନୁହଇ କେବେ ମଣି ହାର।
ଧର୍ମବୀର ବିନା ଧର୍ମସଂସ୍ଥାପନ
କରିବାକୁ ଅନ୍ୟେ ନୁହନ୍ତି ଭାଜନ।
ଧର୍ମ-ଅସ୍ତ୍ରେ ଯେହୁ କରନ୍ତି ବିଜୟ,
ଯୁଦ୍ଧକ୍ଷେତ୍ର ତାଙ୍କ ମନୁଷ୍ୟହୃଦୟ।
ଉପୁଜାଏ ବାହୁବଳ ଶତ୍ରୁଭୀତି,
ଧର୍ମବଳ ଆଣି ଦିଏ ଶତ୍ରୁପ୍ରୀତି।
ଧର୍ମଯୁଦ୍ଧେ ସେହି ପ୍ରୀତି ଲଭିବାର
ନିୟତି ଫିଟାଇ ଦେବ ତୋତେ ଦ୍ୱାର।
ଯୁଝିବାକୁ ହେବ ଏକା ଏ ସମରେ,
ପଡ଼ିବୁ ସହାୟ ଥିଲେ ହରବରେ।
ଭାଗ୍ୟର ମୀମାଂସା ହେବ ତୋର ଆଜ,
ଲଭିବୁ ତୁ ଚିର ଯଶଃ ଅବା ଲାଜ।
ଏ ରଣ ଜିଣିଲେ ହେବୁ ତୁହି ଧନ୍ୟ,
ଏହି ଦେବୀ ହେବେ ସଦା ସୁପ୍ରସନ୍ନ।
ଭବେ ଏହାଙ୍କର ନାମ ମହାନଦୀ,
ଉତ୍କଳ ଭୁବନେ ଏହି ବିଷ୍ଣୁପଦୀ।
ନୀଳସାଗରର ଫେନିଳ ତରଙ୍ଗ
ଏଡି ଶୈଳପଦେ ହେଉଥିଲା ଭଙ୍ଗ।
ମହାନଦୀ ଲୀଳା ନିମନ୍ତେ ତାର୍ଥେଶ
ଛାଡ଼ି ଦେଇଛନ୍ତି ଏହି ପୂର୍ବ ଦେଶ।
ଏହି ମହାନଦୀ ପ୍ରସାଦେ କେବଳ
ଜନ୍ମିଅଛି ଶସ୍ୟ-ଶ୍ୟାମଳ ଉତ୍କଳ।
ମହେନ୍ଦ୍ରକୁ (୧) ଭେଦି ମହୋଦଧି ପଦେ
ମିଳିଲେ ଆସି ଏ ସଲିଳସଂପଦେ।
ତୁଷ୍ଟ ହୋଇ ମୁହିଁ ସୁକାନ୍ତିଙ୍କ ସ୍ତବେ
ପେଷିଲଇଁ ଏହି ସଖୀଙ୍କି ପୂରବେ।
ଲୋକେ ଏହାଙ୍କର ମହିମା ଅଦ୍ଭୁତ,
ନୀର ଏହାଙ୍କର ମର୍ତ୍ତ୍ୟରେ ଅମୃତ।
ଯା ତୀର ନିବାସ ମଣି ମହୋତ୍ସବ,
ବସନ୍ତି ଶରଭେ ଶ୍ରୀନୀଳମାଧବ, (୨)
ବସନ୍ତି ଉତର ତଟେ ଭଟ୍ଟାରିକା, (୩)
ଦକ୍ଷିଣେ ନାବିକ-ଅର୍ଚ୍ଚିତା ଚର୍ଚ୍ଚିକା। (୪)
ସ୍ରୋତେ ଶୈଳଶୃଙ୍ଗେ ଶଶାଙ୍କଶେଖର
ସିଂହାନାଥ ପୁଣି ଧବଳେଶ୍ୱର। (୫)
ଗମନ୍ତି ଯେ କାଳେ ସିନ୍ଧୁ ତୃଷାମତି
ଜ୍ୟୋତିର୍ମୟ ବର୍ଣ୍ଣେ କୁମାରୀ ବସତି।
ଗୈରିକ-ଅରୁଣ ସ୍ରୋତଜଳେ ଭାସି
ଯାଆନ୍ତି ସୁନ୍ଦରୀ ଭେଟିବାକୁ ପାଣୀ।
ସେକାଳେ ହୁଅଇ ଇନ୍ଦ୍ରଧନୁମାଳ
ତୀର ଅଦ୍ରିସ୍ତମ୍ଭେ ତୋରଣ ବିଶାଳ।
ମାଳା ପ୍ରାୟେ ତଳେ ଖେଳେ ସୌଦାମିନୀ,
ବ୍ୟୋମେ ବହୁଥାନ୍ତି ବିମାନଚାରିଣୀ।
ଦେବୀଙ୍କି ସେବନ୍ତି ପବନ ଆଦରେ
ବିକସିତ କାଶକୁସୁମ-ଚାମରେ।
କାଶଦ୍ୱୀପେ ଜଳଦେବୀ ଗୀତିରୋଳ
ସଙ୍ଗେ ମିଶେ ଜଳତରଙ୍ଗ କଲ୍ଲୋଳ।
ଚକ୍ରବାଳେ ଶୋଭେ ଜଳ ଆସ୍ତରଣ
ଯେହ୍ନେ ବିଶ୍ୱଲକ୍ଷ୍ମୀ-ବିଶାଳ-ଦର୍ପଣ।
ନିରତେ କରିବୁ ଦେବୀଙ୍କର ଧ୍ୟାନ,
ମୋଠାରୁ ଦେବୀଙ୍କି ନ ଜାଣିବୁ ଆନ।
ବ୍ରାହ୍ମୀ, ବୈତରଣୀ, ସୁବର୍ଣ୍ଣତଟିନୀ,
ବଳାଙ୍ଗୀ ଏ ଚାରି ଦେବୀଙ୍କ ଭଗିନୀ।
ନିନ୍ଦିତ ଯା ରୂପେ ପୂର୍ଣ୍ଣଇନ୍ଦୁ ପ୍ରଭା,
ମହାଦେବୀ ଦେବଯଜନସମ୍ଭବା। (୬)
ବସନ୍ତି ଯା ତୀରେ ବିରଜାସୁନ୍ଦରୀ,
ମୋର ସ୍ରୋତ ରୋଧେ ଯଥା ବିନ୍ଧ୍ୟେଶ୍ୱରୀ।
ଗୋନାସିକା ଗିରି (୭) ପୂତ ଝରୁ ଜାତ
ଯାର ସ୍ରୋତ, ମହାବରାହ (୮) ଆଖ୍ୟାତ।
ମହାବିଷ୍ଣୁ ସ୍ୱନେ ପୁଣ୍ୟ ଯାର ନୀର,

(୧) ଓଡ଼ିଶାର ପର୍ବତମାଳା ମହେନ୍ଦ୍ରଗିରିର ଅଂଶୀଭୂତ। (୨) ଖଣ୍ଡପଡ଼ା ଅନ୍ତର୍ଗତ ମହାନଦୀ ତୀରବର୍ତ୍ତୀ ସୁପ୍ରସିଦ୍ଧ କଣ୍ଟିଲୋପାଟଣାର ଗୋଟିଏ ପର୍ବତ ଶିଖରଦେଶରେ ନୀଳମାଧବଙ୍କ ମନ୍ଦିର ପ୍ରତିଷ୍ଠିତ। (୩) ଭଟ୍ଟାରିକା – ବଡ଼ମ୍ବା ରାଜ୍ୟରେ ପ୍ରତିଷ୍ଠିତ। ଏହାଙ୍କର ଅପର ନାମ ବୃହଦମ୍ବା। (୪) ଚର୍ଚ୍ଚିକା ବାଙ୍କିର ପ୍ରଧାନ ଦେବତା। (୫) ମହାନଦୀର ସ୍ରୋତ ମଧ୍ୟରେ ପର୍ବତ ଶୃଙ୍ଗରେ ସିଂହନାଥ ଏବଂ ଧବଳେଶ୍ୱରଙ୍କର ମନ୍ଦିର ପ୍ରତିଷ୍ଠିତ। ସିଂହନାଥ ବଡ଼ମ୍ବା ଏବଂ ଧବଳେଶ୍ୱର ଆଠଗଡ଼ର ଅନ୍ତର୍ଗତ। (୬) ବିରଜା ଦେବଯଜ୍ଞରୁ ସମ୍ଭୂତ ହୋଇଥିବାର କିମ୍ବଦନ୍ତୀ ଅଛି। (୭) କେନ୍ଦୁଝର ଅନ୍ତର୍ଗତ ଭୂୟାଁପାଢ଼ରେ ଗୋନାସିକା ପର୍ବତ ଅବସ୍ଥିତ। ଏହି ପର୍ବତରୁ ବୈତରଣୀ ଜାତ ହୋଇଅଛନ୍ତି। (୮) ବରାହନାଥ ଯାଜପୁରର ପ୍ରସିଦ୍ଧ ଦେବତା।

ପରିଖା ଉତ୍କଳେ ଆଦ୍ୟ ନଗରୀର।
ସେହି ବୈତରଣୀ ଅଗ୍ରତେ ତୁମ୍ଭର,
ବନ୍ଦ, ବତ୍ସ, ଭାବେ ଦେବୀଙ୍କ ପୟର।
ମେଘାସନ ଶୈଳ (୧) ମେଘର ଆବାସ,
ସଦଳେ ଝଟିକା ଯହିଁ କରେ ବାସ।
ତହିଁ ଜନ୍ମି ସ୍ରୋତ ପ୍ରାଚୀମୁଖେ ଧାଏଁ,
ସିନ୍ଧୁ ଅଙ୍ଗେ ନିଜ ତରଙ୍ଗ ମିଶାଏ।
ସେହି ସ୍ରୋତସ୍ୱତୀ ସ୍ରୋତ-ଅଧୀଶ୍ୱରୀ
ବଳାଙ୍ଗୀ ଏ, ମହାନଦୀ-ସହଚରୀ।
ଉତ୍କଳର ହେମସୀମନ୍ତରୂପିଣୀ,
ଦେଖ, ବତ୍ସ, ଏହି ସୁବର୍ଣ୍ଣତଟିନୀ।
ସୁବର୍ଣ୍ଣ ପରାଗ ଯହୁଁ ଅହରହ
ଶବରଯୁବତୀ କରନ୍ତି ସଂଗ୍ରହ।
ଯାର ତୀର କୁଞ୍ଜବିହାର ବାସନା
ଛାଡ଼ି ନ ପାରନ୍ତି ରମ୍ଭା (୨) ସୁଲୋଚନା।
ନନ୍ଦନେ ମନ୍ଦାରନିକୁଞ୍ଜେ ବିହାର–
ସୁଖକୁ ଯା ଲାଗି ଦିଅନ୍ତି ଧିକ୍କାର।
ଏହି ସେହି ବ୍ରାହ୍ମୀ ବ୍ରହ୍ମାଣ୍ଡପାବନୀ,
ଯାର କୃପାଯୋଗୁଁ ଉତ୍କଳେ ଅବନୀ
ପ୍ରସବୁଛି ନାନା ଶସ୍ୟ ଅବିରତ,
ବୈତରଣୀ ସଙ୍ଗେ ହୋଇଣ ସଙ୍ଗତ।
ଯାର ଜଳରାଶି ଅନୂପ ଉତ୍କଳେ
ମହାସିନ୍ଧୁ ସଙ୍ଗେ ଯୁଝେ କୁତୂହଳେ।
ପ୍ରଧାନପାଟର ପ୍ରପାତ ଭୀଷଣ (୩)
ନିର୍ଜନ ଗହନେ ଗର୍ଜେ ଅନୁକ୍ଷଣ।
ନୀରଆସ୍ତରଣ ଭୃଗୁ-ପ୍ରସ୍ଥେ ଯାର
ହୀରକକୁ ଦିଏ ସହସ୍ର ଧିକ୍କାର,
ନିରନ୍ତର ରତ୍ନ-ସୀମନ୍ତ ପରାୟେ
ଇନ୍ଦ୍ରଧନୁ ଯାର ଶିରେ ଶୋଭାପାଏ।
ଯହିଁ କେଳିଲୋଳା ଜଳଦେବୀ କେଳି
ଉପୁଜାଏ ଶତ ସଲିଳହାବେଳି।
ଗଢିବେ ଯା ତୀରେ ରୁଚିର ନଗର
ଦୂର ଭବିଷ୍ୟତେ ତୋର ବଂଶଧର। (୪)
ସେହି ପ୍ରପାତର ପୂତ ତୋୟରାଶି
ମିଶୁଅଛି ଏହି ବ୍ରାହ୍ମୀଅଙ୍ଗେ ଆସି।
ଚାରି ସଖୀ ସଙ୍ଗେ ସୁକାନ୍ତିତନୁଜା (୫)
ଅଖିଳ ଉତ୍କଳେ ପାଉଛନ୍ତି ପୂଜା।
ଅଖିଳ ଉତ୍କଳ ଦେଶବାସିଚୟ
ବନ୍ଦୁଛନ୍ତି ପିଇ ଏହାଙ୍କର ପୟ।
ନବତୀର୍ଥ ଆଜ ମୋର ଆବିର୍ଭାବେ
ଉପୁଜିଲା, ବତ୍ସ, ଏ ବିଜନଠାବେ।
ଏହି ତୀର୍ଥେ ଆସି ଏ ପୁଣ୍ୟତିଥିରେ
ପ୍ରତି ବର୍ଷ ସ୍ନାନ କରିବୁ ଏ ନୀରେ।
ବୋଲାଇବ ଏହା ଉତ୍କଳେ ସନ୍ତତେ
"ଚୋରଗଙ୍ଗ ଦହ" (୬) ତୋର ନାମମତେ।
ଏହା କହି ଦେବୀ ହେଲେ ଅନ୍ତର୍ହିତ,
ଜଳଦେ ଯେସନେ ମିଶଇ ତଡ଼ିତ,
ଜଳେ ମିଶିଗଲା ସେ ଛବି ପଲକେ,
ଅବଶେ ଆଖି ମୁଁ ବୁଜିଲି ଝଲକେ।
ପୂର୍ବପରି ସ୍ତବ୍ଧ ହେଲା ସେ କାନ୍ତାର
ପୂର୍ବପରି ଶୁଭି ଝିଙ୍କାରି ଝଙ୍କାର।
କୌମୁଦୀ ବିହୁନେ ଶଶାଙ୍କ ଯେସନ,
ମ୍ଳାନଭାବ ଏବେ ଭଜିଲା କାନନ।
ପ୍ରଭାବିଭୁ ନଭେ ହେଲେ ଖରତର,
ତୋଳି ନେଇ ସଗୁଁ ମୃଣାଳ ପୁଷ୍କର
ଦେବୀଙ୍କି ନୈବେଦ୍ୟ ଦେଇ ମନେମନେ
କ୍ଷୁଧା ନିବାରିଲି ପ୍ରସାଦ ସେବନେ।
ଅମ୍ବରେ ଉଜ୍ଜ୍ୱଳେ ଜଳିଲେ ତରଣି,
କିବା ଦିବାଦେବୀ କାଞ୍ଚୀମଧମଣି।
ତାପେ କ୍ଳାନ୍ତ ତରୁରାଜି ସର କୂଳେ
ଅର୍ଚ୍ଚିଲେ ସରକୁ ବୃନ୍ତଚ୍ୟୁତ ଫୁଲେ।
କପୋତେ ଗାବିଲେ ତରୁଷଣ୍ଡେ ଲୁଚି,

(୧) ମେଘାସନ ଗିରି ଓଡ଼ିଶାର ଦ୍ୱିତୀୟ-ଉଚ୍ଚ ପର୍ବତ, ମୟୂରଭଞ୍ଜରେ ଅବସ୍ଥିତ। ଶିମୂଳିପାଳ ପର୍ବତର ପ୍ରଧାନଶିଖର ମେଘାସନ ଅଟେ ଏବଂ ଶିମୂଳିପାଳ ପର୍ବତରୁ ବଳଙ୍ଗ ଜାତ ହୋଇଅଛି। (୨) ବାମଣ୍ଡାରାଜ୍ୟ ଅର୍ନ୍ତଗତ ବ୍ରାହ୍ମଣୀତୀରବର୍ତ୍ତୀ ବାରକୂଟ ନାମକ ଗ୍ରାମରେ ରମ୍ଭାଙ୍କର ମନ୍ଦିର ଅଛି। (୩) ପ୍ରଧାନପାଟ ପ୍ରପାତ ବାମଣ୍ଡାରାଜଧାନୀ ଦେବଗଡ଼ର ନିକଟବର୍ତ୍ତୀ। ବାମଣ୍ଡାର ବର୍ତ୍ତମାନ ମହାରାଜ ଏହି ପ୍ରପାତର ଜଳ ପୟଃ ପ୍ରଣାଳୀ ଦ୍ୱାରା ରାଜଧାନୀକୁ ଅଣାଇ ସାଧାରଣ ବ୍ୟବହାରୋପଯୋଗୀ କରାଇଛନ୍ତି। (୪) ବାମଣ୍ଡାର ରାଜଧାନୀ ଦେବଗଡ଼ ଏହି ଭବିଷ୍ୟଦ୍ ବାଣୀର ଲକ୍ଷ୍ୟ ଅଟେ। ଚୂଡ଼ଙ୍ଗଦେବ ବାମଣ୍ଡା ରାଜବଂଶର ଆଦିପୁରୁଷ ଅଟନ୍ତି। (୫) ସୁକାନ୍ତିତନୁଜା– ମହାନଦୀ। (୬) ଚୂଡ଼ଙ୍ଗଦହ– ଏହି ଦହ କଟକରୁ ୪ କ୍ରୋଶ ଦୂରବର୍ତ୍ତୀ ସାରଙ୍ଗଗଡ଼ର ନିକଟସ୍ଥ ଅରଣ୍ୟ ମଧ୍ୟରେ ଅବସ୍ଥିତ। ଏହା ଅତ୍ୟନ୍ତ ଗଭୀର ଏବଂ ଏହାର ଜଳ ଅତି ନିର୍ମଳ। କେହି କେହି କହନ୍ତି ଯେ ଏହା ମଧ୍ୟରେ ଗଙ୍ଗାଦେବୀଙ୍କର ମନ୍ଦିର ଅଛି ଏବଂ ବିଗତ ନଅଙ୍କରେ କିଞ୍ଚିତ୍ ଜଳ ଶୁଷ୍କ ହୋଇଯିବାରୁ ଉକ୍ତ ମନ୍ଦିରର ଚୂଡ଼ା ଦୃଷ୍ଟିଗୋଚର ହୋଇଥିଲା।

ପତ୍ର ଅନ୍ତରାଳେ ରାବିଲେ ଗୁଣ୍ଡୁଚି।
ଅଚ୍ଚଳେ କୋଚିଲାଖାଇଙ୍କର ରାବ
ପ୍ରଚାରିଲା ବନେ ମଧ୍ୟାହ୍ନ ପ୍ରଭାବ।
ନଦୀକୂଳୁଁ ଶୁଣି ସ୍ୱଜାତିର ସ୍ୱର
ନଦୀକୂଳ-ବନ୍ଧୁ (୧) ଦେଲା ପ୍ରତ୍ୟୁତ୍ତର।
ବିଶ୍ରାମେ ମିଟାଇ ଶ୍ରମ ତରୁତଳେ
ଶିବିରକୁ ଫେରି ଅଇଲି ଚଞ୍ଚଳେ।"

ଏହି କଥା କହି ଚୋରସେନାପତି,
ପ୍ରଦୋଷକୃତ୍ୟରେ ବଳାଇଲେ ମତି।
ସାମନ୍ତେ ସୈନିକେ ଗଲେ ନିଜ ସ୍ଥାନ,
ମନେ ଗୁଣି ସେନାପତି କଥାମାନ।
କି ଭାଗ୍ୟ ଫଳିବ ରଜନୀଗରଭେ,
ଏହି ପ୍ରତୀକ୍ଷାରେ ରହିଲେ ସରବେ।

## ଦ୍ୱିତୀୟ ସର୍ଗ

### ( ନଟବାଣୀ ବୃତ୍ତ )

ବୁଡନ୍ତି ଦିନାନ୍ତେ ତପ୍ତ ହେମଛବି
ଧୀରେ ଦେବୀଦ୍ୱାର (୨) ଗିରିଶୃଙ୍ଗେ ରବି।
ପୀତ କରଜାଲେ ଝଲୁଛି ଭୁବନ,
ସୁଖସ୍ୱପ୍ନ ପ୍ରାୟେ ହରେ ଜନମନ।
ବାରୁଣୀଗଗନ ପ୍ଲାବିତ ପ୍ରଭାରେ,
ଗନ୍ଧର୍ବନଗରୀ ଶୋଭାକୁ ଧିକ୍କାରେ।
ବାରୁଣୀ ରାଣୀ କି ପିନ୍ଧି ସ୍ୱର୍ଣ୍ଣଚେଳ
ସଖୀ ସଙ୍ଗେ ଖେଳୁଛନ୍ତି ଫଗୁ ଖେଳ।
ସୁବର୍ଣ୍ଣବିମାନ, ସ୍ୱର୍ଣ୍ଣରଥ ଦୋଳା
ନଭସ୍ତଳେ କେତେ ହୋଇଛନ୍ତି ତୋଳା।
ସୁବର୍ଣ୍ଣର ନଦେ ବହେ ସ୍ୱର୍ଣ୍ଣସ୍ରୋତ,
ସୁବର୍ଣ୍ଣ ଅଙ୍ଗାଳେ ଚଳେ ସ୍ୱର୍ଣ୍ଣପୋତ।
ସୁବର୍ଣ୍ଣ ମଣ୍ଡରେ ସୁବର୍ଣ୍ଣ ଆସନ,
ତହିଁ କି ବସିଛି ଦେବବେହଗଣ।
ଦୂରେ ବାଲିରାଶି ମିଶିଛି ଗଗନେ,
ବିଭାସିତ ସନ୍ଧ୍ୟା କନକକିରଣେ।
ସାରଙ୍ଗଗଡ଼ରୁ ଆଠଗଡ଼ଯାଏ
ଶୋଭେ ଶୈଳ ନୀଳପ୍ରାଚୀର ପରାୟେ।
ଠାବେ ଠାବେ ତୁଙ୍ଗ ନୀଳ ଶୃଙ୍ଗମାଳା
ଶୋଭେ ଯେହ୍ନେ ଇନ୍ଦ୍ରନୀଳ ଚନ୍ଦ୍ରଶାଳା।
ଉଚ୍ଚତାରେ ଦେଇ ସର୍ବ ଶୈଳେ ଲଜ୍ଜା
ଟେକିଛି ଶିଖର ଗିରି ସପ୍ତଶଯ୍ୟା। (୩)

ମଣ୍ଡିଛନ୍ତି ସ୍ୱର୍ଣ୍ଣ କରେ ଗ୍ରହରାଜ
ବୌଦ୍ଧକୀର୍ତ୍ତିରାଜିମଣ୍ଡିତ ନରାଜ। (୪)
ଉତ୍ତରେ ବିରାଜେ ଶୈଳ ସର୍ପେଶ୍ୱର, (୫)
ସର୍ପେଶ୍ୱରୀ ଯାର ଧୁଅଇ ପୟର।
ବକ୍ରଗାମୀ ସ୍ରୋତେ, ବିସ୍ତୃତ ସୈକତେ
ସନ୍ଧ୍ୟାରାଗ ଖେଳୁଅଛି ନାନମତେ।
ସ୍ୱଚ୍ଛ ସ୍ରୋତ ଜଳେ ପୀତ ରବିରୁଚି
ପଡ଼ି, ବୀଚିମାଳା ହଲୁଛି ଝଲୁଛି।
ଧୂମାକାରେ ଦୂରେ ପର୍ବତର ଛାଇ
ମାଡ଼ିଆସୁଅଛି ଜଳ ସ୍ଥଳ ଛାଇ।
ରଥାଙ୍ଗୀ ଭାସଇ କାଠଯୋଡ଼ି ନୀରେ
ଥରେ କାନ୍ଦେ, ଥରେ ଅନାଇ ମିହିରେ।
ପଟିଆଦହରୁ (୬) ପକ୍ଷୀ ଦଳେ ଦଳେ
ଉଡ଼ି ଆସୁଛନ୍ତି ନରେ କୋଳାହଳେ।
ଗଉଡ଼େ ମଧୁରେ ମୂରଲୀ ବଜାଇ
ପଠାରୁ ଗୋଠକୁ ଆଣୁଛନ୍ତି ଗାଈ।
ଚାହୁଁ ଚାହୁଁ ରବି ହେଲେ ଅସ୍ତମିତ,
ପଶ୍ଚିମାଶା ହେଲା କୁଙ୍କୁମେ ଛୁରିତ।
କେତେ ରୂପ ଧରୁଅଛି ଚକ୍ରବାଳ,
ଦେଖାଉଛି ନବ ନବ ଇନ୍ଦ୍ରଜାଲ।
ରକ୍ତ, ପୀତ, ନୀଳେ ଚିତ୍ରି କରି ନଭ
ଭିଆଇଛି ନାନାବର୍ଣ୍ଣେ ବର୍ଣ୍ଣୋତ୍ସବ।

(୧) ନଦୀକୂଳବନ୍ଧୁ– ଯାମଘୋଷୀ ପକ୍ଷିବିଶେଷ। (୨) ଡମପଡ଼ା ଅନ୍ତର୍ଗତ ସ୍ୱନାମପ୍ରସିଦ୍ଧ ପର୍ବତମାଳା। କଟକର ଦକ୍ଷିଣ-ପଶ୍ଚିମରେ ଅବସ୍ଥିତ। (୩) ସପ୍ତଶଯ୍ୟା ପର୍ବତ ଢେଙ୍କାନାଳର ଅନ୍ତର୍ଗତ। କଟକର ପଶ୍ଚିମରେ ଯେଉଁ ପର୍ବତମାନ ଦୃଶ୍ୟ ହୁଅନ୍ତି, ସେମାନଙ୍କ ମଧ୍ୟରେ ସପ୍ତଶଯ୍ୟା ସର୍ବୋଚ୍ଚ। (୪) ନରାଜର ବୌଦ୍ଧକୀର୍ତ୍ତି ଇତିହାସପ୍ରସିଦ୍ଧ। (୫) ସର୍ପେଶ୍ୱର ପର୍ବତ ଆଠଗଡ଼ର ଅନ୍ତର୍ଗତ। ନରାଜର ବିପରୀତ ପାର୍ଶ୍ୱରେ ଅବସ୍ଥିତ। ଆଠଗଡ଼ର ପ୍ରଧାନତମ ନଦୀ ସର୍ପେଶ୍ୱରୀ (ସାପୁଆ) ଏହି ପର୍ବତ ତଳେ ମହାନଦୀରେ ମିଶିଅଛି। (୬) ପଟିଆ– ଏହା କଟକଠାରୁ ୩ କ୍ରୋଶ ଦକ୍ଷିଣରେ ଅବସ୍ଥିତ। ଏହାର ପର୍ବତ ଏବଂ କାନନବେଷ୍ଟିତ ଦହମାନ ଅତି ରମଣୀୟ। ଏହି ଦହମାନଙ୍କର ପଦ୍ମପତ୍ର, ପଦ୍ମପୁଷ୍ପ ଏବଂ ଶିଙ୍ଗଡ଼ା ପ୍ରଭୃତି କଟକକୁ ଯଥେଷ୍ଟ ପରିମାଣରେ ଆମଦାନୀ ହୁଏ।

ତାରାଟିଏ ଫୁଟି ଗୋଧୂଳି କୁନ୍ତଳେ
ଦେଖୁଅଛି ମୁଖ କାଠଯୋଡ଼ି ଜଳେ।
ପର୍ବତକନ୍ଦରୁ ବାହାରି ଅନ୍ଧାର
କ୍ରମେ ସବୁ କରୁଅଛି ଏକାକାର।
ଚଉଦିଗେ ଘୋଟି ତିମିର କାଳିମା
ଲିଭିଗଲା ଜଳ ସ୍ଥଳ ବ୍ୟୋମସୀମା।
ମାତ୍ର ବିଡ଼ାନାସି ଗଡ଼େ ତିମିରର
ପ୍ରବେଶର ଆଜି ନାହିଁ ଅବସର।
ଯହିଁ ଦେଖ ତହିଁ ଚନ୍ଦ୍ରୋଦୟା ଜଳେ,
ଯହିଁ ଶୁଣ ତହିଁ ସଙ୍ଗୀତ ଉଥଳେ।
ଉଲ୍ଲାସେ ଗଡ଼ନ୍ତି ଗଡ଼ବାସିଜନେ
ନାନ ମନୋରାଜ୍ୟ ଜାଗ୍ରତ ସ୍ୱପନେ-
"ବିଡ଼ାନାସି ଛାଡ଼ି ଆଜ ନିଶାଶେଷେ
ବାହୁଡ଼ିବ ଶତ୍ରୁ ସଦଳେ ସ୍ୱଦେଶେ।
ରିପୁରାହୁମୁକ୍ତ ହେବେ ନୃପଶଶୀ,
ଉତ୍କଳକୈରବ ହସିବ ବିକଶି।"
ଦେବାଳୟେ, ପଥେ, ଘାଟେ, ଘରେ, ଦ୍ୱାରେ
ଏହି ଗୀତ ଆଶା ଗାଏ ସବୁଠାରେ।
ଉତ୍କଣ୍ଠା ହୃଦୟ କଲେ ଅଧିକାର,
ଆଶା ଧରେ ଇଷ୍ଟସିଦ୍ଧିର ଆକାର।
ଗହନେ ଗମନ କାଳେ ଚୋରବୀର
କହିଯାଇଥିଲେ ଶିବିରେ ଯେ ଗିର।
ସେହି କଥା ଆଣି ରାତ୍ରେ ଗୂଢ଼ଚାର
କରିଥିଲା ଜନସମାଜେ ପ୍ରଚାର।
ସେହି ଆଶାସ୍ରୋତେ ମନୋରଥତରୀ
ଛାଡ଼ିଦେଇଛନ୍ତି ନାଗର ନାଗରୀ।
ଚାଲିଛି ତରଣୀ ଉଲ୍ଲାସପବନେ,
ବିପଦଭଉଁରୀ ଭୀତି ନାହିଁ ମନେ।
ଦୁର୍ଗମଧ୍ୟେ ଆଜ ଆନନ୍ଦଚହଳ,
ଚଣ୍ଡିକା ଦେଉଳେ ଲାଗିଛି ଗହଳ।
ପଟହ, କାହାଳୀ, ତୁରୀ, ଭେରୀରବେ
କମ୍ପୁଛି ଚଣ୍ଡିକା-ଗୃହ ମହୋତ୍ସବେ।
ସପଲ୍ଲବପୁଷ୍ପେ ଶୋଭିତ ତୋରଣ,
ଧୂପ-ହୋମ-ଗନ୍ଧ ବହେ ସମୀରଣ।
ଧାଡ଼ି ଧାଡ଼ି ହୋଇ ଜଳେ ଦୀପାବଳୀ,
ମନ୍ତ୍ର ଉଚ୍ଚାରନ୍ତି ପୁରୋଧାମଣ୍ଡଳୀ।
ସ୍ଥାନେ ସ୍ଥାନେ କୁଞ୍ଜ ହୋଇଛି ରଚନା,
ସରଣୀରେ ଶୋହେ ପଲ୍ଲବତୋରଣା।
ଉଡ଼େ ନାନାବର୍ଣ୍ଣେ ତରୁଚୂଡ଼େ ଧ୍ୱଜ,
ତରୁପର୍ଣ୍ଣେ ଦୀପ ନିନ୍ଦେ ତାରାବ୍ରଜ।
ଉନ୍ମତ୍ତ ଆନନ୍ଦେ ଯେତେ ଦୁର୍ଗବାସୀ
ଗୁଣ୍ଡ କଲେ ଆଣି ଭୋଗ ରାଶି ରାଶି।
କୁସୁମଚାଙ୍ଗଡ଼ା ପଦ୍ମହସ୍ତେ ଧରି
ଠାବେ ଠାବେ ଠୁଳ ପ୍ରାଙ୍ଗଣେ ନାଗରୀ।
ଉଭା ହୋଇ ଭକ୍ତି-ଭାବେ ନରବର
ଦେବୀଙ୍କ ଛାମୁରେ ଢାଳନ୍ତି ଚାମର।
ଅର୍ଘ୍ୟଥାଳୀ ହସ୍ତେ ମହିଷୀ ସକଳ
ଉପନୀତ, ସଙ୍ଗେ ସହଚରୀଦଳ।
ସର୍ବେ ହୋଇଛନ୍ତି ଏ ଉତ୍ସବେ ଭାଗୀ,
ମାତ୍ର ହେମା ମୁଖ ମଳିନ କି ଲାଗି?
ସନ୍ତତି ମଧ୍ୟରେ ଏକମାତ୍ର କନ୍ୟା,
ରୂପେ ଗୁଣେ ଲୋକେ ହୋଇଅଛି ଧନ୍ୟା।
ଶତ ମହିଷୀର ଉତ୍ସଙ୍ଗେ ଲାଳିତା,
ଶଶିକଳା ପ୍ରାୟେ ବଢ଼ିଲା ଲଳିତା।
ଭ୍ରମିଲା ସୋହାଗେ ଶୈଶବେ ନବୀନା
କୋଳୁଁ କୋଳେ ଯେହ୍ନେ କଳନାଦୀ ବୀଣା।
କ୍ରମେ ଦେହେ ହେଲା ଯୌବନ ପ୍ରକାଶ,
ବସନ୍ତେ ଆସଇ ଯଥା ମଧୁମାସ।
କିମ୍ବା ମଧୁମାସେ ନବକିଶଳୟ,
କିଶଳୟେ ଅବା କୁସୁମନିଚୟ।
ଶୁଦ୍ଧାନ୍ତ ଉଦ୍ୟାନେ ଏବହିଁ ମୁକୁଳ
ନନ୍ଦିକା, ଏବେ ସେ ପ୍ରସ୍ଫୁଟିତ ଫୁଲ।
କେଉଁ କୀଟ ଆହା ପଶିଲା ଏ ଫୁଲେ
କି ଭାବନା ବାଳା ଭାବୁଛି ବ୍ୟାକୁଳେ?
ଉଦାସୀନ ବାଣୀ, ଅଟଳ ଚାହାଣି
ହୃତ ହୃଦୟର କହଇ କାହାଣୀ।
ବୃଥା ସେ କୃତ୍ରିମ ଉଲ୍ଲାସେ ପ୍ରୟାସ,
ଫୁଟି ବାହାରୁଛି ରୁଦ୍ଧ ଦୀର୍ଘଶ୍ୱାସ।
ଭାବ ଦେଖି ଅଙ୍ଗ-ଗ୍ଲାନି ଅନୁମାନି
ସଖୀଏ ଛାଡ଼ିଲେ ଅନ୍ତଃପୁରେ ଆଣି।
ପାତ୍ର ମିତ୍ର ସଙ୍ଗେ କେଶରିପ୍ରବୀର
ବାହୁଡ଼ିଲେ ଆଦ୍ୟଯାମେ ଯାମିନୀର।
ଦିବାଶ୍ରମେ ଶ୍ରାନ୍ତ ଯେତେ ନରନାରୀ
ବାସେ ବାହୁଡ଼ିଲେ ମହୋତ୍ସବ ସାରି।
ଯାମିନୀ ହୁଅନ୍ତେ ସାର୍ଦ୍ଧ ଏକଯାମ
ଆହାରାନ୍ତେ ସର୍ବେ ଲଭିଲେ ବିଶ୍ରାମ।
କି ରାଜା, କି ପ୍ରଜା, କି ଧନୀ, ନିର୍ଦ୍ଧନ
ସ୍ୱପ୍ନରାଜ୍ୟେ ସୁଖେ କଲେ ବିଚରଣ।
କ୍ରମେ ଘରେ ଘରେ ପ୍ରଦୀପ ଲିଭିଲା,
ଗାଢ଼ ତମଃ ସର୍ବ ସ୍ଥଳ ଆବରିଲା।
ଗାଢ଼ୁଁ ଗାଢ଼ତର ହେଲାଣି ରଜନୀ,
ନିବିଡ଼ ତମସେ ଆବୃତ ଅବନୀ।

ମଗ୍ନ ବିଡ଼ାନାସି ନିବିଡ଼ ତମସେ,
ଜଡ଼ ପ୍ରାୟେ ଗଡ଼ବାସୀ ନିଦ୍ରାବଶେ।
ଲିଭିଲାଣି ଦୀପଶିଖା ଠାବେ ଠାବେ
ଜଳୁଥିଲା ଯାହା ନଦୀବକ୍ଷେ ନାବେ।
ପଥ ବେନିପାର୍ଶ୍ବେ ଘନ ବନସ୍ପତି,
କିବା ସେ ବହଳ ତମିସ୍ରସଂହତି।
ଗାଢ଼ତର ହୋଇ ଅନ୍ଧାର ବଢ଼ୁଛି,
ଥାଉ ଆନ ତହିଁ ନ ଗଳିବ ସୂଚୀ।
ମହାନଦୀପଠା-ବାସୀ ମହିଷାଳ-
ମହାନଦୀସ୍ରୋତ-ବାହୀ ପୋତପାଳ।
ଭୟହାରୀ ଶଶୀ ହେବାକୁ ଉଦିତ
ଅଛି କାଳ ଅର୍ଦ୍ଧ-ଯାମ ପରିମିତ।
ସାଇଁ ସାଇଁ ଡାକୁଅଛି ବସୁନ୍ଧରା,
ମୌନବତୀ ଯେହ୍ନେ ସମାଧିତପରା।
ତିମିର ପ୍ରଭାବ ଏହି କାଳେ ଅତି,
ସୁଖ ଆଗେ ଯଥା ଦୁଃଖ ପରିଣତି।
ମହାଶୂନ୍ୟେ ରହି ତାରକାର ମେଳା
ଭ୍ରୂଭଙ୍ଗେ ଦେଖନ୍ତି ଏ ଭବର ଖେଳା।
ମଗ୍ନ ବିଡ଼ାନାସି ତମଃସିନ୍ଧୁ ନୀରେ,
ଆଲୋକ ଝଳକେ କିପାଁ ହର୍ମ୍ୟଶିରେ?
ତମୋଭାଳେ ତାରା ପ୍ରାୟେ ନଭେ ସ୍ଫୁରେ,
ନୁହଇ କି ଦୀପ ଚେମା ହଂସପୁରେ?
ବିକସିତ ନବ ଲାବଣ୍ୟକଳିକା
ଚନ୍ଦ୍ରଶାଳା ଗୃହେ ବସିଛି ନନ୍ଦିକା।
ଏ ଗୃହେ ନିଭୃତେ ବସି କୁତୂହଳେ
ପୂର୍ବେ ଦେଖୁଥିଲା ରଣ ଗଡ଼ତଳେ।
ଚୋରବୀରଙ୍କର ଲଳିତ ମୂରତି
ଦେଖି ହେଉଥିଲା ହୃଦୟ କରତି।
ଦେଖିଲା ଯେ ଦିନ ଚୋରକୁ ରୂପସୀ,
ଗଲା ମନ ତା'ର ନିଜ ବଶୁଁ ଖସି।
ବସି ଅକ୍ଷୋଦରୀ ସଂକଳ୍ପଦୋଳାରେ
ସୁକୁମାରୀ ଘାରି ହେଉଥିଲା ମାରେ।
ଅଙ୍ଗେ ବର୍ମ, ଶିରେ ସ୍ବର୍ଣ୍ଣଶିରସ୍ତ୍ରାଣ,
ବରଭୁଜେ ଧରି ଝଳକ କୃପାଣ।
ବାଜିପୃଷ୍ଠେ ଚୋର ଯୁଝୁଥିଲେ ରଣେ,
ନିନ୍ଦୁଥିଲା ବାମା ଶିଖଣ୍ଡିବାହନେ।
ବିନ୍ଧୁଥିଲେ ଚାପ ଚକ୍ରାକାରେ ଟାଣି,
ମଣୁଥିଲା ତାଙ୍କୁ ପୁଷ୍ପଧନୁଷ୍ପାଣି।
ଯୁଝୁଥିଲେ ବୀର ଅରାତି ଗହଳେ,
ପୋଛୁଥାଇ ବାଳା ଅଶ୍ରୁ ଚେଳାଞ୍ଚଳେ।
ତ୍ରାସେ ହେଉଥାଇ ଚିତ୍ତବୃତ୍ତି ଲୋଳ,
ଭଜୁଥାଇ ପାଣ୍ଡୁ-ଭାବକୁ କପୋଳ।
ଆରତେ କରତି ହେଉଥାଇ ମନ,
ଭାବୁଥାଇ ବାଳା ସ୍ବଗତେ ଏସନ—
"ଆହା କି ଲଳିତ ଲାବଣ୍ୟପ୍ରତିମା!
ଜଗତେ ସୁଷମା-ଉପମାର ସୀମା।
ଏ ନିଧିକି ବିଧି, ଆହା, କି ବିଚାରେ
ଯୋଚିଲେ ଦାରୁଣ ରଣ ବ୍ୟବସାରେ?
ପୁଷ୍ପଉପବନ-ଯୋଗ୍ୟ ଯୁବାଜନେ
ପକାଇଲେ ନେଇ ଅସିଲତାବନେ।
କୁସୁମପରାଗ-ଯୋଗ୍ୟ କଳେବର
ହୋଇଅଛି, ଆହା, ଧୂଳିରେ ଧୂସର!
ଶ୍ରମବାରି ଝରି ଝଳୁଛି ବଦନ,
କଳଧୌତେ ମୋତି ଜଡ଼ିତ ଯେସନ।
ଦୁଃସାହସ ଦେଖି ମନେ ତ୍ରାସ ମାଡ଼େ,
ସଦା ଯୁଝେ ବୀର ବିପଦର ଦାଢ଼େ।
କିଏ ଦେଖିଅଛି ଫେଡ଼ି ଭବିତବ୍ୟ,
ହେବେ କାଳେ ଶତ୍ରୁ ଶରର ଶରବ୍ୟ!
କେ କହିବ, ଆହା, ବିଧାତା କିପାଇଁ
ମୃଣାଳକୁ ଦେଲେ କଣ୍ଟକେ ଜଡ଼ାଇ?
କି ଲାଗି ଚନ୍ଦନ ପନ୍ନଗ-ନିବାସ,
ବୁଝିବାର ସିନା ବିଫଳ ପ୍ରୟାସ!
ଦୈତ୍ୟ-ଅସ୍ତ୍ରାଘାତ ସହିବାକୁ ରଣେ
ସୃଜିଲେ ଯେ ବିଧି ଶିଖଣ୍ଡିବାହନେ।
ସେହି ତ ସୃଜିଲେ ଏ ରୂପନିଧାନ,
ବିଧି ସେ ବୁଝନ୍ତି ତାଙ୍କରି ବିଧାନ।
ଶୁଣିଛି ଚୋରର ଜନନୀ ଜାହ୍ନବୀ, (୧)
ହୃଦ କି ତାଙ୍କର ବଳିଗଲା ପବି?
କୁମରକୁ ପେଷି ଏ ଘୋର ସମରେ
ଧୈର୍ଯ୍ୟ ଧରି ରହିଛନ୍ତି ଦେଶାନ୍ତରେ।
ଦେବବ୍ରତକୁ ଯେ ଦେବୀ ପୂର୍ବଯୁଗେ
ରଣେ ଶୁଆଇଲେ ସୁତୀକ୍ଷ୍ଣ ଆଶୁଗେ। (୨)
ସେହି ଦେବୀଙ୍କର ଯେଣୁ ଏ କୁମାର,
ଏ ଭାଗ୍ୟ ଭଜିବା ନୋହେ ଚମତ୍କାର!
ଦେବକୃଟ ସିନା ଦେବତାଙ୍କୁ ଜଣା,
ମନୁଷ୍ୟ ତ ତହିଁ ସବୁବେଳେ ବଣା।"

× × × ×

ଆଜ ଜଗତୀରେ ଜଗତମୋହିନୀ
କି ଭାବନା ଭାବୁଅଛି ଏକାକିନୀ ?
ମନେ ଉଠୁଅଛି ଶତ ମନୋରଥ,
ଲୋକଲଜ୍ଜା ପୁଣି ରୋଧୁଅଛି ପଥ ।
ଆର୍ତ୍ତେ ଭ୍ରମୁଅଛି ଏଣେ ତେଣେ ମନ,
ମଶାରି ଭିତରେ ମଶକ ଯେସନ ।
ଅବା ତରୁଶାଖା ପ୍ରଭଞ୍ଜନବଳେ,
ଅଥବା ତରଙ୍ଗ ମହୋଦଧିଜଳେ ।
ଭାବଊର୍ମି କୋଳେ ଦୋଳୁଅଛି ବାଳା,
ଅରାତିଶିବିରେ ଆଲୋକର ମାଳା,
ଦେଖିଣ ହୃଦୟ ହେଉଛି ଉଚ୍ଛନ୍ନ,
ଗଣ୍ଡେ କର ଥୋଇ ଭାଳଇ ଏସନ–
"ଆଜ ନିଶାଶେଷେ ଉଇଁଲେ ତପନ,
ମୋ ପ୍ରାଣତପନ ହେବେ ଅଦର୍ଶନ ।
ଅଶ୍ରୁହୀନ ହେବ ପଦ୍ମିନୀ ନୟନ,
ମୋର ବେନି ନେତ୍ର ଅଶ୍ରୁପ୍ରସ୍ରବଣ ।
ମୋହପକ୍ଷେ ହେଲା ଏ ରଣ ପ୍ରମାଦ,
ଭିଆଇଲା ଚିତ୍ତେ ହରଷେ ବିଷାଦ ।
କି ବୁଦ୍ଧି କରିବି ସହଜେ ଅବଳା,
ଜନ୍ମିଛି ହୃଦୟେ ଦେବାକୁ ଅର୍ଗଳା ।
ଅରି ହୋଇ ଚୋର କରେ ମନ ଚୋରୀ,
ଅଲକ୍ଷ୍ୟେ ପିଙ୍ଗଇ ଦୂରୁଁ ପ୍ରେମଡୋରି ।
ଦୂରୁଁ ଆସି ଏହି ଶୂରଚୂଡ଼ାମଣି
ହଠେ ଲୁଟି କଲା ହୃଦୟବିପଣି ।
ନ ପଶୁଣୁ ଦୁର୍ଗେ ପଶିଲା ଅନ୍ତରେ,
ଛାୟା ଯଥା ସ୍ୱଚ୍ଛ ଦର୍ପଣ ଭିତରେ ।
ଚୋର ହାତେ ଦେଲି ପ୍ରଣୟପସରା,
ନଧରି ପଡ଼ିଲି ଚୋରହାତେ ଧରା ।
ନାରୀମନଚୋର ଚୋର ମହାବୀର,
ଚୋର ନାମ ତେଣୁ ବହିଛି ମହୀର ।
ଗଲା ହୃଦୟ ନ ଆସିବ ବାହୁଡ଼ି,
ପକ୍ଷ ଥିଲେ ଦେହ ଯାଇଥାନ୍ତା ଉଡ଼ି ।
କରମକୁ ମୋର ପିତା ହେଲେ ବାମ,
ପୂର୍ଣ୍ଣ ହେଲା ଏବେ ତାଙ୍କ ମନସ୍କାମ ।
ମୋର ହେତୁ ରାଜ୍ୟ ହେତୁ ଯତ୍ନ କରି
ମନ୍ତ୍ରୀ ବାସୁଦେବ ହେଲେ ଦେଶାନ୍ତରୀ ।
ସ୍ୱପନେ ଚଣ୍ଡିକା ଦେଲେ ମଥାମଣି,
ମୋ ଭାଗ୍ୟେ ହେଲା ସେ ଦାରୁଣ ଅଶନି ।
ବାସୁଦେବ କଥା ରଖିଥିଲେ ତାତ
ହୋଇଥାଆନ୍ତା କି ଏତେ ରକ୍ତପାତ ?
ଆହା କେତେ ବୀର ହେଲେ ଧରାଶାୟୀ !
କେତେ ପରିବାର ଭିକ୍ଷାବ୍ୟବସାୟୀ ।
ଯେତେ ରକ୍ତ, ତା'ର ଅଶ୍ରୁ ଚାରିଗୁଣ
କଲା କଟକର ବକ୍ଷକୁ ଅରୁଣ ।
ହୋଇଛନ୍ତି ରାୟେ ବିଶେଷେ ସ୍ଥବିର,
ପୁଣି ସୁହୃଦଙ୍କ ବାକ୍ୟରେ ବଧିର ।
ବାସୁଦେବଙ୍କର ମନ୍ତ୍ରଣା ଗ୍ରହଣ
କରି କରିଥିଲେ ମୋତେ ସମର୍ପଣ,
ପୁତ୍ରାଭାବେ ପୁତ୍ର ହୋଇଥାନ୍ତେ ଚୋର,
ନ ହୁଅନ୍ତା ଏହି କଳିଗୋଳ ଘୋର ।
ତାତ ହେଲେ ସିନା ଅନର୍ଥର ହେତୁ,
ଶୁଭଗ୍ରହ କର୍ମେ ହେଲେ ଧୂମକେତୁ ।
ଯାହା ଇଚ୍ଛା ତାହା ପରଭାଗ୍ୟେ ଘଟୁ,
ନିଜ ଚିତ୍ତବୃତ୍ତି ଚିହ୍ନିବାକୁ ପଟୁ ।
ଚିହ୍ନିବାକୁ ଶିଖି ନାହିଁ ପରମନ,
ସେ କି କେବେ ପ୍ରଭୁପଣକୁ ଭାଜନ ?
ସୁତାରେ ପିତାଙ୍କ ପୂର୍ଣ୍ଣ ଅଧିକାର
ଭଣେ ଯେଉଁ ଶାସ୍ତ୍ର ତାକୁ ନମସ୍କାର ।
ବୃଥା ଭାବି ଭାବି ହେଉଛି ଉଚ୍ଛନ୍ନ,
ବୃ[illegible] କରୁଅଛି ଅଶ୍ରୁ ବିସର୍ଜନ ।
ତୁ[illegible], ତୁଚ୍ଛା ଚିନ୍ତା ଆଶ୍ରା କରି
ଦୁଃ[illegible]ତ କେବେ କେ ପାରେ ସନ୍ତରି ?
ତୁଚ୍ଛା ଚିନ୍ତା କେବେ ଫେଡ଼ିଲା କଷଣ ?
ଭାଗ୍ୟଦେବୀ କେବେ ଚିନ୍ତାରେ ପ୍ରସନ୍ନ ?
ଭାଳି ଭାଳି ହେଲି ଅସ୍ଥିଚର୍ମସାର,
ଭାଳୁଣିରେ ଦୁଃଖ ଗଲାଣି କାହାର ?
ଭାଗ୍ୟଦେବୀ ଅନୁକୂଳ ଉଦ୍ୟୋଗୀର,
ଅଳସ କଥାକୁ ସଦା ସେ ବଧିର ।
ନିଜ ପଥେ ବାଧା ବିଘ୍ନ ଅତିକ୍ରମ
କରିବାର ସିନା ପ୍ରେମର ଧରମ ।
ଏହି ପ୍ରେମ ଘେନି ଅନ୍ୟ ସୀମନ୍ତିନୀ
ହେଲେ ପାରିଥାନ୍ତା ସବୁ ବାଧା ଜିଣି ।
କୁଳ ମାନ ଦେଇ ପ୍ରେମପୀଠେ ବଳି
ପ୍ରେମପ୍ରବାହରେ ପଡ଼ିଥାନ୍ତା ଢଳି,
ପ୍ରେମେ ଢଳ ଢଳ ଏହି ମହାନଦୀ
ଶତ ଶୈଳ ଲଙ୍ଘି ଧାଉଁଛି ଜଳଧି ।
ମହାବଳୀ ପ୍ରେମ ଅଟଇ ମହୀର,
ପ୍ରେମ ସିନା କରେ ଅବଳାକୁ ବୀର ।
ପ୍ରେମ ଦିଏ ବୁଦ୍ଧି ଉ[illegible]ଯୋଗ ସାହସ,
ପ୍ରେମ କରି ପାରେ ଅବଶକୁ ବଶ ।
ଭୀରୁ ନାମ ଯେହୁ ବହନ୍ତି ସ୍ୱଭାବେ,
ବୀର ହୁଅନ୍ତି ସେ ପ୍ରେମର ପ୍ରଭାବେ ।

ସୁଭଦ୍ରାର କଥା ଜଗତେ ବିଦିତ,
ପ୍ରେମବଳେ ସିନା ଲଭିଲା ଦୟିତ।
ଯାର ମନେ ମଣି ରାଜସିଂହାସନ
ବିନିମୟ କଲା ବୀର ସଙ୍ଗେ ମନ।
ଅୟୁତ ଯାଦବ-ଯୋଧ ପଛେ ଧାଇଁ
ନ ପାରିଲେ ବାଳା ମନକୁ ଫେରାଇ।
ସେହି ପ୍ରେମ ବନ୍ଦି ମୁହିଁ ହେଲି ଜଡ଼,
ତୁଟି ନ ପାରିଲି ଲଜ୍ଜାର ନିଗଡ଼।
ପ୍ରେମେ ବଶ ହୋଇ କେତେ ରସବତୀ
ଅକାତରେ ଜଳେ ଅନଳେ ପଶନ୍ତି।
ପଶିଲେ ହୁଅନ୍ତେ ଯେବେ ଚୋର ବର,
ଜଳ ଅନଳକୁ ନ ଥିଲା ମୋ ଡର।
ଜଳେ କି ଅନଳେ କିବା ପ୍ରୟୋଜନ
ଏକା ଲୋଡ଼ା ସେହି ଦେବୀଦତ୍ତ ଧନ।
ହସ୍ତଗତ ହେଲେ ସେହି ରତ୍ନବର,
ପ୍ରାଣେଶ୍ୱର ହେବେ ଉତ୍କଳଈଶ୍ୱର।
ପ୍ରେମବଳେ ତାଙ୍କୁ କରି ଛତ୍ରପତି
ପ୍ରେମିକାକୂଳେ ମୁଁ ଟେକାଇବି ଛତି।''
ଏହା କହି ପାଦୁଁ କଳନାଦୀ ଭୂଷା
ଉତାରିଲା ଖେଳା-ଖଞ୍ଜରୀଟଦୃଶା।
ଅତି ମୃଦୁପଦେ ରାଜସଦ୍ମେ ଯାଇ
ନେଲା ମଣି ନୃପ-ମସ୍ତକୁ ଚୋରାଇ।
ଥିଲେ ନରନାଥ ଗାଢ଼ ନିଦ୍ରାବଶ,
ଥିଲେ ହେଁ ଜାଗ୍ରତ ଏ ପାପ ସାହସ,
ଅସମ୍ଭବ ମଣି ଥାଆନ୍ତେ ଏକାନ୍ତ,
ନିଜ ଚକ୍ଷୁ ସାକ୍ଷ ମଣିଥାନ୍ତେ ଭ୍ରାନ୍ତ।
ଦକ୍ଷିଣକୁ ଥିଲା ସୁଡ଼ଙ୍ଗ ଦୁଆର,
ଯୁଦ୍ଧଦିନୁ ରୁଦ୍ଧ ଯାର ବ୍ୟବହାର।
ଯେବଣ ଦୁଆରେ ପୂର୍ବେ ରାଣୀମାନେ
ଅନ୍ତଃପୁରୁଁ ଯାଉଥିଲେ ନଦୀସ୍ନାନେ।
ଯେଉଁ ଦ୍ୱାର କଞ୍ଚି ନନ୍ଦିକାସୁନ୍ଦରୀ
ନ୍ୟାସ ପ୍ରାୟେ ରଖିଥିଲା ଯତ୍ନ କରି।
ସେହି କଞ୍ଚି, ସେହି ରତନ ସହିତେ
ସୁଡ଼ଙ୍ଗକୁ ବାଳା ଗଲା ଅଲକ୍ଷିତେ।
ନିଃଶବ୍ଦେ ଫେଡ଼ି ସୁଡ଼ଙ୍ଗ ଦୁଆର
ହେଲା ବିଡ଼ାନାସି ଗଡ଼ରୁ ବାହାର।
ଚଳିଲା ବିହ୍ୱଳ ହୋଇ ଆଶାସୁଖେ
ପର୍ବଶର୍ବରୀଶ-ମୁଖୀ ପୂର୍ବମୁଖେ।

କୁସୁମ ପରଶ ଯେ ନ ପାରେ ସହି,
ଆଜି ସେ ଭ୍ରମଇ କଣ୍ଟକିତ ମହୀ।
ନିଜ ଛାୟା ଦେଖି କମ୍ପଇ ସାଧ୍ୱସେ,
ଆଜ ସେ ଧାଉଁଛି ନିବିଡ଼ ତମସେ।
ନିର୍ଭୟେ ନିଭୃତେ ଚାଲଇ ସୁତନୁ,
ଚାପେ ଶର ଖଞ୍ଜି ସଙ୍ଗେ ଫୁଲଧନୁ।
କାଠଯୋଡ଼ି ତୀରେ ପୂର୍ବ ପୁରୁଷର (୧)
କୀର୍ତ୍ତିରାଜଶିରେ ନିବେଶି ପୟର।
ଚାଲିଛି ନିବିଡ଼ ତିମିରେ ନନ୍ଦିକା,
ସିନ୍ଧୁନୀରେ କିବା ବାଡ଼ବାଗ୍ନିଶିଖା।
ପ୍ରାଚୀନଭେ ଏବେ ରାଜହଂସବନ (୨)
ଭେଦି ଉଛୁଳଇ ପ୍ରଭାପ୍ରସ୍ରବଣ।
ରସାତଳୁ କିବା ଭେଦିଣ ଅବନୀ
ଊର୍ଦ୍ଧ୍ୱେ ଉଠେ ଫଣିପତି ଫଣାମଣି।
ଦୂରେ ସହକାର-କୁଞ୍ଜରନ୍ଧ୍ରଜାଲେ
ଚନ୍ଦ୍ରମାମୂରତି ଶୋଭେ ପ୍ରାଚୀଭାଲେ।
ଅନ୍ଧକାରେ ଇନ୍ଦୁ-କିରଣ ପଡ଼ିଲା,
ଅତଣ୍ଡି (୩) କି ଶ୍ୟାମ ତମାଳେ ଜଡ଼ିଲା।
ଧବଳ କୁସୁମେ ଭୂଷିଲା କବରୀ
ଭାବେ ଅବା ଶୋଭାମୟୀ ବିଭାବରୀ।
ତେଜିଲା ତିମିର ନିଜ ରାଜ୍ୟପାଟ
ନବୋଦିତ ଦେଖି ଶର୍ବରୀସମ୍ରାଟ।
ପାପୀ ହୃଦେ ପୁଣି ପର୍ବତ କନ୍ଦରେ
ଆଶ୍ରୟ ଭଜିଲା ଯାଇଁ ତରତରେ।
ଧୂର୍ଜ୍ଜଟୀଜଟାରୁ ଯେସନ୍ତେ ଗଙ୍ଗାଜଳ
ଜ୍ୟୋତ୍ସ୍ନାପୂର ପୂରୁଅଛି ଧରାତଳ।
ବିଭାସଇ ଜ୍ୟୋତ୍ସ୍ନାହାସିନୀ ଯାମିନୀ,
ଶ୍ୱେତଦ୍ୱୀପ ପ୍ରାୟେ ଦିଶଇ ମେଦିନୀ।
ଝଳେ କାଠଯୋଡ଼ି ନୀଳ ଜଳରାଶି,
କୌତୁକେ ଚନ୍ଦ୍ରିକା ତହିଁ ବୁଲେ ଭାସି।
କଉସ୍ତୁଭ ସମ କରେ ଝକମକ
ପ୍ରତିବୀଚିବକ୍ଷେ ଚନ୍ଦ୍ରମା-ପଦକ।
ଜ୍ୟୋତ୍ସ୍ନାବୋଳା ହୋଇ ଝଳୁଛି ସୈକତ,
ଚିତ୍ର ପ୍ରାୟେ ଦୂରେ ଦିଶୁଛି ପର୍ବତ।
ତରୁଶିରେ ବସି ଚକୋର ଚକୋରୀ (୪)
ନଭେ ଢାଳୁଛନ୍ତି ସଂଗୀତଲହରୀ।
ଜ୍ୟୋତ୍ସ୍ନାମୃତ ସଙ୍ଗେ ପ୍ରେମାମୃତ ପାନ
କରି କ୍ଷଣେ କ୍ଷଣେ ଧରୁଛନ୍ତି ତାନ।

(୧) କାଠଯୋଡ଼ିର ପଥରବନ୍ଧ ମରକତକେଶରୀଙ୍କର ସର୍ବପ୍ରଧାନ କୀର୍ତ୍ତି। (୨) ରାଜହଂସ ବନ କଟକର ପର୍ବବର୍ତ୍ତୀ। ପୂର୍ବକାଳରେ ଏ ଗୋଟିଏ ବୃହତ୍ ବନ ଥିଲା। (୩) ଅତଣ୍ଡି– ଶୁଭ୍ରପତ୍ରବିଶିଷ୍ଟ ବନଲତାବିଶେଷ। (୪) ଚକୋର– ପାପିଆ ପକ୍ଷୀର ସଂସ୍କୃତ ନାମ ଚକୋର।

ଦିଗ୍‌ଦିଗନ୍ତରେ ହୋଇ ଝଙ୍କାରିତ
ଚନ୍ଦ୍ରାଲୋକେ ମିଶି ଯାଉଛି ସେ ଗୀତ।
ଶିବିର ସମ୍ମୁଖେ ଚୋର ସେନାପତି
ରଣବେଶେ ବସି ଚିନ୍ତାକୁଳମତି।
ଗଙ୍ଗାଙ୍କ ବଚନ ଗୁଣି ମନେ ମନେ
ଉପୁଜଇ ନାନା ଭାବ କ୍ଷଣେ କ୍ଷଣେ।
ସ୍ତବ୍‌ଧ ବିଭାବରୀ, ନୀରବ ସଂସାର,
ଗାଢ଼ ନିଦ୍ରାବଶେ ସ୍ତବ୍‌ଧ ସ୍କନ୍ଧାବାର।
ଦିଗଦିଗନ୍ତରେ ଶୁଭେ ଝିଲ୍ଲିସ୍ୱନ,
କିବା ସେ ଯାମିନୀ ନୂପୁରନିକ୍ୱଣ।
କ୍ଷଣେ କ୍ଷଣେ କ୍ଷୁବ୍‌ଧ କରୁଅଛି ଜଳ
ଶାନ୍ତ ସ୍ରୋତେ ଚଳ ରୋହିତ ଚହଳ।
ଦେଖୁଛନ୍ତି ବୀର ଅନାଇ ନିଶ୍ଚଳେ
ଶଶିକରକ୍ରୀଡ଼ା କାଠଯୋଡ଼ି ଜଳେ।
କରବାଳ ମୁନେ କେବେ ଶୂନ୍ୟମନେ
ରେଖୁଛନ୍ତି ରେଖା ବସି ଧରାସନେ।
ବହୁବେଳଯାଏ ଶତ୍ରୁପଥ ଚାହିଁ
ଭାଳନ୍ତି ଚରମ ଯାମେ ସେନାସାଇଁ,
"ଉଷା ବନ୍ଦାପନା-ଆଶେ ଧୀରେ ଧୀରେ
ସପ୍ତର୍ଷି ଗଲେ କି ମାନସର ତୀରେ?
ବିଳମ୍ବ ତ ନାହିଁ ପାହିବାକୁ ରାତି,
ଏବେ ସୁଦ୍ଧା ଦେଖା ନ ଦେଲା ଅରାତି।
ମାତାଙ୍କର ମାୟା ଦେବେ ଅଗୋଚର,
ଭୀମ ଭାଗ୍ୟଚକ୍ର ଯାର ବଚସ୍କର।
ସହସ୍ର ଘଟନା କ୍ଷଣେ ଉପସ୍ଥିତ
କରି ପାରେ ଦେବ-ଶକ୍ତି ଅପ୍ରମିତ।
ଦେବତା ଭିଆଣେ ଶୁଭାଶୁଭ ଘଟେ,
କେ ଜାଣେ କି ଅଛି ମୋହ ଭାଗ୍ୟପଟେ?
ରାଜ୍ୟ ହେତୁ ରାଜ୍ୟେ ନାହିଁ ମୋ ଲାଳସା,
ଧର୍ମ ସ୍ଥାପିବାକୁ ଏକାନ୍ତ ଭରସା।
ଧର୍ମର ସହାୟ ବ୍ରହ୍ମାଣ୍ଡର ସାଇଁ,
ଚକ୍ରାୟୁଧ ଚକ୍ରେ ରଖିବେ ଘୋଡ଼ାଇ।
ନୀଳାଚଳପଦେ ଲୋଟେ ଅମ୍ବୁରାଶି,
ଦଣ୍ଡକେ ବ୍ରହ୍ମାଣ୍ଡ ଯେ ପାରଇ ଗ୍ରାସି।
ପାରେ ନାହିଁ ଯେଉଁ ପ୍ରଭୁଙ୍କ ଆଜ୍ଞାରେ
ବେଳାଭୂମି ସୀମା ଲଂଘିବାକୁ ଗାରେ।
କୃପା କରି ସେହି କୃପା-ଅକୁପାର
ଦୂରୁଁ ମୋ ଦରିତ କରିବେ ସଂହାର।"
ଭାବୁଛନ୍ତି ଚମୂପତି ଏହି ମତେ,
ଆବିର୍ଭୂତ ହେଲା ସହସା ଅଗ୍ରତେ,
ସୁଷମାରେ ନିନ୍ଦି ଶାରଦୀୟା ଉଷା
ରାଜହେମା, ସର୍ବବାମାଶିରୋଭୂଷା।
ଅତ୍ୟଳ୍ପ ଭୂଷଣେ ଶୋଭେ ମରକାଶୀ,
ଅଳ୍ପ ତାରା ସିନା ଲୋଡ଼େ ପୂର୍ଣ୍ଣମାସୀ।
ସରଳ ଶରୀର ସାଳଲତା ଭଳି,
ସର୍ବାଙ୍ଗେ ଝଳୁଛି ଯୌବନର ଝଳି।
ଜ୍ୟୋତ୍ସ୍ନା ଉପାଦାନେ ଅମରବିନ୍ଧାଣୀ
ସୁକୁମାର ଅଙ୍ଗ ଥିଲେ କି ନିର୍ମାଣି?
ଶରଦିନ୍ଦୁଜିଣା ବଦନମଣ୍ଡଳ
ଲାବଣ୍ୟ-ସରେ କି ସୁବର୍ଣ୍ଣ-କମଳ?
ଶୋଭେ ଗ୍ରୀବା ସ୍ତୋକ ବଙ୍କିମ ଠାଣିରେ,
ଶତଦଳ ଡଳି ପଡ଼ିଛି କି ନୀରେ?
ବିଳାସର ଖଣି ସେ ବଙ୍କିମ ଠାଣି,
ମିଶିଛି ତା ସଙ୍ଗେ ତରଙ୍ଗଚାହାଣି।
ଚାରୁ ଭ୍ରୂଲତା ତା ସଙ୍ଗେ ଖେଳଇ,
ମାର-ଗାରୁଡ଼ିଆ ଖେଳାଏ କି ଅହି?
ଦର୍ପକ-ଦର୍ପଣ କପୋଳଫଳକ
ସୁଧାକରକରେ କରେ ଝକମକ।
ସ୍ରବୁଅଛି ଶ୍ରମବାରି ବଦନରୁ,
ଦ୍ର [illegible]ଧାରା ଯେହ୍ନେ ସୁଧାକିରଣରୁ।
[illegible] [illegible]ତିମୂଳେ ହୀରାକର୍ଣ୍ଣଫୁଲ,
ଗୁରୁ [illegible] କିମ୍ବା ଶଶୀ ସଙ୍ଗେ ଠୁଳ?
କମଳକଳିକା ପରାୟେ ଲଳିତ
ଉରସିଜେ ଚାରୁ ଉର ବନ୍ଧୁରିତ।
କରଯୁଗେ ଚାରୁ ମରକତ ଚୁଡ଼ି,
ଚମ୍ପାଙ୍କାନେ ଅଳି ଜଡ଼ିଛି କି ଯୁଡ଼ି?
ସାକ୍ଷାତ ଅନଙ୍ଗ ପ୍ରାୟେ ସୂକ୍ଷ୍ମ କଟୀ,
ଛକି ଅନଙ୍ଗ କି ନାଚଇ ଧୂର୍ଜଟୀ?
ରଦ୍ଧଛଳେ, ଆହା, ରସିକର ଚିତ୍ତ
ନିତମ୍ବେ ରସନାଗୁଣେ କି ଗ୍ରଥିତ?
ଦମ୍ଭହରା ଚାରୁ ରମ୍ଭା-ଉରୁମାନ
ଉନ୍ମଦ ମଦନ-ଦ୍ୱିରଦ ଆଲାନ।
ଲଳିତାଙ୍ଗୀ ପାଦେ ଅଳତାମଣ୍ଡନ
ବାଳାତପ ସ୍ଥଳ-କମଳେ ଯେସନ।
ହେମରେଖା ପୃଷ୍ଠେ ନିକଷ ସଂକାଶ
ଚରମେ ଦୋଳଇ ନୀଳ କେଶପାଶ।
ପିଇବାକୁ ଶଶୀ ଦେହୁଁ ସୁଧାରାଶି
ପଛେ ଧାଇଁ ରାହୁ ଧରିଛି କି ଆସି?
ଦେଖିଲେ ମନକୁ ଆ[illegible] ଏସନ–
ବେଦାଭ୍ୟାସଜଡ଼ ବିରଞ୍ଚି ସର୍ଜନ
ନୁହଇ ମୋହିନୀ, କାନ୍ତିଦାତା ଶଶୀ
ଏକାନ୍ତେ ଏ ରୂପ ବିରଚିଲେ ବସି।

ଅବା ଶୋଭାପକ୍ଷପାତୀ ପୁଷ୍ପଶର,
ଅଥବା ଗଢ଼ିଲେ ଋତୁ ପୁଷ୍ପାକର।
ଚହଟି ଆସୁଛି ଦେହୁଁ ସଉରଭ,
ଶରତ ନିଶିରେ ସୁଗନ୍ଧ-ବିଭବ।
ଗଙ୍ଗଶିଉଳୀର ଅଙ୍ଗୁଁ ଚୋରି କରି
ବହେ ଯଥା ଧୀର ସମୀରଲହରୀ।
ଚାହିଁ ସେନାପତି ବିସ୍ମୟେ ଆପ୍ଲୁତ,
କ୍ଷଣେକ ରହିଲେ ହୋଇ ସ୍ତମ୍ଭୀଭୂତ।
ଅରି ପରିବର୍ତ୍ତେ ଉଭା ଦିବ୍ୟନାରୀ,
ଯୁବାମନୋରାଜ୍ୟ ଜିଣି ମନୋହାରୀ।
ପୂର୍ବସୁକୃତ କି ଏହି ଶୋଭାରାଶି
ନାରୀରୂପେ ଅଗ୍ରେ ଉଭା ହେଲା ଆସି?
ଶୁଭ୍ର ଜ୍ୟୋସ୍ନାପୂରେ ଶୋଭେ ବିନୋଦିନୀ,
କ୍ଷୀରୋଦେ ଯେସନ କ୍ଷୀରୋଦନନ୍ଦିନୀ।
ଦେବୀ କି ମାନବୀ ହେଲା ଏ ସଂଶୟ,
ଛାୟାରୁ ଜାଣିଲେ ମାନବୀ ନିଶ୍ଚୟ।
ଏକେ ନବଯୁବା, ଦୁଜେ ସେ କୁମାର,
ସମ୍ମୁଖେ କିଶୋରୀ ବିଶ୍ୱଶୋଭାସାର।
ନିର୍ଜନେ ଦେନିଙ୍କ ଭେଟ ହେଲା ପୁଣି,
କାହିଁଛି କୁସୁମ-ଶର ହୋଇ ତୁନି?
ଚୋର ପାଶେ ଆଣି କନକଗୋରୀକି
ସ୍ୱକାର୍ଯ୍ୟ ମନୋଜ ଗଲା ପାସୋରି କି?
ନାହିଁ, ଦେଖ ଚାହିଁ, ଛକି ସେ ଗୋପନେ
ବାଳା ନେତ୍ରେ ବାଣ ଶାଣେ ନେତ୍ରାଞ୍ଜନେ।
ମାତ୍ର ଚୋର ପାଶେ ପ୍ରୟାସ ବିଫଳ,
ଅନିଳେ କଦାପି ଟଳେ କି ଅଚଳ?
ତୁଚ୍ଛ ସୁଖଲାଗି ଚିର ଲକ୍ଷ୍ୟଚ୍ୟୁତ
ହେବେ କି ସହଜେ ଶୂର ଗଙ୍ଗାସୁତ?
ସୌମ୍ୟମୂର୍ତ୍ତି ଦେଖି ସେନାପତିଙ୍କର
ପ୍ରଗଲ୍‌ଭେ ନ ଦେଇ ପ୍ରଶ୍ନ ଅବସର,
ଅଦ୍ଭୁତ ସାହସେ କହଇ ନନ୍ଦିକା—
"ପ୍ରେମେ ଶ୍ରୀପୟରେ ହେଲି ମୁହିଁ ବିକା।
ନନ୍ଦିକା ଉତ୍କଳ-ନରେନ୍ଦ୍ରନନ୍ଦିନୀ
ତୁମ୍ଭ ପଦେ ଆଜ ପ୍ରେମଭିଖାରିଣୀ।
ବୀରପକ୍ଷପାତୀ ସଦା ନାରୀକୂଳ,
ନାରୀପ୍ରେମ ସଦା ବୀର୍ଯ୍ୟ ଅନୁକୂଳ।
ଏହି ଚୈତ୍ରମଣି ଅର୍ପୁଛି ଶ୍ରୀକରେ,
ବିରାଜୁଥିଲା ଯା ରାଜମସ୍ତକରେ।
ମଣି ନୁହଇ ଏ, ପିତାଙ୍କ ଜୀବନ,
ତୁମ୍ଭେ ଯେଣୁ ବିଶ୍ୱ-ବିଶ୍ୱାସଭାଜନ,
ନିଃଶଙ୍କେ ସମର୍ପି ଦେଲି ମୁଁ ସକଳ,
ପ୍ରତିଦାନେ ପ୍ରେମ ମାଗୁଛି କେବଳ।
ତୁମ୍ଭର ସନ୍ତୋଷ ସର୍ବୋପରେ ଗଣି
ପିତାଙ୍କ ଅଜ୍ଞାତେ ଆଣିଲି ଏ ମଣି।
ତୁମ୍ଭ ପଦେ ବିକି ଦେଇଛି ପରାଣ,
ଏକମାତ୍ର ତୁମ୍ଭ ପ୍ରେମ ମୋର ଧ୍ୟାନ।"
ଏହା କହି ମଣି ଚୋରଙ୍କ ଛାମୁରେ
ଥୋଇ ଉଭା ହେଲା ରମଣୀ ଅଦୂରେ।
ଅଦ୍ଭୁତ ସୌନ୍ଦର୍ଯ୍ୟ ଅଦ୍ଭୁତ ଆଶୟ
ଶୁଣି ସେନାପତି ମଣିଲେ ବିସ୍ମୟ।
ସ୍ୱପନ କି ଅବା ସ୍ୱରୂପ ଘଟନା,
ସଂଶୟ ଅନ୍ଧାରେ ପଡ଼ି ହେଲେ ବଣା।
କୋପ, ଘୃଣା, ଦୁଃଖ, ବିସ୍ମୟ ମିଳିତ
ହୋଇ ହୃଦ-ସର କଲେ ଆଲୋଡ଼ିତ।
କ୍ଷୋଭ ଅନ୍ତେ ଲଭି ବାକ୍ୟ ଅବସର
ରମଣୀକି ଚାହିଁ ବିହିଲେ ଉତ୍ତର—
"ଯାର କୀର୍ତ୍ତିରାଜି—ଅମରସାକ୍ଷିଣୀ
ନାଭିଗୟା ପଦେ ବହେ ତରଙ୍ଗିଣୀ, (୧)
ଏକାମ୍ରେ ଯାହାର ଅସଂଖ୍ୟ ଦେଉଳ
ଦିଶେ ଯଶୋରାଶି ହେଲା ପରି ଠୁଳ। (୨)
ଯାର କୀର୍ତ୍ତିମାଳା ଏହି ପୂତଜଳା
କାଠଯୋଡ଼ି ରୋଧ-ନିତମ୍ବେ ମେଖଳା। (୩)
ଯଯାତି ଲଲାଟ ମରକତ ଭୂପ
ଅଟନ୍ତି ଯେ କୁଳ-କେତନସ୍ୱରୂପ।
ସେହି କୁଳେ ଜାତ ତୁହି କି ଦୁଃଶୀଳା?
କେ କହିବ ମୋତେ, କେମନ୍ତେ ମିଶିଲା
ଦେବବାଣୀ ସଙ୍ଗେ ଆସି ଅପଭାଷା,
ପୂତ ଭାଗୀରଥୀ-ସ୍ରୋତେ କର୍ମନାଶା?
ମହୀ କି ସହିଲେ ଏ ଘୋର ପାତକ
ସର୍ବଂସହା ନାମ କଲେ କି ସାର୍ଥକ?
ପବିତ୍ର କେଶରୀ ବଂଶେ ଜାତ ହୋଇ
ଦେଶଦ୍ରୋହୀ, ରାଜଦ୍ରୋହୀ, ପିତୃଦ୍ରୋହୀ,
ତିନି ମହାପାପ ଏକ କରଣିରେ
ଅଦ୍ଭୁତ ସାଧନା ତୋର ଧରଣୀରେ।
କି ସାହସେ ତୋର ଚିତ୍ତବୃତ୍ତି ଗଲା
ଏ ଦାରୁଣ କାର୍ଯ୍ୟେ, ତୁ ପୁଣି ଅବଳା!"

(୧) ବୈତରଣୀ ତୀରସ୍ଥିତ ଯାଜପୁର ନଗର ଯଯାତିକେଶରୀଙ୍କ କର୍ତ୍ତୃକ ସଂସ୍ଥାପିତ। ଏହାର ପୌରାଣିକ ନାମ ନାଭିଗୟା। (୨) ଭୁବନେଶ୍ୱର ଦେଉଳ ଲଲାଟକେଶରୀଙ୍କର ପ୍ରଧାନତମ କୀର୍ତ୍ତି। (୩) ମରକତକେଶରୀଙ୍କର ପ୍ରଧାନ କୀର୍ତ୍ତି କାଠଯୋଡ଼ି ବନ୍ଧ।

ଉତ୍ତରଙ୍ଗଭାବ ବହ୍ନିତାପେ ବହି
ତେଜିକ୍ଷେପେ ଯେହ୍ନେ ପୟଃ ପଡ଼େ ନଇଁ,
ତୁଟିଲା ଉତ୍କଟ ହୃଦୟ-ଉଲ୍ଲାସ,
ବିବେକ ଛେଦିଲା ଲବେ ମୋହପାଶ।
ଜଳା ଯେଉଁ ନିଶା ମନକୁ ବିହ୍ୱଳ,
ପ୍ରଭଞ୍ଜନ ସମ ଯାର ଭୀମବଳ।
ଚରିତ୍ର-ତରୀକି ଦୁଷ୍କୃତ-ଶଇଳେ
ଜଟାଡ଼ିଣ ଚୂନା କଲା ତିଳେ ତିଳେ।
ତୁଟିଗଲା ଏବେ ସେ ନିଶା-ଝଟିକା,
ଦିଶିଲା ଆଲୋକେ ଶତ ବିଭୀଷିକା।
ଅନୁତାପ-ଫଣୀ ଉଗାରି ଅନଳ
ଦଂଶିଲା ସହସ୍ର ମୁଖେ ମର୍ମସ୍ଥଳ।
ସୁମତି-ପ୍ରଦୀପେ ଦେଖିଲା ଯୁବତୀ
ଆତ୍ମକୃତ ପାପ ବିକଟମୂରତି।
ମୋହ-ଆବରଣେ ଥିଲା ଯା ଆବୃତ,
ଉଲଗ୍ନେ ଦିଶିଲା ଭୀଷଣ ବିକୃତ।
ଫୁଟିଥିଲା ଯାହା ବାଲ୍ୟରୁ ବଉଳି,
ରୂପପୁଷ୍ପ ଗଲା ନିମିଷେ ମଉଳି।
ମଉଳଇ ନବ-ମାଳିକା ଯେମନ୍ତ
ମୂଳ କାଟିଦେଲେ ବଲ୍ମୀକ ଦୁରନ୍ତ।
ନତମୁଖୀ ହୋଇ ମହୀକି ନୀରବେ
ମାଗୁଥିଲା କି ସେ ଆଶ୍ରୟ ଗରଭେ ?
ସ୍ମୃତି ତ କଦାପି ନୁହେ ଫିଙ୍ଗିବାର,
ପାରିଲେ ଫିଙ୍ଗି ସେ ଲଭନ୍ତା ନିସ୍ତାର।
ଯାମମାତ୍ର ଆଗେ ଯେଉଁ ଦଶା ଥିଲା,
କି ବିକଳେ ବାଳା ସେ ଦଶା ଲୋଡ଼ିଲା !
ମାତ୍ର ଭାଜନ କି ଭବେ କେହି ପ୍ରାଣୀ
ଭାସିବାକୁ କାଳ-ପ୍ରବାହେ ଉଜାଣି ?
କାଳସ୍ରୋତେ ଭାଗ୍ୟ-ବାୟୁ ବହେ ପୁଣ,
ଛାର ନର ତହିଁ ପ୍ରପାତର ତୃଣ।
କହିବାକୁ କିଛି ଇଚ୍ଛିଲା ସୁନ୍ଦରୀ,
ବାଷ୍ପପୂର ଦେଲା କଣ୍ଠ ରୋଧ କରି।
ମନ୍ତ୍ରିକି ଡକାଇ ତୋର ବୀରମଣି,
ସୁନ୍ଦର ଶିବିକା ଅଣାଇ ସେକ୍ଷଣି।
ମଣି ସଙ୍ଗେ ସେହି ରମଣୀରତନ
ପେଷିଲେ କେଶରୀ-ରାଜନିକେତନ।
ଦୂତ, ରକ୍ଷିଦଳ ଚାଲିଲେ ସଙ୍ଗତେ,
ପ୍ରବେଶିଲେ ଯାଇଁ ତୋରଣ ଅଗ୍ରତେ।
ବାଜିଉଠିବାରୁ ରାଜଦୂତ ଭେରୀ
ପ୍ରତିଶବ୍ଦ ଦେଲା ଦୁର୍ଗର ପାଚେରି।
ଚେତି ଉଭା ହେଲେ ସୈନ୍ୟେ ଭାତି ଲଭି,
ଜଗୁଥିଲେ ଯେହୁ ତୋରଣବଡ଼ଭି।
କେଶରୀ ଛାମୁରେ ଜଣାଇଲେ ଯାଇ,
ମୁକ୍ତ କଲେ ଦ୍ୱାର ରାଜଆଜ୍ଞା ପାଇ।
ଦୂତ ସଙ୍ଗେ ଘେନି ଶିବିକା ସତ୍ୱରେ
ପ୍ରବେଶିଲେ ଯାଇ ନବର ଚତ୍ୱରେ।
ଚକିତେ ନୃମଣି ଶୁଣିଲେ ସମ୍ବାଦ,
ଚିତ୍ତେ ଉପୁଜିଲା ବିସ୍ମୟ ବିଷାଦ।
"ହେମାକୁ ସତ୍ୱରେ ଶିବିକାରୁ ଆଣ"
ସଖୀଙ୍କି ଆଦେଶ ଦେଲେ ନରରାଣ।
ଆଳୀଏ ଶିବିକା ଦ୍ୱାରଦେଶେ ଯାଇ
ଡାକିଲେ ବାଳାକି, ପ୍ରତିବାକ୍ୟ ନାହିଁ।
ତହୁଁ ଶିବିକାର ଆବରଣ ଫେଡ଼ି
ହେମାକୁ ଦେଖିଲେ ନିଦ୍ରାଗତ ଚେଡ଼ୀ।
ଚେତାଇବାପାଇଁ ଦେଲେ ଦୋହଲାଇ,
ହେମା ଦେହ ଏଡ଼େ ଶୀତଳ କିପାଁଇ ?
ପୁଣି ଦୋହଲାଇ ଡାକିଲେ ଅବଳା,
ପାଦଠାରୁ ଶିର ଯାଏ ହଲିଗଲା।
ଅଲକ୍ଷଣେ ସଖୀ କାନ୍ଦିଲେ ତରାସେ,
ବିଜେ ହେଲେ ନୃପ ନିଜେ ଯାନପାଶେ।
ଦେଖିଲେ ତନୁଜା ଦେହେ ପ୍ରାଣ ନାହିଁ,
ଅବଶେ ସ୍ତମ୍ଭିତ ହେଲେ ନରସାଇଁ।
ଉତ୍ତାନେ ଶୋଇଛି ଦୁଃଖିନୀ ନନ୍ଦିକା,
ପର୍ଯ୍ୟୁଷିତ ପଦ୍ମ ପ୍ରାୟେ ତନୁ ଫିକା।
ଥିଲା ଯେ ଶରୀର ଶୋଭାର ଉଦ୍ୟାନ,
ଏବେ ତାହା, ଆହା ! ଶୋଭାର ଶ୍ମଶାନ।
ଫୁଲେଶ୍ୱରୀ ଥିଲା ରୂପ-ଉପବନେ
ଯେଉଁ ଫୁଲ, ଶୁଷ୍କ କାଳ-ହୁତାଶନେ।
ବିଲୁଳିତ ଭାବ ବହିଛି ଲଳିତା,
ଶିଖା ଲିଭିଅଛି, ପଡ଼ିଛି ବଳିତା।
ଖେଳାଖଞ୍ଜରୀଟ ଯହିଁ ପରାଜିତ,
ଚାରୁ ନେତ୍ର ଚିର-ନିଦ୍ରାରେ ମୁଦ୍ରିତ।
ପଣନ୍ତର କୋଣେ ବନ୍ଧା ଥିଲା ମଣି,
ହେଲା ଯାହା ଏଡ଼େ ଅନର୍ଥର-ଖଣି।
ମଣି ସଙ୍ଗେ ସଖୀ ଦେଖିଲେ ଜଡ଼ିତ
ଲେଖ, କଜ୍ଜଳାକ୍ତ ଲୋତକେ ଅଙ୍କିତ।
ଫେଇ ଆଣି ଦେଲେ କେଶରୀଙ୍କ କରେ,
ପଢ଼ିଲେ ଏ କଥା ତହିଁ ନରବରେ -
"ତାତ, ଜୀବଲୀଳା ସରୁଛି ମୋହର,
ଅନ୍ତିମେ ବନ୍ଦିଲି ତୁମ୍ଭ ଶ୍ରୀପୟର।
ଶିରେ ଘେନି ଯାଉଅଛି ପାପଭାର
ତହିଁ, ଯହିଁ ଚିର-ମୁକ୍ତ କୃପାଦ୍ୱାର।

କୁଳପାଂଶୁଳାକୁ ବହୁଦିନ ବହି
ପାପଭାରୁଁ ଏବେ ମୁକ୍ତ ହେବେ ମହୀ ।
ଦୁଃସ୍ୱପ୍ନ ପରାୟେ ପାସୋରି ଅଚିରେ
ମୋ ସ୍ମୃତି ନିହିବ ମୋହ ସମାଧିରେ ।
କହିବ ମାତାଙ୍କୁ ସୁତାକୁ ନ ଶୋଚି
ସ୍ମୃତିପଟୁ ତାକୁ ପକାଇବେ ପୋଛି ।
ବରିଥିଲି ଯାଙ୍କୁ ପ୍ରାଣପତି କରି,
ବାସଲ୍ୟେ ଭାବିବ ନିଜ ପୁତ୍ର ପରି ।
ଅଭାଜନ ହେଲି ମୁହିଁ ସିନା, ପିତଃ,
ନୋହିବ ତୁମ୍ଭର ଧର୍ମ ବିଚ୍ୟୁତ ।
ବିରଳ ଯେଠାବେ ମାନବସଂଚାର,
କରାଇବ ମୋର ପିଣ୍ଡର ସତ୍କାର ।
ଦୁଃଖିନୀକି, ହା ହା, ବିଧି ହେଲେ ବାମ,
ଏ ଜୀବର ହେଲା ଏହି ପରିଣାମ ।
ଛାର ପ୍ରାଣ ଯିବା - ପଥରେ ହେଲାଣି,
ଶ୍ରୀପଦପଙ୍କଜୁଁ ହେଉଛି ମେଲାଣି ।''
ଲେଖପଢ଼ି ରାଏ ରହି ଏକଧ୍ୟାନେ
କି ଭାବିଲେ, ତାହା ତାଙ୍କ ମନ ଜାଣେ ।
ନ ହେଲା ନୟନୁ ଅଶ୍ରୁ ବିଗଳିତ,
ଏ ଯାତନା ସିନା ଅଶ୍ରୁର ଅତୀତ ।
ଚଉଦିଗେ ପଡ଼ିଗଲା ହାହାକାର,
ଭାସିଲେ ଲୋତକେ ରାଜପରିବାର ।
କାନ୍ଦିଲେ ସଖୀଏ ମହାଶୋକାତୁରେ,
କାନ୍ଦିଲେ ରାଣୀଏ ଉଚ୍ଚେ ଅନ୍ତଃପୁରେ ।
ନିଶାମୁଖେ ଯହିଁ ହାସ୍ୟର କଲ୍ଲୋଳ,
ନିଶାଶେଷେ ତହିଁ ରୋଦନର ରୋଳ ।
ରାଜ-ଆଜ୍ଞାମତେ ରାଜପରିଜନ
ବିହିଲେ ଜେମାର ଅନ୍ତିମମଣ୍ଡନ ।

ବିଜନ ପଠାକୁ ନେଇ ଜଳଯାନେ
ଅନ୍ତ୍ୟେଷ୍ଟି ସାଧିଲେ ବିହିତ ବିଧାନେ ।
ସମାଧି ରଚିଲେ ଶିଳ୍ପିକୁଳ ଆସି,
ଅବଶେଷ ଏବେ ଯାର ଶିଳାରାଶି ।
ଛାଡ଼ି ଦେଲେ ତହିଁ ପାଳିତ ଜେମାର
ମୟୂର ମୟୂରୀ ମୃଗୀ କୃଷ୍ଣସାର ।
ଚଣ୍ଡୀ ଗୃହ ତହିଁ ହେବାରୁ ଗଠିତ,
ବେନି ନାମେ ପଠା ଅଦ୍ୟାପି କଥିତ । (୧)
ସେହି ମଣି ସଙ୍ଗେ ନିଜ ସିଂହାସନ
ଚୋରଗଙ୍ଗ କରେ କରି ସମର୍ପଣ ;
ସୁବର୍ଣ୍ଣକେଶରୀ ବିଷାଦେ ଉଦାସୀ
ମହାନଦୀ ତୀରେ ହେଲେ ବନବାସୀ ।
ଅଂଶୁପା ଦହର ସନ୍ନିହିତ ବନେ,
ଖେଳୁଥିଲେ ଯହିଁ ପାରିଧି ଯୌବନେ ।
ଯହିଁ କରି ସ୍ନାନ ତଟିନୀତରଙ୍ଗେ
ମଜୟ ଖେଳଇ ପୁଷ୍ପାଙ୍ଗନା ସଙ୍ଗେ ।
ଅଦ୍ୟାପି ସେ ସ୍ଥାନ ଏ ଘଟନା ଫଳେ
ବୋଲାଏ 'ସୁବର୍ଣ୍ଣପୁର' (୨) ସେ ଅଞ୍ଚଳେ ।
ସମଗ୍ର ଉତ୍କଳୁ ଆସି ନୃପମାନେ
ଚୋରଙ୍କୁ ପୂଜିଲେ ଭକ୍ତି-ଉପାଦାନେ ।
ଚୋରଗଙ୍ଗ ସେହି ଦେବଦତ୍ତ ମଣି
ନୀଳାଚଳେ ଦେଲେ ପଠାଇ ସେକ୍ଷଣି ।
ବହୁକାଳ ତାହା ବିଚିତ୍ର ରୁଚିରେ,
ବିରାଜିଲା ନୀଳଗିରିସାଇଁ ଶିରେ ।
ସୌଧକିରୀଟିନୀ, ଶୂରଙ୍କ ଜନନୀ,
ମହାନଦୀ ମୁକ୍ତ-ବେଣୀ (୩) ମଥାମଣି ।
କାଳସ୍ରୋତେ ଲୀନ ଏବେ ବିଡ଼ାନାସୀ,
ନାମ ସେହି ସ୍ରୋତେ ଆସିଅଛି ଭାସି ।

□ □ □

(୧) ନନ୍ଦିକେଶ୍ୱରୀ ପଠା କଟକର ଉତ୍ତରରେ ମହାନଦୀ ମଧ୍ୟରେ ଅବସ୍ଥିତ । (୨) ଅଂଶୁପା ଦହର ଅନତିଦୂରବର୍ତ୍ତୀ ସୁବର୍ଣ୍ଣପୁର ଗ୍ରାମ ବାଙ୍କି ଥାନାର ଅନ୍ତର୍ଗତ । (୩) ବିଡ଼ାନାସିଠାରେ ମହାନଦୀର ବେଣୀ ମୁକ୍ତ ହୋଇ ମହାନଦୀ ଏବଂ କାଠଯୋଡ଼ି ନାମରେ ପ୍ରବାହିତ ହେଉଅଛି ।

# ଉ ଷା

## ଉ ତ୍ସ ର୍ଗ ପ ତ୍ର

ପରମମାନନୀୟ ବିଦ୍ୟୋତ୍ସାହୀ-ପ୍ରବର ଶ୍ରୀଳ ଶ୍ରୀଯୁକ୍ତ ମହାରାଜ ରାମଚନ୍ଦ୍ର ବୀରବର ହରିଚନ୍ଦନ ମହୀନ୍ଦ୍ର ବାହାଦୁର, ତାଳଚେରାଧିପତି ମହୋଦୟ ମହନୀୟଚରିତେଷୁ।
ବିନୟ ନିବେଦନମିଦଂ –

ଶ୍ରୀମନ୍ ମହାରାଜ,

ଦୁଇ ବର୍ଷ ପୂର୍ବେ ମୁଁ ତାଳଚେର ରାଜଧାନୀରେ ଶ୍ରୀଛାମୁଙ୍କ ସହିତ ସାକ୍ଷାତ୍ କରି ଶ୍ରୀଛାମୁଙ୍କର ରାଜୋଚିତ ସୌଜନ୍ୟ ଏବଂ ବିଦ୍ୟାନୁରାଗିତାରେ ଯତ୍ପରୋନାସ୍ତି ପ୍ରୀତ ହୋଇ ତାଳଚେରରୁ ବାମଣ୍ଡାଭିମୁଖରେ ପ୍ରସ୍ଥାନ କଲି। ମାର୍ଗରେ ତାଳଚେର ଅନ୍ତର୍ଗତ ଗୋଟିଏ ସ୍ଥାନରେ ଅବସ୍ଥାନ କରୁଥିଲି, ଏମନ୍ତ ସମୟରେ ଜଣେ ଚିର-ରୁଗ୍ଣ ଅକ୍ଷମ ଭିକ୍ଷୁକ ଭିକ୍ଷାର୍ଥୀ ହୋଇ ମୋହଠାରେ ଉପସ୍ଥିତ ହେଲା। ସେ ତାହାର ଅବସ୍ଥା ବର୍ଣ୍ଣନା କରୁ କରୁ କହିଲା, ''ମହାରାଜ ଅଳ୍ପଦିନ ମଧ୍ୟରେ ଏହିଠାକୁ ବିଜେ ହେବେ, ମହାରାଜଙ୍କୁ ମୋହର ଅବସ୍ଥା ଜଣାଇଲେ ମୋହର ଦୁଃଖ ଯିବ।'' ମୁଁ ତାହାକୁ ଏହି ଉକ୍ତିର ତାତ୍ପର୍ଯ୍ୟ ପଚାରିବାରୁ ସେ କହିଲା, ''ତାଳଚେରରେ ମୋହ ପରି ଅକ୍ଷମ ବ୍ୟକ୍ତିର ଗ୍ରାସାଚ୍ଛାଦନର ଭାର ମହାରାଜ ସ୍ୱୟଂ ଗ୍ରହଣ କରିଅଛନ୍ତି। ଅନେକ ଲୋକ ଏହିପରି ଚିରଜୀବନ ରାଜସରକାରରୁ ପ୍ରତିପାଳିତ ହେଉଅଛନ୍ତି।'' ଅନୁସନ୍ଧାନଦ୍ୱାରା ଜାଣିଲି ଯେ ତାହାର ଏହି ଉକ୍ତି ସମ୍ପୂର୍ଣ୍ଣରୂପେ ସତ୍ୟ ଅଟେ। ମୁଁ ଯେତେ ସ୍ଥାନ ଭ୍ରମଣ କରିଅଛି, ଏପରି ପ୍ରକୃତ ସାତ୍ତ୍ୱିକଭାବାପନ୍ନ ସୁବ୍ୟବସ୍ଥା କୌଣସିଠାରେ ଦେଖିନାହିଁ।
ବସ୍ତୁତଃ –

''ନିୟମୟସି ବିମାର୍ଗପ୍ରସ୍ଥିତାନାର୍ତ୍ତଦଣ୍ଡଃ-ପ୍ରଶମୟସି ବିବାଦଂ କଳ୍ପସେ ରକ୍ଷଣାୟ।
ଅତନୁଷୁ ବିଭବେଷୁ ଜ୍ଞାତୟଃ ସନ୍ତୁ ନାମ୍ ତ୍ୱୟି ତୁ ପରିସମାପ୍ତଂ ବନ୍ଧୁକୃତ୍ୟଂ ପ୍ରଜାନାମ୍।''

କାଳିଦାସଙ୍କର ଏହି ଶ୍ଳୋକର ଗୋଟିଏ ଜୀବନ୍ତ ଉଦାହରଣ ତାଳଚେରରେ ଦେଖି ଶ୍ରୀଛାମୁଙ୍କ ପ୍ରତି ମୋହର ପୂର୍ବଜାତ ଭକ୍ତି ଶତଗୁଣରେ ବର୍ଦ୍ଧିତ ହେଲା। ସେହି ଭକ୍ତିର କୌଣସି ଚିହ୍ନ ଛାମୁରେ ଉପସ୍ଥାପିତ କରିବାର ବାସନା ସେହି ଦିନରୁ ହୃଦୟରେ ଜାଗରୂକ ଥିଲା। ମାତ୍ର ସୁବିଧା ଅଭାବରୁ ଆଜ ପର୍ଯ୍ୟନ୍ତ ତାହା ଚରିତାର୍ଥ କରିପାରିନଥିଲି। ଏହି ସାମାନ୍ୟ ପୁସ୍ତିକା ଶ୍ରୀଛାମୁଙ୍କର ଉପଯୁକ୍ତ ଉପହାର ନହେଲେହେଁ ଭବଦୀୟ ସୌଜନ୍ୟ ଉପରେ ନିର୍ଭରକରି ଏହାକୁ ଛାମୁରେ ଅର୍ପଣ କରିବାକୁ ସାହସୀ ହେଲି। ପ୍ରଭାକର ସୂର୍ଯ୍ୟ-ଦେବଙ୍କଠାରେ ଭକ୍ତର ଆରତି ପରି ଛାମୁରେ ଏହା ଗୃହୀତ ହେଲେ କୃତାର୍ଥ ହେବି।

କଟକ — ଏକାନ୍ତ ଅନୁଗତ
୨୦।୭।୧୮୮୮ — ଶ୍ରୀ ରାଧାନାଥ ରାୟ

# ଊଷା

[ ବୃତ୍ତ – ଖଣ୍ଡ କୁମ୍ଭକାମୋଦୀ । ଯତିର ନିୟମ – ଛ' ଅକ୍ଷର, ଛ' ଅକ୍ଷର, ପାଞ୍ଚ ଅକ୍ଷର । ]

ଶାଳ୍ମଳୀଶଇଳୁଁ (୧) ତିନି ସ୍ଥାନେ ତିନି ତଟିନୀ ଝରେ,
ଲଂଘି ନାନା ବନ ଜନପଦ ମିଶେ ବଙ୍ଗସାଗରେ ।
ଉତ୍ତରେ ବଳାଙ୍ଗୀ, ମଧ୍ୟେ ଗଙ୍ଗାହାର, ଶୋଣ ଦକ୍ଷିଣେ
ଜଳବେଣୀ-ବର୍ଣ୍ଣେ କୁରଙ୍ଗୀ-ନୟନ- ନୀଳିମା ଜିଣେ ।
ରଜ, ତମ, ସତ୍ତ୍ୱେ ମିଶିଲା ପରାୟେ ବଳାଙ୍ଗୀ-ପଦେ
ଶୋଣ, ଗଙ୍ଗାହାର ମିଶନ୍ତି ଯେ ଯାହା ନୀରସମ୍ପଦେ ।
ତେମୁହାଣୀ ନାମେ ଏହି ସ୍ଥାନ ଏବେ ବିଦିତ ଲୋକେ,
ତଣ୍ଡୀକୁଞ୍ଜେ ଛାୟା-ସଙ୍ଗେ-ରଙ୍ଗେ ଯହିଁ କ୍ରୀଡ଼ନ୍ତି କୋକେ ।
ନିର୍ଭୟେ ନିରତେ ନୀର-ଆସ୍ତରଣେ କରନ୍ତି ରଙ୍ଗ
ବାର ବାର ହୋଇ ଯହିଁ ଭଞ୍ଜଭୂମି ବନ-ବିହଙ୍ଗ ।
ତିନି-ନଦୀ-ଜଳ ନିଜ ପୁଣ୍ୟ-ବକ୍ଷେ ବଳାଙ୍ଗୀ ବହି
ଯୋଜନାନ୍ତେ ଯାଇ ନିଜେ ମହାସିନ୍ଧୁ-ବକ୍ଷେ ମିଶଇ ।
ଥିଲେ ତା'ର ତୀରେ ନୁରୁ (୨) ନାମେ ରାଜା ମହାପ୍ରତାପୀ,
ପୂଜୁଥିଲେ ଯେହୁ ନଦୀତୀରେ ଶ୍ୟାମା (୩) ପ୍ରତିମା ସ୍ଥାପି ।
ସ୍ୱପ୍ନାଦେଶେ ନଦୀ-ଗର୍ଭୁ ନରପତି ଲଭି ବିଗ୍ରହ
ଯଥାବିଧି ନୀତି ଚଳାଇବାପାଇଁ କଲେ ଆଗ୍ରହ ।
ନଦୀତୀରେ ଦିବ୍ୟ-ଦେଉଳ ତୋଳାଇ ତହିଁ ସ୍ଥାପନା
କରାଇ ନଗର-ଅଧିଷ୍ଠାତ୍ରୀ-ରୂପେ କଲେ ଅର୍ଚ୍ଚନା ।
ହୋମ ଯାଗ ଆଦି ଅନୁଷ୍ଠାନେ ଦ୍ୱିଜେ ହେଲେ ଦୀକ୍ଷିତ,
ବଳି-ଲୋହେ ନୀଳ-ବଳାଙ୍ଗୀ-ସଲିଳ ହେଲା ଲୋହିତ ।
ଦେବୀଙ୍କ ନିଯୋଗେ ନରବଳି ହେଉଥିଲା ଅର୍ପଣ,
ଇତର ପଶୁଙ୍କ କଥା ଅବା କିଏ କରେ ଗଣନ ?
ଦେବୀଙ୍କ ପ୍ରସାଦେ ରାଜାଙ୍କର ହେଲା ଭାଗ୍ୟ ଉଦୟ,
ଚିର-ଶତ୍ରୁ କୁଳ ନତ କଲେ ଶିର ହୋଇ ସଭୟ ।
ପାରିଧିରେ ଥିଲେ ବୀରସିଂହ ନୁରୁ ସଦା ଲାଳସୀ,
ପାରିଧି କରନ୍ତି ନିତି ନିତି ଶୈଳ-କାନ୍ତାରେ ପଶି ।
ଚଳ-ଲକ୍ଷ୍ୟ-ଭେଦେ ଅମୋଘ ତାଙ୍କର ଥିଲା ସନ୍ଧାନ,
ଗୁରୁ କରି ତାଙ୍କୁ ମାନୁଥିଲେ ଯେତେ ମୃଗୟୁମାନ ।
ସର୍ବ ସୁଖେ ଥାଇ ଏକ ସୁଖେ ରାୟେ ଥିଲେ ବଞ୍ଚିତ,
ସନ୍ତତି ବିହୁନେ ନିରନ୍ତର ସେହୁ ଥିଲେ ଚିନ୍ତିତ ।
ଦିନେ ନିଶି-ଯୋଗେ ଦେଖିଲେ ମହିଷୀ ସ୍ୱପ୍ନ ଅଦ୍ଭୁତ,
ଉଲ୍‌କାକାରେ ଉଡ଼ି ଆସିଲା ଆକାଶେ ଜ୍ୟୋତି ବହୁତ ।

(୧) ମୟୂରଭଞ୍ଜ ଅନ୍ତର୍ଗତ ସୁଦୀର୍ଘ ପର୍ବତମାଳା । ସ୍ଥାନୀୟ ନାମ ଶିମୁଳିପାଳ ଅଥବା ଶିମୁଳିପାହାଡ଼ । (୨) ବାଲେଶ୍ୱର ନଗରର ଅଂଶବିଶେଷର ନାମ ନୁରୁପୁର । (୩) ମାଣିଖମ୍ବ ନାମକ ବାଲେଶ୍ୱର ନଗରର ଅଂଶବିଶେଷରେ କାଳୀ ମନ୍ଦିର ଅଛି ।

ଚଢ଼ିଗଲା କିବା ଅନୟର ଶତହାବେଳିବାଣେ,
ଅଥବା ପଡ଼ିଲା ଶତ ସ୍ୱର୍ଣ୍ଣ-ରେଖା କଷ-ପାଷାଣେ ।
ସବୁ ଜ୍ୟୋତି ମଧ୍ୟେ ବେନି ଜ୍ୟୋତି ଥିଲା ଉଜ୍ଜ୍ୱଳତମ,
ଶାରଦୀୟା ଉଷା-ଶିରୋଭୂଷା ଶୁକ୍ରତାରକା ସମ ।
ଏକ ଜ୍ୟୋତି ଗଲା ମନୋରଥ-ଗତି ବାୟବ୍ୟ ଦିକେ,
ଅନ୍ୟ ଜ୍ୟୋତି ସମ-ଗତିରେ ଅସିଲା ରାଣୀ-ଅନ୍ତିକେ ।
ତହିଁ ଖର୍ବାକାର ଦିବ୍ୟ ନାରୀ ରୂପ ଦେଖିଲେ ରାଣୀ,
ମର୍ତ୍ତ୍ୟେ କି ସମ୍ଭବେ କେବେ ସେ ଅଦ୍ଭୁତ ଲାବଣ୍ୟଠାଣି ?
ପାଶେ ଆସି ଜ୍ୟୋତି ପଲକେ ପଶିଲା ରାଣୀ ଉଦରେ,
ଛନକାରେ ନିଦ୍ରା ତୁଟିଗଲା, ରାଣୀ ଉଠିଲେ ଖରେ ।
ନୃପ ସନ୍ନିଧାନେ ସ୍ୱପନ ବୃତ୍ତାନ୍ତ କହିଲେ ଯାଇ,
ଫଳ ଜିଜ୍ଞାସିଲେ ନୃପ ସ୍ୱପ୍ନବିତ ବୁଧେ ଡକାଇ ।
ଦିବ୍ୟ-କନ୍ୟା-ଲାଭ-ଫଳ ସ୍ୱପ୍ନବିତ ବୁଧେ ବଖାଣି
ବାହୁଡ଼ିଲେ ନୃପ-ଛାମୁରୁ ସରବେ ସୁବର୍ଣ୍ଣ-ପାଣି ।
ଦଶ ମାସ ଅନ୍ତେ ପ୍ରସବିଲେ ରାଣୀ ଦିବ୍ୟ-ଦୁହିତା,
ଉଷାକାଳେ ଜାତ ବୋଲି ଉଷା ନାମ ରଖିଲେ ପିତା ।
ଫଳେ ଦମ୍ପତିର ଦୁଃଖ ତମିସ୍ରର ହେଲା ସେ ଉଷା,
ଜନନେତ୍ରେ ହେଲା ଲାବଣ୍ୟ-ମଞ୍ଜୁଳା ରୂପ-ମଞ୍ଜୁଷା ।
ଇନ୍ଦ୍ରାୟୁଧେ ତା'ର ଅଧ-ବିମ୍ବେ ନଭେ ଯେଉଁ ତୁଳଣା,
ତହୁଁ ବଳି ଇନ୍ଦୁ-ସଙ୍ଗେ ସୁନ୍ଦରୀର ତୁଳା ଅଲଣା ।
କ୍ରମେ କ୍ରମେ ବାଲ୍ୟ-ସୀମା ଅତିକ୍ରମ କରିଣ ବାଳୀ
ଦିନୁଁଦିନ ହେଲା ନୁରୁ-ନୃପତିଙ୍କ ନେତ୍ର-ସଂଖାଳି ।
ଝୁରି ହେଉଥିଲେ ରାୟେ, ଲବେ ସୁତା ହେଲେ ଅନ୍ତର,
ଝୁରେ ଯେହ୍ନେ ଚନ୍ଦ୍ର-କଳା-ଅଦର୍ଶନେ କୁମୁଦାକର ।
ପାରିଧିକି ବିଜେ ହେଲେ ନରବର ଆରୋହି ଦନ୍ତୀ,
କୁମାରୀକି ସଙ୍ଗେ ଅମାରିରେ (୧) ଘେନି ବିଜେ ହୁଅନ୍ତି ।
ପ୍ରତିଦିନ ଉଷା ଏହିରୂପେ ଯାଇ ନୃପ-ଗହଣେ
ଦେଖୁଥାଇ ବନେ ମୃଗୟା-କୌଶଳ ନିବିଷ୍ଟ-ମନେ ।
ଦେଖୁଥାଇ ବନ-ପଶୁ-ପକ୍ଷୀଙ୍କର ଚେଷ୍ଟା ଇଙ୍ଗିତ,
[illegible]ଦସ, ସାଧ୍ୱସ, ସ୍ନେହ, ମାୟା ଆଦି ଯହିଁ ସୂଚିତ ।
କୌ[illegible]କେ କାନନେ କଳୁଥାଇ ମନେ ରାଜେନ୍ଦ୍ର ସୁତା,
ମୃଗୟୁକୁଳ[illegible] ଦେଶ-କାଳ-ଜ୍ଞାନ ହସ୍ତ-ଲଘୁତା ।
ନିତି ଦେଖି ରହ ଏହିରୂପେ ମଞ୍ଚୁ ହସ୍ତୀ ଉପରୁ
ମୃଗୟା ଦୁଃଖକୁ ଶ୍ଲାଘ୍ୟ ମଣିଲା ସେ ଗୃହ-ସୁଖରୁ ।
କ୍ରମେ ଯଥାକାଳେ ଛୁ[illegible] ଛଭବା ଯୌବନ-ସୀମା,
ଉପମା-ସୃଷ୍ଟିକୁ ବୁଡ଼ାଇ ଦେଲା [illegible] ରୂପ-ଗରିମା ।
ମରଲୋକେ ତା'ର ଯୋଗ୍ୟ ପଟାନ୍ତର କାହିଁ ମହିଳା,

(୧) ହାଉଦା

ଦିବ୍ୟଲୋକେ ଏକା ସମ୍ଭବେ ସିନା ସେ ଲାବଣ୍ୟଲୀଳା।
ତରଳ-ତାରକା-ହାରମୟୀ ନାକ-ନାଗରୀ-ଟୀକା
ସମକକ୍ଷ ତା'ର ହେଲେ ହେବେ ଶଚୀ ସ୍ୱର୍ଗ-ଚନ୍ଦ୍ରିକା।
ତରଙ୍ଗ-ଦୋଳାରେ ଦୋଳାୟିତ କିବା ସିନ୍ଧୁ ଦୁଲଣା,
ଲୀଳା-ଅରବିନ୍ଦ-ଧାରିଣୀ ଅମଳ-କମଳାନନା।
ସ୍ୱଚ୍ଛକାଳେ ଶିଳ୍ପ-କଳାଦିରେ ବାମା ହେଲା କୁଶଳା,
ମାତ୍ର ଶସ୍ତ୍ରଶିକ୍ଷା ପ୍ରତି ମନ ତା'ର ସ୍ୱଭାବେ ଗଲା।
ଅନୁକ୍ଷଣ ଶସ୍ତ୍ର-ଶିକ୍ଷା ମୃଗୟାରେ ହେଲା ସେ ରତ,
ସଖୀ ସଙ୍ଗେ ଶସ୍ତ୍ର-ହସ୍ତେ ଭ୍ରମୁଥାଇ ବନ ପର୍ବତ।
କେବେ ବିହରଇ ଶାଳ-ତରୁପୂର୍ଣ୍ଣ ଶୈଳକାନନେ,
କେବେ ଅବା ସିନ୍ଧୁ-ବାୟୁ-ବିଧୂନିତ-ହିନ୍ତାଳବନେ।
ରଙ୍ଗ କୋବିଦାର (୧) ପାଟଳ-ବସନେ ଶୋଭଇ ଧନୀ,
ରଙ୍ଗ ଘନେ ଯେହ୍ନେ ଶୋଭେ ତା'ର ପ୍ରଭାମୟୀ ମିତଣୀ।
କେବେ ଅଶ୍ୱପୃଷ୍ଠେ ଭ୍ରମୁଥାଇ ବାଳା ବନ ଶାଦ୍ୱଳ (୨)
ପ୍ଳୁତ-ଗତି-ହେତୁ ଗଣ୍ଡେ ଦୋଳୁଥାଇ ସ୍ୱର୍ଣ୍ଣ-କୁଣ୍ଡଳ।
କେବେ ଧନୁଶର ଶୋଭୁଥାଇ କରେ ପୃଷ୍ଠେ ନିଷଙ୍ଗ,
କେବେ ସବ୍ୟ କରେ ଫଳା, ସବ୍ୟେତରରେ ଅସି ଉଲଙ୍ଗ।
କେବେ ଶୂଳହସ୍ତେ ସଖୀଦଳେ ଭ୍ରମୁଥାଇ ଛଳଳା,
ପଦ୍ମିନୀ-ବାହିନୀ ସଙ୍ଗେ ମହାବନେ ଯେହ୍ନେ ପ୍ରମୀଳା। (୩)
କନକ-ବଲ୍ଲରୀ ମଧ୍ୟେ କି ବିହରେ ସ୍ଥିର-ହ୍ଲାଦିନୀ,
ତାରା-ହଲ୍ଲୀଷକେ (୪) କିଅବା ରୋହିଣୀ ଇନ୍ଦୁମୋହିନୀ ?
ଆନିତମ୍ବ-ଲମ୍ବି କେଶଗୁଚ୍ଛେ ଶୋଭୁଥାଇ ଚରମ,
ଦର୍ଶକ-ହୃଦୟେ ଉପୁଜାଇ ନୀଳ-ଭୁଜଙ୍ଗୀ-ଭ୍ରମ।
ସ୍ୱର୍ଣ୍ଣ-ସାରସନେ କୃଶୋଦରୀ କୃଶ-କଟୀ ଜଡ଼ିତ,
କବଚେ ଆବୃତ ସଞ୍ଚ ଘଞ୍ଚ ସ୍ତନ-କଳୀ ଲଳିତ।
ଆକର୍ଣ୍ଣ ବିସ୍ତାରି-ନେତ୍ରେ ଉଠୁଥାଇ ଭାବ-ତରଙ୍ଗ
ତୁଳିରେ ଚିତ୍ରିତ ପ୍ରାୟେ ଚାରୁଭୂରୁ କାମ-ଶାରଙ୍ଗ।
ହେଳେ ନେଉଥାଇ ଦେଖଣାହାରିଙ୍କ ହୃଦୟ ହରି
ଜଗତଯୋଷାଙ୍କ ଖୋଷାଭୂଷା ସେହି ଉଷାସୁନ୍ଦରୀ।
ଥରେ ପଡ଼ିଲେ ସେ ନୟନେ ଜଗତ-ନୟନକାରା,
ହେଉଥାଇ ରୂପବତୀ ସ୍ମୃତି-ନଭେ-ପ୍ରଭାତୀ ତାରା।
ପ୍ରଦୋଷେ ସଙ୍ଗିନୀ-ବ୍ରାତେ ବିଳେ କରି ସୁଚିତ୍ର ପୋତେ
କରୁଥାଇ ନକ୍ର ସଂହାର ବଳାଙ୍ଗୀ ହରିତ-ସ୍ରୋତେ।
ରଙ୍ଗେ ଆଲୋଡ଼ିଣ ବଳାଙ୍ଗୀ-ତରଙ୍ଗ କ୍ଷେପଣୀ ଚଳେ,

(୧) କଞ୍ଚନ ଫୁଲ (୨) ତୃଣପୂର୍ଣ୍ଣ ପ୍ରାନ୍ତର (୩) ଅର୍ଜୁନ ଯେଉଁ କାଳରେ ଅଶ୍ୱମେଧ ତୁରଗ ସହିତ ଦିଗ୍‌ବିଜୟରେ ନିର୍ଗତ ହୋଇଥିଲେ, ମହାବନ ନାମକ ଅରଣ୍ୟରେ ବୀରାଙ୍ଗନା ପ୍ରମୀଳାଙ୍କ ସହିତ ତାହାଙ୍କର ଭେଟ ହେଲା। ପ୍ରମୀଳାଙ୍କର ଅସଂଖ୍ୟ ସୁନ୍ଦରୀ ସ୍ତ୍ରୀସୈନ୍ୟ ଥିଲେ। ମହାଭାରତର ଅଶ୍ୱମେଧ ପର୍ବରେ ଏହାର ବିସ୍ତାରିତ ବିବରଣ ଅଛି। (୪) ହଲ୍ଲୀଷକ– ସ୍ତ୍ରୀମାନଙ୍କର ଏକତ୍ର ନୃତ୍ୟ।

ବେନି-ତୀରେ ଶ୍ୟାମ ପାଦପ ବଲ୍ଲରୀ ଧାଏଁ ଚଞ୍ଚଳେ।
କୁସୁମିତ ସ୍ୱର୍ଣ୍ଣକାନ୍ତି ଶଣକ୍ଷେତ୍ର ପଳାନ୍ତି ଖରେ,
ବାମା-ବର୍ଣ୍ଣ-ବିଭା ଚୋରି କରି ଅବା ପଳାନ୍ତି ଡ଼ରେ।
ଠାବେ ଠାବେ ଉଠେ ଶ୍ୱେତ-ଶିଳାସ୍ତମ୍ଭ ପ୍ରାୟେ କୁମ୍ଭୀର,
ନ ବୁଡୁଣୁ ଉଷା ଖର-ହସ୍ତେ ବିନ୍ଧେ ତା ଦେହେ ତୀର।
ବୃଥା ହାଣୁଥିଲା ମୃଗୀ ଅଙ୍ଗେ ବାଣ ସିନା ସୁନ୍ଦରୀ,
ଚାହାଣି ଭଙ୍ଗୀରୁ ଥିଲେ ସେହୁ ଯେଣୁ ଆଗହୁଁ ମରି।
ଖଞ୍ଜିବା ଆଗରୁ ଶରାସନେ ଶର ଲାଜେ କରଭ
ପଳାଉଣଥିଲା ପରିହରି ନିଜ ଉରୁଗରବ।
ମୁଗଧ ହୋଇ ମୁଗ୍ଧା-ଚରଣନୂପୁର ଶିଞ୍ଜିତ-ସ୍ୱନେ
କୁଞ୍ଚି ରାଜହଂସେ ଧାଉଁଥିଲେ ପଛେ ପଛେ ଗହନେ।
ବନପଶୁ ମନେ ଭ୍ରମ ଜନମିବା ଆଶେ ଲଳନା
ହରିତ ପଲ୍ଲବେ ତନୁଚ୍ଛଦ କେବେ କରେ ରଚନା।
ବିଚିତ୍ର ବରଣ ବନମାଳେ ମଣ୍ଡିଥାଏ ମସ୍ତକ,
କର୍ଣ୍ଣେ ପୁଷ୍ପଗୁଚ୍ଛ ଜିଣଇ କୃତ୍ତିକା-ତାରା-ସ୍ତବକ।
ମାତ୍ର ନ ଆବରେ ଅଧରୌଷ୍ଠ କର ବନପଶୁରୁ,
ବାରି ତ ନୋହିବ ତାହା ବଣଜାମୁ-ପଲ୍ଲବାଙ୍କୁରୁ।
ଶୂଳହସ୍ତେ ବନ-ପଶୁଙ୍କୁ ଗୋଡ଼ାଇ ଦ୍ରୁତ ଚରଣେ
ଦକ୍ଷ ହେଲା ବଡ଼ ମୃଗାକ୍ଷୀ ମୃଗୟା-ଅନୁସରଣେ।
ସଂସାରେ ତା ସଙ୍ଗେ ଗତିବେଗେ କେହି ନ ଥିଲେ ସରି,
କି ଆକୃତି କିବା ଗତିରେ ଥିଲା ସେ ବିଜୁଳିପରି।
ଯୁବତୀ-ସୁଲଭ-ସୌନ୍ଦର୍ଯ୍ୟେ ମିଶିଲା ଶୌର୍ଯ୍ୟ ପ୍ରଖର,
ବେନି ଗୁଣ ମିଳି କଲେ ରମଣୀକି ରୁଦ୍ର-ସୁନ୍ଦର।
ସର୍ବଶୋଭାଧାର ବିଦ୍ୟାଧରୀଠାରୁ ମାଧୁରୀ ଘେନି
ବିରୋଧ ପାସୋରି ମଧୁର ମିଳନେ ମିଳିଲେ ବେନି।
ବିଷମ ପ୍ରତିଜ୍ଞା ମନେ ମନାସିଲା ସୁନ୍ଦରୀସାର,
ଗତିବେଗେ ତାକୁ ଯେ ଜିଣିବ ହେବ ପତି ସେ ତାର।
ରାଜାଦେଶେ ଦୀର୍ଘ ରାଜପଥ ରଚି ରାଜପୁରୁଷେ
ପୁଷ୍ପିତ ପାଦପ ଥୋଇଲେ ସେ ପଥ ବେନି ପାରୁଶେ।
ବର୍ତ୍ମାରମ୍ଭେ କାଳୀ-ପ୍ରତିନିଧି ଚଣ୍ଡୀ ସର୍ବଶୁଭଦା
ସ୍ଥାପିବାରୁ ସ୍ଥଳୀ ଏବେ ବୋଲାଉଛି ପ୍ରଥମାପଦା। (୧)
ବର୍ତ୍ମାନ୍ତେ ପ୍ରୋଥିତ ହେଲା ଉଚ୍ଚ ସ୍ତମ୍ଭ ରତ୍ନଜଡ଼ିତ,
ଅଦ୍ୟାପି ମାଣିକ୍ୟ-ଖମ୍ବ (୨) ନାମ ଲୋକେ ଯେଣୁ ପ୍ରଥିତ।
ସଙ୍ଗେ ଧାଇଁ ଆଗେ ସ୍ତମ୍ଭକୁ ଛୁଇଁବ ଯେ ଯୁବାମଣି,
ସଭାସ୍ଥଳେ ତାକୁ ବରମାଳା ଦେଇ ବରିବ ଧନୀ।

(୧) ଗତି ପରୀକ୍ଷା ସକାଶେ ଗୋଟିଏ ବର୍ତ୍ମ ପ୍ରସ୍ତୁତ ହେଲା। ପ୍ରଥମାପଦା ନାମକ ସ୍ଥାନ ତାହାର ପ୍ରଥମ ଏବଂ ମାଣିକଖମ୍ବ ଶେଷସୀମା। ପ୍ରଥମାପଦାର ପ୍ରଚଳିତ ନାମ ପଡୁଆଁପଦା। (୨) ଏହି ସ୍ଥାନ ବାଲେଶ୍ୱର ନଗରର ବହୁ ଜନାକୀର୍ଣ୍ଣ ଅଂଶବିଶେଷ।

ହାରିଗଲେ ଶିର-ଛେଦ-ଦଣ୍ଡ ତାର ହେବ ନିଶ୍ଚୟ,
ଟାଣପଣ ଶୁଣି ଭୀରୁ-ଜନ ମନ ହେଲା ସଭୟ।
ଯୁବାବୀରେ ଯେତେ ମାତିଲେ ସମସ୍ତେ ମହାଉତ୍ସାହେ,
ବୀରବିହୁନେ କି ସୁଖ-ମୂଲ୍ୟ କେହି ଦେବାକୁ ଚାହେଁ?
ଯେ ସୁଖ ଯେସନ, ତା ମୂଲ୍ୟ ତେସନ ସିନା ମହାରେ,
ମୂଲ୍ୟ ଚିହ୍ନି ମୂଲ୍ୟ ଦେବାକୁ କେବଳ ଜାଣନ୍ତି ବୀରେ।
କେତେ ରାଜସୁତେ ସାମନ୍ତେ ଆସିଲେ ଛାଡ଼ି ସ୍ୱସ୍ଥଳୀ
ସ୍ୱୟମ୍ବର-ଯଜ୍ଞେ ହୋଇ ଉଷାରୂପ-ପିପାସା-ବଳି।
ଶୀତଳ-ରତନ ପ୍ରାୟେ ବିଭାତିଲା ଦୂରୁ ସୁନ୍ଦରୀ,
ଛୁଇଁବାବେଳକୁ ହେଲା ସେ ଜ୍ୱଳନ୍ତ ଅନଳ ପରି।
ଶତ ଶତ ଯୁବା ନାନା ଦେଶୁଁ ଆସି ସେ ନୂରୁପୁରେ,
ଅଙ୍ଗ ଢାଳି ଦେଲେ ପତଙ୍ଗ ପରି ସେ ଚିତ୍ରଭାନୁରେ।
ସ୍ୱୟମ୍ବରେ ଜୋଡ଼ି ତହିଁ ସେ ଅବନୀ-କୁସୁମ-ଝରା,
ଦକ୍ଷିଣ ମଶାଣ ରାଜ-ସୁତେ କଲେ ଲୋହେ ଉର୍ବରା।
ଭିନ୍ନ ଭିନ୍ନ ଦେଶୁଁ ଆସିଥିଲେ ଯେତେ ରାଜ-କୁମର,
ଯଶଃପଟୁ କାଳ ଲିଭାଇ ଦେଇଛି ନାମ ତାଙ୍କର।
କେଉଁ କେଉଁ ଦେଶ ସେ କଥା କାହାରି ନାହିଁ ତ ଜଣା,
ବିସ୍ମୃତି-ଗରଭୁଁ ଉଦ୍ଧାରି ଆଣୁ ତା କବିକଳ୍ପଣା।
ବୀରକୁଳ (୧) ନାମେ ବୀରପରିପୂର୍ଣ୍ଣ-ସ୍ଥଳୀ କଥିତ,
ପୂଗ-ଷଣ୍ଡ ଯହିଁ ନାଗବଲ୍ଲୀଦଳେ ଗାଢ଼େ ଜଡ଼ିତ।
ହେମଫଳେ ନମ୍ର ଯହିଁ ଲକ୍ଷାଆମ୍ର-ପାଦପ-ପନ୍ତି
ତୃଷାର୍ତ୍ତ ପଥିକେ ଶାଖା ସଞ୍ଚାଳନ ଛଳେ ଡାକନ୍ତି।
କୁମାରଦା (୨) ଆଦି ସ୍ଥଳୀ ବୀରଦ୍ରୁମ-ନିକୁଞ୍ଜେ ନୀଳ,
ସୁବର୍ଣ୍ଣ ତଟିନୀ ପଟୁ-ସ୍ତରେ ଯାର ତନୁ ପଙ୍କିଳ।
ଭୋଗରାଇ (୩) ଯାର ଦିଗନ୍ତବିସ୍ତାରି ସିକତାରାଶି –
ଶିରେ ଖେଳୁଥିଲା ରଙ୍ଗେ ଦିନେ ସିନ୍ଧୁ-ତରଙ୍ଗ ଆସି।
ଏବେ ପାଦେ ଯାର ଚକ୍ରବାଳ-ବ୍ୟାପୀ ଶାଳି-କେଦାର
ଶରତେ ଧରଇ ବାତାହତ-ସିନ୍ଧୁ-ତରଙ୍ଗାକାର।
ସେ ଶାଳି-କେଦାରେ ଦୂରୁଁ ଦିଶେ ଯାର ସିକତାକୁଦ,
ପାରାବାରେ ଯେହ୍ନେ ଜଳଦେବତାଙ୍କ ଶଙ୍ଖ-ସଉଧ।
ଯାମକୁଣ୍ଡ (୪) ଯହିଁ ଘନତାଳୀ-ବନ-ଶ୍ୟାମଳ-ଚାରା
ସୁବର୍ଣ୍ଣତଟିନୀ ସିନ୍ଧୁ ଅଙ୍ଗେ ଅଙ୍ଗ ଢାଳେ ଗଭୀରା।
ବେନିଙ୍କର ଯହିଁ ନୀର-ସଂଘର୍ଷଜ ଧୀର ନିର୍ଘୋଷ
ଉପୁଜାଏ ଦେବ ଭୂଷଣ୍ଡ-ଈଶ୍ବରେ ନିରତେ ତୋଷ।

(୧) ବାଲେଶ୍ୱରର ଉତ୍ତରପୂର୍ବ କୋଣରେ ସମୁଦ୍ର ସନ୍ନିହିତ ସ୍ଥାନ। ବୀରକୁଳର ପାନ ବାଲେଶ୍ୱରରେ ପ୍ରସିଦ୍ଧ। (୨) ପ୍ରଚଳିତ ନାମ କମରଦା– ଏହି ଅଞ୍ଚଳରେ ଅନେକ ଅର୍ଜୁନବୃକ୍ଷ ଦେଖାଯାଏ। (୩) ସମୁଦ୍ରର ଅଦୂରବର୍ତ୍ତୀ ସିକତାସ୍ତୂପମୟ ସ୍ଥାନ। (୪) ସୁବର୍ଣ୍ଣରେଖାର ଦକ୍ଷିଣତୀରରେ ଅବସ୍ଥିତ। ପ୍ରସିଦ୍ଧ ପିପଳିବନ୍ଦର ଯାମକୁଣ୍ଡର ଅଦୂରବର୍ତ୍ତୀ। ଭୂଷଣ୍ଡେଶ୍ୱର ମହାଦେବଙ୍କ ଦେଉଳ ସୁବର୍ଣ୍ଣରେଖାର ମୁହାଣରେ ପ୍ରତିଷ୍ଠିତ।

ବୋଲଙ୍ଗ (୧) କୀଚକ-କୁଞ୍ଜ-ପୁଞ୍ଜେ ଯାର ମେଚକକାନ୍ତି
ଉପକୂଳେ ବାଲିସ୍ତୂପେ ଉପୁଜାନ୍ତି ଶଇଳ ଭ୍ରାନ୍ତି ।
କରନ୍ତି ଯୁବକେ ପରିପକ୍ୱ ଯହିଁ ଆୟୁଧ ଶିକ୍ଷା
ଋକ୍ଷ-ଯୁବତୀଙ୍କି ପାରିଧିରେ ଦେଇ ବୈଧବ୍ୟ ଦୀକ୍ଷା ।
ରଙ୍ଗଣେ ରଞ୍ଜିତ ସିକତିଳସ୍ଥଳ ଲାଙ୍ଗଳେଶ୍ୱର, (୨)
ଯାର ପାର୍ଶ୍ୱେ ସ୍ଥିତ ଶୂଳି-ହଳକ୍ଷତ ମହାପ୍ରାନ୍ତର ।
ବାଲିସ୍ତୂପ-ଖୋଲେ ରଙ୍ଗେ ଯହିଁ ପ୍ରଜା-ପତିଙ୍କ ଥାଟ
ସୁରଭି ଶଗଡ଼-ବାଟୁଆ ନିକୁଞ୍ଜେ କରନ୍ତି ନାଟ ।
ଜଳେଶ୍ୱର ଯାର ପ୍ରସ୍ଥାଳେ ପୟର ବକ୍ରଗାମିନୀ
ସୁବର୍ଣ୍ଣତଟିନୀ ମତ୍ସ୍ୟମୟୀ ଚାରୁ-ଚକ୍ରବାକିନୀ ।
ମୃତ-ପ୍ରତାପର ମୂକ ସାକ୍ଷୀ ପ୍ରାୟେ ଟେକଇ ଶିଖ
ଏକାକେ ଯା କୂଳେ ଶୂନ୍ୟାକାର ଦୁର୍ଗ ଐତିହାସିକ । (୩)
ନୀଳଗିରି ଯହିଁ ସ୍ୱର୍ଣ୍ଣଚୂଡ଼ (୪) ଚୂଡ଼ା ଚୁମ୍ବେ ଗଗନ,
ସିନ୍ଧୁ-ଜଳାରଣ୍ୟେ ବଣା ନାବିକଙ୍କୁ ଦିଗବାରଣ ।
ପର୍ବତ କଟକେ ଚଟକା ନିର୍ଝର ଯହିଁ ଗଡ଼ଇ,
ଝର୍ଝର ଶବଦେ ଭୃଙ୍ଗରୁ ଭୃଙ୍ଗକୁ ଡେଇଁପଡ଼ଇ ।
ରଣବିଶାରଦ ଶୂରଙ୍କର ଭୂମି ସୋର (୫) ପ୍ରଥିତ,
କମଳାଳଙ୍କୃତ ସର ରାଜେ ଯହଁ ସ୍ମରଣାତୀତ ।
ସୋରବାସିଙ୍କର ଦୁରିତ ବାରଣ-ମଙ୍ଗଳଚଣ୍ଡୀ –
ରୂପେ ଚମକଇ ଯହିଁ ଉଗ୍ରଚଣ୍ଡୀ-ଖେଳାଇ-ଖଣ୍ଡୀ । (୬)
ମହମାନ-ପୃଷ୍ଠେ ଶୋଭଇ ମଙ୍ଗଳ-ପୁର (୭) ରୁଚିର,
ପୃଷ୍ଠେ ଶୋଭେ ଯାର ଅଭ୍ରଂକଷ ଦେବ-ଗିରି ପ୍ରାଚୀର ।
ତମୋମୟ-ଶିଳା-ଖଣି ସ୍ଥିତ ଯହିଁ ଶଇଳପଦେ,
ମୁଖର ଅରଣ୍ୟ ଯହିଁ ଶିଳାଶିଳ୍ପୀ-ଶାଣ-ଶବଦେ ।
ପାଟଣାମଣ୍ଡଳ (୮) ସରାଗେ ମଣ୍ଡନ୍ତି ଯହିଁ ଶିଖରୀ

(୧) ବାଲେଶ୍ୱରର ଉତ୍ତରପୂର୍ବରେ ଅବସ୍ଥିତ । ଏହି ସ୍ଥାନ ବଂଶବନାକୀର୍ଣ୍ଣ ଏବଂ ଏଠାରେ ପ୍ରାୟ ଅନେକ ସମୟରେ ଭଲ୍ଲୁକର ଉପଦ୍ରବ ଶୁଣାଯାଏ । (୨) ସ୍ୱନାମପ୍ରସିଦ୍ଧ ମହାଦେବଙ୍କ ନାମରେ ନାମିତ । ଏହାର ସଂଲଗ୍ନ ହୋଇ ବହୁଦୂରବ୍ୟାପୀ ଷୁଲଣା (୧୬ କୋଶୀ) ପାଣ୍ଡ (ପ୍ରାନ୍ତର) ବିସ୍ତୃତ ହୋଇଅଛି । ଏହି ପ୍ରାନ୍ତର ସ୍ୱୟଂ ଶିବଙ୍କଦ୍ୱାରା କର୍ଷିତ ହୋଇଥିବାର ସ୍ଥାନୀୟ କିମ୍ବଦନ୍ତୀ ଶୁଣାଯାଏ । ଲାଙ୍ଗଳେଶ୍ୱର ନିକଟବର୍ତ୍ତୀ ସିକତାମୟ, ଭୂମିମାନଙ୍କରେ ଆରଣ୍ୟ ରଙ୍ଗଣପୁଷ୍ପର ଶୋଭା ଓଡ଼ିଶାରେ ଗୋଟିଏ ଚିତ୍ତମୋହକର ଏବଂ ବିସ୍ମୟଜନକ ଦୃଶ୍ୟ । ଶଗଡ଼ବାଟୁଆ ବୃକ୍ଷ ଏହି ସିକତାମୟ ସ୍ଥାନରେ ବିଶେଷ ପରିମାଣରେ ଦେଖାଯାଏ । (୩) ରାଇବଣିଆ, ଫୁଲହଟା ପ୍ରଭୃତି ଦୁର୍ଗମାନ ସୁବର୍ଣ୍ଣରେଖାର ସନ୍ନିହିତ । ରାଇବଣିଆ ପରି ବୃହତ୍ ଦୁର୍ଗ ଓଡ଼ିଶାରେ ଆଉ ନାହିଁ । ଏହି ଗଡ଼ ପୂର୍ବେ ମୟୂରଭଞ୍ଜର ଅନ୍ତର୍ଗତ ଥିଲା । (୪) ନୀଳଗିରି ରାଜଧାନୀର ସନ୍ନିହିତ ପର୍ବତର ନାମ ସ୍ୱର୍ଣ୍ଣଚୂଡ଼ ବା ସୁନଚୂଟ । ବାଲେଶ୍ୱରର ନିକଟବର୍ତ୍ତୀ ପର୍ବତମାନଙ୍କ ମଧ୍ୟରେ ଏହା ସର୍ବୋଚ୍ଚ । ଚଟକା ନିର୍ଝର ନୀଳଗିରିରୁ ପ୍ରାୟ ଦୁଇ କ୍ରୋଶ ଦୂରରେ ଅବସ୍ଥିତ । (୫) ସୋରରେ ବହୁ ପୁରାତନ ଏବଂ ବୃହତ୍ ପୁଷ୍କରିଣୀ ଅନେକ ଦେଖାଯାଏ । (୬) ଶରାପୁରର ଖେଳାଇ ଦେବୀ ସୋରର ପ୍ରସିଦ୍ଧ ଦେବତା । (୭) ମହମାନ୍ ଏବଂ ଦେବଗିରି ଏହି ଦୁଇ ପର୍ବତ ମଧ୍ୟରେ ମଙ୍ଗଳପୁର ଅବସ୍ଥିତ । ମୁଗୁନିପଥରର ବାସନ ସକାଶେ ମଙ୍ଗଳପୁର ପ୍ରସିଦ୍ଧ । (୮) ପାଟଣା – ଦେବଗିରିର ପାଦଦେଶରେ ଅବସ୍ଥିତ । ଦେବଗିରିରେ ମଣ୍ଡଳେଶ୍ୱରୀ ଦେବୀ ପ୍ରତିଷ୍ଠିତ ଅଛନ୍ତି । ପୂର୍ବକାଳରେ ଏହି ଦେବୀଙ୍କ ନିକଟରେ ନରବଳି ହେଉଥିଲା ।

ନୃମୁଣ୍ଡମାଳିନୀ ଉଗ୍ରଚଣ୍ଡୀ ଦେବୀ ମଣ୍ଡଳେଶ୍ୱରୀ।
ଚିତ୍ରାଙ୍ଗ ଶାର୍ଦ୍ଦୂଳ ସଦା ଯାର ଆଜ୍ଞାକାରୀ କିଙ୍କର,
ମେରିଆ ଶୋଣିତେ ନିରତେ ପୂରିତ ଯାର ଖର୍ପର।
କୂପାରି (୧) ଯା ଟଙ୍କେ କୂପେଶ୍ୱର ହର ଏବେ ବସନ୍ତି,
ପୁରାକାଳେ ଯହିଁ ଉଡୁଥିଲା ବୌଦ୍ଧ-ବଇଜୟନ୍ତୀ।
ଅଦୂରେ ଯାହାର ବିରାଜଇ ଶାରୀ-ଶୁଆ ପର୍ବତ,
ଶାରି ଶୁଆ ରବେ ଝଙ୍କାରିତ ଯାର ଗୁହା ସତତ।
ନାଗବଲ୍ଲୀ-ଦଳ-ବଳରେ ଶ୍ୟାମଳ ବିଶାଳଖଣ୍ଡ, (୨)
ତାଳବନେ ଯହିଁ, ମରମରେ ସିନ୍ଧୁ-ବାୟୁ ପ୍ରଚଣ୍ଡ।
କଇଁସାରି ଲତା-ଶ୍ୟାମଳ ସିକତା-କୂଳେ ବିହାର
କରୁଥାନ୍ତି ଯହିଁ କୃଷ୍ଣସାର ସଙ୍ଗେ କୁରଙ୍ଗୀବାର।
ଅଯାଚିତବୃତ୍ତି ଅଜଗର ତୃଣ-ଭୂମିରେ ଲାଖି
ଓଟାରିବା ଆଶେ ଶ୍ୱାସେ ମୃଗ ଯହିଁ ରହନ୍ତି ଟାକି।
ସରହାର (୩) ଯାର ଟଙ୍କୁ ଝରୁଅଛି ପବିତ୍ର ଧାର –
କାଁଶବାଁସ ନାମେ ସୋରକଣ୍ଠେ ଗଜ-ମୁକ୍ତାହାର।
ଯା ରୁଚିର-ତୀରେ ସ୍ଫୁରି ପରିମଳ-ମୟ ମଳୟ
ପୁଷ୍ପିତ-ପଳାଶେ ସିନ୍ଦୂରିତ କରେ ଆଶାବଳୟ।
ଗୁଡୁ (୪) ଅଭିହିତ କୁଶାଙ୍କୁରମୟୀ-ପବିତ୍ରସ୍ଥଳୀ,
କୁରଙ୍ଗ-ସେବିତ, ବିରାଜନ୍ତି ଯହିଁ ଦେବ ଲାଙ୍ଗଳୀ।
ପାଟଣ (୫) ମଙ୍ଗଳା ପ୍ରତିଷ୍ଠିତ ଯହିଁ ପୟୋଧି-ତଟେ,
ବୈତାଳିକ ପ୍ରାୟେ ଶ୍ରୀପଦେ ପୟୋଧି ନିରତେ ଖଟେ।
ମାଗଧ ଅନୂପେ ସୀମାସ୍ତମ୍ଭରୂପେ ତୋଳିଛି ଶିର
ଯେ ଦେଶେ ବିରଞ୍ଚି-ନାରାୟଣଙ୍କର (୬) ତୁଙ୍ଗ ମନ୍ଦିର।
ଧାମରା ମୋହାଣେ ପାଣ୍ଡୁ ଜଳାରଣ୍ୟେ ବାହୁଁ ନୌଚର
ପୂର୍ବମୁଖେ ତରୀ ଦେଖଇ ସମ୍ମୁଖେ ମହାସାଗର।
ନୀଳ-ସେତୁ-କାନ୍ତି ଧରିତ୍ରୀର ଶ୍ୟାମ ସୀମା-ବଳୟ,
ଅଲଂଘ୍ୟ, ଅଜେୟ, ଚରାଚର-ତ୍ରାସ ବରୁଣାଳୟ।
ଉପରେ ଉପରେ ଆସିଣ ଭୀଷଣୁ ଭୀଷଣତର
ଫେନିଳ ଲହରୀ ଦୋହଲାଉଥାଇ ପୋତପଞ୍ଜର।
ତରଙ୍ଗେ ଓଲଟି କ୍ରୂର-ରଙ୍ଗେ କରି ମୁଖ ବ୍ୟାଦାନ
ନକ୍ର ଶିଶୁମାର ଶୋଷି ନେଉଥାନ୍ତି ନାବିକ ପ୍ରାଣ।
ପ୍ରଳୟ ଆଶଙ୍କା ଉପୁଜାଇ ସିନ୍ଧୁ ସଖା ଉତ୍ତାଳ
କରୁଥାଇ ପୁଣ ଛିନ୍ନ ଭିନ୍ନ ଗୁଣ-ବୃକ୍ଷେ ଅଷ୍ଟାଳ।

(୧) ସୋରର ଦକ୍ଷିଣପଶ୍ଚିମରେ ଅବସ୍ଥିତ। ଏହି ସ୍ଥାନରେ ବୌଦ୍ଧକୀର୍ତ୍ତିର ଚିହ୍ନମାନ ଅଦ୍ୟାପି ଲକ୍ଷିତ ହୁଏ। (୨) ବିଶାଳଖଣ୍ଡ – ପ୍ରଚଳିତ ନାମ ବିଶଳଖଣ୍ଡ – ସୋରର ପୂର୍ବବର୍ତ୍ତୀ ସମୁଦ୍ରସନ୍ନିହିତ ସ୍ଥଳୀ। (୩) ସୋରର ପଶ୍ଚିମବର୍ତ୍ତୀ। ଏହି ଅଞ୍ଚଳରେ ଅସଂଖ୍ୟ ପଳାଶବୃକ୍ଷ ଦେଖାଯାଏ। (୪) ସୋରର ପୂର୍ବଦକ୍ଷିଣ କାଁଶବାଁସ ନଦୀର ସନ୍ନିହିତ ସ୍ଥାନ। ଏହି ଅଞ୍ଚଳର ଜଳପାହିମାନଙ୍କରେ ଅନେକ ହରିଣ ରହିଥାନ୍ତି। (୫) କରଞ୍ଜଆଗଡ଼ର ଅଦୂରବର୍ତ୍ତୀ ସିକତାମୟ ପ୍ରଦେଶରେ ପାଟନ ମଙ୍ଗଳାଙ୍କ ମନ୍ଦିର ପ୍ରତିଷ୍ଠିତ। (୬) ପାଳିଆ ନାମକ ସ୍ଥାନରେ ବିରଞ୍ଚିନାରାୟଣଙ୍କ ମନ୍ଦିର ପ୍ରତିଷ୍ଠିତ। ଏହି ସ୍ଥାନ ଭଦ୍ରକରୁ ପ୍ରାୟ ଚାରି କ୍ରୋଶ ପୂର୍ବରେ ଅବସ୍ଥିତ। ଏହିଠାରେ ମାଗଧ ଅଞ୍ଚଳ ଶେଷହୋଇ ଅନୂପ ପ୍ରଦେଶ ଆରମ୍ଭ ହୋଇଅଛି।

ଧନ-ଜନ-ପ୍ରାଣ-ବିନାଶ ଚିନ୍ତାରେ ହୋଇ ଅଥୟ
ଭୟେ ଜଡ଼ କର ଯୋଡ଼ି ପୋତ-ପତି ଯାଚେ ଅଭୟ।
ତେଜୋଧାମ ଯେଉଁ ଧାମରୀ (୧) ଦେବୀଙ୍କ କଞ୍ଜପଦରେ,
ତାଙ୍କ ଅଧିଷ୍ଠିତ ଭୂମିରୁ ଆସିଲେ ଭୂପ-କୁମରେ।
ଭେଡ଼ା ଆଖ୍ୟାଧାରୀ ବୃକ୍ଷହୀନ ଭୂମି ସମୁଦ୍ର ଦାଢ଼େ,
ଦ୍ୱୀପ ପ୍ରାୟେ କ୍ଷୁଦ୍ର ଜନପଦ ଯହିଁ ଭାସେ ଆଷାଢ଼େ।
ନୀଡ଼ କ୍ରୋଡ଼େ ବସି ସାରସ-ଦମ୍ପତି ଯହିଁ ନିରୋଳେ
ପ୍ରାଂଶୁ-ତୃଣ-ବନେ ଦୋଳୁଥାନ୍ତି ସିନ୍ଧୁ-ବାୟୁ-ହିଲ୍ଲୋଳେ।
ଭୀଷଣ ଅରଣା-ବେଣା-ବଣେ ଯହିଁ ମହା ବିଷମ,
ଯମଙ୍କ ବାହନ ବୋଲାନ୍ତି ସେ ଫଳେ ସେହି ସେ ଯମ।
ବୈତରଣୀ ଅଙ୍ଗୁ ବହିଣ ଗେଙ୍ଗୁଟି ପ୍ରସନ୍ନନୀରା
ଧୋଉଅଛି ଯହିଁ ମରୀଚିକାମୟୀ କ୍ଷେତ୍ର ଗୋହିରା। (୨)
ନିମିଷେ ଉତ୍ତର-କାଳେ ଗଲେ ସର୍ବେ ଦେବତା ଉଭି,
ବାଜିବାରୁ ଯହିଁ କଳାପାହାଡ଼ର ରଣ-ଦୁନ୍ଦୁଭି।
ନିମିଷେ ସରିଲା ଯହିଁ ଉତ୍କଳର ଗୌରବ-ଆଶା,
ଲକ୍ଷ ବୀର-ରକ୍ତେ ଉତ୍କଳର ହେଲା ଭାଗ୍ୟ-ମୀମାଂସା।
ମେଘାସନ (୩) ବନ ଦ୍ରୁମ ଛାୟାରାଜି ଅନ୍ଧାରେ ଯାର
କନ୍ଦରୁ ଝରଇ ମୃଦୁ କଳନାଦେ ନିର୍ମଳ ଧାର।
ଉପଳେ ସୈକତେ ସ୍ୱଚ୍ଛସ୍ରୋତ ଯାର ନିରତେ ବହି
ପତ୍ର ପୁଷ୍ପ ଫଳ ଶସ୍ୟରେ ମଣ୍ଡନ କରଇ ମହୀ।
ଜ୍ୟୋତିର୍ଲିଙ୍ଗ ପ୍ରଭୁ ସ୍ୱୟମ୍ଭୂ ଅନିଳ ଯା ତୀରବାସୀ,
ଯା ହୃଦ-ମଣ୍ଡନ ସୀତା କୁଣ୍ଡ-ପୟଃ ପୀୟୂଷରାଶି।
ଯା କୂଳେ ଭଦ୍ରକେ ଛନ୍ତି ରୁଦ୍ର-ଜାୟା ଭଦ୍ରକାଳିକା,
ଦପାନିବାସିନୀ ଦୁର୍ଗତିନାଶିନୀ ଦେବୀ ନାୟିକା।
ଗୋନାସିକା-ଶୈଳ-ସୁତା-ପୂତ-ସ୍ରୋତେ ଦ୍ୱାଳେ ଯେ ଜଳ
ପ୍ରକ୍ଷାଳି ସଙ୍ଗମେ ଆଖଣ୍ଡଳମଣି-ପାଦକମଳ।
ସେହି ପୂତ-ସ୍ରୋତ-ତୀରସ୍ଥିତ-ଜନ-ପଦ-ନଗରୀ-
ବାସୀ ଆସିଥିଲେ ଉଷା-ଲାଭ-ଆଶା ହୃଦୟେ ଧରି।
ନ ପୂରିଲା ଆଶା, ପଣ ଅନୁସାରେ ଶିର ନିଜର
ଦେଲେ ନଗରୀର ଦକ୍ଷିଣ ମଶାଣେ ନୋହି କାତର।
ମନ୍ତ୍ରର ସାଧନ, ଶରୀର-ପାତନ, ବେନିରୁ ଏକ

(୧) ଧାମରୀ ଦେବୀଙ୍କଠାରେ ଏହି ଅଞ୍ଚଳର ନାବିକମାନେ ପ୍ରାୟ ସର୍ବଦା ପୂଜା ଦିଅନ୍ତି। ମାଗଧର ସୀମାରୁ ଆରମ୍ଭ ହୋଇ ଭେଡ଼ା ଅଞ୍ଚଳ ସମୁଦ୍ରକୂଳ ପର୍ଯ୍ୟନ୍ତ ବିସ୍ତୃତ ହୋଇଅଛି। ବର୍ଷାକାଳରେ ଏହି ଅଞ୍ଚଳର ଗ୍ରାମମାନ କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପ ପ୍ରାୟ ବୋଧହୁଅନ୍ତି। ପୂର୍ବେ ଏହି ଅଞ୍ଚଳରେ ଆରଣ୍ୟ ମହିଷର ବିଶେଷ ଉପଦ୍ରବ ଥିଲା। (୨) ଗୋହିରାଟିକିରୀ— ଯାଜପୁରରୁ ଧାମନଗର ଯିବା ମାର୍ଗରେ ସୁବିସ୍ତୃତ ଗୋହିରା କ୍ଷେତ୍ର ଅବସ୍ଥିତ। ମୁକୁନ୍ଦଦେବ ଏହି ସ୍ଥାନରେ ଯୁଦ୍ଧରେ ହତ ହୋଇଥିଲେ ବୋଲି ଐତିହାସିକ କିମ୍ବଦନ୍ତୀ ଅଛି। (୩) ମୟୂରଭଞ୍ଜ ଅନ୍ତର୍ଗତ ମେଘାସନ ଶୈଳରୁ ସାଳନ୍ଦୀ ନିର୍ଗତ ହୋଇଅଛି। ସୀତାକୁଣ୍ଡ କାଉପୁର ନିକଟରେ ଅବସ୍ଥିତ। ଏହିଠାରେ ସାଳନ୍ଦୀର ଶଯ୍ୟା ପ୍ରସ୍ତରମୟ। ଅନିଳ ମହାଦେବ, ଭଦ୍ରକାଳୀ ଏବଂ ଦପା ନାମକ ଗ୍ରାମରେ ପ୍ରତିଷ୍ଠିତ ନାୟିକା ଦେବୀ ସାଳନ୍ଦୀକୂଳର ପ୍ରଧାନ ଦେବତା। ଗୋନାସିକା ଶୈଳସମ୍ଭୂତ ବୈତରଣୀରେ ସାଳନ୍ଦୀ ମିଶିଅଛି। ଉଭୟର ସଙ୍ଗମସ୍ଥଳରେ ଭଗବାନ୍ ଆଖଣ୍ଡଳମଣି (ଅପର ନାମ ଆରଡ଼େଶ୍ୱର) ପ୍ରତିଷ୍ଠିତ।

ହେଲେ ବୀରଙ୍କର ତୁଟଇ କି କେବେ ସଂସାରେ ଟେକ ?
ରୂପ-ଗୁଣ-ବଳେ ନର-କୁଳେ ଧନ୍ୟ ଥିଲେ ସକଳେ,
ମାତ୍ର ରୂପ-ଗୁଣ ଫଳେ କି ଲଲାଟ ଲେଖନ ଟଳେ ?
ବଳୀ ହୋଇ ଦୈବ ବିଧାନକୁ କିଏ କରିବ ଆନ,
ମହାବଳିଠାରୁ ବଳିଆର ପୁଣି ଦୈବ-ବିଧାନ ।
ଏହିରୂପେ ରାଜ-ସୁତେ ନୁରୁ-ପୁର ଦକ୍ଷିଣଭାଗେ
ହତ ହେଲେ ଦେବୀ କରାଳୀ ବିଜୟ ପ୍ରତିମା ଆଗେ ।
ଅଦ୍ୟାପି ସେ ସ୍ଥଳୀ ଅସଂଖ୍ୟ-କିଶୋର ନୃପ-ସୂନୁର
ଶୋଣିତେ ପଙ୍କିଳ ହୋଇ ବୋଲାଉଛି ଶୋଣିତପୁର (୧) ।
ସବୁ ରାଜସୁତ ଦର୍ପ ଏଥି ଯେଣୁ ହେଲାଟି ଚୂନା,
ଦର୍ପି-ଦର୍ପ-ହର ସ୍ଥଳୀ ବୋଲି ଅଛି କଥା ପୁରୁଣା ।
ଦିନେ ଉଷା ସଖୀ ଗହଣେ ପ୍ରତ୍ୟୁଷେ ମହାକୌତୁକେ
ବରାହ-ମୃଗୟା ପାଇଁ ପୁରୁଁ ଗଲା ପଶ୍ଚିମ ମୁଖେ ।
ରାମ-ଶରାଙ୍କିତ ଲଳିତ-ମୂରତି ଯହିଁ ମୁରାରି
ଏବେ ଛନ୍ତି ସପ୍ତ-ସ୍ରୋତା-ତୀରେ ଗୋପ-ନେପଥ୍ୟଧାରୀ । (୨)
ଝିଲ୍ଲି-ଝଙ୍କାରିତ ମହାରଣ୍ୟ ତହିଁ ଥିଲା ସେ କାଳେ,
ସଦା ସୁଶୀତଳ ନାନା ବନସ୍ପତି ବ୍ରତତୀ-ମାଳେ ।
ମହାଘୋରବନ, ପଶିବାକୁ ଯହିଁ ଡରନ୍ତି କାଳ,
ପୁଞ୍ଜିତ ହୋଇଛି ଯେହ୍ନେ କୃଷ୍ଣପକ୍ଷ ଅନ୍ଧାରଜାଳ ।
ଅଶନ, ଶିଂଶପା, କକୁଭ, ତିନ୍ଦୁକ, କୁଟଜ, ଶାଳ,
ହରୀତକୀ, ନୀପ, ଧାତ୍ରୀ, ବିଭୀତକୀ, ଧବ, ପିଆଳ ।
ଏ ଆଦି ଗହନ ପାଦପେ ଗହଳ ଥିଲା ସେ ସ୍ଥଳୀ,
ସରୋଜାଳଙ୍କୃତ ଠାବେ ଠାବେ ଥିଲା ସଜଳ-ଜଳୀ ।
ଅଦୂରେ ତାହାର ନଳ-ବନାକୀର୍ଣ୍ଣ ବିସ୍ତୀର୍ଣ୍ଣ ସର,
ନୀର-ଆସ୍ତରଣ ନୀଳିମାରେ ଜିଣେ କଳାଭ୍ରମର ।
କାହିଁ ନୀର ପାଣ୍ଡୁ ବର୍ଣ୍ଣ ପଡ଼ି ପଦ୍ମ କେଶରଧୂଳି
ତାରକିତ କାହିଁ କରିଛି ପ୍ରସୂନେ ପାଣି ଶିଉଳୀ ।
ନୟନ ଶୀତଳ-କାରୀ ପଦ୍ମବନ ଶ୍ୟାମାୟମାନ,
ସମୁକୁଳେ ତହିଁ ଦୋଳେ ପଦ୍ମ-ଫୁଲ ଶୋଭା ନିଧାନ ।
ଦୂରୁଁ ପାଇ ମନ୍ଦ ସମୀରେ ବିକଚ଼ କମଳ ଗନ୍ଧ
ଗୁଞ୍ଜରି ଧାଆନ୍ତି ଅଳି-ପୁଞ୍ଜେ ମଧୁ ସୌରଭେ ଅନ୍ଧ ।
ବିତରଇ ନୀଳ କଇଁ ଅପ୍ରଗଲ୍‌ଭ ସ୍ନିଗ୍ଧ-ସୌରଭ,
ବ୍ରୀଡ଼ାବତୀ ନବ ପ୍ରେମଶୀଳା-ପ୍ରେମ ଉଲ୍ଲାସ-ପ୍ରଭ ।
ଲଳିତ-ମାରୁତେ ଦୂରୁ ଶୁଭେ ଯହିଁ ଶରାଳି-ସ୍ୱନ
ଜଳଦେବୀଙ୍କର କିଙ୍କିଣୀ-ଶବଦ ପ୍ରାୟେ ମୋହନ ।
ଶକ୍ର-ଧନୁ-ଖଣ୍ଡ ପ୍ରାୟେ ମସରଙ୍କ ଶଫରୀ ଲକ୍ଷ୍ୟ

(୧) ଶୋଣିତପୁର— ପ୍ରଚଳିତ ନାମ ସୁନହଟ । ଏହି ସ୍ଥାନଟି ନଗରର ଦକ୍ଷିଣରେ ଅବସ୍ଥିତ । ଶୋଣିତପୁରରେ କାହାରି ଗର୍ବ ରହି ନାହିଁ, ଏ ଗୋଟିଏ ସ୍ଥାନୀୟ କିମ୍ବଦନ୍ତୀ । (୨) ରେବେଣାପ୍ରତିଷ୍ଠିତ କ୍ଷୀରଚୋରା ଗୋପୀନାଥ । ରାମଚନ୍ଦ୍ର ଶରଦ୍ୱାରା ପ୍ରସ୍ତରରେ ଏହାଙ୍କର ବିଗ୍ରହ ଖୋଦିତ କରିଥିଲେ ବୋଲି ସ୍ଥାନୀୟ କିମ୍ବଦନ୍ତୀ ଅଛି । ସପ୍ତସ୍ରୋତା ଗୋପୀନାଥ ମନ୍ଦିରର ଅତି ନିକଟବର୍ତ୍ତୀ ।

ପରେ ରଖି ଆଖି ସ୍ଥିର ଥାଇ ଶୂନ୍ୟେ ଝାଡ଼ଇ ପକ୍ଷ ।
ମୀନ ଲୋଭେ କଳା ପାଣି କାକ ବୁଡ଼ି ଆଲୋଡ଼େ ଜଳ,
ଦୀର୍ଘଗ୍ରୀବା ଟେକି ସ୍ଥାନେ ସ୍ଥାନେ ବକ ଧ୍ୟାନେ ନିଶ୍ଚଳ ।
ନିକାଞ୍ଚନେ ରହି, ନିଃଶଙ୍କେ ବିହରି ଚାହାନ୍ତି ନାହିଁ
କଙ୍କ, ହଂସରାଜୀ ଯହୁଁ ଗୋଡ଼ କାଢ଼ି ଯିବାକୁ କାହିଁ ।
ବନପଶୁଙ୍କର ସଞ୍ଚରଣଯୋଗ୍ୟ ସର ସେ ଜାଣି
ଜଗନ୍ତି ମୃଗୟା-ଜୀବୀ ତୀର-ବନେ କୋଦଣ୍ଡପାଣି ।
ବିଧ୍ୟ-ଶିଖ-ସୀମା ତହିଁ ନୃପ-ଜେମା ଗୁପତେ ବସି
ମୃଗୟା-ଉଦ୍ଦେଶ୍ୟେ ଉତ୍ସୁକେ ନିରେଖୁ ଥିଲା ସରସୀ ।
ବନପଶୁ ଆଶେ ତହିଁ ବସି ବେଳ ହେଲା ବିସ୍ତର,
ହରିଦଶ୍ୱ (୧) ହରି ବିକ୍ରମେ (୨) କ୍ରମଶଃ ହେଲେ ପ୍ରଖର ।
ସହସ୍ର-କରେ ସେ ଭୂତଳେ ପିଙ୍ଗିଲେ ଅନଳଗୁଣ୍ଡି,
ତରୁ-ଷଣ୍ଡେ ଲୁଚି ସଘନେ ରଡ଼ିଲା ସିନ୍ଦୂରମୁଣ୍ଡୀ । (୩)
ଆତପ-ସନ୍ତାପେ ପଦ୍ମ-ବନୁ ଉଡ଼ି ଭ୍ରମର-କୁଳେ
ଫୁଲ୍ଲ-କର୍ଣ୍ଣିକାର ଗରଭେ ପଶିଲେ ଘର୍ମ-ଆକୁଳେ ।
ବାସର-ଯୌବନ ଘୋଷିଲେ ସଘନେ ବନେ ଟୋପର, (୪)
ସେ ସ୍ୱରେ ମିଶିଲା ଦୂର-ବନୁ କ୍ଳାନ୍ତ କୁକ୍କୁଟ-ସ୍ୱର ।
ବନ-ପଶୁ-ପକ୍ଷୀ ମଧ୍ୟଦିନ ରୌଦ୍ର ତାପେ ଅଥୟ,
ରବି-ରଶ୍ମି-ରୋଧୀ ଲତା-କୁଞ୍ଜ-କ୍ରୋଡ଼େ ନେଲେ ଆଶ୍ରୟ ।
ଜଳ-ପାନ-ଆଶେ ପ୍ରଥମେ ଆସିଲେ ହରିଣୀ-ଦଳ
ଚଉଦିଗେ ଚାହିଁ ଅଳସେ ଚୋବାଇ କୁଶ-କବଳ ।
ସର୍ବାଗ୍ରେ ବିପଦେ ଯୂଥତ୍ରାଣ ପାଇଁ ଦିଏ ଯେ ପ୍ରାଣ
ଗର୍ବଭରେ ଅଗ୍ରସର କୃଷ୍ଣସାର ଦୀର୍ଘ-ବିଷାଣ ।
ସ୍ତନ୍ୟପାୟୀ ଶିଶୁ ମୁହୁର୍ମୁହୁ ସ୍ତନ ଶୋଷଣେ ରତ
ଥିବାରୁ ମୃଗୁଣୀ ଖର-ଗତି ହେଉ ଥିଲା ବ୍ୟାହତ ।
ଏକେ ଏକେ ସର୍ବେ ସରସେ ପ୍ରବେଶି ପିଇଲେ ଜଳ,
ଜଳ ପିଉଁ ପିଉଁ ଚାହାନ୍ତି ଚୌପାଶେ ତ୍ରାସେ ତରଳ ।
ଜଳ ପିଇ ସର୍ବେ ବନେ ବାହୁଡ଼ନ୍ତେ, ସହସା ସରେ
ପଶିଲେ ବିକଟ ଦଂଷ୍ଟ୍ରାବନ୍ତ ବେନି ବନ୍ୟ-ଶୂକରେ ।
ଘୋର-ଘୋଣାଘାତେ କ୍ଷଣେ ସର-ଶାନ୍ତି କରି ସେ ଦୂର
ପଙ୍କ ଆଲୋଡ଼ିଣ ଭକ୍ଷିଲେ ଶାଳୂକ ମୁସ୍ତା ପ୍ରଚୁର ।
ପଙ୍କ-ଶଇବାଳେ ବୋଳା ହୋଇ ଜଳୁଁ ଉଠୁଁ ଉଲ୍ଲାସେ
ଶୂଳ-ହସ୍ତେ ଉଷା ସେହି କ୍ଷଣେ ଆସି ମିଳିଲା ପାଶେ ।
ଉଷାକୁ ଦେଖି ସେ ସରୋଷେ କର୍କଶ ସଟା ଫୁଲାଇ
ମିଶିବା ଆଶାରେ ଗଲେ ଖର-ବେଗେ ସକଖେ ଧାଇଁ ।
ବେନି ମଧ୍ୟୁଁ ଏକ ଉଷା-ଶୂଳ-ମୁନେ ହେଲା ଗ୍ରଥିତ,
ଅନ୍ୟ ଶରେ ଭିନ୍ନ ହୋଇ ଅର୍ଦ୍ଧପଥେ ହେଲା ପତିତ ।

(୧) ସୂର୍ଯ୍ୟ । (୨) ଆକାଶ । (୩) ପକ୍ଷିବିଶେଷ— ଏହାର ଦେହ ହରିଦ୍‌ବର୍ଣ୍ଣ ଏବଂ ମସ୍ତକ ରକ୍ତବର୍ଣ୍ଣ । ଓଡ଼ିଶାରେ ଏ ପକ୍ଷୀ ସର୍ବତ୍ର ଦେଖାଯାଏ । ରୌଦ୍ରର ଆଧିକ୍ୟ ହେଲେ ଏହା କକ୍ କକ୍ କକ୍ ରବରେ ବନ ଝଙ୍କୃତ କରେ । (୪) ବନପକ୍ଷୀ ବିଶେଷ ।

କେହି ନ ଜାଣିଲେ କେଉଁ ଦିଗୁଁ ସେହି ଶର ଆସିଲା,
ଯଥାକାଳେ ଯଥା ସ୍ଥାନେ ସେହି ଶର କିଏ ପେଷିଲା ।
ଚାରିଦିଗେ ଚାହିଁ ନାରାଏ କିଛି ନ ପାଇଲେ ଅନ୍ତ,
ଶରଫଳେ ଏକା ଅଙ୍କିତ ଦେଖିଲେ ନାମ "ଜୟନ୍ତ" ।
କେତେ କାଳ ସେହି ବ୍ୟାଧ-ପ୍ରତୀକ୍ଷାରେ ରହି ଇଳିତା
ପୂରେ ବାହୁଡ଼ିଲା ସ୍ୱର୍ଣ୍ଣଚୂଡ଼-ଲୟୀ (୧) ଦେଖି ସବିତା ।
ଶାଲ୍ମଳୀ-ଶଇଳେ ହେମପୁର ନାମେ ଥିଲା ବସତି,
ତହିଁ ରାଜପଣ କରୁଥିଲେ ରାଜା ବାହନ-ପତି ।
ଜୟନ୍ତ-ପ୍ରତିମ କୁମର ତାଙ୍କର ଜୟନ୍ତ ନାମ,
ବଳେ ଶକ୍ତିଧର, ଜିଣିଥିଲା ସେହି ଲାବଣ୍ୟେ କାମ ।
ଭାବୁଥିଲେ ଲୋକେ ଦେଖି ସେ ଯୁବାର ବିଗ୍ରହପ୍ରଭା,
ମୂର୍ତ୍ତି ପରିଗ୍ରହି ମର୍ତ୍ତ୍ୟେ ଧନୁର୍ବେଦ ଭ୍ରମଇ ଅବା ।
ଶସ୍ତ୍ରେ ଶାସ୍ତ୍ରେ କରି ଶସ୍ତ୍ରୀ ଶାସ୍ତ୍ରୀଙ୍କର ଦର୍ପ ଖଣ୍ଡନ
ମୃଗୟାରେ ରତ ହେଲା ସେ ତରୁଣ ମୌଳି-ମଣ୍ଡନ ।
ଶାଲ୍ମଳୀ-ଶଇଳ ଭୃଗୁରୁ ବଳାଙ୍ଗୀ ପ୍ରପାତ ଯହିଁ
ନଳବନାକୀର୍ଣ୍ଣ ଜଳୀ-ଗର୍ଭେ କଳ ନାଦେ ଝରଇ ।
ଚକ୍ରାକାରେ ଯହିଁ ଚକ୍ରବାଳେ ରାଜେ ଗିରି-ମଣ୍ଡଳ,
ମହିଷାଳେ ଯହିଁ ନିର୍ଜନେ ଚରାନ୍ତି ମହିଷ-ପଲ,
ସେହି ଜଳୀ-ପ୍ରାନ୍ତେ ବିରଚି ଜୟନ୍ତ ପର୍ଣ୍ଣକୁଟୀର
ମୃଗୟା-ବ୍ୟସନେ ଥିଲା ନିମଗନ ନିରତେ ବୀର ।
ମହେନ୍ଦ୍ର (୨) ଅଚଳେ ଭାର୍ଗବ-ଋଷିଙ୍କି ଭେଟିବା ଆଶେ
ଯାଉଥିଲେ ଦିନେ ଶିଖୀଧ୍ୱଜ ଶିଖୀ ପୃଷ୍ଠେ ଆକାଶେ ।
ଚିର-ସ୍ନେହେ ଥିଲା ବେନିଙ୍କର ମନ ବେନିରେ ଲାଖି,
ବେନିଙ୍କର ଅସ୍ତ୍ର-ଗୁରୁ ଥିଲେ ଯେଣୁ ଦେବ ପିନାକୀ ।
ବନ-ଦେବୀ-ଅନୁରୋଧେ ଶିଖୀ-ଧ୍ୱଜ ଶୈଳେ ଓହ୍ଲାଇ
ଛାଡ଼ିଦେଲେ ଶିଖୀ ବଳାଙ୍ଗୀ-ନିର୍ଝରେ ଚରିବା ପାଇଁ ।
ଅସଂଖ୍ୟ କଳାପୀ ବର୍ଣ୍ଣୋଜ୍ଜ୍ୱଳ ଚାରୁ କଳାପ ତୋଳି
ବ୍ରତତୀ-ଦୋଳାରେ ଖେଳୁଥିଲେ ତହିଁ ଅନିଳେ ଦୋଳି ।
ବନ-ଲକ୍ଷ୍ମୀ ବନେ ଭିଆଇଥିଲେ କି ବର୍ଣ୍ଣ-ଉତ୍ସବ,
କିବା ହୋଇଥିଲା ମର୍ତ୍ତ୍ୟେ ଶତ-ଇନ୍ଦ୍ର-ଧନୁ ଉଦ୍ଭବ ।
ତ୍ରିଦଶ-ମୟୂର ମିଶିଲା ଆସି ସେ ମୟୂର ପଲେ,
ଦେଖି ଅନ୍ୟ ଶିଖୀ ପୂରିଲେ ଗହନେ କେକା ଚହଲେ ।
ସେ ରବେ ଆହୂତ ହୋଇ ତହିଁ କେତେ କ୍ରୂର-ଶବର
ଦେଖିଲେ ସୂର୍ଯ୍ୟାସ୍ତ ଶୋଭା-ଅନୁକାରୀ ସେ ଶିଖିବର ।
ସ୍ୱଭାବେ ଲୁବ୍ଧକ ଲୋଭୀ ହେଲେ ସେହୁ କଳାପ ଦେଖି,
ମନେ ମନାସିଲେ ବଧିବେ ବିଶିଖେ ଅପୂର୍ବ-କେକୀ ।
ଚାପେ ଖଞ୍ଜି ଶର ଆକର୍ଣ୍ଣ ଶିଞ୍ଜିନୀ ଟାଣନ୍ତେ ତାର

(୧) ସ୍ୱର୍ଣ୍ଣଚୂଡ଼ – ନୀଳଗିରି ନିକଟବର୍ତ୍ତୀ ପର୍ବତ । (୨) ଓଡ଼ିଶାର ପଶ୍ଚିମାଞ୍ଚଳର ପର୍ବତମାନଙ୍କର ସାଧାରଣ ନାମ ମହେନ୍ଦ୍ରଗିରି । ଏହି ପର୍ବତରେ ପରଶୁରାମଙ୍କର ଅବସ୍ଥିତିର କଥା ମହାଭାରତରେ ଉଲ୍ଲେଖ ଅଛି । କାର୍ତ୍ତିକେୟ ପରଶୁରାମଙ୍କର ସହଶିଷ୍ୟ, ଉଭୟେ ଶିବଙ୍କଠାରୁ ଅସ୍ତ୍ର ଶିକ୍ଷା କରିଥିଲେ ।

ଶର-ପଥେ ଉଭା ହୋଇ ନିବାରିଲା ନୃପ-କୁମାର।
ଶର-ବନ-ଭବ (୧) ଦେବ ଜାଣି ଏହା ଜୟନ୍ତ ପ୍ରତି
ବାହନ-ବତ୍ସଳ ଅନ୍ତର୍ଗତେ ହେଲେ ପ୍ରସନ୍ନ ଅତି।
ଶୂରୋଚିତ-ବର ସୁରାଗ୍ରଣୀ ଦେବା ପାଇଁ ସରାଗେ
ଉଭା ହେଲେ ଦେବ ନିଜ ଦିବ୍ୟରୂପେ ଜୟନ୍ତ ଆଗେ।
ଶାଣେ ଉତ୍କୀର୍ଣ୍ଣ କି ବରାଙ୍ଗ ଏସନ ଆସଇ ଚିତ୍ତେ,
ଗୌର-ଗ୍ରୀବା-ଦେଶେ କୃଷ୍ଣ-କେଶଗୁଚ୍ଛ ଶୋଭେ କୁଞ୍ଚିତେ।
ଅଯୋଜିତ-ଗୁଣ ଧନୁ-ଶୃଙ୍ଗେ ବୀର ଭଙ୍ଗୀରେ ଭର
ଦେଇ ସବ୍ୟେତର କରେ ଧରିଛନ୍ତି ଶର ଭାସ୍ୱର।
ସ୍କନ୍ଧ-ପୃଷ୍ଠେ ତୂଣ ମୁଖେ ଶର-କଙ୍କ ପତ୍ର ନିଚୟ,
ଦେହୁ ପ୍ରଭା ସ୍ଫୁରି ବନଭୂମି ଦିଶେ କନକମୟ।
ସହସା ସମ୍ମୁଖେ ଆବିର୍ଭୂତ ଦେଖି ଦେବ-କୁମାର
କ୍ଷଣେ ସ୍ତମ୍ଭୀଭୂତ ଚକିତେ ହେଲା ସେ ନୃପ-କୁମାର।
ସାଷ୍ଟାଙ୍ଗେ ପ୍ରଣମି କରଯୋଡ଼ି ଉଭା ହୋଇ ଅଗ୍ରତେ
ଶକ୍ତି-ଧର-ପଦେ ବର-ଭିକ୍ଷା ଯୁବା କଲା ଏମତେ—
''ଦେବ ଶକ୍ତିଧର, ହେଲ ଯେବେ ଦାସ ପ୍ରତି ସଦୟ,
ସଙ୍କଟେ ସ୍ମରିଲେ ଅବତରି ଦାସେ ଦେବ ଅଭୟ।''
''ତଥାସ୍ତୁ'' ଉଚ୍ଚାରି ଦେବ ତାରକାରି ଶିଖୀ-ବାହନେ
ପ୍ରଭାରେ ଉଜଳି ନୀଳ-ବ୍ୟୋମ ଗଲେ ରାମ (୨) ସଦନେ।
ବାହନ-ଶିଖୀରୁ ପଡ଼ିଲା ସେକାଳେ ବର୍ହ ରୁଚିର,
ମହାଦରେ ତୋଳି ନେଲା ସେ କଳାପ ଜୟନ୍ତ ବୀର।
ଭେଟିଲା ଭୂପତି ଛାମୁରେ ତା ନେଇଁ ଭୂପ-ସନ୍ତତି,
ମୁକୁଟର ଭୂଷା କଲେ ସେ ବର୍ହକୁ ବାହନ-ପତି।
ଘେନିଲେ 'ମୟୂରଧ୍ୱଜ' (୩) ପଦ ସେହି ଦିନୁ ରାଜନ,
ସେହି ଦିନୁ ରାଜ୍ୟେ ମୟୂର-ନିଧନ ହେଲା ବାରଣ।
ଉଷା-ସ୍ୱୟମ୍ବର ବାରତା ଜୟନ୍ତ ହରଷେ ଶୁଣି
ନିଜ କରଗତ ପରାୟେ ମଣିଲା ସ୍ୱର୍ଗ ନିଶ୍ରୁଣି।
ଜୟନ୍ତର ରିଷ୍ଟ ଶଙ୍କା ସେହି ବର୍ଷେ କଲେ ଗଣକ,
ପଡ଼ିଲା ନୃପତି ସୁତ-ମନୋରଥ ପଥେ କଣ୍ଟକ।
ସ୍ୱୟମ୍ବରେ ଯିବା ପାଇଁ ନିଷେଧିଲେ ବାହନ-ପତି,
ଶୈଳରୁଦ୍ଧ ସ୍ରୋତ ଦଶାକୁ ଭଜିଲା ଜୟନ୍ତ-ମତି।
କଷ୍ଟେ ଚିତ୍ତାବେଗ ରୋଧି ଗୁରୁ-ଆଜ୍ଞା ମସ୍ତକେ ଧରି
ପୂର୍ବପରି ବୀର ରହିଲା ମୃଗୟା ବିଧି ଆଚରି।
ମୃଗୟା-ବ୍ୟାପାରେ ଏଣେ ତେଣେ ଭ୍ରମି ବ୍ୟାକୁଳମନେ
ଅତର୍କିତେ ଆସି ପ୍ରବେଶିଲା ପୂର୍ବ ବର୍ଣ୍ଣିତ ବନେ।
ସେହି ବନେ ଜଳୀ ତୀରତରୁତଳେ ସଙ୍ଗିନୀଦଳେ
ଉଷାକୁ ପ୍ରଥମେ ଦେଖି ସେ ବୁଡ଼ିଲା ବିସ୍ମୟଜଳେ।

(୧) କାର୍ତ୍ତିକେୟ ଶରବନରେ ଜାତ ହୋଇଥିବା କଥା ପୁରାଣରେ ଅନୁସନ୍ଧେୟ। (୨) ରାମ ଅର୍ଥାତ୍ ପରଶୁରାମ।
(୩) ମୟୂରଧ୍ୱଜ ବଂଶୀୟ ରାଜାମାନେ ମୟୂରଭଞ୍ଜର ପୂର୍ବତନ ରାଜା ଥିଲେ। ସେହି ରାଜବଂଶର ଗର୍ବ ଭଞ୍ଜନ କରି ସିଂହାସନ ଅଧିକାର କରିଥିବାରୁ ବର୍ତ୍ତମାନ ରାଜବଂଶର ନାମ ମୟୂରଭଞ୍ଜ ହୋଇଅଛି। ମୟୂରଭଞ୍ଜର ଇତିହାସରେ ଏହି କଥାର ଉଲ୍ଲେଖ ଅଛି। ବର୍ତ୍ତମାନ ମଧ ମୟୂରଭଞ୍ଜରେ ମୟୂରବଧ ନିଷିଦ୍ଧ ଅଟେ।

ଭାଳିଲା, "ହୋଇଛି ଅବା ଏଥି ବନ ଦେବୀଙ୍କ ମେଳା,
କିରାତିନୀ ବେଶେ ଖେଳୁଛନ୍ତି ପରା ପାରିଧି-ଖେଳା।
କିଅବା ଶବରୀ ରୂପେ ମୁକ୍ତକେଶୀ ହର-ସୁନ୍ଦରୀ
ଯୋଗିନୀ-ଗହଣେ ଭ୍ରମନ୍ତି ରଜତ ତ୍ରିଶୂଳ ଧରି।
ନାହିଁ ନାହିଁ, ସୁର ନାଗରୀରୁଁ ଏଥି ଅଛି ବିଶେଷ,
ମର୍ତ୍ତ୍ୟନାରୀ ବୋଲି ଚିହ୍ନାଇ ଦେଉଛି ନେତ୍ର ଉନ୍ମେଷ।
ନୁରୁ-ରାଜ-ପୁର ନୁହଇ ଏଠାରୁ ଦୂର ବହୁତ,
ଖ୍ୟାତ ଯାର କଥା ଏ ହେବ ପରା ସେ ରାମା ଅଦ୍ଭୁତ?
ନୁରୁ ରାଜଜେମା ନିଶ୍ଚେ ଏହି ବାମା ଲାଗଇ ମନେ,
ପାରିଧି-ବ୍ୟାପାରେ ସଖୀ ସଙ୍ଗେ ଆସି ଅଛି ଗହନେ।
ଏତେଦିନଯାଏ ଥିଲା ସିନା ମୋର ନୟନ ତୁଚ୍ଛ,
ଦେଖି ନଥିଲି ତ କେବେ ଏ ଅପୂର୍ବ ରୂପର ଉଚ୍ଚ।
ସ୍ୱୟମ୍ବରେ କରି ଅଛି ଯେଉଁ ପଣ ବାଳା-ରତନ,
ଏ ରୂପର ଯୋଗ୍ୟ ଅଟଇ ସିନା ସେ ଦାରୁଣ-ପଣ।
ଏ ଟାଣପଣକୁ ଇତର-ପୁରୁଷେ ହେବେ କି ସରି,
କେଶରିଣୀ ମନେ ଆନ କେ ଲାଗିବ ବିନା କେଶରୀ?"
ଏହି ରୂପେ ଭାଳି ଘନ ତରୁପର୍ଣ୍ଣେ ଆବରି ଅଙ୍ଗ
ଶାର୍ଙ୍ଗ ଧନୁଃଶର ହସ୍ତେ ଦେଖୁଥିଲା ନାରୀଙ୍କ ରଙ୍ଗ।
ବିପଦ-କବଳେ ଅବଳାକୁ ଦେଖି ଫିଙ୍ଗିଲା ଶର,
ଯେ ଶରେ ଭୂତଳ ଭଜିଲା ବେନିରୁ ଏକ ଶୂକର।
ଉଷା ଦିବ୍ୟରୂପେ ପୂର୍ବୁଁ ହୋଇଥିଲା ଟିକେ ମୋହିତ,
ସାହସ କୌଶଳ ଦେଖି ହେଲା ପୁଣି ଦ୍ୱିଗୁଣ ପ୍ରୀତ।
ପାର୍ଥ ମନ ଶୌର୍ଯ୍ୟେ ସୌନ୍ଦର୍ଯ୍ୟେ ଯେସନ ଯଦୁ-କୁମାରୀ,
ଉଷା ସେହିପରି ଜୟନ୍ତର ମନ ନେଲା ଓଟାରି।
ବୀରାଙ୍ଗନା ସିନା ଗୁଣେ ବୀର ମନ ପାରଇ କିଣି,
ଶୟନେ ସ୍ୟନ୍ଦନେ, ବିଜୟେ ସଙ୍କଟେ, ଯୋଗ୍ୟ ସଙ୍ଗିନୀ।
ରାଜ-ଜେମା-ପ୍ରେମେ ଉନମତ୍ତ ହୋଇ ସେ ନୁରୁ-ପୁରେ
ନିଶା ଯୋଗେ ଯାଇଁ ଉପସ୍ଥିତ ହେଲା ନୃପ-ଛାମୁରେ।
ସବିନୟେ ନିଜ ପରିଚୟ ଦେଲା ଶିର ନୋଆଁଇ,
ଅର୍ଥୀ ହେଲା ବୀର ତରୁଣ ଦାରୁଣ ପରୀକ୍ଷା ପାଇଁ।
ମୁଗ୍ଧ ହେଲେ ଦେଖି ନୃପତି ସହିତେ ଅମାତ୍ୟ-ଜନ,
ଯୁବାକୁ ମଣିଲେ କିଶୋରୀ-ମଣିର ଯୋଗ୍ୟ-କାଞ୍ଚନ।
ଜୟନ୍ତକୁ ଦେଖି ନୃପଙ୍କର ହେଲା ହର୍ଷେ ବିଷାଦ,
ବିବରି କହିଲେ ପରୀକ୍ଷାର ଯେତେ ପୂର୍ବ ସଂବାଦ।
କାଳ-ସ୍ୱୟମ୍ବରେ ଶିର ଦେଲେ ଯେତେ ବୀର-ଯୁବାଏ,
ସମସ୍ତଙ୍କ ନାମ ଏକ ଏକ କରି କହିଲେ ରାୟେ।
କହୁଁ କହୁଁ ତାଙ୍କ ହୃଦେ ଉପୁଜିଲା ଦାରୁଣ-ଖେଦ,
ଅର୍ଥୀ ହେବା ଲାଗି ସଜଳ-ନୟନେ କଲେ ନିଷେଧ।
ମାତ୍ର ନିମ୍ନ-ମୁଖ ପୟଃ ପୁଣି ଦୃଢ଼ ପ୍ରତିଜ୍ଞ ମନ
ଯେତେ ବାରିଲେହେଁ ମାନନ୍ତି ନାହିଁ ସେ କେବେ ବାରଣ।
ଉଷାଗତ ପ୍ରାଣ, ଉଷା ତାର ଧ୍ୟାନ, ଉଷା ସେ ଗତି,

ଉଷା ନ ଲଭିଲେ ପାରିବ କି ପ୍ରାଣେ ତିଳେ ବରତି ?
ପ୍ରଥମ ଦର୍ଶନ ବେଳୁଁ କରିଥିଲା ମନକୁ ଦୃଢ଼,
କାଳ ସ୍ୱୟମ୍ବରେ ଅବହେଳେ କଲା ପ୍ରାଣକୁ ହୁଡ଼। (୧)
ସେହିକ୍ଷଣେ ରାଜ ଆଜ୍ଞା ହୋଇଗଲା ପୁରେ ପ୍ରଚାର,
ପରୀକ୍ଷା ସକାଶେ ଯଥାବିଧି ଠୁଳ ହେଲା ସମ୍ଭାର।
ପ୍ରାତେ ଅଭିନୟ ପୁଣି ହେବ ସେହି ଦାରୁଣ-ବିଧି,
ଜୟନ୍ତ-ଲଲାଟେ କେ କହିବ କିବା ଲେଖିଛି ବିଧି ?
ମହାଚିନ୍ତାକୁଳେ ଯାପିଲା ଜୟନ୍ତ ସେହି ରଜନୀ –
"ମଣି ଲାଭ ହେବ କିଅବା ପଡ଼ିବ ମୁଣ୍ଡେ ଅଶନି।
ଭାଗ୍ୟେ ଥିଲେ ମୋର ପ୍ରାଣ-ସଙ୍ଗୀ ହେବ ସେ ମଦାଳସା,
ନତୁବା ଭଜିବି ପୂର୍ବ-ପ୍ରାର୍ଥି-ରାଜ-ସୁତଙ୍କ ଦଶା।
ଥରେ ମାତ୍ର ପଡ଼ି ନେତ୍ରପଥେ ସେହି ରଙ୍ଗ-ରଙ୍ଗିଣୀ
ହୋଇଅଛି ଚିର ଦିନ ପାଇଁ ମନୋନେତ୍ର-ସଙ୍ଗିନୀ।
ବିଫଳ ହେବ ଏ ଜୀବନ ମୋହର ଉଷା-ବିହୁନେ,
ଏଭଳି ଜୀବନଠାରୁ ମୃତ୍ୟୁ ଶ୍ରେୟଃ ସହସ୍ର-ଗୁଣେ।
ଯାହା ଥାଉ ଭାଗ୍ୟେ, କେବଳ ସାହସ ମୋର ସମ୍ବଳ,
ସାହସୀକୁ ଦେବେ ଅନୁକୂଳ ହୋଇ ଦିଅନ୍ତି ବଳ।"
ଚିନ୍ତାକୁଳ-ଚିତ୍ତେ ଉନିଦ୍ରେ ରଜନୀ ଯାପିଲା ବଳୀ,
ଚିନ୍ତା ନିଦ୍ରା ବେନି ମଧ୍ୟେ ସବୁକାଳେ ସପତ୍ନୀ-କଳି।
ସଂଶୟ-ପ୍ରବାହେ ଚିନ୍ତାକୁଳ-ମନ ବୁଲିଲା ଘୂରି,
ବଳାଙ୍ଗୀ-ହୃଦୟେ ପ୍ଲାବନେ ଯେସନେ ଭ୍ରମେ ଭଉଁରୀ।
ନ ଦିଶୁ ପୂରବେ ଉଷାର ପ୍ରଥମ ପାଟଳ-ରେଖା
ଡେଣାରୁ ଶିଶିର ବିନ୍ଦୁ ଝାଡ଼ି ଦିଏ ନଭେ ଯେ ଦେଖା।
ଢ଼ଳ ଢ଼ଳ ଯାର ତରଳ ସଂଗୀତ ପଥିକ-ଶ୍ରୁତି –
ତାରେ ଝଙ୍କାରଇ ଅତୀତ-ସୁଖର କରୁଣ ସ୍ମୃତି,
ପକ୍ୱ-ଶାଳି-କ୍ଷେତ୍ରେ ଯା ସ୍ୱର-ତରଙ୍ଗ ଭାସେ ଅନିଳେ
ଉଷା-ଉଦ୍‌ବୋଧନ, ଭରତିଆ-ସ୍ୱନ ଶୁଭିଲା ବିଲେ।
ସାଗର-ଶୟନ ପରିହରି ଦେବୀ ବିଶ୍ୱ-ଦ୍ୟୋତିନୀ
ରଞ୍ଜିଲେ ପ୍ରବାଳ-ପାଟଳ-ଆଲୋକେ ନଭ ମେଦିନୀ।
କୋକବଧୂ ସଙ୍ଗେ କମଳିନୀ କଲା ଉଷା-ବନ୍ଦନା,
ସମୁଜ୍ଜ୍ୱଳବେଶେ ଚୌଦିଗେ ହସିଲେ ଦିଗ-ଅଙ୍ଗନା।
ସୁରଞ୍ଜିତ ଦିଶେ ନାନା ଅଙ୍ଗରାଗେ ପ୍ରାଚୀ-ତରୁଣୀ,
ତହୁଁ ବଳି ଶୋଭା ବିକାଶଇ ଶୈଳମୟୀ ବାରୁଣୀ।
ସ୍ତରେ ସ୍ତରେ ଶୋହେ ଶଇଳ-ପ୍ରାଚୀର ଶ୍ୟାମଳ-ଦ୍ୟୁତି,
କାହିଁ ଶୂଳାକୃତି, ଭଲ୍ଲାକୃତି, କାହିଁ ତୋରଣାକୃତି।
କାହିଁ ଅବା କୂର୍ମ-ପୃଷ୍ଠାକାର, କାହିଁ ସେତୁ ଆକାର,
ଉନ୍ନତ, ଆନତ, ସରଳ, କୁଞ୍ଚିତ ବପୁ-ବିସ୍ତାର।
ଉଷା-ରକ୍ତାଂଶୁକେ ରଞ୍ଜିତ ଶ୍ୟାମଳ ଭୂଧରଗଣ
ପିନ୍ଧିଛନ୍ତି ଅବା ଉତ୍ସବେ ମୟୂର- କଣ୍ଠ-ବସନ।

(୧) ପଣ।

ମତ୍ସ୍ୟଶୈଳ (୧) ଦେଖ କିବା ଆଡ଼ମ୍ବରେ ଅଗ୍ରତେ ଠିଆ,
ବସ ପ୍ରାୟେ ଯାର ଦିଶେ ଗଣ୍ଡ-ଶୈଳ, ବାଇଗଣିଆ।
ନିନ୍ଦି ସ୍ନିଗ୍ଧ ନୀଳ-କାନ୍ତି-ମଦେ ନବ-ନୀରଦ-ଘଟା,
ମେହେରାବି-ଦ୍ୱୟ ଆକାଶେ ତୋଳିଛି ମହିଷପଟା।
ଅପରାଜିତାର ନୀଳିମାକୁ ଦେଇ ଶତ ଧିକ୍କାର
ତୋଳିଛି ଅମ୍ବରେ ଶୃଙ୍ଗ ସ୍ୱର୍ଣ୍ଣଚୂଡ଼ ଗୋଶୃଙ୍ଗାକାର।
ଇନ୍ଦ୍ର-ମଣିଚଢ଼ ପ୍ରାୟେ ମାନଗଡ଼ ଶୋଭେ ତାପରେ,
ଦୀର୍ଘ ବିସ୍ତାରିତ ବପୁ ବିଭାସିତ ଲୋହିତ-କରେ।
ଅନ୍ତରାଳେ ଶୋଭେ ଠାବେ ଠାବେ ବାଳ କିରଣ ଲଭି
ପୃଷ୍ଠ ଦେଶେ ଦୂରତର ଶୈଳଶ୍ରେଣୀ (୨) ଅସ୍ପଷ୍ଟ ଛବି।
ବିରାଜଇ ନୀଳ ବର୍ଣ୍ଣେ ଢ଼ଳ ଢ଼ଳ ନଭ-ବିତାନ,
କିଅବା ଅପର ସିନ୍ଧୁ ଊର୍ଦ୍ଧ୍ୱଦେଶେ ଲମ୍ବାୟମାନ।
ଉଡ଼ିଯାଉଛନ୍ତି ହଂସେ ବୋଳା ହୋଇ ରକ୍ତ-ଅଂଶୁକେ
କୃଷ୍ଣୀର ଅରୁଣ (୩) ପୂର୍ବ ପାରାବାର ପୁଳିନ-ମୁଖେ।
ରାଜାଦେଶ ପାଇ ନିଶା ଶେଷ-ଯାମେ ହୋଇ ସତ୍ୱର
ସୁସଜ୍ଜିତ ହୋଇ ଥିଲା ବିଧିମତେ ନୂରୁ-ନଗର।
ନ ଡାକୁଁ କୁକ୍କୁଟ, ନ ହେଉଣୁ ପୂର୍ବେ ଅରୁଣୋଦୟ
ପରିଷ୍କୃତ ହୋଇ ପୁର-ପଥ ହେଲା ତୋରଣମୟ।
ଲୋହିତ ପତାକା ତରୁ-ଶିରେ ଉଡ଼େ ସମୀରେ ଢ଼ଳି,
ଚିତାରେ ମଣ୍ଡିତ ହୋଇଅଛି ପୁର-ବାସୀ-ଦେହଳୀ।
ରଙ୍ଗସ୍ଥଳେ ଦଳେ ଦଳେ ଆସି ହେଲେ ଦର୍ଶକେ ଗଦା,
ନାନାଦିଗୁଁ ହେଲା ଲୋକେ ଲୋକାରଣ୍ୟ ପ୍ରଥମାପଦା।
ଛବି ଅଳିନ୍ଦାଦି ଅସଂଖ୍ୟ-ଦର୍ଶକ ବୃନ୍ଦେ ଶୋଭିତ,
ବାତାୟନ ହେଲା ଲଳନା-ଲୋଚନେ କୁବଳୟିତ!
ପୁରୁଁ ବାହାରିଲେ ନୂରୁ-ନରନାଥ ନନ୍ଦିନୀସହ,
ବାଜିଣ ଉଠିଲା ନହବତେ ଉଚ୍ଚ ନାଦେ ପଟହ,
ଟମକ, ନାଗରା, ମଧୁରିକା, ତୁରୀ, ଭେରୀ, କାହାଳ
ନାଦି ବାଦ୍ୟକାରେ ସର୍ବାଗ୍ରେ ଚାଲନ୍ତି ମାଳକୁ ମାଳ।
କ୍ରୌଞ୍ଚ-ପକ୍ଷଧର ଚିତ୍ରାଙ୍ଗ ପଦାତି ଶାର୍ଦ୍ଦୂଳ-ପ୍ରଭ,
ଫଳକେ ଚିତ୍ରିତ ଶୋଭେ ନାନାବର୍ଣ୍ଣେ ଗଣ୍ଡଭୈରବ। (୪)
ତାଙ୍କ ପଛେ ପଛେ ଗୁରୁ, ପୁରୋହିତ, ପଟଜ୍ୟୋତିଷ,
ରାଜ-ପାତ୍ର-ମନ୍ତ୍ରୀ, ରାଜ-ପାରିଷଦ, ସେନା ଅଧୀଶ।
ସର୍ବଶେଷେ କରୀ ପୃଷ୍ଠେ ନୂରୁରାଜ ନନ୍ଦିନୀ ସହ,
ଚଉଦିଗେ ବେଢ଼ି ସ୍ତୁତି ପଢ଼ୁଛନ୍ତି ବନ୍ଦିନିବହ।
ସିନ୍ଧୁ-ଊର୍ମି ପରି ଆଗେ ଆସୁଛନ୍ତି ମନୁଜ-ବ୍ରାତେ,
ପୂର୍ବ-ଶଶୀ ପରି ଶ୍ୱେତ-ରାଜ-ଛତ୍ର ସର୍ବ ପଶ୍ଚାତେ।
ଉପସ୍ଥିତ ଚଣ୍ଡୀ ଦେଉଳେ ହୁଅନ୍ତେ ନୂରୁ ନରେଶ,

(୧) ମତ୍ସ୍ୟ, ବାଇଗଣିଆ, ମହିଷପଟା, ସ୍ୱର୍ଣ୍ଣଚୂଡ଼ ଏବଂ ମାନଗଡ଼ ପର୍ବତ ପ୍ରଥମାପଦାରୁ ଏକରେଖାରେ ଦୃଷ୍ଟ ହୁଅନ୍ତି। ପ୍ରତ୍ୟେକ ପର୍ବତର ଆକୃତି ବର୍ଣ୍ଣନାର ଅନୁରୂପ। (୨) ଶାଳୁଣୀ ଏବଂ ମେଘାସନ ଶୈଳମାଳା। (୩) ବାଲେଶ୍ୱରର ତିନି କ୍ରୋଶ ପୂର୍ବବର୍ତ୍ତୀ ବେଳାଭୂମିରେ ଇନ୍ଦ୍ରଗୋପପ୍ରଭ ଅସଂଖ୍ୟ ରକ୍ତକର୍କଟ ପ୍ରାୟ ସର୍ବଦା ଦେଖାଯାନ୍ତି। (୪) ପଦାତିକମାନଙ୍କ ଫଳକରେ ଗଣ୍ଡଭୈରବ ପକ୍ଷୀ ଚିତ୍ରିତ ହୋଇଥାଏ।

ବାଜି-ପୃଷ୍ଠେ ଶିଖି-ଧ୍ୱଜ-ସୁତ ତହିଁ ହେଲା ପ୍ରବେଶ।
ଦେହେ ମହୋଜ୍ଜ୍ୱଳ ପରିଚ୍ଛଦ ରତ୍ନ-ଉଷ୍ଣୀଷ ଶିରେ,
ରତ୍ନ-କଟିବନ୍ଧୁ ଅସି-କୋଷେ ଅସି ଝୁଲେ କଟିରେ।
ଅଶ୍ୱରୁ ଓହ୍ଲାଇ ପ୍ରଣମିଲା ଯୁବା ନୃପେ ବିନୟେ;
ଶିଶିର-ମଣ୍ଡିତ କମଳ ଯେମନ୍ତ ନମେ ମଳୟେ।
ଜନତାକୁ ବୀର ନତି କଲା ନତ କରି ଉଷ୍ଣୀଷ,
ପ୍ରୀତ ହୋଇ ସର୍ବେ ଉଚ୍ଚ-ରବେ ଦେଲେ ଶୁଭ-ଆଶିଷ।
ଜୟନ୍ତକୁ ରଙ୍ଗେ ଦେଖି ରାଜ-ବାଳା ହେଲା ସ୍ତମ୍ଭିତ,
ବିଦ୍ୟୁତ-ଗତିରେ ହୃଦେ ପ୍ରବାହିତ ହେଲା ଶୋଣିତ।
ମନୁଁ କରିଥିଲା ନିରାଶେ ପ୍ରଣୟ ପ୍ରସଙ୍ଗ ଦୂର,
ଏବେ ଅଙ୍କୁରିଲା ହୃଦୟେ ଉଦ୍ଦାମ ପ୍ରେମ-ଅଙ୍କୁର।
ତନୁ ପୁଲକିଲା ଅଭିନବ-ପ୍ରେମ ମୋହନ-ବଳେ,
ସୁରଞ୍ଜିତ ହେଲା ଅମଳ-କପୋଳ ଲାଜ-ପାଟଳେ।
ସେହିକ୍ଷଣି ଚିତ୍ତେ ହର୍ଷେ ଉପୁଜିଲା ଘୋର ବିଷାଦ,
ଶୋକାର୍ତ୍ତେ ଭାଳିଲା ହୃଦଗତେ, "ଆହା ଏ କି ପ୍ରମାଦ!
କେତେ ଯୁବା ଆସି ଅକାରଣେ ପ୍ରାଣ ଦେଲେ ଏ ଦେଶେ,
ଅଶ୍ରୁ ବୁହାଇଲେ କେବଳ, ନୟନେ ନ ରୁଚି ଲେଶେ।
ଏ ରୂପ-ମାଧୁରୀ କାହିଁ ଥିଲା ପୁଣି ଭୁବନେ ଲୁଚି?
ଥରେ ପିଇ, ଆହା! ପାରିବ କି ତାହା ନେତ୍ର ମୁରୁଛି?
ସରଳ ସୁଢଳ ଚାରୁ-ବପୁ ଯେହ୍ନେ ଶୋଭା ବିଟପୀ,
କି ମଧୁର ଦିଶେ ଗୌର-ଗଣ୍ଡେ-କଳା କାନ ଝିଲପି!
କେଡ଼େ ଶୋଭା ଧରେ ଚାରୁ-କର୍ଣ୍ଣ-ଯୁଗେ ବୀର-ବଉଳି,
ଶୋଭା ଦେଖି ଯିବ ଶତ-ମନୋଭବ ଶୋଭା ମଉଳି!
କୃଶ-ଶ୍ମଶ୍ରୁ-ରେଖା ନବଜାତ ଚାରୁ ଚିବୁକୋପରେ,
ବାଳ-କମଳକୁ ବେଢ଼ିଛନ୍ତି ଅବା ଶିଶୁ ଭ୍ରମରେ।
ବିଧାତା-ସୌନ୍ଦର୍ଯ୍ୟ ସୃଷ୍ଟିରେ ସାର ଏ ରାଜ-କିଶୋର,
ହୋଇ ନ ଥିବଟି କେତେ ରସବତୀ ହୃଦୟ-ଚୋର!
ପଙ୍କଜାକ୍ଷୀ କେତେ ଭୁବନେ ହେଉ ନ ଥିବେଟି ରଙ୍କ,
ମଣ୍ଡିବାକୁ ଏହି ତରୁଣ-ତିଳକ ଅଙ୍କ-ପଲଙ୍କ?
ସନ୍ତାପ-ହାରିଣୀ କେତେ ତରଙ୍ଗିଣୀ ସଂସାରେ ନାହିଁ,
ମୃଗତୃଷ୍ଣିକାରେ ମନ ଯୁବାମଣି ଦେଲା କିପାଇଁ?
ଶୁଣି ତ ଅଛି ଏ ପୂର୍ବ-ଅର୍ଥିଙ୍କର ଯେତେ ବୃତ୍ତାନ୍ତ,
ଶୁଣି ହେଲା କିପାଁ ଏ ଯୁବା-ବୟସେ ଜୀବନେ କ୍ଳାନ୍ତ?
ଏତେ ବୀର-ଯୁବା ହାରିଗଲେ ଯହିଁ, ତହିଁକି ସରି
ହେବା ଲାଗି ଅବା ଏମନ୍ତ କି ତପ ଅଛି ଆଚରି?
ମୋ ଛାର ତରୁଣୀ ପାଇଁ ହେଲା ଏଡ଼େ ବାଇ କିପାଇଁ?
ଏଡ଼େ ଶ୍ଳାଘ୍ୟ ପ୍ରାଣ ବୟଃ-ରୂପ ଦେବ ହେଳେ ହରାଇ!
ଆହା, କାଲି ପ୍ରାଣ ବଞ୍ଚାଇଲା ବନେ ମୋର ଯେ ଜନ,
ଧିକ, ଶତଧିକ, ମୋ ପାଇଁ ଆଜି ସେ ଦେବ ଜୀବନ!
କେହି ଯେବେ, ଆହା, ଫେରାଇ ଦିଅନ୍ତା ଯୁବା-ମଣିକି,
ତା ପାଦେ ଏ ଛାର ପରାଣକୁ ହେଳେ ଦିଅନ୍ତି ବିକି।

ବୃଥା ମୋ ଆଶାରେ ଜାଳ-ସ୍ୱୟମ୍ବରେ ଦେବାକୁ ମଥା,
ଆଣିଲା ଏହାକୁ ରୂପ-ବୈରୀ କେଉଁ ଉପଦେବତା ?
ଅବଳା-ସୃଷ୍ଟିକୁ ଜିଣିବା ଆଶୟେ କରି ସଙ୍ଖାଳି,
ନ ରଖିଲେ କିପାଁ ରୂପାସ୍ତ୍ର ଏ ରୂପ ଦୂରେ ସମ୍ଭାଳି ?
ନୋହିଥିଲେ, ଆହା, ଏହି ନିଦାରୁଣ ପଣ ପ୍ରଚାର,
ଆଦରେ ଏହାକୁ କରନ୍ତି ନିକି ମୁଁ ଗଳାର ହାର ।
ଏ ଗୁଣ-ସାଗର ନାଗର ହେଲେ ମୋ ପରାଣ-ସଖା,
ହୋଇଯାନ୍ତା ଏହି ମର୍ତ୍ତ୍ୟପୁର ମୋର ପକ୍ଷେ ଅଳକା ।
ଏ ମନେ ଏହାର ସଙ୍ଗେ ହେବି ମୁହିଁ ମର୍ତ୍ତ୍ୟୁଁ ଅନ୍ତର,
ଯାହା ଥିବ ଏହା ଭାଗ୍ୟେ, ସେହି ଭାଗ୍ୟ ଧ୍ରୁବ ମୋହର ।
ତେମୁହାଣି ବନେ ଦ୍ୱନ୍ଦ୍ୱଚ୍ଚରେ ମୁହିଁ ବିନ୍ଧିଲି ଦିନେ,
ଶୋଣିତେ ପାଟଳ ହୋଇ ଛାଡ଼ିଲା ସେ ପ୍ରାଣ ପୁଳିନେ ।
ଶୋକେ ଝୁରି ତାର ସଙ୍ଗେ ମଲା ଦ୍ୱନ୍ଦ-ଚର-ତରୁଣୀ,
କିହି ଅବା ସେହି ଦଶା ଭାଗ୍ୟେ ମୋର ଲିହିଛି ପୁଣି ।''
ବାଜିଣ ଉଠିଲା ଉଚ୍ଚ-ରବେ ରଙ୍ଗ-ଭୂମିରେ ଭେରୀ,
ଉଭାହେଲେ ଲୋକେ ଉଷା-ଜୟନ୍ତକୁ ଚୌଦିଗେ ଘେରି ।
ଉଚ୍ଚୈଃସ୍ୱରେ ଡାକି ଡଗରା ଘୋଷିଲା ପଣ ଉଷାର,
ଗତି-ଅନୁକୂଳ ଯହୁଁ ହେବ, ଯହିଁ ଉପସଂହାର ।
ଜୟେ ପରିଣୟ, ପରାଭବେ ପ୍ରେତ-ବସତି-ଲାଭ,
ମହାସୁଖ ମହା ଦୁଃଖ-ମଧ୍ୟେ ନାହିଁ ମଧ୍ୟମ-ଠାବ ।
ସଙ୍କେତକୁ ଚାହିଁ ପୂର୍ବମୁଖେ ଉଭା ହେଲେ ଉଭୟ,
ରମ୍ଭା-ପତ୍ର ପ୍ରାୟେ ଉଦ୍‌ବେଗେ ଥରିଲା ବେନି-ହୃଦୟ ।
ଜୟନ୍ତ ଏକାନ୍ତେ ଶକ୍ତିଧର ପଦେ କଲା ଜଣାଣ,
''ଭୋ ଦେବ କୁମାର, କର ସେବକକୁ ସଂକଟୁ ତ୍ରାଣ ।
କୃପା-କଟାକ୍ଷରେ କରିପାର ପ୍ରଭୁ ସଙ୍କଟେ ପାରି,
ଘେନା ହେଉ ଦିବ୍ୟ ଅବଧାନେ ଦୁଃଖୀ ଜନ ଗୁହାରି ।
ହରଶୈଳ (୧) କିମ୍ବା ଦେବଗିରି (୨) ତୁମ୍ଭ ବିହାର-ସ୍ଥଳ,
ଅବତରି ତହୁଁ ରକ୍ଷାକର ଦାସେ, ଦାସ-ବତ୍ସଳ !''
ଅନ୍ୟେ ଦୃଶ୍ୟ ନୋହି ସ୍କନ୍ଦ ଉଭାହେଲେ ଭକ୍ତ-ଅଗ୍ରତେ,
କହିଦେଲେ ବୀର ତରିବ ଯେରୂପେ ଦୁରୂହ-ବ୍ରତେ ।
ମାନସର-ଜାତ ତିନି ସ୍ୱର୍ଣ୍ଣପଦ୍ମ ଦେଇ ତା କରେ,
ଆଦେଶିଲେ ତାକୁ ପଥେ ଫିଙ୍ଗିବାକୁ ଗତି-କାଳରେ ।
ପରୀକ୍ଷାରେ ନିଜ ଭକ୍ତଜନ-ଜୟ ମନାସି ମନେ,
ମୟୂର-ବାହନ ନଭେ ବିରାଜିଲେ ମୟୂରାସନେ ।
ସଂକେତ-ଆଶାରେ ସ୍ତବ୍ଧ ଥିଲେ ଜନେ ଶ୍ରବଣ ଡ଼େରି,
ଭୂପତି-ଇଙ୍ଗିତେ ଭୈରବେ ବାଜିଲା ସଙ୍କେତ-ଭେରୀ ।
ଛନକା ପଡ଼ିଲା ଲୋକ-ମନେ ଭେରୀ-ସଙ୍କେତ-ସ୍ୱନେ,
ଦଉଡିଲେ ରାଜ-କୁମାର କୁମାରୀ ଦ୍ରୁତଚରଣେ ।
ଗତି ଦେଖି ଚିତ୍ତେ ଆସଇ, ସାଗର ଲହରୀ ପରେ,
ଦଉଡିଲେ ବେନି, ନ ଲାଗିବ ପାଣି ମୂଳୁଁ ପୟରେ ।

(୧) କୈଳାସ (୨) ଏହି ଦେବଗିରି ମଧ୍ୟଭାରତବର୍ଷରେ ଅବସ୍ଥିତ । ଏହି ପର୍ବତ କାର୍ତ୍ତିକେୟଙ୍କର ପ୍ରିୟ ବାସଭୂମି ବୋଲି ସ୍କନ୍ଦପୁରାଣରେ ଉଲ୍ଲିଖିତ ହୋଇଅଛି ।

ପୃଷ୍ଠଦେଶେ ପୃଷ୍ଠ ଛାଡ଼ି ଅତି ଦ୍ରୁତ ଧାବନ ହେତୁ
ଦିଶେ ବାମା-କେଶ, ରଥେ ଯଥା ବେଗ-ନିଷମ୍ପ-କେତୁ ।
ସର୍ବେ ମନାସନ୍ତି ଜିଣୁ ରାଜ-ଯୁବା, ହାରୁ ରମଣୀ,
'ଜୟନ୍ତର ଜୟ ହେଉ' ରବେ କମ୍ପୁଅଛି ଅବନୀ ।
କେ କହିବ ହେଲା କିଏ ସେହି ରବେ ବିଶେଷେ ସୁଖୀ,
ଜୟନ୍ତ କୁମାର କିମ୍ବା ନୁରୁ ଜେମା ଚନ୍ଦ୍ରମା-ମୁଖୀ ?
ଯେ ଯୁବତୀ ଖର ଗତିବଳେ ଜିଣି ପାରେ ଅନିଳ,
ସେ କିପାଁ କରୁଛି ଠାବେ ଠାବେ ଆଜ ଗତି ଶିଥିଳ ?
ଅତି ଦ୍ରୁତେ ଧାଇଁ ଜୟନ୍ତର ବହେ ଖର-ନିଶ୍ୱାସ,
ମନେ ମଣୁଅଛି ରାମାକୁ ଜିଣିବା ବୃଥା-ପ୍ରୟାସ ।
ତୁଟୁଅଛି କ୍ରମେ ବୀର-ମନୁ ବୀର୍ଯ୍ୟ-ସୁଲଭ-ଦମ୍ଭ,
ତୁଟୁଅଛି ଆଶା ଆଗେ ଛୁଇଁବାର ମାଣିକ୍ୟ-ସ୍ତମ୍ଭ ।
ଦଉଡି ଦଉଡି ଅବସନ୍ନ ହୋଇ ଦାରୁଣ-ଶ୍ରମେ,
ସୁବର୍ଣ୍ଣ-କମଳୁଁ ଫିଙ୍ଗିଲା ଗୋଟିଏ ସର୍ବପ୍ରଥମେ ।
ଶୁଭ୍ର-ରଙ୍ଗେ ଗଡ଼ି-ଗଡ଼ିଣ ଯାଉଛି ପଦ୍ମ ସଘନେ,
ଲୁଚ୍‌କାଳି କିବା ଖେଳଇ ତାରକା ଶାରଦ-ଘନେ ?
ମୁକ୍ତା-କେଶର, ମରକତ-ନାଳ, ହେମ-କମଳ,
ଦେଖି ଭୂଷା-ପ୍ରିୟ ଉଷା ମନ ହେଲା ତୃଷା-ତରଳ ।
ତୋଳିନେଲା ଗଡ଼ି ଯାଉଥିବା ଫୁଲ ଫୁଲ-ବରଣା,
ଅଳଙ୍କାର-ସ୍ପୃହା ଛାଡ଼ି ପାରନ୍ତି କି କେବେ ଅଙ୍ଗନା ?
ଏହି ଅବସରେ ଅଗ୍ରସର ହେଲା ନୃପ-ତନୟ,
ହର୍ଷେ ତାଳି ଦେଲେ ମହାକୋଳାହଳେ ଦର୍ଶକଚୟ ।
ପଦ୍ମନେତ୍ରା ନେତ୍ର ପଲକେ କଲା ସେ କ୍ଷତି-ପୂରଣ,
ଯେତେ ପଛେ ଥିଲା, ତେତିକି ଆଗକୁ ଗଲା ବହନ ।
ପୁଣି ସେହିରୂପେ କୁମାର ଫିଙ୍ଗିଲା ଅନ୍ୟ କମଳ,
ସେହିରୂପେ ତାକୁ ତୋଳି ନେଲା ବାଳା ନଇଁ ଭୂତଳ ।
ଅଳ୍ପ ଦୂର ଅଗ୍ରସର ନ ହେଉଣୁ ଯୁବା-ମଉଳୀ,
ବିଜୁଳି-ଗତିରେ ପଛୁଁ ଧରି ନେଲା ମର୍ତ୍ତ୍ୟ-ବିଜୁଳି ।
ଲକ୍ଷ୍ୟ ଛୁଇଁବାକୁ ଏବେ ଆଉ ନାହିଁ ବହୁ ବିଳମ୍ବ,
ଜଳ ଜଳ ହୋଇ ଅଗ୍ରେ ଝଟକଇ ମାଣିକ୍ୟ-ଖମ୍ବ ।
"ବିହି କି ଲିହିଛି ଏ କ୍ଷଣ ମୋହ ଲଲାଟ-ପଟେ,
ଦେବ ଶକ୍ତି-ଧର, ସାହା ହୁଅ ଏହି ଘୋର-ସଙ୍କଟେ ।"
ଇଷ୍ଟ-ଦେବେ ସ୍ତବି ଏହି ରୂପେ ଯୁବା ଚିନ୍ତା ବିକଳେ,
ତୃତୀୟ-କମଳ ମାଗୁଁ ବହୁ ଦୂରେ ଫିଙ୍ଗିଲା ବଳେ ।
ଦୂରୁଁ ଆଣିବ କି ନ ଆଣିବ ଫୁଲ ଭାଳି ତରୁଣୀ,
ପ୍ରଲୋଭନେ ପଡ଼ି ଦଉଡ଼ି ଦଉଡ଼ି ନେଲା ତା ପୁଣି ।
କୁହୁକ ଲଗାଇ ଦେଲେ ତହିଁ ଶୂର କୃତ୍ତିକା-ସୁତ,
ତୋଳି ନେବା ବେଳେ କୁମାରୀ ହେଲା ସେ ଭାରୀ ବହୁତ ।
ସ୍ତୋକମାତ୍ର ଗତି ମଠ ହେଲା ତାର ସେ ଫୁଲ-ବହି,
ସ୍ତମ୍ଭ-ଗାତ୍ର ଆଗେ ପରଶି ଜୟନ୍ତ ହେଲା ବିଜୟୀ ।
ହର୍ଷେ ମାତି ଘନ ଘନ କରତାଳି ଦେଲେ ସକଳେ,

ପୂରିଲା ଦିଗନ୍ତ "ଜୟନ୍ତର ଜୟ" ଏହି ଚହଳେ।
ହରାଇ ନ ହେଲା ଜୟନ୍ତର ମନେ ଯେଉଁ ହରଷ,
ହାରି ଶତଗୁଣେ ତହୁଁ ହୃଷ୍ଟ ହେଲା ଉଷା-ମାନସ।
ନାନାଦେଶୁଁ ଆସି ନୁରୁ-ରାଜ-ପୁରେ ଦୁରାଶା-ଛଳେ,
ଏତେ ରାଜ-ସୁତ ଦଗ୍ଧ ହେଲେ ଯାର ଜିଗୀଷାନଳେ।
ଜୟଠାରୁ ତାର ପରାଜୟ ଆଜ ପ୍ରିୟ ଅଧିକ,
ଘଟାଇ ନ ପାରେ କିସ ପୁଣି ପ୍ରେମ ଐନ୍ଦ୍ରଜାଲିକ ?
ପାତ୍ରାଦି ସହିତେ ସ୍ତମ୍ଭ-ପାଶେ ଫେରି ଆସି ରାଜନ,
ସ୍ନେହଭରେ କଲେ ଭାବୀ ଜାମାତାର ଶିରଶ୍ଚୁମ୍ବନ।
କୁମାରୀ-ସଲଜ୍ଜ-ବଦନ-ସରୋଜ ଦେଖିଣ ରାୟେ,
ଜାଣିଲେ ଜୟନ୍ତ ଜିଣି ନାହିଁ ଖାଲି ନିଜ ଉପାୟେ।
ପ୍ରଦୋଷେ ବିବାହ ବିଧି ଆଚରିବା ପାଇଁ ଆଦେଶ,
ଦେଇ ସ୍ୱନବରେ ବିଜେ କଲେ ନୁରୁ-ପୁର-ନରେଶ।
ସ୍ୱୟମ୍ବରେ ଜୟ ଜୟନ୍ତକୁ ଦେଇ ମହା ଉଲ୍ଲାସେ
ଦେବ ଶକ୍ତିଧର ବାହୁଡ଼ିଲେ ଶିଖୀ ପୃଷ୍ଠେ କୈଳାସେ।
ବାଦିତ୍ର-ଶବଦେ ପ୍ରଦୋଷେ କମ୍ପିଲା ନୁରୁ-ନଗରୀ,
ପ୍ରଦୀପ-ମାଳିନୀ ରତ୍ନହାରା ଯେହ୍ନେ ରାଜ-ସୁନ୍ଦରୀ।
ପଥ-ବେନି-ପାର୍ଶ୍ୱ ରମ୍ଭା-ତରୁ ପୂର୍ଣ୍ଣ କୁମ୍ଭେ ମଣ୍ଡିତ,
ଦ୍ୱାରେ ଦ୍ୱାରେ ହେଲା ରସାଳପଲ୍ଲବ ମାଳା ଲମ୍ବିତ।
ପ୍ରତି ଶୃଙ୍ଗାଟକ ମୁଖରିତ ହେଲା ସଙ୍ଗୀତ ନାଟେ,
ନାଚିଲେ ନର୍ତ୍ତକୀ, ଗାଇଲେ ଗାୟକ, ରଟିଲେ ଭାଟେ।
ବିବିଧ-କୁସୁମ-ଉଷୀର-ଚନ୍ଦନ-ସୌରଭେ ପୂତ,
ପତାକା ଦୋଳାଇ ରଙ୍ଗେ ପ୍ରସରିଲା ସିନ୍ଧୁ-ମାରୁତ।
ସେ ମାରୁତେ ଦୋଳେ ଶତ ପ୍ରତିବିମ୍ବ ରଚି ରୁଚିରେ,
ପ୍ରଦୀପ-ମାଳିନୀ ଶ୍ୱେତ ପୋତମାଳା ବଡାଗୀ-ନୀରେ।
ସ୍ଥାନେ ସ୍ଥାନେ ବାଣେ ଫୁଟିଲା ଆଗ୍ନେୟ-ପୁଷ୍ପ-ମଞ୍ଜରୀ,
ଚନ୍ଦ୍ର-ତାରାକାରେ ଆକାଶେ ଉଡ଼ିଲା ଦୀପ-ପଞ୍ଜରୀ। (୧)
ବସନ ଭୂଷଣେ ଭୂଷି ଚାରୁ-ଅଙ୍ଗ ପୁର-କାମିନୀ,
ନିରୁପମ ରୂପ ପ୍ରଭାରେ ଉଜ୍ଜ୍ୱଳ କଲେ ଯାମିନୀ।
ପ୍ରବେଶିଲା ଯଥା-କାଳେ ବର-ବେଶେ ବୀର ଜୟନ୍ତ,
ଧରଣୀ ବରିବା ପାଇଁ କି ଆସିଲେ ଋତୁ-ବସନ୍ତ ?
ବନ୍ଦାପନା ଅନ୍ତେ ବର କନ୍ୟା ବେଦି ମଣ୍ଡିଲେ ଯାଇ,
ଚନ୍ଦ୍ରମା ସଙ୍ଗେ କି ରୋହିଣୀ ବିହରେ ମର୍ତ୍ତ୍ୟେ ଓହ୍ଲାଇ ?
ଚନ୍ଦ୍ରମା ରୋହିଣୀ ଦର୍ଶନେ ଯେସନ ଫୁଲେ ସାଗର,
ଆନନ୍ଦେ ସେରୂପେ କଲ୍ଲୋଳିଲା ନୁରୁ-ରାଜ-ନଗର।
ପରିଣୟ ବିଧି ବିଧିରେ ଆଚରି ପୁରୋଧାଗଣ
କୁଶେ କଲେ ବର ବଧୂଙ୍କର ହସ୍ତ ଗ୍ରନ୍ଥି ବନ୍ଧନ।
ସେ ପରଶେ ଜାତ ସାତ୍ତ୍ୱିକ ବେନିଙ୍କି କଲା ଅଧୀର,
କ୍ରମେ କ୍ରମେ ହସ୍ତୁଁ ବ୍ୟାପିଲା ସ୍ପନ୍ଦନ ସର୍ବ ଶରୀର।
ବିନ୍ଦୁ ବିନ୍ଦୁ ହୋଇ ସ୍ରବିଲା ବଦନ ଇନ୍ଦୁରୁ ଝାଳ,

(୧) ଦୀପପଞ୍ଜରୀ – ଫାନସ।

ଚେତା ବୁଡ଼ାଇଲା କ୍ରମେ ସେ ସାତ୍ତ୍ୱିକ ଭାବ ଉତାଳ।
ଦେଖି ସଭାଜନେ ମହାବ୍ୟସ୍ତମନେ ବେଢ଼ିଲେ ଯାଇ,
ଚାହୁଁ ଚାହୁଁ ହେଲେ ବେନିଏ ବେଦିରେ ଅବନୀଶାୟୀ।
ବ୍ୟସ୍ତେ ଅନୁଚରେ ବ୍ୟଜନେ ବିଞ୍ଚିଲେ, ସିଞ୍ଚିଲେ ଜଳ,
ମାତ୍ର ଯେତେ କଲେ ଉପଚାର, ହେଲା ସବୁ ବିଫଳ।
ଲବେ ହୋଇଗଲା ବିବର୍ଣ୍ଣ ବେନିଙ୍କ ଲାବଣ୍ୟ-ଛାୟା,
କରକା ପରାୟେ ପରଶେ ଶୀତଳ ଲାଗିଲା କାୟା।
ଲକ୍ଷଣୁଁ ଜାଣିଲେ ପ୍ରାଣ-ବିହଙ୍ଗମ ଗଲାଣି ଚାଲି,
ଚିର ପାଇଁ କରି ଏ ମୃଣ୍ମୟ-ଦେହ ପଞ୍ଜର ଖାଲି।
ସୁଖେ ପଡ଼େ ପୁଣି ଏଭଳି ବିପାକ ଏଡ଼େ ବେଗରେ।
କେ କହିବ କାହୁଁ ଏ ବଜ୍ର ପଡ଼ିଲା ବିନା ମେଘରେ।
କି ହେଲା ! କି ହେଲା ! ବୋଲି ପଡ଼ିଗଲା ଚୌଦିଗେ ଗୋଳ,
ଆକୁଳ-ଜନତା-ଅର୍ଣ୍ଣବେ ଉଠିଲା ଶୋକ-କଲ୍ଲୋଳ।
ଶୋକାଘାତେ ହେଲେ ଅଚେତନ ନୁରୁ-ନଗର-ସାଇଁ,
ରାଜ-ସୁଖ ସଙ୍ଗେ ରାଜ-ଶୋକ ଭାଗ୍ୟ ଦେଲା ଭୁଞ୍ଜାଇ।
ମୂର୍ଚ୍ଛିତ-ଦଶାରେ ଭୂପତି ଦେଖିଲେ ସ୍ୱପ୍ନ ଅଦ୍ଭୁତ—
ଅଗ୍ରେ ଉଭା କାଳୀ ବର୍ଣ୍ଣେ ଜିଣି ଘନ-କୃଷ୍ଣ-ଜୀମୂତ।
ଜୀମୂତେ ବଳାକା ପ୍ରାୟେ ବକ୍ଷେ ଶୋଭେ ନର-କପାଳ,
ବିଜୁଳି ପରାୟେ ଭୁଜେ ଚମକଇ ଖଡ୍‌ଗ କରାଳ।
ରାଜାଙ୍କୁ ସମ୍ବୋଧି କହୁଛନ୍ତି ଦେବୀ— "ଶୁଣ ହେ ବୀର,
ଅକାରଣ ଶୋକେ କିପାଁ କରୁଅଛ ମନ ଅସ୍ଥିର ?
ଜନ୍ମ ମୃତ୍ୟୁ ଯେଉଁ ଗୁପ୍ତଦେଶେ ହେଉ ଅଛି ସର୍ଜନା,
ଥାଉ ଆନ, ତହିଁ ପଶି ନ ପାରଇ ଦେବ କଳ୍ପନା।
ଦେବ ହେଲେ ସୁଦ୍ଧା ମୃତ୍ୟୁ ନିବାରଣେ ନାହିଁ ଶକତି,
ଜୀବନ ଯାହାକୁ ବୋଲନ୍ତି, ସେ ସିନା ମୃତ୍ୟୁକୁ ଗତି।
ଅଜ୍ଞାନେ ଜନମି ମୋହ ଲୟ ଭଜେ ଜ୍ଞାନ-ଉଦୟେ,
ଅମୋଘ-ଆୟୁଧ ଏକମାତ୍ର ଜ୍ଞାନ ମୋହ-ବିଜୟେ।
ଜନ୍ମ ମୃତ୍ୟୁ ଆଦି ଯାବତ ଘଟଣା ଘଟେ ସଂସାରେ,
ସମସ୍ତ ଗ୍ରଥିତ କାଳ-ନିୟନ୍ତ୍ରିତ-ନିୟତି-ହାରେ।
ନିୟତି-ଫଳରୁ ଜନ୍ମିଥିଲା ଉଷା ଗୃହେ ତୁମ୍ଭର,
ନିୟତି-ଫଳରୁ ଜୟନ୍ତ ଆସିଲା ନୁରୁ ନଗର।
ଉଷା-ସ୍ୱୟମ୍ବରେ ମଲେ ଆସି ଯେତେ ନୃପ-ସନ୍ତାନ,
ଅଲଙ୍ଘ୍ୟ-ନିୟତି-ଶାସନ ସରବେ କଲେ ପ୍ରମାଣ।
ମନ ଦେଇ ଶୁଣ ରାୟେ, କହିବଇଁ ପୂର୍ବ-କାହାଣୀ,
ଏ ଅଦ୍ଭୁତ-କଥା-ନିଦାନ ଯହିଁରୁ ପାରିବ ଜାଣି।
ଏହି ଯେ ପଶ୍ଚିମେ ଶୋଭେ ଶୈଳମାଳା ପ୍ରାଚୀରୋପମ,
ପଞ୍ଚଲିଙ୍ଗଶୈଳ (୧) ତହିଁ ମଧ୍ୟେ ଅଟେ ପବିତ୍ରତମ।
ହର-ମୌଳି-ମାଳା ତ୍ରିପଥଗା ଯହିଁ ଝର-ଆକାରେ,
ପଞ୍ଚଲିଙ୍ଗ-ଶିରେ ନିରତେ ବହନ୍ତି ନିର୍ମଳ-ଧାରେ।
ଦିନେ ଚତୁର୍ଦ୍ଦଶୀ ନିଶିଯୋଗେ ତହିଁ ହେଲା ଉତ୍ସବ,

(୧) ଏହି ପର୍ବତ ନୀଳଗିରିର ଅନ୍ତର୍ଗତ।

ଅଭିନୟ କଲେ ଗନ୍ଧର୍ବେ ମିଳିଣ ହର-ତାଣ୍ଡବ।
ହରବେଶେ ଚିତ୍ରରଥ, ତିଳୋତ୍ତମା ପାର୍ବତୀ-ବେଶେ
ପରସ୍ପର ହସ୍ତ ଧରି ନାଚୁଥିଲେ ଭାବ-ଆବେଶେ।
ବାଦିତ୍ର ସଙ୍ଗୀତେ ରତ ଥିଲେ ଆନ ଗନ୍ଧର୍ବମାନ,
ରୁଦ୍ରତାଳେ ଅଦ୍ରି ଗୁହା ହେଉଥିଲା ଶବ୍ଦାୟମାନ।
ବନଦେବୀ ଦେଖୁ-ଥିଲେ ବସି ଲତା-ଦୋଳା-ତଳପେ,
ସ୍ୱର୍ଗ ଦେବତାଏ ଦେଖୁଥିଲେ ସ୍ୱର୍ଣ୍ଣ-ମେଘ-ମଣ୍ଡପେ।
ଚୌଦିଗୁଁ ଆସିଲେ ଦେବୀଏ ସେ ନାଚ ଦେଖିବା ପାଇଁ,
ବୈତରଣୀ ତୀରୁଁ କୀଚକ-ଈଶ୍ୱରୀ, (୧) ଘୋର ଖେଳାଇ,
ଘଟଗ୍ରାମ-ଘୋର-ଅରଣ୍ୟଚାରିଣୀ ଦେବୀ ତାରିଣୀ, (୨)
କେନ୍ଦୁଝରି-ଦଣ୍ଡ-ଦେବୀ (୩) ଦଣ୍ଡଧର-ତାପ-ହାରିଣୀ।
ସାଳନ୍ଦୀ-ସଳିଳେ ଅଭିଷିକ୍ତ ଦେବୀ ଭଦ୍ର-କାଳିକା,
ଦପା-ନିବାସିନୀ, ଦୈତ୍ୟ-ଦର୍ପହରା, ଦେବୀ ନାୟିକା।
ଦେବଗିରି-ନୀଳ-ଶିଖର-ମଣ୍ଡନା ମଣ୍ଡଳେଶ୍ୱରୀ,
ଆସିଲେ ସରବେ ସେ ତାଣ୍ଡବେ ପଞ୍ଚଲିଙ୍ଗ-ଶିଖରୀ।
ବଳାଙ୍ଗୀ-ତଟରୁ ମୁଁ ଯାଇ ମିଳିଲି ଦେବୀଙ୍କ ସଙ୍ଗେ,
ମୋତେ ଦେଖି ସର୍ବେ ଗନ୍ଧର୍ବେ ମାତିଲେ ହାସ୍ୟ-ତରଙ୍ଗେ।
ନିରେଖି ବିକଟ ମୂରତି ମୋହର ଘୋର-ଦର୍ଶନ,
ଉପହାସ କଲେ ଏକକୁ ଆରେକ ଠାରି ନୟନ।
ଅନୁଚରଙ୍କର ଇତର-ଆମୋଦେ ନ ଦେଇ ବାଧା,
ହସିଲେ ଆପଣେ ଚିତ୍ରରଥ ଲଂଘି ନିଜ ମର୍ଯ୍ୟାଦା।
ତ୍ରିଲୋକ-ମୋହିନୀ ତିଳୋତ୍ତମା ଦେଲା ସେ ହାସ୍ୟେ ଯୋଗ,
କୋପେ କଲି ମୁହିଁ ସେହିକ୍ଷଣି ଅଭିଶାପ ପ୍ରୟୋଗ –
"ସ୍ୱର୍ଗ କଳୁଷିତ କଲ ତୁମ୍ଭେ ଯେଣୁ ରୂପ-ଗରବେ,
ମର୍ତ୍ତ୍ୟ-ଲୋକେ ଯାଇ ମର୍ତ୍ତ୍ୟ-ରୂପ ଧରି ରହ ସରବେ।"
ଶାପେ ତ୍ରସ୍ତ ଅଭି-ନେତୃ-ଦଳ ଧରି ମୋର ପୟର,
ଶାପ-ମୁକ୍ତି ପାଇଁ କାତରେ ବିନୟ କଲେ ବିସ୍ତର।
ବିଶେଷେ ଅପ୍ସରୀ-ଶିରୋମଣି ହେଲା ଶୋକେ ବିକଳ,
ପ୍ରସ୍ରବଣ ପ୍ରାୟେ ସ୍ରବିଲା କମଳ ନୟନୁ ଜଳ।
କରୁଣେ ଭାଷିଲା, "କର କୃପାମୟି, ଦାସୀକି ତ୍ରାଣ,
ଲଘୁ-ଦୋଷେ ମୋର ଏଡ଼େ ଗୁରୁ ଦଣ୍ଡ କଲ ବିଧାନ!
ଭବ-ବନ୍ଧନର କ୍ଲେଶ, ଦେବି, ମୁହିଁ ଭୋଗିଲି ଥରେ
ଦୁର୍ବାସାଙ୍କ ଶାପେ ବାଣ-କନ୍ୟାରୂପେ (୪) ଜନ୍ମି ଦ୍ୱାପରେ।
ମୋ ଘେନି ମରତେ କେତେ ମହାପ୍ରାଣୀ ତ୍ୟଜିଲେ ପ୍ରାଣ,
ମୋ ପାଇଁ ଘଟିଲା ଯେ ଅନର୍ଥ ତାର ସାକ୍ଷୀ ପୁରାଣ।

(୧) ମୟୂରଭଞ୍ଜର ଅଧିଷ୍ଠାତ୍ରୀ ଦେବତା। ବୈତରଣୀ ଅଦୂରବର୍ତ୍ତୀ ରଇଁଆ ଗ୍ରାମସ୍ଥ ଅରଣ୍ୟରେ ଏହାଙ୍କର ଦେଉଳ ପ୍ରତିଷ୍ଠିତ। (୨) କେନ୍ଦୁଝରର ଏକ ପ୍ରଧାନ ଦେବତା – ଘଟଗ୍ରାମ ଏହାଙ୍କର ପୀଠସ୍ଥାନ। (୩) କେନ୍ଦୁଝରର ଅଧିଷ୍ଠାତ୍ରୀ ଦେବତା। (୪) ତିଳୋତ୍ତମା ଦୁର୍ବାସାଙ୍କ ଶାପ ଯୋଗୁଁ ବାଣାସୁର କନ୍ୟା ଉଷାରୂପେ ଦ୍ୱାପର ଯୁଗରେ ଜାତ ହୋଇଥିଲେ। ଉଷା ଏବଂ ଅନିରୁଦ୍ଧର ଗୁପ୍ତପ୍ରଣୟ, ବାଣାସୁର ଏବଂ ଶିବଙ୍କ ସହିତ ଶ୍ରୀକୃଷ୍ଣଙ୍କର ଯୁଦ୍ଧ ଏବଂ ସେହି ଉପଲକ୍ଷରେ ପୃଥିବୀରେ ଜ୍ୱରରୋଗର ସୃଷ୍ଟିର ବିଷୟ ପୁରାଣରେ ଅନୁସନ୍ଧେୟ।

ଧରଣୀବାସୀଙ୍କି କରେ ଯେହ୍ନୁ କ୍ଷୁର ଚର୍ଚ୍ଚର ଶୋକେ,
ଅଦ୍ୟାପି ତା ପାଇଁ ଅଭିଶାପ ମୋତେ ଦିଅନ୍ତି ଲୋକେ।
ଶୋକ ଦୁଃଖ ମୋହେ ନିରତେ ସଙ୍କୁଳ ମର୍ତ୍ତ୍ୟ-ବସତି,
ଭବବନ୍ଧେ ମୋହେ ଅନ୍ଧ ହୋଇ ପ୍ରାଣୀ ଲଭେ ଦୁର୍ଗତି।
ସେହି ମର୍ତ୍ତ୍ୟ-ସ୍ମୃତି ଅଦ୍ୟାପି ଦେଉଛି ଦୁଃଖ ଅପାର,
କୃପା ବହି ମାତଃ, ଅଭିଶାପ କର ପ୍ରତିସଂହାର।''
ଦୟା ଉପୁଜିଲା ଶୁଣି ସୁନ୍ଦରୀର କରୁଣ ବାଣୀ,
ବିଶେଷେ ତା ଲାଗି ଅଳି କଲେ ଆସି ଦେବୀ ଇନ୍ଦ୍ରାଣୀ।
ବାଳୀକି କହିଲି, ''ଶୁଣ ସୁଲୋଚନା, ମୋର ବଚନ,
ଅଳ୍ପ ଦିନପାଇଁ ହେବ ତୋର ମର୍ତ୍ତ୍ୟପୁରେ ଗମନ।
ତୋ ଗୁଣେ ତରିବେ ଅଭିଶାପୁଁ ଏହି ଗନ୍ଧର୍ବମାନେ,
ସମସ୍ତେ ତେଜିବେ ପ୍ରାଣ ଆସି ତୋର ଜନମ-ସ୍ଥାନେ।
ସର୍ବଶେଷେ ତୋର ସଙ୍ଗେ ଚିତ୍ରରଥ ଗନ୍ଧର୍ବପତି,
ଶାପୁଁ ମୁକ୍ତ ହୋଇ ବାହୁଡ଼ି ଆସିବେ ସୁର-ବସତି।
ହସ୍ତ ଧରାଧରି ହୋଇ ବେନି ହେଲ ଶାପରେ ଯୁକ୍ତ,
ହସ୍ତ-ସ୍ପର୍ଶ ମାତ୍ରେ ମର୍ତ୍ତ୍ୟେ ବେନି ହେବ ଶାପରୁ ମୁକ୍ତ।''
ବଚନାନ୍ତେ ମୋର ଚାହୁଁ ଚାହୁଁ ସର୍ବେ ଆକାଶେ ବୁଡ଼ି,
ଉଲ୍‌କାକାରେ ଗଲେ ଭାଗ୍ୟ ଅନୁସାରେ ଚୌଦିଗେ ଉଡ଼ି।
ତିଳୋତ୍ତମା ଆସି ପ୍ରବେଶିଲା ତୁମ୍ଭ ରାଣୀ-ଜଠରେ,
ଚିତ୍ରରଥ ନେଲେ ନରରୂପ ହେମ-ପୁର ନଗରେ।
ସେହି ତିଳୋତ୍ତମା ଉଷା, ସେହି ଚିତ୍ରରଥ ଜୟନ୍ତ,
ପୂର୍ବ-ଉପାଧିରୁ ହୋଇଥିଲେ ଏଡ଼େ ସୌଭାଗ୍ୟବନ୍ତ। (୧)
ପରୀକ୍ଷାରେ ହାରି ପ୍ରାଣ ଦେଲେ ଯେତେ ନୃପନନ୍ଦନ,
ସେ ସିନା ଅଟନ୍ତି ଶାପେ ସ୍ୱର୍ଗ-ଭ୍ରଷ୍ଟ ଗନ୍ଧର୍ବଗଣ।
ଦିବ୍ୟଲୋକ ଏବେ ଭଜିଲେ ଏ ବେନି ତ୍ୟଜି ସଂସାର,
ଶୋକ ପରିହରି କର ବେନିଙ୍କର ଯୋଗ୍ୟ ସତ୍କାର।''
ଏହା କହି ଦେବୀ ନୃପ-ସନ୍ନିଧାନୁ ହେଲେ ଉଭାନ,
ମୂର୍ଚ୍ଛାଭଙ୍ଗେ ରାଜା ସଭାକୁ କହିଲେ ସେ କଥାମାନ।
ସ୍ୱପ୍ନ-କଥା ଶୁଣି ବିସ୍ମୟେ ଦେଖିଲେ ସଭାସ୍ଥ-ନର,
କ୍ଷେଦେ କୌତୂହଳେ ଅମର ଅମରୀ ଦେହ-ପଞ୍ଜର।
ଶୋଇଛନ୍ତି ବେନି ବର-କନ୍ୟା ବେଶେ ଅବନୀ-ପରେ,
ପଡ଼ିଛି କି ଆହା ! କିଂଶୁକ ଯୋଡ଼ିଏ ବନ ଭିତରେ।
ଲାବଣ୍ୟ ଝଟକ ଛାଡ଼ି ନାହିଁ ତନୁ ହେଲେହେଁ ଫିକା,
ମୁକ୍ତାହୀନ ହୋଇ ଝଟକେ ନାହିଁ କି ମୁକ୍ତା-ଶୁକ୍ତିକା ?
ରାଜ-ଅନୁଚରେ ରାଜାଙ୍କ ଛାମୁରୁ ଆଦେଶ ପାଇ,
ବିହିତ ବିଧାନେ କଲେ ଆୟୋଜନ ଅନ୍ତ୍ୟେଷ୍ଟି ପାଇଁ।
ଉତ୍ସବ-ସକାଶେ ଠୁଳ ହୋଇଥିଲା ଯେତେ ସମ୍ଭାର,
କିଏ ଜାଣିଥିଲା ଭିନ୍ନ ବ୍ୟବହାର ହେବ ତାହାର ?
କିଏ ଦେଖିଥିଲା ଫିଟାଇ କରାଳ-କାଳ-କୁଞ୍ଚିକା,

(୧) ସୌନ୍ଦର୍ଯ୍ୟବିଶିଷ୍ଟ। ଯେହେତୁ ଚିତ୍ରରଥ ଗନ୍ଧର୍ବରାଜ ଏବଂ ତିଳୋତ୍ତମା ସର୍ବପ୍ରଧାନ ଅପ୍ସରା ଥିଲେ।

ବର-ଚତୁର୍ଦ୍ଦୋଳ ବେନିଙ୍କର ହେବ ଶବ-ଶିବିକା ?
ବେନିଙ୍କି ବସାଇ ଚତୁର୍ଦ୍ଦୋଳେ ସର୍ବେ ନେଲେ ଶ୍ମଶାନେ,
ପଦବ୍ରଜେ ଗଲେ ରାଜା ସଙ୍ଗେ ରାଜ ଅମାତ୍ୟମାନେ।
ଉଠିଲା ସଘନେ ଶୋକ-ତାନେ ଶୋକ-ବାଦ୍ୟ-ଚନ୍ଦଳ,
ଦୀପ-ବୃକ୍ଷ ଧରି ଚାଲିଲେ ଭଣ୍ଡାରି ଦଳକୁ ଦଳ।
ଅଗ୍ରେ ପୁରୋହିତ ଚାଲିଲେ ଗମ୍ଭୀରେ ବେଦ ଉଚ୍ଚାରି,
ଚତୁର୍ଦ୍ଦୋଳ ବେଢ଼ି ଚାଲିଲେ ପଦାତି ପତାକାଧାରୀ।
ପୂର୍ବେ ରାଜ-ସୁତେ ହୋଇଥିଲେ ଯହିଁ ପ୍ରାଣେ ଦଣ୍ଡିତ,
ଉତ୍ତରେ ତାହାର ଆଗୁଁ ହୋଇଥିଲା ଚିତା ସଜ୍ଜିତ।
ତହିଁ ବିରଚିଲେ ଦେଇ ରାଶି ରାଶି ପୁଷ୍ପ ଚନ୍ଦନ,
ଏ କାଳ-ବିବାହେ ବର ବଧୂଙ୍କର ମଧୁଶୟନ।
ଉଷାର ମୃଗୟା ଅସ୍ତ୍ର, ଶସ୍ତ୍ର, ଢ଼ାଲ, ତୂଣୀର, ବର୍ମ,
ପାରିଧିରେ ଲବ୍ଧ ପଶୁଶୃଙ୍ଗ, ଦନ୍ତ, ନଖର, ଚର୍ମ,
ଶବ ସଙ୍ଗେ ସବୁ ଥୋଇଣ ଚିତାରେ ଘୃତ ଗୁଗ୍ଗୁଳ,
କର୍ପୂର କସ୍ତୂରୀ ରାଶି ରାଶି କଲେ ଉପରେ ଠୁଳ।
ସମବେତ ଜନ ନୟନୁ ଝରିଲା ନୀରବେ ନୀର,
ନିର୍ବାତ କାନନେ ପ୍ରାତେ ତରୁ-ପର୍ଣ୍ଣେ ଯେହ୍ନେ ଶିଶିର।
ସହସା ଅନଳେ ଧକ ଧକ ହୋଇ ଜଳିଲା ଚିତା,
ରକ୍ତ-ବହ୍ନି-ଶିଖା ବରଣେ ଜିଣିଲା ବାଳ-ସବିତା।
ରଜନୀର ଗର୍ଭ ଉଜଳି, ଉଜଳି ଦିଗ-ଗଗନ,
ଫଣୀ ଫଣା ପରି ବାତେ ଦୋହଲିଲା ଚିତା ଦହନ।
ସ୍ୱନିଲେ ପବନ ଯେହ୍ନେ ନିଶୀଥିନୀ କରୁଣ ସ୍ୱର,
ଝିଲ୍ଲି-ରବ ପୁଣି କଲା ସେ ଦୃଶ୍ୟକୁ ଗଭୀରତର।
ଦିଗ ଦିଗନ୍ତର ମୁଖର ଭୈରବେ ଶୃଗାଳ-ରାବ,
କ୍ଷଣେ କ୍ଷଣେ ଭାଙ୍ଗୁ ଥିଲା ସେ ଦୃଶ୍ୟର ନିସ୍ତବ୍ଧଭାବ।
ବେନି ତନୁ ହେଲା ଭସ୍ମେ ପରିଣତ ଅଳପ କ୍ଷଣେ,
ନିଭାଇଲେ ଚିତା ପୂତ-ପୟୋରାଶି ଢ଼ାଳି ଦହନେ।
ନ ପଡୁଣୁ ଉଷା-ରକ୍ତ-ଛବି ସ୍ୱଚ୍ଛ ବଙ୍କାଙ୍ଗୀ-ଜଳେ,
ଅନ୍ତ୍ୟେଷ୍ଟି ସମାଦି ବାହୁଡିଲେ ଶୂନ୍ୟ ମନେ ସକଳେ।
ପୁରେ ପ୍ରବେଶିବା ବେଳେ ଲିଭିଥିଲେ ଗଗନ ତାରା,
ଉଡିଯାଉଥିଲେ ଦେବୀ-ଗୃହ ପାରାଭାଡ଼ିରୁ ପାରା।
ରାଜ-ଆଜ୍ଞା-ମତେ ଉଷା ଜୟନ୍ତର ସମାଧି-ସ୍ଥାନେ,
ମଣ୍ଡପ ଗଢ଼ିଲେ ଶିଳ୍ପିକୁଳ ଆସି ରାଜ-ବିଧାନେ।
ଦୂରୁଁ ଦିଶୁଥିଲା ସେ ମଣ୍ଡପ ହର-ଶୈଳ-କଳପ,
ନୁରୁପୁର ଲୋକେ ବୋଲୁଥିଲେ ତାକୁ ଉଷା-ମଣ୍ଡପ। (୧)
କୀର୍ତ୍ତି-କୀଟ କାଳ କେଉଁ କୀର୍ତ୍ତି ପ୍ରତି ନୁହଇ ବାମ ?
ମଣ୍ଡପ ଗଲାଣି କାଳଗର୍ଭେ ମାତ୍ର ଅଛି ତା ନାମ।

□ □ □

(୧) ସୁନହଟ ଗ୍ରାମର ଉତ୍ତରରେ ଅବସ୍ଥିତ। ବର୍ତ୍ତମାନ ନାମ ଉଷାମେଢ଼ ଅଥବା ଉଷାମଣ୍ଡପ।

# ପାର୍ବତୀ

## [ ପ୍ରଥମ ସର୍ଗ ]

ନୀଳାଚଳେ ଆଜ    ଦୋଳ ମହୋତ୍ସବେ
ମତ ସର୍ବେ ପୁରବାସୀ,
ବାଦିତ୍ର ଶବଦ    ହେଳେ ପକାଉଛି
ସିନ୍ଧୁ-କୋଳାହଳ ଗ୍ରାସି ।
ଶ୍ରୀଖଣ୍ଡ-ଶଇଳୁ    ମୃଦୁଳେ ସମୀର
ପାରାବାରେ-ବକ୍ଷେ ବହି
ଶ୍ରୀକ୍ଷେତ୍ର-ଲଳନା –    କପୋଳେ ଅଳକ
କମ୍ପାଉଛି ରହି ରହି ।
ଉଡୁଛନ୍ତି ସୌର –    କରେ ପ୍ରଜାପତି
ସ୍ନାତ ଇନ୍ଦ୍ରଧନୁ ବର୍ଣ୍ଣେ,
ଉଡୁଁ ଉଡୁଁ ଥରେ    ବସି-ପଡୁଛନ୍ତି
କେଭେ ପୁଷ୍ପେ, କେଭେ ପର୍ଣ୍ଣେ ।
ଭଗତିଆ ନିଜ    ପ୍ରିୟାସଙ୍ଗେ ନାଟ୍ୟ-
ତରଙ୍ଗେ ମଗ୍ନ ନାଟୁଆ,
ଇନ୍ଦ୍ରଧନୁ ଖଣ୍ଡ    ପ୍ରାଏ ଖଣ୍ଡିଉଡ଼ା
ଦେଇ ବୁଲେ ବାଳିଶୁଆ ।
ସ୍କନ୍ଧରୁ ପୁଷ୍ପିତ –    ଛୁରିଅନା ଗନ୍ଧେ
ବାସିତ ଉଦ୍ୟାନମାନ,
ଉଡୁଛନ୍ତି ଯୂଥେ-    ଯୂଥେ ମଧୁକର
ସୌରଭେ ହୋଇ ଅଜ୍ଞାନ ।
ସ୍ୱର୍ଣ୍ଣଦୀ ନଳିନୀ    ପ୍ରାଏ ନୀଳାକାଶେ
ଦୋଳଇ ରଙ୍ଗଶାଳ୍ମଳୀ,
ନିଚୁଳ କିଂଶୁକ –    କୁସୁମ-ମଣ୍ଡନେ
ସିନ୍ଦୂରିତ ବନସ୍ଥଳୀ ।
କରୁଛନ୍ତି ରାଜ୍ୟ    ଧରାଧାମେ ଆଜ
ରତି ସଙ୍ଗେ ରତିପତି,
ଟେକିଅଛି ନାଗ-    କେଶର ବେନିଙ୍କ
ଶିରେ ହେମ-ପୁଷ୍ପ-ଛତି ।
ବର୍ଣ୍ଣ-ଅନୁରୂପେ    ବନ୍ଦୀ ବେନିଙ୍କର
ହଳଦୀବସନ୍ତ ପିକ (୧)
ପଥିକ-ମାନସେ    ଭୀତି ଆଣିବାକୁ
କେ ଊଣା କେ ବା ଅଧିକ !

ଢ଼ାଳଇ ସୁରଭି    ଚାମର ଶିରୀଷ
ରାଜ-ପରିକର-ଭାବେ,
ପ୍ରବାଳ-ପତାକା    ଧରିଣ ତିନ୍ଦୁକ
ଉଭା ଦେଖ ଠାବେ ଠାବେ ।
ଦିଶୁଅଛି ଯାହା    ଶ୍ୟାମଳ ଚମ୍ପକ-
ପାଦପେ ହେମ-କଳିକା,
ରାଜା-ରାଣୀଙ୍କର    ନୀରାଜନା ପାଇଁ
ସେ ସିନା ପ୍ରଦୀପଶିଖା ।
ମଲ୍ଲିକା କୋରକ-    ଶଙ୍ଖ ବଜାଉଛି
ଷଟ୍‌ପଦ ପୁଷ୍ପ-ଲମ୍ପଟ,
ହେମଗୋରୀ ସୂର୍ଯ୍ୟ-    ମୁଖୀ ଧରିଅଛି
ଛାମୁରେ ସ୍ୱର୍ଣ୍ଣ ଆଲଟ ।
ମନ୍ଦାନିଳେ ନାନା    ଅଙ୍ଗଭଙ୍ଗୀ କରେ
ବିଧୁର-ଧୈର୍ଯ୍ୟ-ଘାତକୀ,
ପଦ୍ମରାଗ ପୁଷ୍ପ –    କିଙ୍କିଣୀ-ଧାରିଣୀ
ଧାତକୀ ରାଜ-ନର୍ତ୍ତକୀ ।
ରାଜ-ଅସ୍ତ୍ରାଗାର    ପରିପୂର୍ଣ୍ଣ ଏବେ
କିବା ଜଳେ କିବା ସ୍ଥଳେ,
ଅଶୋକ ନିଆଳୀ    ଚୂତେ ପୂର୍ଣ୍ଣ ବନ,
ସରଃ ଉତ୍ପଳ କମଳେ ।
କାଞ୍ଚନ-କୋରକ    ହେଳେ କରୁଅଛି
ବିରହୀର ଦମ୍ଭ ଚୂନା,
ଅବା ସେ ବିରହୀ    ରୁଧିରେ ଲୋହିତ
ମଦନର ଏକମୁନା ।
ସ୍ଥାବର ଜଙ୍ଗମ    ମନ ହୋଇଅଛି
ଅନଙ୍ଗର ଲୀଳାଗାର,
ପୁରୁଷେ ଦେଖନ୍ତି    ନାରୀମୟ, ନାରୀ
ପୁରୁଷମୟ ସଂସାର ।
ଆନ କଥା ଥାଉ,    ଯତିଜନମନ
ହୋଇଛି ଆଜ ଅଥୟ,
ଦେଖୁଥିଲେ ଯେହୁ    ବ୍ରହ୍ମ-ମୟ ବିଶ୍ୱ,
ଦେଖନ୍ତି ସେ ନାରୀ-ମୟ ।

(୧) ରତି ଗୌରାଙ୍ଗୀ, ମଦନ ଶ୍ୟାମବର୍ଣ୍ଣ ।

ଦଣ୍ଡଧର ପୁଷ୍ପ- କୋଦଣ୍ଡ ଶାସନ
ଶିରୋଧାର୍ଯ୍ୟ କରି ଶିରେ
ଯୁଗ୍ମେ ଯୁଗ୍ମେ ପ୍ରାଣୀ ବିହରନ୍ତି ଆଜ
କିବା ନୀରେ କିବା ତୀରେ।
ସମଗରା ପାଟେ ହଂସ ହଂସୀ ପଦ୍ମ-
ପରାଗେ ଶରୀର ବୋଳି,
କରୁଛନ୍ତି କଳ- ନାଦେ ପ୍ରେମାଳାପ
ଲହରୀ-ଦୋଳାରେ ଦୋଳି।
ଲତାଆମ୍ର କୁଞ୍ଜେ ବିହରନ୍ତି ମୃଗୀ
କୃଷ୍ଣସାର ପ୍ରେମଭୋଳେ,
ପ୍ରଭୁ ଲୋକନାଥ – ଅଧିଷ୍ଠିତ ଶୁଭ୍ର-
ବାଳି-ସ୍ତୂପାବଳୀ-ଖୋଳେ।
କପୋତ-ଦମ୍ପତି ପ୍ରେମ କି ସମ୍ପତ୍ତି
ରଚୁଛନ୍ତି ତାଳବନୁ
ଉଲ୍ଲାସେ କମ୍ପାଇ ବସନ୍ତ-ରଚିତ
ଗଳେ ନବ ଇନ୍ଦ୍ରଧନୁ।
ଏହା ପରେ ପୁଣି ଦୋଳ ଚର୍ଚ୍ଚରୀର
ଲାଗିଛି ଆଜ ଗହଳ,
ଫଗୁବର୍ଣ୍ଣୋଦକେ ସର୍ବାଙ୍ଗ ରଞ୍ଜିତ
ବିହରନ୍ତି ଯୁବାଦଳ।
ବାଳାତପ-ପୁଞ୍ଜ ପ୍ରାଏ ପୁଟାଣି
ଶୋଭେ ପ୍ରତି ବିପଣିରେ,
ପ୍ରତି ଯୁବା ହସ୍ତେ ଶୃଙ୍ଗକୋଷମାନ
ପରିପୂର୍ଣ୍ଣ ବର୍ଣ୍ଣନୀରେ।
ନବ ତରୁଣୀଙ୍କ ଅମଳ କପୋଳ
ଅରୁଣ ଗୁଲାଲଘାତେ,
ଶବଳିତ ବର୍ଣ୍ଣ- ନୀରେ ପୀତ ଚେଳ
ଦୋଳଇ ମୃଦୁଳ ବାତେ।
ନାରିକେଳ-ପୂଗ- ପୁନ୍ନାଗ-ଶ୍ୟାମଳ
ଶାସନରୁ ଦଳେ ଦଳେ
ମଦନ-ଶତଘ୍ନୀ ଦ୍ୱିଜସୀମନ୍ତିନୀ
ଆସୁଛନ୍ତି ନୀଳାଚଳେ।
ବିକସି ଆସିଲା କମଳ-କୋରକ
ପରାଏ ଦିଶେ ଝଟକ,
ଗୌରଦେହେ ଶୋଭେ ରଙ୍ଗଚେଳ, ନୀଳ-
କେଶପାଶେ କୁରବକ।
ଖର୍ଜ୍ଜୁର-କାନନ- ଅନ୍ଧାରିତ ପଥେ
ଆସୁଛନ୍ତି ଚିତ୍ରଦାରା,

ସିନ୍ଧୁ ମୁଖେ ଅବା ଆଗ୍ନେୟ ଶଇଳୁଁ
ବହେ ଧାତୁଦ୍ରବ-ଧାରା।
ଏହିରୂପେ ଚାରି- ଦିଗେ ଲାଗିଅଛି
ମହୋତ୍ସବ ରାଜପୁରେ,
ମାତ୍ର ରାଜେଶ୍ୱର ଗଙ୍ଗେଶ୍ୱର ଥାଇ
ଛନ୍ତି ପୁରୁଁ ବହୁଦୂରେ।
ଋଷିକୁଲ୍ୟାଠାରୁ ସୁବର୍ଣ୍ଣ ନଟିନୀ
ଯାଏ ସର୍ବ ଜନପଦ
ନାନା ଉପାୟନେ ଧାଉଁଛନ୍ତି ଆଜି
ବୀର ଗଙ୍ଗେଶ୍ୱର ପଦ
ସୁବର୍ଣ୍ଣତଟିନୀ-ଶୁଭ୍ର ନକ୍ଷ ବୋଳେ
କରନ୍ତି ସ୍ୱର୍ଣ୍ଣ-ସଞ୍ଚୟ
ହେବାପାଇଁ ରାଜ – ମଞ୍ଜୁକେଶୀଙ୍କର
ପୟରେ ଶିଞ୍ଜା ବଳୟ।
ରାଜରାଣୀଙ୍କର କବରୀ ମଣ୍ଡନ
ପାଇଁ ଖଣି ଅନ୍ଧକାରେ,
ଖନକେ ଖୋଳନ୍ତି ମଣି ମହାନଦୀ-
-ବିଷମ-ଶିଳା-ଶଯ୍ୟାରେ।
କୌଷେୟ-ବସନେ ଆବରିବେ ଅଙ୍ଗ
ନୀଳାଚଳେ ରାଜଯୋଷା,
ଶାଲ୍ମଳୀ-ଶଇଳେ (୧) ସେଥିପାଇଁ କୋଷ-
କୃମି ହେଉଛନ୍ତି ପୋଷା।
ବିମ୍ବାଧରୀଙ୍କର ଚମ୍ପକ-ଅଙ୍ଗୁଳି-
-କମ୍ପନେ ମଧୁ-ଝଙ୍କାର
ଉପୁଜିବା ଆଶେ କେନ୍ଦୁଝରେ ଗଢ଼ା
ହେଉଅଛି ଲୌହତାର। (୨)
ବ୍ରାହ୍ମୀ-ତୀର-ଗିରି- କନ୍ଦରା-ବିହାରୀ
ଦନ୍ତାବଳ-ଦନ୍ତେ ଗଢ଼ା
ମହିଷୀଙ୍କ ଶେଯ ସକାଶେ ପଲଙ୍କ
ଯୋଗାଏ ଭୟେ ଲହଡ଼ା।
ଅଙ୍ଗଲାଗି ପାଇଁ କନ୍ଦପଲ୍ଲୀ-ଜାତ
ହରିଦ୍ରା ଯୋଗାଏ ବୋଦ,
ଅନୁଗୁଳ ଶାଳ- କ୍ଷୀରେ ହେଉଅଛି
ନଅରେ ଧୂପ ଆମୋଦ।
ନୀଳ-ମାଧବଙ୍କ (୩) ଅଧିଷ୍ଠାନ ଗିରି-
ତଟ-ବାସୀ-କାରିଗର
ଗଢ଼ୁଅଛି ଭୟେ ସୁଢ଼ଳ ତାମ୍ବୂଳ-
କରଙ୍କ ମହିଷୀଙ୍କର।

(୧) ମୟୂରଭଞ୍ଜର ପ୍ରଧାନ ପର୍ବତ, ଏହି ପର୍ବତର ନିକଟବର୍ତ୍ତୀ ପ୍ରଦେଶ କୃମିକୋଷ ସକାଶେ ବିଖ୍ୟାତ। (୨) ସେତାରର ତାର ନିମନ୍ତେ କେନ୍ଦୁଝର ପ୍ରସିଦ୍ଧ। (୩) ଖଣ୍ଡପଡ଼ା ଅନ୍ତର୍ଗତ କଣ୍ଟିଲୋରେ ନୀଳମାଧବଙ୍କ ଦେଉଳ ପ୍ରତିଷ୍ଠିତ। ଏଠାରେ ପିତଳ ବାସନ ପ୍ରସ୍ତୁତ ହୁଏ।

କୁଳଙ୍ଗ ଯୋଗାଏ ଉଶୀର ବ୍ୟଜନ,
କନିକା ମୁକ୍ତା ପ୍ରବାଳ,
ମହୋଦଧି ବକ୍ଷେ ବହି ଦ୍ୱୀପାନ୍ତରୁ
ଆଣନ୍ତି ଯା ପୋତମାଳ।
ଲଳିତାଙ୍ଗୀଙ୍କର ଅଳକ୍ତାମଣ୍ଡନ
ପାଇଁ ବନେ ଅହରହ
ଅଞ୍ଜନାଭ ଗୁଞ୍ଜା- ମାଳିଆ ପାତୁଆ (୧)
କରନ୍ତି ଚତୁ ସଂଗ୍ରହ।
ଯୋଗାଏ ଚନ୍ଦନ- ପେଡ଼ି ନୀଳଗିରି, (୨)
ଲଳିତଗିରି ଚନ୍ଦନ, (୩)
କଟକ ଯୋଗାଏ ଅମରୀ-ବାଞ୍ଛିତ
ମଞ୍ଜୁ ରଜତ-ଭୂଷଣ।
ଚାରୁ ଚନ୍ଦ୍ରାତପ ପିମ୍ପୋଲିରୁ (୪) ଆସି
ଚନ୍ଦ୍ରରେ ହୋଇ ଲମ୍ବିତ
ରାଜ-ଅବରୋଧେ ଶତ ଇନ୍ଦ୍ରଧନୁ-
ଶୋଭା କରେ ସମୁଦିତ।
ବାମଣ୍ଡା-ମଣ୍ଡନ (୫) ପ୍ରପାତ-ଶୀକର-
ସ୍ନାତ ଘନବନସ୍ଥଳୀ
ଛାଡ଼ି ଶ୍ୟାମା ଏବେ ସମ୍ରାଟ ସଦନେ
କରୁଣେ କରେ କାକଳୀ।
ମଣିଭଦ୍ରା-ଶୈଳେ (୬) ମୁନିକୁମାରୀଙ୍କ
ନୀବାର-ମୁଷ୍ଟି ଆସ୍ୱାଦ
ସ୍ମରି ରାଜ-ସଦ୍ମେ ଶିକୁଳିରେ ବଦ୍ଧ
ଭଜୁଛି ଶୁକ ବିଷାଦ।
ପିଞ୍ଜରେ ଘୁମାଇ ଘୁମାଇ ଶାରିକା
ସ୍ମରୁଅଛି ଜନ୍ମସ୍ଥାନ,
ସ୍ୱପ୍ନେ କରୁଅଛି ସପ୍ତକ୍ରୋଶୀ ଗଣ୍ଡେ (୭)
ବନ୍ୟ-ଜମ୍ବୁ-ରସପାନ।
ମକର ଉଦ୍ୟାନେ ସ୍ୱର୍ଣ୍ଣ ଯଷ୍ଟି ପରେ
ବସି ମୟୂର ମୟୂରୀ
ମଇନାକ-ଶୈଳେ (୮) ମେଘାଗମ-ସୁଖ
ସ୍ମରୁଛନ୍ତି ଝୁରି ଝୁରି।
ଏ ବିଭବେ ଥାଇ ମହାରାଣୀଙ୍କର
ମନେ ନାହିଁ ସୁଖ ଲେଶ,
କି କୌଶଳେ କଲା ଶୋକ-କୀଟ ଏହି
କୁସୁମ-ବନେ ପ୍ରବେଶ।

ମହୋତ୍ସବ-କ୍ଷେତ୍ରେ ଦେହମାତ୍ର ଅଛି
ମନ ଭ୍ରମୁଅଛି କାହିଁ,
ରୋଗୀ ହାସ୍ୟ ପରି ହର୍ଷ ଦେବୀଙ୍କର
ହୃଦୟୁ ଆସଇ ନାହିଁ।
ସମସ୍ତ ଉତ୍କଳେ ଦିଗ୍‌ବିଜୟ ସାରି
ବୀର-ସିଂହ ଗଙ୍ଗେଶ୍ୱର,
ରତ୍ନପୁର-ଦୁର୍ଗ (୯) ଅବରୋଧେ ଏବେ
ହୋଇଛନ୍ତି ତତପର।
ପଞ୍ଚବର୍ଷବ୍ୟାପୀ ଆହବେ ହେଲେଣି
କେତେ ମହାପ୍ରାଣୀ ହତ,
ମାତ୍ର ରତ୍ନପତି- ଶିର ହୋଇ ନାହିଁ
ଶତ୍ରୁପଦେ ଅବନତ।
ବିଜିତ ଯାବନ୍ତ ନୃପସେନା ସହ
ନିଜ ବାହିନୀ ମିଶାଇ,
ଯୁଝୁଛନ୍ତି ରତ୍ନ- ପୁରେ ସେନାପତି-
ରୂପେ ରାଜ-କୁଳ-ସାଇଁ।
ତହିଁ ରାଜ-ଜେମା କୌଶଲ୍ୟା ସୁନ୍ଦରୀ
ଥିଲେ ସମ୍ରାଟ-ଗହଣେ,
ଏକମାତ୍ର ପୁଷ୍ପ ଅସ୍ତ୍ରମୟ ସେହି
ଶିବିର-କଣ୍ଟକବନେ।
ରୂପେ ଗୁଣେ ବାଳା ଅତୁଳା ଜଗତେ
ଜଗତ-ମନୋମୋହିନୀ,
ରାଜ-କୁମରଙ୍କ ଲୋଚନ-ଭ୍ରମର-
ଅମଳ-ନବ-ନଳିନୀ।
ଏସନ ତନୟା ପାଇ ରାଣୀଙ୍କର
କିପାଇଁ ମଳିନ ମୁଖ,
ଯା ଲାଗି ଜଗତେ ଯେତେ ସୁଖ ସେହି
ଦିଏ ପୁଣି ତେତେ ଦୁଃଖ।
ଗୁପ୍ତପ୍ରେମେ ପଡ଼ି ସସତ୍ତ୍ୱା କୌଶଲ୍ୟା
ହେଲା ସେ ସେନା-ନିବେଶେ,
ଜଳେ ତୈଳବିନ୍ଦୁ ପରାଏ କଳଙ୍କ
ବ୍ୟାପିଗଲା ଦେଶେ ଦେଶେ।
ପୁଣି ଜେମାମୁଖ ନ ଚାହିଁବେ ବୋଲି
ପ୍ରତିଜ୍ଞା କଲେ ରାଜନ,
ଜେମା ବାସ ପାଇଁ ନିରୂପିତ ହେଲା
ବିଜନ କାରା-ଭବନ।

(୧) ଆରଣ୍ୟ ଜାତିବିଶେଷ। (୨) ନୀଳଗିରି ପଥର ବାସନ ସକାଶେ ପ୍ରସିଦ୍ଧ। (୩) ଲଳିତଗିରିରେ ଅଦ୍ୟାପି କ୍ଷୁଦ୍ର କ୍ଷୁଦ୍ର ଚନ୍ଦନବୃକ୍ଷ ଦେଖାଯାଏ। (୪) ପିମ୍ପୋଲି ଉତ୍ତମ ସୂଚିକର୍ମ ସକାଶେ ପ୍ରସିଦ୍ଧ। (୫) ବାମଣ୍ଡା ନିସର୍ଗଲକ୍ଷ୍ମୀର ମୁକୁଟାବଳୀର ପ୍ରଧାନପାଟ ପ୍ରପାତ। (୬) ଦଶପଲ୍ଲା ଅନ୍ତର୍ଗତ ମହାନଦୀ ତୀରବର୍ତ୍ତୀ ଅତି ସୁରମ୍ୟ ପର୍ବତ। ପୂର୍ବେ ଏଠାରେ ଅନେକ ଋଷି ଥିବାର କିମ୍ବଦନ୍ତୀ ଅଛି। (୭) ମହାନଦୀର ସାତକୋଶିଆ ଗଣ୍ଡ। (୮) ରଣପୁର ରାଜଧାନୀ ନିକଟବର୍ତ୍ତୀ ବିଶାଳ ପର୍ବତ। (୯) ମୟୂରଭଞ୍ଜ ଅନ୍ତର୍ଗତ।

ସେ ଭବନୁ ଯେମା ହେଲେ ନିରୁଦ୍ଦେଶ,
ବହୁ ଅନ୍ୱେଷଣ କରି
ନ ଲଭି ଉଦନ୍ତ ଅବଶେଷେ ଯାନ୍ତ
ହେଲେ ଉତ୍କଳ-କେଶରୀ ।
ଏ ବାରତା ରାଣୀ ପାଇଲା ଦିନରୁ
ହୋଇଛନ୍ତି ମ୍ରିୟମାଣ,
ଅତୁଳ-ବିଭବେ ଥାଇ ଜୀବନକୁ
କରୁଛନ୍ତି ତୁଚ୍ଛ ଜ୍ଞାନ ।
ପୁଟ – ପାକ ପ୍ରାୟେ ଗୁପତେ ତପତେ
ଜଳୁଅଛି ମର୍ମସ୍ଥଳ,
ଧୈର୍ଯ୍ୟଶୀଳା ଧୈର୍ଯ୍ୟେ ଆବରି ସେ ଭାବ
ବାହ୍ୟେ ଦିଶନ୍ତି ଶୀତଳ ।
ତଥାପି ସେ ସଜ- ସରୋଜ-ବଦନ
ଶୋକେ ହୋଇଅଛି ଫିକା,
କୋମଳ କପୋଳେ ଦାରୁଣ କଷଣ
ମାରିଛି ନିଜ ମୁଦ୍ରିକା ।
କୌଶଲ୍ୟାର ତତ୍ତ୍ୱ ଜାଣିବା ଆଶାରେ
ନିରତେ ଚିତ୍ତ ଆକୁଳ,
କାହିଁ ଭ୍ରମୁଅଛି ଦୁଃଖେ ସେ ନ· ·ନୀ
କଳଙ୍କିତ କରି କୁଳ ।
ଆକୁଳେ ଗରୁଡ଼- ସ୍ତମ୍ଭ ପାଶେ ଦିନେ
ଅଧ୍ୟା ପଡ଼ିଥିଲେ ରାଣୀ,
ନିଦ୍ରାବଶେ ଦିନେ ନିଶୀଥେ ଶୁଣିଲେ
ଅଶରୀରୀ ଶୂନ୍ୟବାଣୀ ।
"କୌଶଲ୍ୟାର କଥା କହିବ ସେ ଆସି"
ଏ ଭାଷା କର୍ଣ୍ଣ କୁହରେ
ପଶିବାରୁ ବିଜେ କଲେ ଦେଉଳରୁ
ମହିଷୀ ନିଜ ନବରେ ।
ଉପୁଜିଲା ତହୁଁ ଦୁହିତା-ଦର୍ଶନ-
ଆଶା ହୃଦୟେ ନବୀନ,
ତହିଁ ଧ୍ୟାନ ରଖି ଆନ କର୍ମେ ଦେବୀ
ହୋଇଥିଲେ ଉଦାସୀନ ।
ବିଧିରେ ଆଚରି ଦୋଳ ମହୋତ୍ସବ
ପଦ୍ମ-ଦଳେ ଜଳ ପରି,
ସେ ଆମୋଦେ ରତ ହୋଇଣ ବିରତ
ଥିଲେ ପାର୍ବତୀ ସୁନ୍ଦରୀ ।
ଦୁଇ ବର୍ଷ ପୂର୍ବେ ଆସିଥିଲା ଯୁଦ୍ଧ-
ଭୂମିରୁ ବୃଦ୍ଧ କଞ୍ଚୁକୀ,
ଶିରାଳ ଶରୀର ବୟୋଧର୍ମେ ତାର
ଆଗକୁ ପଡିଛି ଝୁଙ୍କି ।

ରାଜାଙ୍କ ଆଦେଶେ ଜଗୁଥିଲା ସେହି
ସର୍ବୋଚ୍ଚ-ପ୍ରାସାଦ ଚୂଳେ,
ନିଶିଯାକ ଏକ- ଧ୍ୟାନେ ବସିଥାଇ
ଚାହିଁ ଉତ୍ତରାଶା-ମୂଳେ ।
ରାଜାଦେଶେ ପୂର୍ବୁ ପର୍ବତେ ପର୍ବତେ
ହୋଇଥିଲା ଆୟୋଜନ,
ବିଜୟ ଦିବସେ ବିଜୟ-ସନ୍ଦେଶ
ସ୍ୱପୁରେ ହେବ ପ୍ରେରଣ ।
ପର୍ବତେ-ପର୍ବତେ ବିଜୟ-ସଙ୍କେତ—
ଅଗ୍ନି ଜଳିବ ତାଙ୍କରେ,
ଆସିବ ନିଶିରେ ବିଜୟ-ସନ୍ଦେଶ
ରତ୍ନପୁରୁଁ ନୀଳାଚଳେ ।
ଦୁଇ ବର୍ଷ କାଳ ଏହିରୂପେ ଜଗି
ସ୍ଥବିର ହେଲେଣି ଶ୍ରାନ୍ତ,
ଆଜିଯାଏ କେହି ନ ଜାଣିଲେ ରତ୍ନ-
ପୁରର ଯୁଦ୍ଧ ବୃତ୍ତାନ୍ତ ।

× × ×

ଅସ୍ତରାଗେ ରଞ୍ଜି ତୁଙ୍ଗ ବାଲିସ୍ତୂପ
ଶ୍ୟାମଳ ପୁନ୍ନାଗ ବନ,
ଲୋକନାଥ ପଥେ ବୁଡ଼ନ୍ତି ସାଗରେ
କମଳିନୀ-ପ୍ରାଣ-ଧନ ।
ଭାସମାନ ରକ୍ତ- ରବି-ବିମ୍ବ ଦେଖି
ଏ ଭାବ ଆସେ ଅନ୍ତରେ,
ବିରଞ୍ଚି-ରଚିତ ସୁବର୍ଣ୍ଣ ବ୍ରହ୍ମାଣ୍ଡ
ଭାସଇ କିବା ସାଗରେ ।
କିବା ଜଳନିଧି- ଶାୟୀ ମଧୁରିପୁ-
ନାଭି-ନାଳେ ଅରବିନ୍ଦ,
ଅବା ଦିଗ୍‌ବଳୟ- ରୂପୀ ବଳୟର
ଅନୁରୂପ କୁରୁବିନ୍ଦ ।
ବୁଡ଼ନ୍ତେ ମାର୍ତ୍ତଣ୍ଡ, ପ୍ରାଚୀମୂଳୁଁ ଏବେ
ସନ୍ଧ୍ୟା ପ୍ରବାଳ-ପାଟଳା
ଊର୍ଦ୍ଧ୍ୱେ ଉଠି ଇନ୍ଦୁ- କିରଣେ ସୁନ୍ଦରୀ
ମଧ୍ୟାକାଶେ ମିଶିଗଲା ।
ପଟହ କାହାଳୀ ଶଙ୍ଖ ଘଣ୍ଟାଧ୍ୱନି
ଉଠିଲା ପ୍ରତି ଦେଉଳେ,
ଦୀପାଲୋକ ଦେଖି ଚଞ୍ଚଳେ କଞ୍ଚୁକୀ
ଚଢ଼ିଲା ପ୍ରାସାଦଚୂଳେ ।
ତହିଁ ବସି ବୃଦ୍ଧ ଦେଖିଲା ଭୂତଳେ
ଧରିତ୍ରୀ ଛବି ସୁନ୍ଦର,

ଦେଖିଲା ଉଦ୍‌ବେଳ କୋଳାହଳମୟ
କୌମୁଦୀ-ଧୌତ ସାଗର।

କର୍ପୂର-ଧବଳ ବାଲିସ୍ତୂପାବଳୀ
ଖୋଳେ ଶୋଭେ ଉପବନ,

ଠାବେ ଠାବେ ଅବା ବସିଯାଇ ତଳେ
ତିମିର ହୋଇଛି ଘନ।

ଶୀତଶେଷେ ପାଣ୍ଡୁ- ବେଶ ପରିହରି
ଅମଳ-ଶୁଭ୍ର-ବସନା,

ଚନ୍ଦ୍ରିକା-କୁସୁମେ କରୁଛନ୍ତି କେଳି
ଚଉଦିଗେ ଦିଗଙ୍ଗନା।

ଦୂରେ ସମଗରା ଦହ ଉଚ୍ଚତର
ଆସ୍ତରଣ ପରି ଦିଶେ,

ଦିଗ୍‌ବଳୟେ ନୀଳ- ତରୁ-ରାଜି ତାର
ଦାଢ଼େ ଅଙ୍କରେଖା କି ସେ ?

ବିରାଜଇ ଚାରୁ- ଚନ୍ଦ୍ରାତପ ପ୍ରାଏ
ଉର୍ଦ୍ଧ୍ୱେ ହୋଇ ଲମ୍ବମାନ,

ବିରଳ-ତରଳ- ତାରକା-ଗୁମ୍ଫିତ
ସୁନୀଳ ନଭଃ-ଖିଲାନ।

ସରପାଟୁଁ (୧) ଉଡ଼ି ସୁଖେ ଭାସି ଭାସି
ତରଳ ଶଶି-ମୟୂଖେ

ନଭେ ରାବି ରାବି ଯାଉଛି ଟେଣ୍ଟୋଇ
ସୁନୀଳ-ଚିଲିକା-ମୁଖେ।

କୋଳାହଳ-ନୃତ୍ୟ- ବାଦ୍ୟ-ପରିପୂର୍ଣ୍ଣ
ଦୀପମାଳେ ବିଭୂଷିତ,

ଫଗୁଖେଳେ ରଙ୍ଗ- ବରଣା ନଗରୀ
ହର୍ମ୍ମ୍ୟ-ତଳେ ବିରାଜିତ।

ଉଭରାସ୍ୟ ହୋଇ ବସିଣ କଞ୍ଚୁକୀ
ଦେଖୁଅଛି କୁତୂହଳେ,

ମନୁଷ୍ୟ ଗହଳ ନୃତ୍ୟ ଫଗୁଖେଳ
କୀର୍ତ୍ତନାଦି ମହୀତଳେ।

ଏହି ରୂପେ ରାତ୍ର ଦଶଘଡ଼ି ଅନ୍ତେ
ଉତ୍ସବୁଁ ହୋଇ ବିରତ,

ଯେ ଯାହା ଭବନେ ନାଗରିକେ ଯାଇ
ସୁଖେ ହେଲେ ନିଦ୍ରାଗତ।

ଚନ୍ଦ୍ରମା ବୁଡ଼ିଲେ ହରଚଣ୍ଡୀଙ୍କର (୨)
ନିର୍ଜ୍ଜନ-ଦୂର-ପ୍ରାନ୍ତରେ,

ଏକ ଏକ ହୋଇ ପ୍ରଦୀପ ଆଲୋକ
ଲିଭିଗଲା ଘରେ ଘରେ।

ଗାଢ଼ ଅନ୍ଧକାର ନଭେ ଜଳେ ସ୍ଥଳେ
ଚୌଦିଗୁଁ ଆସିଲା ମାଡ଼ି,

ପ୍ରକୃତି ଦେହରୁ ଜୀବନ-ନାଟିକା
ସହସା ଗଲା କି ଛାଡ଼ି ?

ଝିଙ୍କାରି-ଝଙ୍କାର ମାତ୍ର କଲା ସେହି
ନୀରବତାକୁ ମୁଖର,

ହିମ-ବିନ୍ଦୁ-ବାହୀ ନିଶାନ୍ତ-ସମୀରେ
ଦେହ ହେଲା ଜରଜର।

ସୌଧଚୂଳେ ବସି ସ୍ଥବିର କଞ୍ଚୁକୀ
ଭାବୁଅଛି ହୃଦଗତେ —

"କେତେ କାଳ ମୁହିଁ ସଙ୍କେତକୁ ଚାହିଁ
ଜଗୁଥିବି ଏହି ମତେ ?

ବେନି ବର୍ଷ ଜଗି ବସି ସୌଧ ଚୂଳେ
ହୋଇଗଲି ଅବସନ୍ନ,

ତଥାପି ବିଜୟ — ଲକ୍ଷ୍ମୀ ଗଙ୍ଗେଶ୍ୱର
ପ୍ରତି ନ ହେଲେ ପ୍ରସନ୍ନ।

ଅଧର୍ମରେ ମତି ରାଜାଙ୍କର ସଦା
ଅଧର୍ମରେ ସଦା ଗତି,

ବିଶାଳ ସାମ୍ରାଜ୍ୟ ଲଭି ନ ତୁଟିଲା
ଲୋଭ ପରରାଜ୍ୟ ପ୍ରତି।

ସ୍ୱ[illegible]ଙ୍କର ପରରାଷ୍ଟ୍ର ଗ୍ରାସ
ବଳେ ଛଳେ କଉଶଳେ,

ପ୍ରବଳେ ରାସନୀ (୩) ନୀତି ଆଚରଣ
ଦାଶନୀ (୪) ନୀତି ଦୁର୍ବଳେ।

ପୁଣ୍ୟଶ୍ଳୋକ ଚୋର- ଗଙ୍ଗର ଅଙ୍ଗଜ
ହୋଇ ହେଲେ ଏଡ଼େ କ୍ରୂର,

ମଦେ ମତ୍ତ ହୋଇ ନିତ୍ୟ ମଣନ୍ତି, ଯା
ସ୍ୱଭାବେ କ୍ଷଣ-ଭଙ୍ଗୁର।

କେହି ରହି ନାହିଁ ରହିବ ନାହିଁଟି
ଭବ-ରଙ୍ଗ-ଭୂମି-ତଳେ,

ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ।

ସ୍ମୃତି-ତୀର୍ଥେ ଯାର ନାମ ହୋଇଅଛି
ଅମର ବର୍ଣ୍ଣେ ଅଙ୍କିତ,

ପୁଣ୍ୟଶ୍ଳୋକ ଐର (୫) ନରପତି ହେଲେ
କାଳ-ତୁଣ୍ଡେ କବଳିତ।

କାହିଁ ଗଲେ ଇନ୍ଦ୍ର- ଦ୍ୟୁମ୍ନ ମହୀପତି
ଉତ୍କଳ-ଗୌରବ-ରବି,

(୧) ପୁରୀର ନିକଟବର୍ତ୍ତୀ ହ୍ରଦ। (୨) ପୁରୀର ଦକ୍ଷିଣ-ପଶ୍ଚିମରେ ଚାରି କ୍ରୋଶ ଦୂରରେ ସାଗରସୈକତରେ ହରଚଣ୍ଡୀଙ୍କ ଦେଉଳ ପ୍ରତିଷ୍ଠିତ। (୩) ରାସନୀ — ରସନାସମ୍ବନ୍ଧୀୟ। (୪) ଦାଶନୀ — ଦଶନସମ୍ବନ୍ଧୀୟ। ରସନା ଦଶନର ସର୍ବଦା ଉପକାର [illegible]ର। ମାତ୍ର ଦଶନର ଧର୍ମ ସଂପୂର୍ଣ୍ଣ ବିପରୀତ। (୫) ଖଣ୍ଡଗିରିରେ ଐର ରାଜାଙ୍କର କୀର୍ତ୍ତି ଅଛି।

ନୀଳାଚଳେ ସ୍ଥାପି ଏହି କୀର୍ତ୍ତି କଳି-
କଳୁଷ-ପର୍ବତ-ପବି ?
କାଳଗର୍ଭେ ଭବେ ଲୀନ ହେଲେ କେତେ
ମହୀପତି ମହାଯଶା,
ହୋଇଅଛି ଯାଙ୍କ ଜୀର୍ଣ୍ଣ ସୌଧ ଏବେ
ବ୍ୟାଘ୍ର ଭଲ୍ଲୁକର ବସା !
ଶୈବାଳ ପାଷାଣ– ଭେଦୀରେ ସଉଧ
ହୋଇଛି ନୀଳବରଣ,
କୃମି-ତନ୍ତୁ-ଜାଲ ହୋଇଅଛି ଏବେ
ଗବାକ୍ଷର ଆସ୍ତରଣ ।
ସ୍ୱର୍ଣ୍ଣ ଦୀପାଲୋକେ ଉଠୁଥିଲା ଯହିଁ
ଅଗୁରୁ ଧୂପର ଘଟା,
ତିମିରକୁ ତହିଁ ବିଜନ୍ତି ବିଜନେ
ପକ୍ଷବାତେ ଚମଚଟା ।
ତୋଳିଲେ ଅତୁଳ ଦୁର୍ଗ (୧) ଯେଉଁ ବୀର
ବିରୂପା-ତଟିନୀ-ତୀରେ,
ବିରୂପା-ତରଙ୍ଗେ ବୁଦ୍‌ବୁଦ ପରାୟେ
ମିଶିଗଲେ କାଳନୀରେ ।
ଏବେ ସେହି ଦୁର୍ଗ ଭୀଷଣ ନିର୍ଘୋଷେ
ପାଷାଣ ହୋଇ ସ୍ଖଳିତ
ଦୂର ଜନପଦେ ସୁପ୍ତଜନେ କରେ
ନିଶୀଥେ ଭୀତ ଚକିତ ।
ମହୀ ଅବତଂସ —ଉତ୍କଳ କେଶରୀ-
ରାଜବଂଶ କାହିଁ ଗଲା ?
ବେଢ଼ିଛି ଉତ୍କଳ- କଳେବରେ ଯାର
ଅମଳ କୀର୍ତ୍ତି-ମେଖଳା ।
"ସେହି ବଂଶ କାହିଁ ?" ଏହି କଥା ଯେବେ
ଏକାମ୍ରେ ପୁଛିବ ଯାଇ,
ପ୍ରତିଧ୍ୱନି ଛଳେ କାନନେ ଦେଉଳ
ପ୍ରତିବାଣୀ ଦେବ "କାହିଁ ?"
ଚିରଦିନ ପାଇଁ କାହାରି ନୁହନ୍ତି
କର୍ମଭୂମି ବସୁନ୍ଧରା,
ପାଞ୍ଛିଛନ୍ତି ରାଏ ଭୁଜବଳେ ଭବେ
ଚିରସ୍ଥାୟୀ ହେବେ ପରା !
ନିଜ ନଶ୍ୱରତା ଗଙ୍ଗେଶ୍ୱର କେବେ
ସ୍ମରିଲେ ନାହିଁ ସ୍ୱପନେ,
ତମ-ଧର୍ମ-ବଶେ ଅନୁକ୍ଷଣ ରତ
କେବଳ ପର-ପୀଡ଼ନେ ।
ଦିଗ୍‌ବିଜୟ-ବ୍ୟାଜେ କେତେ ଭୂପାଳଙ୍କୁ
କଲେ ରାଜା ରଣେ ହତ,
ଥୋକେ ରାଜ୍ୟ ଛାଡ଼ି ଦୂରେ ପଳାଇଲେ
ଥୋକେ ହେଲେ ପଦାନତ ।
ଗଙ୍ଗେଶ୍ୱର ଦମ୍ଭ- ଭରେ ଥରହର
କମ୍ପଇ ଆଜ ଉତ୍କଳ,
କେତେକାଳ ଧର୍ମ ସହିବ ଅନୀତି,
ଦିନେ ଦେବ ପ୍ରତିଫଳ ।
ବୃଥା ଦମ୍ଭେ ମାତି ଦିଗ୍‌ବିଜୟୀ ବୀର
ଭ୍ରମୁଥାନ୍ତି ଦେଶେ ଦେଶେ,
ଜେତା ବିଜିତଙ୍କୁ କରାଳ କୃତାନ୍ତ
ପେଷିଦିଏ ନିର୍ବିଶେଷେ ।
ଭାଳନ୍ତି ଦାମ୍ଭିକେ ହସ୍ତେ ରଖିବାକୁ
ସମସ୍ତଙ୍କ ଭାଗ୍ୟ-ଡ଼ୋରି,
ନିଜ ଭାଗ୍ୟ-ଡ଼ୋରି କାଳହସ୍ତେ ଏହା
ପକାନ୍ତି ହେଳେ ପାସୋରି ।
ଅଜ୍ଞାନେ କଳ୍ପନା- ଉଦ୍ୟାନେ ଦାମ୍ଭିକ
ଗଢ଼େ ଆଶାକୁଞ୍ଜମାନ,
ତା ଦେଖି ଅଲକ୍ଷେ ପାଖେ ପାଖେ ଥାଇ
ହସୁଥାଇ ଜନ୍ତୁରାଣ ।
କ୍ରୂର କାଳଚକ୍ର ଘୂରୁଛି ମସ୍ତକେ
ଜାଣି ଲୋକେ ହୋନ୍ତି ବଣା,
କିପାଇଁ ଲୋଡ଼ନ୍ତି ରଣଭୂମି ରୂପ
କୃତାନ୍ତ-ରଙ୍ଗ-ଅଗଣା ?
ଅଗ୍ରେ ବାତ୍ୟା ଦେଖି ଜଳେ ଜଳଦସ୍ୟୁ
ଆକ୍ରମେ ବଣିଜ-ତରୀ,
ଦିଗ୍‌ବିଜୟ-ବ୍ୟାଜେ ସେହି ରୂପେ ପର-
ରାଜ୍ୟ ଆକ୍ରମେ ମହରୀ ।
ଦସ୍ୟୁ ବଣିକଙ୍କୁ ମାରେ ବାତ୍ୟା ଯଥା
ବୁଡ଼ାଇ ଜଳଧି ଜଳେ,
କାଳ ସେହିରୂପେ ଜେତା ବିଜିତଙ୍କୁ
ପୂରଇ ନିଜ କବଳେ ।
ଏ ଭବସାଗରେ ସର୍ବଗ୍ରାସୀ କାଳ-
ବାତ୍ୟା ବହେ ଅବିରତ,
ଏହା ଜାଣି ଲୋକେ କେଉଁ ଲାଭଆଶେ
କଳହେ ହୁଅନ୍ତି ରତ ?
ଗଜ କଚ୍ଛପର କଳି ପ୍ରାୟେ ମହା-
ଦମ୍ଭେ କରୁଥାନ୍ତି ଲୀଳା,
ମନେ ନାହିଁ ଦିନେ କାଳ-ପକ୍ଷିରାଜ
ଉପରୁ ମାରିବ ଚିଲା ।
ନାନ ଦୁର୍ନିମିତ୍ତ ନିତି ନିତି ଦେଖି
ମନେ ଲାଗେ ବଡ଼ ଡର,

(୧) ଚଉଦ୍ୱାର ଗଡ଼ ।

ଆସ୍ଥାନ-ମଣ୍ଡପେ ଉଡ଼ି ଆସି ଗୃଧ୍ର
ବସୁଛି ଥରକୁ ଥର।
ପ୍ରତି ରାତ୍ରେ କେତେ ଉଲ୍‌କାପିଣ୍ଡ ନଭୋ-
ମଣ୍ଡଳୁ ପଡୁଛି ଖସି,
ଆଜ ରାତ୍ରେ ପୁଣି ପେଚ଼କ ରାବିଲା
ଚନ୍ଦ୍ରଶାଳାଚୂଳେ ବସି।
ନିଶାନ୍ତେ ନଅରେ ଶୁଭୁଛି ଶବଦ
ଅବଳା ରୋଦନ ଭଳି,
କାହୁଁ ଆସୁଅଛି ସେ ବିକଳ ଧ୍ୱନି
କେହି ନ ପାରିଲେ କଳି।
ଅଲକ୍ଷଣ ଦେଖି ପୁରବାସିଙ୍କର
ହୃଦୟ ସଦା ସଭୟ,
ଏତେ ଦିନେ ଅବା ରାଜାଙ୍କର ହେଲା
ପୂର୍ବ ତପୋବଳ କ୍ଷୟ।
ରତ୍ନପୁରପତି ସଙ୍ଗେ ଅକାରଣେ
କୁକ୍ଷଣେ କଳି ଲାଗିଆଇ,
କେ ଜାଣେ କି ଭାଗ୍ୟ ଭଳିଲେ ସମର—
ରଙ୍ଗଭୂମେ ନର-ସାଇଁ ?
ଭବିତବ୍ୟ ଯାହା ଅବଶ୍ୟ ଘଟିବ,
କିଏ ତା କରିବ ଆନ ?
କିଏ ଅବା ଏହି ଜ୍ୟୋତିଶ୍ଚକ୍ର-ଗତି
ରୋଧିବାକୁ ବଳବାନ ?
ସ୍ୱାତି ଚିତ୍ରା ବେନି ତରାଳୁ ତୁଳାର
ବିରାଜେ ନଭୋମଣ୍ଡଳେ,
ଏହି ଦଣ୍ଡେ ଧାତା ତଉଳନ୍ତି ଅବା
ନରଭାଗ୍ୟ ମହୀତଳେ।
କାହା ଭାଗ୍ୟ ଗୁରୁ, କାହା ଭାଗ୍ୟ ଲଘୁ
ହେବ ଏ କାଳ-ସମରେ,
ଅଛି ଏକା ସେହି ବ୍ରହ୍ମାଣ୍ଡଠାକୁର
ଅନନ୍ତ ଜ୍ଞାନ-ଗୋଚ଼ରେ।
ସେହି ପାଇଁ ସିନା ଶ୍ରୀହସ୍ତେ ରଖନ୍ତି
ଅଜ୍ଞେୟ ଅଦୃଷ୍ଟ କଣ୍ଟି,
ଯା ଭେଦ ନ ପାଇ ଭାବି ଭାବି ବଣା
ହୁଅନ୍ତି ଶିବ ବିରଞ୍ଚି।"
ଏହି ରୂପେ ଭାଳୁଁ ଉତ୍ତରାଶା-ମୂଳେ
ପୁଣ୍ୟ ଧ୍ରୁବତାରା ତଳେ,
ସହସା କଞ୍ଚୁକୀ ଜ୍ୟୋତିଃପୁଞ୍ଜ ହେରି
ନିରେଖିଲା କୁତୂହଳେ।

କ୍ରମେ କ୍ରମେ ଶିଖା ବଢ଼ନ୍ତେ ଜାଣିଲା
ଅନଳୁଁ ନୁହେଁ ସେ ଆନ,
ଆନନ୍ଦେ ଗଦ୍‌ଗଦ ହୋଇ ବୃଦ୍ଧ କହେ
"ଧନ୍ୟ ଧନ୍ୟ ଭଗବାନ!
ସ୍ୱାଗତ ହେ ବହ୍ନି- ଶିଖା ତୋତେ, ତୁ ଯା
ଆଣିଲୁ ଶୁଭ ସନ୍ଦେଶ,
ଉଛଳି ମାର୍ଗରେ ଅଯୁତ କନ୍ଦରା
ଗିରି ନଦୀ ବନଦେଶ।
ଆଦ୍ୟ ଆବିର୍ଭାବ ଅଗ୍ନିଦେବଙ୍କର
ହୋଇଥିବ ମେଘାସନେ, (୧)
ରଶ୍ମିରେଖା ତହୁଁ ଧାଇଁ ଆସିଥିବ
ପଳକେ ଗନ୍ଧମାଦନେ। (୨)
ଦଣ୍ଡଦେବୀ (୩) ଅଧିଷ୍ଠିତ ସେହି ଶୈଳେ
ସାଳକାଷ୍ଠ କରି ଗଦା
ଅନଳ ଲଗାଇ ହୋଇଥିବେ ମତ୍ତ
ସଙ୍ଗୀତେ ଭୂୟାଁ (୪) ପ୍ରମଦା।
ବିମ୍ବିତ ହେବାରୁ ସେହି ଛବି ଆଦ୍ୟ
ବୈତରଣୀ ପୂତ ଝରେ,
ଉଲ୍ଲାସେ ଜୁଆଙ୍ଗେ (୫) ବହ୍ନି ଜାଳିଥିବେ
ଗୋନାସା-ଶୈଳ-ଶିଖରେ।
"ଜୟ-ଗଙ୍ଗେଶ୍ୱର" ବୋଲି କ୍ଷଣେ କ୍ଷଣେ
ଉଲ୍ଲାସେ ମାରି କୁହାଟ,
ରାତିଯାକ ବସି ଶିଖରେ ଜୁଆଙ୍ଗେ
କରୁଥିବେ ଟାଙ୍ଗୁନାଟ।
ଖଣ୍ଡାଧାର (୬) ଚଣ୍ଡ— ପ୍ରପାତ-ଶବଦେ
ଝଙ୍କାରିତ ଗର୍ଭ ଯାର,
ଅଟଇ ଯେ ସ୍ଥଳୀ ବୈତରଣୀଙ୍କର
ନିର୍ଜନ-ସୂତିକାଗାର।
ସ୍ତରେ ସ୍ତରେ ନୀଳ- ଶୃଙ୍ଗମାନ ନଭେ
ଟେକିଛନ୍ତି ଗିରି ଯହିଁ,
ଯାର ତୁଙ୍ଗ-ତଟେ ବନସ୍ପତି-ପର୍ଣ୍ଣେ
ତାରାପୁଞ୍ଜ ସଞ୍ଚରଇ।
ସେହି ସ୍ଥଳୀ ଛାଡ଼ି ମହାରଣ୍ୟମୟ
ଉପତ୍ୟକା ଲଂଘି ପଥେ,
ମନୋରଥ-ଗତି ଆସିଥିବ ରଶ୍ମି
ମାଲ୍ୟଗିରି ପରବତେ। (୭)
ଶିକୁଳା-ଦୁର୍ଗମ ଅଭ୍ରଂକଷ ସେହି
ଶିଖରିଚୂଳେ ବିହରି

(୧) ମୟୂରଭଞ୍ଜର ଉଚ୍ଚତମ ପର୍ବତ। (୨) କେନ୍ଦୁଝରର ଉଚ୍ଚତମ ପର୍ବତ। (୩) କେନ୍ଦୁଝରର ଅଧିଷ୍ଠାତ୍ରୀ ଦେବୀ। (୪) ଆରଣ୍ୟ ଆଦିମ ଜାତିବିଶେଷ। (୫) ଆରଣ୍ୟ ଜାତିବିଶେଷ। (୬) କେନ୍ଦୁଝର ଅନ୍ତର୍ଗତ ଜଳପ୍ରପାତ। (୭) ଲହଡ଼ାର ଏବଂ ଓଡ଼ିଶାର ଉଚ୍ଚ ପର୍ବତ।

ଜାଳିଥିବେ ଶୁଷ୍କ- ଧନ୍ୱନ୍ତରି-ତୃଣେ
ଅନଳ ଗଣ୍ଡ-ସୁନ୍ଦରୀ। (୧)
ସୃଜିଥିବ ତହିଁ କନ୍ଦରେ କନ୍ଦରେ
ସଘନେ ପ୍ରତିଶବ୍ଦକ,
ମର୍ଦ୍ଦଳର ତାଳେ ପଲ୍ଲବ ମଣ୍ଡନା-
ଗଣ୍ଡବାଳା-ହଲ୍ଲୀଷକ।
ବାଳଭାନୁ ପରି କୃଶାନୁ ସ୍ଫୁରିବ
ଏ ଅନ୍ତେ ବାରା ଅଚଳେ, (୨)
ପ୍ରକ୍ଷାଳଇ ଚନ୍ଦ୍ର- ବାଳିନୀ ବ୍ରାହ୍ମଣୀ
ପାଦ ଯାର କଳକଳେ।
ହିଙ୍ଗୁଳା (୩) ପୀଠରୁ ଭାସି-ଆସିଥିବା
ଅଙ୍ଗାର ସଙ୍ଗେ ମିଶ୍ରିତ,
ଖଦିର-ଇନ୍ଧନ- ଜାତ ବୈଶ୍ୱାନରେ
ଗିରି ହେବ ସୁରଞ୍ଜିତ।
ରଥାଙ୍ଗ-ଦମ୍ପତି ମାନସେ କ୍ଷଣିକ
ସୁଖ-ଭ୍ରମ ଉପୁଜାଇ,
ଅଭ୍ରଗର୍ଭ-ଗିରି କପିଳାସେ (୪) ରଶ୍ମି
ତହୁଁ ଆସିଥିବ ଧାଇଁ।
ସ୍ଫଟିକ-ପାବକ୍ଷ ପରାଏ ଯେ ଶୈଳେ
ଶୋଭେ କଳନାଦୀ ଝର,
ରକ୍ତାଶୋକ-କୁଞ୍ଜେ ବିରାଜନ୍ତି ଯାର
ମେଖଳେ ଚନ୍ଦ୍ରଶେଖର। (୫)
ନିଶୀଥେ ଓହ୍ଲାଇ କିନ୍ନରୀଏ ଯହିଁ
ଗାଆନ୍ତି ମହିମ୍ନ ସ୍ତବ,
ଉତ୍କର୍ଣ୍ଣେ ଶୁଣନ୍ତି ହରିଣୀଏ ମୁଗ୍ଧ
ହୋଇ ସେ ସଙ୍ଗୀତ ରବ।
ଯୋଗିଜନେ ତହିଁ ବହ୍ନି ଜାଳିଥିବେ
ବିଜୟ ସଂକେତ ପାଇ,
ତା ଦେଖି ହରିଣେ ଦାବାନଳ ଭ୍ରମେ
ଚୌଦିଗେ ଯିବେ ପଳାଇ।
ତଳେ ମହାରଣ୍ୟେ କୃଷି-କ୍ଷେତ୍ର-ମଞ୍ଚେ
କୃଷିରକ୍ଷୀ କୃଷୀବଳ–
ନେତ୍ରେ ଜଳାଇବ ଚମକ ଚପଳା-
ସନ୍ନିଭ ଜ୍ୟୋତି ଚପଳ।

ଏ ଅନ୍ତେ ଜାଳିବେ ରକ୍ଷଭୀତି-ପ୍ରଦ
ଅନଳ ଶିଖା ଉଜ୍ଜ୍ୱଳା,
ଝର ଉପବୀତ- ଧାରୀ ସପ୍ତଶଯ୍ୟା-
ଶିଖରୀ-ଶୃଙ୍ଗେ ତୱାଁଳା। (୬)
ତିନ୍ଦୁକ ଇନ୍ଧନ– ଜନ୍ମା ବିଭାବସୁ
ସ୍ଫୁଲିଙ୍ଗ-ମାଳା ଆକାଶେ,
ଦେଖି ଝର ଛାଡ଼ି ଜଳାର୍ଥୀ କରଭେ
ଦୂରେ ପଳାଇବେ ତ୍ରାସେ।
ବନସ୍ପତି ତାଳେ ସୁଖେ ସୁପ୍ତ ଗିରି
ନଦୀ ବିହାରୀ ବରଗ,
ତ୍ରାସେ ନୀଡ଼ ତ୍ୟଜି ପଳାଇବେ ଶୁଣି
ସେ ଅନଳ ଚଟଚ଼ଟ।
ଏ ପରେ ଶରଣ୍ଡା (୭)– ମୁଣ୍ଡେ ପରଚଣ୍ଡେ
ଉଠିବ ବହ୍ନିମୟୂଖ,
ଅଂଶୁପା-ସରସେ (୮) ମୁହୂର୍ତ୍ତେ ଉଚଳି
କମଳିନୀ ମ୍ଳାନମୁଖ।
ମହାନଦୀ-ନୀଳ- ସଳିଳ-ଦର୍ପଣେ
ତଦନ୍ତେ ହୋଇ ବିମ୍ବିତ,
ଦିଶୁଥିବ ରଶ୍ମି ଧୂମକେତୁ-ପୁଚ୍ଛ
ପ୍ରାଏ ଦୀର୍ଘ ପ୍ରସାରିତ।
ତଣ୍ଡି ପଠାଚାରୀ ମହିଷୀଏ ଦୂରୁଁ
ଚାହିଁଥିବେ ଏକଧ୍ୟାନେ,
ଦେହୁରିଏ ହର୍ଷେ ପକାଇବେ ହୁରି
ଚର୍ଚ୍ଚିକା-ଶୈଳ-ସୋପାନେ। (୯)
ତହୁଁ ବହ୍ନି ସ୍ଫୁରି ସାଳ ମହାରଣ୍ୟେ
ଦ୍ୱିଶିର ମହା ପର୍ବତେ (୧୦)
ଶୋଭିବ ଅଚଳ ଦୀପସ୍ତମ୍ଭ ପ୍ରାଏ
ନୀଳ-ପାରାବାର-ପଥେ।
ଶବର-ଯୁବାଏ ସେ ବହ୍ନିରେ ଦଗଧ
କରିଣ ବନ୍ୟ-ଶିକାର,
ଶୀତେ ମଦ୍ୟ ସଙ୍ଗେ ସୁଖେ ତପ୍ତ-ମାଂସ
କରୁଣଥିବେ ଆହାର।
ହାଟକେଶ୍ୱରର (୧୧) ତପ୍ତ ପ୍ରସ୍ରବଣ
ରଖି ବାମେତର ଦିକେ,

(୧) ଗଣ୍ଡ– ଆଦିମ ଜାତିବିଶେଷ। (୨) ତାଳଚେର ଅନ୍ତର୍ଗତ ପର୍ବତ। (୩) ହିଙ୍ଗୁଳା ତାଳଚେର ରାଜ୍ୟରେ ପ୍ରତିଷ୍ଠିତ। ଏହାକୁ ଉତ୍କଳର ଜ୍ୱାଳାମୁଖୀ ବୋଲାଯାଇପାରେ। (୪) କପିଳାସରେ କୃଷ୍ଣାଭ୍ର ମିଳେ। (୫) କପିଳାସ– ପ୍ରତିଷ୍ଠିତ ମହାଦେବ। (୬) ସପ୍ତଶଯ୍ୟା ପର୍ବତ ଢେଙ୍କାନାଳର ଅନ୍ତର୍ଗତ। ତୱାଁଳା– ଆରଣ୍ୟ ଜାତିବିଶେଷ। (୭) ବାଙ୍କି ଅନ୍ତର୍ଗତ ମହାନଦୀର ଉତ୍ତରତୀରବର୍ତ୍ତୀ ପର୍ବତ। (୮) ଶରଣ୍ଡା ପର୍ବତର ପାଦଦେଶରେ ଅବସ୍ଥିତ। (୯) ଚର୍ଚ୍ଚିକା– ବାଙ୍କିର ରାଜଧାନୀ। ଏଠାରେ କ୍ଷୁଦ୍ର ଶୈଳୋପରି ଚର୍ଚ୍ଚିକାଦେବୀ ପ୍ରତିଷ୍ଠିତ। (୧୦) ବାଙ୍କିର ସର୍ବପ୍ରଧାନ ପର୍ବତ। (୧୧) ଖୋର୍ଦ୍ଧାରୁ ପାଞ୍ଚ କ୍ରୋଶ ଦୂରରେ ଅବସ୍ଥିତ ଉଷ୍ଣପ୍ରସ୍ରବଣ। ହାଟକେଶ୍ୱର ମହାଦେବ ଏହିଠାରେ ପ୍ରତିଷ୍ଠିତ।

ରଶ୍ମି-ରେଖା ମହା- ଖରେ ଆସିଥିବ
ବରୁଣୀ-ଶିଖରୀ-ଶିଖେ । (୧)
ଲତା-ଦୋଳା-ଶେଯେ ବନଦେବତାଙ୍କୁ
କେଳି-ଦୀପ-ରୂପେ ଖଟି,
ତହିଁ ଉଚ୍ଛଳିବେ ବିଭାବସୁ ଦେବୀ-
ଅଧିଷ୍ଠିତ-ଶୈଳ-କଟି ।
ଦୟାତୀରେ ତରୁ- ହୀନ ଟଙ୍କ ଯହିଁ
ନିଦାଘେ ମଧ୍ୟାହ୍ନ କାଳେ,
ମାର୍ତ୍ତଣ୍ଡ-ମୟୂଖେ ନୀଳ ମରୀଚିକା
ସଦା ଖେଳେ ଚକ୍ରବାଳେ ।
ଭରଚିଆ ରୂତେ ମୁଖର ସେ ଟଙ୍କ-
ଭୂମି ଅତିକ୍ରମି ପଥେ,
ଆସିଅଛି ରଶ୍ମି ଗୁଳ୍ମଜଟାଧର
ବିଶ୍ୱନାଥ ପରବତେ । (୨)
ଚନ୍ଦ୍ରଚୂଡ଼-ବଡ଼- ଶୃଙ୍ଗାର-ରଚନା
କାଳେ ସେ ଶୈଳେ ସେବକେ,
ଆନନ୍ଦେ ଅନଳ ଜାଳିଲେ ଦେଉଳ-
କିରୀଟ-ଗିରି-ମସ୍ତକେ ।
ପୁନ୍ନାଗ-ଖର୍ଜୁର- ନାରିକେଳପୂର୍ଣ୍ଣ
ଲଂଘି ନାନା ଜନପଦ,
ଶଙ୍ଖ-କ୍ଷେତ୍ରେ (୩) ଆଣୁ— ଅଛି ରଶ୍ମିରେଖା
ଏ ବାରତା ସୁଖପ୍ରଦ ।
ଜଳି ଉଠିଲାଣି ବହ୍ନିଶିଖା ପୁଣି
ସଘନେ କମ୍ପି ଅନିଳେ,
ସୁନୀଳ ଚିଲିକା- ତରଙ୍ଗ-ତାଡ଼ିତ
ତାରାଦେବୀଙ୍କ ଶଇଳେ । (୪)
ବିଜୟ ସଙ୍କେତ ଏହି ବହ୍ନିଶିଖା
ଏଥିରେ ନାହିଁ ସଂଶୟ,
ଖରେ ନରପତି ପରବାସୁଁ ଏବେ
ବାହୁଡ଼ିବେ ନିଜାଳୟ ।
ଅଲକ୍ଷଣ ଦେଖି ମହାଭୀତି ଜାତ
ହୋଇଥିଲା ଲୋକ ମନେ,
ଏହି ରଶ୍ମି ଦୂର କଲା ସେ ଭୀତିକି
ଶ୍ରୀକ୍ଷେତ୍ରେ ଆସି ସୁକ୍ଷଣେ ।
ରାଜାଙ୍କ କୁଶଳେ ରାଜ୍ୟର କୁଶଳ
ରାଜା ରାଜ୍ୟ-କର୍ଣ୍ଣଧାର,
ରାଜ-ଯନ୍ତ୍ରୀ ବିନୁ ରାଷ୍ଟ୍ର-ଯନ୍ତ୍ର ଯଣେ
ହୁଅଇଟି ନାରଖାର ।

ନୀଳାଚଳସାଇଁ ପ୍ରସାଦେ ନରେଶ
ଗଙ୍ଗେଶ୍ୱର ସର୍ବଜୟୀ,
ପଦାନତ ଆଜ ଦେବରାଜଙ୍କର
ସମଗ୍ର ଉତ୍କଳ ମହୀ ।
ଏ ସମ୍ବାଦ ମୁହିଁ ନିବେଦିବି ଯାଇଁ
ମହାଦେବୀଙ୍କ ଛାମୁରେ,
ଦୋଳୋତ୍ସବ ସହ ବିଜୟ-ଉତ୍ସବ
ମିଶିବ କାଲି ଏ ପୁରେ ।''
ଏହା କହି ମହା- ଉଲ୍ଲାସେ କଞ୍ଚୁକୀ
ଧାଇଁରେ ଓହ୍ଲାଉଁ ସୋପାନେ,
ଦେଖି ଚମକିଲା ଅଶରୀରୀ ନାରୀ
ମୂରତି ପୁର-ଉଦ୍ୟାନେ ।
ଦେଖୁଁ ଦେଖୁଁ ମୂର୍ତ୍ତି ଅନ୍ଧକାରେ ମିଶି-
ଗଲା ଉଦ୍ୟାନ ପ୍ରାଚୀରେ,
ସ୍ୱିନ୍ନ, କଣ୍ଟକିତ ହୋଇ ବୃଦ୍ଧ ଭୟେ
ଥରିଲା ସର୍ବଶରୀରେ ।
ସୌଧପୃଷ୍ଠୁ ବୃଦ୍ଧ ସତ୍ୱରେ ଓହ୍ଲାଇ
ରାଣୀଙ୍କି ଭେଟି ନିର୍ଜନେ
ଛାମୁରେ ପ୍ରଣତ ହୋଇ ଯୋଡ଼କରେ
କହେ ବିନୟ ବଚନେ—
''ହେ ଦେବି ! ଆସିଲା ନିଶା ଅନ୍ତେ ରତ୍ନ-
ପୁର ବିଜୟ ଉଦନ୍ତ,
ଏତେଦିନେ ତୁମ୍ଭ ଭାଗ୍ୟେ ସୁପ୍ରସନ୍ନ
ବଡ଼-ଦେଉଳ-ସାମନ୍ତ ।
ଉଦୀଚୀ-ବଦନେ ଝଳି ଯେହ୍ନେ ନବ-
ସୁବର୍ଣ୍ଣର ଅବତଂସ,
ଶୈଳଶୃଙ୍ଗେ ଜଳି ସୁବର୍ଣ୍ଣ-ଦୀଧିତି (୫)
ଦୁଃଖତମ କଲେ ଧ୍ୱଂସ ।
ଏକମାତ୍ର ରତ୍ନ ପୁରପତି ଥିଲେ
ଦେବରାଜାଙ୍କର ଅରି,
ଦେବକୂଟେ ପଡ଼ି ରାଜପଦେ ଏବେ
ସେବିବେ ସେବକ ପରି ।
ମାତ୍ର ଦେବି ! ତଳେ ଓହ୍ଲାଇବା ବେଳେ
ଦେଖିଲି ଯାହା ନୟନେ,
ଅଭୟ ଏ ଦାସେ ଆଜ୍ଞା ଦେଲେ ତାହା
ନିବେଦିବି ଶ୍ରୀଚରଣେ ।''
ମହାଦେବୀଙ୍କର ଆଶ୍ୱାସ ବଚନ
ପାଇ କହଇ ସ୍ଥବିର,

(୧) ବରୁଣୀ ପର୍ବତ ଖୋର୍ଦ୍ଧାନଗରର ନିକଟବର୍ତ୍ତୀ । ଏହି ପର୍ବତର ମେଖଳାରେ ବରୁଣୀଦେବୀ ପ୍ରତିଷ୍ଠିତ । (୨) ଦେଲାଙ୍ଗ ନିକଟବର୍ତ୍ତୀ ସ୍ୱନାମପ୍ରସିଦ୍ଧ ପର୍ବତ । ଏହି ପର୍ବତର ଶିଖରଦେଶରେ ବିଶ୍ୱନାଥଙ୍କ ଦେଉଳ ବିରାଜିତ । (୩) ଶଙ୍ଖକ୍ଷେତ୍ର— ଶ୍ରୀକ୍ଷେତ୍ର । (୪) ଚିଲିକା ତୀରବର୍ତ୍ତୀ ଗୋଟିଏ ପର୍ବତର ପାଦଦେଶରେ ତାରାଦେବୀଙ୍କ ଦେଉଳ [illegible]ଷ୍ଠିତ । (୫) ସୁବର୍ଣ୍ଣଦୀଧିତି— ଅଗ୍ନି ।

ଦେଖିଲି ଯା, ଦେବି ! ଅଦ୍ଭୁତ ସେ କଥା
ସ୍ମରଣେ କମ୍ପେ ଶରୀର ।
ମକର ଉଦ୍ୟାନେ ମାଧବୀମଣ୍ଡପେ
ଦେଖିଲି ନାରୀ ମୂରତି,
ଦେଖୁଁ ଦେଖୁଁ ତାହା ତିମିରେ ପ୍ରାଚୀରେ
ମିଶିଗଲା ଖରେ ଅତି ।
ତେମାଙ୍କ ଆକାର ତେମା ବେଶଭୂଷା
ସମସ୍ତ ଅଟଇ ଏକା,
ସେ ପ୍ରଫୁଲ୍ଲଭାବ ନାହିଁ ସେ ବଦନେ
କେବଳ ବିଷାଦ-ରେଖା ।
ଦର୍ପଣ ଫଳକେ ତେମା ପ୍ରତିବିମ୍ବ
ଯେସନେ ଖରସଂଚାରୀ,
ନୟନ ପଲକେ ନୟନରୁ ମୋର
ଅଦୃଶ୍ୟ ହେଲେ ସେ ନାରୀ ।
ଅତି ଅଦଭୁତ- ରୂପେ ମୋର ଦୃଷ୍ଟି
ପଥରୁ ନେଲା ମେଲାଣି,
ଆକାରୁଁ ଜାଣିଲି, ମହାଦେବି ! ସେହି
ନିଶ୍ଚେ ଅଶରୀରୀ ପ୍ରାଣୀ ।
ଦେହକେ ଏ କଥା ଦେଖି ନଥିଲି ମୁଁ,
ନ ଦେଖି ନୁହନ୍ତା ପ୍ରତେ,
ପାସୋର ନ ଯିବ ମନୁଁ ସେ ମୂରତି
କି ସ୍ୱପ୍ନେ କିବା ଜାଗ୍ରତେ ।"
ଏହା କହି ବୃଦ୍ଧ କରଯୋଡ଼ି କରି
ନତ କଲା ପୁଣି ମଥା,
ବିସ୍ମୟେ ମହିଷୀ ସ୍ତମ୍ଭୀଭୂତ ହେଲେ
ଶୁଣି ଏ ଅଦ୍ଭୁତ କଥା ।
ମନରେ ପାଞ୍ଚିଲେ ରଜନୀରେ ହେବ
ଏ ଗୂଢ଼ ରହସ୍ୟ ଭେଦ,
କାହାରିକି କିଛି କହିବାକୁ ଦେବୀ
ବୃଦ୍ଧକୁ କଲେ ନିଷେଧ ।
ରାଣୀଙ୍କ ଆଦେଶେ ବିଜୟ-ବାରତା
ନଗରେ ହେଲା ପ୍ରଚାର,
ନଗର-ବାସୀଙ୍କ ଉଲ୍ଲାସ ଚହଳେ
କମ୍ପିଗଲା ରାଜଦ୍ୱାର ।
ଗଙ୍ଗେଶ୍ୱର ସ୍ତୁତି- ବନ୍ଦନା ତୋରଣେ
ଉଲ୍ଲାସେ ଗାଇଲେ ଭାଟେ,
କିମ୍ବଦନ୍ତୀ ତାହା ପ୍ରଚାରିଲା ପୁରେ,
ଦେବାଳୟେ, ପଥେ, ଘାଟେ ।
ତାହୁଁ ତାହୁଁ ହେଲା ଗରୁଡ଼ଧ୍ୱଜ ବନେ
ପରିଣତ ନାଳ ନଭଃ,
ଶୌଦିଗେ ଶୁଭିଲା ଲୋକକୋଳାହଳେ
"ଜୟ ଗଙ୍ଗେଶ୍ୱର" ରବ ।
ଫଗୁଖେଳେ ମାତି "ଜୟ ଗଙ୍ଗେଶ୍ୱର"
ଉଚ୍ଚାରି ହର୍ଷେ ଯୁବକେ,
ସରାଗେ ଫିଙ୍ଗିଲେ ଫଗୁ ନାଗରୀଙ୍କ
ଅମଳ ଗଣ୍ଡ ଫଳକେ ।
ଗାଇଲେ ମଧୁରେ "ଗଙ୍ଗେଶ୍ୱର ଜୟ"
ମାହାରୀ ଦେବ-ବଲ୍ଲଭା,
ସାଗର ସମୀର ରଙ୍ଗେ ଦୋଳାଇଲା
ମସ୍ତକେ କୁସୁମ ଗଭା ।
ସୁମଧୁର ଅର୍ଦ୍ଧ- ସ୍ଫୁଟ ମିଷ୍ଟ ଭାଷେ
ଅଧଃକୃତ କରି ସାଚି
"ଜୟ ଗଙ୍ଗେଶ୍ୱର" ବୋଲି ସାହିଦାଣ୍ଡେ
ଶିଶୁଏ ବୁଲନ୍ତି ନାଚି ।
ଅଶ୍ୱତ୍ଥ-ଓହଳ ପରାଏ ଜଟିଳ
ପର୍ଣ୍ଣ-ଛତ୍ରତଳବାସୀ,
"ଜୟ ଗଙ୍ଗେଶ୍ୱର" ଏକତନ୍ତ୍ରୀତାନେ
ଗାଇଲେ ବୃଦ୍ଧ ସନ୍ନ୍ୟାସୀ ।
"ଜୟ ଗଙ୍ଗେଶ୍ୱର" ବୋଲି ଦାଣ୍ଡେ ପଣ୍ଡା
ଯାତ୍ରୀ ଆଗେ ଆଗେ ଚଳେ,
ତା ଶୁଣି ଯାତ୍ରିଏ ସମସ୍ୱରେ ଯୋଗ
ଦିଅନ୍ତି ସେହି ଚହଳେ ।
ଉପବନେ ମଲ୍ଲ- ଶାଳେ ମଲ୍ଲମାନେ
ମତ୍ତ ହୋଇ ରଙ୍ଗୋଦକେ
"ଜୟ ଗଙ୍ଗେଶ୍ୱର" ବୋଲି ମାଳଖମ୍ବ
କମ୍ପାନ୍ତି ବାହୁସ୍ଫୋଟକେ ।
"ଜୟ ଗଙ୍ଗେଶ୍ୱର" ବୋଲି ସ୍ୱର୍ଗଦ୍ୱାରେ
ଯାତ୍ରିଏ କରନ୍ତି ଗୋଳ,
ନାଚି ନାଚି ତହିଁ ଯୋଗଦିଏ ଆସି
ଫେନିଳ ସିନ୍ଧୁ-କଲ୍ଲୋଳ ।
ଟିପାକାଠି ପୃଷ୍ଠେ (୧) ତରଙ୍ଗେ ନୋଳିଆ
ଗାଏ "ଜୟ-ଗଙ୍ଗେଶ୍ୱର",
ଜାଲ ବୁଣୁଁ ବୁଣୁଁ କୂଳୁଁ ନୋଳିଆଣୀ
ଦିଅନ୍ତି ହର୍ଷେ ଉତ୍ତର ।
ଇନ୍ଦ୍ରଦ୍ୟୁମ୍ନ-ତୀରେ ହାତେ ଲିଆ ଧରି
ଡାକଇ କୌତୁକୀ ହୋଇ,
କମଠକୁ ଯାତ୍ରୀ, ନଆସିଲେ ତହୁଁ
ଦିଏ ଗଙ୍ଗେଶ୍ୱର ଦୋହି ।
ବାଲୁକା-ପ୍ରାନ୍ତରେ ଗୋରୁ ଜଗି ଗୋପ-
ଶିଶୁ ଗାଏ ଗ୍ରାମ୍ୟ ତାଳେ,

(୧) ଟିପାକାଠି– କାଷ୍ଠଦଣ୍ଡବିଶେଷ । ନୋଳିଆମାନେ ଏହା ଉପରେ ବସି ଅବଲୀଳାକ୍ରମେ ତରଙ୍ଗମୟ ସମୁଦ୍ରରେ ବିଚରଣ କରନ୍ତି ।

ଗଙ୍ଗେଶ୍ୱର-ଗାଥା ଦୋହଲି ଦୋହଲି
ଭୂମି-ଲମ୍ବି-ବରଡ଼ାଳେ ।
ଏରୂପେ ବିଜୟ ଉଦ୍‌ଘୋଷିତ ହେଲା
କିବା ଜଳେ, କିବା ସ୍ଥଳେ,
ଉତ୍ସବ ଉପରେ ଉତ୍ସବ ଅପର
ଲାଗିଗଲା ନୀଳାଚଳେ ।
ଆଗ୍ନେୟ ସଙ୍କେତ ଜାଳିବା ଆଗରୁ
ମେଘାସନ ପରବତେ,
ପେଷିଥିଲେ ଅଶ୍ୱ- ଯାନେ ଗଙ୍ଗେଶ୍ୱର
ପ୍ରଣିଧି ମାଗଧ-ପଥେ ।
ପ୍ରଦୋଷେ ସେ ଦୂତ ପ୍ରବେଶି ନଗରେ
ବିନୟେ ନୁଆଇଁ ମଥା,
ନିବେଦିଲା ମହା- ଦେବୀ ପଦେ ରତ୍ନ-
ପୁରର ଜୟ-ବାରତା ।
କହିଲା ପ୍ରଣିଧି, ରତ୍ନପୁର ଦେବି !
ହୋଇଅଛି ଭୂମିସାତ,
ଏତେକାଳେ କଲେ ମନୋରଥ ପୂର୍ଣ୍ଣ
ପ୍ରଭୁ ନୀଳାଚଳନାଥ ।
ବୃଦ୍ଧ ରତ୍ନପୁର- ପତି ହେଲେ ମହା-
ରାଜାଙ୍କ ହସ୍ତେ ନିଧନ,
ରତ୍ନପୁର-କ୍ଷେମା ଅନ୍ନପୂର୍ଣ୍ଣା ଏବେ
ସେବିବେ ଦେବୀ-ଚରଣ ।
ପୂର୍ଣ୍ଣମାସୀ ଦିନେ ବୀର ଗଙ୍ଗେଶ୍ୱର
ବିଜେ କରିବେ ଭବନେ,
ବିଜିତ ଯାବତ ସାମନ୍ତ ଭୂପାଳ
ଆସିବେ ନୃପ ଗହଣେ ।''
ଶୁଣି ରାଣୀ ରାଜ ଆଗମନ ପାଇଁ
ଯଥାଯୋଗ୍ୟ ଆୟୋଜନ,
କରିବାକୁ ଭୃତ୍ୟ ଦଳେ ଆଜ୍ଞା ଦେଇ
ଭଜିଲେ ପୁର ନିର୍ଜନ ।
ବିକଳେ ଅବନୀ ଶୟନେ ନିହିଲେ
ନିଜ ତନୁ ସୁକୋମଳ,
ବିଷାଦେ କମଳ ନୟନ ଯୁଗଳୁଁ
ଝରିଲା ଲୋତକଜଳ ।
''ଆହା ରେ କୌଶଲ୍ୟା'' କହିଲେ ସୁନ୍ଦରୀ
''ଏହା କି ଥିଲା ତୋ ମନେ ?
ନିଜ ମୁଖେ କାଳି ଦେଇ ସେହି କାଳି
ଦେଲୁ ମୋହରି ବଦନେ !
ଉତ୍କଳ-ଆକାଶେ ଅମଳ ଶଶାଙ୍କ
ଗଙ୍ଗେଶ୍ୱର ନରସାଇଁ,
ସୁତା ହୋଇ ତାଙ୍କ ଉଜ୍ଜ୍ୱଳ ଶ୍ରୀମୁଖେ
କଳଙ୍କ ଦେଲୁ ଲଗାଇ ।
ଏଡ଼େ ରାଜକୁଳେ ଜନ୍ମ ଲଭି ତୁହି
ହେଲୁ ପୁଣି କଳଙ୍କୁଣୀ !
ମହିଳା ମଣ୍ଡଳ କର୍ଣ୍ଣେ ହାତ ଦେଲେ
ତୋର ଏ ଅନୀତି ଶୁଣି ।
ଫୁଟି ଆସୁଥିବା ରକ୍ତପଦ୍ମ ପ୍ରାଏ
ସୁନ୍ଦର ତୋର ବଦନ,
ବୋଳି ଦେଉଥିଲା ଦେଖିଲା ଜନର
ନୟନେ ଅମୃତାଞ୍ଜନ ।
ସେ ଅମଳ-କାନ୍ତି ପାପୀ-ପାପ-ମନୁ
ପାପ ଦେଉଥିଲା ତଡ଼ି,
ଖର ସୌରକରେ ଶୁଷ୍କ ହୋଇ ଯେହ୍ନେ
ପଙ୍କ ପଡ଼େ ତଳେ ଝଡ଼ି ।
ଜ୍ଞାନୀଏ କହନ୍ତି ସୌନ୍ଦର୍ଯ୍ୟ-ସୃଜନ
ହୋଇ ନାହିଁ ପାପ ପାଇଁ,
ସତ୍ୟ ମଣିଥିଲି ମାଆ ଲୋ, ତୋହର
ସରୋଜ-ମୁହଁକୁ ଚାହିଁ ।
ବିଶ୍ୱଜନ-ମନ ପ୍ରହ୍ଲାଦନ ତୋର
ସୁଚାରୁ-ଚନ୍ଦ୍ର-ବଦନ,
ବିନୟ, କରୁଣା, ଲଜ୍ଜାଦିର ଥିଲା
ଅମଳ ହେମ-ଦର୍ପଣ ।
କି କୁହୁକେ ପଡ଼ି ଅପଥେ ନିହିଲୁ
ପାଦ ଧର୍ମପଥ ଛାଡ଼ି ?
ବୁଡ଼ାଇଲୁ କୁଳ କଳଙ୍କ-ସାଗରେ
ନିଜେ ସେ କଳଙ୍କେ ବୁଡ଼ି ।
କିଏ ଜାଣିଥିଲା କର୍ମେ, ମାଲୋ, ତୋର
ବିହି ହେବେ ଏଡ଼େ ବାମ ?
କିଏ ଜାଣିଥିଲା ସେ ରୂପର ହେବ
ଏ ଦାରୁଣ ପରିଣାମ ?
କେଉଁ ମହାପାପୀ ନାରକୀ ତୋର, ମା,
କଲା ଏ ଘୋର ଦୁର୍ଗତି ?
ଏ ଘୋର ଅନୀତି କେମନ୍ତେ ସହିଲେ
ବିଶ୍ୱଧାତ୍ରୀ ବସୁମତି !
ତିନି ଦିନ ପରେ ନୃପଚୂଡ଼ାମଣି
ବିଜେ କରିବେ ଏ ପୁରେ,
ଦେଖାଇବି ଏହି ଦଗ୍ଧ-ମୁଖ, ମାଗୋ,
କେମନ୍ତେ ନୃପ ଛାମୁରେ ?
ଏ କି କଥା ପୁଣି କହିଲା କଞ୍ଚୁକୀ ?
ଭାଳି ପାଉ ନାହିଁ କୂଳ !
ବିସ୍ମୟ ସଂଶୟେ ପଡ଼ି ମନ ମୋର
ହେଉଛି ସଦା ଆକୁଳ ।
କ୍ଷେମାର ସ୍ୱରୂପ ଦେଖିଲା ପ୍ରହରୀ
କହୁଛି ନିଜ ନୟନେ,

ସତ କି ମିଛ ତା ରାତ୍ରେ ଆଜ ଜଗି
ଦେଖିବି ବସି ନିର୍ଜନେ ।

ଶୁଣିଲା ବେଳରୁ ଘାଣ୍ଟି ହେଉଅଛି
ହିଆ ମୋର ଅବିରତେ,

ଏ ଅଦ୍ଭୁତ କଥା ନିଜେ ନ ଦେଖିଲେ
କେମନ୍ତେ ବା ହେବ ପ୍ରତେ ?”

ଏହି ରୂପେ ରାଣୀ ଭାଳୁଁ ଭାଳୁଁ ଦିନ
ହୋଇଗଲା ଅବସାନ,

ଉଠିଲା ଦେଉଳେ ସନ୍ଧ୍ୟା ଆଳତିର
ଶଙ୍ଖ ଘଣ୍ଟା ବାଦ୍ୟତାନ ।

ସନ୍ଧ୍ୟା ଜାଣି ରାଣୀ ସନ୍ଧ୍ୟାକୃତ୍ୟ ସାରି
ଆଦେଶ ଦେଲେ ବହନ

ରାଜ-ବନ୍ଦାପନା ପାଇଁ ଯଥାବିଧି
କରିବାକୁ ଆୟୋଜନ ।

ଅର୍ଦ୍ଧରାତ୍ର ଯାଏ ବିଧିରେ ନଅରେ
ହେଲା ଦୋଳ-ମହୋତ୍ସବ,

ନିବର୍ତ୍ତିଲା ତହୁଁ କ୍ରମେ କ୍ରମେ ପୁର-
ମାର୍ଗେ ଲୋକ-କଳରବ ।

ବିରାମ-ଦାୟିନୀ ନିଦ୍ରାଦେବୀ କୋଳେ
ବିରାମ ଲଭିଲେ ପ୍ରାଣୀ,

ଅସ୍ଥିର ଜୀବନ ଉର୍ମିମାଳାକୁଳା
ସ୍ତବ୍‌ଧ ହେଲା ରାଜଧାନୀ ।

ନିସ୍ତବ୍‌ଧ ନୀରବ ଜୀବଶୂନ୍ୟ ପ୍ରାଏ
ହୋଇଗଲା ଧରା ତଳ,

କେବଳ ଶୁଭିଲା ଦୂରେ ସୁଗମ୍ଭୀର
ଅମ୍ବୁ ରାଶି କୋଳାହଳ ।

ମଧୁର ବିସ୍ମୃତି ସୁଖ ନିଶାଥିନୀ
ସର୍ବ ଜୀବେ ଦେଲେ ଆଣି,

ଏ ସୁଖରୁ ଏକା ବଞ୍ଚିତ ସିନା ସେ
ଚିନ୍ତାକୁଳା ରାଜରାଣୀ ।

ନିଦ୍ରା ଭଜିଲାରୁ ସଖୀଏ, ନୀରବେ
ବାହାରି ପୁରୁଁ ବରାକୀ

ମକର-ଉଦ୍ୟାନେ ବୃକ୍ଷବାଟିକାରେ
ବସିଲେ ଯାଇ ଏକାକୀ ।

ଗୋଟିଏ ପଲ୍ଲବ ହଲୁ ନାହିଁ ଡ଼ାଳେ
ନିଶ୍ଚଳ ପାଦପପନ୍ତି,

ଊର୍ଦ୍ଧ୍ୱବାହୁ ଧ୍ୟାନେ ମଗ୍ନ ଯତି ଯଥା
ଉଭା ହୋଇ ବିରାଜନ୍ତି ।

ନିରନ୍ତର ସେହି ଝିଲ୍ଲି-ରବ ବିନୁ
ଆଉ କିଛି ଶୁଭୁ ନାହିଁ,

କେବେ ଅବା ସ୍ୱପ୍ନେ ଝାଡୁଅଛି ଡ଼େଣା
ବିହଙ୍ଗ ସ୍ୱନୀଡ଼ଶାୟୀ ।

ଜ୍ୟୋତିର୍ମୟ-ବପୁଃ ଜକ ଜକ ହୋଇ
ଊର୍ଦ୍ଧ୍ୱେ ଜଳୁଛନ୍ତି ତାରା,

ସାଧୁ ଆତ୍ମା ଅବା ଅନନ୍ତେ ବିହରେ
ମର୍ତ୍ତ୍ୟେ ତେଜି ଦେହକାରା ।

ଅର୍ଦ୍ଧ-ଯାମ କାଳ ବସିଲା ଉତ୍ତାରୁ
ଅସ୍ଫୁଟ-ରୋଦନ-ସ୍ୱନ,

ଶୁଣି ରାଣୀ ସେହି ଧ୍ୱନି ଲକ୍ଷ୍ୟ କରି
ଡ଼େରିଲେ ତହିଁ ଶ୍ରବଣ ।

ନିତାନ୍ତ କରୁଣ ସେହି ଧ୍ୱନି ଶୁଣି
ପାଷାଣ ଯିବ ତରଳି,

କିଏ କାନ୍ଦୁଅଛି ସେ ବିକଳସ୍ୱରେ
ନ ପାରିଲେ ଦେବୀ କଳି ।

କିଛି କ୍ଷଣ ପରେ ଚକିତେ ଭ୍ରମିତେ
ଦେଖିଲେ ରାଣୀ ପାର୍ବତୀ,

ମାଧବୀ-ମଣ୍ଡପେ ଉଭା ହୋଇଅଛି
ଅସ୍ପଷ୍ଟ-ନାରୀ ମୂରତି ।

ଅବିକଳ ଜେମା ପରି ଦିଶୁଅଛି
ରୂପ ବେଶଭୂଷା ଆଦି,

ମାତ୍ର ପକାଇଛି ମୁଖ-ଚନ୍ଦ୍ରମାକୁ
ବିଷାଦ-ମେଘ ଆଚ୍ଛାଦି ।

କୁହୁଡ଼ିରେ ବୁଡ଼ି ଦିଶନ୍ତି ପ୍ରତ୍ୟୁଷେ
ଯେସନ ଆକୃତିମାନ,

ସେହିପରି ବାମା ପାଣ୍ଡୁଦେହ ଛବି
ମଣ୍ଡପେ ଦିଶଇ ମ୍ଳାନ ।

ସ୍ଥୂଳ ଦେହେ ସଦା ଅସୁଲଭ ସେହି
ପାଣ୍ଡୁର ଛବି ବାମାର,

ସେଥିପରେ ପୁଣି ଚନ୍ଦ୍ରାଲୋକ ପଡ଼ି
ଦିଶଇ ପାରଦାକାର ।

ଦେଖି ଦେବୀଙ୍କର ଭୟେ ହୋଇଗଲା
ପାଣ୍ଡୁ-ବର୍ଣ୍ଣ ଗଣ୍ଡଭାଳ,

ରୋମମୂଳମାନ ଟାଙ୍କୁରି ଉଠିଲା
ସର୍ବାଙ୍ଗେ ବହିଲା ଝାଳ ।

ସ୍ତମ୍ଭୀଭୂତ ହୋଇ ବହୁକ୍ଷଣ ଦେବୀ
ରହିଲେ ମହାବିସ୍ମୟେ,

ମୂର୍ତ୍ତି-ଅଭିମୁଖେ ହେଲେ ଅଗ୍ରସର
ସାହସ ବାନ୍ଧି ହୃଦୟେ ।

ପୁଚ୍ଛିଲେ ମହିଷୀ – କହ ତୁ କିଏସେ,
କିପାଇଁ ଭ୍ରମୁ ଏ ପୁରେ,

ଏ ବିକଳ-ବେଶେ ? କେଉଁ ଦୁଃଖେ ପୁଣି
ଝୁରୁଛୁ ଏଡ଼େ ଆତୁରେ ?

ମର୍ତ୍ତ୍ୟବାସୀଙ୍କର ଲକ୍ଷଣ ତୋହର
କିଛିହିଁ ତ ଦିଶୁ ନାହିଁ,

କେଉଁ ଯୋନି ତୁହି, କି ଆଶୟେ ମର୍ତ୍ତ୍ୟେ
ଭ୍ରମୁ ତା କହ ଫିଟାଇ।
ଏ ବଡ଼ ଅଦ୍ଭୁତ ଲାଗଇ ମନକୁ,
ନିଜ-ରୂପ ପରିହରି,
ମର୍ତ୍ତ୍ୟ-ଲୋକେ ତୁହି ବିହରୁ କି ଲାଗି
କୌଶଲ୍ୟାର ରୂପ ଧରି ?
ସଂଶୟ-ଦୋଳାରେ ପଡ଼ି ଚିତ୍ତ ମୋର
ହେଉଅଛି ଆନ୍ଦୋଳିତ,
ଛାର ନାରୀ ହୋଇ କେମନ୍ତେ ବୁଝିବି
ଏ ତୋର ଗୂଢ଼ ଚରିତ।
ଏ କି ମାୟା ତୋର ? କିପାଁ ରଜନୀକି
କରୁ ବିଭୀଷିକାମୟୀ ?
ଏତେ ଛଳି ଥାଉଁ ରାଜପୁରେ ପୁଣି
ଆସୁ କେଉଁ ଆଶା ବହି ?”
ରାଣୀଙ୍କ ବଚନ ଶୁଣି ଛାୟାମୟୀ
ଖେଦେ ଛାଡ଼ି ଦୀର୍ଘଶ୍ୱାସ,
କର ତଳେ ଥରେ ଲଲାଟ ପରଶି
କହେ ଗଦଗଦ ଭାଷ –
“ଦୁଃଖିନୀ କୌଶଲ୍ୟା, ଜନନି ଲୋ, ତୋର
ଅଛି କି ଆଉ ଜୀବନେ ?
ସ୍ନେହ-ବଶେ, ମାତା, ଏ ଦୁରାଶା ବୃଥା
ପୋଷୁ ତୁହି କି କାରଣେ ?
ସ୍ନେହରେ ପାଳିତ ତନୟା ତୋହର
ନାହିଁ ଏ ମର୍ତ୍ତ୍ୟ-ସଂସାରେ,
ଆଉଁ ଭ୍ରମୁଅଛି ଅଭାଗିନୀ ଏବେ
ଭବ-ଯବନିକା-ପାରେ।
ବର୍ଷେ କାଳ ଡାକି ଡାକି, ମାତା, ତୋତେ
ହେଲିଣି ମୁହିଁ ଅସ୍ଥିର,
ଅଭାଗିନୀ ସୁତା ଦୁଃଖେ ମାତା ହୋଇ
ହେଲୁ କି ତୁହି ବଧିର ?
ସେ ଘୋର ବିପାକ କହିବାକୁ ତୋତେ
ନିତ୍ୟ ଆସୁଅଛି ମହୀ,
କେମନ୍ତେ ଶୁଣିବୁ ସେ କଥା ମ୍ରାଆ ଲୋ
ରକ୍ତ-ମାଂସ-ଦେହ ବହି ?
ଏକାକୀ ବୁଡ଼ଇ ତରଣୀ ଯେସନେ
ଜଳଧି-ନୀଳ-ତରଙ୍ଗେ,
ଫେନଚୂଡ଼ ତୁଙ୍ଗ ତରଙ୍ଗ ଚୌଦିଗେ
ନାଚୁଥାନ୍ତି କ୍ରୂର-ରଙ୍ଗେ।
ଉର୍ମି-ଅଟ୍ଟହାସ ବୁଡ଼ାଇ ଦିଅଇ
ତରଣୀ-କରୁଣ-ଧ୍ୱନି,
ଶୂନ୍ୟକୁ ଅନାଇ ନିଜ ଦୁଃଖ ଗାଇ
ଆକୁଳେ ବୁଡ଼େ ତରଣୀ।
ସେହି ଦଶା, ମାତା ଭୁଞ୍ଜିଲା ତୋ ସୁତା
ଭବେ ଅଳ୍ପ ଦିନ ଥାଇ,
ଦୁଃଖିନୀର ଘୋର ଦାରୁଣ-କଷଣ
କେହି ତ ଜାଣିଲେ ନାହିଁ।
ଧିକ ସେ ସଂସାର ! ପ୍ରବଳର ଯହିଁ
ସବୁ କଥାରେ ସୁଯୋଗ,
ଦୁର୍ବଳର ଯହିଁ ଲଲାଟଲେଖନ
ନୀରବେ ଲାଞ୍ଛନା-ଭୋଗ।
ଲୋକେ ସେ ବୋଲନ୍ତି ଜନମ ଲଭଇ
ରାଜ-କୁଳେ ଭାଗ୍ୟବାନ,
ଧିକ ମୋ ଜନମ, ଧିକ ରାଜକୁଳ,
ଧିକ ସେ ଲୋକ-ସମ୍ମାନ।
ରାଜ-କୁଳେ ଜନ୍ମି କୌଶଲ୍ୟାର ଭାଗ୍ୟେ
ଫଳିଲା ଯେଉଁ କିଳ୍ବିଷ,
ନର କେଉଁ ଛାର, ସେ ଦୁଃଖ ଶୁଣିଲେ
ତରଳି-ଯିବ କୁଳିଶ।
ରାଜାଙ୍କ ଆଦେଶେ ମହାହର୍ଷଭରେ
ଯାଇଥିଲି ଯୁଦ୍ଧସ୍ଥଳେ,
ପିତୃସେବା, ରାଜ- ସେବାରେ ମୋହର
ଦିନ ଯାଉଥିଲା ଭଲେ।
ରାଜାଙ୍କ ସକାଶେ ଗୁନ୍ଥି ଦେଉଥିଲି
ସୁରଭି କୁସୁମ-ହାର,
ରାଜାଙ୍କ ଶ୍ରବଣ ତୋଷୁଥିଲା ମୋର
ମଧୁର ବୀଣା-ଝଙ୍କାର।
ରାଜାଦେଶେ ମୁହିଁ ତୋଳୁଥିଲି ଯେବେ
ସୁସ୍ୱରେ ଗୀତ-ଲହରୀ,
ନିଶ୍ଚଳେ ସେ ଗୀତ ଶୁଣୁଥିଲେ ଲୋକେ
କାଷ୍ଠ-ପୁତଳିକା ପରି।
ଦିନାନ୍ତେ ରାଜାଙ୍କ ସିଂହାସନ ପାଶେ
ବସୁଥିଲି ସଭା ତଳେ,
ଦିନର ଯାବତ ସମର ବାରତା
ଶୁଣୁଥିଲି କୁତୂହଳେ।
ଅଗ୍ରେ ବୀରାସନେ ବସିଥାନ୍ତି ଯେତେ
ସାମନ୍ତ-ରାଜ-ଯୁବକ,
ଭୂତଳେ ଲମ୍ବିତ ଶୋଭୁଥାଇ କୃଶ-
କଟିତଟେ କୌକ୍ଷେୟକ। (୧)
ଦିନେ ସଭାତଳେ ବୀରଙ୍କୁ ସମ୍ବୋଧି
କହିଲେ ଉଚ୍ଚେ ରାଜନ,

(୧) କୌକ୍ଷେୟକ – ତଲବାର।

"ଶୁଣ ରାଜ-ବାରେ ଅବହିତଚିତ୍ତେ
ଗଙ୍ଗେଶ୍ୱରର ଏ ପଣ ।
ଲୋକାତୀତ ଯାର ରୂପ-ଗୁଣ-କଥା
ଶୁଣିଥିଲ ଲୋକମୁଖେ,
ସେହି ବାଳା-ମଣି କୌଶଲ୍ୟା ମୋହର
ବସିଛି ତୁମ୍ଭ ସମ୍ମୁଖେ ।
ଜନଶ୍ରୁତି ଯାହା କହିଥିଲା, ତାହା
ଦେଖିଲ ନେତ୍ରେ ଏଥର,
ନେତ୍ରେ ଦେଖି ଏବେ ନିଶ୍ଚେ ଘୁଞ୍ଚିଯିବ
ବିବାଦ ଚକ୍ଷୁ-କର୍ଣ୍ଣର ।
କଳ୍ପନା-ଜଳ୍ପନା ମାତ୍ର ସିନା ସେହି
ତ୍ରିଦଶବାସୀ-ଅପ୍ସରା,
ଚମ୍ପକ-ବରଣୀ କୌଶଲ୍ୟା ମୋହର
ଧରଣୀର ଚମ୍ପାଝରା ।
ବୀରେ ସେ ଜାଣନ୍ତି ସୌନ୍ଦର୍ଯ୍ୟର ପୂଜା
ସୌନ୍ଦର୍ଯ୍ୟର ଯେଉଁ ମୂଳ,
ସୁନ୍ଦରୀଏ ତେଣୁ ନିରତେ ହୁଅନ୍ତି
ବୀର ପ୍ରତି ଅନୁକୂଳ ।
ବିଳାସ-କୁଶଳ ଯୁବକର ଚାରୁ-
କରକୁ ଅସାର ଜାଣି,
ମନାସନ୍ତି ସିନା ସୁନ୍ଦରୀ ଶିଞ୍ଜିନୀ-
କର୍ଷଣ-କର୍କଶ-ପାଣି ।
ତେଜସ୍ୱୀର କରେ କର ଛନ୍ଦିବାକୁ
ପ୍ରୟାସୀ ସଦା ସୁନ୍ଦରୀ,
ନୋହିଲେ କି ଫୁଲ- ରାଣୀ କମଳିନୀ
ରବିଙ୍କି ଥାଆନ୍ତା ବରି ?
ନୋହିଲେ କି ଯାର ରୂପଚ୍ଛଟା କରେ
ହେମମୟ ଦିଗ୍‌ବଳୟ,
ଚପଳା ରୂପସୀ କରିଥାନ୍ତେ କେବେ
ବଜ୍ରର ଅଙ୍କ ଆଶ୍ରୟ ?
କାର୍ଯ୍ୟସ୍ଥଳେ ବାକ୍ୟ- ବୀରୁଁ କାର୍ଯ୍ୟବୀର
ବାଛି ନେଇ ନିଜ ନେତ୍ରେ,
ସ୍ୱୟମ୍ବରା ହେବା- ପାଇଁ କ୍ଷତ୍ରକନ୍ୟା
ଆସିଅଛି ରଣ-କ୍ଷେତ୍ରେ ।
ଏ କନ୍ୟାକୁ ଅଙ୍କ- ଲକ୍ଷ୍ମୀ କରିବାର
ଅଭିଳାଷ ଥିଲେ ମନେ,
ଦେଖାଅ ବିକ୍ରମ ଅରି ସଙ୍ଗେ ରଣ-
ରଙ୍ଗେ ଯୁଝି ପ୍ରାଣପଣେ ।
ଏହି ଦୁର୍ଗ ଶିରେ ପତାକା ପୋତିବ
ଶତ୍ରୁକୁ ଯେ ଯୁବା ଜିଣି,
ଯାତ୍ରାକାଳେ ସେହି ଶଶାଙ୍କର ଅଙ୍କ-
ଲକ୍ଷ୍ମୀ ହେବେ ଏ ରୋହିଣୀ ।"

ଏହି କଥା ଶୁଣି ମସ୍ତକ ନୁଆଁଇ
ସର୍ବଯୁବା ଏକକାଳେ
କର ପକାଇଲେ ସଦର୍ପେ ଯେ ଯାହା
କଟି-ଲମ୍ବି-କରବାଳେ ।
ଏ ଉକ୍ତିରେ ମୁଖ ହୋଇଗଲା ମୋର
ପାଟଳ ଲାଜ-ସିନ୍ଦୂରେ,
ଜାଣିଲି କି ଲାଗି ନେଇ ଯାଇଥିଲେ
ରାଜା ମୋତେ ଉଦ୍ଧପୁରେ ।
ସନ୍ତତ ମୋ ସୁଖ ସନ୍ତୋଷ-ବିଧାନେ
ରାଜାଙ୍କୁ ଦେଖି ପ୍ରୟାସୀ,
ଶିବିରର ଅଧି-ଦେବୀ ପ୍ରାୟେ ମୋତେ
ପୂଜିଲେ ଶିବିରବାସୀ ।
ରାଜାଙ୍କର ଗାଢ଼ ସ୍ନେହକୁ ମଣିଲି
ପୂର୍ବ ତପସ୍ୟାର ଫଳ,
କିଏ ଜାଣିଥିଲା ମିଶିଥିଲା ସେହି
ସ୍ନେହ-ରସେ ହଳାହଳ ?
ସବୁକାଳେ ଲୋକେ କୀର୍ତ୍ତନ କରନ୍ତି
ଅପତ୍ୟ-ସ୍ନେହର ଗୁଣ,
କିଏ ଜାଣିଥିଲା ଘୃଣାରୁ ଏ ସ୍ନେହ
ସହସ୍ର ଗୁଣେ ଦାରୁଣ ?
ବେଶଭୂଷା ପାଇଁ ନାନା ଦ୍ରବ୍ୟ ରାଜା
ଦେଉଥିଲେ ମୋତେ ଆଣି,
ଅନୁକ୍ଷଣେ ମୋତେ ତୋଷୁଥିଲେ ମୋର
ସୁନ୍ଦରପଣ ବଖାଣି ।
ସସ୍ମିତେ ପୁଚ୍ଛିଲେ ଦିନେ ନୃପ ମୋତେ,
"କହିବୁଟି ଜେମାମଣି,
ଲାବଣ୍ୟପ୍ରତିମା ଗ୍ରହଣ କରିବା
ଅନ୍ୟ ପକ୍ଷେ ତା କି ମଣି ?"
ମୁଁ କହିଲି, "ତହିଁ କେଉଁ ଦୋଷ ?" ରାଜା
ଶୁଣି ହେଲେ ହୃଷ୍ଟ ମନ,
କହିଲେ "ଯେମନ୍ତ ଆକୃତି ଯାହାର
ବିଚାର ତାର ତେସନ ।"
କହିବାର ନୁହେଁ ବଚନେ ଘଟିଲା
ନିଶାଯୋଗେ ଯାହା ମାତଃ
ଅଭାଗୀର କର୍ମ- ଦୋଷକୁ ହେଲା ସେ
ଦାରୁଣ ନିଶା ପ୍ରଭାତ ।
ନିଦ୍ରା-ଭଙ୍ଗେ ମୁହିଁ ପର୍ଯ୍ୟଙ୍କୁ ପଡ଼ିଲି
ଭୂମିତଳେ ଦେଇ ଲମ୍ଫ,
ଏବେ ସୁଦ୍ଧା ସେହି ସ୍ମୃତି ଜନ୍ମାଉଛି
ଏ ଛାୟା-ଦେହେ ପ୍ରକମ୍ପ ।
ଦୁଃଖେ ମୁଣ୍ଡ କୋଡ଼ି ରକ୍ତେ ଅଶ୍ରୁଜଳେ
ସିକ୍ତ କଲି ମୁହିଁ ମହୀ,

ଡାକିଲି ଧରାକୁ ଗର୍ଭେ ସ୍ଥାନ ମୋତେ
ଦେବାକୁ କରୁଣା ବହି।
ପର୍ଯ୍ୟଙ୍କୁ ଓହ୍ଲାଇ ହସ୍ତ ଧରି ରାଜା
କହିଲେ ଯେଉଁ ବଚନ,
ଜାଳିଲା ହୃଦେ ତା ଦାରୁଣ ଯାତନା
ଯେସନ କ୍ଷତେ ଲବଣ।
ସେ କଥା ଶୁଣି ମୁଁ କର୍ଣ୍ଣେ ହାତ ଦେଇ
ରହିଲି ହୋଇ ସ୍ତମ୍ଭିତ,
ଜାଣିଲି ଏ ପାପ ସଂସାରେ ମୋହର
ଜୀଇବାର ଅନୁଚିତ।
ଏ ଦୁଃଖ କାହାକୁ କହିବି ଜଗତେ
କିଏ ଅବା ଯିବ ପ୍ରତେ ?
ନୀରବେ ରହିଲି ସେହି ଦିନୁ ମନ
ଦୃଢ଼ କରି ମୌନବ୍ରତେ।
ଏତିକି ମାତର ଆଶା ଥିଲା ମନେ,
ତୋ ଆଗେ ଏ ଦୁଃଖ ଗାଇ,
କାଳ-ସିନ୍ଧୁ-ନୀରେ ପାପେ ଭରା ଦେହ-
ତରୀକି ଦେବି ଭସାଇ।
ପ୍ରତି ଦିନ ରାଜା କରୁଥିଲେ ଆସି
କେତେମତେ ଅନୁନୟ,
ନିରସ୍ତ ହେବାରୁ ଚିରେ ହେଲା ପୁଣି
ଦାରୁଣ-କୋପ ଉଦୟ।
ନିର୍ଜନ କାରାରେ ପୂରାଇଣ ମୋତେ
ରଖିଲେ ଶିବିର ପାଶେ,
ଭ୍ରଷ୍ଟାପଣ ଦେଖି ଏ ଦଣ୍ଡ ବିହିଲେ
କହିଲେ ଲୋକ ସକାଶେ।
କେହି ନ ଆସିଲେ ଦେଖିବାକୁ ମୋତେ
ଏକା ସେ ରାଜା ବିହୁନେ,
ରାଜା ସଙ୍ଗେ ଦେଖା- ଠାରୁ ସେ ନିର୍ଜନ
ଶ୍ରେୟଃ ଥିଲା ଶତଗୁଣେ।
ଭୀଷଣ ତର୍ଜନ କେବେ ଅବା ଚାଟୁ-
ବଚନ ଭୀଷଣତର,
ଦୁଃଖାନଳେ ଜଳି · ନିର୍ଜନେ ଦୁଃଖିନୀ
ଶୁଣୁଥିଲା ରାଜାଙ୍କର।
ମର୍ତ୍ତ୍ୟ-କୁମ୍ଭୀପାକେ ଏହିରୂପେ, ମାତା,
ଚାଲିଗଲା କେତେ ମାସ,
ପାପ-ପରିପାକେ ହେଲା ପାପ-ଗର୍ଭ-
ଲକ୍ଷଣ ମୋର ପ୍ରକାଶ।
ଜଗତେ ଯା ଯୋଗୁଁ ଭାଗ୍ୟବତୀ ବୋଲି
ବୋଲାନ୍ତି କୁଳ-ଅଙ୍ଗନା,

ଅଭାଗିନୀ-ଭାଗ୍ୟେ ସେ ହେଲା, ଜନନି!
ମହାଘୋର-ବିଡ଼ମ୍ବନା!
ଏ ସମ୍ବାଦ ଯହୁଁ ରଟିଲା ଶିବିରେ
ପିତୃ-ଦତ୍ତ ଅପବାଦ,
ସତ୍ୟ ମଣି ଲୋକେ ମୁକ୍ତକଣ୍ଠେ କଲେ
ରାଜାଙ୍କ ପ୍ରଶଂସାବାଦ।
ସମସ୍ତଙ୍କ ନେତ୍ରେ ଦୋଷୀ ହେଲି ମୁହିଁ,
ନୃପ କଲେ ଅପବିତ୍ର,
ଧନ୍ୟ ରେ ସଂସାର, ଧନ୍ୟ ଲୀଳା ତୋର!
ଧନ୍ୟ ତୋ ଗତି ବିଚିତ୍ର!
ଯଥାକାଳେ କାରା- ଗୃହେ ପ୍ରସବିଲା
ସୁତ ଦୁଷ୍କୃତ-କାରିଣୀ,
ମୋହୋ ଭାଗ୍ୟେ ଥିଲା ହେବାକୁ, ଜନନି,
ଜାରଜଗର୍ଭଧାରିଣୀ।
ଜାର ଅବୟବ ଦେଖିଲେ ନୃପତି
ସେ ପୁତ୍ରେ ପ୍ରତିଫଳିତ,
ଜାର ପାପଚିହ୍ନ ଘୋଡ଼ାଇବାପାଇଁ
ଅନ୍ତରେ ହେଲେ ଚିନ୍ତିତ।
ମହାପାପେ ମହା- ପାପ-ସଂଗୋପନ-
ସଂକଳ୍ପ ମନାସି ମନେ,
ଶିଶୁ ସଙ୍ଗେ ମୋତେ ଧଉଳୀ ପର୍ବତେ (୧)
ପଠାଇ ଦେଲେ ଗୋପନେ।
ବିଶ୍ୱସ୍ତ ତାଙ୍କର ଅସ୍ତ୍ରଧାରୀ ଥୋକେ
ସୈନିକ ଦେଇ ସଙ୍ଗତେ,
ପଠାଇଲେ ମୋତେ ସେହି ଶୈଳେ ମହା-
ଦୁର୍ଗମ ଅରଣ୍ୟ-ପଥେ।
ତହିଁ ବାରିପୂର୍ଣ୍ଣ ସଚ୍ଛିଦ୍ର ସୁବର୍ଣ୍ଣ-
କଳସ ମୋ କକ୍ଷେ ଦେଇ
ନିଶାରେ ସୈନିକେ କାନନେ ଭ୍ରମିଲେ
ଶିଶୁସଙ୍ଗେ ମୋତେ ନେଇ।
ବାପୀ ଖୋଳା ହେବ ସେ ଯାଏଁ, ଯେଯାଏଁ
କଳସୁଁ ପଡ଼ିବ ନୀର,
କରିଥିଲେ ରାଜା ମୋହୋପାଇଁ ଏହି
ପ୍ରାୟଶ୍ଚିତ୍ତ-ବିଧି ସ୍ଥିର।
ନୀର ସରିଲାରୁ ଯଥାସ୍ଥାନେ ଚିହ୍ନ
ଯତନେ ଥୋଇ ସୈନିକେ
ଘେନିଗଲେ ମୋତେ ଶିଶୁସଙ୍ଗେ ସେହି
ଧଉଳୀ-ଶଇଳ ଶିଖେ।
ପର୍ବତ-ତାଳୁରେ ସୁଗଭୀର ଶୁଷ୍କ
କୂପେ ବେନିଙ୍କି ପୂରାଇ

(୧) ଭୁବନେଶ୍ୱରର ଅଦୂରବର୍ତ୍ତୀ ଦୟା ନଦୀ କୂଳରେ ଅବସ୍ଥିତ।

କୂପ ମୁହଁଯାକ ଦେଲେ ସେ ନୃଶଂସେ
ବିଶାଳ-ପାଷାଣେ ଛାଇ ।

କେହି ନ ଶୁଣିଲେ ଶିଶୁପାଇଁ ଯେତେ
ବିକଳେ କହିଲି କାନ୍ଦି,
ଶିଶୁସଙ୍ଗେ, ମା' ଗୋ, ଏହି ରୂପେ ମୋର
ଜୀବନ୍ତେ ହେଲା ସମାଧି ।

'ଅବଳା ଅବଧ୍ୟ' ବିଧି ହେଲା, ମାତଃ,
ପରିଣତ ଏହି ଫଳେ,
ସ୍ୱଧର୍ମେ ପାପୀଏ ଧର୍ମ ଆଚରିଲେ
ସେ ଧର୍ମ ପାପକୁ ବଳେ ।

ପାପଠାରୁ, ଆହା, ପାଷଣ୍ଡର ପୁଣ୍ୟ
ଶତଗୁଣେ ଭୟଙ୍କର,
ତିକ୍ତଠାରୁ ଯେହ୍ନେ କଟୁ ଶତଗୁଣେ
ମାଧୁରୀ ନିମ୍ବ-ଫଳର ।

ନଚାଇବାପାଇଁ ସେ ଦାରୁଣ ଦୁଃଖ
ଛବି ମୋ ନେତ୍ର ଅଗ୍ରତେ,
ବାଟ-ବଣା ପ୍ରାଏ ରବି-ରଶ୍ମି-କଣା
ଆସୁଥିଲା ଛିଦ୍ର-ପଥେ ।

କେହି ନ ଶୁଣିଲେ ବାହୁନି ବାହୁନି
କଲି ମୁଁ ଯେତେ ବିଳାପ,
କୃପା ବହି ଆଶୁ- ମୃତ୍ୟୁ ବିହିବାକୁ
ନଥିଲେ ସେ କୂପେ ସାପ ।

ସ୍ତନ୍ୟ-ଦାନେ କେତେ ଦିନ ବଞ୍ଚାଇଲି
ତନୟର କ୍ଷୀଣ-ପ୍ରାଣ,
ଚାହୁଁ ଚାହୁଁ ହୋଇ ଗଲା ଅଭାଗ୍ୟର
ଜୀବନ-ଦୀପ ନିର୍ବାଣ ।

ମୋତେ ଛାଡ଼ି ମୋର ଆଗେ ପ୍ରାଣ ତାର
ଘେନିଗଲା ପ୍ରେତସାଇଁ,
ଜନନୀ ହୋଇ ମୁଁ କାନ୍ଦିବାକୁ ମୋର
ମନ ତ ବଳିଲା ନାହିଁ ।

କି ଆଉ କାନ୍ଦିବି ? ଶୁଖି ଯାଇଥିଲା
ନେତ୍ର-ଯୁଗେ ଅଶ୍ରୁଝର ,
ଘୋର ଦୁଃଖେ ମନ ହେଉଥିଲା, ମା' ଗୋ,
କଠିଣ ଯେହ୍ନେ ପଥର ।

ପୁଣି କେତେ ଦିନ ଗଲା ଅନଶନେ,
( ଅୟି ଦେବି ବିଶ୍ୱମ୍ଭରେ ।
କେତେ ନ ଡ଼ାକିଲି ଦ୍ୱିଧା ହୋଇ ମୋତେ
ଗ୍ରାସିବାକୁ ନିଜୋଦରେ ! )

ଜିଣିଲା ଶୋକକୁ ଜଠର-ଯାତନା,
ହୃଦୟ ହେଲା ଅସ୍ଥିର,
କେମନ୍ତେ କହିବି କିପାଁ ଦରାଣ୍ଡିଲି
ଶିଶୁର ସଡ଼ା ଶରୀର !

ସୌଭାଗ୍ୟ-ସମୟେ କୌଶଲ୍ୟା ତୋହର
ଦେଖୁଥିଲା ଭୋକୀ ଶୋଷୀ,
ଖାଉଥିଲା କି ସେ ଅନ୍ନ ପାନ ଦାନେ
ଅତିଥି ଆଗେ ନ ତୋଷି ?

ସେ କୌଶଲ୍ୟା ଏବେ ଜଠର-ଜ୍ୱାଳାରେ
ଓଟାରିଲା ଶିଶୁ-ଶବ,
ବଳବାନ ଦୈବ ପକ୍ଷେ ଭବେ, ମା ଗୋ,
କେଉଁ କଥା ଅସମ୍ଭବ ?

ପିତା ହୋଇ ସୁତା ପ୍ରାଣ ଏହି ରୂପେ
ନାଶିବାର ଅନଶନେ,
ମାତା ହୋଇ ମନ ବଳାଇବା ମୃତ-
ତନୟ-ତନୁ ଭୋଜନେ,

ଦେଖିବାର ଥାଉ ତେଣିକି, ଏହା କି
ଶୁଣିଥିଲୁ କର୍ଣ୍ଣେ କେବେ ?
କେ କହିବ ଏହି ଅମାନୁଷୀ କଥା
କେମନ୍ତେ ସହିଲେ ଦେବେ ?

ଦୟା-ଅବତାର ବୁଦ୍ଧଦେବଙ୍କର
ବିଶ୍ୱ-ବନ୍ଦ୍ୟ ବିଧିମାନ
ଅକ୍ଷୟ-ଅକ୍ଷରେ ଯେଉଁ ଶୈଳ ଭାଲେ
ହେଉଅଛି ଦୀପ୍ୟମାନ, (୧)

ଦୟା-ବୀର ମୁନି ଦଧୀଚି ପୟର
ପ୍ରକ୍ଷାଳନେ ପୂତ ନୀରା
ବହେ ପାଦେ ଯାର ଦୟା ପ୍ରବାହିନୀ
ସୁପ୍ରସନ୍ନା ସୁଗଭୀରା, (୨)

ସେହି ସ୍ଥାନେ ଆହା ! ହେଲା, ମାତା, ଏହି
କ୍ରୂର-ବିଧି ଆଚରଣ ,
ସେହି ସ୍ଥଳେ କଲା ଦୁଃଖେ ଅଭାଗିନୀ
ଭବ-ବ୍ରତ ଉଦ୍ୟାପନ ।

ଉତ୍ତରାଶା-ସ୍ୱର୍ଣ୍ଣ- ଶିରୋଭୂଷା ଏହି
ତେଜଃପୁଞ୍ଜ ସପ୍ତଋଷି,

(୧) ଧଉଳୀ ପର୍ବତରେ ବୌଦ୍ଧଧର୍ମାବଲମ୍ବୀ ଅଶୋକ ରାଜାଙ୍କର ଶାସନ ଅଙ୍କିତ ଅଛି । (୨) ଦଧୀଚି ମୁନି ଦେବଲୋକର ରକ୍ଷା ସକାଶେ ନିଜ ଶରୀର ଉତ୍ସର୍ଗ କରିଥିବା କଥା ପୁରାଣରେ ପ୍ରସିଦ୍ଧ । ଦୟା-ନଦୀ କୂଳରେ ତାହାଙ୍କର ଆଶ୍ରମ ଥିବାର କିମ୍ବଦନ୍ତୀ ଅଛି । ତାହାଙ୍କ ନାମାନୁସାରେ ଏହି ନଦୀର ଆଦ୍ୟନାମ ଦଧିଭଦ୍ରା ଥିଲା । ଦଧିଭଦ୍ରା ଅପଭ୍ରଷ୍ଟ ହୋଇ "ଦଧିଆ" ଅଥବା "ଦହିଆ" ହୋଇ ଅବଶେଷରେ "ଦୟା"ରେ ପରିଣତ ହୋଇଅଛି ।

ଦିବ୍ୟଲୋକୁ ଦିବ୍ୟ ନେତ୍ରେ ଦେଖୁଥିଲେ
ଏ ଘଟଣା ଅମାନୁଷୀ।
ଶତ-ଗୁହା-ମଧୁ- ଚକ୍ରିତ, ନିର୍ଝର-
ସୁଶୀତଳ ଖଣ୍ଡାଚଳ-
ଚୂଳେ ବସି ମୋର ଦୁଃଖ ଦେଖୁଥିଲେ
ପୁଣ୍ୟ ତୀର୍ଥଙ୍କର ଦଳ। (୧)
ଦେଖିଥିଲା ପୁଣି ଏକାମ୍ରେ ତ୍ରିଶୂଳ
ମନ୍ଦିର-ଶିର-ଲଲାମ, (୨)
ଅଙ୍ଗୁଳି ନିର୍ଦ୍ଦେଶି ଦେଖାଉଛି ଯେହୁ
ମର୍ତ୍ତ୍ୟ-ଜନେ ନିତ୍ୟ-ଧାମ।
ଜାଣି ଶୁଣି ପାଦ ଦେଇ ନଥିଲି ମୁଁ
କେବେ ଅଧରମ-ବାଟେ,
ଅଛ ଦିନେ, ମାତା, ସଉଦା ମୋହର
ସରିଗଲା ଭବ-ହାଟେ।
ସେଥିଲାଗି ନାହିଁ ଦୁଃଖ ଲେଶ ମୋର,
ପାଇଥିଲି ଯା ପ୍ରସାଦେ,
ଦେହ, କାର୍ଯ୍ୟେ ତାର ଛାର ଦେହ, ମା ଗୋ,
ଦେଇଥାନ୍ତି ମହାହ୍ଲାଦେ।
ଲୋଡ଼ା ହୋଇଥାନ୍ତା ନରପିତ୍ତ ଯେବେ
ରାଜାଙ୍କ ଔଷଧ ଲାଗି,
ଘାତକକୁ ବୁକୁ ଦେଖାଇ ଦିଅନ୍ତା
ସର୍ବ ଅଗ୍ରେ ଏ ଅଭାଗୀ।
କେଉଁ ଶ୍ରେୟଃ ଲାଗି ସେ ସୁଖରୁ ମୋତେ
ବଞ୍ଚିତ କଲେ ରାଜନ,
କେଉଁ ଶ୍ରେୟଃ ଲାଗି ଦୁଃଖିନୀକି ଦେଲେ
ଲୋକାତୀତ ଏ କଷଣ!
ଦୁଃଖ-କଥା ତୋତେ ନ କହି ହୃଦୟ
ଘାଣ୍ଟି ହେଉଥିଲା ଶୋକେ,
ସେଥିଲାଗି ନିଶା- ଯୋଗେ ଆସୁଥିଲି
ନିତି ନିତି ମର୍ତ୍ତ୍ୟଲୋକେ।
ମାଗୁଛି ମେଲାଣି, ଯିବି ଫେରି ଏବେ,
ରାବିଲାଣି ତାମ୍ରଚୂଡ଼,
ମହୋଦଧି—ଊର୍ମି ଭେଦି ଅବିଳମ୍ବେ
ଦିଶିବ ଉଷା ମହୁଡ଼।
ନୀଳାଚଳଧାମେ ପ୍ରତ୍ୟୂଷେ ମଙ୍ଗଳ-
ଆଳତି ଦର୍ଶନ ପାଇଁ,
ବିଶାଖା-ତୋରଣ ମାର୍ଗେ ସୁରଦଳେ
ଓହ୍ଲାଇବେ ଶଚୀସାଇଁ।
ସୁରପତି ସଙ୍ଗେ ଆସିବେ ଆକାଶେ
ଶଚୀଆଦି ସୁରାଙ୍ଗନା,
ଶ୍ରୀକ୍ଷେତ୍ରେ ଏକାକେ ବୁଲିବାକୁ ପ୍ରେତ-
ଯୋନିକି ଅଛଇ ମନା।
ଯାଉଛି, ମା, ମୋତେ ଯୁଗେ ଯୁଗେ ମିଳୁ
ତୋ'ପରି ଜନନୀ ଭବେ,
ମୋ'ପରି ଦୁଃଖିନୀ ସୁତା ଜାତ ପୁଣି
ନ ହେଉ ତୋର ଗରଭେ।''
ଏହା କହି ଛାୟା- ରୂପିଣୀ ସହସା
ମିଶିଗଲା ଅନ୍ଧକାରେ,
ହୃଦ-ଯନ୍ତ୍ରେ ଧୈର୍ଯ୍ୟ- ତନ୍ତ୍ରୀ ତୁଟିଲାରୁ
ବସିଲେ ରାଣୀ ଧରାରେ।
ଭେଳା କରିଦେଲା ଦେବୀଙ୍କି ଭୀଷଣ
ଅଶ୍ରୁତପୂର୍ବ ଘଟନା,
ଫେରି ଆସିଲା ସେ ପାପର ସ୍ୱରୂପ
କଳି ନ ପାରେ କଳ୍ପନା।
ଅକୂଳ ଅତଳ ବିସ୍ମୟ-ଅର୍ଣ୍ଣବେ
ହୃଦୟ ହେଲା ମଗନ,
ଅବସନ୍ନ-ଚିତ୍ତେ ଜଡ଼ ପ୍ରାୟେ ଦେବୀ
ରହିଲେ ବହୁତ କ୍ଷଣ।
ସହସା ଶ୍ରବଣେ ପଶିଲା ମଙ୍ଗଳ-
ଆଳତିର ବାଦ୍ୟ-ଧ୍ୱନି,
ଆତ୍ମ-ବିସ୍ମୃତିରୁ ସଚକିତେ ଉଠି
କହିଲେ ନୃପ-ଘରଣୀ-
''ସତ୍ୟ ଅବା ମୁହିଁ ମଣୁଛି ନିଦ୍ରାରେ
ଦେଖି ଏ ଦୁଃସ୍ୱପ୍ନ ଘୋର,
ନାହିଁ, ନାହିଁ, ଏହି ଦିଶୁଛିଟି ସେହି
ମଣ୍ଡପ ସମ୍ମୁଖେ ମୋର,
ଉଭା ହୋଇ ଯହିଁ କହିଲା ଦୁଃଖିନୀ
ଅଦ୍ଭୁତ ଦୁଃଖ କାହାଣୀ,
ଏବେ ସୁଦ୍ଧା ଲାଗି ରହିଛି ଶ୍ରବଣେ
ଅମାନୁଷୀ ସେହି ବାଣୀ।
ସତେ ଭବ-ଲୀଳା ସରିଛି ତୋର, ମା ?
ହା ହା ପ୍ରଭୁ ଭଗବାନ!
ଏହା ଶୁଣିବାକୁ ଆଜିଯାଏ ମୁହିଁ
ଧରିଛି କି ଛାର ପ୍ରାଣ ?
ମାଆ ତୁ ପଶିଛୁ ସେ ଦେଶେ, ଯେ ଦେଶୁଁ
ବାହୁଡ଼ି ନ ଆସେ କେହି,
ସ୍ୱପ୍ନ ପ୍ରାଏ ଆସି ସ୍ୱପ୍ନ ପ୍ରାଏ ଚାଲି
ଗଲୁ ମୋତେ ଦେଖା ଦେଇ।
କମଳ-କଳିକା- ସୁକୁମାର ତୋର
ତନୁ ହୋଇଅଛି ମାଟି,

(୧) ଖଣ୍ଡଗିରିଶୃଙ୍ଗରେ ପରେଶନାଥ ପ୍ରଭୃତି ଜୈନମାନଙ୍କର ମନ୍ଦିର ପ୍ରତିଷ୍ଠିତ। (୨) ଭୁବନେଶ୍ୱର ଦେଉଳର ତ୍ରିଶୂଳ।

କି କରିବି ? ଏହା କେମନ୍ତେ ସହିବି ?
ହୃଦ ତ ଯାଉଛି ଫାଟି ।
ଆହା ମନ ମୋର ଡାକୁଥିଲା ଯାହା,
ସେହି ତା ଘଟିଲା ଫଳେ,
ଅବଶେ ଏ ଶଶି- କଳା ପଡ଼ିଗଲା
କିଲ୍‌ବିଷ-ରାହୁ-କବଳେ ।
ସଦା ମନେ ଶୁଚି, ପାପେ ଅଭିରୁଚି
କେବେ ତ ନଥିଲା ତାର,
ମାନସ-ସରସୀ- ବିହାରିଣୀ ହଂସୀ
କେବେ କି ଲୋଡ଼େ କାସାର ?
ଏ ବିଷମ କଥା ଏ ସଂସାରେ କେହି
ଶୁଣି ନାହିଁ କେଉଁ କାଳେ,
ମାତା ହୋଇ ଏହା ଶୁଣିବାର ଏକା
ଲେଖା ଥିଲା ମୋର ଭାଳେ ।
ମୋର ସୁତା ଭାଗ୍ୟେ ଏହି ପିତା, ହା ହା !
ମୋହରି ଭାଗ୍ୟେ ଏ ପତି !
କେଉଁ ଦୁଷ୍କୃତିର ପ୍ରାୟଶ୍ଚିତ୍ତ ଲାଗି
ବିହିଥିଲେ ପ୍ରଜାପତି ?
ରାଜରାଣୀ ବୋଲି ଭାଗ୍ୟବତୀ ମୋତେ
ବୋଲନ୍ତି ଜଗତେ ପୁଣି,
ମୋହ ଭାଗ୍ୟେ ଈର୍ଷା ବହି . . ହେବ
ଭବେ କେଉଁ ଚଣ୍ଡାଳୁଣୀ ?
ହେ ବିଧାତା ମର୍ତ୍ତ୍ୟ- ଧାମେ ଜନ୍ମ ପୁଣି
ଲଭନ୍ତି ଏଡ଼େ ପାଷଣ୍ଡ !
ଧର୍ମ ରକ୍ଷା ଲାଗି ଏ ପୁଣି ଧରନ୍ତି
ଭୂମଣ୍ଡଳେ ରାଜଦଣ୍ଡ !
ଜଗତେ ସତ୍କାର ଲଭନ୍ତି ଏ ପୁଣି
ଧନେ ପ୍ରାଣେ ଜନେ ନାଶି !
ତୁମେ ପୁଣି ଦିଅ ଏହାଙ୍କରି ପତ୍ରେ
ଅଜାଡ଼ି ସୌଭାଗ୍ୟରାଶି !
ଦେବ ପଦ୍ମଭବ ! ଏହି ଭବଟି କି
ତୁମ ଶ୍ରୀହସ୍ତ-ସର୍ଜନା ?
ଅହିପତି ! ଏହା ସହିଲାଟି ମହୀ
ଭାରା ସଙ୍ଗେ ତୁମ ଫଣା ?
ଆହେ କ୍ଷେତ୍ରପାଳ, ତ୍ରିଶୂଳ ତୁମର
ରଖିଲ କାହିଁ ସମ୍ଭରି ? (୧)
ବଜ୍ରଧର ! ତୁମ ଅସ୍ତ୍ରାଗାରେ ବଜ୍ର-
ଅସ୍ତ୍ର କି ଗଲାଣି ସରି ?
ହେ ଧର୍ମ ! ଏ ଭବେ ଧାର୍ମିକର ତୁମେ
ଅଟ ପରା ବନ୍ଧୁ-ସେହ୍ନା ?

କେଉଁ ଦୋଷେ ମୋର କୌଶଲ୍ୟାର ଦୁଃଖ
ଛାମୁରେ ନ ହେଲା ଘେନା ?
ସର୍ବ-ସାକ୍ଷୀ ରୂପେ, ହେ ଗ୍ରହ ନକ୍ଷତ୍ର,
ଭ୍ରମୁଛ ତ ବ୍ୟୋମ-ପଥେ,
ଏ ପାପର ଛାଇ ପଡ଼ି ନ ଥିଲା କି
ତୁମ ଜ୍ୟୋତିର୍ମୟ-ରଥେ ?
ଅଥବା କରୁଛି ଛାମୁରେ ତୁମର
ବୃଥା ମୁହିଁ ଏ ବିଳାପ,
ତୁମ କ୍ଷୋଭ ଜାତ କରି ନ ପାରଇ
ମର୍ତ୍ତ୍ୟ-ଲୋକ-ପାପ-ତାପ !
ଆରତ-ଭଞ୍ଜନ— ବାନାଟି ତୁମର,
ଆହେ ପ୍ରଭୁ ଭଗବାନ,
ଆତୁର-ଗୁହାରି ଶୁଣିବାକୁ, ନାଥ,
ଡ଼େରିଥାଅଟିକି କାନ !
ରାଜାପରେ ରାଜା, ରାଜରାଜେଶ୍ୱର,
ବିଶ୍ୱେ ତୁମେ ମହାବାହୁ !
ତୁମ ହସ୍ତେ ଚକ୍ର ଥାଉଁ ଏ ଚନ୍ଦ୍ରମା
ଗ୍ରାସିଲା ଏ ପାପ-ରାହୁ !
ଆରତିର ମାତ୍ରା କେତେ ହେଲେ, ନାଥ,
ଟଳେ କୃପା-ସିଂହାସନ ?
ସଂଶୟ ଫେଡ଼ିବା ପାଇଁ ଆଜ୍ଞା ହେଉ
ଶ୍ରୀମୁଖୁଁ ପ୍ରତି-ବଚନ ।
ଭୂଭାର-ହରଣ ଲାଗି ଯୁଗେଯୁଗେ
ହୁଅ, ପ୍ରଭୁ, ଅବତାର,
ପୂର୍ଣ୍ଣ ହେବାପାଇଁ ଆଉ କେତେ ଅଛି
ଅବନୀର ପାପ-ଭାର ?''
ଏହା କହୁଁ କହୁଁ ଶୋକାବେଗେ ରୁଦ୍ଧ
ହୋଇଗଲା କଣ୍ଠ-ସ୍ୱର,
କୋପେ ନେତ୍ରୁଁ ଅଗ୍ନି- କଣା ନିଃସରିଲା
ସ୍ଫୁରିଲା ରଙ୍ଗ-ଅଧର ।
ଗତନ ହଜାଇ ଭୁଜଙ୍ଗୀ ଯେସନ
ଶ୍ୱାସୁଥାଇ ଘନଘନ,
କୋପ-ଧାରା ପ୍ରାଏ ଦେବୀଙ୍କ ନାସାରୁ
ବହିଲା ଖର-ପବନ ।
କଷ୍ଟେ ମନସ୍ୱିନୀ ଉଦ୍ଧତ-କ୍ରୋଧ
ରୋଧିଣ ଧୈର୍ଯ୍ୟ-ରଜ୍ଜୁରେ,
ନିଶାନ୍ତ-ଅନ୍ଧାରେ ମୃଦୁପାଦଚାରେ
ଫେରିଗଲେ ହଂସପୁରେ ।

□ □ □

(୧) ଶ୍ରୀ ଲୋକନାଥ ମହାଦେବ ପୁରୁଷୋତ୍ତମର କ୍ଷେତ୍ରପାଳ ଅଟନ୍ତି ।

## [ ଦ୍ୱିତୀୟ ସର୍ଗ ]

ଫିଟାଇଲେ ପ୍ରାଚୀ- ତୋରଣ ଅରୁଣ-
ବରଣା ଉଷା ସୁନ୍ଦରୀ,
ପୂର୍ଣ୍ଣମାସୀ-ରବି– ସ୍ୱର୍ଣ୍ଣରଥ-ଚକ୍ର
କାଟିଲା ସିନ୍ଧୁ-ଲହରୀ ।
ସବିତା ବିହୁନେ ଥିଲା ପ୍ରାଚୀ-ବାଳା
ବିରହ-ଦୁଃଖେ ବିଧୁରା,
ସମାଗମେ ଏବେ ଗଣ୍ଡେ ସୁନ୍ଦରୀର
ଫିଟିଲା ଲାଜ-ସିନ୍ଦୂରା ।
ପ୍ରଭାତ-ସନ୍ଧ୍ୟାର ଅଭିନବ-ରାଗେ
ରଞ୍ଜିତ ହୋଇ ସତ୍ୱର,
ବେଳାରେ ପିନ୍ଧିଲେ ବାଲି-ସ୍ତୂପେ ଅବା
ବନ୍ଧୁଳୀ-ପୁଷ୍ପ-ଶେଖର ।
କ୍ରମେ କ୍ରମେ ଚକ୍ର- ବାଳ ରେଖା ଲଂଘି
ସ୍ଫୁରିଲା ବାଳ-କିରଣ,
ଚକ୍ର-ନାଭି ଊର୍ଦ୍ଧ୍ୱେ ଅର-ରେଖାବଳୀ
ପରାଏ ଦିଶି ଶୋଭନ ।
ସ୍ୱର୍ଣ୍ଣ-ଶଳ୍କ-ପୁଞ୍ଜ ପରାଏ ପ୍ରଳୟେ
ମୀନ-ରୂପୀ ବିଷ୍ଣୁଙ୍କର
ଧପଧପ ହୋଇ ପ୍ରାଚୀ-କୂଳେ ଝଳେ
ଊର୍ମିମାଳୀ ରତ୍ନାକର ।
ଅବା ସିନ୍ଧୁଶାୟୀ ଶ୍ରୀପତି-ସମ୍ମୁଖେ
ଆବରି ସମୁଦ୍ର-ଫେଣା,
ସୁବର୍ଣ୍ଣ-ସଂକାଶ ବୈନତେୟ ଝାଡ଼େ
ଯୋଜନ-ବିସ୍ତାରି-ଡ଼େଣା ।
ଖୁରାରୁ ଚଷକ ଝଟତି ଅଲଗା
ହୋଇଗଲେ ଯଥା ଦିଶେ,
ସେହିପରି ରବି ନୀର-ଶଯ୍ୟା ତେଜି
ଉଠିଲେ ନଭେ ନିମିଷେ ।
ସାଗର-ଗରଭୁଁ କି ଅବା ଉଦୟ-
ଆଲୋକେ ଝଳକାନନା,
ସୁବର୍ଣ୍ଣ-ଶୃଙ୍ଖଳେ ସୁବର୍ଣ୍ଣ-କଳସ
ତୋଳୁଛନ୍ତି ଦିଗଙ୍ଗନା ।
ରାତ୍ରେ ଶୀତ-ବାତେ ସମଗରା-ଦହୁଁ
ପ୍ରସୂତ ହୋଇ କୁହୁଡ଼ି
ମଳୟ-ସମୀରେ ରବିକରେ ଗଲା
ଦିଗ-ଦିଗନ୍ତରେ ଉଡ଼ି ।

ସମଗରା ପଦ୍ମ- ବନେ କମଳିନୀ
ନୟନୁଁ ହିମ-ଲୋତକ,
ସରାଗେ ପୋଛିଲେ ନିଜ କରେ ଦେବ
ମିହିର ବିଶ୍ୱ-ଦ୍ୟୋତକ ।
ଖେଳିଲେ ସୁନୀଳ- ସମଗରା-ବକ୍ଷେ
ଚଟୁଳ-ଶଫରୀ-ଜାଳ,
ରବିଙ୍କି ଦେଖିବା ପାଇଁ ସମଗରା
ଫେଡ଼ିଲା କି ନେତ୍ରମାଳ !
କ୍ରମେ ବାଳାତପ ଶ୍ରୀକ୍ଷେତ୍ରେ ରଞ୍ଜିଲା
ସୌଧ-ମାଳା ଅବଦାତ,
ଗୌରୀ-ଗୁରୁ-ଶ୍ୱେତ- ଶୃଙ୍ଗୁ ଝରିଲା କି
ଗୈରିକ-ଧାରା-ପ୍ରପାତ ? (୧)
ଫଗୁମୟ-ଦାଣ୍ଡେ ଧ୍ୱଜମୟ-ନଭେ
କୁସୁମମୟ-ଆରାମେ,
ଜାଣି ହେଉ ନାହିଁ ପୁନରୁକ୍ତି-ଦୋଷୁଁ
ବାଳାତପ କ୍ଷେତ୍ର-ଧାମେ ।
ବହୁ ପରେ ଆଜ ମହାରାଜ
ବିଜେ ହେବେ ନିଜ ପୁରେ,
ନବ-ସୁଖ-ରବି ଆଜ ଉଇଁ ଦୁଃଖ–
ତମକୁ ତଡ଼ିବ ଦୂରେ ।
ରାଜ-ଦରଶନ ପୁଣ୍ୟ ଲଭିବାକୁ
ଉତ୍ସୁକ ଆଜ ସକଳେ,
ପ୍ରାତେ ଜନ-ସ୍ରୋତ ଜନପଦୁଁ ତେଣୁ
ବହୁଅଛି ନୀଳାଚଳେ ।
ଯାର ଯେତେ ଥିଲା ପରିଚ୍ଛଦ, ପୁଣି
ଯାର ଯେତେ ଅଳଙ୍କାର,
ବହୁଦିନ ପରେ ପଦାକୁ ସେ ସବୁ
ହୋଇଛି ଆଜ ବାହାର ।
ନାଗରୀଙ୍କ ବେଶ- ଭୂଷାରେ ନୟନ
ମଜୁଅଛ କୁତୂହଳେ,
ଶାରଦ ସୂର୍ଯ୍ୟାସ୍ତ ଶୋଭା ଖେଳଇ କି
ଅବତରି ଧରା ତଳେ ?
ଠିକରି ପଡୁଛି ଠାବେଠାବେ ନେତ୍ର
ହେରି । ଚନ୍ଦ୍ରମା-ହାଟ,
ହୃଦୟେ ପଶିବା ପାଇଁ ସେ ସୁଷମା
ଭାଙ୍ଗୁଛି ଧୈର୍ଯ୍ୟ-କବାଟ ।

(୧) ଗୌରୀଗୁରୁ– ହିମାଳୟ ।

ଦାଣ୍ଡେ ନିଜ ନିଜ ବିପଣି-ମଣ୍ଡନେ
ବ୍ୟାପୃତ ଆଜ ବଣିକେ,
ରଥ୍ୟା-ସଂସ୍କରଣ ତୋରଣା-ଗଠନେ
ବ୍ୟାପୃତ ଯେତେ ବୈଷ୍କିକେ। (୧)
ବେହରଣ ଲାଗି ଦେଉଳ-ସମ୍ମୁଖେ
ହେଉଛି ମଞ୍ଚ ରଚନା,
ସରଣୀରେ ଊର୍ଦ୍ଧେ ଲମ୍ବିତ ହେଉଛି
ସପୁଷ୍ପ-ପର୍ଣ୍ଣ-ତୋରଣା।
ପ୍ରତି ଦ୍ୱାରେ ପୁଷ୍ପ- ଦାମ ବିଲମ୍ବିତ
କଦଳୀ-ତରୁ ରୋପିତ,
ପ୍ରତି ଦେହଳୀର ବେନିପାଶେ ହେଲା
ପୂର୍ଣ୍ଣ-କୁମ୍ଭ ସଂସ୍ଥାପିତ।
ବଡ଼ଦାଣ୍ଡଠାରୁ ବେଳା ତଟେ ଯହିଁ
ବିରାଜନ୍ତି ମହାବୀର,
ସଙ୍ଗୀ ରାଜାଙ୍କର ବାସ ପାଇଁ ହେଲା
ପ୍ରୋଥିତ ପଟ-ମନ୍ଦିର।
ଏହା ପରେ ପୁଣି ଲାଗିଛି ନଗରେ
ଘରେ ଘରେ ଦୋଳଯାତ୍ରା,
କଳାରୂପେ ଯାହା ଚଳୁଥିଲା, ଏବେ
ଭଜିଛି ସେ ପୂର୍ଣ୍ଣମାତ୍ରା।
ମହାହର୍ଷ-ଭରେ ଉତ୍ଫୁଲ୍ଲ ବେ
ସ୍ଥବିର ଯୁବା ବାଳକ;
ମର୍ତ୍ତ୍ୟ-ବଇକୁଣ୍ଠ ନାମ ଶ୍ରୀକ୍ଷେତ୍ରର
ହୋଇଛି କାର୍ଯ୍ୟେ ସାର୍ଥକ।
ରବିଙ୍କି ଅନାଇ ବୃନ୍ତେ ଯେହ୍ନେ ଉଷା-
ଉଲ୍ଲାସେ ଫୁଲ୍ଲ-ରାଜୀବ,
ରାଜ ଆଗମନ- ବେଳକୁ ଅନାଇ
ସମସ୍ତେ ଆଜ-ଉଦ୍‌ଗ୍ରୀବ।
ଛଅଘଡ଼ି ଦିନ ଉଦ୍ୟାନେ ରଟିଲା
କୁରରୀ-କଣ୍ଠ-ଘଟିକା,
ପୁରେ ପ୍ରବେଶିଲା ସାଦିଦଳେ ବୃତ
ଦ୍ୱିରଦ-ଦନ୍ତ-ଶିବିକା।
ସ୍ୱର୍ଣ୍ଣ-ତାରକିତ ରଙ୍ଗଚେଳ-ବାସେ
ଆବୃତ ଶିବିକା-ଶିର,
ଚନ୍ଦ୍ରାକାରେ ଚଉ- ପାଶେ ବେଢ଼ିଅଛି
ପ୍ରହରୀ-ଅସ୍ତ୍ର-ପ୍ରାଚୀର।
ବଡ଼ଦାଣ୍ଡେ ରୁଣ୍ଡ ଅସଂଖ୍ୟ-ଦର୍ଶକ-
ସିନ୍ଧୁ ଭେଦି ଅନାୟାସେ
ପ୍ରବେଶିଲା ଯାଇ ସତ୍ୱରେ ଶିବିକା
ନବର-ତୋରଣ ପାଶେ।
"ରତ୍ନଚିରା-ତୀରେ (୨) ବିରାଜନ୍ତି ଆଜ
ବୀର ରତ୍ନପୁର-ଜେତା,
ବିଜେ ହେବେ ପୁରେ ପ୍ରଦୋଷେ" ବାରତା
କହିଲା ପ୍ରହରୀ-ନେତା।
ନିଜ ସୀମା ଜାଣି ପ୍ରହରୀ ସୈନିକେ
ରହିଲେ ପୁର ବାହାରେ,
ଶିବିକାକୁ ଘେନି ପଶିଲେ ବାହକେ
ରାଣୀହଂସପୁର-ଦ୍ୱାରେ।
ମହାଦେବୀ ସଙ୍ଗେ ମହିଷୀଏ ଆସି
ଉଭା ହେଲେ ସେ ପ୍ରାଙ୍ଗଣେ,
ଆଚମ୍ବିତେ ଅବା ନବ-ଅମ୍ଭୋଜିନୀ
ଫୁଟିଗଲା ପଦ୍ମବନେ।
ଶିବିକାରୁ ତହୁଁ ଓହ୍ଲାଇଲେ ରତ୍ନ-
ପୁର-ଜେମା ରତ୍ନହାରା,
ସନ୍ଧ୍ୟା-ମେଘୁଁ କିବା ଉଇଁ ବାହାରିଲା
ବିହାୟସେ କାବ୍ୟ-ତାରା।
କାବ୍ୟ-ତାରା ପାଶେ ଆନ ତାରା ଯେହ୍ନେ
ଦିଶନ୍ତି ନଭେ ନିଷ୍ପ୍ରଭ,
ରାଜ-ଅବରୋଧ- ରୂପ-ଅଭିମାନ
ସେରୂପେ ହେଲା ଖରବ।
କେଡ଼େ ସୁକୁମାର ବପୁ, ସତେ ଅବା
ମଉଳି ଯିବ ପରଶେ,
ହସ୍ତ ନ ଲଗାଇ ଗଢ଼ିଲେ କି ବିହି
କେବଳ ଚିନ୍ତି ମାନସେ?
ଉପମାର ପ୍ରତି- ଉପମା ରୂପସୀ,
ବିଭୂଷଣ ଭୂଷଣର,
ବୃଥା ଶ୍ରମ ସିନା ଏ ଥାଉଁ ବହିବା
ଫୁଲ-ଶର ମଦନର।
ଯହିଁ ଯା ଶୋଭିବ, ସେହି ତା ବିଧାତା
ଖଞ୍ଜିଛନ୍ତି ସେହି ସ୍ଥାନେ,
ରସାଣିଛି ପୁଣି ଶୋକ ସେ ମୂରତି
ମଧୁର-ସ୍ନିଗ୍ଧ-ରସାଣେ।
ମ୍ରିୟମାଣା, ଆହା, ଅମ୍ବୁରାଶି ତଳେ
କିମ୍ୱା ବିମ୍ୱାଧରା ରମା,
ଅଥବା ବହୁଳ- ପକ୍ଷେ ପ୍ରାଚୀମୂଳେ
ହିମାଂଶୁ-କଳା ଚରମା।
ବନେ ନିର୍ବାସିତା ସୀତା ଅବା ରାମ-
ହୃଦୟ-ଜ୍ୟୋତ୍ସ୍ନାରୂପିଣୀ,
ହିମାଚଳେ କାମ- ବିୟୋଗ-ବିଧୁରା
କିମ୍ୱା କାମ-ସୀମନ୍ତିନୀ।
କାଳିନ୍ଦୀ-ପୁଳିନେ ଶ୍ୟାମ-ବିରହିଣୀ
ଅବା ବୃଷଭାନୁ-ସୁତା,
ଅବା ନବରମା କରୁଣା-ସମୁଦ୍ର
ମନ୍ଥନରୁ ସମ୍ଭୂତା।

(୧) ବୈଷ୍କିକ – ବେଠିଆ। (୨) ରତ୍ନଚିରା ନଦୀ – ସତ୍ୟବାଦୀ ନିକଟରେ ପ୍ରବାହିତ।

ଚାରୁ-ଅଙ୍ଗ-ଯଷ୍ଟି ସରଳ, ସୁଢ଼ଳ,
ଯେସନ ଶାଳ-ବଲ୍ଲରୀ,
ବିଜୁଳିରେ ଘନ ପରି ଜଡ଼ିଅଛି
ରତ୍ନ-ଶାଢ଼ୀ ନୀଳାମ୍ବରୀ।
କୁମୁଦେ କୌମୁଦୀ ଲାସ୍ୟ-ହାସ୍ୟ ଆସ୍ୟ-
ମଣ୍ଡଳୁ ଯାଇଛି ଲୁଚି,
ଜମ୍ବୁନଦବର୍ଣ୍ଣେ ବୋଳିଅଛି ଆହା,
ଶୋକ ଜମ୍ବୁବର-ରୁଚି।
କ୍ଷାମ-କ୍ଷୀଣ-ଗୌର- କପୋଳ-ଫଳକ
ଭଜିଅଛି ପାଣ୍ଡୁରତା,
ତହିଁ ଜଡ଼ିଅଛି ଅସ୍ତେ ବ୍ୟସ୍ତେ ନୀଳ-
ବିଲୋଳ-ଅଳକ-ଲତା।
ନିରଞ୍ଜନ ନେତ୍ର- ନୀଳୋତ୍ପଳ-ଯୁଗ
ରୋଦନ-ଯୋଗୁଁ ଲୋହିତ,
ଉଷ୍ଣ ଶ୍ୱାସାନିଳେ ଚାରୁ-ବିମ୍ବାଧର
ଭିନ୍ନ ବର୍ଣ୍ଣେ ବିଭାସିତ।
ନୀଳ-ପକ୍ଷ୍ମ-ମାଳେ ଅଶ୍ରୁ-ବିନ୍ଦୁ ଝଳେ
ସ୍ୱଚ୍ଛ ମୁକ୍ତାଫଳ ଜିଣି,
ଦିବୁଁ ଅବତୀର୍ଣ୍ଣ ଭବତଳେ, ଆହା,
କରୁଣା କି ଶରୀରିଣୀ ?
ଦେଖି ବରାଙ୍ଗୀର ନୀଳାମ୍ବର-ଶୋଭି-
ସୁଚାରୁ-ଅଙ୍ଗ ଲତିକା,
ସ୍ମରିଲେ ରାଣୀଏ ପରିଚିତ ନୀଳ-
ସିନ୍ଧୁ-ହିଲ୍ଲୋଳେ, ଚନ୍ଦ୍ରିକା।
ଦେବୀ-ପାଦ ଧରି କାନ୍ଦିଲା ସୁନ୍ଦରୀ
ଲୋଟାଇ ଭୂମେ ବକ୍ଷୋଜ,
ତ୍ୱିଷାମ୍ପତି-ଦୂତୀ- ଉଷାପଦେ ଯେହ୍ନେ
ଶିଶିର-ସିକ୍ତ-ସରୋଜ।
ଗଦଗଦ ଭାଷେ କହଇ, "ଦେବି ଗୋ !
ମୁହିଁ ଭାଗ୍ୟହୀନା ଅତି,
ଜଗତେ ସୁଭାଗୀ- ମହିଳା-ମଣ୍ଡଳେ
ତୁମ୍ଭେ ମହାଭାଗ୍ୟବତୀ।
ଦଗ୍ଧ ମୁଖୁ ମୋର ଲହୁ ପୋଛିବାକୁ
କେହି ନାହିଁ ନର-କୁଳେ,
ଆଶ୍ରାହୀନ ହୋଇ . ଅଭାଗିନୀ ମୁହିଁ
ଭାସୁଛି ସିନା ଅକୂଳେ।
କୁକ୍ଷଣେ ଜନନୀ- ଜଠରୁ ମହୀରେ
ପଡ଼ି ମୁହିଁ ଅଲକ୍ଷଣୀ,
ସୁଖୋଚିତ ପିତା- ମାତାଙ୍କର ହେଲି
ଯେତେ ଅନର୍ଥର ଖଣି।
ସର୍ବ-ସୁଖ-ପାତ୍ରୀ ହୋଇ ବଢ଼ିଥିଲି
ଅତୁଳ-ସ୍ନେହେ ପିତାର,
ସେ ରଣ ଶୁଝିଲି ହୋଇ ରାଜାଙ୍କର
ଜୀବନ-ତରୁ-କୁଠାର !
ରାଜ-ସୁତା ହୋଇ ଲଲାଟେ ମୋହର
ଲେଖାଥିଲା ଏ ଦୁର୍ଗତି,
କେଉଁ ଭିକାରୁଣୀ ହେବ, ଦେବି, ଏବେ
ମୋର ଭାଗ୍ୟେ ସ୍ପୃହାବତୀ ?
ବିପଦ-ଅନ୍ଧାରେ ଭବ-ମରୁଭୂମେ
ଭ୍ରମି ହୋଇଅଛି ବଣା,
ସୁଖେ ବଢ଼ି, ଦୁଃଖ- ଭାଗୀ ହେବାଠାରୁ
କିବା ଅଛି ବିଡ଼ମ୍ବନା ?
ଅସ୍ତ ବ୍ୟସ୍ତ ହୋଇ, ହେ ଦେବି, ଦାରୁଣ
ବିପଦର ସ୍ରୋତ-ଚୟେ,
ଦୁଃଖ-ଜଳେ ଭାସି ଲାଗିଲି ଆସି ମୁଁ
ତୁମ୍ଭରି ଚରଣାଶ୍ରୟେ।
ଆତୁର ତାରିବା ପାଇଁ ଦେଇଛନ୍ତି
ତୁମ୍ଭଙ୍କୁ ପ୍ରଭୁ ଶକତି,
ତୁମ୍ଭ ଦରଶନ- ଆଶାରେ ଏ ପିଣ୍ଡେ
ଏ ପ୍ରାଣ ଥିଲା ବରତି।
ପିତୃ-ମାତୃ-ହୀନା ଅନାଥା ବାଳିକା
ଶରଣ ମାଗେ ବିକଳେ,
ଶ[illegible]ଆଳ, ଦୁଃଖୀ ଝିଅକୁ, ମା,
ରଖ ଶ୍ରୀଚରଣ ତଳେ।"
କାରୁଣ୍ୟ-ପ୍ରତିମା ଅନ୍ନପୂର୍ଣ୍ଣା ଚାରୁ-
ବଦନ-ଇନ୍ଦୁ-ମାଧୁରୀ,
ଦେଖି ସମବେତ ରାଣୀଙ୍କର ଗଲା
ଲୋତକେ ଲୋଚନ ପୂରି।
ସାନ୍ତ୍ୱନା-ବଚନେ ମହାଦେବୀ ତାକୁ
ଆଶ୍ୱାସ ଦେଇ ସତ୍ୱରେ,
ନିଜ ଚଉଁରିକି ନେଇଗଲେ ତାର
ହସ୍ତ ଧରି ମହାଦରେ।
ଯିବାବେଳେ ବେନି ସୁନ୍ଦରୀର ଶୋଭା
ଅନ୍ୟୋନ୍ୟ ଯୋଗେ ବିଳସୁଁ
ଦିଶୁଥିଲା, ଯେହ୍ନେ ଉଇଁଛି ଭୂତଳେ
ଯୁଗ୍ମ-ତାରା ପୁନର୍ବସୁ।
ବସନ୍ତ-ଆକାଶ— କେନ୍ଦ୍ରେ ବିରାଜିଲେ
ଗ୍ରହମାନଙ୍କର ରାଜା,
ମନ୍ଦ୍ର ନାଦେ ବଡ଼— ଦେଉଳେ ବାଜିଲା
ମଧ୍ୟାହ୍ନ-ଧୂପର ବାଜା।
ପ୍ରଭାକର-କର ଖରତର ହୋଇ
ଉତାପେ ତାପିଲା ମହୀ,
ତରୁ-ତଳେ ଆର୍ଦ୍ର- ମନ୍ଦାରେ ପ୍ରାଙ୍ଗଣେ
ବସିଲା ଯାଇ ବରହୀ।

ପିଞ୍ଜରୁ ସାରିକା "ଜଳ" "ଜଳ" ବୋଲି
ରାବିଲା ଉଚ୍ଚେ ସଘନେ,
ଉଦ୍ୟାନ-ମୃଗୀଏ ବିଶ୍ରାମ ଭଜିଲେ
ଶୀତଳ-ପୁନ୍ନାଗ-ବନେ।
କଷ୍ଟେ ଦିନ-କୃତ୍ୟ ବିହି ମହାଦେବୀ
ଦୁଃଖ-ଭାର ବହି ବକ୍ଷେ,
ଅନ୍ନପୂର୍ଣ୍ଣା-ସଙ୍ଗେ ଏକାକିନୀ ଯାଇ
ବସିଲେ ନିଭୃତ କକ୍ଷେ।
ବାଳା ପ୍ରତିପକ୍ଷ- ପାତୀ ହୋଇଥିଲା
ସ୍ୱଭାବେ ଦେବୀଙ୍କ ଚିତ୍ତ,
ଦୁଃଖୀକି ପାଇଲେ ଯେ ସୁଖ ଦୁଃଖୀର
ସୁଖୀ ସେ ସୁଖେ ବଞ୍ଚିତ।
ପୁଚ୍ଛିଲେ ପାର୍ବତୀ ସ୍ନେହମୟ ଭାଷେ
ଆଶ୍ୱାସି ମନ ବାଳାର,
"କହ ଚାରୁଶୀଳା, ମୂଳରୁ ଯେତେକ
ଯୁଦ୍ଧ-ଭୂମି-ସମାଚାର।
ଏତେ କାଳ ଦୁର୍ଗ ରତ୍ନପୁର-ପତି
ସମ୍ଭାଳି ବଳେ କୌଶଳେ,
କି ବିପାକେ ପୁଣି ନିଜ ପ୍ରାଣ ଦେଲେ
ଆହୁତି ଆହବାନଳେ।
କି କୌଶଳେ ରାଏ ଆଣିଲେ ଏ ପୁରେ
ରତ୍ନପୁର-ରତ୍ନୋତ୍ତମା,
ଅନ୍ନପୂର୍ଣ୍ଣା ସ୍ୱର୍ଣ୍ଣ- ନଳିନୀ, ରୂପର
ଅମଳ-ନବ-ଚନ୍ଦ୍ରମା।"
ମହାଦେବୀ ମୁଖେ ଏହି ରୂପେ ଶୁଣି
ନିଜ ରୂପ ଶ୍ଳାଘାଗିର,
ଗଣ୍ଡେ ଅଧରୋଷ୍ଠେ ଲାଜ-ପାଟଳିମା
ଫୁଟିଲା ବିମ୍ବାଧରୀର।
କମ୍ବୁକଣ୍ଠୀ ବାଷ୍ପ- ରୁଦ୍ଧ-କଣ୍ଠେ କହେ
କରେ ନେତ୍ର-ଯୁଗ ମଳି,
"ଧିକ ଏ ରୂପକୁ! ଏହି ସିନା, ଦେବି!
ଭିଆଇଲା ଯେତେ କଳି।
ଏହାପାଇଁ ରତ୍ନ- ପୁର-ରାଜଧାନୀ
ଭଜିଲା କାଳଗରଭ,
ଏହାପାଇଁ କେତେ ମହାପ୍ରାଣୀ ହେଲେ
ଆହବାନଳେ ସଲଭ।
ଏହା ପାଇଁ ସେହି ହାସ୍ୟମୟୀ ପୁରୀ
ହେଲାଟି ମହାଶ୍ମଶାନ,
ଏହା ପାଇଁ ସେହି ତନୁଜା-ବତ୍ସଳ
ରାଜା ହରାଇଲେ ପ୍ରାଣ।
ହା ହା ରେ ଦଇବ! ସେ ପିତାକୁ ନେଇ
ରଖିଲୁ ମୋତେ ଛାଆଇ!

ଏଡ଼େ ଦୁଃଖେ ଏହି କଠିନ ପରାଣ
ପିଣ୍ଡୁଁ ବାହାରିଲା ନାହିଁ।"
ଏହା ବୋଲି ବାଳା ଭୂତଳେ ପଡ଼ିଲା
ଛିନ୍ନ-ତାର ବୀଣା ପରି,
ସମ-ଦୁଃଖେ ଦୁଃଖୀ ପାର୍ବତୀ ବାଳାକୁ
ନେଲେ ନିଜ କୋଳେ ଧରି।
ଉଚ୍ଛଳ-ଶୋକ ଝଟତି ବୁଡ଼ାଇ
ଦେଲା ଯୁବତୀର ଧୃତି,
ପ୍ରିୟ ସଖୀ ପ୍ରାୟେ ମୂର୍ଚ୍ଛା ଆଣି ଦେଲା
ଶୋକର କ୍ଷଣ-ବିସ୍ମୃତି।
ସୁନ୍ଦରୀର ଚାରୁ- ବଦନ-ସରୋଜେ
ଶୀତଳ ସଲିଳ ସିଞ୍ଚି,
ଚେତା କରାଇଲେ ଯତନେ ମହିଷୀ
ରତନ-ପଣନ୍ତେ ବିଞ୍ଚି।
ବୋଇଲେ, "ସେ କଥା କହିବାକୁ ଯେବେ
ହୃଦ ହେଉଅଛି ଘାରି,
ତୁନି ହ, ସେ କଥା ଶୁଣିବାକୁ ମନ
ବଳୁ ନାହିଁ ସୁକୁମାରି!"
ବୀଣା-କ୍ଷିଣା-ସ୍ୱରେ କହେ ଜେମା, "ଆହା,
ଏ ସ୍ନେହ ପାଇବି କାହୁଁ?
ତୁମ୍ଭଠାରେ ଦୁଃଖ ନ କହିବି, ତେବେ
କହିବି କାହାକୁ ଆଉ?
ଭବ ମରୁ-ସ୍ଥଳେ, ଦୟାମୟି, ତୁମ୍ଭେ
ଶୀତଳ-ବାରି-ନିର୍ଝର,
ତରଳ ହେବାକୁ ଜାଣେ ପର ଦୁଃଖେ
କୋମଳ ତୁମ୍ଭ ଅନ୍ତର।
ଦେବି ଗୋ, ପ୍ରାବୃଟେ ତଟିନୀ ଯେସନେ
ନ ପାରେ ବାରି ସମ୍ଭାଳି,
ଅସମ୍ଭାଳେ ହୃଦୁଁ ତାର ପ୍ରବାହକୁ
ବେନି କୂଳେ ଦିଏ ଢାଳି।
ଦୁଃଖୀ ସେହିପରି, ହୃଦେ ଯେବେ ତାର
ବଳିପଡ଼େ ହୃଦ-ବ୍ୟଥା,
ସମ-ଦୁଃଖୀ ଜନେ ହୃଦୟ ଫିଟାଇ
କହେ ନିଜ ଦୁଃଖ କଥା।
କରୁଣା ବିହୁନେ ଦୁଃଖୀକି ମୁଖର
କରଇ ଆବର କିଏ?
ତୋ ପରି କରୁଣା- ମୟୀ ଭବେ ସିନା
କୋଟିରେ ମିଳେ ଗୋଟିଏ!
ଦିନଯାକ ଜଳି ଚଣ୍ଡ-ଅଂଶୁମାଳି-
ପ୍ରଚଣ୍ଡ-କର-ହୁତାଶେ,
କୁମୁଦିନୀ ହୃଦ ଫେଡ଼େ ବିଶ୍ୱବନ୍ଦ୍ୟା
ଚନ୍ଦ୍ରିକା-ସୁନ୍ଦରୀ ପାଶେ।

ଏ ନିର୍ଦ୍ଦୟ-ଭବେ, ମହାଦେବି, ତୋତେ
ଦୟାର ମୂରତି ଜାଣି,
ଶ୍ରୀପଦେ ଏ ଦୀନା ଅନାଥା ତେସନେ
କହିବ ଦୁଃଖ-କାହାଣୀ।
ଦୟାମୟି। ତୋର ଚରଣ-ସରୋଜ
ଦୁଃଖୀର ଆଶ୍ରୟସ୍ଥଳୀ,
ଦୟା ଏକା ସିନା ସହି ପାରେ, ଦେବି,
ଦୁଃଖର ଯେତେକ ଅଳି।
ଅବଧାନ ହେଉ ଛମୁରେ ଆରତି
କରୁଛି ଦୁଃଖୀ ଗୋଚର,
ତୁମ୍ଭେ ଯେବେ ଦୁଃଖ ନ ଶୁଣିବ, ଦେବି,
ଶୁଣିବ କିଏ ଆବର?
ଏକମାତ୍ର ମୁହିଁ ଅଟଇ ସନ୍ତତି
ରତ୍ନପୁର-ପତିଙ୍କର,
ଜନ୍ମ ଦେଇ ଜନ୍ମ- ଦିନେ ମାତା ମୋତେ
ଛାଡ଼ିଗଲେ ଲୋକାନ୍ତର।
ଜନ୍ମ-କାଳୁ ମୁହିଁ ଏହି ରୂପେ, ଦେବି,
ହୋଇଣ ଥିଲି ଅନାଥା,
ମାତ୍ର ସ୍ନେହମୟ ପିତା ମୋର ପକ୍ଷେ
ସ୍ନେହେ ହେଲେ ପିତା ମାତା।
ଭବେ ପିତୃସ୍ନେହ- ମହିମାକୁ ଅବା
କରିବାପାଇଁ ପ୍ରଥିତ,
ବିଧି କଲେ ମୋର ଜନ୍ମ-ଦିନୁ ମୋତେ
ଜନନୀ-ସ୍ନେହୁଁ ବଞ୍ଚିତ।
ପ୍ରେୟସୀ ବିୟୋଗ- ଶୋକେ ରାଜାଙ୍କର
ହେଲେହେଁ ମନ ବିଧୁର,
ମୋତେ ଦେଖି ସେହି ଶୋକ ନରପତି
ମନୁ କରିଥିଲେ ଦୂର।
ସୁଖୀ ହୋଇଥିଲେ ମୋତେ ପାଇ ଯେହ୍ନେ
ଦରିଦ୍ର କୋଟି ବିଭବ,
ପୁତ୍ର ଜନ୍ମଠାରୁ ବଳି କରି ମୋର
ପାଳିଲେ ଜନ୍ମ-ଉତ୍ସବ।
ପାଞ୍ଚ ବର୍ଷ କାଳ ଅପାଳକେ ଦେଶ
ହୋଇଥିଲା ନାରଖାର,
ହସୁଥିଲା ମାତ୍ର ମୋର ଜନ୍ମ-ବର୍ଷେ
ଶସ୍ୟେ ମୁଖ ବସୁଧାର।
ବହୁକାଳ ପରେ ପୂରିଥିଲା ଯେଣୁଁ
ପ୍ରଜାଙ୍କର ମନସ୍କାମ,
ଅନ୍ନପୂର୍ଣ୍ଣା ଦେଖି ମହୀକି ରଖିଲେ
"ଅନ୍ନପୂର୍ଣ୍ଣା" ମୋର ନାମ।
ମୃତ-ମହିଷୀର ମୂର୍ତ୍ତିମତୀ ସ୍ମୃତି
ପ୍ରାଏ ସ୍ନେହେ ମୋତେ ମଣି,
ନୟନର ମଣି ପ୍ରାଏ ମଣୁଥିଲେ
ସ୍ନେହେ ସଦା ନରମଣି।
ସ୍ନେହ-ଭୋଳେ ତାତ କରୁଥିଲେ ମୋତେ
ନିଜ ଅଙ୍କାସନଶାୟୀ,
ଅଙ୍କଛଡ଼ା ହେଲେ ରଙ୍କ ପ୍ରାଏ ଗାଏ
ଝୁରୁଥିଲେ ମୋରପାଇଁ।
ଅବ୍ୟକ୍ତ-ବାସନା କ୍ଷୁଦ୍ର-ହୃଦେ ମୋର
ହେବାକ୍ଷଣି ସମୁଦିତ,
ସମକାଳେ ହେଉ- ଥିଲା ତାଙ୍କ ସ୍ନେହ-
ମୁକୁରେ ପ୍ରତିଫଳିତ।
ଏହି ରୂପେ ଗଲା ମଧୁର ଶୈଶବ
ଦୁଃଖ ଶୋକେ ଅନାବିଳ,
କ୍ରମେ ପ୍ରସରିଲା ଜୀବନ-କାନନେ
ଯୌବନ-ମଳୟାନିଳ।
ମଳୟର ଶ୍ୱାସେ ପଦ୍ମକଳି ହେଲେ
ସରସୀ-କୋଳୁଁ ବାହାର,
ଲାଗି ରହିଥାଏ ସରସୀ-ଉରସେ
ମୃଣାଳ ଯେସନେ ତାର।
ଲଜ୍ଜାଭୀତି-ବଶେ ପିତୃପାଶୁଁ ମୁହିଁ
ସ୍ୱତନ୍ତ୍ର ହୋଇ କୈଶୋରେ,
ହୃଦୟ ମୋହର ବନ୍ଧା ଥିଲା ତାଙ୍କ
ପାଦ-ପଦ୍ମେ ସ୍ନେହ-ଡ଼ୋରେ।
ସ୍ୱହସ୍ତେ ରୋପିତ ଯତନେ ବର୍ଦ୍ଧିତ
ପ୍ରସୂନ-ଲତା ପୁଷ୍ପିତ,
ଦେଖି ପ୍ରମୁଦିତ ହୁଅଇ ଯେସନେ
ଉଦ୍ୟାନପାଳର ଚିତ୍ତ।
ତହୁଁ ଶତଗୁଣେ ହର୍ଷ ଉପୁଜିଲା
ହୃଦୟେ ନୃପ-ମଣିର,
ଯୌବନର ସୀମା ପରଶିଲା ଯହୁଁ
ବୟଃକ୍ରମ ଦୁଃଖିନୀର।
କି ଅଛି ଜଗତେ ସ୍ନେହମୟ ପିତା-
ସ୍ନେହ ସଙ୍ଗେ ହେବ ଲକ୍ଷ୍ୟ?
ପିତୃ-ସ୍ନେହ ସଙ୍ଗେ ତୁଳା ଲଭିବାକୁ
କେବଳ ସିନ୍ଧୁ ସେ ଶକ୍ୟ।
ଅଗାଧ ଗଭୀର ପିତୃ-ସ୍ନେହ, ଦେବି,
ଅଗାଧ ଯେସନ ସିନ୍ଧୁ,
ସନ୍ତତି-ବୃଦ୍ଧିରେ ପିତୃସ୍ନେହ ବଢ଼େ,
ସିନ୍ଧୁ ଦେଖି ପୂର୍ଣ୍ଣ ଇନ୍ଦୁ।
ଲୋକ-ରକ୍ଷା ହେତୁ ଲୋକପିତାଙ୍କର
ଅମୋଘ-ଆଦେଶ-ଫଳେ,
ସୁରଧୁନୀ ପ୍ରାୟେ ପିତୃସ୍ନେହ ଦିବୁଁ
ଓହ୍ଲାଇଛି ଭବ ତଳେ।

ପରିଣୟଯୋଗ୍ୟ ବୟଃ ଦେଖି ମୋର
ହରଷେ ହୋଇ ଆପୁତ୍ର,
ପାତ୍ର ଅନ୍ୱେଷିଲେ ରତ୍ନପୁର-ପତି
ନାନା ଦେଶେ ପେଷି ଦୂତ।
ରାଜପୁତ୍ରବୃନ୍ଦେ ନିମନ୍ତ୍ରଣ କରି
ଚୌଦିଗେ ପେଷିଲେ ଲେଖ,
ସ୍ୱୟମ୍ବର ପାଇଁ କରାଇଲେ ଠୁଳ
ଯମାର ପୁରେ ଅନେକ।
ଯଥାକାଳେ ମୋତେ ରାଜ୍ୟ ସଙ୍ଗେ ଯୋଗ୍ୟ
ପାତ୍ରେ କରି ସମର୍ପଣ,
ବନେ ବାନପ୍ରସ୍ଥ- ବ୍ରତ ଆଚରିବେ
ମନାସିଥିଲେ ରାଜନ।
ସଂସାର ଗହନ ମଧ୍ୟେ ଥାଇ ପିତା
ସଦା ଥିଲେ ଉଦାସୀନ,
ବିଷୟ-ବିଷରେ ବୁଡ଼ି ରହିଥିଲେ
ବିଷୟ-ବାସନା-ହୀନ।
ନିଜେ ରସହୀନ ଉତ୍ତୁଙ୍ଗ-ଶିଖରୀ
ଆଦରେ ପୋଷଇ ଯଥା,
ନିର୍ମଳ-ନିର୍ଝର ନୀରଦାନେ ସଦା
ପଦାଶ୍ରିତ-ତରୁଲତା।
ଲାଳସା-ବିହୀନ ହୋଇ ପାଳୁଥିଲେ
ପ୍ରଜା ରତ୍ନପୁର-ପତି,
ରାଜାରୂପେ ବାହ୍ୟେ ଦିଶୁଥିଲେ, ମାତ୍ର
ହୃଦୟେ ଥିଲେ ସେ ଯତି।
ମାତାଙ୍କର ମୃତ୍ୟୁ- ସଙ୍ଗେ ତୁଟିଥିଲା
ସଂସାରର ସ୍ନେହ-ପାଶ,
ମୋତେ ମଣୁଥିଲେ ସ୍ନେହେ ସେହି ମୃତ-
ମହିଷୀର ପୂତ-ନ୍ୟାସ।
ଭାଳିଥିଲେ ମୋତେ ରାଜ୍ୟ-ସଙ୍ଗେ କରି
ଯୋଗ୍ୟ-ପାତ୍ର-କରଗତ,
ମାତାଙ୍କର ସ୍ନେହ- ଋଣ ମୁକ୍ତ ହୋଇ
ବିଷୟୁଁ ହେବେ ବିରତ।
ଦାସପୁର-ଦୁର୍ଗ (୧)- ଅବରୋଧେ ରତ
ଥିଲେ ରାଜା ଗଙ୍ଗେଶ୍ୱର,
ସଙ୍ଗେ ଥିଲେ ଯୁବ- ରାଜ ଏକଜାତ (୨)
ଅପର ନୃପ-କୁମର।
ଏହା ଜାଣି ତାତ ମହାଦେବ-ହସ୍ତେ
ପଠାଇଲେ ମହାହ୍ଲାଦେ
ସର୍ବ ରାଜ-ସୁତେ ନିମନ୍ତ୍ରଣ କରି
ଲେଖ ଗଙ୍ଗେଶ୍ୱର-ପାଦେ।
ଅଳ୍ପ ଦିନ ପରେ ଦାସପୁରୁଁ, ଦେବି,
ଆସିଲା ପ୍ରତିଉତ୍ତର,

ପତ୍ନୀ-ରୂପେ ମୋତେ ଯାଚିଥିଲେ ତହିଁ
ନିଜେ ଦେବ ଗଙ୍ଗେଶ୍ୱର।
ଲେଖ ପାଇ ରତ୍ନ- ପୁର-ପତିଙ୍କର
ହେଲା ମନ ଖିନ୍ନ ଅତି,
ପୁଣି ଦୂତ ପେଷି ଗଙ୍ଗେଶ୍ୱର ଦେବେ
ଜଣାଇଲେ ଅସମ୍ମତି।
ଲେଖ ପାଇ ହେଲା ଗଙ୍ଗେଶ୍ୱରଙ୍କର
ଅରୁଣ ବେନି ଲୋଚନ,
ପୂର୍ଣ୍ଣାହୁତି ଲଭି ଯଜ୍ଞକୁଣ୍ଡେ ଯେହ୍ନେ
ଭୀଷଣେ ଜ୍ୱଳେ ଜ୍ୱଳନ।
କୋପ-ବିକମ୍ପିତ ସ୍ୱରେ ପ୍ରଣିଧିକି
କହିଲେ ତହୁଁ ହୁଙ୍କାରି,
"ଆସନ୍ନମୃତ୍ୟୁର ନିଜ ବୁଦ୍ଧି ସିନା
ହୁଅଇ ତାର ଭଗାରି।
କି କହିବି, ଆରେ ବର୍ବର ରାଜ୍ୟର
ବର୍ବର ବାରତାବହ!
ନିଶ୍ଚେ ରାଜା ତୋର ନିଜ ମୁଣ୍ଡଭାର
ମଣଇ ସ୍କନ୍ଧେ ଦୁଃସହ!
ଏ ଲେଖର ପ୍ରତି- ଲେଖ ଦେବି ମୁହିଁ
ବେଗେ ରତ୍ନପୁରେ ପଶି,
ଲେଖନୀ ତାହାର ଏହି ଅସି, ତୋର
ରାଜ-ରକ୍ତ ହେବ ମସୀ।"
ଏହା କହି ରାୟେ ପାର୍ଶ୍ୱଚର ରାଜ-
କୁମାରଙ୍କୁ କରି ଲକ୍ଷ୍ୟ,
ବୋଇଲେ, "ଶଶକ ମନାସଇ ଏବେ
ଧରଷିବାକୁ ହର୍ଯ୍ୟକ୍ଷ!
ରତ୍ନପୁର-ପତି କଣ୍ଟକ-ଚରଣ
ଲୋଡ଼ଇ ଲୌହନିଗଡ଼,
ଉଠ ଏହିକ୍ଷଣି, ଉଠାଇ ଛାଉଣି
ଯିବି ରତ୍ନପୁର ଗଡ଼।
ଦୁଷ୍ଟେ ଶିକ୍ଷାଚାର ଦୁଷ୍ଟପଣ ତାର
ଅଧିକେ ଦିଏ ବଢ଼ାଇ,
ଆଉଁସିଲେ କେବେ ମତ୍ତମତଙ୍ଗଜ
ବଶକୁ ଆସଇ ନାହିଁ।
କହୁଅଛି ଯାହା ଅନ୍ୟଥା ନୋହିବ
କଦାଚିତେ ମୋର ଗିର,
ବାନ୍ଧି ଆଣି ଦେବ ବର୍ବର ରାଜାକୁ
ତୁମ୍ଭ ମଧେ ଯେହୁ ବୀର,
ସେହି ବୀର ସଙ୍ଗେ ବିଭା ଦେବି ମୁହିଁ
ଅଣାଇ ପୁରୁ ବାଳାକି,
ଶତ ଅନ୍ନପୂର୍ଣ୍ଣା ନୁହଇ ଯାହାର
ଭାଜନ ନିଉଁଛାଳିକି।"

(୧) ମୟୂରଭଞ୍ଜର ଅନ୍ତର୍ଗତ (୨) ଏକଜାତ — ଗଙ୍ଗେଶ୍ୱର ଦେବଙ୍କ ଜ୍ୟେଷ୍ଠପୁତ୍ର।

ରାଜ-ଆଜ୍ଞା ପାଇ ରାଜପୁତ୍ରବୃନ୍ଦ
ସେହିକ୍ଷଣି ହେଲେ ସଜ,
ପ୍ରସ୍ଥାନ-ଦୁନ୍ଦୁଭି- ନାଦେ ସଜ ହେଲେ
ଚତୁରଙ୍ଗ ସେନାବ୍ରଜ।
ଦାସପୁର ଜୟ ଲାଗି କୁମାରଙ୍କୁ
ରଖି ତହିଁ ନରରାଣ,
ଅର୍ଦ୍ଧସେନା ସଙ୍ଗେ ସେହିକ୍ଷଣି ତହୁଁ
ସରୋଷେ କଲେ ପ୍ରୟାଣ।
ସ୍ୱୟମ୍ବର ପାଇଁ ଯେଉଁଦିନ, ଦେବି,
ପୂର୍ବୁଁ ହୋଇଥିଲା ସ୍ଥିର,
ସାଳନ୍ଦୀ ସନ୍ନିଧେ ସେହି ଦିନ ହେଲା
ପ୍ରୋଥିତ ଶତ୍ରୁ ଶିବିର।
ଉତ୍ସବ ଆଶାରେ ଆଶାୟୀ ହୋଇଣ
ବହୁଦିନୁ ଦିନ ଗଣି,
ଆତଙ୍କେ ଶୁଣିଲେ ରତ୍ନପୁରବାସୀ
ଅରାତି-ଦୁନ୍ଦୁଭି ଧ୍ୱନି।
ତୁରଙ୍ଗମ-ହ୍ରେଷା ମାତଙ୍ଗ-ବୃଂହିତ
ସୈନ୍ୟଙ୍କର ସିଂହନାଦ,
ଶୁଣି ଉପୁଜିଲା ପୁରବାସିଙ୍କର
ହୃଦୟେ ମହାବିଷାଦ।
ଉତ୍କଳସମ୍ରାଟ- ବିରାଟ ବାହିନୀ
ସହିତେ ସମ୍ମୁଖ ରଣ
ଅସମ୍ଭବ ଜାଣି ଦୁର୍ଗ ରକ୍ଷା ଲାଗି
କଲେ ତାତ ଆୟୋଜନ।
ସାଳନ୍ଦୀ ତଟିନୀ- ତୀରେ ପ୍ରବେଶନ୍ତେ
ଉତ୍କଳପତିଙ୍କ ଥାଟ,
ପ୍ରତିହାରିବନ୍ଦେ କିଳିଦେଲେ ସେହି
ମୁହୂର୍ତ୍ତେ ଗଡ଼ କବାଟ।
ବେନିପାର୍ଶ୍ୱେ ମହା- ବନ, ପୃଷ୍ଠେ ତୁଙ୍ଗ
ଶିଖରୀ ଟେକିଛି ଶିଖା,
ପଶ୍ଚିମେ ସମ୍ମୁଖେ ସାଳନ୍ଦୀ ଦୁର୍ଗର
ନିସର୍ଗଜାତ ପରିଖା।
ତିନିଦିଗେ ଦୁର୍ଗ ଅଗମ୍ୟ, କେବଳ
ପଶ୍ଚିମ ପ୍ରାଚୀର ପାଇଁ
ଦଶଶତ ଧନ୍ୱୀ ପଦାତି ସତ୍ୱରେ
ନିଯୋଜିଲେ ନରସାଇଁ।
ଚାପେ ଝଞ୍ଜି ଅଗ୍ନି- ଶିଖା ସମ ରୋପ
ନିଜ ପ୍ରାଣ ତୃଣ ଗଣି,
ସଦର୍ପେ ପ୍ରାଚୀର ଶିରେ ଭ୍ରମିଲେ ସେ
ଫଣା ଟେକି ଯେହ୍ନେ ଫଣୀ।
ପଞ୍ଚଶତୀରେ କଣ୍ଟକ, କୁପିତ
ସଲ୍ଲକୀ ଶରୀରେ କାଠି,
ପ୍ରାଏ ସାଙ୍କ ହସ୍ତେ ବିଶିଖ ରହିଲା
ଅରାତି-ମୁଖେ ତରାଟି।
ସ୍ୱକାର୍ଯ୍ୟ ସାଧନେ ବ୍ରତୀ ଯେହି ଦେହ
ପାତନେ ନୋହି କାତର,
ଥାଉ ଆନ, ନିଜେ ଭାଗ୍ୟଲକ୍ଷ୍ମୀ ତାଙ୍କୁ
ଯୋଡ଼ନ୍ତି କରପତର।
ଅମୋଘ ସନ୍ଧାନେ ବିନ୍ଧି ଶର ଶୂରେ
ଶତ୍ରୁଙ୍କୁ କଲେ ଅଥୟ,
ଶରପ୍ରସରର ସୀମା ହେଲା ତାଙ୍କ
କୃତାନ୍ତର ରଙ୍ଗାଳୟ।
ଦକ୍ଷକର ତାଙ୍କ ଦିଶୁଥିଲା ଯେହ୍ନେ
ସଦା ଲଗ୍ନ ନିଷଙ୍ଗରେ,
ପ୍ରସବୁଥିଲା କି ଅଦ୍ଭୁତେ ଶିଞ୍ଜିନୀ
ଶରଶ୍ରେଣୀ ନିରନ୍ତରେ।
ରମ୍ଭାତ୍ୱକ ପ୍ରାଏ ହେଳେ ସେ ଭେଦିଲେ
ଚର୍ମ ବର୍ମ ବିପକ୍ଷର,
ଗୁନ୍ଥି ଦେଲେ ହସ୍ତୀ- ଦେହେ ହସ୍ତିପକ,
ଅଶ୍ୱ ଦେହେ ସାଦିବର।
ମୁଣ୍ଡ ବଞ୍ଚାଇବା ପାଇଁ ଯେତେ ଯୋଧେ
ପିନ୍ଧିଥିଲେ ଶିରସ୍ତ୍ରାଣ,
ମୁଣ୍ଡ ବଞ୍ଚାଇ ସେ ପାଦେ ଛିନ୍ନ ହୋଇ
ରଣେ ବିସର୍ଜିଲେ ପ୍ରାଣ।
ପ୍ରାଣରଙ୍କ ଯେହୁ କାପୁରୁଷ ରଣେ
ଭଙ୍ଗ ଦେଲେ ପ୍ରାଣ ଲାଗି,
ପୃଷ୍ଠେ ହାଣ ଖାଇ ହେଲେ ସେହି ସିନା
ବୃଥା ଅପଯଶଃ ଭାଗୀ।
ଏକ ଏକ ହୋଇ ରାଜପୁତ୍ରେ ଆସି
ସଦଳେ କଲେ ଚଢ଼ାଉ,
କେତେ ମଲେ, କେତେ ରଣୁଁ ବାହୁଡ଼ିଲେ,
ଧିକ୍କାରିଣ ନିଜ ବାହୁ।
ସମରଦୁର୍ମଦ କେତେ ମହାଯୋଧ
ରାଜଦ୍ୱାରେ ଯଶଃ ଲୋଡ଼ି,
ଆସିଥିଲେ ଦମ୍ଭେ ଓଷ୍ଠ କାମୋଡ଼ିଣ
ପଡ଼ିଲେ ମାଟି କାମୋଡ଼ି।
ଧନ୍ୟ କଉଶଳ- କ୍ରୂର କାରୁଣିକ
ରତ୍ନପୁର ଧନ୍ୱିଙ୍କର,
ଶିର ଉଭାରି ଯା ଅରିଙ୍କି ନ ଦେଲା
ବ୍ରଣଜ୍ଞାନ ଅବସର!
ଭୈରବଭୈରବୀ- ଭୋଜି-ଭୂମି ପ୍ରାଏ
ଦିଶିଲା ସଂଗ୍ରାମସ୍ଥଳୀ,
ଶରଚ୍ଛିନ୍ନ ଶିରଃ ଫଳ ହେଲା ତହିଁ
କିରୀଟ ଚଷକାବଳୀ।
ଶବମେଦ ଦିବ୍ୟ ଚନ୍ଦନ ଶବର
ହୃଦ ଦିବ୍ୟ ସିଂହାସନ,
ସଦ୍ୟଃପାତ-ରକ୍ତ ପାଟଳ-ମଦିରା
ପ୍ରେତକୁଳ-ସନ୍ତର୍ପଣ। □ □ □

## ଉ ତ୍ସ ର୍ଗ

ଉତ୍କଳତିଳକ, ଅଖିଳଗୁଣନିକେତନ, ଦିନକରକୁଳଚନ୍ଦ୍ର,
ଶ୍ରୀଯୁକ୍ତ ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ ମହୋଦୟ ଶ୍ରୀଚରଣକମଳେଷୁ –
ସବିନୟ ନିବେଦନମିଦଂ –

ଶ୍ରୀମନ୍ ମହାରାଜ,

କଟକରେ ଅବସ୍ଥାନ ସମୟରେ ସଦୟ ବ୍ୟବହାରଦ୍ୱାରା ଆପଣ ଏ ସେବକକୁ ଅନେକଥର ଆପ୍ୟାୟିତ କରିଥିଲେ। ବର୍ତ୍ତମାନ ଦୂରରେ ଥାଇ ଏବଂ ବୃହତ୍ ରାଜ୍ୟର ଭାର ବହନ କରି ସୁଦ୍ଧା ସମୟସମୟରେ ମାଦୃଶ ସାମାନ୍ୟ ଲୋକର ତତ୍ତ୍ୱ ନେଇଥାନ୍ତି। ହୃଦୟର ଭକ୍ତି ଏବଂ କୃତଜ୍ଞତା ପ୍ରଦର୍ଶନ ବ୍ୟତୀତ ଏପରି ଅସାଧାରଣ ଅନୁକମ୍ପାର ଅନ୍ୟ କୌଣସି ପ୍ରତିଦାନ ମାଦୃଶ ଦୁଃସ୍ଥ ଜନ ପକ୍ଷରେ ସମ୍ଭବପର ନୁହେଁ । ଶ୍ରୀଛାମୁଙ୍କ ପ୍ରଦତ୍ତ ଉତ୍ସାହରେ ଉତ୍ସାହିତ ହୋଇ ମୋହର ପିତା ମହାଶୟ ଏହି କ୍ଷୁଦ୍ର କାବ୍ୟ ପ୍ରଣୟନ କରିଥିଲେ। ସୂର୍ଯ୍ୟ-କର-ବିକସିତ ଅରବିନ୍ଦଦ୍ୱାରା ଲୋକେ ଯେମନ୍ତ ସୂର୍ଯ୍ୟଙ୍କର ଅର୍ଚ୍ଚନା କରନ୍ତି, ମୁଁ ଏହି କାବ୍ୟକୁସୁମଦ୍ୱାରା ଶ୍ରୀଛାମୁଙ୍କର ଚରଣାର୍ଚ୍ଚନା କଲି। ମୋହର ସମ୍ପୂର୍ଣ୍ଣ ଆଶା ଅଛି ଯେ ସ୍ୱକୀୟ ଅସାଧାରଣ ମହାନୁଭବତା ଯୋଗୁଁ ଆପଣ ମୋହର ବାଲ୍ୟକାଳରୁ ମୋହ ପ୍ରତି ଯେପରି ଦୟା ପ୍ରଦର୍ଶନ କରିଆସୁଅଛନ୍ତି, ମୁଁ ଆଜୀବନ ସେହି ଦୟାରୁ ବଞ୍ଚିତ ହେବି ନାହିଁ।

କଟକ
୨୯।୫।୧୮୯୨

ଶ୍ରୀଛାମୁଙ୍କର
ବିନୟାବନତ, ଆଶ୍ରିତ ସେବକ
ଶ୍ରୀ ଶଶିଭୂଷଣ ରାୟ

# ଚିଲିକା

ଉତ୍କଳ-କମଳା-ବିଳାସ-ଦୀର୍ଘିକା,
ମରାଳ-ମାଳିନୀ ନୀଳାମ୍ବୁ ଚିଲିକା।
ଉତ୍କଳର ତୁହି ଚାରୁ ଅଳଙ୍କାର,
ଉତ୍କଳ-ଭୁବନେ ଶୋଭାର ଭଣ୍ଡାର।
ସ୍ୱଭାବେ ଭାବୁକ-ମାନସ-ଉଲ୍ଲାସୀ,
ଦିଗନ୍ତ-ବିସ୍ତାରୀ ତୋର ବାରିରାଶି।
ପ୍ରସନ୍ନବଦନା ଉଜ୍ଜ୍ୱଳବରଣା,
ମୁଖଶ୍ରୀ ଦେଖନ୍ତି ଯହିଁ ଦିଗଙ୍ଗନା।
ନୀଳ ଅଙ୍ଗ ତୋର ଚିତ୍ର ଅନ୍ତରାଳେ,
ନାସି, ନଳବନ, ଶୈଳ, ଦ୍ୱୀପମାଳେ।
ଦକ୍ଷିଣେ ମିଶିଛି ତୋର ଗର୍ଭେ ଆସି
ସୌରକରୋଦ୍ଭାସୀ ନୀଳ ରମ୍ଭାନାସୀ। (୧)
ବିମାନ-ଆକାରେ ଭାସେ ଶତ ଶତ
ନୀଳୋରସେ ତୋର ଶୈଳ ମାରକତ।
ପକ୍ଷଚ୍ଛେଦି-ଶକ୍ର-ଭୟେ କି ଶଇଳେ
ଲୁଚି ରହିଥିଲେ ତୋହରି ସଲିଳେ ?
ସନ୍ନିଧି ଲଭିଣ ଭଗବତୀଙ୍କର (୨)
ତୋଳିଛନ୍ତି ଗୁଳ୍ମ-ଜଟିଳ ଶିଖର।
ଦେଉଳକିରୀଟୀ କାଳୀଜୟୀ ଗିରି, (୩)
ମାରକତ-ସେତୁ ପ୍ରାୟେ ଯାର ଶିରୀ।
ଶ୍ୱେତାଙ୍ଗ ଚଢ଼ାଇଗୁହା (୪) ସମୁଦ୍‌ଗତ,
ନୀର ଭେଦି କିବା ଉଠେ ଐରାବତ !
ତରଙ୍ଗବେଷ୍ଟିତ କାଙ୍କଣଶିଖରୀ, (୫)
ଆଦ୍ୟ ଫଳେ ଯାର ତରୀ ପୂର୍ଣ୍ଣ କରି,
ବର୍ଷେ ବର୍ଷେ ହ୍ରଦ-ବିହାରୀ ଧୀବରେ
ଆଦରେ ପ୍ରେରନ୍ତି ଲକ୍ଷ୍ମୀ-ରୋଷଘରେ।
ସ୍ଥାନେ ସ୍ଥାନେ ନୀର ଭେଦିଛି ସୈକତ,
ଶାରଦ-ଆକାଶେ ଯେହ୍ନେ ଛାୟାପଥ।
ତାରାପୁଞ୍ଜେ ଯଥା ଶୋଭେ ହରିତାଳୀ,
ପୁଳିନ ତେସନ ଶୁଭ୍ର-ଶୁକ୍ତି-ଶାଳୀ।
ଚାରୁ ତୀର ତୋର ଶୋଭାର ଆଶ୍ରମ,
ଶୈଳ, ଟଙ୍କ, ବନେ ମଧୁର ବିଷମ ;
ଗିରିଖୋଲ, ନାସି, କାନ୍ତାର କନ୍ଦରା,
ସୁରମ୍ୟ ତଟିନୀ ଜନମନୋହରା,
ବିକଟ ସଂକଟ, ତୁଙ୍ଗ ଶୈଳସାନୁ,
ଗତିପଥେ ଯାହା ପରଶନ୍ତି ଭାନୁ।
ନୀଳଗଣ୍ଡ ଯାର ଗଭୀର ବିବର
ଫଣିପତି-ଫଣା-ମଣିରେ ଭାସ୍ୱର।
ଭଗ୍ନ ଦୁର୍ଗ, ଜରାଜର୍ଜର ଦେଉଳ
ଶୈବାଳ-ଅରଣ୍ୟ-ଲତା-ଗୁଳ୍ମାକୁଳ,
ମୂର୍ତ୍ତିମତୀ ହୋଇ ଭବଭଙ୍ଗୁରତା
ପ୍ରତିଧ୍ୱନିଛଳେ କହେ ଯହିଁ କଥା।
କୁରଙ୍ଗ କୁରଙ୍ଗୀ ଚିର-କ୍ରୀଡ଼ା-ସ୍ଥଳ
ନବଦୂର୍ବାଦଳ-ଶ୍ୟାମଳ ଶାଦ୍ୱଳ।
ବିଶାଳ ପୁଳିନ ମନୋମୋହକାରୀ,
ମରୀଚିକା ଯାର ଚିର ସହଚରୀ।
ଦ୍ୱୀପମାଳା ଶସ୍ୟେ ହରିତାୟମାନ,
ଏମାନ ତୋହର ଶୋଭା ଉପାଦାନ।
ଏତେ ଛବି ଯେଣୁ ଏକାଧାରେ ଠୁଳ
ଛବିଳ-ଉତ୍କଳେ ତୋ ଛବି ଅତୁଳ।
ବହୁଦିନ ଭ୍ରମି ଭ୍ରମି ଅବିରତେ
ଦେଖିଲଇଁ ନାନା ସ୍ଥାନ ଭୂଭାରତେ।
କି ଉତ୍ତରାଖଣ୍ଡ କି ଦକ୍ଷିଣାପଥ
ଭ୍ରମିଲି ମୁଁ ଭାଗ୍ୟବଶେ ଚକ୍ରବତ।
ଭାରତର ରତ୍ନ-ସୀମନ୍ତ-ଅଚଳ
ଦେଖିଲି ହିମାଦ୍ରି ହିମ-ଉର୍ଜ୍ଜସ୍ୱଳ।
ପାଦେ କୋଟି କୋଟି ଶିଖରିସମାଜ
ସର୍ବୋଚ୍ଚେ ଶୋଭନ୍ତି ଶୁଭ୍ର ଶୈଳରାଜ।
ଶୃଙ୍ଗୋପରି ଶୃଙ୍ଗ ଶୃଙ୍ଗ ତଦୁପରି
ନୀଳ ବ୍ୟୋମପଟେ ଚିତ୍ର ହେଲାପରି।
ନୀହାର ମୁକୁଟେ ମସ୍ତକ ମଣ୍ଡିତ
ସ୍କନ୍ଧେ ଶୋଭେ ଶୁଭ୍ର ଗଙ୍ଗା-ଉପବୀତ।
ନିସ୍ତବ୍ଧ ନୀରବ ସେ ମହାବିଜନେ
ସନାତନ ଶ୍ୱେତ-ତୁଷାର-ଆସନେ,

(୧) ରମ୍ଭା – ଗଞ୍ଜାମ ଅନ୍ତର୍ଗତ ସ୍ୱନାମପ୍ରସିଦ୍ଧ ପର୍ବତ। (୨) ଚିଲିକାତୀରସ୍ଥ ବାଣପୁରରେ ଶ୍ରୀ ଭଗବତୀଦେବୀଙ୍କ ମନ୍ଦିର ଅଛି। (୩) କାଳୀଜୟୀ – ଚିଲିକାମଧ୍ୟସ୍ଥିତ ପର୍ବତ। ଏହି ପର୍ବତଶୃଙ୍ଗରେ ପାରିକୁଦ ରାଜାଙ୍କ ପ୍ରତିଷ୍ଠିତ କାଳୀଜୟୀ ଦେବୀଙ୍କ ମନ୍ଦିର ଅଛି। (୪) ଚିଲିକାନୀରୋଦ୍‌ଗତ ଶ୍ୱେତବର୍ଣ୍ଣ ଶୈଳ। (୫) ଚିଲିକାମଧ୍ୟସ୍ଥିତ ସ୍ୱନାମପ୍ରସିଦ୍ଧ ପର୍ବତ। ଏଠାରେ ଅପର୍ଯ୍ୟାପ୍ତ କାଙ୍କଣଫଳ ଜାତ ହୁଏ।

ବ୍ୟୋମକେଶ ମୂର୍ତ୍ତି ଦେଖିଲି ଚମକି,
ପଡ଼ିଲା ସେ ରୂପେ ଚିତ୍ତବୃତ୍ତି ଥକି।
ମନେ ମନେ କହି ନମିଲି ନୀରବେ
"ନମୋ ଦେବାତ୍ମନେ ଶ୍ରୀ ଗୌରୀଗୁରବେ।"
ରାଜସ୍ଥାନେ ଭ୍ରମି ଭୀମ ମରୁସ୍ଥଳୀ
ଦେଖିଲି ଭୀଷଣ ରୁକ୍ଷଶୈଳାବଳୀ।
ନୀର-ତରୁ-ହୀନ, ବନ୍ଧୁର, କର୍କଶ,
କରାଳ ଯେସନ କାଳ ସର୍ବଂକଷ।
ଚଣ୍ଡାଂଶୁ କିରଣେ ଖର ଅତିଶୟ,
ଦରୀଶାୟି-ଭୋଗି-ଶ୍ୱାସେ ବିଷମୟ।
ତପ୍ତବାୟୁ ଯହିଁ ପ୍ରଚଣ୍ଡେ ସଞ୍ଚରି,
ପାନ୍ଥ-ଆୟୁ ନିଏ ପ୍ରତି ପଦେ ହରି।
ଛାୟାଦାନେ ଦକ୍ଷ ଯହିଁ ନାଗଫେଣୀ,
ନୀରଦାନେ ପୁଣି ମରୀଚିକା ବେଣୀ।
ତୃଷାତୁର ରୋଗୀ ଗୃହେ ଯଥା ବସି
ସ୍ମରେ କମଳିନୀ-ହରିତ-ସରସୀ,
ସେହି ରୁକ୍ଷ-ଦୃଶ୍ୟେ ସ୍ନିଗ୍ଧ-ଛବି ତୋର
ନେତ୍ରାତିଥି ସ୍ମୃତି କରୁଥିଲା ମୋର।
ଭ୍ରମିଲି ଭୀଷଣ ବିନ୍ଧ୍ୟାଦ୍ରିକାନ୍ତାର,
ଧୂଆଁଧାରେ (୧) ଯହିଁ ହୋଇ ଶତଧାର,
ଭୈରବ ଆରବେ ରେବା ଦେଇ ଲମ୍ଫ
ଜନମାଏ ଜନ-ମାନସେ ପ୍ରକମ୍ପ।
ଶୁଭ୍ର ସ୍ୱଚ୍ଛ ପୟଃ-ପ୍ରପାତ-ସୁଭଗା
ହରଜଟାଭ୍ରଷ୍ଟା ଯଥା ତ୍ରିପଥଗା।
ଶୀକର ଜଳଦେ ବିଭାବସୁକର
ସୃଜେ ଯହିଁ ଶକ୍ରଚାପ ମନୋହର।
ଶୁଣିଲି ଶ୍ରବଣେ ସେ ଭୈରବ ରବ,
ଚକ୍ଷୁଁ ଦେଖିଲି ସେ ଜଳର ତାଣ୍ଡବ।
ଭ୍ରମିଲି ଦକ୍ଷିଣାପଥେ ଉପତ୍ୟକା
ଝିଲ୍ଲି-ଝଙ୍କାରିତ ଅଟବୀ ଦଣ୍ଡକା,
ତୀର୍ଥାଶ୍ରମ, ଗିରି, ତଟିନୀ, କନ୍ଦରା
ମହାରଣ୍ୟମାଳେ ଚିତ୍ର-କଳେବରା।
ଦୂଷଣ-ତ୍ରିଶିରା-ଖର-ଅଧ୍ୟାସିତ
ଜନସ୍ଥାନ ଯାର ଥିଲା ସନ୍ନିହିତ।
ଧାରାସ୍ରାବୀ, ଭୀମରାବୀ, ତଡ଼ିଦ୍ୱନ୍ତ
ପର୍ଜନ୍ୟ ଗର୍ଜନେ କମ୍ପିଲେ ଦିଗନ୍ତ।
ଯହିଁ ମେଘାଲୋକେ ପ୍ରଫୁଲ୍ଲ ଅନ୍ତର,
ମୈଥିଳୀପାଳିତ କେକିବଂଶଧର,
ନାଚେ ନୃତ୍ୟକାରୀ, ନୀଳକଣ୍ଠ-କେକା
ଅଦ୍ୟାପି ସୂଚଇ ରାମାଶ୍ରମରେଖା।

ଭୀଷଣ କନ୍ଦରା ମଧ୍ୟେ ବସି ତହିଁ
ଗଦ୍‌ଗଦ ଶବଦେ-ଗୋଦାବରୀ ଯହିଁ,
କୁହରେ ପତ୍ନୀ ଭୃଗୁ ଦେହେ ଝରି,
ତହିଁ କିଲୋ ତୋତେ ନ ଥିଲି ସୁମରି ?
ବାତ୍ୟା ଆନ୍ଦୋଳିତ ମହାଭୟଙ୍କର
ଭ୍ରମିଲି ଭୀଷଣ-ରାଜ୍ୟେ ବରୁଣର,
ଯହିଁ ଚକ୍ରବାଳେ ଅୟସ୍କନ୍ତପ୍ରଭ
ନୀଳାର୍ଣ୍ଣବ-ଦେହେ ଲଗ୍ନ ନୀଳନଭଃ।
ଊର୍ମି ପରେ ଊର୍ମି, ଊର୍ମି ତଦୁପରେ
ପୋତ ଗ୍ରାସିବାକୁ ଆସୁଥାଇ ଖରେ।
ସ୍ତବ୍ଧଭାବେ ଏହି ମହାଦୃଶ୍ୟମାନ
ଦେଖିଲି ଭାରତେ ଭ୍ରମି ନାନାସ୍ଥାନ।
ଭୀଷଣ, ବିରାଟ, ବିକଟ, ଉଦାର
ଦୃଶ୍ୟ ଦେଖି ହେଲା ବିସ୍ମୟ ଅପାର।
ଚିତ୍ତବୃତ୍ତି ଗଲା ନିଜ ପଥ ଛାଡ଼ି,
ସତ୍ତା ଗଲା ସେହି ମହାଭାବେ ବୁଡ଼ି।
ଖର ସୌରକରେ ତାରକା ଯେସନ
ଅସ୍ମିତା (୨) ବିସ୍ମୟେ ହେଲା ନିମଗନ।
ଗୁରୁ ପ୍ରାୟେ ତାଙ୍କୁ ଦୂରୁଁ କରି ଭୀତି
ସଖୀ ପ୍ରାୟେ ତୋତେ ସ୍ମରୁଥିଲି ନିତି।
ଇତର ଜନର ଅବସାଦକର
ଯୋଗୀ ଋଷିଙ୍କି ସେ ସ୍ଥାନ ମନୋହର।
ରବିକରେ ମୃଦ କମଳ ଲଭଇ,
ଝାଉଁଳି ପଡ଼ନ୍ତି ଅନ୍ୟ ପୁଷ୍ପ ତହିଁ;
ସେହି ପୁଷ୍ପ ପୁଣି ସ୍ନିଗ୍ଧ-ଶଶିକରେ
ପିଅନ୍ତି ପୀୟୂଷ ପ୍ରଫୁଲ୍ଲ-ଅନ୍ତରେ।
ତୋ ଛବି ଦର୍ଶନେ ସେହି ରୂପେ ମନ
ଲଭେ ସୁମଧୁର ଶାନ୍ତି ଆସ୍ୱାଦନ।
ବିରାଟ ନୋହି ତୁ ଯେଣୁ ସୁବୃହତ,
ସ୍ତବ୍ଧ ନୋହି ମନ ହୁଅଇ ଉନ୍ନତ।
ଅବସାଦେ ଅବା ଆତ୍ମବିସ୍ମୃତିରେ
ବୁଡ଼େ ନାହିଁ ମନ ତୋର ରମ୍ୟତୀରେ।
ସ୍ନିଗ୍ଧ ରୂପ ତୋର ଚିତ୍ତ-ଉଲ୍ଲାସକ
ସୁମଧୁର ଦ୍ୱୈତ ଭାବର ଦ୍ୟୋତକ।
ସଙ୍ଗୀତ ତୋହର ଚିତ୍ତସହଚର
ନୀଳବକ୍ଷ ତୋର ସଙ୍ଗୀତେ ମୁଖର।
ଭାସମାନ ଶ୍ୱେତ-ପ୍ରାସାଦ ଆକାରେ
ଗାଆନ୍ତି ବିହଙ୍ଗେ ତରଙ୍ଗ ଦୋଳାରେ।
ନୀଳତର କରି ଛାୟାରେ ତୋ ଅଙ୍ଗ,
ଊର୍ଦ୍ଧ୍ୱେ ମେଘାକାରେ ଉଡ଼ନ୍ତି ବିହଙ୍ଗ।

(୧) ନର୍ମଦାପ୍ରପାତର ନାମ ଧୂଆଁଧାର। (୨) ଅସ୍ମିତା – ମୁଁ ଅଛି ଏହି ଜ୍ଞାନ (Self-consciousness)।

ପକ୍ଷ ଝାଡ଼ି ଶୂନ୍ୟେଁ ସ୍ଥିରଲକ୍ଷ୍ୟ ହୋଇ
ଜଳ-ମଧ୍ୟେ ଚିଲା ମାରନ୍ତି ଗାଙ୍ଗୋଇ।
କଳା, ନୀଳ, ପୀତ, ହରିତ, ଲୋହିତ
ବିହଙ୍ଗମେ ଭର୍ମି କାହିଁ ବିମଣ୍ଡିତ।
ଜଳଦେବୀ-କଳ-କିଙ୍କିଣୀ-ନିକ୍ୱଣ
ପ୍ରାୟ ଶୁଭୁଥାଇ ଶରାଳି ନିଃସ୍ୱନ।
ଯୂଥେ ଯୂଥେ ମତ୍ସ୍ୟ ନିଜ ଶୁଭ୍ରକାନ୍ତି
ନୀଳ-ନୀରେ ଢ଼େଇଁ ଉଲ୍ଲାସେ ଦେଖନ୍ତି।
ଧିକ୍‌କାରି ମୁକୁତା-ଶୁକ୍ତି-ବର୍ଣ୍ଣ-ଛଟା
ଶଳ୍‌କାବୃତ ବପୁ ପ୍ରକଟେ ଭେକଟା; (୧)
ବିଷଦିଗ୍‌ଧ-ଶଙ୍କୁ ପ୍ରାୟେ ବହି ପୁଚ୍ଛ,
ଶଙ୍କା ଉପୁଜାଏ ବିକଟ ସାଂକୁଚ୍।
ଶିଶୁମାର ଖେଳେ ତରଙ୍ଗେ ଓଲଟି
ଉଠି ବୁଡ଼ଇ ନ ପଡ଼ୁ ନେତ୍ରେ ପଟୀ।
କଳାମୁଣ୍ଡ ଜଳେ ଛଟକେ ଦେଖାଇ
ବୁଲଇ ମଗର ଏଣେ ତେଣେ ଧାଇଁ।
କୋଟି କୋଟି ଜୀବେ ଲଭନ୍ତି ଜୀବିକା
ତୋ ଦେହେ ଏରୂପେ ବିଚ୍‌ରି, ଚିଲିକା।
କୋଟି କୋଟି ଜୀବେ ଯୋଗାଇ ଆହାର
ନ ସରଇ ତୋର ଅକ୍ଷୟ ଭଣ୍ଡାର।
କି ଆଶ୍ରିତ, କିବା ଆଗନ୍ତୁକଚ୍ୟ
ନିର୍ବିଶେଷେ ସର୍ବେ ପୂରାନ୍ତି ଆଶୟ।
ଏହି ଯେ ତୋ ନୀଳ-ବକ୍ଷ ତାରକିତ
କରି ବିହରନ୍ତି ହଂସ ଅଗଣିତ।
କେବଣ ଦେଶୁଁ ଏ ବର୍ଷେ ବର୍ଷେ ଆସି
କ୍ରୀଡ଼ନ୍ତି ତୋ ଅଙ୍ଗେ ନାନାରଙ୍ଗେ ଭାସି।
କଳୁଷିତ-ବାରି-କଳୁଷହାରକ,
କାସାରେ କୁମୁଦ-ହାସ-ପ୍ରକାଶକ।
ଦକ୍ଷିଣାଶା-ବଧୂ-ଅବତଂସ-ମୋତି
ମହୋଜ୍ୱଳ କୁମ୍ଭ-ସମୁଦ୍ଭବ ଜ୍ୟୋତି,
ଉଇଁଲେ ଆକାଶେ, ଆସି ଦଳେ ଦଳେ
ପୂରନ୍ତି ଜଳ ଏ କଳ କୋଳାହଳେ।
ଏମାନେ କି ସହଚର ଶରତର,
ଶରତ ସଙ୍ଗତେ ହୁଅନ୍ତି ଅନ୍ତର?
ଉଜ୍ଜ୍ୱଳ-ଶରତ-ଲକ୍ଷ୍ମୀ ପରିଜନ
ପ୍ରାୟ ଦେଶେ ଦେଶେ କରନ୍ତି ଭ୍ରମଣ।
ଶଶାଙ୍କଧବଳା ନିଶା ଜ୍ୟୋତିଷ୍ମତୀ,
କାଶହାସମୟୀ ସ୍ୱଚ୍ଛ ସ୍ରୋତସ୍ୱତୀ।
ମାଳତୀ-ବିଶଦ ନିବିଡ଼-ନିକୁଞ୍ଜ,
କୁମୁଦ-ଧବଳ ସରୋବରପୁଞ୍ଜ।
ଲଭି ସ୍ଥିରତର-ଶରତ ପ୍ରସାଦ
ଏ ସମ୍ପଦର ଏ ଅଟନ୍ତି ଦାୟାଦ।
ନିଜେ ଶୁଭ୍ର ଶୁଭ୍ରେ କରନ୍ତି ବିହାର,
ଶୁଭ୍ରମୟ ସଦା ଏହାଙ୍କ ସଂସାର।
ଶୁଭ୍ର ଶରତର ଜୟ-ବୈଜୟନ୍ତୀ
ପ୍ରାୟେ ପନ୍ତି ବାନ୍ଧି ନଭେ ବିହରନ୍ତି।
କମଳା-ବିଳାସ-ଭୂମି ତୋର ତୀର
ଫଳ ଫୁଲ ଶସ୍ୟେ ସଦା ସୁରୁଚିର।
ନାରୀକେଳ, ପୂଗ, ପନସ, ରସାଳ,
ମୁଚୁକୁନ୍ଦ, ଚମ୍ପା, କେଶର, ତମାଳ,
ଅଶୋକ ବସନ୍ତ-ବିଭବ-ବିକାସୀ,
କଦମ୍ବ ଜଳଦ-ଡମ୍ବର-ବିଳାସୀ।
ସଦାଶିବପ୍ରିୟ ପବିତ୍ର ଶ୍ରୀଫଳ,
ସଦା ଚଳଦଳ ପବିତ୍ର ପିପ୍ପଳ।
ପୁରାଣଶାଲ୍ମଳୀ, ସୁବିଶାଳକାୟ,
ଶ୍ୟେନ ଶ୍ୟେନୀ ଯହିଁ ରଚନ୍ତି କୁଳାୟ।
ଗ୍ରାମଦେବତାଙ୍କ ମଣ୍ଡପ-ବିତାନ
ସିନ୍ଦୂରିତ ପୁଷ୍ପ ଗୁଚ୍ଛେ ଗୋଡ଼ିବାଣ।
ଶିବାଳୟ ଉପକଣ୍ଠେ କନିଅର
ସୁବର୍ଣ୍ଣ ଚଷକ-ଧର ମଧୁପର।
କର୍ଣ୍ଣପୂରରୂପେ ପୁଷ୍ପ ଯାର ଦୋଳେ
ପଲ୍ଲି-ବିଳାସିନୀ-ଅମଳ-କପୋଳେ।
ବୈଦୂର୍ଯ୍ୟ-କିରୀଟ-ଧାରୀ ତୁଙ୍ଗ ତାଳ
ସରୋବର ତୀରେ ଶୋଭେ ମାଳ ମାଳ।
ମହାନନ୍ଦେ ଯାର ବାହୁଚ୍ଛାୟାଶ୍ରୟେ
ବାୟା ବାୟାବଧୂ ବସନ୍ତି ନିର୍ଭୟେ।
ମୂଳେ କାଳରୂପୀ ଭୀଷଣ ଭୁଜଙ୍ଗ
ଭ୍ରୂକୁଟି ନ ଗଣି କରୁଥାନ୍ତି ରଙ୍ଗ।
ତାଙ୍କୁ ବିଳମ୍ବିତ ସ୍ୱର୍ଣ୍ଣବର୍ଣ୍ଣ ଦୋଳେ
ଦୋଳାନ୍ତି ଶାବକକୁଳେ ସ୍ନେହଭୋଳେ।
ପଦାଶ୍ରିତ ଜୀବେ ଛାୟାପ୍ରଦାୟକ,
କଷ୍ଟ ସହି, ପରକଷ୍ଟ ସଂହାରକ,
ବଟଦ୍ରୁମ, ଯାର ଯୋଗ୍ୟ ପୁତ୍ରବତ
ଭୂ-ସ୍ପର୍ଶୀ ଓହଳ ସ୍ତମ୍ଭେ ପରିଣତ।
ମରକତ ପର୍ଣ୍ଣେ, ପଦ୍ମରାଗ ଫଳେ
ଯା ବିଗ୍ରହ ଗ୍ରାମ ସୀମାନ୍ତ ଉଜଳେ।
ମଧ୍ୟାହ୍ନେ ସ୍ଫୁରଇ ଯହିଁ କଳଗିର
ହଳଦୀବସନ୍ତ ସଙ୍ଗେ ଗୁଣ୍ଡୁଚିର।
ଏ ଆଦି ପାଦପମାନେ ଅଙ୍କାରିତ
ତୀର-ପଲ୍ଲି ତୋର ସ୍ନିଗ୍ଧ ସୁଲଳିତ।

(୧) ଏହି ମତ୍ସ୍ୟ ନିମନ୍ତେ ଚିଲିକା ପ୍ରସିଦ୍ଧ।

ବୃତିରେ ପୁଷ୍ପିତ କେତକୀକି ଯହିଁ
ସମୀରଣ ତୋର ନିରତେ ସେବଇ।
କେତେ ଥର ଦେଖି ଅଛି ଏହିମାନ,
ମାତ୍ର ପ୍ରତିଥର ଦିଶେ ଆନ ଆନ।
ଦୃଷ୍ଟପୂର୍ବ ହୋଇ ଅପୂର୍ବ ପ୍ରତୀତି
ସୁନ୍ଦରପଣର ଚିରନ୍ତନ ରୀତି।
ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖିଲେହେଁ ନୂଆ ଦିଶୁଥାଇ।
ତୋ ପଶ୍ଚିମ ତୀର ଶୋଭାର ନିଳୟ,
ଦେଖି ନ ରହିବ ଲାଖି କା ହୃଦୟ?
ଶ୍ୟାମଳରୁ କ୍ରମେ ନୀଳ ନୀଳତର,
ସୋପାନସ୍ୱରୂପେ ଦିଶେ ଶୈଳସ୍ତର।
ଅଭ୍ରଙ୍କଷ ତୁଙ୍ଗ ପ୍ରତୀଚୀ-ପାଚେରି
ଶୋଭେ ଶୋଭାମୟ ଭୂଧର ଭାଳେରି। (୧)
କ୍ରମନିମ୍ନ ହୋଇ ନୀଳ ଜଳରାଶି
ଭେଦିଅଛି ଯାର ସୁଶ୍ୟାମଳ ନାସି।
ଡ଼ୋରା ଡ଼ୋରା ହୋଇ ପରଶିଛି ଶିଖ
ଠାବେ ଠାବେ ଯାର ମାର୍ଗ ଗଇରିକ।
ସୁଶ୍ୟାମଳ ଗୁଳ୍ମ-ଜଟିଳ ଜଟିଆ (୨)
ତୀରୁଁ ନୀରେ ଯାର ହୋଇଅଛି ଠିଆ।
ତିନି ଆଡୁ ଯାକୁ ତର୍ଜି ବୀଚୀଦଳ
ପ୍ରଚାରନ୍ତି ନିଜ କ୍ଲୀବତ୍ୱ କେବଳ।
ତଟବନେ ଯାର ରାଜେ ଅନ୍ଧାରୁଆ
ଜଳଦେବୀଙ୍କର କେଳିଯୋଗ୍ୟ-ଗୁହା।
ପାଷାଣଭେଦୀରେ (୩) ମଣ୍ଡିତ ତୋରଣ,
ଶଇବାଳସ୍ତରେ ଭିତ୍ତି ସୁଚିକ୍କଣ।
ବସି ଯହିଁ ହ୍ରଦବାସିନୀ ଅମରୀ
ସ୍ୱଚ୍ଛ ମୁକ୍ତାଫଳେ ବାନ୍ଧନ୍ତି କବରୀ।
ବୃକ୍ଷହୀନ, ଶିଳାରୁକ୍ଷ-କଳେବର
ସିଂହେଶ୍ୱରଙ୍କର (୪) ଯାମଳଭୂଧର।
ବହଇ ସାଳିୟା ପ୍ରସନ୍ନସଲିଳା (୫)
ତଟଦେଶେ ଯାର ଶୈଳ ଘଣ୍ଟଶିଳା।
ଇନ୍ଦ୍ରନୀଳକାନ୍ତି ବିଶାଳ ଶୋଳରୀ। (୬)

ଦେଖି ମୋ ମନକୁ ଆସଇ ଏପରି,
ଗର୍ଭେ ଉଠନ୍ତି କି ଭେଦିଣ ଅବନୀ
ମୟବିରଚିତ ଯାନେ ବୈରୋଚନି?
ଅପରାଜିତାର ନୀଳିମାଡମ୍ବର
ଦୂରେ ଗିରିରାଜ ରାଜେ ମନୋହର।
କରିମୁଣ୍ଡାକୃତି ଗିରି ଖଣ୍ଡାହଣା (୭)
କାନ୍ତାରେ ହୁଅନ୍ତି ପାଛେ ଯହିଁ ବଣା।
ମଧ୍ୟାହ୍ନେ ଅନ୍ଧାର ଜିଣଇ ଅଳକୁ
କନ୍ଦସୀମନ୍ତିନୀ-ବିଶ୍ରମ୍ଭର ବନ୍ଧୁ।
ନୀରନ୍ଧ୍ର-ନିବିଡ଼ କୀଚକବଣିଆ,
ଅଭ୍ରଙ୍କଷଶିଖ ଗିରି ଗଉଣିଆ (୮)
ଫଣାଧରାକୃତି ମୈନାକଶିଖରୀ, (୯)
ଯା ଶିରେ ବସନ୍ତି ରଣପୁରେଶ୍ୱରୀ।
ବାରୁଣୀବଦନେ ଏ ଗିରିପଙ୍କ୍ତୀ
ଶୋଭେ ଯେହ୍ନେ ମୃଗମଦ-ପତ୍ରାବଳୀ।
ପୂର୍ବ ତୀରୁଁ ତୋର ଆରୋହି ତରଣୀ
ଆସୁଥିବାବେଳେ, ଏ ତୀର-ଅବନୀ,
ଏହି ଦୃଶ୍ୟାବଳୀ ନିଜ ଚିତ୍ରପଟେ
ଦର୍ଶକ-ନୟନେ କ୍ରମଶଃ ପ୍ରକଟେ।
କୁହେଳିକା ଭେଦି ଯେହ୍ନେ ଶୈଳକୂଟ
କ୍ରମେ ହେଉଥାନ୍ତି ନଭେ ପରିସ୍ଫୁଟ।
ଜଳୋଦ୍‌ଗତ ଇନ୍ଦ୍ରନୀଳର ଗୁମ୍ଫଜ
ପ୍ରାୟେ ଦିଶୁଥାଇ ଦ୍ୱୀପଶୈଳବ୍ରଜ।
ଯେତେ ହେଉଥାଇ ତରୀ ଅଗ୍ରସର
ଅଲଗା ଦିଶନ୍ତି ଲଗ୍ନ ପରସ୍ପର।
ସ୍ପଷ୍ଟ ହେଉଥାଏ କ୍ରମେ କ୍ରମେ ସ୍ଫୀତ
ଏକ ବର୍ଣ୍ଣ ନାନା ବର୍ଣ୍ଣେ ବିଭାସିତ।
ପଲକେ ପଲକେ ହୁଅଇ ପ୍ରକାଶ
ଛାୟା ଆଲୋକର ଅପୂର୍ବ ବିଳାସ।
ସାୟଂତନ-ଘନ ଖେଳଇ ଗଗନେ
ସୂର୍ଯ୍ୟାସ୍ତର ଐନ୍ଦ୍ରଜାଳିକ ବରଣେ।
ଠାବେ ଠାବେ ଅଭ୍ରଖଣ୍ଡ ସ୍ୱର୍ଣ୍ଣକାନ୍ତି
ଶିର ତୋଳି ଶୈଳ-ଶିଖୁଁ ଝାଳୁଥାନ୍ତି।

(୧) ସ୍ୱନାମପ୍ରସିଦ୍ଧ ପ୍ରାଚୀରାକୃତି ବିଶାଳ ପର୍ବତ। ଚିଲିକାକୂଳରେ ଏହାର ଅବସ୍ଥିତି ଅତି ସୁନ୍ଦର। (୨) ସ୍ୱନାମପ୍ରସିଦ୍ଧ ପର୍ବତ। (୩) ପାଷାଣଭେଦୀ— Ferns। (୪) ସ୍ୱନାମପ୍ରସିଦ୍ଧ ପରସ୍ପରସଂଲଗ୍ନ ଯୋଡ଼ିଏ ପର୍ବତ। ମହାଦେବ ସିଂହେଶ୍ୱରଙ୍କ ନାମାନୁସାରେ ନାମିତ। (୫) ଘଣ୍ଟଶିଳା ବାଣପୁରର ନିକଟବର୍ତ୍ତୀ ପର୍ବତ। ଏହାର ପାଦଦେଶରେ ସାଳିୟା ନଦୀ ପ୍ରବାହିତ। (୬) ଓଡ଼ିଶା ମଧ୍ୟରେ ଏପରି ସୁଦୃଶ୍ୟ ପର୍ବତ ବିରଳ। ବାସ୍ତବରେ ଏହା ଗୋଟିଏ ବିରାଟ ନୀଳକାନ୍ତମଣିରେ ଗଠିତ ବିମାନପ୍ରାୟ ବୋଧହୁଏ। (୭) ମୋଗଲବନ୍ଦିର ସର୍ବୋଚ୍ଚ ପର୍ବତ। ଏ ଅଞ୍ଚଳରେ ଅନେକ କନ୍ଦପଲ୍ଲି ଅଛି। (୮) ରଣପୁର ଅନ୍ତର୍ଗତ ସ୍ୱନାମପ୍ରସିଦ୍ଧ ଶୈଳ। ଏହାର ଶୃଙ୍ଗ ଗଉଣି ପରି ଦିଶେ। (୯) ରଣପୁର ରାଜଧାନୀର ନିକଟବର୍ତ୍ତୀ ବିଶାଳ ପର୍ବତ। ବିରାଟ ସର୍ପାକୃତି ଏହି ପର୍ବତ ତାଳୁରେ ରଣପୁରର ଅଧିଷ୍ଠାତ୍ରୀ ଦୁର୍ଗାଦେବୀଙ୍କ ମନ୍ଦିର ବହୁ ଦୂରରୁ ଦୃଶ୍ୟ ହୁଏ।

ଶୋଭାରାଶି ଫୁଟି ଅନ୍ତରୀକ୍ଷେ, ଛଳେ,
ଚହୁଁ ତୋ ତରଳ-ବକ୍ଷେ ପ୍ରତିଫଳେ।
ଆହା, ଏ ଶୋଭାର କାହିଁ ପଟାନ୍ତର ?
ଥିଲେ ଥିବ ସ୍ୱର୍ଗେ, ମର୍ତ୍ତ୍ୟେ ଅଗୋଚର।
ପାସୋରିବ ଦେଖି, କହ, କେହୁ ଜନ
ଏ ଶୋକ-ପାସୋରା ଅପ୍‌ସରାଭୁବନ ?
ଭାରତୀ-ଭକତ କେଉଁ ରୂପପାୟୀ
ତୃପ୍ତ ହେବ ଏହା ଥରେ ମାତ୍ର ଧାୟି ?
ବଚନବିଷୟ ନୁହଇ ଏ ଛବି
ହୃଦ ସେ କେବଳ ପାରେ ଅନୁଭବି।
ନାନ ତୀର୍ଥଜଳ ଆସି ଦିବା ନିଶି
ପୂତ କରେ ତୋର ଅଙ୍ଗ ତହିଁ ମିଶି।
ସର୍ବ-ଦେବ-ଦେବୀ-ସ୍ନାନେ ପବିତ୍ରିତ
ନୀଳାଚଳପାଦେ ବହେ ଯେ ସରିତ। (୧)
ପୁନ୍ନାଗ-ଅରଣ୍ୟ-ଲକ୍ଷ୍ମୀ-ଦରପଣ
ତେଜଃପୁଞ୍ଜ-ଭୃଗୁ-ପ୍ରଭାବେ ପାବନ। (୨)
ଭାର୍ଗବୀ, ସ୍ୱର୍ଗର ସୁଗମ ନିଃଶ୍ରେଣୀ
ମନୋହର ଯାର ନୀଳ ନୀରବେଣୀ,
ସ୍ନାନ-କାଳେ ଦ୍ୱିଜକୁମାରୀନିଚୟ
ମୁଖେ ଦିଶେ ହେମତାମରସମୟ।
ମଞ୍ଜୁ-ଝୁରିଅନା-କୁଞ୍ଜ-ବିହାରିଣୀ,
ସାକ୍ଷୀ ଗୋପୀନାଥ-ହୃଦୟହାରିଣୀ,
ଦ୍ୱିଜ କନ୍ୟା ଲକ୍ଷ୍ମୀ ସ୍ନାନେ ପୁଣ୍ୟନୀରା
ସୌଗନ୍ଧିକ ଗନ୍ଧେ ଚାରୁ ରୁଚିରା। (୩)
ଦୟା-ବୀର ଧୀର ମୁନୀନ୍ଦ୍ର ଦଧୀଚି
ଅଭିଷେକଫଳେ ପୂତ ଯାର ବୀଚି। (୪)
ଭବତଳେ ବିଭୁ-ଦୟା ମୂର୍ତ୍ତିମତୀ
ଧଉଳୀଦର୍ପଣ ଦୟା-ସ୍ରୋତସ୍ୱତୀ।
ଭୁବନେଶ୍ୱରୀଙ୍କ କେଳି-ଉପବନ
କିଶଳୟ-ତାମ୍ର ଏକାମ୍ର-କାନନ,
ଦ୍ରୁମରାଜି-ଛାୟା-ଅନ୍ଧାରେ ଯାହାର
ମୃଦୁ କଳନାଦେ ବହେ ସ୍ୱଚ୍ଛଧାର। (୫)
ନଦୀ-ମନ୍ଦାକିନୀ ଅମନ୍ଦଗାମିନୀ
ରଣପୁର-ରାଷ୍ଟ୍ର - ବନ-ବିହାରିଣୀ।
ଏ ଆଦି ବିବିଧ ପୁଣ୍ୟ ତୀର୍ଥ ସଙ୍ଗ
ଲଭି ପରିପୁଷ୍ଟ ତୋର ନୀଳ ଅଙ୍ଗ।
ନିଜେ ତୀର୍ଥେଶ୍ୱର ସର୍ବ ତୀର୍ଥାଶ୍ରୟ
ତୋ ସଙ୍ଗେ କରନ୍ତି ନୀର-ବିନିମୟ।
ପବିତ୍ର ସୁନ୍ଦର, ସୁନ୍ଦର ପାବନ,
ତୋଠାରେ ହୋଇଛି ଏହା ସଂଘଟନ।
ତେଣୁ ସିନା ତୋର ତୀର ଦ୍ୱୀପାବଳୀ
ଦେବ-ଦେବୀଙ୍କର ପ୍ରିୟ-ବାସସ୍ଥଳୀ।
ତେଣୁ ସିନା ତାରା, ଚଣ୍ଡୀ, ଭଗବତୀ (୬)
ସରାଗେ ତୋ ତୀରେ ବହିଲେ ବସତି।
ତେଣୁ ନାଗେଶ୍ୱର-ନିକୁଞ୍ଜ-ବିଳାସୀ (୭)
ପ୍ରଭୁ ଚଣ୍ଡେଶ୍ୱର ତୋ ତୀରନିବାସୀ।
ତୋ ଦର୍ଶନେ କ୍ଷୁଦ୍ର ମନୁଷ୍ୟର ଚିତ୍ତ
ଦେଶେ କାଳେ ହୁଏ ଦୂର-ବିସ୍ତାରିତ।
ଅତୀତର ତୁହି ସାକ୍ଷୀ ପୁରାତନ
ଦେଖିଲୁ ନରର ଉତ୍‌ଥାନ ପତନ।
କେତେ ରାଜଧାନୀ ତୋ ତୀରେ ଉତ୍‌ଥିତ
ହୋଇ ତହିଁ ପୁଣି ହେଲେ ଅସ୍ତମିତ।
ଧୋଉଅଛି ତୋର ନୀଳ ଉର୍ମିମାଳ
ଏବେ ତାଙ୍କ କାଳ-ଚର୍ବିତ କଙ୍କାଳ।

(୧) ଅଠରନଳା ନଦୀ। (୨) କିମ୍ବଦନ୍ତୀ ଅଛି ଯେ ଭୃଗୁ ମୁନି ଏହି ନଦୀ କୂଳରେ ତପସ୍ୟା କରିଥିବାରୁ ଏହାର ନାମ ଭାର୍ଗବୀ ହୋଇଅଛି। ଏହି ନଦୀ ତୀରରେ ଅନେକ ପ୍ରସିଦ୍ଧ ବ୍ରାହ୍ମଣ-ଶାସନ ପ୍ରତିଷ୍ଠିତ। ଏହାର ଉଭୟ ତୀର ପୁନ୍ନାଗବନାକୀର୍ଣ୍ଣ। (୩) ଏହି ନଦୀ ସ୍ରୋତସ୍ୱତୀ ନହେଲେ ହେଁ ଏହି ଅଞ୍ଚଳର ଗୋଟିଏ ପ୍ରଧାନ ପୟଃପ୍ରଣାଳୀ ଅଟେ। ସତ୍ୟବାଦୀନିବାସୀ ଜଣେ ପଣ୍ଡାର ଲକ୍ଷ୍ମୀ ନାମ୍ନୀ ଗୋଟିଏ ପରମାସୁନ୍ଦରୀ କନ୍ୟା ଥିଲା। ସ୍ୱୟଂ ଗୋପୀନାଥ ଏହି ସୁନ୍ଦରୀର ପ୍ରେମରେ ଆସକ୍ତ ହୋଇଥିବାର କିମ୍ବଦନ୍ତୀ ଅବଧି ପ୍ରଚଳିତ ଅଛି। ରାଧିକାଙ୍କ ସୁବର୍ଣ୍ଣପ୍ରତିମା ଗଠନାରମ୍ଭ ଦିନଠାରୁ ଲକ୍ଷ୍ମୀ ପୀଡ଼ିତ ହେଲା ଏବଂ ଯେଉଁ ଦିନ ସେହି ପ୍ରତିମାର ଜୀବନନ୍ୟାସ ହେଲା, ସେହି ଦିନ ଲକ୍ଷ୍ମୀର ପ୍ରାଣ ବିୟୋଗ ହେଲା। ସତ୍ୟବାଦୀରେ ଅନେକ ଝୁରୀଅନା ଗଛ ଅଛି। (୪) ଦଧୀଚି ମୁନି ଦୟା କୂଳରେ ତପସ୍ୟା କରିଥିବାରୁ ନଦୀର ନାମ ପ୍ରଥମେ ଦଧିଭଦ୍ରା ହୋଇଥିଲା। ଦଧିଭଦ୍ରାର ଅପଭ୍ରଂଶ ''ଦହିଆ'' ଏବଂ ''ଦହିଆ''ର ଅପଭ୍ରଂଶ ''ଦୟା'' ହୋଇଅଛି। ଐତିହାସିକ ଧଉଳୀ ପର୍ବତ ଦୟା ତୀରରେ ଅବସ୍ଥିତ। (୫) ଗନ୍ଧବତୀ ନଦୀ– ଦୟାର ଗୋଟିଏ ଉପନଦୀ। (୬) ଚିଲିକାତୀରସ୍ଥ ପର୍ବତ ତଳେ ତାରାଦେବୀ ପ୍ରତିଷ୍ଠିତ। ଶ୍ରୀକ୍ଷେତ୍ରରୁ ସାତ କ୍ରୋଶ ଦୂରରେ ଗୋଟିଏ ଉଚ୍ଚ ବାଲୁକାସ୍ତୂପ ଉପରେ ହରଚଣ୍ଡୀ ଦେବୀଙ୍କର ଦେଉଳ ଅବସ୍ଥିତ। ଭଗବତୀ ବାଣପୁରର ଅଧିଷ୍ଠାତ୍ରୀ। (୭) ଏହି ମନ୍ଦିର ପୁରୀ ଭୁବନେଶ୍ୱର ଏବଂ କୋଣାର୍କ ମନ୍ଦିରର ଚତୁର୍ଥସ୍ଥାନୀୟ ଅଟେ। ଏଠାରେ ଅସଂଖ୍ୟ ନାଗେଶ୍ୱର ବୃକ୍ଷ ଦେଖାଯାଏ।

କେତେ ରାଜା, କେତେ ଦିଗ୍‌ବିଜୟୀ ବୀର
ଆଲୋଡ଼ିଲେ ତୋର ସ୍ନିଗ୍ଧ-ନୀଳ ନୀର।
ତୋ ଆକାଶ ପୂରି ଜୟ-ବାଦ୍ୟ-ରୋଳେ
ଉଡ଼ାଇ ବାନା ତୋ ପବନ-ହିଲ୍ଲୋଳେ,
ସଦମ୍ଭେ ବାହିଲେ ତୋର ବକ୍ଷେ ତରୀ
ଅକ୍ଷୟ ଯଶର ଆଶା ବକ୍ଷେ ଧରି।
ଅଭିଯାନେ ତାଙ୍କ ତରୀ-ମେରୁଦଣ୍ଡେ
ଯେ ରେଖା ପଡ଼ିଲା ତୋର ନୀଳଗଣ୍ଡେ,
ସେହି ରେଖା ପ୍ରାୟେ ତାଙ୍କ ଯଶମାନ
ଜାତ ମାତ୍ରେ ସିନା ହେଲା ଅନ୍ତର୍ଦ୍ଧାନ!
ବୃଥା ହାଣି, ଆହା, ଲକ୍ଷ ଲକ୍ଷ ମଥା,
କେତେ ଦିନ ପାଇଁ ଜଳେ କେତେ କଥା!
ଯଶରଙ୍କ ହୋଇ ପଦାଙ୍କ ସେ ବୀରେ,
ରଖି ପାରିଲେ କି ଯଶ-ପଦବୀରେ?
ସୁଲଭ ଯେ ଲାଞ୍ଛେ ବହ୍ନି-କୁଳ-ଯଶଃ,
କାଳ କି ସେ ଲାଞ୍ଛେ କେବେ ହୁଏ ବଶ?
ଇତିହାସ-ରଙ୍ଗସ୍ଥଳୀ ତୁ ଚିଲିକା
ତୋର ତୀରେ ପରା ଶ୍ରୀମତୀ ମାଣିକା-
ହସ୍ତେ ଭୁଞ୍ଜିଥିଲେ ସାଦରେ ଲବଣୀ
ଭାବଗ୍ରାହୀ ପ୍ରଭୁ ଭକ୍ତିଚିନ୍ତାମଣି।
ଦିନେ ତୋର ତୀରେ ବସି ନିକାଞ୍ଚନେ
କାଞ୍ଚି ଯାତ୍ରା କଥା ପଡ଼ିଗଲା ମନେ।
ସ୍ୱପ୍ନେ ଭାସି କାଳ-ସ୍ରୋତ-ପ୍ରତିଲୋମେ
ଦେଖିଲି ଅମରୀ ବିରାଜିତ ବ୍ୟୋମେ।
ଧରନ୍ତି କଳ୍ପନା ନାମ ସେ ସୁନ୍ଦରୀ
ବୀଣାପାଣିଙ୍କର ଚିରସହଚରୀ।
ଭକ୍ତିଭାବେ ତାଙ୍କୁ କଲି ଆରାଧନା
ଦିବ୍ୟ-ଚକ୍ଷୁ ମୋତେ ଦେଲେ ଚନ୍ଦ୍ରାନନା।
ଦେଖିଲି ଦୃଶ୍ୟ ମୁଁ ବସି ତୋର ତଟେ
ଲାଖି ରହିଛି ଯା ସଦା ସ୍ମୃତି-ପଟେ।
ସମୀରେ ଅଝାଳ-ମାଳା ସ୍ଫୀତ କରି
ଦକ୍ଷିଣୁ ଆସିଲା ଶତ ଶତ ତରୀ।
ତରୀରେ ଆସୀନ ସୈନିକନିକର
ସୌର କରେ ବର୍ମ ଆୟୁଧ ଭାସ୍ୱର।
ସ୍ୱର୍ଣ୍ଣ-ସୁଦର୍ଶନ- ଲାଞ୍ଛନେ ଲାଞ୍ଛିତ
ଲୋହିତ ପତାକା ବାତେ ଆନ୍ଦୋଳିତ।
ତାଳେ ତାଳେ ପଡ଼ି ତୋ ବକ୍ଷେ କ୍ଷେପଣୀ
ଉଠାଇ ଗମ୍ଭୀରେ ଜୟ ଗୀତ ଧ୍ୱନି।
ମଧ୍ୟେ ଶୋହେ ତରୀ ଅତିମନୋହର
ଗଜଦନ୍ତେ ଗଢ଼ା ଯାର କଳେବର।

ରଙ୍ଗ ଚନ୍ଦ୍ରାତପ ସ୍ୱର୍ଣ୍ଣ-ତାରକିତ
ସ୍ଫଟିକ ଯଷ୍ଟିରେ ଊର୍ଦ୍ଧ୍ୱେ ବିଳମ୍ବିତ,
ଚନ୍ଦ୍ରାତପ-ତଳେ ଝୁଲଇ ମଞ୍ଜୁଳ-
ଝାଲର ପରାଏ ପତ୍ର ସଙ୍ଗେ ଫୁଲ।
ତହିଁ ସିଂହାସନେ ସୁନ୍ଦରୀ ଆସୀନା
ଜଗତେ ତୁଳନା ସେହି ତାର ସିନା।
ପାରିଜାତକୁଞ୍ଜେ ଇନ୍ଦିରା ସୁନ୍ଦରୀ
ସମୁଦ୍ର-ମନ୍ଥନୁ ବାହାରିଲା ପରି।
ମ୍ଳାନ ମୁଖଛବି ବିଷାଦ-ରେଖାରେ
ଭ୍ରୂଲତା ଅଙ୍କା କି ଲଜ୍ଜା-ତୂଳିକାରେ?
ଭ୍ରୂମଧ୍ୟେ କୁଙ୍କୁମ ବିନ୍ଦୁ ସୁମଧୁର
ବେନି କର୍ଣ୍ଣେ ଶୋହେ ମଣିକର୍ଣ୍ଣପୁର।
ବୈପରୀତ୍ୟେ ଦ୍ୟୁତି ବଢ଼ାଇ ବିଶେଷେ
କୃଷ୍ଣକେଶପାଶ ଦୋଳେ ପୃଷ୍ଠଦେଶେ।
ଗନ୍ଧାମୋଦେ ଅନ୍ଧ ହୋଇ ଅଳିକୁଳ
ଗୁଞ୍ଜରି ବାମାକୁ କରନ୍ତି ଆକୁଳ।
ବରଭୁଜେ ଚାଳି ଲୀଳା-ଅରବିନ୍ଦ
ସମ୍ଭ୍ରମେ ସୁନ୍ଦରୀ ତଡ଼ଇ ମିଳିନ୍ଦ।
ମଣ୍ଡାଇ ସୁନୀଳ ନେତ୍ର ପଙ୍କଜାସ୍ୟେ
ଅଯତ୍ନ-ମଣ୍ଡନ ଚଳଭ୍ରୂ-ଲାସ୍ୟେ,
ବରଭୁଜେ ଧରି ରଜତକ୍ଷେପଣୀ
ତରୁଣୀଏ ମିଳି ବାହାନ୍ତି ତରଣୀ।
କ୍ଷେପଣୀ-କ୍ଷେପଣେ ତୋହରି ସଲିଳେ
ହୀରକର ଉତ୍ସ ଉଠିଲା ସଲୀଳେ।
ସୁନ୍ଦରୀର ନେତ୍ର-ଶୋଭା ଅନୁକରି
ତୋ ଜଳେ ସ୍ଫୁରିଲେ ରଜତ ସଫରୀ।
ନୀଳିମାରେ ବାମା ଚାରୁ କେଶପାଶ
ତୋ ନୀଳ-ବୀଚୀକି କଲା ଉପହାସ।
ତେଣୁ କି ତରଙ୍ଗ ଅପମାନଭରେ
ଶିର ପିଟୁଥିଲେ ତରଣୀ-ପଞ୍ଜରେ?
କାମିନୀ ଚିକୁରେ କୁସୁମ-ମୁକୁଟେ
କମଳପାଖୁଡ଼ା ବାତେ ପଡ଼େ ଉଠେ।
ସୁନ୍ଦରୀର ତରୀ-ସମ-ବିଭୂଷିତ
ଗଜଦନ୍ତେ ଗଢ଼ା ଅପର ବୋଇତ।
ସମସଂଖ୍ୟ ଯୁବା ବର୍ମୋଜ୍ଜ୍ୱଳ-ଅଙ୍ଗ
ତରୀଦନ୍ତେ (୧) ରଙ୍ଗେ କାଟନ୍ତି ତରଙ୍ଗ।
ତଥିପରେ ମଣ୍ଡିଛନ୍ତି ସିଂହାସନ
ଯୁବା ଦେବାକୃତି, ସିଂହ-ସଂହନନ।
ବଦନଶ୍ରୀ ତେଜ-ଗାମ୍ଭୀର୍ଯ୍ୟବ୍ୟଞ୍ଜକ
କୃପାଣ ପାଣିରେ କରେ ଜକଜକ।

(୧) ତରୀଦନ୍ତ — କ୍ଷେପଣୀ।

ମୂର୍ତ୍ତି ପରିଗ୍ରହି ଉଦେ କି ସାହସ,
କିମ୍ବା କ୍ଷତ୍ର-ଧର୍ମ କିମ୍ବା ବୀରରସ ?
ଋଷିକୁଲ୍ୟା ତଟୁ ସୁବର୍ଣ୍ଣତଟିନୀ-
ଯାଏ ଛାୟା ଯାର ବ୍ୟାପଇ ମେଦିନୀ ।
ଶିର ପରେ ଶୋହି ସେହି ସ୍ୱର୍ଣ୍ଣଛତି,
ଚିହ୍ନାଇ ଦେଉଛି ଉତ୍କଳର ପତି ।
ତୀରେ ଦୁର୍ଗ ଶିରେ ଶସ୍ତ୍ର କରେ ଧରି
ଦେଖୁଥିଲେ ଦୃଶ୍ୟ ସମ୍ଭ୍ରମେ ପ୍ରହରୀ ।
ଗିରିବାସୀ ଯେତେ ସାମନ୍ତ ପ୍ରଧାନ
ଉଗରା ସମ୍ପାଦେ ଆଗୁଁ ସାବଧାନ ।
ହୋଇ ଦଳେ ଦଳେ ଥିଲେ ଉପସ୍ଥିତ
ଦେଖି ବାନା ବିଷ୍ଣୁ-ଆୟୁଧ-ଲାଞ୍ଛିତ ।
ମସ୍ତକ ନୁଆଇଁ ସର୍ବେ କଲେ ନତି,
ପାଶେ ଆସିବାରୁ ତରଣୀପଙ୍କତି ।
ଗାଇଲେ ମଧୁର କଣ୍ଠେ ବନ୍ଦିଦଳେ,
"ହେ ବିଶ୍ୱସୁନ୍ଦରି ! ସ୍ୱାଗତ ଉତ୍କଳେ !
ଜୟ କାଞ୍ଚିକେମା ବିଶ୍ୱମନୋରମା
ବିରଞ୍ଚିସୃଷ୍ଟିରେ ଶୋଭାର ଉପମା ।
ତୁମ୍ଭ ଆଗମନେ ପବିତ୍ର ଉତ୍କଳ
ଜାହ୍ନବୀ ପରଶେ ଯେହ୍ନେ ଧରାତଳ ।
ଶୋଭିବ ଉତ୍କଳସଦ୍ମେ ସଦାଶୟା
ସରେ ଯଥା ପଦ୍ମ, ପଦ୍ମେ ପଦ୍ମାଳୟା ।
ଜୟ ଅରିନ୍ଦମ ଶ୍ରୀପୁରୁଷୋତ୍ତମ
ବିଶ୍ୱେ ତୁମ୍ଭେ ବିଶ୍ୱ-ରକ୍ଷା-ବ୍ରତ-କ୍ଷମ ।
ଲଭିଲ ଦେଖାଇ ଜଗତେ ଯୋଗ୍ୟତା
ସତ୍କ୍ରିୟାରୂପେ ଏ ରୂପ-କଳ୍ପଲତା ।
ସୁନ୍ଦର ମଧୁର ବେନିଙ୍କ ମିଳନ
ଶୌର୍ଯ୍ୟ ସଙ୍ଗେ, ଆହା, ସୌନ୍ଦର୍ଯ୍ୟ ଯେସନ !
ଚିତ୍ରାସଙ୍ଗେ ଏବେ ମିଳିଲେ ଚନ୍ଦ୍ରମା
ଶ୍ରୀପତି ସହିତେ ଲୋକମାତା ରମା ।
ବେନିଙ୍କ ସୃଜନେ ବିରଞ୍ଚି କୌଶଳ
ହେଲା ବେନିଙ୍କର ମିଳନେ ସଫଳ ।"
ବନ୍ଦାପନା ଅନ୍ତେ ବାଦିତ୍ର ଶବଦ
ଉଠିଲା କମ୍ପାଇ ମହୀ, ବିଷ୍ଣୁପଦ ।
ତୀରେ ଗିରିଗୁହା ଯୋଗ ଦେଲେ ତହିଁ
ସମୀର ନେଲା ତା ଦିଗେ ଦିଗେ ବହି ।
ସେ ଉତ୍ସବେ ହୋଇ ହରଷେ ଉତାଳ,
ଚିଲିକା ! ତୋ ବୀଚୀ ତହିଁ ଦେଲେ ତାଳ ।
ସେ ଘୋର ଆଧ୍ମାନେ ଭାଙ୍ଗିଗଲା ଧ୍ୟାନ
ଧ୍ୟାନ ସଙ୍ଗେ ଦୃଶ୍ୟ ହେଲା ଅନ୍ତର୍ଦ୍ଧାନ ।
ଜାଣିଲି ସେ ସବୁ କଳ୍ପନାକୌଶଳ,
ଫେଡ଼ନ୍ତେ ନୟନ ଦେଖିଲି କେବଳ,
ଅନନ୍ତ-ନୀଳିମା-ଦ୍ୟୁତି-ବିଭାସିତ
ତୋ ଅମର ସରା ଅଗ୍ରେ ବିରାଜିତ ।
ରୁଦ୍ର ମୂର୍ତ୍ତି ତୋର ରଖୁ ତୁ ଘୋଡ଼ାଇ
ଦୁରନ୍ତ ଉତ୍କଳ-ପରିପନ୍ଥୀ ପାଇଁ ।
ସୂର୍ଯ୍ୟକାନ୍ତ ଯଥା ପରଶେ ଶୀତଳ
ତେଜସ୍ୱୀ ଦର୍ଶନେ ହୁଏ ଉର୍ଜସ୍ୱଳ ।
ଶତ୍ରୁ ଦେଖି ତୁହି ସେରୂପେ, ଚିଲିକା,
ପ୍ରକଟୁ ପ୍ରଚ୍ଛନ୍ନ ଶକ୍ତି ମାରାତ୍ମିକା ।
ସେହି ମୂର୍ତ୍ତି ତୋର ଉତ୍କଳେ ଚଢ଼ାଉ-
କରି ଦେଖିଥିଲା ଦୈତ୍ୟ ରକ୍ତବାହୁ ।
ତମୋଗୁଣେ ଭଜି ଆୟୁଧ ପିଶାଚୀ
ମନୁଷ୍ୟଙ୍କୁ ଯେହୁ ମଣୁଥିଲା ମାଛି ।
ଉତ୍କଳପତନ କରି ଭସ୍ମୀଭୂତ
ନରରକ୍ତେ ଧରା କରି ପରିପ୍ଳୁତ,
ସର୍ବ ରତ୍ନପ୍ରସୂ ଭାରତର ସାର
ହଠେ ଲୁଟି କରି ଶ୍ରୀକୋଠଭଣ୍ଡାର,
ବିଜୟ-ଉଲ୍ଲାସ-ମଦେ ବାହି ତରୀ
ବାହୁଡ଼ିଲା ଯେବେ ସ୍ୱଦେଶେ ମସରୀ,
ତା ଉଲ୍ଲାସ-ଗୀତ ତୋହରି ପ୍ରତାପେ
ପରିଣତ ହେଲା ପଲକେ ବିଳାପେ ।
ଉତ୍ତରଳେ ଯାଇ ଓଗାଳିଲୁ ବାଟ
ଆକାଶ ପାତାଳ ଛାଡ଼ିଲେ କୁହାଟ ।
କାଳୀଜୟୀ ଶୈଳେ ଦେବୀ ହୈମବତୀ,
ଉଭା ହୋଇ କଲେ ସଙ୍କେତ ତୋ ପ୍ରତି ।
ପିନ୍ଧି ତୋ ତରଙ୍ଗେ ସୁବର୍ଣ୍ଣତ୍ରିଶୂଳ,
ସେ ସଙ୍କେତେ ଫେନଚୂଡ଼ ଉର୍ମିକୁଳ
ଉତ୍‌କେଶର ଦେବୀ-ବାହନ କେଶରୀ
ପ୍ରାୟେ ଦଉଡ଼ିଲେ ଗ୍ରାସିବାକୁ ତରୀ ।
ତୋ ଇଙ୍ଗିତେ ସଙ୍ଗେ ଘେନି ଉର୍ମିଥାଟ,
ଦଉଡ଼ି ଆସିଲେ ନୀଳାମ୍ବୁ-ସମ୍ରାଟ ।
ବିଶ୍ୱ-ଧ୍ୱଂସି-ରୁଦ୍ର-ପ୍ରଖର-ନିଶ୍ୱାସ
ପରାୟେ ବହିଲା ବାୟୁ ଅଣଆଶ ।
ଦୈତ୍ୟହନ୍ତା ବଜ୍ରୀ ଭୀମ ବଜ୍ର କରେ,
ଜୀମୂତ-ବାହନେ ଉଇଁଲେ ଅମ୍ବରେ ।
ଦମ୍ଭୋଳି ସେକାଳେ କଲା ଘୋର ଧ୍ୱନି,
ଥରହର ହୋଇ କମ୍ପିଲା ଅବନୀ ।
ଥରହର କମ୍ପି ଅବନୀ ସଙ୍ଗତେ
ପର୍ବତକୁ ଡକା ଛାଡ଼ିଲେ ପର୍ବତେ ।
ଭାଳେରି କହିଲା ଶୋଳରୀକି ରାଇ
ଗଲା ସେ ଆରାବ ଶୃଙ୍ଗୁ ଶୃଙ୍ଗେ ଧାଇଁ ।

ତୋ ଉରଦର୍ପଣେ ସଘନେ ବିମ୍ବିତ,
ହୋଇ ଚମକିଲା ଚାମୃତେ ତଡ଼ିତ।
ଦେଖାଇ ଦେଲା ତୋ ସଂହାରମୂରତି
ପ୍ରକୃତିର ସେହି କରାଳ ଆରତି। (୧)
ଯା ଦେଖି ଆତଙ୍କେ ଦୈତ୍ୟ-ଆଖଣ୍ଡଳ
ବିଫଳ ମଣିଲା ନିଜ ଭୁଜବଳ।
ତା କୃପାଣୁଁ ଅଛି ଶକ୍ତି ବଳବାନ
ଅକାଳେ ଏ ଜ୍ଞାନ ଲଭିଲା ଅଜ୍ଞାନ।
ଜାଣିଲା ତୋହରି କଶାଘାତେ ଶିଖି,
ଦୈବ ନ ଡରଇ ନର-ଭ୍ରୂକୁଟିକି।
ତରୀ ଧରି ଊର୍ମି ଫେନ-ଅଟ୍ଟହାସେ
କନ୍ଦୁକ ପରାୟେ ଫିଙ୍ଗିଲେ ଆକାଶେ।
ତ୍ରାହି ତ୍ରାହି ଡକା ପାରି ଧର୍ମଦ୍ରୋହୀ
କେ କାହିଁ ପଡ଼ିଲେ ଛିନ୍ନଭିନ୍ନ ହୋଇ।
ସର୍ବେ ହୋଇଗଲେ ନିର୍ମୂଳ ନିଃଶେଷ
କେହି ନ ରହିଲେ ଦେବାକୁ ସନ୍ଦେଶ।
କାହିଁ ଗଲା ସେହି ବିଜୟ-ଉତ୍ସବ?
ଭାସିଲା ତୋ ବକ୍ଷେ ବିଜୟୀଙ୍କ ଶବ!
ଆସିଥିଲେ ଲୋଡ଼ି ଉତ୍କଳର ବିତ୍ତ
ବିହିଲେ ଉତ୍କଟ ତାର ପ୍ରାୟଶ୍ଚିତ୍ତ।
ଭ୍ରୂ-ଭଙ୍ଗରେ ଯାଙ୍କ କମ୍ପିଲା ଭୂତଳ
ମକ୍ଷି ତଡ଼ିବାକୁ ଏବେ ନାହିଁ ବଳ।
ଦ୍ୱିସପ୍ତ-ଭୁବନ ଯେ ମଣିଲେ ଅଳ୍ପ
ଆଶ୍ରିଲେ ସେ ସପ୍ତ-ଚାଖଣ୍ଡର ତଳ୍ପ।
ପାରିଲେଣି ଏବେ ଦେବ ବିକର୍ତ୍ତନ
ଭାଳେରି ଶିଖରେ ସ୍ୱର୍ଣ୍ଣ-ସିଂହାସନ।
ଠାବେ ଠାବେ ଛାୟା ପଡ଼ିଣ ଶଇଳେ
ହରିତ ହେଲାଣି ପରିଣତ ନୀଳେ।
ଗଳ ଘଣ୍ଟେ ନାଦି ଗିରି-ତଟଦେଶ
ବାହୁଡନ୍ତି ପଲେ ପଲେ ଛାଗ ମେଷ।
ମହିଷ-ଟିପାର ଗୁରୁ ଗୁରୁ ଧ୍ୱନି
ଘୋଷେ ମୁଖରିତ ଅରଣ୍ୟ ସରଣୀ।
ଗୋଷ୍ଠୁଁ ଧୂମରେଖା ଉଠି ଗିରି-ପାଦେ
କୁଣ୍ଠିତ-ଗତିରେ କାନନ ଆଚ୍ଛାଦେ।
କଳରବେ ଏରା (୨) ଉଡ଼ିଣ ହ୍ରଦରୁ
ଅରଣ୍ୟେ ଲୋଡ଼ନ୍ତି ଯେଝା ନୀଡ଼-ତରୁ।
ପୀତ-ଅସ୍ତକର ହେବାରୁ ପତିତ
ଡେଣା ଦିଶେ ଯେହ୍ନେ ସୁବର୍ଣ୍ଣମଣ୍ଡିତ।
ଗନ୍ଧରାଜି ବୁଣି ବର୍ମ ଅନ୍ତରାଳେ
ବୁଡ଼ିଲେ ମିହିର ଭାଳେରି ଉଦ୍ଧାଳେ।
କେତେ ଯତ୍ନେ, ଆହା, କାଦମ୍ବିନୀ ଧନୀ
ବସ୍ତ୍ରାଞ୍ଚଳେ ବାନ୍ଧି ନେଉଛି ସେ ମଣି।
ଧରିତ୍ରୀ ବଦନେ ପୀତ ଅସ୍ତରାଗ
ବୋଳି ଦେଇଛି କି ସୁବର୍ଣ୍ଣ ପରାଗ।
ଶାରଦ-ଦିନାନ୍ତ-ଲକ୍ଷ୍ମୀ ଲୀଳାମୟୀ
ପ୍ରକାଶନ୍ତି କେତେ ନବ ନବ ଛଇ।
ବିଶାଳ ଭାଳେରି ଛାୟା ଜଳସ୍ଥଳ
ଆବରଇ କ୍ରମେ ବ୍ୟାପି ପୂର୍ବାଞ୍ଚଳ।
ପୀତ ଅସ୍ତାତପ ଦ୍ୱୀପ ଶୈଳ ମାଥେ
ଲିଭିଗଲା ସେହି ମହାଛାୟାପାତେ।
ପଡ଼ିଲା ଚିଲିକା-ବକ୍ଷେ ସନ୍ଧ୍ୟାଲୋକ
ଶୋକେ ବଧୂ ଛାଡ଼ି ଦୂରେ ଗଲା କୋକ।
ସନ୍ଧ୍ୟାରାଗ ହେରି ହ୍ରଦ-ନୀଳୋରସେ
ଆସଇ ଏ ଭାବ ଭାବୁକ ମାନସେ-
ପ୍ରଚେତା-ପ୍ରବାଳ-ପ୍ରାସାଦର ରୁଚି
ନୀଳ-ନୀରୁ ଅବା ଫୁଟି ବାହାରୁଛି।
କୂଳେ, ଦ୍ୱୀପେ, ଶୈଳପାଦପେ ବିହଙ୍ଗେ
ଉଡ଼ିଯାଇ ବସୁଛନ୍ତି ନାନା ରଙ୍ଗେ।
ପଶ୍ଚିମା ସନ୍ଧ୍ୟାର ବନ୍ଦାପନାପାଇଁ
ଯତିଏ ଆସନ୍ତି ଶଇଳୁଁ ଓହ୍ଲାଇ।
ପୂର୍ଣ୍ଣ ପ୍ରାଚେତସୀ (୩) ବର୍ଣ୍ଣ-ବଇଭବେ
ମିଶେ ଦିବା ଯହିଁ ଭୂତ-ମହାର୍ଣ୍ଣବେ।
ଏଣେ କରେ ବୋଳି ଅମର-ସରଣୀ
ବିରାଜନ୍ତି ଚନ୍ଦ୍ର-ଚୂଡ଼ ଚୂଡ଼ାମଣି।
ତାରାଟିଏ ରାଜି ତାରାପତି ପାଶେ
ବେନିଏ କରନ୍ତି ରାଜ୍ୟ ଅର୍ଦ୍ଧାକାଶେ।
ବାଳ-ଜ୍ୟୋତ୍ସ୍ନା-ଯୋଗେ ଧୌତ ପୌରନ୍ଦରୀ (୪)
ହିମରଜ ମୁଖେ ବୋଳି ହେଲାପରି।
ଯେଝା ରୂପ ଶୋଭା ବିପରୀତେ ବସି
ଦେଖାନ୍ତି ଗରବେ ପ୍ରାଚୀ ପ୍ରାଚେତସୀ।
ଚନ୍ଦ୍ରାଲୋକେ ଧୌତ ପୂର୍ବାକାଶ, ପୁନଃ
ବାରୁଣୀ ଆକାଶ କୁଙ୍କୁମେ ଅରୁଣ।
ଅର୍ଦ୍ଧାଙ୍ଗ ଈଶ୍ୱର, ଅର୍ଦ୍ଧାଙ୍ଗ ପାର୍ବତୀ
ପ୍ରାୟେ ଦିଶେ ଚିତ୍ର ବ୍ୟୋମର ମୂରତି।

(୧) ଲେଖକ ସ୍ୱୟଂ ଥରେ ନିଶୀଥ ସମୟରେ ଚିଲିକାର ଗଭୀରତମ ଏବଂ ବିଷମସଂକୁଳ ଅଂଶ କାଳୀଜୟୀ ଖଣ୍ଡରେ ନୌକାଯୋଗେ ଯାଉଁ ଯାଉଁ ଭୟଙ୍କର ଝଟିକାନିବନ୍ଧନ ପ୍ରାଣସଂଶୟରେ ପଡ଼ିଥିଲେ। (୨) ଚିଲିକାବିହାରୀ ପକ୍ଷିବିଶେଷ। ଏହାର ଶୁଭ୍ରପକ୍ଷକୁ ପାଏକମାନେ ଭୂଷଣସ୍ୱରୂପ ଟୋପରରେ ସଂଲଗ୍ନ କରନ୍ତି। (୩) ପ୍ରାଚେତସୀ – ପ୍ରଚେତା ଅର୍ଥାତ୍ ବରୁଣାଧିଷ୍ଠିତ ପଶ୍ଚିମଦିଗ। (୪) ପୌରନ୍ଦରୀ – ପୂର୍ବଦିଗ।

ଦିଗ୍‌ବଳୟ-ବ୍ୟାପି ନୀଳ-ଜଳାରଣ୍ୟେ
ରଞ୍ଜିଲା ଚନ୍ଦ୍ରିକା ନିଜ ଶୁଭ୍ର ବର୍ଣ୍ଣେ।
ପ୍ରାଚୀ-ମୂଳ ଏବେ ମୀନଜୀବୀ-ନାବେ
ଛାୟାକାରେ ଚିତ୍ର ଦିଶେ ଠାବେ ଠାବେ।
ମତ୍ସ୍ୟ ଧରି ସେହୁ ସମୁଦ୍ର ମୁହାଣେ
ନିଜ ଗୃହ କଥା ଭାବି ଏକଧ୍ୟାନେ,
ଭାଲେରି ଶିଖରେ ସନ୍ଧ୍ୟା-ତାରା ଦେଖି
ଆସନ୍ତି ପଟିକା (୧) ମହୋଲ୍ଲାସେ ଟେକି।
ତାଙ୍କ କଣ୍ଠୁ କବିସୂର୍ଯ୍ୟ-ଗୀତାମୃତ (୨)
ଦୂରୁଁ ବହି ଆଣେ ଚିଲିକା-ମାରୁତ।
ଉଲ୍ଲାସର ଆତ୍ମା ପ୍ରାୟେ ଗୀତ-ତାନ
ହ୍ରଦ ନୀଳ-ବକ୍ଷେ କରେ ଅଧିଷ୍ଠାନ।
ହସନ୍ତି ଚୌଦିଗେ ମଧୁର-ହାସିନୀ
ଦିଗଙ୍ଗନା ଜ୍ୟୋସ୍ନା-ଦୁକୂଳ-ବାସିନୀ।
ଭାବାନ୍ତର ପୁଣି କ୍ଷଣେ କରେ ଜାତ
"ଗଲାଣି ତ ଗଲା କଥାରେ ସଙ୍ଗାତ"।
ସଙ୍ଗୀତ ଆବେଶେ ନାନାରୂପେ ମନ
ଅତୀନ୍ଦ୍ରିୟଦେଶେ କରେ ବିଚରଣ।
ଚାଲିଯାଏ ଶୂନ୍ୟେ ଶୂନ୍ୟେ କେଉଁ ସ୍ଥାନେ
କି ଲୋଡ଼ିବା ଆଶେ ସେହି ତା ନ ଜାଣେ।
ଧନ୍ୟ ସେହି ଯାର ଆଜ୍ଞା ଶିରେ ଧରି
ଏ ଲୀଳା-ରଚନ୍ତି ଦେବୀ ବାଗୀଶ୍ୱରୀ।
ଧନ୍ୟ ରଥେ! ତୁମ୍ଭ ଜନ୍ମ ଶୁଭକ୍ଷଣେ
ମୃତ୍ୟୁଞ୍ଜୟ ତୁମ୍ଭେ ଉତ୍କଳଭୁବନେ।
ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ!
ମୀନ-ଆକର୍ଷଣ ଆଶେ ପୋତପାଳ
ତରଣୀରେ ଜାଳି ଦେଲାଣି ମଶାଳ।
ଭବେ ପାପମୂର୍ତ୍ତି ପରି ଅଟଇ ସେ
ସର୍ଶେ ମାରାତ୍ମକ, ରୂପେ ରମ୍ୟ ଦିଶେ।
ପାପଗର୍ତ୍ତେ ଯେହ୍ନେ ପଡ଼ଇ ଅଜ୍ଞାନ
ତରୀ-ଗର୍ଭେ ମୀନେ ଡ଼େଇଁ ଦେବେ ପ୍ରାଣ।
ତରଙ୍ଗେ ଦୋହଲି ଦୋହଲି ବୋଇତ
ଥରେ ଦିଶେ, ଥରେ ହୁଏ ଅନ୍ତର୍ହିତ।
ଦୁଃଖୀମନେ ଆଶା ଉତ୍‌ଥାନ ପତନ,
ପ୍ରାୟେ ଶିଖା ଉଠେ ପଡ଼େ ଘନ ଘନ।

ନିଶାଗମେ କ୍ରମେ ଲୋକକୋଳାହଳ
ନିବର୍ତ୍ତି ଅବନୀ ହେଉଛି ନିଶ୍ଚଳ।
ଜଳ ସ୍ଥଳ ନଭଃ ଜ୍ୟୋସ୍ନାପରିପ୍ଲୁତ
ସୃଷ୍ଟି ଦିଶେ ଯେହ୍ନେ ପାରଦଧଉତ।
ପ୍ରତିବିମ୍ବରାଜି ଦ୍ୱୀପ-ଶୈଳ-ତଳେ
ସ୍ୱଚ୍ଛାକାରେ ଶୋଭେ ହ୍ରଦ-ଅନ୍ତସ୍ତଳେ।
କ୍ଷୀରୋଦ ସୋଦର-ଜ୍ୟୋସ୍ନାର୍ଣ୍ଣବେ ଭାସି
ଦିଶନ୍ତି ବିଶଦ ଗିରି, ବନ, ନାସି,
ସ୍ନିଗ୍ଧ ତରୁପତ୍ରେ, ମସୃଣ ଉପଳେ
ଜକଜକ ହୋଇ ଜ୍ୟୋସ୍ନା ପ୍ରତିଫଳେ।
ସର୍ପେ ଚିତ୍ର ଚନ୍ଦ୍ରଚୂଡ଼ ତନୁ ଭଳି
ଛାୟା ମିଶ୍ର-କରେ ଶୋଭେ ବନସ୍ଥଳୀ।
ପ୍ରଶାନ୍ତ, ନୀରବ ଗିରି ବନଦେଶ
ନାହିଁ ଏଥି ନର ଚହଳର ଲେଶ।
ଦୂର ଝରନାଦ, ଝିଙ୍କାରି ଝଙ୍କାର
କରେ ନିଶାଥିନୀ-ପ୍ରଭାବ ପ୍ରଚାର।
କଳି ଉପଦ୍ରବେ ତ୍ୟଜି ଲୋକାଳୟ
ଶାନ୍ତି କି ଏସ୍ଥଳେ ଭଜିଲେ ଆଶ୍ରୟ?
ଚିଲିକା! ତୋହର ଏହି ଶୋଭାବନ (୩)
ବର୍ଣ୍ଣୋତ୍ସବମୟ ଦୃଶ୍ୟ ସାୟତନ,
ଅଟେ ସର୍ବଶୋଭା-ସୀମନ୍ତର ଟୀକା
ପ୍ରକୃତିର ଚାରୁ-ଆଲେଖ୍ୟ-ଶାଳିକା।
ଏ ସୁଖର ମୁହିଁ ନୁହଇ ଭାଜନ
ମୋ ଭାଗ୍ୟେ ଏ ସିନା ଭଙ୍ଗୁର ସ୍ୱପନ।
ସଂସାର-ନିଗଡ଼େ ସଂସାର କାରାରେ
ଯାପିବି ଜୀବନ ସଦା ହାହାକାରେ।
ବନ୍ଦୀ କାରାଗୃହେ ସ୍ମରୁଥାଇ ଯଥା
ଚିରହୃତ ତାର ପୂର୍ବ ସ୍ୱାଧୀନତା।
ସଂସାର-ନିରୟେ ଅଙ୍ଗ ଦେଇ ଢ଼ାଳି
କରିବି ଏହାକୁ ସ୍ମୃତିର ସଙ୍ଗାଳି!
ମାଗୁଛି, ଚିଲିକା, ମେଲାଣି ତୋଠାରେ,
ବାହୁଡ଼ିବି ଏବେ ଦାରୁଣ ସଂସାରେ।
କରିଥିଲି ଆଶା କରିବି ଯାପନ
ତୋ ପଶ୍ଚିମ ତୀରେ ପଶ୍ଚିମ ଜୀବନ।
ବିନା ପ୍ରୟାସରେ ସୌନ୍ଦର୍ଯ୍ୟ-ପିପାସା
ମେଣ୍ଟିବାର ଥିଲା ତୋହଠାରେ ଆଶା।

(୧) ପଟିକା – ପାଲ। (୨) କବିସୂର୍ଯ୍ୟ ବଳଦେବ ରଥ। ଉତ୍କଳସାହିତ୍ୟବିତ୍‌ମାନଙ୍କଠାରେ ଏ ମହାତ୍ମା ସୁପରିଚିତ। ଏହାଙ୍କର ଗୀତାବଳୀ ଏ ଅଞ୍ଚଳରେ ପ୍ରାୟ ସର୍ବତ୍ର ଗୀତ ହୁଏ। ବଳଦେବ ୧ଜଣେ ସଂସ୍କୃତଜ୍ଞ ପଣ୍ଡିତ ଥିଲେ। ଏହାଙ୍କର ରଚନା ଅତି ବିଶୁଦ୍ଧ ଏବଂ ସୁରୁଚିସମ୍ପନ୍ନ। ବଳଦେବ ଅନ୍ୟାନ୍ୟ ଉତ୍କଳୀ କବିଙ୍କ ପରି ବ୍ୟାକରଣର ଅବମାନନା କରିନାହାନ୍ତି। "ଗଲାଣି ତ ଗଲା କଥାରେ ସଙ୍ଗାତ" ଏହା ବଳଦେବଙ୍କର ଗୋଟିଏ ସୁନ୍ଦର କରୁଣରସାତ୍ମକ ଗୀତର ଘୋଷା। (୩) ଶୋଭାବନ – ସୁନ୍ଦର। ହିନ୍ଦୀ ଶୋହାବନ ଶବ୍ଦର ଅପଭ୍ରଂଶ।

ଭାଗ୍ୟ ହୋଇଥିଲେ ରୁଚି-ଅନୁକୂଳ,
ଆଶ୍ରିଥାନ୍ତି ମୁହିଁ ତୋର ରମ୍ୟକୂଳ।
କୁଟୀର ବିରଚି ଜଟିଆ-ଚରଣେ
କାଟୁଥାନ୍ତି ଆୟୁ-ଶେଷ ନିକାଞ୍ଚନେ।
ମାତ୍ର ପରିଣାମେ ଛାୟାବାଜିବତ
ଆଶାରେ ସେ ଆଶା ହେଲା ପରିଣତ।
ସଂସାରେ ଥାଇ ମୁଁ ସଦା ଉଦାସୀନ
ଉଦାସୀନ ପ୍ରାୟେ କଟାଇଲି ଦିନ।
ସଂସାରୀ ସଙ୍ଗତେ ସଙ୍ଗୀ ହେବାପାଇଁ
କେବେହେଁ ମୋହର ମନ ବଳେ ନାହିଁ।
ହସି ଖେଳି ଯେହୁ ଗମନ୍ତି ସମୟ
ଜୀବନ ମଣନ୍ତି ମହୋତ୍ସବମୟ।
ଛାର ଭାଗ୍ୟ ମୋର ପିହିତ ପାଷାଣେ
ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ।
ଚିର ହାହାମୟ ଏ ଛାର ଜୀବନ,
ଜୀବନ ନୁହଇ, ଜୀବନ୍ତ ମରଣ।
ଚିରଦିନ ଦୁଃଖ ପ୍ରହାରେ ଜର୍ଜର
ପଟଶିଷ୍ୟ ମୁହିଁ ଦୁଃଖ-ଗୁରୁଙ୍କର।
ଦୁଃଖଦତ୍ତ ଜ୍ଞାନ-ଚକ୍ଷୁରେ ଜଗତ
ଦେଖିବାରେ ମୁହିଁ ଅଭ୍ୟସ୍ତ ସତତ।
ସୁଖ ବୋଲି ଯାକୁ ବୋଲଇ ସଂସାର
କରୁଥାଇ ତାକୁ ଦୂରୁଁ ମୁଁ ଜୁହାର।
ସୁଖରୂପେ ଯାହା ଜନନେତ୍ରେ ଦିଶେ
ହାତେ ଆସେ, ହାତୁଁ ପଡ଼ିବାପାଇଁ ସେ।
ବସ୍ତୁ ନୁହଇ ସେ ଅଟଇଟି ଧୂମ
ଅନ୍ୟ ନାମ ତାର ଆକାଶକୁସୁମ।
ତୋହରି ପୁଳିନେ ମୃଗ-ତୃଷ୍ଣା ପ୍ରାୟେ
ମନୋମୃଗକୁ ସେ ଜଗତେ ଭ୍ରମାଏ।
ସେ ସୁଖେ ନଥିଲା କେବେ ମୋର ସ୍ପୃହା
ଲକ୍ଷ୍ୟ ଥିଲା ମାତ୍ର ତୋର ତୀରଗୁହା।
ଶାନ୍ତି-ରସାସ୍ୱଦ ସେହି ଦରୀ କୋଳେ
ବାଗ୍‌ଦେବୀ-ଚରଣ ପୂଜିବି ନିରୋଳେ।
ପୂଜିଲେ ଯେସନ ମଜ୍ଜି ନିରଜନେ
ତୋ ମଧୁର-ରୂପ-ମଧୁ ଆସ୍ୱାଦନେ,
ଭାଗ୍ୟବାନ ବେନି ବାଣୀଙ୍କ କୁମର-
କବି ବଳଦେବ, ଭଞ୍ଜ ବୀରବର। (୧)
କାହିଁ ସେହି, କାହିଁ ମୁହିଁ ଅକିଞ୍ଚନ?
ଦେଖୁଥିଲି ସିନା ଜାଗ୍ରତ ସ୍ୱପନ।
ଆଶାମଦେ ମତ୍ତ ହୋଇ କେତେ ଥର
ପୂରାଇଲି ମନ-ମୋଦକେ ଉଦର।
ନ ଦେଖି ମୋହର ଜୀବନ-ପଞ୍ଜିକା
ଗଢ଼ୁଥିଲି ବସି ମନ-ଅଟ୍ଟାଳିକା।
ତୋଳୁଥିଲି ସିନା ବ୍ୟୋମ-ପୁଷ୍ପମାନ
କରୁଥିଲି ମୃଗତୃଷ୍ଣା-ଜଳେ ସ୍ନାନ।
ଅଗ୍ରେ ପଡ଼ି ଭୀମ ଭବିତବ୍ୟ-ଛାୟା
ପଲକେ ତୁଟିଲା ସେ ମୋହନ-ମାୟା।
ସେ ଛାୟା ଅଙ୍କରେ ଦେଖିଲି ଭୀଷଣ
ନୈରାଶ୍ୟ-ପ୍ରେତର ବିକଟ-ନର୍ତ୍ତନ।
ଚାରୁ ଛବି ତୋର ସେହି ଚିତ୍ରାଙ୍କିତା
ଉଡ଼ି ଦେଲା ମନୁ ନିମିଷେ, ଚିଲିକା।
ଦେବୀ ବୀଣାପାଣି! କେଉଁ ପାପ ଫଳେ
ବଳଣା ତୋହର ଭଣା ଏ ଉତ୍କଳେ?
ସ୍ୱଭାବେ ଉତ୍କଳ ଶୋଭାର ନିଧାନ,
ମାତ୍ର ଏ ଶୋଭାରେ ତୋର ଅଧିଷ୍ଠାନ-
ବିନୁ ସିନା ମାତା ହୋଇଛି ବିବଶା
ଭଜିଛି ଅରଣ୍ୟ – ପ୍ରସୂନର ଦଶା,
କ୍ଷୁଦ୍ର ସିପ୍ରା-ସ୍ରୋତ ବିଖ୍ୟାତ ଜଗତେ (୨)
ମହାନଦୀ ନାମ ରହିଲା ଗୁପତେ।
ସୁରୂପା ଅଂଶୁପା ଲୋକେ ଅଗୋଚର (୩)
ପୂଜାସଦ ହେଲା ଗୋଷ୍ପଦ-ପୁଷ୍କର! (୪)
ତୋର କୃପାବଳେ କ୍ଷୁଦ୍ର, ମହୀୟାନ,
ତୋ କୃପା ବିହୁନେ ବଡ଼ ହୁଏ ସାନ।
ଖର୍ବ ଗୋବର୍ଦ୍ଧନ ଗିରୀନ୍ଦ୍ର ବୋଲାଏ, (୫)
ମହାତୀର୍ଥରୂପେ ଲୋକେ ପୂଜା ପାଏ।
ସ୍ୱଭାବେ ଗିରୀନ୍ଦ୍ର ହୋଇ ମେଘାସନ
ଲଭି ନାହିଁ ଗିରି ସମାଜେ ଆସନ।
ତୋ କୃପା ବିହୁନେ ଉତ୍କଳମାତାର
ନାମେ ଖ୍ୟାତିଗ୍ରନ୍ଥେ ପଡ଼ି ନାହିଁ ଗାର।

(୧) ବଳଦେବ ରଥ ଚିଲିକାକୂଳସ୍ଥିତ ଖଲ୍ଲିକୋଟନିବାସୀ ଥିଲେ। ଉପେନ୍ଦ୍ର ଭଞ୍ଜ ଚିଲିକାକୂଳସ୍ଥିତ ବାଣପୁରରେ ବିବାହ କରି ସେଠାରେ କିୟତ୍‌କାଳ ଅତିବାହିତ କରିଥିଲେ। ବାଣପୁର ରାଜକନ୍ୟା କାବ୍ୟଶାସ୍ତ୍ରବିନୋଦିନୀ ଥିଲେ ଏବଂ କାବ୍ୟ ରଚନାରେ ଭଞ୍ଜକବିଙ୍କର ପ୍ରଧାନ ସହାୟ ଥିଲେ। (୨) ସିପ୍ରା – ଉଜ୍ଜୟିନୀର ନିକଟବର୍ତ୍ତୀ ନଦୀ। ଏ ନଦୀ ସଂସ୍କୃତ ସାହିତ୍ୟରେ ପ୍ରସିଦ୍ଧ। (୩) ବାଙ୍କି ଅନ୍ତର୍ଗତ ସୁରମ୍ୟ ହ୍ରଦ। ଓଡ଼ିଶାରେ ଏହାର ସୌନ୍ଦର୍ଯ୍ୟ ଅତୁଳନୀୟ। (୪) ଆଜମିର ନିକଟବର୍ତ୍ତୀ ହ୍ରଦ-ଆକୃତିରେ ଏହା ଅଂଶୁପାର ଦଶମାଂଶ ସୁଦ୍ଧା ହେବ ନାହିଁ। (୫) ମଥୁରାର ନିକଟବର୍ତ୍ତୀ ଗୋବର୍ଦ୍ଧନ ଓଡ଼ିଶାର କୌଣସି କୌଣସି ପୁଷ୍କରିଣୀର ହୁଡ଼ା ଅପେକ୍ଷା ଅଧିକ ଉଚ୍ଚ ନୁହେଁ।

ଭାଗ୍ୟଦୋଷେ ଅଙ୍ଗ ଅଜ୍ଞାନ-ଶର୍ବରୀ
ଅନ୍ଧାରେ ଅଭାଗୀ ରଖିଛି ଆବରି।
ପାହିଲାଣି ଘୋର ତାମସୀ-ଯାମିନୀ
ଫୁଟିବ ଉତ୍କଳ-ଭାଷା-କମଳିନୀ।
ଏ ଘୋର-ଯାମିନୀ-ଅବଶାନ-ଶଂସୀ
କାବ୍ୟତାରାରୂପେ ବୀର ଗଙ୍ଗବଂଶୀ, (୧)
ଉଦିଲେ ପ୍ରଥମେ ବାମଣ୍ଡା ରାଜନ
ବାସୁଦେବ ବିଶ୍ୱ-କଲ୍ୟାଣ-ଭାଜନ।
ରଖିଲେ ସୁନାମ ଯେହୁ କାଳେ କାଳେ
ଗୁଣ ଯନ୍ତ୍ରେ ଖୋଳି ଯଶୋଗିରିଭାଳେ।
ତମଃ ପଳାଉଛି ହୋଇ ତରତର
ପ୍ରାଚୀନଭଃ ନବ ବିଭାରେ ଭାସ୍ୱର।
ରବିରୂପେ ଏବେ ଉଦୟ-ଅଚଳେ
ରବି-ବଂଶ-ମଣି ଉଦିତ ଉତ୍କଳେ। (୨)
ଶ୍ରୀମାନ ଶ୍ରୀରାମଚନ୍ଦ୍ର ଆଖ୍ୟାଧାରୀ,
ଉତ୍କଳ-ଅଜ୍ଞାନ-ତମ-ଧ୍ୱଂସକାରୀ।

ସୌଦାମିନୀ-ଲାସ୍ୟେ ସମୁଜ୍ଜ୍ୱଳଶିଖ
ମେଘାସନ-କୁଞ୍ଜ-ବିହାର-ରସିକ।
ଅଶ୍ୱ-ସନ୍ଧାନନେ ଅଦ୍ଭୁତ କୌଶଳୀ
ଦୃଷ୍ଟି-ଭେଦୀ ଯାର ବନ୍ଧୁନାଦୀ ନଳୀ।
ବୀଣାପାଣି-ପୂଜାଯୋଗ୍ୟ-କଞ୍ଜକୁଳ
ଫୁଟିବାର ଏହି କାଳ ଅନୁକୂଳ।
ସେ ପଦ୍ମ ଫୁଟିବ କବି ହୃଦ-ସରେ
ନବୋଦିତ ଏହି ଭଞ୍ଜ-ରବି-କରେ।
ପୂଜିବେ ତୋ ପଦ ଉତ୍କଳ ସନ୍ତତି
ସେହି ପଦ୍ମେ, ପଦ୍ମବାସିନୀ ଭାରତି !
ଚିଲିକା, ତୋ ତୀର ବନ୍ଧୁର ଲଳିତ,
ସେହି ରବିକରେ ହେବ ଆଲୋକିତ।
ବାଣୀ-ଆବିର୍ଭାବ ଯୋଗ୍ୟସ୍ଥଳ ଜାଣି,
ଆଶ୍ରିବେ ତୋ ତୀର ବୁଧ କବି ଜ୍ଞାନୀ।
ହୋଇ ତୁ ତାଙ୍କର ବିହାର-ତଡ଼ାଗ,
ଲଭିବୁ ଅଖିଳ-ଜନ-ଅନୁରାଗ।

□□□

(୧) ବାମଣ୍ଡାର ମହାରାଜ ସୁଢ଼ଳଦେବ ଗଙ୍ଗବଂଶୀୟ ଅଟନ୍ତି। (୨) ମୟୂରଭଞ୍ଜର ରାଜବଂଶ "କୌଶେୟ" ଅର୍ଥାତ୍ ରାମଚନ୍ଦ୍ରଙ୍କ ଜ୍ୟେଷ୍ଠପୁତ୍ର କୁଶଙ୍କ ବଂଶୋଦ୍ଭୂତ ଅଟନ୍ତି।

## ଉତ୍ସର୍ଗପତ୍ର

ଆର୍ଯ୍ୟଗୌରବ ମହାମାନ୍ୟ ଶ୍ରୀଯୁକ୍ତ ରମେଶଚନ୍ଦ୍ର ଦତ୍ତ, I.C.S., C.I.E ମହୋଦୟ
ଶ୍ରୀ କରକମଳେଷୁ ସବିନୟ ନିବେଦନମିଦଂ –

ମହାତ୍ମନ୍,

ଓଡ଼ିଶାରେ ଆପଣ ରାଜପ୍ରତିନିଧିରୂପେ ବିରାଜମାନ ହେବାରୁ ଆପଣଙ୍କ ଗୌରବରେ ଆମ୍ଭେମାନେ ମଧ ଆପଣାକୁ ଗୌରବାନ୍ୱିତ ମଣୁଅଛୁଁ। ଉଚ୍ଚପଦାରୂଢ଼ ହେବାରୁ ଆପଣଙ୍କର ଯେଉଁ ସୁଖ୍ୟାତି ଏବଂ ସମ୍ମାନ ହୋଇଅଛି, ସ୍ୱକୀୟ ଅସାଧାରଣ ପ୍ରତିଭା, ମନସ୍ୱିତା ଏବଂ ପାଣ୍ଡିତ୍ୟଦ୍ୱାରା ଆପଣ ସେଥିରୁ ଶତଗୁଣ ସୁଖ୍ୟାତି ଏବଂ ସମ୍ମାନ ଲାଭକରିଅଛନ୍ତି। ଆପଣଙ୍କ ସୁଖ୍ୟାତି ସ୍ଥାନୀୟ, ପ୍ରାଦେଶିକ କିମ୍ବା ଦୈଶିକ ସୁଖ୍ୟାତି ନୁହେଁ। ବର୍ତ୍ତମାନ ତାହା ଜଗଦ୍‌ବ୍ୟାପିନୀ ହୋଇଅଛି। ଅଧିକନ୍ତୁ 'ଶତବର୍ଷ' ପ୍ରଭୃତି ଗ୍ରନ୍ଥ ରଚନାଦ୍ୱାରା ଆପଣ ସମସ୍ତ ଭାରତବର୍ଷରେ ଆର୍ଯ୍ୟମାନଙ୍କର ଭାରତବତ୍ସଳତାର ଅନ୍ୟତର ଶିକ୍ଷାଗୁରୁରୂପେ ପ୍ରତିଷ୍ଠିତ। ରାଜପ୍ରତିନିଧି ବୋଲି ଓଡ଼ିଶାରେ ସର୍ବତ୍ର ଆପଣଙ୍କର ରାଜୋଚିତ ପୂଜା ହେବ। ମାତ୍ର 'ଶତବର୍ଷ' ପ୍ରଣେତା କବିଙ୍କର ପୂଜାପ୍ରଣାଳୀ ଭିନ୍ନପ୍ରକାର। ସେ ପୂଜାର ଉପଯୁକ୍ତ ପୁଷ୍ପ ଅନୁର୍ବର ଉତ୍କଳୀୟ ସାହିତ୍ୟକ୍ଷେତ୍ରରେ ସୁଲଭ ନୁହେଁ। ଏହା ହେଲେ ସୁଦ୍ଧା ଏଭଳି ପ୍ରୀତିକର କର୍ତ୍ତବ୍ୟାନୁଷ୍ଠାନରେ ଆମ୍ଭମାନଙ୍କର ସଙ୍କୁଚିତ ହେବାର କୌଣସି କାରଣ ନାହିଁ। ଆନ୍ତରିକ ଭକ୍ତିର ଅଭିବ୍ୟକ୍ତି ସକାଶେ ଉପଚାରର ଅଧିକ ଲୋଡ଼ା ହୁଏ ନାହିଁ। ହୃଦୟର ଭକ୍ତି ସହିତ ଯାହା ପ୍ରଦତ୍ତ ହୁଏ, ଭବାଦୃଶ ସହୃଦୟ ମହାତ୍ମାମାନଙ୍କଠାରେ ତାହା ଉପେକ୍ଷିତ ହେବାର ସମ୍ଭବପର ନୁହେଁ। ତେଣୁ ନବ୍ୟ ଉତ୍କଳ-ସାହିତ୍ୟ-ଉଦ୍ୟାନରେ ଯାହା ସୁଲଭ, ମୋହର ପ୍ରକାଶିତ ସେହିଭଳି ଗୋଟିଏ କାବ୍ୟ-କୁସୁମ ମୋହର ସ୍ୱାଭାବିକ ଭକ୍ତିର ନିଦର୍ଶନସ୍ୱରୂପ ଆପଣଙ୍କ ଶ୍ରୀହସ୍ତରେ ଅର୍ପଣ କରିବାକୁ ସାହସୀ ହେଲି। ସଦୟ ହୋଇ ଗ୍ରହଣ କଲେ ଚରିତାର୍ଥ ହେବି।

କଟକ, କନିକାନଗର
୨୦।୧।୧୮୯୬

ଆପଣଙ୍କର ଚିରାଶ୍ରିତା
ଶ୍ରୀ ରାଣୀ କୃଷ୍ଣପ୍ରିୟା ପାଟମହାଦେଇ

# ମୁଖବନ୍ଧ

ଅସମ୍ପୂର୍ଣ୍ଣ ବା ଅର୍ଦ୍ଧସମାପ୍ତ ଗ୍ରନ୍ଥର ସମାଲୋଚନା କରିବା ନାନା କାରଣରୁ ବାଞ୍ଛନୀୟ ନୁହେଁ। 'ମହାଯାତ୍ରା' ଅସମ୍ପୂର୍ଣ୍ଣ କାବ୍ୟଗ୍ରନ୍ଥ। ତାହାର ସବିଶେଷ ସମାଲୋଚନା କରିବା ମୋହର ଅଭିପ୍ରାୟ ନୁହେଁ। କିନ୍ତୁ ବିଶିଷ୍ଟ କାରଣବଶତଃ କୌଣସି ଗ୍ରନ୍ଥ ଅସମ୍ପୂର୍ଣ୍ଣ ଅବସ୍ଥାରେ ସାଧାରଣଙ୍କ ସମୀପରେ ଉପସ୍ଥାପିତ ହେଲେ, ତାହା ସବୁ ସ୍ଥଳରେ ଉପେକ୍ଷଣୀୟ ହୋଇ ନପାରେ। ବିଶେଷତଃ ସେହି ଗ୍ରନ୍ଥ ଯଦି କୌଣସି ପ୍ରଥିତନାମା ପ୍ରତିଭାଶାଳୀ ଲେଖକଙ୍କ ଲେଖନୀରୁ ବାହାରିଥାଏ ଏବଂ ଗ୍ରନ୍ଥର ବିଷୟ ଯଦି ସୁମହାନ୍, ଗମ୍ଭୀର ଏବଂ ଉପାଦେୟ ହୁଏ, ତେବେ ତାହା ଆଡ଼କୁ ପାଠକସମାଜର ପ୍ରୀତି ଓ ଆଦର ଆକୃଷ୍ଟ ହେବା ଏକାନ୍ତ ସ୍ପୃହଣୀୟ। ଆଧୁନିକ ଉତ୍କଳସାହିତ୍ୟ-ମନ୍ଦିରର ସର୍ବଶ୍ରେଷ୍ଠ ବିଜ୍ଞାଣି 'ମହାଯାତ୍ରା'ର କବି ଅଟନ୍ତି। ପୃଥିବୀର ଇତିହାସରେ ଅତୁଳନୀୟ ମହାକୁରୁକ୍ଷେତ୍ର ଯୁଦ୍ଧରେ ଜୟଶ୍ରୀମଣ୍ଡିତ, ଅଖଣ୍ଡ ଭାରତସାମ୍ରାଜ୍ୟର ଅଧୀଶ୍ୱର ଅଥଚ ବିଜୟୋତ୍ସବାନ୍ତେ ଐଶ୍ୱର୍ଯ୍ୟାତୃପ୍ତ, ମହାଶୂନ୍ୟାୟିତ-ହୃଦୟ, ଶୋକନିର୍ବେଦନିମଗ୍ନ, ବୈରାଗ୍ୟବ୍ୟାକୁଳ, ଶାନ୍ତିପ୍ରୟାସୀ ଧର୍ମନନ୍ଦନ-ଯୁଧିଷ୍ଠିର-ପ୍ରମୁଖ-ପାଣ୍ଡବ-ବୀରେନ୍ଦ୍ରମାନଙ୍କର ସେହି ପରମସ୍ମରଣୀୟ ମହାପ୍ରସ୍ଥାନରୂପ ଚିରାମୃତ କଥା 'ମହାଯାତ୍ରା'ର ବର୍ଣ୍ଣନୀୟ ବିଷୟ। ଭାରତର ଚିରାରାଧ୍ୟ ମହାଭାରତରୂପ ବିରାଟ ମହାକାବ୍ୟର ସେହି ମହାଶୋକବୈରାଗ୍ୟାନ୍ତ ମହାଯାତ୍ରା ଉପାଖ୍ୟାନ ପରି ଉଦାର ବା ଗମ୍ଭୀର କଥା ଆଉ କ'ଣ ଅଛି? କବି ରାଧାନାଥ ଶୁଭକ୍ଷଣରେ ଏହି ମହାବିଷୟ ନିର୍ବାଚନ କରି ନିଜ କବିଜୀବନକୁ ଧନ୍ୟ ଓ ସାର୍ଥକ କରିଅଛନ୍ତି ଏବଂ ଆଧୁନିକ ଉତ୍କଳସାହିତ୍ୟର ଆଶା ଓ ଗୌରବକୁ ଶତଗୁଣିତ କରିଦେଇଅଛନ୍ତି। ମହାଯାତ୍ରା ପରି ମହାଗାନ ଯେଉଁ ସାହିତ୍ୟରୂପ ସାରସ୍ୱତାଶ୍ରମରେ ସଙ୍ଗୀତ ହୁଏ, ତାହା କବିଗୁରୁ ବ୍ୟାସଙ୍କର ବଦରିକାଶ୍ରମ ପରି ଅମର ଏବଂ ବନ୍ଦନୀୟ, ଏଥିରେ ସନ୍ଦେହ ନାହିଁ।

'ମହାଯାତ୍ରା' ଆଧୁନିକ ଉତ୍କଳସାହିତ୍ୟର ପ୍ରଥମ ମହାକାବ୍ୟ। ଇଉରୋପୀୟମାନେ ମହାକାବ୍ୟକୁ 'ଏପିକ୍' ନାମରେ ଅଭିହିତ କରିଅଛନ୍ତି। ଇଉରୋପୀୟ ଏପିକ୍ ଏବଂ ସଂସ୍କୃତ ମହାକାବ୍ୟ ଉଭୟ ମଧ୍ୟରେ ପ୍ରଣାଳୀଗତ କିଞ୍ଚିତ୍ ବୈଷମ୍ୟ ଥିଲେ ହେଁ, ସେମାନଙ୍କର ଉଦ୍ଦେଶ୍ୟ ଏକ ଅଟେ। କୌଣସି ଦେବଭାବସମ୍ପନ୍ନ ଉଦାରଚରିତ୍ର ମହାପୁରୁଷଙ୍କର ଏକ ମହତ୍ ଓ ମନୋହର କାର୍ଯ୍ୟ ବା ଅନୁଷ୍ଠାନ ମହାକାବ୍ୟର ପ୍ରାଣ ଅଟେ। ଅନୁଷ୍ଠାନର ଏକତ୍ୱ, ଅନୁଷ୍ଠାନର ମହତ୍ତ୍ୱ, ଅନୁଷ୍ଠାନର ଉପାଦେୟତ୍ୱ ବା ବୈଚିତ୍ର୍ୟମୟୀ ମନୋହାରିତା ଦେଖାଇ ମହାକାବ୍ୟର କବି ଆମ୍ଭମାନଙ୍କର କଳ୍ପନାର ପରିସର ବର୍ଦ୍ଧିତ କରିବାପାଇଁ ଆମ୍ଭମାନଙ୍କ ନିକଟରେ ଧର୍ମାନୁପ୍ରାଣିତ ଆଦର୍ଶଚରିତ୍ର ବୀରର ଉପାଦେୟ ଆଲେଖ୍ୟ ଉପସ୍ଥାପିତ କରି ଆମ୍ଭମାନଙ୍କ ହୃଦୟରେ ବିସ୍ମୟ, ଭକ୍ତି, ଉଦାର ସହାନୁଭୂତି ପ୍ରଭୃତି ମହାଭାବମାନଙ୍କୁ ଜାଗରିତ କରନ୍ତି ଏବଂ ଆମ୍ଭମାନଙ୍କର କ୍ଷୁଦ୍ର ସଂକୀର୍ଣ୍ଣ ନୀଚ କାମନାମାନଙ୍କୁ ଅପସାରିତ କରି ତତ୍‌ପରିବର୍ତ୍ତରେ ଉଦାର ପୁଣ୍ୟ ସଂକଳ୍ପ ପ୍ରତିଷ୍ଠିତ କରିବାପାଇଁ ଏକାନ୍ତ ଚେଷ୍ଟା କରନ୍ତି।

ପ୍ରଥମତଃ, ଅନୁଷ୍ଠାନର ଏକତ୍ୱ ବା ଅଖଣ୍ଡତ୍ୱର ଅର୍ଥ ଏହି ଯେ ମହାକାବ୍ୟବର୍ଣ୍ଣିତ ଘଟଣ ... ଅନ୍ୟୋନ୍ୟାଶ୍ରିତ ହୋଇ ଗୋଟିଏ ମାତ୍ର ଉଦ୍ଦେଶ୍ୟ ସାଧନ କରିବ। 'ମହାଯାତ୍ରା'

କାବ୍ୟର ପ୍ରକାଶିତ ଅଂଶରେ କାର୍ଯ୍ୟଗତ ଏକତ୍ୱର ବ୍ୟାଘାତକାରୀ କୌଣସି ବର୍ଣ୍ଣନା ସନ୍ନିବେଶିତ ହୋଇ ନାହିଁ ଏବଂ ମୁଁ ଆଶା କରେଁ, ଅବଶିଷ୍ଟ ଅଂଶରେ ମଧ୍ୟ ଏପ୍ରକାର ଦୋଷ ଲକ୍ଷିତ ହେବ ନାହିଁ। ଦ୍ୱିତୀୟତଃ, ଅନୁଷ୍ଠାନର ମହତ୍ତ୍ୱ ବୋଇଲେ ବୁଝିବାକୁ ହେବ ଯେ କାବ୍ୟ-ବର୍ଣ୍ଣିତ କାର୍ଯ୍ୟଟି ସାମାନ୍ୟ ବା କ୍ଷୁଦ୍ର ନହୋଇ ମହତ୍, ଗୌରବଯୁକ୍ତ ଏବଂ ଲୋକପ୍ରସିଦ୍ଧ ହେବ ଏବଂ ତଦ୍ୱାରା ନାୟକର ବୀରତ୍ୱ ବା ଚରିତ୍ରର ମହିମା ସ୍ପଷ୍ଟରୂପେ ପ୍ରତିପନ୍ନ ହେବ। ମୁଁ ଏଥିପୂର୍ବେ କହିଅଛି ଯେ ପାଣ୍ଡବମାନଙ୍କର 'ମହାପ୍ରସ୍ଥାନ' ପରି ଅନୁଷ୍ଠାନର ମହିମା ଓ ଗୌରବ ବିଷୟରେ କାହାରି ସନ୍ଦେହ ହୋଇ ନ ପାରେ। ପୁଣି ପାଣ୍ଡବକୁଳଶିରୋମଣି ଯୁଧିଷ୍ଠିରଙ୍କ ଅପେକ୍ଷା ମହାକାବ୍ୟର ଉପଯୁକ୍ତ ମହାପୁରୁଷ କେଉଁଠାରେ ମିଳିବେ ? ଅତଏବ ଏହା ନିଃସଂଶୟ ଯେ ମହାଯାତ୍ରାର ବର୍ଣ୍ଣିତ ଅନୁଷ୍ଠାନ ଏବଂ ସେହି ଅନୁଷ୍ଠାନର ମୁଖ୍ୟକର୍ତ୍ତା ଯୁଧିଷ୍ଠିର ପରସ୍ପରର ଯୋଗ୍ୟ ହୋଇ କାବ୍ୟର ଉତ୍କର୍ଷ ସୂଚନା କରୁଅଛନ୍ତି। କବି ପ୍ରକାଶିତ ଅଂଶରେ କାର୍ଯ୍ୟ ଓ ନାୟକର ଗୌରବ ସଂରକ୍ଷଣ ବିଷୟରେ ଯତ୍ପରୋନାସ୍ତି ଯତ୍ନ କରିଅଛନ୍ତି ଏବଂ ଏହା ମଧ୍ୟ ଆଶା କରାଯାଏ ଯେ ସେ ଭବିଷ୍ୟତରେ ସେହି ଗୌରବ ଅକ୍ଷୁଣ୍ଣଭାବରେ ରକ୍ଷା କରି ପାରିବେ। ତଥାପି ଏଠାରେ ମୋର କହି ରଖିବା ଉଚିତ ଯେ, ପ୍ରକାଶିତ ଅଂଶ ମଧ୍ୟରେ କବି ଚରିତ୍ରଚିତ୍ର ବିଷୟରେ ସାଧାରଣାତିରିକ୍ତ କ୍ଷମତା ଦେଖାଇ ନାହାନ୍ତି ବା ଦେଖାଇବାର ଅବସର ପାଇ ନାହାନ୍ତି। ଏ ପର୍ଯ୍ୟନ୍ତ କାବ୍ୟର ନାୟକ ଓ ଅନ୍ୟାନ୍ୟ ପାତ୍ରମାନଙ୍କର ଯେଉଁ ଚରିତ୍ରଚିତ୍ର ଦିଆଯାଇଅଛି, ସେଥିରେ ପ୍ରତ୍ୟେକ ଚରିତ୍ରର ସୂକ୍ଷ୍ମ ତାରତମ୍ୟ ବା ବିଶେଷତ୍ୱ ସୁପରିସ୍ଫୁଟ ହୋଇ ନାହିଁ। ତୃତୀୟତଃ, ଅନୁଷ୍ଠାନର ମନୋହାରିତା କହିଲେ ବୁଝିବାକୁ ହେବ ଯେ କବି କାବ୍ୟର ଉପାଖ୍ୟାନକୁ ସରସ, ଉପାଦେୟ ଓ ମନୋହର କରିବା ନିମିତ୍ତ ନାନା ବିଚିତ୍ର, ଅଦ୍ଭୁତ ଏବଂ ସୁନ୍ଦର ବର୍ଣ୍ଣନାମାନ ନୈପୁଣ୍ୟସହକାରେ ସଂଯୋଜିତ କରିବେ। ଏ ସମ୍ବନ୍ଧରେ ମୋହର ବକ୍ତବ୍ୟ ଏହି ଯେ, 'ମହାଯାତ୍ରା'ର କବି ବର୍ଣ୍ଣନା ବିଷୟରେ ସର୍ବତ୍ର ଯେଉଁ ଶକ୍ତି, ସୌନ୍ଦର୍ଯ୍ୟ ଓ କୌଶଳ ଦେଖାଇଅଛନ୍ତି, ତାହା ଅସାମାନ୍ୟ ଏବଂ ସମଗ୍ର ଉତ୍କଳସାହିତ୍ୟ ମଧ୍ୟରେ ଅତୁଲ୍ୟ ବୋଇଲେ ଅତ୍ୟୁକ୍ତି ହେବ ନାହିଁ। କିନ୍ତୁ ସେ ବର୍ଣ୍ଣନାଗୁଡ଼ିକ ମଧ୍ୟରୁ କତିପୟ ଅଂଶ ସରସତା ସତ୍ତ୍ୱେ ମହାକାବ୍ୟର ଅନୁପଯୁକ୍ତ ଅଥବା ବର୍ତ୍ତମାନ ଯୁଗର ବିଜ୍ଞାନୋଜ୍ଜ୍ୱଳ ବିଶ୍ୱାସର ବିରୋଧୀ। ସମଗ୍ର ଚତୁର୍ଥ ସର୍ଗ ଗୋଟିଏ ଅତି ସୁନ୍ଦର ହୃଦୟହାରୀ ରୂପକମାଳା, କିନ୍ତୁ ଇଉରୋପୀୟ ଆଳଙ୍କାରିକମାନଙ୍କ ମତରେ ନାନା ରୂପକ ସନ୍ନିବେଶଦ୍ୱାରା ମହାକାବ୍ୟର ଉଦ୍ଦେଶ୍ୟ ବିଫଳୀକୃତ ହୁଏ। କୌଣସି କୌଣସି ବର୍ଣ୍ଣନା ପ୍ରାଚୀନ କବିମାନଙ୍କର ଉପଯୁକ୍ତ ହେଲେହେଁ କୁସଂସ୍କାରପରିପୋଷକତା ହେତୁରୁ ଆଧୁନିକ ପ୍ରଶସ୍ତ ବିଶ୍ୱାସର ବିରୋଧୀ ହୋଇଅଛି। ସ୍ଥଳରେ ପ୍ରକୃତିର ରୁଦ୍ର ସୁନ୍ଦର ଦୃଶ୍ୟ, ରଣାଙ୍ଗନର ମହାଭୈରବ ବ୍ୟାପାର ପ୍ରଭୃତି ବର୍ଣ୍ଣନାରେ କବିଙ୍କର ପ୍ରତିଭା 'ମହାଯାତ୍ରା' କାବ୍ୟରେ ମୁକ୍ତଭାବରେ କ୍ରୀଡ଼ା କରୁଅଛି। 'ମହାଯାତ୍ରା'ର ଛନ୍ଦ ଓ ଭାଷା ବିଷୟରେ ମଧ୍ୟ କିଛି କହିବାର ଅଛି। 'ମହାଯାତ୍ରା' ଅମିତ୍ରାକ୍ଷର ଛନ୍ଦରେ ଲିଖିତ ହୋଇଅଛି। ଉତ୍କଳ କାବ୍ୟରେ ଅମିତ୍ରଛନ୍ଦ-ପ୍ରବର୍ତ୍ତନର ଏହି ପ୍ରଥମ ଶୁଭପ୍ରୟାସ। ଏଥିପୂର୍ବେ ବଙ୍ଗୀୟ କବିବର ଶ୍ରୀ ମାଇକେଲ ମଧୁସୂଦନ ଦତ୍ତ ବଙ୍ଗଳା ପଦ୍ୟର ପ୍ରକୃତି ଓ ନିୟମ ଆଲୋଚନା କରି ଏହି ଛନ୍ଦକୁ ପ୍ରବର୍ତ୍ତିତ କରିଥିଲେ। ସୁତରାଂ ବଙ୍ଗୀୟ ପଦ୍ୟର ଏକାନ୍ତ ଅନୁରୂପ ଉତ୍କଳପଦ୍ୟ-ସାହିତ୍ୟ ମଧ୍ୟରେ ଏହି ନୂତନ ଛନ୍ଦର ଅବତାରଣାଦ୍ୱାରା କବି ଶ୍ରୀ ରାଧାନାଥ କିଛି ମୌଳିକତା ଦେଖାଇ ନାହାନ୍ତି; କିନ୍ତୁ ଏହା ମୁଁ ମୁକ୍ତକଣ୍ଠରେ କହି ପାରେଁ ଯେ

ତାଙ୍କ ଛଡ଼ା ଅନ୍ୟ କୌଣସି ଉତ୍କଳୀୟ ଲେଖକ ଏହି ଛନ୍ଦର ଯଥାଯଥ ପ୍ରୟୋଗ ବିଷୟରେ ଦକ୍ଷତା ଦେଖାଇ ପାରନ୍ତେ ନାହିଁ। ବଙ୍ଗଭାଷାରେ ଅମିତ୍ରାକ୍ଷର ଛନ୍ଦ ପ୍ରବର୍ତ୍ତିତ ହେଲା ଦିନୁ ଅନେକ ଲୋକପ୍ରସିଦ୍ଧ ବଙ୍ଗୀୟ କବି ଉକ୍ତ ଛନ୍ଦରେ କାବ୍ୟ ଲେଖଅଛନ୍ତି, କିନ୍ତୁ ମୋ କ୍ଷୁଦ୍ର ମତରେ ଜଣେ ଦୁଇ ଜଣଙ୍କୁ ଛାଡ଼ିଦେଲେ କାହାରି ରଚନା ମାଇକେଲଙ୍କ ରଚନା ପରି ମନୋଜ୍ଞ ହୋଇ ନାହିଁ। ଯେଉଁ ଅତ୍ୟଳ୍ପ ସଂଖ୍ୟକ ଲେଖକ ଏ ବିଷୟରେ କୃତକାର୍ଯ୍ୟ ହୋଇଅଛନ୍ତି, ସେଥିମଧ୍ୟରେ ଆମ୍ଭମାନଙ୍କର କବି ଶ୍ରୀ ରାଧାନାଥ ଜଣେ ଅଟନ୍ତି। ଅମିତ୍ରାକ୍ଷର ଛନ୍ଦରେ ତାହାଙ୍କ ରଚିତ ଅନେକଗୁଡ଼ିଏ ବଙ୍ଗଳା କବିତା ଗୁଣିଗଣାଗ୍ରଗଣ୍ୟ ଶ୍ରୀ ଭୂଦେବ ମୁଖୋପାଧ୍ୟାୟ ପ୍ରଭୃତିଙ୍କଦ୍ୱାରା ଭୂୟୋଭୂୟଃ ପ୍ରଶଂସିତ ହୋଇଅଛି। ମହାଯାତ୍ରାର ଛନ୍ଦ ମାତ୍ରାନିୟମ ଓ ଯତିପାତ କୌଶଳ ହେତୁରୁ ଯେପରି ସୁଖପାଠ୍ୟ ସେହିପରି ସୁଶ୍ରାବ୍ୟ ହୋଇଅଛି। ଓଡ଼ିଆ ଭାଷାରେ ଅମିତ୍ରାକ୍ଷର ଛନ୍ଦ ନୂତନ ବୋଲି ପ୍ରଥମରେ ଅନେକଙ୍କର ଅବଜ୍ଞାତ ବା ଉପହସିତ ହୋଇପାରେ, କିନ୍ତୁ ସେମାନଙ୍କର ଜାଣିବାର ଉଚିତ ଯେ ଆବହମାନ କାଳରୁ ପୃଥିବୀର ପ୍ରସିଦ୍ଧ ସାହିତ୍ୟମାନଙ୍କରେ ଅମିତ୍ରାକ୍ଷର ଛନ୍ଦ ପ୍ରଚଳିତ ହୋଇ ଆସୁଅଛି ଏବଂ ପୃଥିବୀର ସର୍ବୋତ୍କୃଷ୍ଟ ମହାକାବ୍ୟମାନ ସେହି ଛନ୍ଦରେ ଲିଖିତ। ଦୃଷ୍ଟାନ୍ତ ନିମିତ୍ତ ଦୂରକୁ ଯିବାର ପ୍ରୟୋଜନ ନାହିଁ, ଭାରତର ପରମାରାଧ୍ୟ ସଂସ୍କୃତ ସାହିତ୍ୟର ସମୁଦାୟ ଉଲ୍ଲେଖଯୋଗ୍ୟ କାବ୍ୟ ନାନାବିଧ ଅମିତ୍ରାକ୍ଷର ଛନ୍ଦରେ ରଚିତ। ଯେତେବେଳେ ବଙ୍ଗଳାରେ ସର୍ବପ୍ରଥମେ ମାଇକେଲ ଅମିତ୍ରାକ୍ଷର ଛନ୍ଦ ପ୍ରବର୍ତ୍ତିତ କଲେ, ସେତେବେଳେ ଶତ ଶତ ଲୋକେ ତାହାର ବିରୋଧୀ ହୋଇଥିଲେ। କିନ୍ତୁ ବର୍ତ୍ତମାନ ସମସ୍ତେ ସ୍ୱୀକାର କରୁଅଛନ୍ତି ଯେ ଉକ୍ତ ଛନ୍ଦ ପ୍ରବର୍ତ୍ତନଦ୍ୱାରା ବଙ୍ଗଳା କବିତାର ଗୌରବ ନିଃସନ୍ଦେହରୂପେ ବର୍ଦ୍ଧିତ ହୋଇଅଛି। ବାସ୍ତବରେ ମିତ୍ରାକ୍ଷର କବିତାର ବିକାଶ ନିମିତ୍ତ ଅପରିହାର୍ଯ୍ୟ ଉପାଦେୟରୂପେ ଅବଲମ୍ବନୀୟ ନୁହେଁ। ଏହା ମଧ୍ୟ କବିତାର ପ୍ରକୃଷ୍ଟ ଭୂଷଣ ନୁହେଁ। ବରଂ ଅନେକ ସମୟରେ ଭାବର ଦାରିଦ୍ର୍ୟ ଘୋଡ଼ାଇବା ନିମିତ୍ତ ମିତ୍ରାକ୍ଷର ଗୋଟିଏ କୃତ୍ରିମ ଭୂଷଣରୂପେ ବ୍ୟବହୃତ ହୁଏ। ଭାବ ହିଁ କବିତାର ପ୍ରାଣ ଏବଂ ସଙ୍ଗୀତମୟ ଭାଷା ତାହାର ଶରୀର ଅଟେ। ମିତ୍ରାକ୍ଷର ବା ଅମିତ୍ରାକ୍ଷର ହେଉ, ଯେଉଁ କବିତାର ଭାବ ମହାନ୍ ଓ ମର୍ମସ୍ପର୍ଶୀ, ଯାହାର ଭାଷା ମଧୁର ସଙ୍ଗୀତମୟ ଏବଂ ସୁଭାବର ଉପଯୁକ୍ତ, ଅର୍ଥାତ୍ ମାତ୍ରା ବିରାମାଦି କୌଶଳ ହେତୁରୁ ସୁଗେୟ, ତାହାହିଁ ପ୍ରକୃତ କବିତା-ପଦବାଚ୍ୟ। ଭାବ ଓ ଭାଷା ଉଭୟ ବିଷୟରେ 'ମହାଯାତ୍ରା' ଯେ ଉତ୍କୃଷ୍ଟ ହୋଇଅଛି, ତାହା ଯେଉଁମାନେ ଥରେ ଅବଧାନପୂର୍ବକ ଅବିକୃତଚିତ୍ତରେ ପଢ଼ିବେ, ସେମାନେ ଅବଶ୍ୟ ମୁକ୍ତକଣ୍ଠରେ ସ୍ୱୀକାର କରିବେ।

ପରିଶେଷରେ ମୋର ଏହି ଆଶା ଏବଂ ପ୍ରାର୍ଥନା ଯେ, କବି ଶ୍ରୀ ରାଧାନାଥ ମହାଯାତ୍ରାରୂପ ଯେଉଁ ସୁଧାମୟ ମନୋହର ଗୀତ ଆରମ୍ଭ କରିଅଛନ୍ତି, ତାହା ଆଦିକବି ବିଧାତାଙ୍କ କୃପାରେ ସମାପ୍ତ କରି ଉତ୍କଳସାହିତ୍ୟମନ୍ଦିରକୁ ଜ୍ୟୋତିର୍ମୟ କରନ୍ତୁ।

ଶ୍ରୀ ମଧୁସୂଦନ ରାଓ

# ମହାଯାତ୍ରା

## [ ପ୍ରଥମ ସର୍ଗ ]

ପଙ୍କଜବାସିନି ଦେବି, ଉତ୍କଳଭାରତି
ସାରଳେ, କି କଲେ, କହ, କୁରୁଚୂଡ଼ାମଣି (୧)
ଶୁଣିଲେ ଯେକାଳେ ବୀର ବାର୍ତ୍ତାବହ ମୁଖୁ
ପ୍ରଭାସେ ଯାଦବଙ୍କର ଜ୍ଞାତି-କ୍ଷୟକାରୀ (୨)
ମହାହବ, ଧୀରମଣି ଧୈର୍ଯ୍ୟ ଧରି, ଆହା,
କେମନ୍ତେ ଶୁଣିଲେ ସେହି ଦାରୁଣ ବାରତା ?
କି କଲେ ଶୁଣିଣ ଚିର-ବିପଦ-ବାନ୍ଧବ
ଯଦୁବଂଶ-ଅବତଂସ ଯାଦବପତିର (୩)
ତ୍ରିଦିବ-ପ୍ରୟାଣ-ବାର୍ତ୍ତା, କହ କୃପା ବହି।
ଯଦୁବଂଶ ଧ୍ୱଂସ ଶୁଣି କୁରୁକୁଳମଣି
ଯୁଧିଷ୍ଠିର, କିରୀଟୀକି କହିଲେ ସମ୍ବୋଧି,
"ହେ ବୀର, ଦୁସ୍ତର କୁରୁସମର-ସାଗରେ
(ତିମି ତିମିଙ୍ଗିଳ-ରୂପେ ଭ୍ରମିଲେ ଭୈରବେ
ଯହିଁ ମହାରଥିପତି ଭୀଷ୍ମ-ଦ୍ରୋଣ ଆଦି) (୪)
ଯେ ମହାପୁରୁଷ ନିଜ କୃପା-ତରଣୀରେ
ପାରି କଲେ ପାଣ୍ଡବଙ୍କୁ କର୍ଣ୍ଣଧାର-ରୂପେ,
ଚଳୁଥିଲେ ଅନୁକ୍ଷଣ ଶ୍ରୀକରେ ଯାଙ୍କର
ନ୍ୟାୟବଳ-ବଳରୂପେ କୋଟି କୋଟି ପ୍ରାଣୀ (୫)
ଗଲେ ମର୍ତ୍ତ୍ୟଧାମ ତେଜି ନିଜ ଧାମେ ସେହି
କେଶବ, କି ସୁଖେ ଆଉ ରହିବା ସଂସାରେ ?
ସଂସାରର ବାଳା ଖେଳା ସରିଲା ଆମ୍ଭର,
ସଂସାର-ବିଷୟ-ବିଷେ ଜରଜର ହୋଇ
ସାରସତ୍ତ୍ୱ ପାସୋରିଣ ସାଧିଲୁଁ ଆୟୁଷ।
ଦୁଃଖମୟ ଭବ ସିନା, ମହାସୁଖ ବୋଲି
ବୋଲନ୍ତି ଜଗତେ ଯାକୁ, ଜଡ଼ିତ ସେ ସଦା
ମହାଦୁଃଖେ, ଆଲୋକ ସେ ଜଡ଼ିତ ତମସେ।
ହତ ହେଲେ ସୁଯୋଧନ କୁରୁକ୍ଷେତ୍ର ରଣେ (୬)
ଜୟୀ ହୋଇ ଆମ୍ଭେ ତହିଁ ହେଲୁଁ ଜୀବନ୍ମୃତ। (୭)
ପୁତ୍ର-ମିତ୍ର-ରକ୍ତ-ସ୍ରୋତେ ସନ୍ତରି ସନ୍ତାପେ
ସନ୍ତାପର ସିଂହାସନ ହେଲା ସିନା ଲାଭ।
ଭଙ୍ଗୁର ଭବର, ଭାଇ, ସୁଖ ଏହିପରି।
ଧନ୍ୟ ସେହି ଅତନ୍ଦ୍ରିତ ଋଷିବୃନ୍ଦ ଭବେ (୮)
ବିଷୟବିମୁଖ ହୋଇ ସାଧନ୍ତି ଯେ ସଦା
ସୁଖବୃଦ୍ଧି ତୃଷ୍ଣାକ୍ଷୟେ, ତୃଷ୍ଣା-ଲୟେ ପୁଣି
ସୀମାତୀତ-ସୁଖରାଜ୍ୟେ ବିହରନ୍ତି ମୁଦେ, (୯)
ନିରୁଦ୍‌ବେଗେ ରହନ୍ତି ସେ କାଳକୁ ଅନାଇ।
ଏ ଜୀବ ନୁହଇ ସ୍ଥିର, ସ୍ଥିରଟି ମରଣ,
ମାଟିର ଏ ଘଟ ନିର୍ଣ୍ଣେ ମିଶିବ ମାଟିରେ,
ସର୍ବହର କାଳ ମହାବଳିଠାରୁ ବଳୀ।
କଠୋର ଏ ଧନୁ ତୋର, କଠୋର ଭୀମର
ମହାଗଦା, ଗ୍ରାସଇ ସେ ପଦ୍ମ-ରମ୍ଭା ପରି।
ଲଗାଇଛି ଫାଶ ସେହୁ ସମସ୍ତଙ୍କ ଗଳେ—
କି ରାଜା, କି ପ୍ରଜା, କିବା ବୀର, କେବା ଭୀରୁ,
ଗୁଣୀ, ଗୁଣହୀନ ଅବା ସୁନ୍ଦର, କୁତ୍ସିତ,

(୧) ସାରଳାଦେବୀଙ୍କ ମନ୍ଦିର ମହାନଦୀର ଅଦୂରବର୍ତ୍ତୀ ଝଙ୍କଡ଼ ଗ୍ରାମରେ ଅବସ୍ଥିତ। ଓଡ଼ିଶାରେ ଏହି ଦେବୀ ବିଦ୍ୟାର ଅଧିଷ୍ଠାତ୍ରୀରୂପେ ପ୍ରତିଷ୍ଠିତ। କୁରୁଚୂଡ଼ାମଣି – ଯୁଧିଷ୍ଠିର। (୨) ପ୍ରଭାସ – ଦ୍ୱାରକାର ଅଦୂରବର୍ତ୍ତୀ ସମୁଦ୍ରକୂଳସ୍ଥିତ ତୀର୍ଥ। ଋଷି-ଅଭିଶପ୍ତ ଯଦୁବଂଶୀୟମାନେ ଏହିଠାରେ ସୁରାପାନରେ ମତ୍ତ ହୋଇ ପରସ୍ପର ଯୁଦ୍ଧ କରି ନିହତ ହୋଇଥିଲେ। (୩) ଯାଦବପତି-- ଶ୍ରୀକୃଷ୍ଣ। (୪) ଭୀଷ୍ମ, ଦ୍ରୋଣ, କର୍ଣ୍ଣ ପ୍ରଭୃତି ଦୁର୍ଯ୍ୟୋଧନପକ୍ଷୀୟ ପ୍ରଧାନ ଯୋଦ୍ଧା ଥିବାରୁ ରଣସମୁଦ୍ରର ତିମି ତିମିଙ୍ଗିଳରୂପେ ବର୍ଣ୍ଣିତ ହୋଇଅଛନ୍ତି। (୫) ନ୍ୟାୟବଳ – ଶତରଞ୍ଜଖେଳର ପୁତ୍ତଳିକା। (୬) ସୁଯୋଧନ – ଦୁର୍ଯ୍ୟୋଧନ (୭) ପାଣ୍ଡବପକ୍ଷ ଜୟୀ ହୋଇଥିଲେ ସତ୍ୟ, ମାତ୍ର ସେ ଜୟ ମଧ୍ୟ ଶୋଚନୀୟ ହୋଇଥିଲା। ପାଣ୍ଡବମାନଙ୍କର ପ୍ରଧାନ ଆତ୍ମୀୟ ଯଥା ଦ୍ରୁପଦ, ବିରାଟ, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ, ଅଭିମନ୍ୟୁ, ଘଟୋତ୍କଚ, ଦ୍ରୌପଦୀଙ୍କ ପଞ୍ଚପୁତ୍ର ପ୍ରଭୃତି କୁରୁକ୍ଷେତ୍ରରେ ହତ ହୋଇଥିବାରୁ ଜୟୀ ପାଣ୍ଡବମାନେ ସୁଦ୍ଧା ଜୀବନ୍ମୃତ ପ୍ରାୟ ହୋଇଥିଲେ। ତେଣୁ ଯୁଧିଷ୍ଠିରଙ୍କ ସିଂହାସନ 'ସନ୍ତାପର ସିଂହାସନ' ହୋଇଥିଲା। (୮) ଅତନ୍ଦ୍ରିତ – ଜାଗରୁକ, ସଂସାରମାୟାରେ ଯେଉଁମାନେ ମୁଗ୍ଧ ନୁହନ୍ତି। (୯) ବିଷୟୀ ଲୋକମାନେ ବିଷୟବୃଦ୍ଧିଦ୍ୱାରା ସୁଖୀ ହେବାକୁ ଚେଷ୍ଟା କରନ୍ତି। ଋଷିମାନେ ବାସନାକ୍ଷୟଦ୍ୱାରା ସୁଖୀ ହେବାକୁ ଚେଷ୍ଟା କରନ୍ତି। ବାସନା କ୍ଷୟ ହେଲେ ସୀମାବଦ୍ଧ ସୁଖ ଅସୀମ ହୁଏ। କ-ରାଶି ଶୂନ୍ୟଦ୍ୱାରା ବିଭକ୍ତ ହେଲେ ତାହାର ଭାଗଫଳ ଅସୀମ – ଏହି ଗାଣିତିକ ସୂତ୍ର ସହିତ ଏହି ଭାବର ସାଦୃଶ୍ୟ ଅଛି।

ଧନିକ, ନିର୍ଧନ, ଅବା ପ୍ରବଳ, ଦୁର୍ବଳ,
ଯେ ଗୁପତ ଫାଶୁଁ କେହି ନୁହନ୍ତି ମୁକତ।
ଜନ୍ମିବା ଆଗରୁ ସେହି ଫାଶ ପିନ୍ଧି ଗଳେ
ଭୂମିଷ୍ଠ ହୁଅଇ ଜୀବ ଜନନୀ-ଜଠରୁ।
ନିତି ଦିନ କ୍ଷୀଣ ଦେଖି ଦୁରନ୍ତ ସଂହାରୀ
ଅତର୍କିତେ ସଂହାରିବ ଓଟାରି ସେ ଫାଶ, (୧)
କାହାରି ବେଳକୁ କାଳ ଅନାଇଁ ନ ବସେ,
ପାସୋରିଲେ ତାକୁ ସେହି କେବେ ନ ପାସୋରେ
ଅଦ୍ଭୁତ ସେ ଚୋର, ତାକୁ ରୋଧିଲେ ତୋରଣ,
ପାଚେରି ଲଂଘିଣ ପୁରେ ପଶେ ଅନାୟାସେ,
ତାଳକ-କୀଳିତ ଗୃହେ ପଶେ ଅକୁଣ୍ଠିତେ (୨)
ନ ଫିଟାଇ ସେ ତାଳକ, ଖଣ୍ଡଶିରୋମଣି।
ସେ ଆସି ଖୋଜିବା ଆଗୁଁ ଏ ଭବର ମାୟା
ତେଜି, ହେ ବୀରେନ୍ଦ୍ର ଚାଲ ଖୋଜିବା କାଳକୁ।"
ବୋଇଲେ କିରୀଟୀ ତହୁଁ ଅଗ୍ରଜ ଛାମୁରେ,
"ହେ ଗୋସାଇଁ, ଛାଡ଼ି ନାହିଁ କାଳ କାହାରିକି,
ସମସ୍ତଙ୍କୁ ଲୋଡ଼ି ନିଏ ଯଥାକାଳେ ସେହୁ,
ମୁଁ ଯାଇ ଲୋଡ଼ିବି ତାକୁ ତୁମ୍ଭରି ଗହଣେ।"
ଭୀମ, ବେନି ମାଦ୍ରୀସୁତେ କିରୀଟୀ-ବଚନେ
ଜଣାଇଲେ ଅଭିମତ ପରମ ଆଗ୍ରହେ,
ହିମାଦ୍ରି-ପ୍ରୟାଣେ ସର୍ବେ ବଳାଇଲେ ମନ।

ଶୁଣି ଏ ସଙ୍କଳ୍ପ ଦେବୀ ଦ୍ରୁପଦନନ୍ଦିନୀ
ସହଚରୀ ହେବାପାଇଁ ବାନପ୍ରସ୍ଥବ୍ରତେ
କଲେ ନାନାମତେ ଅଳି ଭୂପତି-ଛାମୁରେ।
କାନ୍ଦିଣ କହିଲେ ଦେବୀ ଗଦଗଦ ଭାଷେ—
"ପାଣ୍ଡବର ବନ୍ଧୁ ବୋଲି ବାନ୍ଧିଥିଲେ ବାନା
ଭୁବନେ ଯେ ମହାପ୍ରଭୁ, ସେ ପ୍ରଭୁ ବିହୁନେ
କେଉଁ ଲୋଡ଼ା ପାଣ୍ଡବର, ନାଥ, ଏ ସଂସାରେ ?
କେଉଁ ଲୋଡ଼ା ଏ ସଂସାରେ ପାଣ୍ଡବ ବିହୁନେ
ପାଣ୍ଡବ-ଶରଣା-ଦୀନା ଦ୍ରୁପଦକନ୍ୟାର ?
କି ଲୋଡ଼ା ମୋହର ଅଶ୍ରୁସିକ୍ତ-ରାଜଭୋଗେ ?
କି ସୁଖ, ହେ ପାଣ୍ଡୁନାଥ, ଏ ଦଗ୍ଧପରାଣେ
ଗୃହେ ଥାଇଁ ? ଥାଉ ଗୃହ ଗୃହ-ସୁଖ ନେଇ,
ରାଜ୍ୟ ରାଜସୁଖ ନେଇ। ଏ ବେନିଙ୍କି ଛାଡ଼ି
ଛାୟା ପ୍ରାୟ ତୁମ୍ଭ ସଙ୍ଗେ ବିଚରିବି ବନେ।
ସୁଖୀ ଥିଲି ବନେ, ଦୁଃଖୀ ହେଲି ସିଂହାସନେ,
ଦୁଃଖୀ ପାଇଁ ସ୍ଥାନ କାହିଁ ସଂସାର-ଗହଳେ ? (୩)
ଦୁଃଖୀ ଲୋଡ଼େ ନିକାଞ୍ଚନ, ଦୁଃଖୀର ନୟନେ
ସଂସାର-ସମ୍ପଦ ସିନା ମହାବିଡ଼ମ୍ବନା।
ନଳିନୀ-ନୟନେ, ନାଥ, ଯେସନ ଚନ୍ଦ୍ରିକା।
ଅକ୍ଷମ ସମ୍ପଦ ଦୁଃଖ ମେଣ୍ଟାଇବା ପାଇଁ
ପକାଏ କେବଳ ମାତ୍ର କଣ୍ଟକ ସେ ପଥେ
ସମବେଦନାର, ନାଥ, ଏହି ତାର ରୀତି। (୪)
ଭେଦାଭେଦ ବାରିବାର ପ୍ରାସାଦେ କୁଟୀରେ
ସରିଛି ସେ ଦିନ ମୋର ଚିରଦିନ ଲାଗି।
ନୁହଇଁ କେବଳ ମୁହିଁ ସମ୍ପଦ-ସଙ୍ଗିନୀ
ପାଣ୍ଡବର, ପୂର୍ବେ ଯଥା ସେବୁଥିଲି ବନେ
ଚରଣେ ତୁମ୍ଭର, ଏବେ ସେବିବି ସେମତେ,
ଏହି ଭିକ୍ଷା ମାଗେ ଦାସୀ ଶ୍ରୀପଦେ ଗୋସାଇଁ।"
ବିଜ୍ଞମଣି ଯୁଧିଷ୍ଠିର ଯାଜ୍ଞସେନୀ-ବାଣୀ
ଶୁଣି ଯିବାପାଇଁ ତାଙ୍କୁ ଦେଲେ ଅନୁମତି।
ତହୁଁ ରାଜସିଂହାସନେ ପରିକ୍ଷିତଙ୍କର (୫)
ଅଭିଷେକ-ବିଧି ରାଜା ଯତନେ ସମ୍ପାଦି,
ବୈଶ୍ୟାଗର୍ଭଜାତ ଶାନ୍ତ ଧୃତରାଷ୍ଟ୍ରସୁତ
ଯୁଯୁତ୍ସୁଙ୍କୁ ନିଯୋଜିଲେ ପ୍ରତିନିଧିପଦେ (୬)
ସାମ୍ରାଜ୍ୟ ଶାସନ ପାଇଁ ଶୈଶବେ ତାଙ୍କର।
ତହୁଁ ବୃଦ୍ଧା ସୁଭଦ୍ରାଙ୍କୁ ରାଜ ନରସାଇଁ
କହିଲେ, "ଏ ଶିଶୁ, ଦେବି, ହେବ ଦଣ୍ଡଧର
ମୋର ଅନ୍ତେ ହସ୍ତିନାର ରାଜସିଂହାସନେ,
ଏକମାତ୍ର କୁଳାଙ୍କୁର ଏହି-କୁରୁକୁଳେ
ଗୋଟିଏ ପ୍ରସୂନ, ଆହା, ବିଶ୍ୱେ ବିଶ୍ୱ-ଗ୍ରାସି-
କାଳ-ଦାବାନଳ-ମୁକ୍ତ କୁରୁବଂଶବନେ। (୭)
ଭବତଳେ ଜୀବନ୍ତ ଏ ଦୟା-ନିଦର୍ଶନ
କାଳଦର୍ପହାରୀ ଦେବ ଦୀନବନ୍ଧୁଙ୍କର।
ପତି-ପିତୃ-ଭ୍ରାତୃ-ଶୋକେ ଆତୁରା ଉତ୍ତରା
ଅଶ୍ୱତ୍ଥାମା-ଅସ୍ତ୍ରାନଳେ ତ୍ରସ୍ତ ହୋଇ ଯେବେ
ବିକଳେ ଶରଣ ଗଲା ଶରଣ-ବତ୍ସଳ

(୧) କାଳ କାହାରି ସୁବିଧା ଅସୁବିଧା ସମୟ ଅସମୟ ପ୍ରତି ଦୃକ୍‌ପାତ କରେ ନାହିଁ। ନିଜର ସମୟ ବୁଝି ପ୍ରାଣିମାନଙ୍କୁ କବଳିତ କରେ। (୨) ତାଳକ-କୀଳିତ— ତାଲାଦ୍ୱାରା ବନ୍ଦ। (୩) ସଂସାରରେ ସମସ୍ତେ ସ୍ୱାର୍ଥସଂଗ୍ରାମରେ ବ୍ୟତିବ୍ୟସ୍ତ। ଦୁଃଖୀ ଦୁଃଖରେ ସହାନୁଭୂତି ଦେଖାଇବାକୁ କାହାରି ଅବସର ନ ଥାଏ। (୪) ଯେଉଁମାନଙ୍କର ସମ୍ପଦ ଅଛି ସେମାନେ ନିଜ ଦୁଃଖରେ ଅନ୍ୟର ସହାନୁଭୂତି ପାଆନ୍ତି ନାହିଁ। (୫) ପରିକ୍ଷିତ ଅଭିମନ୍ୟୁ ପୁତ୍ର। (୬) ଯୁଯୁତ୍ସୁ— ଧୃତରାଷ୍ଟ୍ରଙ୍କ ପୁତ୍ର। କୁରୁଯୁଦ୍ଧ ଆରମ୍ଭ ସମୟରେ ଯୁଧିଷ୍ଠିର ଧର୍ମଦ୍ୱାରା ଦେବାରୁ ଧର୍ମଭୀରୁ ଯୁଯୁତ୍ସୁ ଦୁର୍ଯ୍ୟୋଧନଙ୍କ ପକ୍ଷ ପରିତ୍ୟାଗ କରି ନିଜ ଦଳ ସହିତ ପାଣ୍ଡବଦଳରେ ମିଶିଥିଲେ। (୭) ଯୁଦ୍ଧରେ ସମସ୍ତେ ନିହତ ହୋଇଥିବାରୁ ଏକମାତ୍ର ପରିକ୍ଷିତ ହସ୍ତିନା ସିଂହାସନର ଉତ୍ତରାଧିକାରୀ ଥିଲେ।

ପାଦପଦ୍ମେ, ଚକ୍ରାୟୁଧ ଚକ୍ରର ଉଦ୍ଧାରେ
ଝଟତି ଆଚ୍ଛାଦି ସେହି ଦୁଃଖିନୀ ଗରଭ
ବଞ୍ଚାଇଲେ ଶିଶୁସହ ଜନନୀ-ଜୀବନ।
ପାଳିବ ଏ ଶିଶୁ, ଦେବି, ପରମ ଯତନେ
ଗୃହାଶ୍ରମେ, ମୋର ଏହି ଅନ୍ତିମ ନିୟୋଗେ। (୧)
ସୁଭଦ୍ରାଙ୍କୁ ଏହିରୂପେ ଆଦେଶି ନୃମଣି
ଆଚରିଲେ ଶ୍ରାଦ୍ଧବିଧି ମାତୁଳବଂଶର,
ଉଗ୍ରସେନ, ବସୁଦେବ ଆଦି ଗୁରୁଜନେ
ବିହିତ ବିଧାନେ ବିହି ପ୍ରେତ-ଜଳାଞ୍ଜଳି (୨)
ଅସ୍ତ୍ରଗୁରୁଙ୍କର ଗୁରୁ ବୃଦ୍ଧ ଭରଦ୍ୱାଜ (୩)
ବଦରିକାଶ୍ରମବାସୀ ଋଷି ଦ୍ୱୈପାୟନ (୪)
(ଭାରତ-ଭାରତୀ ଯାଙ୍କ ରସନା-ନର୍ତ୍ତକୀ)
ସୂର୍ଯ୍ୟ-ଶିଷ୍ୟ ଯାଜ୍ଞବଲ୍କ୍ୟ ସଂହିତା-ପ୍ରଣେତା,
ଯଜ୍ଞରତ ଜନକଙ୍କ ଗୁରୁ ପୁରାତନ (୫)
ମାର୍କଣ୍ଡେୟ କଳ୍ପଜୀବୀ, ଦେବର୍ଷି ନାରଦ,
ଅନନ୍ତେ ଅନନ୍ତ-ନାମ-କୀର୍ତ୍ତନ-ରସିକ, (୬)
ଯା ସଙ୍ଗୀତେ ପ୍ରେମୋଲ୍ଲାସେ ପ୍ରସ୍ତୁରଣ ଛଳେ
ଲୋମାଞ୍ଚ ଲଭନ୍ତି ନଭେ ଜ୍ୟୋତିଷ-ମଣ୍ଡଳୀ।
ଜ୍ଞାନୀନ୍ଦ୍ର ବାଦରାୟଣି ଆଦି ମୁନିଗଣେ (୭)
ମହାଦରେ ଡାକି ରାଜା ଦେଲେ ନାନା ଦାନ–
ଗୋ, ଭୂମି, କାଞ୍ଚନ, ରତ୍ନ, ବସ୍ତ୍ର, ଆଭରଣ,
ଗଜ, ବାଜୀ, ମହୋଜ୍ଜ୍ୱଳ ସ୍ୟନ୍ଦନାଦି କରି
ସ୍ୱର୍ଗତ ଶାରଙ୍ଗଧର କେଶବ ଉଦ୍ଦେଶେ। (୮)
କୁଳଗୁରୁ କୃପାଚାର୍ଯ୍ୟ-ପଦେ ପରିକ୍ଷିତେ (୯)
ସମର୍ପି କହିଲେ, "ଗୁରୋ, ଦାସ-ଅନୁଦାସ
ଏ ତୁମ୍ଭର, ଦୟା ବହି ବାଲ୍ୟେ ଯଥା ମୋତେ
ଶିଖାଇଲ ଧନୁର୍ବେଦ, ଏହାକୁ ସେପରି
ଶିଖାଇବ, ଏହି ଭିକ୍ଷା ମାଗୁଛି ପୟରେ।
ଆହେ ରଣବିଶାରଦ ସେନାପତିଦଳ,
ତୁମ୍ଭ ବାହୁ-ଛାୟା-ତଳେ ବଢୁ ଏ କୁମର
ମଣ୍ଡିବାକୁ ହସ୍ତିନାର ଶୂନ୍ୟସିଂହାସନ।
ରଣମୁଖେ ଅଗ୍ରଯାୟୀ ଥିଲା ଯେ ତୁମ୍ଭର,
ଯା ବିକ୍ରମେ ବିଚଳିତ ହୋଇ ରଣସ୍ଥଳେ
ଲଙ୍ଘିଣ ସମର-ଧର୍ମ ଆଚାର୍ଯ୍ୟ ଆପଣେ
ଅସମ ସମରେ ଯାର ସାଧିଲେ ନିଧନ,
କୁରୁସେନା ବିମର୍ଦ୍ଦନ, ପରବ୍ୟୂହଭେଦୀ
ମହାରଥୀ ଅଭିମନ୍ୟୁ-ହୃଦୟ-ଶୋଣିତ
ବହୁଛି ଏ ଶିଶୁ ଦେହେ, ଏହା ନ ବିସୋରି
ରଖିବ ଶିଶୁକୁ ନିଜ ଦେହ ଆବରଣେ,
ନେତ୍ରେ ନେତ୍ର-ପତ୍ର ଯଥା, ପ୍ରମାଦେ ସଙ୍କଟେ।
ସାଙ୍ଗ ହେଲା ଆଜିଠାରୁ ରାଜପଣ ମୋର,
ସମସ୍ତଙ୍କୁ କର ଯୋଡ଼ି ମାଗୁଛି ମେଲାଣି,
ବନେ ଚରି ଆଚରିବି ଆରଣ୍ୟକ-ବ୍ରତ।"

ବିଷଣ୍ଣ ସରବେ ହେଲେ ରାଜାଙ୍କ ବଚନେ,
"ରାଜ୍ୟ ତେଜି ଯିବେ ରାଜା" ଏ ବାର୍ତ୍ତା ନବରେ
ନବରୁ ନଗରେ, ତହୁଁ ବ୍ୟାପି ଜନପଦେ,
ବୁଡ଼ାଇଲା ଶୋକୋଚ୍ଛ୍ୱାସେ ସମଗ୍ର-ମେଦିନୀ।
ବୋଲାବୋଲି ହେଲେ ଲୋକେ– "ଯାର ଛତ୍ର-ତଳେ
ଜାଣୁ ନ ଥିଲେଟି ଜନେ, ନିର୍ଦ୍ଦୋଷ ଯାବତ,
ରାଜଦଣ୍ଡ ଅଛି ବୋଲି; ଦୋଷୀ ଦେଖି ପୁଣି
ନ ସଂହାରି ବିହୁଥିଲା ସଂସ୍କାର ମାତର
କରୁଣା-କୋମଳ-ନ୍ୟାୟ ଯାର ଏ ଜଗତେ,
ତିନିଲୋକେ ପୁଣ୍ୟଶ୍ଳୋକ ସେହି କୁରୁମଣି
ଯିବେ କି ଆମ୍ଭଙ୍କୁ ଛାଡ଼ି? ଆହା ରେ ଦଇବ!
ସତେ କି ସାଧିବୁ ଦାଉ ତୁହି ଏତେ ଦିନେ?
ହେ ଧର୍ମ, ହେ ସତ୍ୟ, ତୁମ୍ଭେ ହେଲଟି ଅନାଥ!
କେ ଆଉ ନିଷ୍କାମେ ଧନ ପ୍ରାଣ ମାୟା ତେଜି
ତୁମ୍ଭଙ୍କୁ ତୁମ୍ଭରି ଲାଗି ଭଜିବ ଏ ଭବେ?
ଦୟା, କ୍ଷମା, ତୁମ୍ଭେ ଏବେ ହେଲଟି ଅବୀରା!
ଅବୀରା ମା ବସୁନ୍ଧରା! –ଅନାଥା-ସନ୍ତତି
ହେଲେ ସିନା ଏତେ ଦିନେ, ଦୀନହୀନ ପ୍ରଜା!"
ଚଉଦିଗୁଁ ପ୍ରଜାପୁଞ୍ଜ ଆସି ଦଳେ ଦଳେ
(ଚଉପାଖୁଁ ହ୍ରଦମୁଖେ ଗିରିସ୍ରୋତ ଯଥା)
ନବର-ପ୍ରାଙ୍ଗଣ-ପ୍ଲାବୀ ଲୋତକ-ପ୍ଲାବନେ
ନୃପଙ୍କ ଛାମୁରେ କଲେ ରହିବାକୁ ଅଳି।
ଭବର ଭଙ୍ଗୁର ଭାବ ଜାଣି ଯୁଧିଷ୍ଠିର
ନିବେଶିଣ ଥିଲେ ଚିତ୍ତ ସୁଚେତା ଶାଶ୍ୱତେ, (୧୦)
ତେଣୁ ପ୍ରଜାଙ୍କର ମାୟା ତୁଟିଲେ ସହଜେ।

(୧) ଅନ୍ତିମ ନିୟୋଗେ– ଶେଷ ଆଦେଶରେ। (୨) ଯୁଧିଷ୍ଠିର ଯଦୁବଂଶୀୟ ବସୁଦେବ ପ୍ରଭୃତିଙ୍କର ଭଣଜା ଥିଲେ। (୩) ଭରଦ୍ୱାଜ ପାଣ୍ଡବମାନଙ୍କ ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟଙ୍କର ଗୁରୁ ଅର୍ଥାତ୍ ପିତା। (୪) ଦ୍ୱୈପାୟନ– ବ୍ୟାସ। ମହାଭାରତପ୍ରଣେତା। (୫) ଜନକଙ୍କ ଦୀକ୍ଷାଗୁରୁ ଯାଜ୍ଞବଲ୍କ୍ୟ ଭାରତବର୍ଷର ଜଣେ ପ୍ରଧାନ ସ୍ମୃତିକାର। (୬) ଆକାଶରେ ଈଶ୍ୱରଙ୍କ ନାମକୀର୍ତ୍ତନରେ ରତ। (୭) ବାଦରାୟଣି– ଶୁକଦେବ। (୮) ପରଲୋକଗତ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ। କୃଷ୍ଣଙ୍କ ଧନୁର ନାମ 'ଶାର୍ଙ୍ଗ' ଥିଲା। (୯) କୃପାଚାର୍ଯ୍ୟ– ଦ୍ରୋଣଙ୍କ ଶ୍ୟାଳକ। ପାଣ୍ଡବମାନଙ୍କର ଅନ୍ୟତମ ଅସ୍ତ୍ରଗୁରୁ। (୧୦) ଶାଶ୍ୱତେ– ଭଗବାନ୍‌ଙ୍କ ପ୍ରତି।

ସମାଦରେ ଯଥାବିଧି ଆମନ୍ତ୍ରି ଭୂପତି
ସାମନ୍ତ-ରାଜନ୍ୟ-ଦଳେ, ପୌର, ଜାନପଦେ,
ମହାଯାତ୍ରା ଲାଗି ତହୁଁ ହେଲେ ସଜ୍ଜୀଭୂତ
ଚାରି ଭାଇ କୃଷ୍ଣା ସହ; ଦରାଙ୍ଗୁ ଉତାରି
ରତ୍ନମୟ ଶିରସ୍ତ୍ରାଣ, ସାରସନ, ଭୂଷା,
ବସନ ଭାସ୍ୱର ଯେହ୍ନେ ଗଢ଼ା ସୌରକରେ,
ପିନ୍ଧିଲେ ବଲ୍‌କଳ ରାଯେ; ଭୀମ, ସବ୍ୟସାଚୀ,
ଯାମଳ ସୋଦର ବେନି, ପାଟମହାଦେଈ
ଦ୍ରୁପଦଦୁଲଣୀ ପଦ୍ମପଲାଶ-ଲୋଚନା।
ବଲ୍‌କଳୀ ରାଜାଙ୍କୁ ଦେଖି ସର୍ବେ ହୃଷ୍ଟମନେ
ସଜ ହେଲେ ସେହି କ୍ଷଣି ଆରଣ୍ୟକ-ବେଶେ,
ପୂର୍ବେ ଦ୍ୟୂତେ ପରାଜିତ ହୋଇ ପଞ୍ଚଭାଇ
କୃଷ୍ଣା ସଙ୍ଗେ ଯେଉଁ ବେଶେ ବାହାରିଣ୍ ଥିଲେ
ପୁରୁଁ, ପୁରନାରୀବୃନ୍ଦ ପୁଣି ସେହି ବେଶେ
ଦେଖି ସର୍ବେ ଜରଜର ହେଲେ ମହାଶୋକେ।
ମର୍ମଭେଦୀ ହାହାକାରେ ପୂରିଲା ନଗର,
ମାତ୍ର ଏ ବିଷାଦେ ଭାଗୀ ନୋହିଲେ ଯାତ୍ରିକେ,
ଥୋଇଥିଲେ ମନ ଯେଣୁ ମାୟା-ମୋହ-ପାରେ
ତାମସ-ପ୍ରପଞ୍ଚାତୀତ ଅନାମୟଧାମେ।
ଆଚରି ସେ କାଳୋଚିତ-ଯଜ୍ଞ ପାଣ୍ଡୁସୁତେ
ଶୋଭନା-ହସ୍ତିନା-ରୌପ୍ୟରସନା-ଜାହ୍ନବୀ-
ଜଳେ ଯଜ୍ଞାନଳ ତହୁଁ କଲେ ଜଳସାତ।
କୃଷ୍ଣା ସଙ୍ଗେ ପଞ୍ଚଭାଇ ବାହାରିଲେ ପୁରୁ,
ଦିଶିଲା ଅନାଥା ପ୍ରାୟ ହସ୍ତିନାନଗରୀ
ବିକଳା, ଯେସନ ରାହୁଗ୍ରସ୍ତ-ଶଶିକଳା।
ଚୌଦିଗେ ଉଠିଲା ମହାଶୋକର ଚହଳ;
ଉଦ୍‌ବେଳ ସାଗର ପ୍ରାୟେ ଲକ୍ଷ ଲକ୍ଷ ପ୍ରଜା
ଗଳଦଶ୍ରୁ ନେତ୍ରେ, ପୁଣି ଦୀନହୀନ ବେଶେ
ଉଚ୍ଚୈସ୍ୱରେ କାନ୍ଦି ସର୍ବେ ଚାଲିଲେ ଗହଣେ।
ପାଦଚାରୀ ବଲ୍‌କଳିନୀ ଦ୍ରୌପଦୀଙ୍କି ଦେଖି
ବକ୍ଷେ କର ମାରି ଉଚ୍ଚେ କାନ୍ଦିଲେ ଅଙ୍ଗନା
ଅଳିନ୍ଦେ, ଗବାକ୍ଷେ, ଦ୍ୱାରେ, ପ୍ରାସାଦଶିଖରେ।
ଚାରି ସହୋଦର ପୁଣି ଯାଜ୍ଞସେନୀ ମେଳେ
ଚାଲିଲେ ରାଜେନ୍ଦ୍ର ତେଜି କୁରୁ-ରାଜଧାନୀ।
ସ୍ନେହବଶେ ଶ୍ୱାନଟିଏ ଚାଲିଲା ପଶ୍ଚାତେ,
ଚାଲିଲେ ରାଜେନ୍ଦ୍ର ସହ ଲକ୍ଷ ଲକ୍ଷ ପ୍ରଜା,
ପାତ୍ର, ମନ୍ତ୍ରୀ, ସଭାସଦ, ନବର-ନିଯୋଗ।
ବହୁଦୂର ଯାଇ ଗୃହେ ବାହୁଡ଼ି ଯିବାକୁ
ରାଜାଙ୍କ ବିନୟ ବାଣୀ ଶୁଣି ପୁନଃ ପୁନଃ
'ଆଉ ଖଣ୍ଡେ' 'ଆଉ ଖଣ୍ଡେ' କହି କଲେ ଅଳି
ବାଷ୍ପାକୁଳ ନେତ୍ରେ, ବାଷ୍ପ-ଗଦ୍‌ଗଦବଚନେ;
ପୋଷିଥିଲେ ଆଶା ଅବା ଫେରିବେ ପାଣ୍ଡବେ
କୁରୁପୁରେ, ବୃଥା ଆଶା। ଫେରଇ କି କେବେ
ସିନ୍ଧୁଗାମୀ ସ୍ରୋତ, ଅବା ଗୁକ୍ଳିଣୀର ରଥ ?
ରବିଙ୍କି ଦିନାନ୍ତେ ଦେଖି ଅସ୍ତାଚଳ-ଚୂଡ଼େ
କୃପ ଯୁଯୁତ୍ସୁଙ୍କ ସଙ୍ଗେ ସର୍ବେ ବାହୁଡ଼ିଲେ
ମହାଶୋକେ, ରାଜଶୂନ୍ୟ ପୁରେ ପୁରବାସୀ।
ଉଲୁପୀ ନାଗେନ୍ଦ୍ର-ଜେମା ଜହ୍ନୁସୁତା-ସ୍ରୋତେ
ଝାସିଣ ପଶିଲେ ତହୁଁ ଅତଳ ପାତାଳେ। (୧)
ବାହୁଡ଼ିଲେ ପତିଶୋକେ ବିଧୁରା ସୁନ୍ଦରୀ
ଚିତ୍ରାଙ୍ଗଦା ମଣିପୁରେ ନିଜ ଦଳବଳ। (୨)

## [ ଦ୍ୱିତୀୟ ସର୍ଗ ]

ତେଜି ପ୍ରପଞ୍ଚର ମାୟା ତହୁଁ ପଞ୍ଚଭାଇ (୩)
ପାଞ୍ଚାଳୀ ସହିତେ ଆଗେ ଗଲେ ପୂର୍ବାଞ୍ଚଳେ
ତୀର୍ଥାଟନ-ମହାବ୍ରତ ମନାସି ମାନସେ,
ଏକମାତ୍ର ଧର୍ମୋନ୍ମୁଖ ହୃଦୟ ତାଙ୍କର,
ଆତ୍ମା ପରମାତ୍ମା ପ୍ରତି ନିରତେ ଧାବିତ।
ବିଶ୍ୱାସରେ ମହାବଳୀ, କ୍ଲେଶ ମଣି ସୁଖ
ଭ୍ରମିଲେ ଅସଂଖ୍ୟ ଗିରି, କାନ୍ତାର, କନ୍ଦରା,
ନଦ, ନଦୀ, ମହାରଣ୍ୟ ; ଅଗ୍ରେ ଯୁଧିଷ୍ଠିର
ଧର୍ମବୀର, ସତ୍ତ୍ୱଗୁଣେ ଅଗ୍ରଣୀ ଜଗତେ,
ବୟୋଜ୍ୟେଷ୍ଠ, ଗୁଣଜ୍ୟେଷ୍ଠ, ଶିଷ୍ଟ, ଶାନ୍ତମତି।
ତାଙ୍କ ପଛେ ଭୀମ, ଭୀମ ପଛେ ଧନଞ୍ଜୟ
ଧନୁଷ୍ପାଣି, ଚିର-ପୂର୍ଣ୍ଣ-ଦିବ୍ୟ-ତୂଣ-ଧାରୀ,
ଯେଣୁ ସେହି ସର୍ବଜୟୀ ଧନୁତୂଣମାୟା
ତୁଟି ନ ପାରିଣ ସଙ୍ଗେ ଆଣିଥିଲେ ବଳୀ,
ସେହି ଧନୁ, ସେ ତୂଣୀର ବୈରାଗ୍ୟ-ବିରୋଧୀ।
ଚାଲନ୍ତି ଫାଲ୍‌ଗୁନି ପଛେ ମାଦ୍ରୀସୁତ ବେନି,
ତାଙ୍କ ପଛେ ଯାଜ୍ଞସେନୀ ଗଜେନ୍ଦ୍ର-ଗାମିନୀ,
ରମଣୀସୀମନ୍ତ-ରେଖା ରାମା ମହୀତଳେ।
ସ୍ନେହଗୁଣେ ବଦ୍ଧ ଶ୍ୱାନ ଚାଲେ ସର୍ବ ପଛେ,
ମଥୁରା କଳୁଷ-ହରା ଜଗତୀରୁ ଯହିଁ (୪)

(୧) ଉଲୁପୀ – ନାଗକନ୍ୟା, ଅର୍ଜୁନପତ୍ନୀ। (୨) ଚିତ୍ରାଙ୍ଗଦା – ମଣିପୁର ଜେମା, ଅର୍ଜୁନପତ୍ନୀ। (୩) ପ୍ରପଞ୍ଚ – ସଂସାର। (୪) ଜଗତୀ – ଚନ୍ଦ୍ରଶାଳା।

ଦେଖୁଥିଲେ କୁତୂହଳେ ଯାଦବୀ ଯୁବତୀ,
ଘନ-ନୀଳଦ୍ୟୁତି ଚକ୍ରାବାକିନୀ ଯମୁନା,
ହେମ-ଭକ୍ତିମତୀ କି ସେ ଅବନୀର ବେଣୀ। (୧)
ପ୍ରୟାଗ, ପାବନ ଗଙ୍ଗା-ଯମୁନା ସଙ୍ଗମେ,
କଳ୍ପସ୍ଥାୟୀ କଳ୍ପବଟ ଛାୟାରେ ଶୀତଳ,
ପତିଙ୍କ କୁଶଳ-ଭିକ୍ଷା ପତିପ୍ରାଣା ସୀତା
କରିଥିଲେ ଯାର ମୂଳେ ବନଯାତ୍ରା-କାଳେ।
ହରଶୂଳଶିଖୋପରି ପୁରୀ ବାରାଣସୀ,
ହର-ଶୈଳୋପମ ଯହିଁ ତୁଙ୍ଗ ସୌଧପନ୍ତି
ଦେଖନ୍ତି ବିମ୍ବିତ ମୁଖ ଜାହ୍ନବୀ-ଦର୍ପଣେ; (୨)
ସରଯୂର ସ୍ରୋତେ ପୂତ ସାକେତ ନଗରୀ
ରଘୁକୁଳ-ରାଜଧାନୀ ଧନ୍ୟା ଧନ୍ୟ ଗୀତେ; (୩)
ବରେଣ୍ୟ ନୈମିଷାରଣ୍ୟ, ପର୍ଣ୍ଣାଶନ-ବ୍ରତୀ (୪)
ଯତୀନ୍ଦ୍ରେ ଅଧ୍ୟାତ୍ମବାଦୀ ଅବିରତେ ରତ
ଯହିଁ ଆଧ୍ୟାତ୍ମିକ ଯାଗେ, ହୃଦ ବେଦି ଯହିଁ,
ଆତ୍ମା ଯଜମାନ, ଶ୍ରଦ୍ଧା ପତ୍ନୀସ୍ୱରୂପିଣୀ,
ତପ ବହ୍ନି, କାମ ଆଜ୍ୟ, କ୍ରୋଧ ଯଜ୍ଞପଶୁ,
ଧୈର୍ଯ୍ୟ ଯୂପ, ତ୍ୟାଗ ହୋତା, ବଚନ ଉଦ୍ଗାତା,
ସୋମରସ ସୁମଧୁର ଭକ୍ତି ଅଧୋକ୍ଷଜେ।
ଗୟାପୁରୀ ପ୍ରତିଷ୍ଠିତ ଗୟାସୁର-ଶିରେ,
ଯହିଁ ବହେ ଫଲ୍ଗୁଅନ୍ତଃସଲିଳା ତଟିନୀ;
ରାଜଗିରି ବିରାଜିତ ଶତ ପ୍ରସ୍ରବଣେ, (୫)
ଜରାସନ୍ଧେ ବଧିଥିଲେ ଗିରିଦୁର୍ଗେ ଯହିଁ
ବାୟୁସୁତ ବୃକୋଦର କେଶବ କୌଶଳେ।
ମହାଶକ୍ତି ପୀଠ ପୂତ ଭାଗୀରଥୀତୀରେ,
ବିରାଜନ୍ତି ଯହିଁ ଦେବୀ ନୃମୁଣ୍ଡମାଳିନୀ; (୬)
ଲୌହିତ୍ୟା-ତରଙ୍ଗେ ଧୌତ ପ୍ରାଗ୍‌ଜ୍ୟୋତିଷପୁରୀ,
ଲଭିଛି ଅଭିଖ୍ୟା ଯେହୁ କାମାଖ୍ୟା-ପ୍ରସାଦେ, (୭)
ପାଣ୍ଡୁ ଜଳାରଣ୍ୟ ମଧ୍ୟେ କପିଳ-ଆଶ୍ରମ, (୮)
ମହର୍ଷିଙ୍କ ରୋଷାନଳେ ହୋଇ ଭସ୍ମୀଭୂତ
ମୁକତି ଲଭିଲେ ଯହିଁ ସଗରସନ୍ତତି
ଭଗୀରଥତପଫଳେ, ଅବନୀପ୍ରବଣା
ତ୍ରିଲୋକପାବନୀ ଗଙ୍ଗା ପାବନ-ପରଶେ;
ବର୍ଗଭୀମା-ଅଧିଷ୍ଠିତ ମହାସ୍ୱର୍ଗୋପମା,
ଇନ୍ଦ୍ରଚାପ-ଚାରୁ-ପୋତ-ପତାକା-ମାଳିନୀ,
ଗଙ୍ଗାମୁଖେ ପୋତଧାତ୍ରୀ ତାମ୍ରଲିପ୍ତି ପୁରୀ, (୯)
ବିପଣିବୀଥିକା ଯାର ସମୁଜ୍ଜ୍ୱଳ ସଦା
ଦ୍ୱୀପାନ୍ତରାଗତ-ମଣି-ମୌକ୍ତିକ-ପ୍ରବାଳେ;
ପଞ୍ଚାଳେ, କୋଶଳେ ପୁଣି ବିଦେହେ, ମଗଧେ,
ଅଙ୍ଗେ, ବଙ୍ଗେ, ଏହି ମତେ ନାନା ସ୍ଥାନେ ଭ୍ରମି,
ନାନା ତୀର୍ଥ ସେବି, ଶୂରେ ଆସିଣ ମିଳିଲେ
ଉତ୍କଳର ପ୍ରାଚ୍ୟ-ନୀର-ପ୍ରାଚୀର-ଆକୃତି, (୧୦)
ନୀଳ-ଫେନାକୁଳ-ତୁଙ୍ଗ-ତରଙ୍ଗ-ଭଙ୍ଗୁର,
ନୀଳାଚଳତଟେ, ଯହିଁ ଲୋଟେ ବାରାନିଧି (୧୧)
ଗମ୍ଭୀର ନିର୍ଘୋଷେ ଘୋଷି ବିଶ୍ୱ ଚରାଚରେ,
ଗର୍ଜଇ କି ନିଜ ବିଷଜ୍ୱାଳା ଅସମ୍ଭାଳେ
ଫଣୀନ୍ଦ୍ର ବାସୁକି ଅବା ଫଣାଶ୍ରେଣୀ ଟେକି!
ଅନନ୍ତ-ନୀଳିମାମୟ ସେ ଜଳକାନ୍ତାରେ (୧୨)
ଉଲ୍ଲୋଳ କଲ୍ଲୋଳଲୀଳା ହେରି କୁତୂହଳେ
ବୀରବୃନ୍ଦ ସର୍ବେ ହେଲେ ସ୍ତବଧ ବିସ୍ମୟେ।
ସହସା ତରଙ୍ଗ ଭେଦି ଉଠିଲେ ଅଗ୍ରତେ
ଦିବ୍ୟବପୁଷ୍ମନ୍ତ ଜ୍ୱାଳାମାଳାବିଭୂଷିତ
ଭାସ୍ୱର ପୁରୁଷ ଏକ ସାଗର ଉଭାସି,
ଯା ଦର୍ଶନେ ବେଳାଭୂମିଚାରୀ ମୃଗଯୂଥେ
ସଚକିତେ ମହାତ୍ରସ୍ତେ ପଳାଇଲେ ଦୂରେ।
ମଧ୍ୟମପାଣ୍ଡବେ ଚାହିଁ ସେ ଦିବ୍ୟପୁରୁଷ (୧୩)
ବୋଇଲେ, "ହେ ବୀର, ଚିହ୍ନିପାରିଲଟି ମୋତେ,
ଦହିଣ ଖାଣ୍ଡବବନ ବାସବପାଳିତ
ତୋଷି ମୋତେ ଲଭିଥିଲ ଦେବ ଦୈତ୍ୟ ନରେ
ଦୁର୍ଜ୍ଜୟ, ହେ ଜିଷ୍ଣୁ, ଏହି କୋଦଣ୍ଡ ଗାଣ୍ଡୀବ, (୧୪)
ଏ ଅକ୍ଷୟ ତୂଣଯୁଗ୍ମ, କର୍ଣ୍ଣରୂପେ ଯାହା
କର୍ଣ୍ଣଧାର ରୂପେ ତୁମ୍ଭେ ଧରି ବରଭୁଜେ
ପାଣ୍ଡବର ଆଶା-ତରୀ ପାରି କଲ ହେଳେ
ଅକୂଳ ଅତଳ କୁରୁସମରସାଗରେ,

(୧) ନୀଳ ଯମୁନା ଅବନୀର ବେଣୀ ପରି, ପୀତ ଚକ୍ରବାକମାଳା ସେହି ବେଣୀର ସୁବର୍ଣ୍ଣ ରଚନା ପରି। (୨) କାଶୀ ହରଶୂଳଶିଖା ଉପରେ ଅବସ୍ଥାପିତ ବୋଲି ପୌରାଣିକ କିମ୍ବଦନ୍ତୀ ଅଛି। (୩) ସାକେତ – ଅଯୋଧ୍ୟା, ରାମାୟଣରୂପୀ ଧନ୍ୟ ଗୀତଦ୍ୱାରା ଯାହା ଧନ୍ୟା ଅର୍ଥାତ୍ ପ୍ରତିଷ୍ଠିତା। (୪) ନୈମିଷାରଣ୍ୟ – ଆଧୁନିକ ନାମ ନିମଖାର। (୫) ରାଜଗିରି – ବେହାରର ଅନ୍ତର୍ଗତ। ଜରାସନ୍ଧର ଗଡ଼ ଏହିଠାରେ ଥିବାର କିମ୍ବଦନ୍ତୀ ଅଛି। (୬) କାଳୀଘାଟ – କଲିକତାର ନିକଟବର୍ତ୍ତୀ। (୭) ଲୌହିତ୍ୟା – ବ୍ରହ୍ମପୁତ୍ର। ପ୍ରାଗ୍‌ଜ୍ୟୋତିଷ – ଆସାମ, କାମାଖ୍ୟାଦେବୀଙ୍କ ମନ୍ଦିର ଏହି ପ୍ରଦେଶରେ ଅବସ୍ଥିତ। ଅଭିଖ୍ୟା-ଶୋଭା। (୮) ଗଙ୍ଗାସାଗର ଦ୍ୱୀପ। (୯) ତାମ୍ରଲିପ୍ତିର ଆଧୁନିକ ନାମ ତମଲୁଖ। ଏଠାରେ ବର୍ଗଭୀମା ଦେବୀଙ୍କ ମନ୍ଦିର ପ୍ରତିଷ୍ଠିତ। (୧୦) ଓଡ଼ିଶାର ପୂର୍ବଦିଗସ୍ଥ ଜଳପ୍ରାଚୀରରୂପୀ। (୧୧) ନୀଳାଚଳ – ଶ୍ରୀକ୍ଷେତ୍ର। (୧୨) କାନ୍ତାର – ଅରଣ୍ୟ। (୧୩) ଦିବ୍ୟପୁରୁଷ – ଦେବପୁରୁଷ। (୧୪) ଅଗ୍ନିଦେବ ଖାଣ୍ଡବଦହନ ସମୟରେ ଅର୍ଜୁନଙ୍କୁ ଗାଣ୍ଡିବଧନୁ ଏବଂ ଅକ୍ଷୟତୂଣ ଦେଇଥିଲେ।

ପ୍ରଚେତା ଆୟୁଧାଗାରୁଁ ଅଚ୍ୟୁତ-ଆଦେଶେ (୧)
ଆଣି ଦେଇଥିଲି ମୁହିଁ ଏହି ମହାଧନୁ
ତୃଣ ସଙ୍ଗେ ଯେଉଁ କାର୍ଯ୍ୟେ, ସାଙ୍ଗ ସେ ଭୂତଳେ,
ଏବେ, ମହାବାହୁ, ଆଉ ବହିବ କି ଲାଗି
କରେ ଏହା ? ଉଚିତ ତା ଦେବାର ଫେରାଇ,
ଫିଙ୍ଗିଦିଅ ପାରାବାରେ ତୃଣ ସଙ୍ଗେ ଧନୁ।''

ଅଗ୍ନିଙ୍କି ନମିଲେ ସର୍ବେ ପୟୋଧି-ପୁଳିନେ,
ଅଗ୍ରଜ ସଙ୍କେତେ ତହୁଁ ପାର୍ଥ ମହାମତି
ଫିଙ୍ଗିଲେ ସାଗରେ ଧନୁ ବେନି ତୂଣସହ,
ଆଦରେ ନୀରାମ୍ବୁସ୍ୱାମୀ ପ୍ରସାରି ଅମ୍ବରେ
ଉତ୍ତୁଙ୍ଗ-ତରଙ୍ଗ-ବାହୁ ନେଲେ ତା ତକ୍ଷଣେ,
ବୁଡ଼ିଗଲା ଜଳେ ସେହି ଆଭାମୟ ଧନୁ,
ମିଶିଯାଏ ମେଘେ ଯେହ୍ନେ ତ୍ରିବର୍ଣ୍ଣରଞ୍ଜିତ
ଶକ୍ରଚାପ, ତଡ଼ିଲ୍ଲତା-ଶିଞ୍ଜିନୀସଂଯୁତ।
ବିନୟେ ଅନଳଦେବେ ବିନୟଭୂଷଣ
ପୁଚ୍ଛିଲେ ପାଣ୍ଡବପତି କୃତାଞ୍ଜଳିପୁଟେ,
''ଭୋ ଦେବ, ଏ କେଉଁ ସ୍ଥଳୀ ? କି ଲାଗି ଏଠାବେ
ସିନ୍ଧୁ ଗର୍ଭେ ହୋଇଥିଲା ତୁମ୍ଭ ଆବିର୍ଭାବ ?''
ଉତ୍ତରିଲେ ଅଗ୍ନି, ''ଏହା ନୀଳାଚଳ ଧାମ,
ସୃଷ୍ଟି ଦିନୁ ଅପ୍ରସିଦ୍ଧ ଥିଲା ମହୀତଳେ,
ମୁଁ ଥାଏଁ ଗୁପତେ ଯେହ୍ନେ ଭସ୍ମ ଆବରଣେ।
ପ୍ରଭାସେ ଯେ ଦିନେ ହେଲା ଯଦୁବଂଶ କ୍ଷୟ,
ଚତୁର୍ଭୁଜ ରୂପ ପ୍ରଭୁ ଧରିଲେ ସେକାଳେ
ଯୋଗବଳେ ଯୋଗେଶ୍ୱର, ସାଙ୍ଗ ଦେଖି ଭବେ
ଭୂଭାରହରଣ ବ୍ରତ, ହେଲେ ପୁଲକିତ,
ଏକମାତ୍ର ନିଜ କୁଳେ ପ୍ରଦ୍ୟୁମ୍ନେ ନିରେଖି
ଜୀବିତ, ଭକତ ବାକ୍ୟ ଫଳାଇବା ଲାଗି
ପେଷିଲେ ଆୟୁଧ ତାର ନିଧନ ମନାସି,
ସଂହାରି ଶମ୍ବରରିପୁ, ନ ବାହୁଡ଼ି ଆଉ (୨)
ଶ୍ରୀକରେ ତାଙ୍କର ଚକ୍ର, ଅମ୍ବର ଉଭାସି,
ଦିଗପାଳେ, ବ୍ୟୋମଚରେ ହୋଇ ନମସ୍କୃତ,
ମହାବେଗେ ଆସିଲା ସେ ରତ୍ନାକର କୂଳୁଁ
ପୂର୍ବମୁଖେ, ହୀନପ୍ରଭ କରି ଦିନନାଥେ,
(ହୀନାଂଶୁ ତାଙ୍କରି ତେଜେ ସୁଧାଂଶୁ ଯେସନ)
ଏହି ଭଳି ଦୃଶ୍ୟ ବିଶ୍ୱେ ଦେଖିଥିଲେ ଥରେ
ତ୍ରେତ୍ରାଯୁଗେ ବିଶ୍ୱବାସୀ, ବିଶ୍ୱମ୍ଭରାସୁତା
ସୁନ୍ଦରୀ-ସୀମନ୍ତମଣୀ ସତୀଶିରୋମଣି
(ପୂତ ହେଲି ମୁହିଁ ଯାଙ୍କ ଶ୍ରୀଅଙ୍ଗ ପରଶେ (୩)
ଲଙ୍କାପୁରେ) ସୀତା ସଙ୍ଗେ ଯେବେ ରଘୁବୀର
ଆଯୋଧ୍ୟାକୁ ବିଜେ ହେଲେ ଉଜ୍ଜ୍ୱଳ ପୁଷ୍ପକେ
ନୀଳାମ୍ବରେ, ଦିଗ୍‌ବଳୟ ପ୍ଲାବି ପ୍ରଭାପୂରେ; (୪)
ବିଶ୍ୱେ ତେଜସାର ଚକ୍ର-ଆଲୋକେ ସେକାଳେ
ଆଲୋକିତ ହେଲା କ୍ଷଣେ ସୃଷ୍ଟିସୀମା ପାରେ
ଆଦିମ-ତମସଗର୍ଭ, ତେଜୋରୂପୀ ଯେତେ (୫)
ରବି, ଶଶୀ, ଗ୍ରହ, ତାରା, ମୁହିଁ ଆଦି କରି
ଅନ୍ଧ ହୋଇଗଲୁଁ ସର୍ବେ ସେହି ତେଜପୂରେ।
ସ୍ଫୁଲିଙ୍ଗ ତାଙ୍କରି ସିନା ମୁହିଁ ରାଜଋଷି,
ପ୍ରସରିଣ ଥିଲା ଆଗେ ଅଶରୀରୀ-ବାଣୀ
ଦେବଲୋକେ, କୃଷ୍ଣ କରୁଁ ଆସି ଚକ୍ରବର
ପଡ଼ିବ ଯେଠାବେ ତହିଁ ହେବ କଳିଯୁଗେ
ଭାଗଗ୍ରାହୀ-କେଶବର ଭାବୀ-ଅବତାର,
ପତିତପାବନବାନା ଉଡ଼ିବ ଭୂତଳେ;
ଅବତରି ଏହିଠାରେ ତେଜକୁଳପତି
ସୁଦର୍ଶନ ବିଶ୍ୱଦ୍ରୋହୀ-ଦନୁଜ-ଧର୍ଷଣ,
''ସିନ୍ଧୁଗର୍ଭେ ପ୍ରବେଶିଲେ ସଙ୍କୋଚି ସ୍ୱବପୁ,
ତଥାପି ଉତ୍‌କୂଳ ହୋଇ ବାରି ଅସମ୍ଭାଳେ
ପ୍ଲାବିଲା ଭୂଖଣ୍ଡ, ଖଣ୍ଡପ୍ରଳୟ ଆକାରେ,
ଘୋର ନାଦେ ଚରାଚରେ ଉପୁଜାଇ ତ୍ରାସ,
ମହାୟାସେ ପାଶୀ ତହୁଁ ଊର୍ମି-ପାଶଯୋଗେ
ଫେରାଇଲେ ନିଜ ରାଜ୍ୟେ, ରହିଗଲା ଯାହା,
ହ୍ରଦାକାରେ ପରିଣତ ବେନି ଦିଗେ ଏବେ
ନିମ୍ନଭୂମେ, ସର, ପୁଣି ଚିଲିକା ଆଖ୍ୟାତ। (୬)
ସେ ଦିନୁ, ହେ ପୁଣ୍ୟଶ୍ଲୋକ, ଲୋକେ ଏହି ସ୍ଥଳୀ
ସିନ୍ଧୁତୀରେ ବୋଲାଉଛି ଚକ୍ରତୀର୍ଥ ନାମେ, (୭)
ସଚେତନ ହରିହେତି ରହିବେ ସମ୍ପ୍ରତି (୮)
ପାଶିପାଶେ, ଅବତୀର୍ଣ୍ଣ ହେଲେ ବିଶ୍ୱମ୍ଭର,
ପୂର୍ବବିଧିମତେ ଯାଇ ଖଟିବେ ଶ୍ରୀପଦେ।
ଆସିଥିଲି ଖଟଣିରେ ଶ୍ରୀଚକ୍ର ଛାମୁରେ
ଆଜ ମୁହିଁ, ତେଣୁ ହେଲା ତୁମ୍ଭ ସଙ୍ଗେ ଭେଟ,
ଭାଗ୍ୟ ଫଳେ ତୁମ୍ଭେ ଆସି ମିଳିଲ ଏଠାବେ,
ପୁଣ୍ୟତମ ଏ ସୈକତ ବିଶ୍ୱେ-ଚରାଚରେ, (୯)

(୧) ପ୍ରଚେତା— ବରୁଣ, ଅଚ୍ୟୁତ-ଶ୍ରୀକୃଷ୍ଣ। (୨) ଶମ୍ବରରିପୁ— କାମଦେବ। (୩) ଲଙ୍କାରେ ସୀତାଦେବୀଙ୍କ ଅଗ୍ନିପରୀକ୍ଷା ଏହି ଉକ୍ତିର ଲକ୍ଷ୍ୟ। (୪) ପ୍ରଭାର ପ୍ଲାବନରେ ଚକ୍ରବାଳ ପ୍ଲାବିତ କରି। (୫) ଆଦିମ ତମସଗର୍ଭ— ଆଦିମ ଅନ୍ଧକାରର ଗହ୍ୱର। (୬) ପୁରୀର ଏକ ପାର୍ଶ୍ୱରେ ଚିଲିକା, ଅନ୍ୟ ପାର୍ଶ୍ୱରେ ସର ହ୍ରଦ ଅବସ୍ଥିତ। (୭) ଚକ୍ରତୀର୍ଥ— ପୁରୀସ୍ଥିତ ସ୍ୱର୍ଗଦ୍ୱାରର ଅଦୂରବର୍ତ୍ତୀ। (୮) ହରିହେତି— ବିଷ୍ଣୁଙ୍କର ଆୟୁଧ। (୯) ସୈକତ— ଶ୍ରୀକ୍ଷେତ୍ର ସିକତାମୟ।

ବାଛି ନେଇଛନ୍ତି ଯାହା ନିଜେ ଲୀଳାମୟ
ପୁଣି ମର୍ତ୍ତ୍ୟଲୀଳା ଲାଗି ଅଖିଳ ଭାରତେ;
ପର୍ଣ୍ଣଦଳେ ଶ୍ରେଷ୍ଠ ଯେହ୍ନେ ପ୍ରସୂନ ଲଳିତ,
ଶ୍ରେଷ୍ଠ ଏ ଉତ୍କଳଭୂମି ଗୁଣେ ଗରୀୟସୀ,
ଯାମ୍ୟେ ଯାର ଋଷିକୁଲ୍ୟା, କପିଶା ଉତ୍ତରେ, (୧)
ପଶ୍ଚିମେ ଭାର୍ଗବାଶ୍ରମ ମହେନ୍ଦ୍ରଶିଖରୀ,
ଚିରକୋଳାହଳମୟ ପୂର୍ବେ ପୟୋନିଧି,
ପୁଷ୍ପକୁଣ୍ଡେ ଶ୍ରେଷ୍ଠ ତାର କେଶର ଯେସନେ,
ଶ୍ରେଷ୍ଠ ଏ ନୀଳାଦ୍ରିଧାମ ସମଗ୍ର ଉତ୍କଳେ,
ନିବସନ୍ତି ନାନା ସ୍ଥାନେ ଦେବ ଦେବୀ ଯେତେ,
ଭାରତ, ଭାରତଖଣ୍ଡେ, ଆସି ଏ ପ୍ରଦେଶେ
ବିହରିବେ ଠାବେ ଠାବେ ନିଜ ରୁଚିମତେ,
ଠୁଳ ହେବେ ଅବଶେଷେ ପୁଣି ଏ ପୁଲିନେ,
ଅଖିଳ ଭାରତ-ତୀର୍ଥ-ଭ୍ରମଣ-ସୁକୃତ
ଲଭିବେ କଳିରେ ଲୋକେ ଏହି ସ୍ଥଳେ ଭ୍ରମି;
ମାନସୁଁ କଳୁଷ-ମଳ ଯିବ ଅପସରି,
ମୋ ଯୋଗେ ସ୍ୱର୍ଣ୍ଣର ଯଥା, ଏ ତୀର୍ଥସେବନେ
ସ୍ଫୁରିବ ଅମଳ ଜ୍ଞାନ, ଲଭି ପୂର୍ଣ୍ଣାହୁତି
ହୋମକୁଣ୍ଡେ ଜଳିଉଠେ ଯଥା ମୋର ଶିଖା।
ଶଙ୍ଖ, ଚକ୍ର, ଗଦା, ପଦ୍ମ ହୋଇ ପ୍ରତିଷ୍ଠିତ
ଚାରି ସ୍ଥଳେ, ବିରାଜିବ ଚାରି କ୍ଷେତ୍ରବର (୨)
ଏ ଉତ୍କଳ କଳେବରେ ଏବେ ଦେବାଦେଶେ;
ଆସିଲେଣି ସୁଦର୍ଶନ, ଶଙ୍ଖ ପଦ୍ମ ଗଦା
ରହିଛନ୍ତି ରତ୍ନାକର ମହାଦରେ ଯାହା,
ଦେବାଦେଶମତେ ମୁହିଁ ତାଙ୍କ ପାଶେ ଯାଇ,
ଆଣି, ହେ ପାଣ୍ଡବରାଣ, ନିହିବି ଉତ୍କଳେ;
ଇଚ୍ଛା ଯେବେ, ମୋର ସଙ୍ଗେ ଚାଲ, ମହାବାହୁ,
ଦେଖିବ ଅଶେଷ ତୀର୍ଥ ଗିରି ନଦ ନଦୀ।

ଦେବଙ୍କ ବଚନେ ସର୍ବେ ପ୍ରସନ୍ନ ମାନସେ
ଅବଗାହି ସିନ୍ଧୁଜଳେ ଉଦ୍ଦେଶ୍ୟେ ନମିଲେ
ଭାବି-ମର୍ତ୍ତ୍ୟବୈକୁଣ୍ଠସାଇଁ-ପଦ୍ମପାଦେ। (୩)
ଅହୋରାତ୍ର ରହି ତହିଁ, ଭାସିଲା ଯେକାଳେ
ଉଷାର ସୀମନ୍ତମଣି ତାରା ପାହାନ୍ତିଆ
ପ୍ରାଚୀକୂଳେ ଊର୍ମିଶିରେ (ଛାଡ଼ିଦିଏ ଯେବେ
ନିଜପଲ ମହିଷୀଙ୍କ ସିନ୍ଧୁତୀରବାସୀ,
ଚରିବାକୁ ବର୍ତ୍ମଶୂନ୍ୟ ବେଣାପୂର୍ଣ୍ଣ ପାଟେ
ପୁଣ୍ୟନୀରା ଭାର୍ଗବୀର) (୪) ନୀଳାଚଳ ତେଜି
ଚାଲିଲେ ମହେନ୍ଦ୍ର ମୁଖେ ଅନଳ ସହିତେ।

## [ ତୃତୀୟ ସର୍ଗ ]

ହେମଗୌରବପୁ ଯୁବା ବିପ୍ରବେଶଧାରୀ
ଅଗ୍ନି ସଙ୍ଗେ ପଞ୍ଚଭାଇ ବାୟୁକୋଣେ ଯାଇ
ମହେନ୍ଦ୍ର କାନ୍ତାର ପଥେ, ମିଳିଲେ ବହନ (୫)
କଲ୍ଲୋଳିନୀ କୂଳେଶ୍ୱରୀ ମହାନଦୀ କୂଳେ;
ଗଗନପରଶୀ ବେନି ଦିଗେ ତୁଙ୍ଗଭୃଗୁ–
ସଙ୍କଟେ ସଙ୍କୋଚି ବପୁ, ବାହାରଇ ଯହିଁ
ପୁଣି ପୂର୍ବାକାରେ ସ୍ରୋତ ପୂର୍ବସିନ୍ଧୁଗାମୀ (୬)
ବିଜନ ଭୀଷଣ ସ୍ଥଳୀ, ବନଗଜବ୍ରଜ–
କଣ୍ଡୂଳ କପୋଳ ପିଣ୍ଡ ଘର୍ଷଣେ କମ୍ପିତ
ଦ୍ରୁମାବଳୀ ଦେହୁ ଯହିଁ ଝରଇ ପ୍ରବାହେ
ସୁରଭି ଅରଣ୍ୟପୁଷ୍ପ ପୁଞ୍ଜ ପୁଞ୍ଜ ହୋଇ,
ବନଦେବୀଙ୍କର କି ସେ ଅର୍ଘ୍ୟ-ଲାଜାଞ୍ଜଳି ? (୭)
ଦିନ ଥାଉଁ ଥାଉଁ ତହିଁ ମହାଶୈଳଛାୟା
ବ୍ୟାପି ଜଳେ, ସ୍ଥଳେ, ନଦୀ ପୁଳିନେ, କାନନେ,
ଉପୁଜାଏ ମନେ ସନ୍ଧ୍ୟା-ଆଗମର ଭ୍ରମ,
ତୁଟଇ ସେ ଭ୍ରମ ଦେଖି ଦୂରେ ପୃଷ୍ଠଭାଗେ
(ଅସୁଖୀର, ଆହା, ପୂର୍ବସୁଖସ୍ମୃତି ପରି।)
ଅସ୍ତାତପେ ଉଦ୍ଭାସିତ ତୁଙ୍ଗ ଶୃଙ୍ଗାବଳୀ; (୮)

(୧) ଯାମ୍ୟ – ଦକ୍ଷିଣଦିଗ। କପିଶା – ସୁବର୍ଣ୍ଣରେଖା। (୨) ପୁରୀ ଶଙ୍ଖକ୍ଷେତ୍ର, କୋଣାର୍କ ପଦ୍ମକ୍ଷେତ୍ର, ଭୁବନେଶ୍ୱର ଚକ୍ରକ୍ଷେତ୍ର, ଯାଜପୁର ଗଦାକ୍ଷେତ୍ର। (୩) ମର୍ତ୍ତ୍ୟବୈକୁଣ୍ଠ – ଶ୍ରୀକ୍ଷେତ୍ର। (୪) ଭାର୍ଗବୀ – ଶ୍ରୀକ୍ଷେତ୍ରର ଅଦୂରବାହିନୀ ନଦୀ। ପୂର୍ବକାଳରେ ଏହାର ତୀର ଦିଗନ୍ତବ୍ୟାପୀ ବେଣାପାଟରେ ପରିପୂର୍ଣ୍ଣ ଥିଲା। (୫) ମହେନ୍ଦ୍ର କାନ୍ତାର – ଓଡ଼ିଶା ଗଡ଼ଜାତର ମହାରଣ୍ୟ। (୬) ସାତକୋଶିଆ ଗଣ୍ଡର ପୂର୍ବସୀମା ବଡ଼ମୂଳ ଘାଟି ଦଶପଲ୍ଲା ରାଜ୍ୟର ଅନ୍ତର୍ଗତ। ସାତକୋଶିଆ ଗଣ୍ଡ ଅଂଶତଃ ଦଶପଲ୍ଲାରେ ଏବଂ ଅଂଶତଃ ବୌଦରେ ଅବସ୍ଥିତ। ଏପରି 'ଭୀମକାନ୍ତ' ଦୃଶ୍ୟ ଉତ୍କଳରେ ବିରଳ। ଏଠାରେ ମହାନଦୀର ଶଯ୍ୟା ଉଭୟପାର୍ଶ୍ୱସ୍ଥିତ ପର୍ବତମାଳାଦ୍ୱାରା ଅତ୍ୟନ୍ତ ସଙ୍କୁଚିତ। (୭) ଲାଜାଞ୍ଜଳି – ଖଇର ଅଞ୍ଜଳି। (୮) ପଥିକର ପୃଷ୍ଠଭାଗରେ ଦୂରସ୍ଥିତ ଅସ୍ତକରୋଜ୍ଜ୍ୱଳ ଶୃଙ୍ଗଦର୍ଶନ ଏହିତ ଅସୁଖୀ ବ୍ୟକ୍ତିର ପୂର୍ବସୁଖସ୍ମୃତିର ଉପମା।

ପର୍ଣ୍ଣ-ଶେଯେ ତହିଁ ନିଶି ଯାପି ବଟମୂଳେ
(ଯେ ନାମେ ଅଦ୍ୟାପି ସ୍ଥଳୀ ବୋଲାଏ ଜଗତେ) (୧)
ପଶିଲେ ଯାତ୍ରିଏ ସେହି ବିକଟ ସଂକଟେ
ଛାୟାମୟ, ଅନୁକ୍ଷଣ ପୂର୍ଣ୍ଣ ଝିଲ୍ଲିରବେ,
କୁହେଳୀରେ ନୀଳବର୍ଣ୍ଣ ଭୃଗୁମାନ ଗିରି (୨)
ଧାଡ଼ି ହୋଇ ବେନି ତୀରେ, ଏକ ପରେ ଏକ
ଶିଖା ତୋଳି କଳନ୍ତି କି ଗଗନର ସୀମା ?
ଦିଗ୍‌ବାରଣଶୁଣ୍ଡାକାରେ କାହିଁ ଅବା ନୀରେ
ମିଶିଛି ତିର୍ଯ୍ୟକେ ଆସି ଶ୍ୟାମ ଶୈଳନାସି, (୩)
ଛାୟାଲୋକେ ଶବଳିତ ହୋଇ ଠାବେ ଠାବେ;
କାହିଁ କଳକଳ ରବେ ଗିରି-ନିର୍ଝରିଣୀ
(ସୃଷ୍ଟିକାଳୁଁ ପଡ଼ି ନାହିଁ ସୌରକର ଯହିଁ)
ସୁଚିକ୍କଣ କୃଷ୍ଣଶିଳା ସୋପାନ ଶ୍ରେଣୀରେ
ତମୋମୟ କନ୍ଦରାରୁ ଆସଇ ଓହ୍ଲାଇ
ଅପ୍ରଗଲ୍‌ଭେ, ଅପ୍ରଗଲ୍‌ଭେ ଦୀନ ସାଧୁ ଯଥା
ସାଧେ ପରହିତ ହୋଇ ବୀତସ୍ପୃହ ଯଶେ।
ନିବିଡ଼-କୀଚକକୁଞ୍ଜେ ଭିନ୍ନାଞ୍ଜନପ୍ରଭ—
ତିମିରେ ଆଚ୍ଛନ୍ନ ମହାଘୋର ଶୈଳ ଖୋଲେ (୪)
ଲୁଚି ଏକାକିନୀ କାହିଁ ଝୁରଇ କରୁଣେ
କୁରରୀ, କି ଦୁଃଖେ ତାହା ଜାଣେ ସେ ଦୁଃଖିନୀ;
ଶୁଭଯାଏ ଶୈଳ ତଟେ ପରେ ପରେ ଉଭା
ବନଦେବୀ ସୌଧାକୃତି ବନସ୍ପତିଶାଖେ
ପୂରି ସେ ବିଜନ ବୀଣାଜିଣା କଣ୍ଠରବେ
ରାବୁଛନ୍ତି ଅଷ୍ଟକାଳେ କଷ୍ଟଫେଡ଼ ଶୁଆ, (୫)
ନଦୀକୂଳବନ୍ଧୁ, ଶ୍ୟାମା, ସାରୀ, ଚମ୍ପାପୁଏ। (୬)
ଯାଉଁ ଯାଉଁ ସେହି ରମ୍ୟ ଭୀଷଣ ସଙ୍କଟେ
ବିସ୍ମୟେ ଉତ୍‌ଫୁଲ୍ଲ ନେତ୍ର ପାଣ୍ଡୁ ପୁତ୍ରେ ଦେଖି,

ଦେବ ବୈଶ୍ୱାନର ତହୁଁ କହିଲେ ସସ୍ମିତେ,
"ହେ ରାଜନ, ଦେଖ ଏଥି ବହନ୍ତି କେସନେ
ମହାନଦୀ ନାମେ ପୂର୍ବସାଗରଗାମିନୀ
ହରମୌଳିମାଳା ଦେବୀ ତ୍ରିସ୍ରୋତା ଜାହ୍ନବୀ,
ସୁକାନ୍ତି-ମହର୍ଷି-ତପେ ପତିତପାବନୀ (୭)
ତୁଷ୍ଟ ହୋଇ ଏହି ମୁଖେ ଆସିଲେ ଯେ କାଳେ,
ଅର୍ଦ୍ଧପଥେ ତାଙ୍କ ଗତି ରୋଧିଲେ ଏଠାବେ
ନୀରନ୍ଧ୍ର-ପ୍ରାଚୀରାକୃତି ଏହି ମହାଗିରି,
ତହୁଁ କୁଳିଶୀଙ୍କି ଋଷି ତୋଷି ତପୋବଳେ
ଏ ବର୍ତ୍ମ ଛେଦିବା ଲାଗି କଲେ ଅନୁରୋଧ,
ବଜ୍ରକରେ ଅବତରି ଏହି ଶୈଳ ତୂଳେ
ଛେଦି ଏ ଶଇଳ ବକ୍ତ୍ରୀ ରଚିଲେ କୌଶଳେ
ଉତ୍କଳର ମୁକ୍ତିଦ୍ୱାରରୂପୀ ଏ ତୋରଣ
ସପ୍ତକ୍ରୋଶବ୍ୟାପୀ, ଶୈଳକୁଞ୍ଜେ ଅନ୍ଧାରିତ,
ଛିନ୍ନ-ଶିଳାପୁଞ୍ଜ ଯାର-ବିଷମି ଏକାଳେ
ନଦି-ଶଯ୍ୟା ଉପୁଜାନ୍ତି ଅସଂଖ୍ୟ ପ୍ରପାତ (୮)
ଠାବେ ଠାବେ, କଳରବେ ପୂରାଇ ଅଟବୀ;
ମହେନ୍ଦ୍ରର ଅଧିଷ୍ଠାନ ଦିନୁ ଏ ଶିଖରୀ
ବୋଲାଏ ମହେନ୍ଦ୍ର ନାମେ କୁଳାଚଳ କୁଳେ, (୯)
ପରମ ପବିତ୍ର ଗିରି, ସେବନ୍ତି ଆଦରେ
ଦେବ ଋଷି ସିଦ୍ଧେ, ଯାର ଶୃଙ୍ଗ ଅଗଣିତ,
ମେଘାସନେ ମେଘାସନ ମଘବାବାଞ୍ଛିତ (୧୦)
ସୁଚାରୁଚ୍ଚପଳା ଲାସ୍ୟେ ନିରତେ ଭାସ୍ୱର,
ନିରତେ ମୁଖର କେକିକୁଳକେକାରବେ;
ପୂତ-ବୈତରଣୀସ୍ରୋତ ପ୍ରଭବ ଗୋନାସା, (୧୧)
ଋଷିସଭା ମଧ୍ୟେ ଯହିଁ ଭାର୍ଗବ ମୁଖରୁ
ଝରେ ପୂତତର ପୁଣ୍ୟଶ୍ଳୋକ କଥାମୃତ;

(୧) ବଡ଼ମୂଳ ଘାଟି ସାତକୋଶିଆ ଗଣ୍ଡର ତୋରଣ ସ୍ୱରୂପ। ଏହିଠାରୁ ମହାନଦୀ ପୁନର୍ବାର ପୂର୍ବ ପ୍ରଶସ୍ତତା ଲଭିଅଛି। (୨) ଭୃଗୁମାନ– ଅତଟଯୁକ୍ତ। (୩) ପର୍ବତର ନାସିକାକୃତି କୋଟୀ। ପର୍ବତନାସି ଦୂରରୁ ବିରାଟ ହସ୍ତିଶୁଣ୍ଡ ପରି ଦିଶେ। (୪) ଭିନ୍ନାଞ୍ଜନପ୍ରଭ ତିମିର– ଦଳିତକଜ୍ଜ୍ୱଳ ପରି କୃଷ୍ଣବର୍ଣ୍ଣ ଅନ୍ଧକାର। (୫) କଷ୍ଟଫେଡ଼– ମଧୁରନିନାଦୀ ବନପକ୍ଷିବିଶେଷ। ବଙ୍ଗୀୟ ନାମ 'ବଉକଥାକଓ'। (୬) ନଦୀକୂଳବନ୍ଧୁ– ପକ୍ଷିବିଶେଷ। ଚମ୍ପାପୁଅ– ପକ୍ଷିବିଶେଷ। (୭) ସୁକାନ୍ତି– ସୁକାନ୍ତି ଋଷିଙ୍କ ତପଃ ପ୍ରଭାବରେ ଗଙ୍ଗା ମହାନଦୀରୂପରେ ମଧ୍ୟଭାରତବର୍ଷରୁ ଉତ୍କଳକୁ ଆସିଥିବାର କିମ୍ବଦନ୍ତୀ ଅଛି। (୮) ସାତକୋଶିଆର ପଶ୍ଚିମ ଦିଗରେ ମହାନଦୀର ଶଯ୍ୟା ବିଷମପୂର୍ଣ୍ଣ ପ୍ରସ୍ତରମୟ ହେବାରୁ ସ୍ରୋତରେ ନୌଚାଳନ ନିତାନ୍ତ ବିପଦସଂକୁଳ। (୯) ମହେନ୍ଦ୍ର– ସପ୍ତକୁଳାଚଳର ଅନ୍ୟତର। (୧୦) ମେଘାସନଶୃଙ୍ଗ ମୟୂରଭଞ୍ଜରେ ଅବସ୍ଥିତ। ସ୍ୱଚ୍ଛନୀରା ସାଳନ୍ଦୀ ଏହି ପର୍ବତରୁ ନିଃସୃତ। (୧୧) ଗୋନାସା– କେନ୍ଦୁଝରରେ ଅବସ୍ଥିତ। ବୈତରଣୀର ପ୍ରଭବସ୍ଥାନ। ଏହିଠାରେ ପର୍ବତ ଦେହରେ ଦେବନାଗରାକ୍ଷରରେ 'ଆଦ୍ୟ-ବୈତରଣୀ' ଏହି ଶବ୍ଦ ଅଙ୍କିତ ଅଛି। ଏହି ପର୍ବତର ପାଦଦେଶରେ 'ଋଷିସଭା' ନାମକ ପ୍ରସ୍ତରମୟୀ ସ୍ଥଳୀ ବୈତରଣୀର ସ୍ରୋତଦ୍ୱାରା ଧୌତ ହେଉଅଛି। ଏହି ନିବିଡ଼ ପର୍ବତାକୀର୍ଣ୍ଣ ସ୍ଥଳୀରେ ଭଗବାନ୍ ଗୋନାସିକେଶ୍ୱରଙ୍କ ଦେଉଳ ଅବସ୍ଥିତ। ଦେଉଳର ପାଦବାହିନୀ ବୈତରଣୀ କୂଳରେ ଯୋଡ଼ାଏ ବିରାଟ ଚମ୍ପକ ବୃକ୍ଷ ଅଛି। ସେପରି ଚମ୍ପକବୃକ୍ଷ ଓଡ଼ିଶାର ଅନ୍ୟତ୍ର ଦୁର୍ଲଭ। ଭଗବାନ୍ ଭାର୍ଗବଙ୍କ ଆଶ୍ରମ ଏହିଠାରେ ଥିବାର କିମ୍ବଦନ୍ତୀ ଶୁଣାଯାଏ।

ଗିରି ମାଲ୍ୟବନ୍ତ ଗିରିମାଳେ ମଧ୍ୟମଣି, (୧)
ସ୍କନ୍ଧେ ଶୁଭ୍ର-ଝରନୀର-ଉତ୍ତରୀୟଧାରୀ;
ମୈନାକ ପିନାକପାଣିପ୍ରିୟା ପ୍ରିୟସ୍ଥଳୀ; (୨)
ଝର-ଉପବୀତଧର, କପର୍ଦ୍ଦିସେବିତ
କପିଳାସ ଅଭ୍ରଗର୍ଭ ଅଭ୍ରଂକଷ ଗିରି, (୩)
ପଞ୍ଚଧାର ଜଳଦର କେଳିମଞ୍ଚରୂପୀ (୪)
କେତକନିକୁଞ୍ଜେ ଯାର ଝରଇ ଅଦୂରେ
ତପ୍ତ ପୂତ ପ୍ରସ୍ରବଣ ରୁଦ୍ର-ଅଧିଷ୍ଠାନେ;
ଏ ଆଦି ବିଶାଳ ଶୃଙ୍ଗକୁଳେ ବିଭ୍ରାଜିତ
ଉତ୍କଳ-କଳିଙ୍ଗବପୁ ମଣ୍ଡିଛି ଶିଖରୀ,
ମଧ୍ୟେ ଦ୍ୱିଖଣ୍ଡିତ ହୋଇ ଏହି ଦେବଖାତେ।
ଅଗ୍ନିଙ୍କ ବଚନେ ସର୍ବେ ସେହି ପୂତ ନୀରେ
ଅବଗାହି ଭକ୍ତିଭାବେ ଦେଲେ ଜଳାଞ୍ଜଳି
ପିତୃଲୋକେ, ସେ ବିକଟ ସଙ୍କଟୁ ବାହାରି
ଚାଲିଲେ ଗନ୍ତବ୍ୟପଥେ ପଶ୍ଚିମାଶାମୁଖେ,
ଦେଖିଲେ କୌତୁକେ ପାନ୍ଥେ ସେ କାନ୍ତାରପଥେ
ଅନନ୍ତ-ବୈଚିତ୍ର୍ୟମୟୀ ଅରଣ୍ୟ-ପ୍ରକୃତି,
କି ଅବା ସେ ମାର୍ଗରେଖା ଗୈରିକେ ଅରୁଣ
ସୀମନ୍ତେ ସିନ୍ଦୂରରେଖା ବନଲକ୍ଷ୍ମୀଙ୍କର ?
କାହିଁ ଊର୍ଦ୍ଧ୍ୱେ ଉଠି ମାର୍ଗ ମିଶିଛି ଆକାଶେ,
(ଯହୁଁ ଚକ୍ରାକାରେ ଦିଶେ ବନାବୃତ ଧରା
ଚୌଦିଗେ, ବାରିଧି ପ୍ରାୟେ ଦିଗନ୍ତ-ବିସ୍ତାର।)
କାହିଁ ଅବା ତଳେ ଯାଇ ମିଶିଛି ପାତାଳେ;
ଏହି ରୂପେ ଯାଉଁ ଯାଉଁ ନାନା ଦୃଶ୍ୟରାଜି
ପାନ୍ଥଙ୍କର ପଥେ ହେଲା ନୟନ-ଅତିଥି,
ନୀଳବନସ୍ଥଳୀ ମଧ୍ୟେ ଦୂରପ୍ରସାରିତ
ସୌରକରୋଭାସୀ ଶୁଭ୍ର ନଦୀବାଲିରେଖା;
ସ୍ନିଗ୍ଧଛାୟା ଦ୍ରୁମବତୀ ଭୀମ ମହାଟବୀ,
ଆବରିଛି ମହୀନଭଃ ପଲ୍ଲବଗହଳେ,
ଶୁଭି ନାହିଁ କେବେ ଯାର ନିସ୍ତବ୍ଧ ଗରଭେ
ସୃଷ୍ଟିଦିନୁ କାଷ୍ଠଜୀବୀ-କୁଠାର ଶବଦ;
କାହିଁ ମୁଖରିତ ସ୍ଥଳୀ ଶ୍ୱାପଦ ନିର୍ଘୋଷେ,
ପ୍ରତିଘୋଷେ ପ୍ରତିବାଣୀ ଦିଅଇ ଯା ଶୁଣି
ପ୍ରତିଧ୍ୱନି ଗିରିଗୁହାକ୍ରୋଡ଼ପ୍ରଣୟିନୀ;
ଶିଳାଶଯ୍ୟାପ୍ରବାହିନୀ ଶୈଳସ୍ରୋତସ୍ୱତୀ,
ଉପଳେ ସ୍ଖଳିତ ହୋଇ ଯାର ବାରିଧାରା
ମିଶାଏ ଝର୍ଝର ରବ ଘୋର ଝିଲ୍ଲିରବେ;
ପ୍ରପାତ, ମଣ୍ଡିତ ଇନ୍ଦ୍ରକୋଦଣ୍ଡ-କିରୀଟେ,
ବାତେ ଫରଫର ରୂପାଜରିର ପାଗୁଡ଼ା –
ପରାୟେ ଯା ଶୋହେ ପର୍ଣ୍ଣ ଶ୍ୟାମଶୈଳଦେହେ,
ଭୃଗୁରୁ ଭୃଗୁକୁ ଢେଙ୍କି ଗମ୍ଭୀର ଗର୍ଜ୍ଜନେ;
ଗିରି ଦରପଣରୂପୀ ଗିରି ପାଦଦେଶେ
ସ୍ୱଚ୍ଛହ୍ରଦ, ଅଳଙ୍କୃତ ଫୁଲ୍ଲ-କୋକନଦେ,
ସ୍ନିଗ୍ଧଗନ୍ଧ ସୌଗନ୍ଧିକେ, କୁମୁଦେ, କହ୍ଲାରେ,
ସରାଳି, ଗାଙ୍ଗୋଇ, ହଂସ, କୋକ, ପାଣିକୁଆ,
ଆଦି ଜଳବିହଙ୍ଗମେ ସଦା ଝଙ୍କାରିତ,
ଶଙ୍କାହୀନେ ଯୂଥେ ଯୂଥେ ଚରନ୍ତି ଯା ତୀରେ
ଶୃଙ୍ଗଧର କୃଷ୍ଣସାର ସଙ୍ଗେ କୁରଙ୍ଗିନୀ;
ଧରଣୀସୀମାନ୍ତସେତୁ ସମ ଟଙ୍କଭୂମି, (୫)
ଦିଗନ୍ତେ ଶ୍ୟାମାୟମାନ ବିଶାଳ ଆଭୋଗେ,
ଦନ୍ତୁରରେଖାରେ ଯାର ପୃଷ୍ଠେ ଦିଗପଟେ
ତୋଳିଛନ୍ତି ନୀଳଶିଖା ଦୂରଗିରିମାଳା
ଗଜାବଳଦର ଭ୍ରମ ଚିତ୍ତେ ଉପୁଜାଇ, (୬)
କାହିଁ ଅବା ଶିଶୁଶୈଳ ଆଢ଼ରେ ଉଢ଼ାଳେ
ପୃଷ୍ଠେ ସୁବିଶାଳ ଗିରି, ଜୀବନେ ଯେସନ
ଉପସ୍ଥିତ ଦୁଃଖ, ଆହା, ଆଢ଼ରେ ନୟନୁ
ଭାବି-ଘୋରତର-ଦୁଃଖ-କରାଳ ମୂରତି;
ଝୁଣା ଲାଗି ହତ ହୋଇ ପୁଳିନ୍ଦକୁଠାରେ (୭)

(୧) ମାଲ୍ୟବନ୍ତ – ଲହଡ଼ାର ମାଲ୍ୟଗିରି। ଏହାର ବିଶାଳ ନୀଳ ଦେହରେ ଶୁଭ୍ର ନାରାୟଣ ଦୂରରୁ ଅତି ମନୋହର ଦିଶେ। ଏ ମାଲ୍ୟବନ୍ତ ରାମାୟଣର ମାଲ୍ୟବନ୍ତ ନୁହେଁ। ଆଧୁନିକ ରାଜନୈତିକ ଓଡ଼ିଶା ମଧ୍ୟରେ ମାଲ୍ୟଗିରି ସବୁଠାରୁ ଉଚ୍ଚ। (୨) ମୈନାକ – ରଣପୁର ଅନ୍ତର୍ଗତ ଦୁର୍ଗାଦେବୀ-ଅଧିଷ୍ଠିତ ପର୍ବତ। ରଣପୁରର ରାଜଧାନୀ ଏହି ପର୍ବତର ପାଦଦେଶରେ ଅବସ୍ଥିତ। (୩) କପିଳାସ – ଢେଙ୍କାନାଳର ଅନ୍ତର୍ଗତ। ଝରଣା ଏବଂ ଅଭ୍ର ସକାଶେ ଏହା ପ୍ରସିଦ୍ଧ। ଓଡ଼ିଶାର ଏହା ଗୋଟିଏ ପ୍ରସିଦ୍ଧ ଶିବକ୍ଷେତ୍ର। (୪) ପଞ୍ଚଧାର – ଆଠମଲ୍ଲିକ ରାଜ୍ୟର ଅନ୍ତର୍ଗତ। ଏହାର ଅଦୂରରେ 'ଦେଉଳଝର' ନାମକ ସୁପ୍ରସିଦ୍ଧ ତପ୍ତପ୍ରସ୍ରବଣ। ଗଡ଼ଜାତ ମଧ୍ୟରେ ଏହା ଗୋଟିଏ ଶିବକ୍ଷେତ୍ରରୂପେ ପ୍ରତିଷ୍ଠିତ। ଆଠମଲ୍ଲିକାଧୀଶ୍ୱର ମହାରାଜ ଶ୍ରୀ ମହେନ୍ଦ୍ର ଦେଓଙ୍କ ପୂର୍ବପୁରୁଷମାନେ ଏଠାରେ ଅନେକ କାର୍ଯ୍ୟ ସ୍ଥାପନ କରିଥିଲେ। (୫) ଟଙ୍କଭୂମି – ଟାଙ୍ଗି। ଶୁଭ୍ରଶ୍ୟାମଳ ଟାଙ୍ଗି ଦୂରରୁ ଦୀର୍ଘସେତୁ ପରି ଦିଶେ। ଖୋର୍ଦ୍ଧା ଅଞ୍ଚଳରେ ଏପରି ଅନେକ ଟାଙ୍ଗି ଦେଖାଯାଏ। (୬) ଗଜାବଳଦ – ମେଘାଳୁଗ। ବର୍ଷାର ଆଗମସୂଚକ ଦିଗ୍‌ବଳୟଭେଦୀ ବୃକ୍ଷାକାର ନୀଳମେଘ। (୭) ପୁଳିନ୍ଦ – ବନ୍ୟଜାତି। ଝୁଣା ପ୍ରାପ୍ତି ନିମନ୍ତେ କନ୍ଧ ଭୂଇଆଁ ପ୍ରଭୃତି ଜାତିମାନେ ଶାଳତରୁର ମୂଳଦେଶରେ ଚକ୍ରାକାରରେ ତ୍ୱକ୍ କାଟି ଦେଇ ଅଗ୍ନି ଜାଳିଦିଅନ୍ତି। ଏହି ସାମାନ୍ୟ ଉପାୟଦ୍ୱାରା ବୃହତ୍ ଶାଳଗଛମାନ ଅତି ଅଳ୍ପ ସମୟରେ ଝାଉଁଳି ମରିଯାନ୍ତି। ମହାରଣ୍ୟମାନଙ୍କରେ ଏହିପରି ମୃତ ଶାଳଗଛ ଅନେକ ଦେଖାଯାଏ।

ଦୀନହୀନ ବେଶେ କାହିଁ ଶୈଳ ତଟେ ଉଭା
ସୁବିଶାଳ ଶାଳତରୁ କଙ୍କାଳର ମାଳା;
ବାତେ ତରଙ୍ଗିତ ଶସ୍ୟ କେଦାର ଶ୍ୟାମଳ,
ମଧ୍ୟେ ଶୋହେ ମଞ୍ଚ, ଯହିଁ ଜଗି ନିଶିଯୋଗେ
ଶାଳିଗୋପେ, (୧) ଜରଜର ନିଦାରୁଣ ଶୀତେ,
ବରାହ, ଶମ୍ବର, କରୀ, ଆଦି ଶସ୍ୟାହାରୀ
ଜୀବଙ୍କୁ ତଡ଼ନ୍ତି କ୍ଷେତ୍ରୁଁ ବିକଟ-କୁହାଟେ;
ସଶର-କମାଣଧର କାହିଁ ଗୋପଶିଶୁ
ଜଗିଛନ୍ତି ଧେନୁପଳ ବିଜନ-ପ୍ରାନ୍ତରେ;
କାହିଁ ଶସ୍ୟ କାଟୁଁ କାଟୁଁ କ୍ଷେତ୍ରେ କୃଷୀବଳେ
ଭାଲେ କର ଦେଇ ଦୂରୁଁ ଦେଖନ୍ତି କୌତୁକେ
ମୁଣ୍ଡାଇ ଇନ୍ଧନବୋଝ କାହିଁ ଅବା ବନୁ
ଗୁଞ୍ଜାମାଳେ ବିମଣ୍ଡିତା କିରାତସୁନ୍ଦରୀ (୨)
ଆସୁଛନ୍ତି ଦଳେ ଦଳେ ଆଳାପି ମଧୁରେ;
ଏହି ରୂପେ ନାନା ଦେଶ, ବନ, ଜନପଦ–
ତୀର୍ଥାଶ୍ରମଗିରିପୂର୍ଣ୍ଣ ମହାନଦୀଦ୍ରୋଣି (୩)
କ୍ରମେ କ୍ରମେ ଅତିକ୍ରମି, ପ୍ରବେଶିଲେ ବୀରେ
ଦକ୍ଷିଣାପଥର ଦ୍ୱାରଦେହଳୀରୂପିଣୀ
ମାଳଭୂମି, ତିନି ମହାସ୍ରୋତର ପ୍ରସୂତି, (୪)
ଝର ପ୍ରସ୍ରବଣେ ପୂର୍ଣ୍ଣ, ଯହୁଁ ପ୍ରବାହିତ
ଅସଂଖ୍ୟ-ଶଇଳସ୍ରୋତୁଁ ବାରି-କର ଘେନି,
ଉତ୍ତରେ ବହିଣ ଶୋଣ ମିଶେ ଗଙ୍ଗାଦେହେ,
ପଶ୍ଚିମେ ବହଇ ରେବା, ପୂର୍ବେ ମହାନଦୀ; (୫)
ସ୍ଥାନେ ସ୍ଥାନେ ଗିରିପାଦେ କୁଣ୍ଠିତ ଗତିରେ
(ତରୁଦେହେ ପୁଞ୍ଜୀଭୂତ ପାରାବତଛବି)
ଉଠୁଛି ତ୍ରେତାଗ୍ନି-ଧୂମ ତପସ୍ୱୀ ଆଶ୍ରମେ; (୬)
ଦୂର୍ବାଦଳେ, ଦେବାର୍ଚ୍ଚନ କୁସୁମେ, ଅକ୍ଷତେ
ସ୍ଥଳେ ସ୍ଥଳେ ବିକ୍ଷୁରିତ ନିମ୍ନଗା ସୈକତ;
ବିଚରନ୍ତି ମୃଗଶିଶୁ ନିରୁଦ୍‌ବେଗେ ବନେ
ଦଳେ ଦଳେ, କୁଶାଙ୍କୁରକବଳଲାଳସୀ;
ବିରାଜିତ ଠାବେ ଠାବେ ଛାୟାତରୁମୂଳେ
ଶିଳାଖଣ୍ଡ, ମସୃଣିତ ଇଙ୍ଗୁଦୀତଲ୍ଲେ; (୭)
କାହିଁ ବନସ୍ପତି ଡାଳେ ବାଳାତପପ୍ରଭ
ଜଟାର୍ଦ୍ରବଲ୍କଳ ଦୋଳେ ମୃଦୁବନବାତେ;

ପାଛେ କୌତୂହଳୀ ଜାଣି ଦେବ ବିଭାବସୁ
କହିଲେ ସମ୍ବୋଧି ତହୁଁ– "ମହାସ୍ଥଳୀ ଏହୁ,
ମହିମା ଏହାର ଜାଣି ବସନ୍ତି ଏ ଦେଶେ
ନାନା ସ୍ଥାନେ ଋଷିବୃନ୍ଦ; ତ୍ରେତାରେ ଏ ପଥେ
ଚିତ୍ରକୂଟୁଁ ପଞ୍ଚବଟୀ ବିଜେ ହେବା କାଳେ,
ପର୍ଣ୍ଣଶାଳା ରଚି ଏଥି ଥିଲେ ଦାଶରଥି, (୮)
ପ୍ରସ୍ତରେ ଅଙ୍କିତ ତାଙ୍କ ପଦାଙ୍କ ଏ ବନେ
ବନପୁଷ୍ପାଞ୍ଜଳି ଦେଇ ପୂଜନ୍ତି କିରାତେ,
ଶିଖିପୁଚ୍ଛତାଳବୃନ୍ତ ଢ଼ାଳି ଭକ୍ତିଭାବେ;
ଦାଶରଥି ଶରେ ହତ ହୋଇ ଏହି ସ୍ଥଳେ
ଲଭିଣ ବିରାଧ ମୁକ୍ତି ଗଲା ଦିବ୍ୟଲୋକେ, (୯)
ଅଶୋକ, ମାଧବୀ, ନାଗକେଶରବଲ୍ଲରୀ–
ଦୋଳନେ ଦୋଳନ୍ତି ଏଥି ନିଭୃତେ ଅପ୍‌ସରା
ମଧୁମାସେ, ରାମାୟଣ ଗାଇ ମଧୁ ତାନେ,
ଫଗୁଖେଳ ରଚି ବନପ୍ରସୂନ ପରାଗେ;
ନବକିଶଳୟେ, ଦେଖ, ବିରାଜେ କେସନେ
ଚୌଦିରେ ଅରଣ୍ୟଭୂମି ଦିଗ୍‌ବିଜୟ ଯାଏ;
ମୈଥିଳୀ ସୁନ୍ଦରୀ ଯେବେ ତୋଳୁଥିଲେ ଏଥି
ବନ [illegible]ଷ୍ପ, ଝରି ତାଙ୍କ ଶ୍ରୀକରୁ ଅଳତା
ରଞ୍[illegible] ତରୁ ଲତା ଏ ମଞ୍ଜୁଳ ରାଗେ ?
ତାଙ୍କ [illegible] ସେହି କାଳୁଁ ଅଛି ମୋତେ ମନା
ଦାବାନଳରୂପେ ଏଥି ସଂଚ଼ରିବାପାଇଁ;
ଦୟାବତୀ ମୈଥିଳୀର ଶ୍ରୀହସ୍ତଲାଳିତ
ଅଦ୍ୟାପି ଏ ବନେ ଛନ୍ତି ବୃଦ୍ଧ କୃଷ୍ଣସାର
ଜରାଜୀର୍ଣ୍ଣ, ଶୁଣି ଯେହୁ ଜଳଦ-ଆଗମେ
ସୁଗମ୍ଭୀର ଘନଘୋଷ ସ୍ମରନ୍ତି ବିଷାଦେ
ବ୍ରହ୍ମାଣ୍ଡବିବରବ୍ୟାପୀ କୋଦଣ୍ଡ ଟଙ୍କାର
ଲଙ୍କାପତି-ଅରାତିର, ତୃଣାହାର ତେଜି
ନିର୍ନିମେଷେ ଏକଧ୍ୟାନେ ମୁଞ୍ଚନ୍ତି ଲୋତକ।"
ଏହି କଥା ଶୁଣି ତହୁଁ ପଞ୍ଚପାଣ୍ଡୁ ସୁତେ
ପାଞ୍ଚାଳୀ ସହିତେ ଭ୍ରମି ଆଶ୍ରମେ ଆଶ୍ରମେ
ଋଷି-ଋଷିପତ୍ନୀପଦ ବନ୍ଦିଲେ ଆଦରେ,
ତହୁଁ ପଥ ଅତିବାହି, ରଖି ବାମଭାଗେ
ନିଷଧ, ବିଦର୍ଭଦେଶ, ଚାଲିଲେ ପଶ୍ଚିମେ, (୧୦)

(୧) ଶାଳିଗୋପ– ଯେଉଁମାନେ କ୍ଷେତ୍ରରେ ଶସ୍ୟ ଜଗନ୍ତି। (୨) ଗୁଞ୍ଜାହାରାଭରଣା ବନ୍ୟନାରୀ। (୩) ଦ୍ରୋଣି– ଉପତ୍ୟକା। (୪) ମାଳଭୂମି– ଉଚ୍ଚଭୂମି। (୫) ରେବା– ନର୍ମଦା। ରେବା, ମହାନଦୀ ଏବଂ ଶୋଣ ଏମାନେ ଏକ ମାଳଭୂମିରୁ ଭିନ୍ନ ଭିନ୍ନ ଦିଗରେ ପ୍ରବାହିତ। (୬) ତ୍ରେତାଗ୍ନି– ଦକ୍ଷିଣ, ଗାର୍ହପତ୍ୟ ଓ ଆହବନୀୟ ଏହି ତିନି ଅଗ୍ନି। (୭) ତପସ୍ୱିମାନେ ଜଟାରେ ଇଙ୍ଗୁଦୀତୈଳ ବ୍ୟବହାର [illegible]ନ୍ତିଲେ। (୮) ଚିତ୍ରକୂଟ– ପ୍ରୟାଗର ଦକ୍ଷିଣରେ ଅବସ୍ଥିତ। ମନ୍ଦାକିନୀ ନଦୀ ଏହିଠାରେ ପ୍ରବାହିତା। ବନଯାତ୍ରା ସମୟରେ ରାମଚନ୍ଦ୍ର ଚିତ୍ରକୂଟରେ ଅବସ୍ଥାନ କରିଥିଲେ। (୯) ବିରାଧବଧ ବୃତ୍ତାନ୍ତ ରାମାୟଣରେ ଅନୁସନ୍ଧେୟ। (୧୦) ନିଷଧ ଏବଂ ବିଦର୍ଭଦେଶ ମଧ୍ୟଭାରତବର୍ଷରେ ଅବସ୍ଥିତ ଥିଲା। ବିଦର୍ଭର ଆଧୁନିକ ନାମ ବେଦର।

ଲଂଘି ପଥେ ଇନ୍ଦ୍ରକାଦ୍ରି, ଯାର ତଟବନେ (୧)
ଭବାନୀଭବନ ଶୋହେ ମହାଶକ୍ତିପୀଠେ।
କେତେ ଦିନ ଅନ୍ତେ ପାଞ୍ଚେ ମିଳିଲେ ପ୍ରଦୋଷେ
ତପତୀ ତଟିନୀ ତୀରେ ଅଗ୍ନିଦେବ ସହ; (୨)
ତପତୀର ପୂତ ସ୍ରୋତେ ତର୍ପଣ ବଢ଼ାଇ
ବସନ୍ତେ ପାଣ୍ଡବେ, ଦେବ ବୈଶ୍ୱାନର ତହୁଁ
ବୋଇଲେ ବାରୁଣୀଦିଗେ ଅଙ୍ଗୁଳି ନିର୍ଦ୍ଦେଶି,
"ସନ୍ଧ୍ୟାଭ୍ରେ ଅରୁଣ ଏହି ବାରୁଣୀ-ଅମ୍ବରେ
ସନ୍ଧ୍ୟାତାରା ତୁମ୍ଭେ ଯାର ନୀଳୋଜ୍ଜ୍ୱଳଶିଖା,
ବୋଲାଏ ସହ୍ୟାଦ୍ରି ଏହୁ ଅଚଳସମାଜେ, (୩)
ମହାପ୍ରଭାବନ୍ତ ଗିରି, ଦକ୍ଷିଣାପଥର
ପଶ୍ଚିମ ପ୍ରାଚୀରରୂପେ ରାଜେ ମହୀତଳେ.
ବିସ୍ତୃତ ଦକ୍ଷିଣେ ଏହୁ ସେତୁବନ୍ଧଯାଏ
ଏହା ଦେହୁ ବହି ତିନି ମହାପ୍ରବାହିନୀ
ପୂର୍ବେ ଯାଇ ମିଶିଛନ୍ତି ପୂର୍ବ ପାରାବାରେ,
ଜନସ୍ଥାନଦ୍ରୁମରାଜି-ଧାତ୍ରୀସ୍ୱରୂପିଣୀ (୪)
ସରିଦ୍‌ବରା ଗୋଦାବରୀ, କୃଷ୍ଣା କୃଷ୍ଣବେଣୀ, (୫)
ମଳୟବଳୟରୂପା ବିମଳା କାବେରୀ, (୬)
ଚନ୍ଦନକାନନ ଯାର ଚାରୁ ତୀରଭୂମେ
ସମୁଜ୍ଜ୍ୱଳ କୁମ୍ଭଯୋନିମୁନିପ୍ରଣୟିନୀ
ସତୀଶିରୋମଣି ଧନୀ ଲୋପାମୁଦ୍ରାରୂପେ;
ଏହି ଗିରିପ୍ରାନ୍ତବନୁ ନେଇଥିଲା ହରି

ରକ୍ଷୋଭାଗ୍ୟ-ବନରାଜି-ଦାବାନଳଶିଖା–
ସୀତାଙ୍କୁ ତ୍ରେତାରେ, ଛଳି ରାମେ, ରାମାନୁଜେ,
ତ୍ରିଦଶବୀର୍ଯ୍ୟନିକଷ ନୈକଷେୟ ବଳୀ; (୭)
ସୁଗ୍ରୀବପ୍ରମୁଖ-ପଞ୍ଚବୀର-ଅଧ୍ୟାସିତ,
ଏହି ଗିରିପାଦଗିରି ଶୈଳ ଋଷ୍ୟମୂକେ (୮)
ପିଙ୍ଗିଥିଲେ ଅଙ୍ଗୁ ଦେବୀ ନିଦର୍ଶନ ଲାଗି,
ସେକାଳେ ଆକାଶଗାମୀ ପୁଷ୍ପକ ବିମାନୁ
ତଡ଼ିଲ୍ଲତା-ତାରାପୁଞ୍ଜଗଞ୍ଜୀ ବାସଭୂଷା;
ଲୋଟନ୍ତି ଏ ଗିରିପାଦେ ନୀଳରତ୍ନାକର। (୯)
ଯିବି ନିଜ କାର୍ଯ୍ୟେ ମୁହିଁ ତାଙ୍କରି ସଦନେ,
ପ୍ରଭାତେ ବାୟବ୍ୟମୁଖେ ଦ୍ୱାରାବତୀପୁରେ
ଯିବ ତୁମ୍ଭେ ଏହି ଠାରୁ; — କାଲିଠାରୁ ଆଉ
ତୁମ୍ଭ ସଙ୍ଗେ ଭେଟ ମୋର ନୋହିବ ମରତେ,
ଦ୍ୱାପରର ଶେଷ ଆଜ, ଏହି ନିଶାଯୋଗେ
ଓହ୍ଲାଇବେ ଦଳବଳେ କଳି ଭବଧାମେ,
ନିଷିଦ୍ଧ କଳିରେ ଦେବ ମାନବର ଭେଟ।
ଇଚ୍ଛା ଯେବେ, ମୋର ସଙ୍ଗେ ଚାଲ, କୁରୁମଣି,
ଏହି ଶୈଳଶୃଙ୍ଗେ ବସି ଦେଖିବ କୌତୁକେ
ଭବେ କଳି ଅବତାର ମୋର ଦିବ୍ୟାଲୋକେ,
ସତ୍ତ୍ୱଗୁଣୋଜ୍ଜ୍ୱଳ ଏକା ତୁମ୍ଭରି ଲୋଚନେ
ସହିବ ସେ ଦିବ୍ୟଜ୍ୟୋତି, ଚାଲ ବେଗକରି।

## [ ଚତୁର୍ଥ ସର୍ଗ ]

ସହ୍ୟାଦ୍ରିଶିଖରେ ବସି, ଦିବ୍ୟାଲୋକଯୋଗେ
ଦେଖିଲେ ପାଣ୍ଡବରାଣ ଅନଳ ପ୍ରସାଦେ
ବିସ୍ମୟେ ଅଦ୍ଭୁତ ଦୃଶ୍ୟ, ଦିଶିଲା ଆକାଶେ

ତାରକାଗୁମ୍ଫିତ-ଚାରୁ-ଚନ୍ଦ୍ରାତପତଳେ
ସ୍ୱର୍ଣ୍ଣମେଘେ ଦେବସଭା, ବିରାଜନ୍ତି ତହିଁ
ଦେବଗଣ, ଚିନ୍ତାମଗ୍ନ ସର୍ବେ ଏକମନେ।

(୧) ଇନ୍ଦ୍ରକାଦ୍ରି– ଅନ୍ୟ ନାମ ସାତପୁରା ପର୍ବତ। ଏହି ପର୍ବତର ଉପତ୍ୟକାରେ ଖଣ୍ଡବା ନାମକ ସ୍ଥାନରେ ଭବାନୀଦେବୀଙ୍କର ମନ୍ଦିର ଅବସ୍ଥିତ। ଖଣ୍ଡବା ଭାରତବର୍ଷର ଅନ୍ୟତର ଶକ୍ତିପୀଠ। ମଧ୍ୟଭାରତବର୍ଷର 'ଠଗ'ମାନେ ଏହି ଦେବୀଙ୍କର ଉପାସକ ଥିଲେ। (୨) ତପତୀ– ଏହି ନଦୀ ପଶ୍ଚିମମୁଖରେ ପ୍ରବାହିତ ହୋଇ ଆରବ୍ୟସାଗରରେ ପତିତ ହୋଇଅଛି। (୩) ସହ୍ୟାଦ୍ରି– ପଶ୍ଚିମଘାଟ ପର୍ବତ। ଗୋଦାବରୀ ପ୍ରଭୃତି ନଦୀ ଏହି ପର୍ବତରୁ ପ୍ରବାହିତ। (୪) ଜନସ୍ଥାନ– ଦଣ୍ଡକାରଣ୍ୟର ଅଂଶବିଶେଷ। ଗୋଦାବରୀ ଜନସ୍ଥାନ ମଧ୍ୟରେ ପ୍ରବାହିତ। (୫) କୃଷ୍ଣବେଣୀ– ସ୍ୱନାମପ୍ରସିଦ୍ଧ ନଦୀ, ପୂର୍ବମୁଖରେ ପ୍ରବାହିତ ହୋଇ ମହୋଦଧିରେ ପତିତ ହୋଇଅଛି। ଆଧୁନିକ ନାମ କୃଷ୍ଣା। (୬) କାବେରୀ ମଳୟପର୍ବତର ପାଦଦେଶରେ ପ୍ରବାହିତା। ଅଗସ୍ତ୍ୟାଶ୍ରମ ଏହିଠାରେ ପ୍ରତିଷ୍ଠିତ ଥିଲା। ଲୋପାମୁଦ୍ରା ଅଗସ୍ତ୍ୟପତ୍ନୀ। ମଳୟପର୍ବତ ଚନ୍ଦନ ନିମନ୍ତେ ପ୍ରସିଦ୍ଧ। ଅଗସ୍ତ୍ୟ କଳସରୁ ଜାତ ହୋଇଥିବାର ପୌରାଣିକ କିମ୍ବଦନ୍ତୀ ଅଛି। (୭) ନିକଷାପୁତ୍ର ଲଙ୍କେଶ୍ୱର ଦେବବୀର୍ଯ୍ୟର ନିକଷ ପ୍ରାୟ ଥିଲେ। (୮) ସହ୍ୟାଦ୍ରିର ପାଦପର୍ବତ ପମ୍ପାସରୋବରର ସନ୍ନିହିତ। ସୁଗ୍ରୀବାଦି– ପଞ୍ଚମହାବୀର ବାଳିଙ୍କ ଭୟରେ ଏହି ପର୍ବତରେ ଆଶ୍ରୟ ଗ୍ରହଣ କରିଥିଲେ। (୯) ରତ୍ନାକର– ଆରବ ସାଗର।

ଚନ୍ଦ୍ରିକାରେ ବେଢ଼ିଅଛି ସର୍ବଦେବ ଦେହେ
ସୁନ୍ଦର ପ୍ରଭାମଣ୍ଡଳ, ବିଧୁଙ୍କୁ ଯେସନ
ବେଢ଼ଇ ବିବିଧବର୍ଣ୍ଣେ ଉଜ୍ଜ୍ୱଳପରିଧି
ନିଶାକାଳେ, ବରଷାର ଆଗମସୂଚକ, (୧)
ଏକ ଏକ କରି ଦେବ ସୁବର୍ଣ୍ଣ ଦୀଧିତି (୨)
ପୌରବେ ଚିହ୍ନାଇ ଦେଇ କହିଲେ ଏସନ, (୩)
"ତୁଷାରଧବଳକାନ୍ତି, ଦେଖ, ସିଂହାସନେ
ବିରାଜନ୍ତି 'ଧର୍ମ'ଦେବ ଅମଳବସନେ,
କରେ ଜ୍ୟୋତ୍ସ୍ନାଶୁଭ୍ର ଦଣ୍ଡ, ବଦନମଣ୍ଡଳେ
ବିରାଜେ ଅପୂର୍ବ ଜ୍ୟୋତି ପ୍ରଶାନ୍ତ ପାବନ;
ସ୍ଫୀତବକ୍ଷ ଅନୁଚର ଧର୍ମଙ୍କ ଛାମୁରେ
ଉଭା ଯେହୁ, ଦିବେ ସେହି 'ସାହସ' ଆଖ୍ୟାତ;
ଧର୍ମ ପାଶେ 'ସତ୍ୟ' ମହାତେଜସ୍ୱୀ ନିର୍ଭୀକ,
ସ୍ୱଚ୍ଛବତ ଦିଶେ ଯାଙ୍କ ସମସ୍ତ ବିଗ୍ରହ,
ହେଲେହେଁ ଭୂଷଣହୀନ ନୈସର୍ଗିକ ରୂପେ
ଦିଶଇ ସୁନ୍ଦର ଅତି ସେ ଦିବ୍ୟ ମୂରତି;
ସତ୍ୟଙ୍କ ଅଦୂରେ ଦେଖ ତୁଳାଦଣ୍ଡଧାରୀ,
ନିସ୍ତରଙ୍ଗ ହ୍ରଦ ପରି ଗମ୍ଭୀର ମୂରତି
'ନ୍ୟାୟ'ଦେବ, ନେତ୍ର ବନ୍ଧ ଘନକୃଷ୍ଣବାସେ,
ସାନ ବଡ଼, ନିଜ ପର ଜ୍ଞାନର ରୋଧକ; (୪)
ତାଙ୍କ ପାଶେ 'ତପଃ'କ୍ଷୀଣବପୁ ଜଟାଧାରୀ,
ମୁଞ୍ଜ ମେଖଳାରେ ବନ୍ଧ ଶୋଭେ କଟିଦେଶେ (୫)
ବଲ୍କଳ, ଲମ୍ବିତ ଲମ୍ବଶ୍ମଶ୍ରୁ ବକ୍ଷସ୍ଥଳେ;
ତପଃ ପାଶେ 'କ୍ଷମା' ହସ୍ତେ ଆବରଣ ପଟ,
ବ୍ୟସ୍ତ ସଦା ପର ଦୋଷ ଆବରିବାପାଇଁ;
ତାଙ୍କ ପାଶେ 'ଦୟା' ଦେବୀ ସ୍ନିଗ୍ଧଜ୍ୟୋତିର୍ମୟୀ,
ମୁକ୍ତାଫଳଗଞ୍ଜି-ଅଶ୍ରୁ ଝରେ ନେତ୍ରଯୁଗେ
ପରଦୁଃଖେ, ବାହୁ ଟେକି ଡାକୁଛନ୍ତି କି ସେ
ଦୁଃଖିଜନେ ଆଶ୍ରା ଦେବାପାଇଁ ନିଜ କ୍ରୋଡ଼େ !
ପୂର୍ଣ୍ଣକୁମ୍ଭ ଜଳ ଇଡ଼ି ପ୍ରକ୍ଷାଳନ୍ତି ଦେହ
'ଶୌଚ' ଦେବ, ସଙ୍କୁଚିତ ସଦା ଅନାଚାରେ।
ବରାଙ୍ଗୁ କାଢ଼ନ୍ତି ଯେହୁ ବସ୍ତ୍ର, ଆଭରଣ,
ନିୟୋଜିତ-ଦେହମନ ପରସେବାଲାଗି,
'ତିତିକ୍ଷା' ସେ ରତ ସଦା ମହାତ୍ୟାଗବ୍ରତେ; (୬)
ସାଧୁଜନସେବ୍ୟ ଏହି ପବିତ୍ର 'ଆର୍ଜ୍ଜବ' (୭)
ଶାଳସମ ଋଜୁ ଦେହ, ଋଜୁଦୃଷ୍ଟିରେଖା;
ବିଶ୍ୱଶୋଭାରାଣୀ, ଦେଖ, ଦେବୀ 'ପଦ୍ମାଳୟା'
ଆବରଣପ୍ରଭାଜାଳେ ନଭଃ ଉଦ୍ଭାସିନୀ,
ଫୁଲ୍ଲରକ୍ତଶତଦଳ ଶୋଭେ ଦକ୍ଷକରେ,
ଦକ୍ଷେତରେ ଧାନମେଣ୍ଟି, ଦେବୀଙ୍କ ପ୍ରସାଦେ (୮)
ମେଘେ ରାଜେ ଇନ୍ଦ୍ରଧନୁ, ପୁଷ୍ପରାଜି ବନେ,
ଜଗତଜୀବନଯଷ୍ଟି ଶସ୍ୟ ଶସ୍ୟକ୍ଷେତ୍ରେ,
ନିରତେ ଅସ୍ଥିରା ଦେବୀ, ଆସନୁ ଆସନେ
ନିରତେ କରନ୍ତି ଛିତି, ସ୍ୱଭାବେ ଚପଳା; (୯)
ଶ୍ୱେତପଦ୍ମାସୀନା ଏହି ଦେବୀ 'ସରସ୍ୱତୀ'
କୁନ୍ଦେନ୍ଦୁ-ତୁଷାର-ପ୍ରଭା, ଶୁଭ୍ରବସ୍ତ୍ରାବୃତା,
ଏକ ହସ୍ତେ ଗ୍ରନ୍ଥ, ଆନେ ବୀଣା ସପ୍ତସ୍ୱରା,
ଅସାଧ ସାଧନା ଫଳେ ତୁଷ୍ଟ ହୋଇ ଥରେ
ଦେଇଥିଲେ ଏହି ମୃତସଞ୍ଜୀବନୀବୀଣା
ନବତାନେ ବାଇବାକୁ ବଲ୍ମୀକପ୍ରଭବ—
ମୁନିବରେ, ପୁଣି ଥରେ କୃଷ୍ଣଦ୍ୱୈପାୟନେ, (୧୦)
ସେଭଳି ସେବକ ଆଉ ନ ଦେଖି ଭାରତେ
ଭାରତୀ ସେ ବୀଣା ଏବେ ଧରନ୍ତି ସ୍ୱକରେ।
ଏ ଆଦି ଯାବନ୍ତ ଦେବ ଦେବୀ ଭାରତର
କଳି-ଆଗମନ ଭୟେ କରନ୍ତି ମନ୍ତ୍ରଣା
କେ କାହିଁ ଲୁଚିବେ, କେଉଁ ବିଜନ ପ୍ରଦେଶେ;
ବିଳମ୍ବ ତ ନାହିଁ ଆଉ ! ଭାରତବଦନେ
ବିରାଜଇ ଯେଉଁ ଶିରୀ ଯିବ ସିନା ଲିଭି
ଅଳ୍ପ କ୍ଷଣେ, ଗନ୍ଧେ ମାତ୍ର ରହିବ ତା ସ୍ମୃତି।
ଧର୍ମର ଏ ଉପବନ ହେବ ପରିଣତ
ପାପ-ମରୁଭୂମେ ଏବେ, ଲକ୍ଷ୍ମୀଲୀଳାସରଃ
ଶୁଖିଯିବ, ଆହା, ଏହି କ୍ରୂର-ଅବଗ୍ରହେ।" (୧୧)
ଏହା କହୁଁ କହୁଁ ନଭଃ ଭୀଷଣ ତମସେ
ଗଲା ପୂରି, ବିକଟାଳ-କରାଳ-ଆକୃତି
ଉର୍ଦ୍ଧ୍ୱ ଓହ୍ଲାଇଲେ କଳି ନିଜ ଦଳବଳେ,
ଲୋହିତ ମଙ୍ଗଳ ଗ୍ରହ ପ୍ରାୟେ ଭୟାବହ
ଅମଙ୍ଗଳ ବେନି ଚକ୍ଷୁ, ନିଃସରଇ ଯହୁଁ
ଭୀମଧୂମକେତୁ ପୁଚ୍ଛସମ ଜ୍ୟୋତିରେଖା,

(୧) ଚନ୍ଦ୍ରମଣ୍ଡଳକୁ ଲୋକେ ବର୍ଷାର ସୂଚକ ବୋଲି ବିଶ୍ୱାସ କରନ୍ତି। (୨) ସୁବର୍ଣ୍ଣଦୀଧିତି– ଅଗ୍ନି। (୩) ପୌରବ– ଯୁଧିଷ୍ଠିର। (୪) ସାନ ବଡ଼, ନିଜ ପର ଏହି ଜ୍ଞାନର ରୋଧକ ଘନକୃଷ୍ଣବସନରେ 'ନ୍ୟାୟ'ଦେବଙ୍କ ନେତ୍ର ବନ୍ଧା। (୫) ମୁଞ୍ଜ– ତୃଣବିଶେଷ। (୬) ମହାତ୍ୟାଗବ୍ରତେ– ଆତ୍ମୋତ୍ସର୍ଗବ୍ରତରେ। (୭) ଆର୍ଜ୍ଜବ– ସରଳତା। (୮) ଲକ୍ଷ୍ମୀ ଶୋଭା ଏବଂ ସମ୍ପଦର ଅଧିଷ୍ଠାତ୍ରୀ। ଶତଦଳ ଶୋଭାବ୍ୟଞ୍ଜକ, ଧାନମେଣ୍ଟି ସମ୍ପଦବ୍ୟଞ୍ଜକ। (୯) ଲକ୍ଷ୍ମୀଙ୍କର ଚଞ୍ଚଳା ନାମ ପୁରାଣପ୍ରସିଦ୍ଧ ଏବଂ ତାହାଙ୍କର ଚଞ୍ଚଳତା ଅନୁଭବସିଦ୍ଧ ଅଟେ। (୧୦) ସରସ୍ୱତୀ ବାଲ୍ମୀକି ଏବଂ ବ୍ୟାସଙ୍କୁ ତାହାଙ୍କର ଯୋଗ୍ୟ ଭକ୍ତ ଜାଣି ସ୍ୱକୀୟ ବୀଣା ନବତାନରେ ବଜାଇବା ସକାଶେ ଦେଇଥିଲେ। ଭାରତରେ ଏମାନଙ୍କର ସମକକ୍ଷ ସରସ୍ୱତୀଭକ୍ତ ଆଉ ନାହାନ୍ତି। (୧୧) ଅବଗ୍ରହ– ଅନାବୃଷ୍ଟି।

କୃତାନ୍ତର କରପତ୍ର (୧) ପ୍ରାୟେ ତ୍ରାସପ୍ରଦ
ଆବର୍ତ୍ତସନ୍ନିଭତୁଣ୍ଡେ ତୀକ୍ଷ୍ଣଦନ୍ତାବଳୀ; (୨)
ଆସୁଛନ୍ତି ଯେଥା ବେଶେ କଳି ପଛେ ପଛେ
କଳି-ଅନୁଚରବୃନ୍ଦ, ସଦା ଧର୍ମଦ୍ରୋହୀ,
ଲଳିତଲଳନାଭ୍ରୂରୁ-ଚାରୁଚାପଧାରୀ
ଅଗ୍ରେ ବିଶ୍ୱଜୟୀ 'କାମ', ପୁଷ୍ପର ମୁକୁଟ
ଶୋହେ ଶିରେ, ପୁଷ୍ପମାଳା ଲମ୍ବିତ ଉରସେ;
ଆସୁଛନ୍ତି ଚଉପାଶେ ବେଢ଼ି ନଗାପ୍‌ସରା
କୁରଙ୍ଗତରଙ୍ଗେକ୍ଷଣୀ, ଚମ୍ପକବରଣୀ,
ବିମ୍ବାଧରୀ, ଘନଳମ୍ବକେଶୀ, ସ୍ମେରାନନା
ବାରାଙ୍ଗନାଦଳ ରତିଜିଣି ରୂପବତୀ;
ଚାରୁବକ୍ଷ କୋରକିତ ଉରଜ-କୋରକେ,
ଲାଳସାର ସ୍ୱର୍ଣ୍ଣ ନୀଡ଼ କିଅବା ସେ ବେନି? (୩)
ସୁବଳିତରମ୍ଭାଉରୁ ଆବୃତ ଦୁକୂଳେ,
ଯେଉଁ ଆବରଣ ଭେଦି, ନିଭୃତ ପ୍ରଦେଶେ
ସଂଚରଣେ ଲୋଳ ସଦା କାମୁକକଳ୍ପନା!
ବୀଣାଧ୍ୱନି ସଙ୍ଗେ ଉଠେ ସଙ୍ଗୀତର ଧ୍ୱନି
ସେ ଦଳୁଁ, "ହେ ଯୁବାକୁଳ, କ୍ଷଣମାତ୍ର ସ୍ଥାୟୀ
ଯୁବାକାଳ, ମଧୁକାଳଏହିଟି ଜୀବନେ!
ଏହା ଜାଣି, ଆନେ ତେଜି, ମଜ୍ଜି ପ୍ରେମରସେ
ପୂରାଅ ଭୋଗର ସ୍ପୃହା, ପୁରୁଷ ଜୀବନେ
ପୁରୁଷାର୍ଥ ଏକା ସିନା ବାମା-ଉପାସନା!
କାମାତୁରା ନବୀନାଙ୍କ କାମନା ପୂରାଇ
ସାର୍ଥକ ପୁରୁଷପଣ କର ଏ ବୟସେ।
ପ୍ରଭାତ ଶିଶିରେ ସ୍ନାନି, ସଦ୍ୟପୁଷ୍ପ ଯେବେ
ବୃନ୍ତାସନେ ହସୁଥାଇ ଅଳିକି ଅନାଇ
ପ୍ରେମୋତ୍ସୁକେ, ବିଳମ୍ବଇ କେବେ କି ସେ ଅଳି
ଖରାରେ ମଉଳି ପୁଷ୍ପ ବାସି ହେବା ଯାଏ?
ମଦାଳସୀ-ରମ୍ୟସ୍ତନ-ସ୍ୱର୍ଣ୍ଣମେରୁରୂପୀ
ଏ ପ୍ରତ୍ୟକ୍ଷ ସ୍ୱର୍ଗ ଛାଡ଼ି, କେଉଁ ଭ୍ରମେ ପଡ଼ି,
ହେ ଯତି, ନିରତେ ତୁମ୍ଭେ ରତ ଘୋର ତପେ,
ଅପ୍ରତ୍ୟକ୍ଷ ଅନିଶ୍ଚିତ ସ୍ୱର୍ଗଭୋଗ ଆଶେ?
କି ଭୋଗ ସେ ସ୍ୱର୍ଗେ ଅଛି ଏ ଭୋଗକୁ ବଳି?
ହେ ପଣ୍ଡିତକୁଳ, ଆତ୍ମ ବଞ୍ଚନାରେ ପଡ଼ି
ଗ୍ରନ୍ଥକୀଟ ହୋଇ ସିନା କଟାଉଛ ବୃଥା

ଯୁବାକାଳ କବିତାର ସଂକଳ୍ପ-ଆମୋଦେ!
ସୁନ୍ଦରୀ-ଅଧର-ମଧୁ ସଙ୍ଗେ କି ହେ ସରି
କାବ୍ୟରସ? ଆନ କାବ୍ୟ ଫିଙ୍ଗିଦେଇ ଦୂରେ
ଯୁବତୀ-ଯୌବନ-କାବ୍ୟ ପଢ଼ ଅବିରତେ।
ହେ ବୀରେ, ବିଫଳେ କିପାଁ ମର ଅନୁସରି
ରଣଭୂମି-ମରୁଭୂମେ ଯଶ-ମରୀଚିକା,
ସମ୍ମୁଖେ ସୁଲଭ ହୁଡ଼ି ସୁଧାତରଙ୍ଗିଣୀ?
ମହାବିଭୀଷିକାମୟୀ ରଣସ୍ଥଳୀ ତେଜି
କେଶରୀ ବିକ୍ରମେ ପଶ ସେ ସଂଗ୍ରାମେ, ଯହିଁ
ରସିକା ସଙ୍ଗତେ ଯୁଝି କାମକୁତୂହଳେ
ଜୟୁଁ ପରାଜୟେ କୃତୀ ହୁଅନ୍ତି ରସିକେ।"
ତାଳଇ ଶ୍ରବଣେ ସୁଧା କଣ୍ଠ-ଯନ୍ତ୍ର ଧ୍ୱନି
ଏସନେ, ସୁତାନେ ମିଶି ଭୂଷଣ ଶିଞ୍ଜିତେ,
କଜ୍ଜଳକେଶୀଙ୍କ ରୂପେ ସମୁଜ୍ଜ୍ୱଳ ଦିଶେ
ସେ ଦେଶ, ବସନ୍ତେ କୁଞ୍ଜ ପୁଷ୍ପ ପୁଞ୍ଜେ ଯଥା,
ପୁଷ୍ପାବୃତ ଖାତ ପ୍ରାୟେ ବାହ୍ୟେ ତୋରା ବାମା!
ହସ୍ତେ ଶୋଭେ ପୁଷ୍ପ, ମାତ୍ର ବସ୍ତ୍ର ତଳେ ତଳେ
ଗଳି ଗଳି ଚାଲୁଛନ୍ତି ଅଲକ୍ଷିତରୂପେ
ପରିଚାରଦଳ 'ମେହ' 'ଉପଦଂଶ' ଆଦି।
ତାମ୍ବୁଳକରଙ୍କଧର ଚାଲନ୍ତି ପଶ୍ଚାତେ
ଧନିକନନ୍ଦନଗଣ ଶମ୍ଫଳୀଶୋଷିତ- (୪)
ସର୍ବସ୍ୱ, ପାଣ୍ଡୁର ରିକ୍ତ ଶରଦଭ୍ର ଯଥା। (୫)
ସର୍ବେ ଆଜୀବନ ବିକା ରୂପାଜୀବାପଦେ!
କାମପ୍ରତି ବୈଶ୍ୱାନର ଅଙ୍ଗୁଳି ନିର୍ଦ୍ଦେଶି
କହିଲେ ପୌରବେ, "ମହାଦୁଷ୍ଟମତି ଏହୁ!
ଥରେ ମୁହିଁ ଚନ୍ଦ୍ରଚୂଡ଼ନୟନୁ ବାହାରି (୬)
ଦହିଥିଲି ଏ ଦୁରନ୍ତେ, ତାଙ୍କୁ ସେହି ହେତୁ
ଡ଼ରେ ଦୁଷ୍ଟ, ତାଙ୍କ ଭକ୍ତପାଶୁଁ ରହେ ଦୂରେ।"
ଆକ୍ରୋଶେ ଗରଜି 'କ୍ରୋଧ' ଆସେ କାମ ପଛେ
ରକ୍ତଚକ୍ଷୁଃ, ସତେ କି ସେ ଦହିବ ଜଗତ!
ବଜ୍ରର ଔରସେ, ବାତ୍ୟାଗର୍ଭେ ଜାତ ହୋଇ
ବଡ଼ବାର ସ୍ତନ୍ୟେ ବଢ଼ିଥିଲା ଯେ ସାଗରେ, (୭)
ଭୂକମ୍ପ ଦୋଳିରେ ସୁଖେ ଦୋହଲି ଶୈଶବେ,
ମହାଭୟଙ୍କର ରିପୁ! ରକ୍ତିମା ଜଳାଇ
ଉପୁଜାଏ ବିରକ୍ତିକି, ବହ୍ନିଶିଖା ଜାଳି

(୧) କରପତ୍ର–କରତ। (୨) ଆବର୍ତ୍ତ– ଭଉଁରି। (୩) କାମୁକମାନଙ୍କର ଲାଳସା ବିହଙ୍ଗର ସ୍ୱର୍ଣ୍ଣନୀଡ଼ ପରି। (୪) କୁଟଣୀମାନଙ୍କଦ୍ୱାରା ହୃତସର୍ବସ୍ୱ। (୫) କାମୁକମାନେ ଇନ୍ଦ୍ରିୟାସକ୍ତ ହୋଇ କ୍ରମଶଃ ନିର୍ଜୀବ ହୁଅନ୍ତି ଏବଂ ସେମାନଙ୍କ ଦେହ ବିବର୍ଣ୍ଣ ହୋଇ ପାଣ୍ଡୁର ଦିଶେ। ସେମାନଙ୍କ [illegible] ଶରଦଭ୍ର ଯେପରି ଜଳଶୂନ୍ୟ ଏବଂ ପାଣ୍ଡୁର, କାମୁକମାନେ ସେହିପରି ରକ୍ତଶୂନ୍ୟ ଏବଂ ବିବର୍ଣ୍ଣ ହୋଇଯାନ୍ତି। (୬) ହରକୋପାନଳରେ ମଦନ ଦଗ୍ଧ ହୋଇଥିବା କଥା ପୁରାଣରେ ଅନୁସନ୍ଧେୟ। (୭) ବଡ଼ବା – [illegible] ବାଡ଼ବାନଳର ପ୍ରସୂତୀରୂପା ଘୋଟକୀ। ସମ୍ଭବତଃ ଜଳମଗ୍ନ ଆଗ୍ନେୟଗିରିମାଳା।

ଉପୁଜାଏ ତମଃ, ଜ୍ଞାନବିବେକବିଲୋପୀ। (୧)
ସହଚରରୂପେ ତାର ଆସଇ ସଙ୍ଗତେ
'ହତ୍ୟା', କରବାଳ ହାତେ, ରକ୍ତଲିପ୍ତବାସେ;
ଡମ୍ଫ ପ୍ରାୟେ ଫଁ ଫଁ ସ୍ୱନେ ନିଶ୍ୱାସି ସଘନେ
ଆସୁଛନ୍ତି ପରିଜନେ, ବହଇ ଅଧରୁ
ଲହୁଧାରା, ନିଜ ଦନ୍ତେ ନିଜକୁ କାମୋଡ଼ି,
କାଳଭୁଜଙ୍ଗିନୀ ପ୍ରାୟେ ଭ୍ରୂକୁଟି ଲଲାଟେ,
ଶୃଙ୍ଗହୀନ ହୋଇ ସୁଦ୍ଧା ଏକକୁ ଆରେକ
ବିନ୍ଧନେ ଉଦ୍ୟତ, ଯେହ୍ନେ ସବତ୍ସା-ଧେନୁକା; (୨)
କଥାକେ କଥାକେ ଥୋକେ ଯାଉଛନ୍ତି ଗୁଷି,
ରସ (୩) ବହ୍ନିଯୋଗେ ଯଥା, କଥାକେ କଥାକେ
ବାଡ଼ିଆବାଡ଼େଇ ହୋଇ ମରନ୍ତି ପାମରେ।
କ୍ରୋଧ ପଛେ 'ଲୋଭ' ସଦା ପ୍ରସାରିତପାଣି
ଭିକ୍ଷାଲାଗି, କାକୁବାଣୀ (୪) ନିରତେ ବଦନେ,
ସକଳ ଇନ୍ଦ୍ରିୟେ ସେହୁ କଲେହେଁ ବସତି,
ଶ୍ରଦ୍ଧା ସମଧିକ ତାର ରସନାନିବାସେ।
ଗୋଡ଼ାନ୍ତି ସଙ୍ଗତେ ଯାଚ୍‌ଞାପଟୁ ଚଟୁଦଳ,
ଅତ୍ୟାହାରେ ରୋଗୀ ପୁଣି ରୋଗେ ଅତ୍ୟାହାରୀ।
ରସନାରୁ ଅହର୍ନିଶ ସ୍ରବୁଅଛି ଲାଳ,
ଗୋଡ଼ାନ୍ତି ଏ ଦଳ ସଙ୍ଗେ ଧନଲୋଭୀ ମୂଢ଼େ,
ଧନ ଯାଙ୍କ ପିତା ମାତା ଅଭୀଷ୍ଟ ଦେବତା,
ଅକାତରେ କନ୍ୟା, କିବା ବନିତା, ଭଗିନୀ,
ଦେବାକୁ ଧନିକେ ତୁଚ୍ଛ ଧନ ବିନିମୟେ।
ଏ ଦଳ କରନ୍ତି ବୃଦ୍ଧି ବୃନ୍ଦ ବାର୍ଦ୍ଧୁଷିକେ
ଅଧମର୍ଣ୍ଣ-ମକ୍ଷିକର ଊର୍ଣ୍ଣନାଭରୂପୀ,
କୁବେରଙ୍କ ବରପୁତ୍ରେ, ବଢ଼ଇ ନିରତେ
(ମଦ୍ୟପର ତୃଷ୍ଣା ଯଥା ମୁହୁର୍ମୁହୁଃ ପାନେ)
ଧନବୃଦ୍ଧି ସଙ୍ଗେ ଯାଙ୍କ ଧନର ଲାଳସା,
ମହାରଙ୍କ, ମିଷ୍ଟବାକ୍ୟ ଦାନେ ମହାଦାତା।(୫)
ଭବଦୁଃଖହର-ମୋକ୍ଷପଥର ବିରୋଧୀ,
ଶୂନ୍ୟକୁ ଆକଟେ ଧରି ନିବିଡ଼ ଆଶ୍ଳେଷେ,
ଆସେ 'ମୋହ', ଶିଷ୍ୟବ୍ୟୂହ ଆସନ୍ତି ଗହଣେ,
କୁଟୁମ୍ବ-ଜମ୍ବାଳେ (୬) ମଗ୍ନ, କୁଣ୍ଠିତ ଯେ ସଦା
ଘଟାନ୍ତରକାଳେ ସୁଦ୍ଧା ଈଶ୍ୱରସ୍ମରଣେ।
ଶାସ୍ତ୍ରଜ୍ଞାନସତ୍ତ୍ୱେ ଜଡ଼! ଅନ୍ଧ ଚକ୍ଷୁ ଥାଇ!

ହେଲେହେଁ ଜାଗ୍ରତ ଗାଢ଼ନିଦ୍ରା-ଅଭିଭୂତ।
ଦରାଣ୍ଡି ହୁଅନ୍ତି, ଆହା, ମହାଘୋର ତମେ
ଦୀପସତ୍ତ୍ୱେ, ମମତାର ଦୁଶ୍ଛେଦ୍ୟ ବନ୍ଧନେ।
ଆସେ 'ମଦ', ତୁଙ୍ଗଶିର ଲାଗିଛି ଆକାଶେ
ମହାଅହମିକାମର, (୭) ହସ୍ତ ବକ୍ଷସ୍ଥଳେ;
ସଙ୍ଗେ ଉପାସକଦଳ ଗମ୍ଭୀର ମୂରତି,
ଊର୍ଦ୍ଧ୍ୱଦୃଷ୍ଟି, ପଦଭରେ ଟଳେ ବସୁନ୍ଧରା,
ଆପଣାକୁ ବଡ଼ ମଣି ସମସ୍ତେ କୁଣ୍ଠିତ
ମହାର୍ଘବଚନବ୍ୟୟେ ମାନହାନିଭୟେ,
ଅହମିକା-କୂପେ କୂପମଣ୍ଡୂକ ସରବେ,
ଧନମଦେ ମର କେହୁ, କେହୁ ଜନମଦେ,
ଭଜନର ମଦେ କେହୁ, ପଦେ କେହୁ ଅବା,
କେହୁ ରୂପମଦେ, କେହୁ ଆଭିଜାତ୍ୟମଦେ,
ବିଦ୍ୟାମଦେ, ବୁଦ୍ଧିମଦେ ସ୍ଫୀତ ହୋଇ କେହୁ
ନିଜକୁ ଅତୁଳ ମଣି ଧରା ମଣେ ସରା।
ଅନ୍ୟଠାରେ ଅବନତ ହୋଇ ଅତିରେକେ
ଅତି ବିନୟର ଭାନ (୮) କରଇ କେ ପୁଣି,
ଅହଙ୍କାରଶୂନ୍ୟ ବୋଲି ମନେ ଅହଙ୍କାରୀ।
ମଦ ପଛେ ଆସେ 'ଈର୍ଷା' କୃଶକଳେବରା, (୯)
କରାଳକୁଟିଳଦୃଷ୍ଟି, ପାଣ୍ଡୁରବଦନା,
କ୍ରୂରଚାହାଣିରେ ଯାର ଯାଉଛି ଝାଉଁଳି
ଚଉଦିଗେ ତରୁ ଲତା, ଯଥା ତପ୍ତବାତେ,
ରୋଗକ୍ଲିଷ୍ଟ ପ୍ରାୟେ ଦୁଷ୍ଟା ଅପ୍ରସନ୍ନା ସଦା,
ଶୁଷ୍କାସ୍ୟେ ଉପୁଜେ ହାସ୍ୟ ଯଦି କଦାଚିତେ,
ସେ କେବଳ ପରଦୁଃଖେ; ଦୁଃଖେ କାହାରିକି
କାନ୍ଦିବାର ନ ଦେଖିଲେ ପକାଏ ସେ କାନ୍ଦି!
ସ୍ରବେ ରସନାରୁ ତାର ବିଷ ଅହର୍ନିଶ,
ଏ ବଡ଼ ବିଷମ ବିଷ! ଯାର ତୀବ୍ର ତେଜେ
ଅନ୍ୟେ ଘାରି, ତହିଁ ଦୁଷ୍ଟା ଆପେ ହୁଏ ଘାରି।
ପରଦୋଷଦରଶନେ ଦିବ୍ୟଚକ୍ଷୁଷ୍ମାନ୍
ପରନିନ୍ଦାବାବଦୂକ, ମୂକ ପର ଯଶେ,
ପରହାନିପ୍ରିୟ ଖଳ, କାନକୁହା ଆଦି
ଭୟଙ୍କର ମୁଖ ଦୁଃଖେ ଯାଉଅଛି ଶୁଖି
ପରସ୍ୱର ମୁଖଶିରୀ ଦେଖି ପରସ୍ୱରେ;
ଘାରି ହେଉଅଛି କେହି ଶୁଣି ଲୋକମୁଖେ

(୧) କ୍ରୋଧ ଗରିମା ଜନ୍ମାଏ, ଅଥଚ ସେଥିସଙ୍ଗେ ବିରକ୍ତି ଜାତ କରେ। ଅଗ୍ନି ଜାଳିଦିଏ, ଅଥଚ ସେହି ଅଗ୍ନିଦ୍ୱାରା ଆଲୋକ ନ ଜନ୍ମାଇ ତମଃ ଜାତ କରେ। (୨) ଧେନୁକା – ଗାଈ। (୩) ରସ – ବାରୁଦ। (୪) କାକୁ – ଦୈନ୍ୟୋକ୍ତି। (୫) କୃପଣମାନେ ପ୍ରାୟ ଅତିରିକ୍ତ ମିଷ୍ଟଭାଷୀ ହୁଅନ୍ତି। (୬) ଜମ୍ବାଳ – ପଙ୍କ। (୭) ଅହମିକା – ମୁଁ ବଡ଼, ମୋହପରି ଆଉ କେହି ନାହିଁ – ଏହି ଜ୍ଞାନ। (୮) ଭାନ – ଛଳ। (୯) ପରର ସୌଭାଗ୍ୟ ଦେଖି ଈର୍ଷାନ୍ୱିତ ଲୋକଙ୍କର ଦେହ ଶୁଷ୍କ ହୋଇଯାଏ। 'ଈର୍ଷା' ଏମାନଙ୍କର ଅଭୀଷ୍ଟଦେବତା, ସୁତରାଂ [illegible]।

ପରଯଶ କଥା, ଯଥା ବୃଶ୍ଚିକଦଂଶନେ,
ପର ସଉଭାଗ୍ୟେ କେହି ମହାଖେଦ ବହି
ଲଘୁକରେ ହୃଦ୍‌ଭାର ଦୀର୍ଘଶ୍ୱାସ ତେଜି,
ମହାଘୋର ଈର୍ଷାନଳେ ଜଳି ନିରନ୍ତରେ
ଜୀବନ୍ତେ ନରକ ଭୋଗ କରନ୍ତି ପିଶୁନେ।
ଖନା ପ୍ରାୟେ ରହି ରହି କହି ନାନାକଥା (୧)
ଆସୁଅଛି 'ମିଥ୍ୟା', ଯାର ବସ୍ତ୍ରଯାକ ତାଳି,
ତାଳି ପରେ ତାଳି, ପୁଣି ତାଳି ତା ଉପରେ
ଏତେ ତାଳିସତ୍ତ୍ୱେ ଫୁଟି ଦିଶୁଛି ତା ଦେହ,
ପୁନଃ ପୁନଃ ତେଣୁ ନୂଆ ନୂଆ ତାଳିମାନ
ଲଗାଉଛି ମହା ବ୍ୟସ୍ତେ ସେ ଜୀର୍ଣ୍ଣ ବସନେ।
ଆସନ୍ତି ପୂଜକଦଳ ଜଳ୍ପି ନାନାମତେ,
ପ୍ରବୀଣ ଛମୁଆପଣେ ପାରିଷଦପଣେ,
ପ୍ରଭୁର ଅଳୀକ ଯଶ ରଚନେ କେ ରତ
ଚାଟୁପଟୁ, ପ୍ରଭୁମନତୋଷଣ କୌଶଳୀ,
କେହି କରୁଅଛି ନିଜ ବଂଶର ବଡ଼ିମା, (୨)
କେହି ବିଦ୍ୟା ସମରିର, ପ୍ରେତାଦିର କଥା
କହେ କେହୁ, ଦୂରଦେଶ ପର୍ଯ୍ୟଟକ କେହୁ
କହଇ, ସେ ଯାଇଥିଲା ମାନସରୋବରେ,
ଦେଖିଲା ସେ ତହିଁ ଗଣ୍ଡଭେରୁଣ୍ଡ ବିହଙ୍ଗ,
ଉର୍ଦ୍ଧ୍ବେ ଚିଲା ମାରି ସରଣ୍ଟାରି-କରିପଲ୍ଲ
ତିନିଗୋଟା କରୀ ନେଇଗଲା ଚଞ୍ଚୁ ନଖେ;
କେହି କହେ, କିଷ୍କିନ୍ଧାର ମର୍କଟନଗରେ
ଶୁଣିଛି ସେ ନିଜ କର୍ଣ୍ଣେ କର୍ଣ୍ଣରସାୟନ
ମର୍କଟସୁନ୍ଦରୀଙ୍କର ସଙ୍ଗୀତ ମାଧୁରୀ;
କେହି କହେ, ବିଭୀଷଣପାଳିତ ସିଂହଳେ
ଦେଖି ଆସିଛି ସେ ରକ୍ଷଃ ଅଦ୍ଭୁତମୂରତି,
ଚତୁର୍ମୁଖ, ଅଷ୍ଟଭୁଜ, ଅଷ୍ଟପାଦ ଆଦି;
କେହି କହେ, "କାଶ୍ମୀରେ ମୁଁ ଦେଖିଲି ମାନବ
ଲମ୍ବ କର୍ଣ୍ଣ, ଏକ କର୍ଣ୍ଣ ଶେଯରୂପେ ପାରି,
ଆନ କର୍ଣ୍ଣେ ଘୋଡ଼ିହୋଇ ଶୁଅନ୍ତି ସେ ଶେଯେ।",
ଅବିଶ୍ୱାସବ୍ୟଞ୍ଜି-ସ୍ମିତ ଶ୍ରୋତାମୁଖେ ଦେଖି,
ସଦର୍ପେ ପକାଇ ରାଣ କହଇ ସେ ପୁଣି –

"ଆଜନ୍ମ ମୁଁ କହି ନାହିଁ ମିଥ୍ୟା କେଉଁ କାଳେ,
ମିଥ୍ୟାଠାରୁ ପାପ ଆଉ ନାହିଁ ତ୍ରିଜଗତେ।" (୩)
ସୁବସ୍ତ୍ରେ କୁତ୍ସିତ ବପୁ ଆବରି ଯତନେ,
ହାସ୍ୟେ ମିଷ୍ଟମୁଖ 'ଶାଠ୍ୟ' ଆସଇ ତାପରେ,
କଯତଳେ ତୀକ୍ଷଣଗୁପ୍ତି ଗୁପତେ ପୂରାଇ,
ବିଷଦିଗ୍‌ଧ, ବାହ୍ୟେ ବଡ଼ ନିରୀହମୂରତି,
ମାତ୍ର ବଡ଼ ଦାଉଘାତୀ ଦୁର୍ମତି ଅନ୍ତରେ,
ଆସୁଛନ୍ତି ଅନ୍ତେବାସୀ (୪) ଦୁରନ୍ତ ସରବେ,
କେହି ଚୌର୍ଯ୍ୟେ ରତ, କେହି କୃତ୍ରିମମୁଦ୍ରଣେ
କୃତ୍ରିମଲେଖ୍ୟଲିଖନେ, (୫) ସିଦ୍ଧେ କେହୁ ଅବା
କେହି ବିଷଦାନେ, କେହୁ ଗୁପତମାରଣେ,
ଧର୍ମଭେକଧାରୀ କେହୁ, ଗୈରିକବସନେ,
ଦୀର୍ଘ ଶ୍ମଶ୍ରୁ, ଦୀର୍ଘ ନଖ, ଦୀର୍ଘ ଜଟାଜୁଟେ
ମଣ୍ଡିତ, କାହାରି ଅବା ଭସ୍ମେ ବୋଳା ତନୁ,
କେହି ଅବା ଜପମାଳା ଜପେ ଅବିରତେ;
ନାନା ଗୂଢ଼-ଆବରଣେ ଆବୃତ ସରବେ,
ଭେଦି ନ ପାରଇ ଯାହା ଚକ୍ଷୁ ସାରସ୍ୱତ। (୬)
କୃଷ୍ଣଶୁକ୍ଳ ବେନିବର୍ଣ୍ଣ-ଛିନ୍ନବସ୍ତ୍ରଧାରୀ,
ବେନିକରେ ବେନି କାଠି ବଜାଇ କୌତୁକେ
ଆସଇ 'କଳହ', ଯାର ଶିରୋରୁହ ଶିରେ
ପରସ୍ପର ଅସଂଲଗ୍ନ, କଣ୍ଟକ ଯେସନ,
ଲେଖ୍ୟ, ନିଦର୍ଶନ, ସାକ୍ଷ୍ୟ, ବ୍ୟବସ୍ଥା, ପ୍ରମାଣ,
ମୀମାଂସା, ବର୍ଣ୍ଣନାପତ୍ର ଆଦି ଲିପି ଯେତେ,
ବିଡ଼ା ବିଡ଼ା କରି ଦୁଷ୍ଟ ଖୋସିଛି କଟୀରେ
ଅମୋଘ ଶୋଷଣ-ଅସ୍ତ୍ର! ଯେ ଅସ୍ତ୍ର ପ୍ରୟୋଗେ
ଶୋଷି ନିଏ ଧନୀଧନ, ଅନ୍ନ ଦରିଦ୍ରର
ଅଲକ୍ଷିତେ, ନାନାମତେ ଅନର୍ଥ ଭିଆଇ;
ସମଦଶାଭାଗୀ କରି ଅର୍ଥୀ ପ୍ରତ୍ୟର୍ଥୀକି; (୭)
ସଙ୍ଗେ ସଙ୍ଗେ ଆସୁଛନ୍ତି ବ୍ୟବହାରାଜୀବ, (୮)
କରଣ, ପାଞ୍ଜିଆ, ସାକ୍ଷୀ, ପଦାତିକ ଆଦି, (୯)
ଶିବାଗୃଧ୍ରରୂପୀ ଅଧିକରଣ-ମଶାଣେ! (୧୦)
ମୁହୁର୍ମୁହୁ ମାରି ହାଇ, ଫୁଟୁକି ଫୁଟାଇ
ଅର୍ଦ୍ଧନିମୀଳିତନେତ୍ରେ ଆସୁଅଛି ମଠେ

(୧) ମିଥ୍ୟାବାଦୀ ଲୋକେ ଅନର୍ଗଳ ସ୍ପଷ୍ଟ ବାକ୍ୟ କହି ପାରନ୍ତି ନାହିଁ। ଗୋଟିଏ ମିଥ୍ୟା ଘୋଡ଼ାଇବା ସକାଶେ ଆଉ ଗୋଟିଏ ମିଥ୍ୟା କହନ୍ତି, ତାକୁ ଘୋଡ଼ାଇବା ପାଇଁ ପୁଣି ମିଥ୍ୟା କହନ୍ତି। ଏତେ କରି ସୁଦ୍ଧା ଧରା ପଡ଼ନ୍ତି। (୨) ବଡ଼ିମା – ବଡ଼ପଣ। (୩) "ମୁଁ ଜୀବନରେ କେବେ ମିଥ୍ୟା କହି ନାହିଁ" ଏହିପରି ଉକ୍ତି ମିଥ୍ୟାବାଦୀଙ୍କ ମୁଖରୁ ପ୍ରାୟ ଶୁଣାଯାଏ। ମିଥ୍ୟାବାଦୀ ସାମାନ୍ୟ କଥାରେ ଶପଥ କରେ। (୪) ଅନ୍ତେବାସୀ – ଶିଷ୍ୟ। (୫) କୃତ୍ରିମଲେଖ୍ୟ – ଜାଲଦସ୍ତାବିଜ। (୬) ଚକ୍ଷୁ ସାରସ୍ୱତ – ସରସ୍ୱତୀଙ୍କ ଚକ୍ଷୁ। (୭) ମୋକଦ୍ଦମାରେ ବାଦୀ ପ୍ରତିବାଦୀ ଉଭୟ ପକ୍ଷର ସର୍ବନାଶ ହୁଏ। (୮) ବ୍ୟବହାରାଜୀବ – ଓକିଲ। (୯) କରଣ – ମୋହରିର; ପାଞ୍ଜିଆ – ମହାପିସ; ସାକ୍ଷୀ – ଗୁହା; ପଦାତିକ – [illegible]। (୧୦) ଅଧିକରଣ – ବିଚାରାଳୟ। ଏହି ଉପମାରେ ଅର୍ଥୀ ପ୍ରତ୍ୟର୍ଥୀ ଶବସ୍ଥାନୀୟ।

'ଆଳସ୍ୟ', କମଠଗତି, କୁତ୍ସିତମୂରତି,
ସେବକେ ମଳିନବେଶ, ଧୂଳିରେ ଧୂସର,
କେ ଆଗ୍ରହୀ ପରଛିଦ୍ର ଅନ୍ୱେଷଣେ ସଦା,
ପରନିନ୍ଦା, ପରକୁତ୍ସା କଥନେ, ସର୍ବନେ
ରତ କେହି, ମତ୍ତ ହୋଇ କେହି ଗଞ୍ଜାମୋଦେ
ଫୁତ୍କାରେ ଉଡ଼ାଏ କେତେ ରାଜା ମହାରାଜା,
ସର୍ବଜ୍ଞ ପରାୟେ କେହି, ନ ଦେଖି ନ ଶୁଣି,
କହେ କେତେ ରଙ୍ଗେ କଥା ବାହାପିଆପଣେ,
କେହି ବା ଠାପୁଆପଣେ, ଧର୍ମଧ୍ୱଜ ଧରି,
ପରଠାରୁ ସଦା ଅର୍ଥଶୋଷଣପ୍ରୟାସୀ
ଧର୍ମ ନାମେ, ନିଜ ପେଟ ପୋଷଣ ସକାଶେ,
ଚାଲୁଁ ଚାଲୁଁ ମାର୍ଗେ ବସି ପଡ଼ିଅଛି କେହୁ,
ଦନ୍ତେ କେହୁ କାଟେ ତୃଣ, କେହୁ ମାଟିପରେ
ନଖେ ଲେଖେ ଏଣୁ ତେଣୁ ମନକୁ ଯା ଆସେ,
ପେଣ୍ଡାବାଳ ମୁକୁଳାଇ ବସୁଅଛି କେହି,
ପଛେ ବସି ଆନ କେହୁ ମାରଇ ଉକୁଣି।
ଏ ଆଦି ଅଛନ୍ତି ଯେତେ ମହାସେନାପତି
କଳିର କିଲ୍‌ବିଷଦଳେ, ସମସ୍ତଙ୍କୁ ଘେନି
ପ୍ରଚଣ୍ଡ ବିକ୍ରମେ କଳି ଆକ୍ରମିଲା ଆସି
ଭାରତର ଧର୍ମପୁଞ୍ଜେ, ଦୁର୍ଜୟପ୍ରତାପୀ;
ଚିଲିକାର ନୀଳ ବକ୍ଷେ ଶ୍ୱେତହଂସରାଜୀ
ଶରତେ ଯେ କାଳେ ଥାନ୍ତି ରତ ସନ୍ତରଣେ,
କୁଞ୍ଚିତ ଚିଲିକା ବୀଚିପ୍ରହାରେ ଅଟଳ—
ଜଟିଆଜଟାରୁ ଯେବେ ସହସା ସଞ୍ଚାଣ (୧)
ମହାଖରବେଗେ ଖସି ଆସେ ଅଧୋମୁଖେ
ବକ୍ରନଖ ଅସ୍ତେ ବ୍ୟସ୍ତେ ପକ୍ଷିପନ୍ତି ଯଥା
ପଳାନ୍ତି ଚୌଦିଗ ଉଡ଼ି ଜୀବନବିକଳେ,
କିମ୍ୱା ଯଥା କୋଣାର୍କର ଅନନ୍ତସୈକତେ (୨)
କେତକୀ-କୁନ୍ତଳକୁଦୁଁ କୁଦି ମହାବଳ (୩)
ଆସିଲେ ତଳକୁ ଖସି, ପଳାନ୍ତି ତରାସେ
ଦ୍ରୁତପଦେ କୃଷ୍ଣସାର ସଙ୍ଗେ ମୃଗବଧୂ,
ସଦଳେ ଜଳିକି ଦେଖି, ବିକଳେ ତେସନ
ଅସ୍ତେ ବ୍ୟସ୍ତେ ଭାରତର ପୁଣ୍ୟପୁଞ୍ଜ ଯେତେ,
ସନା ଛାଡ଼ି ପଳାଇଣ ଲୁଚିଲେ କେ କାହିଁ;
ପୃଷ୍ଠରକ୍ଷୀ ଏକମାତ୍ର ଧର୍ମସହଚର
'ସାହସ' ପଡ଼ିଲୁ ରହି, କଳିସୈନ୍ୟହାତେ
ହେଲା ବନ୍ଦୀ, ତହୁଁ କାମ କଳି-ଆଜ୍ଞାମତେ
କିଙ୍କରସ୍ୱରୂପେ ତାକୁ ନେଲା ନିଜ ବଳେ।
ବିସ୍ମିତ ପୌରବେ ଚାହିଁ ଅନଳ ବିଷାଦେ
କହିଲେ, "ହେ ବୀର, ଏବେ ଦେଖ, କି ଦୁର୍ଗତି
'ସାହସ'ର ହେଲା କଳିଶାସନେ ଭାରତେ।
ଭାରତର ରକ୍ଷାପାଇଁ କ୍ଷତ୍ରିୟର ନେତା
ଥିଲା ଆଜିଯାଏଁ ଯେହୁ, ଏବେ ସେହି ସିନା
ଲମ୍ପଟର ସଖା ହେବ ଅଗମ୍ୟାଗମନେ,
ପ୍ରାଚୀର, ପରିଖା, ପୁର ଲଂଘି ଯିବାବେଳେ।" (୪)
ପଳାଇବାବେଳେ ଧର୍ମ ଯାଇଥିଲେ ଛାଡ଼ି
ଦିବ୍ୟପରିଚ୍ଛଦ 'ମୌନ' ନାମେ ଅଭିହିତ,
ସାଉଁଟି ସେ ପରିଚ୍ଛଦ 'ଶାଠ୍ୟ' ମହୋଲ୍ଲାସେ
ଅଗ୍ନିଦ, ଗରଦ, କୂଟଲେଖ୍ୟର ଲେଖକ, (୫)
ହତ୍ୟାକାରୀ, ସିନ୍ଧିଆଳ, ଚୌରାଦିକି ଡାକି
ନିଜ ଦଳୁଁ, ତାଙ୍କ ମୁଣ୍ଡେ ଦେଲା ଶାଢ଼ୀ ବାନ୍ଧି;
ଶାନ୍ତିରକ୍ଷକଙ୍କୁ ମାରି, ତାଙ୍କ ପରିଚ୍ଛଦେ
ନିଜ ବଳେ ସଜ୍ଜୀଭୂତ କରଇ ଯେସନେ
ଲୋକପ୍ରବଞ୍ଚନାପଟୁ ଦୁଷ୍ଟ ଦସ୍ୟୁପତି।
ବିଷଣ୍ଣ-ଅନ୍ତରେ ତହୁଁ କୌନ୍ତେୟ ସୁମତି
କହିଲେ, "ହେ ଦେବ, ବଡ଼ ବିଷମ ଏ କଥା।
ଅସହ୍ୟ ଏ ଦୃଶ୍ୟ ମୋର। ପବିତ୍ର ଭାରତେ,
ବ୍ରାହ୍ମଣର ମନ୍ତ୍ରବଳେ, କ୍ଷତ୍ରବୀର୍ଯ୍ୟବଳେ
ସୁରକ୍ଷିତ ଆର୍ଯ୍ୟଦେଶେ ଘଟିବ ଅନୀତି
ଏତେ ସରି? ଲାଗେ ବଡ଼ ଅସମ୍ଭବ ମୋତେ!"
ଶୁଣି ହବ୍ୟବାହଦେବ ନିଜ ଦିବ୍ୟ ତେଜ
ସମ୍ୱରିଣ, ଦରହାସ୍ୟେ କହିଲେ ପୌରବେ,
"ବ୍ରାହ୍ମଣ କ୍ଷତ୍ରିୟ ଘରେ ସର୍ବ ଅଗ୍ରେ ସିନା
ପଶିବ କୌଶଳୀ କଳି, ବଲ୍ମୀକସ୍ୱରୂପେ
ପଶିଣ ଗୁପତେ ସେହି ଧର୍ମ-ତରୁମୂଳେ,
ଅଲକ୍ଷିତେ କୋରି ମୂଳ, ଅନ୍ତଃସାର ହରି
କଣ୍ଟଜୀବୀ ସେ ଦ୍ରୁମର; ଦୂରୁ ଡାକିଆଣି
ଯବନଙ୍କୁ, ତାଙ୍କ ହସ୍ତେ ଗଡ଼ାଇବ ଭୂମେ,
ଅସାଧ୍ୟ ସେ ବ୍ୟାଧି, ଯାହା ଭାରତର ଦେହେ
ଘୋଟିବ, ଜାଣି ନ ଥିବେ ଧାନେ ଧନ୍ୱନ୍ତରି। (୬)
ସୁଶ୍ରୁତର ଶଲ୍ୟ-ତନ୍ତ୍ର ହାରିବ ସେ ବ୍ରଣେ। (୭)
ନୁହଇ ଉଚିତ ଆଉ ରହିବାର ଏବେ

(୧) ଜଟିଆ— ଚିଲିକାତୀରସ୍ଥ ପର୍ବତବିଶେଷ। (୨) କୋଣାର୍କ— ଅର୍କକ୍ଷେତ୍ର, ପୁରୀରୁ ୧୧ କ୍ରୋଶ ଉତ୍ତର-ପୂର୍ବରେ ଅବସ୍ଥିତ। ଏ ଅଞ୍ଚଳର ସମୁଦ୍ରବେଳାରେ ସହସ୍ର ସହସ୍ର ହରିଣ ଦେଖାଯାନ୍ତି। ଏ ଅଞ୍ଚଳର କେତକୀବନ ବ୍ୟାଘ୍ରସଙ୍କୁଳ। (୩) ମହାବଳ— ପଟାଳିଆ ବାଘ। (୪) ଅର୍ଥାତ୍ ଭାରତବାସୀମାନେ ଦେଶରକ୍ଷା ବିଷୟରେ ଭୀରୁ ହେବେ ଏବଂ କେବଳ ପାପକାର୍ଯ୍ୟରେ ସାହସୀ ହେବେ। (୫) ଗରଦ— ବିଷପ୍ରୟୋଗକାରୀ। କୂଟଲେଖ୍ୟ— ଜାଲ[illegible] ବ। (୬) ଧନ୍ୱନ୍ତରୀ— ଆର୍ଯ୍ୟବୈଦ୍ୟକର ଆଦିପ୍ରଣେତା। (୭) ସୁଶ୍ରୁତ— ଚିକିତ୍ସାଶାସ୍ତ୍ର-ପ୍ରଣେତା ଋଷି। [illegible] (surgery) ଆଦିପ୍ରଣେତା।

ବହୁଦିନ ଏ ଭାରତେ, ତୀର୍ଥାଟନ-ବ୍ରତ
ସାରି ହେ ଭାରତ, (୧) ବେଗେ ଯାଅ ହିମାଚଳେ;
ଧର୍ମେ ଏକତାନମତି, ଧର୍ମ ପକ୍ଷପାତୀ
ତୁମ୍ଭେ, ବୀର, ଅନାଚାର ଦମନେ ଅକ୍ଷମ
ହୋଇ, ଦହି ହେବ ସିନା ଆପେ ଅନୁତାପେ,
ବନ୍ଦୀ ପତି ଯେହ୍ନେ ପଦ୍ମୀଲାଞ୍ଛନା ଦର୍ଶନେ।
ଆସୁଛି ପାପର ବନ୍ୟା, ଭାରତଭରସା
ପାପ-ଜଳେ ଦ୍ୱୀପରୂପୀ ମହତ ଯେ ଜନ
ବୁଡ଼ିଯିବ ସିନା, ଆହା, ଏ ଘୋର ପ୍ଲାବନେ।
ତୁମ୍ଭ ପରି ସୁଚନ୍ଦନଦ୍ରୁମ ପାଇଁ ଆଉ
ନ ଥିବଟି ଠାବ ଏହି ବିଷବଲ୍ଲୀବନେ।
ଧର୍ମ-ଅନୁଷ୍ଠାନବ୍ରତେ ସହାୟ ବିହୁନେ
ସାଧୁର ଜୀବନ ହେବ ମହାବିଡ଼ମ୍ବନା,
ମହାଅନର୍ଥର ହେତୁ ହେବ କାଳବଶେ
ଧୈର୍ଯ୍ୟ, ବୀର୍ଯ୍ୟ, ପ୍ରତିଭାଦି ମହତ୍ତ୍ୱ ଯା କିଛି
ପୁରୁଷର, କାପୁରୁଷ-ପ୍ଲାବିତ ଭାରତେ;
କଳିଶିଷ୍ୟ-କୁକ୍ଷିମ୍ଭରୀ-ଦ୍ୱିଜାତି-ଦୁଷ୍କୃତି- (୨)
ଯୋଗେ ନାରଖାର ହେବ ଅଚିରେ ଏ ମହୀ।
ସେହି ଦେଶ, ସେହି ଗିରି, ସେହି ନଦନଦୀ,
ନଗର, ନଗରୀ, ତୀର୍ଥ, ଆଶ୍ରମାଦି କରି,
ସର୍ବେ ଥିବେ ପୂର୍ବପରି, ମାନବେ କେବଳ
ନାମକୁ ମାନବ ରହି ପଶୁଠାରୁ ହୀନ
ହୋଇଯିବେ ଯୁଗଧର୍ମେ ଭାରତମଣ୍ଡଳେ।''

## [ ପଞ୍ଚମ ସର୍ଗ ]

ଆଶାୟୀ (୩)-ଉତ୍କଳ-ଆଶା-କିଶୋରପାଦପ,
ଗୁଣାରାମ ରାମଚନ୍ଦ୍ର ଭଞ୍ଜକଞ୍ଜରବି, (୪)
ଭଞ୍ଜକୁଳଧ୍ୱଜ କୃଷ୍ଣଚନ୍ଦ୍ର ଜ୍ୟେଷ୍ଠାତ୍ମଜ,
ଶୁଣିଲି ମୁଁ ବହୁମୁଖୀ-ଜନଶ୍ରୁତି-ମୁଖେ
ନବରେ ତୁମ୍ଭର କଳି ପଶନ୍ତେ ପ୍ରଥମେ,
ଅବିରତ ଦାନବାରି-ପିଚ୍ଛିଳ ପ୍ରାଙ୍ଗଣେ (୫)
ସେ ନବରେ, ଚାଲୁଁ ଚାଲୁଁ ଅତି ସାବଧାନେ
ଖସରି ତା ଗୋଡ଼, ଦୁଷ୍ଟ ପଡ଼ିଲା କଚାଡ଼ି
ଉତାନେ, ବାହୁଡ଼ି ତେଣୁ ଗଲା ଅପମାନେ;
ସତ୍ୟ କି ହେ ଏ କାହାଣୀ ? ମିଥ୍ୟାବୋଲି ଅବା
କେମନ୍ତେ ବୋଲିବି ? ଯେଣୁ ଦେଖୁଛି ନୟନେ
ପଶି ନାହିଁ ଦୁଷ୍ଟ ତୁମ୍ଭ ହୃଦୟ-କୁସୁମେ
କୀଟରୂପେ, କୂଟନୀତି ପ୍ରୟୋଗ ଅଗ୍ରଣୀ; (୬)
'ମଦନ' 'ଆଳସ୍ୟ' ନାମେ ବେନି ସେନାପତି
ଛନ୍ତି ଯେହୁ କଳି ସୈନ୍ୟେ, ବଡ଼ ପଟୁ ସେହି
ଜିଣିବାକୁ ରାଜକୁଳ; ଜିଣି ଅବହେଳେ
ଅଳ୍ପକାଳେ ଶତ ଶତ ଭୂପ ଭୂଭାରତେ,
କଳିରାଜ ସଭାତଳେ ବନ୍ଧାଇଲେ ଶାଢ଼ୀ;
ତରୁଣ ଯୌବନ, ପୁଣି ରୂପ ଅପ୍ରତିମ,
ଗର୍ଭେଶ୍ୱରପଣ ଦେଖି ତୁମ୍ଭର, ଏ ବେନି (୭)
ପାଞ୍ଚିଥିଲେ, ଗୁପ୍ତେ ଏହି ତିନି ମାର୍ଗେ ପଶି (୮)
ତୁମ୍ଭ ହୃଦ-ଦୁର୍ଗଚୂଳେ ପୋତିବେ ପତାକା।
ମାତ୍ର ସବିସ୍ମୟେ ଦେଖି ବିବେକ-ପ୍ରହରୀ
ପ୍ରତି ମାର୍ଗେ, ବ୍ୟଗ୍ରେ କ୍ରୂରେ ପଳାଇଲେ ଦୂରେ;
'କ୍ରୋଧ'ଟି ଦୁର୍ଜୟ ରିପୁ, ନିଜେ ମୃତ୍ୟୁଞ୍ଜୟ
କାମେ ଜିଣିବାକୁ ଯାଇ ହାରିଲେ ଯା ପାଶେ,
ନିରଙ୍କୁଶ ପ୍ରଭୁପଣ ସତ୍ତ୍ୱେ ସେ ତୁମ୍ଭର
ଆଣି ନ ପାରିଲା ଚାରୁନେତ୍ରେ ଅରୁଣିମା, (୯)
ସ୍ୱଦୋଷଦର୍ଶିତାରୂପ ପ୍ରଚ୍ଛନ୍ନ କଞ୍ଚୁକେ
ଆବୃତ ତୁମ୍ଭର ହୃଦ, ନ ଜାଣି ଏ କଥା, (୧୦)
ନିଜ ତୂଣ ଶୂନ୍ୟ ସିନା କଲା ସେ ବିଫଳେ; (୧୧)
ଖଳ କାନକୁହା ଆଦି ଈର୍ଷା-ଉପାସକେ
ପୂର୍ଣ୍ଣ ସଦା ରାଜସଭା, 'ଈର୍ଷା' ଏହା ଜାଣି
ଚାକିରହିଥିଲା ତୁମ୍ଭ ହୃଦେ ପଶିବାକୁ
ତାଙ୍କ ଯୋଗେ, ବୃଥା ହେଲା ଈର୍ଷାର ସେ ଆଶା,
ଯେଣୁ ତୁମ୍ଭେ ଏକ କର୍ଣ୍ଣେ କାନକୁହା ବାଣୀ

(୧) ଭାରତ– ଭରତବଂଶୋଦ୍ଭବ, ଯୁଧିଷ୍ଠିରଙ୍କୁ ସମ୍ବୋଧନ। (୨) କୁକ୍ଷିମ୍ଭରୀ– ସ୍ୱୋଦର ପୋଷଣରେ ବ୍ୟସ୍ତ। (୩) ଆଶାୟୀ– ଆଶାଯୁକ୍ତ। (୪) ରାମଚନ୍ଦ୍ର– ମୟୂରଭଞ୍ଜାଧିପତି ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ। (୫) ଦାନ ଦେବା ସମୟରେ ଯେଉଁ ଜଳ ଦେବାକ ହୁଏ ତଦ୍ୱାରା ପିଚ୍ଛିଳ୍ପ ବ୍ରାହ୍ମଣମାନଙ୍କ ପ୍ରତି ମୟୂ ଭଞ୍ଜ ରାଜବଂଶର ବଦାନ୍ୟତା ଉତ୍କଳପ୍ରସିଦ୍ଧ। (୬) କୂଟନୀତିପ୍ରୟୋଗ ଅଗ୍ରଣୀ– ଦୁଷ୍ଟକଳିର ବିଶେଷଣ। (୭) ଗର୍ଭେଶ୍ୱର– ଗର୍ଭରୁ ଅର୍ଥାତ୍ ଜନ୍ମରୁ ରାଜା। (୮) ଯୌବନ, ରୂପ ଏବଂ ଗର୍ଭେଶ୍ୱରତ୍ୱ ପାପର ଏ ତିନୋଟି ପ୍ରଶସ୍ତ ମାର୍ଗ। (୯) ତରୁଣବୟସ୍କ ମହାରାଜା ଶ୍ରୀରାମଚନ୍ଦ୍ରଙ୍କୁ କ୍ରୋଧାଧୀନ ହେବାର ପ୍ରାୟ ଦେଖାଯାଇ ନାହିଁ। (୧୦) ସ୍ୱଦୋଷଦର୍ଶୀ ଲୋକେ ଅନ୍ୟ ଉପରେ ପ୍ରାୟ କ୍ରୋଧ କରନ୍ତି ନାହିଁ। ବାଲ୍ମୀକି ରାମଚନ୍ଦ୍ରଙ୍କୁ 'ସ୍ୱଦୋଷଦର୍ଶୀ' ଏହି ବିଶେଷଣ ଦେଇଅଛନ୍ତି। (୧୧) ତାହାର ସମସ୍ତ ଶର ବିଫଳ ହେଲା।

ଶୁଣି ଅନ୍ୟ କର୍ଣ୍ଣ ମୁକ୍ତ ରଖିଲ ଗୁପତେ
ଶୁଣିବାକୁ ଅଭିଯୁକ୍ତ କଥା ଯଥାକାଳେ;
ଆଉ ଯେତେ ଥିଲେ କଳିମୁଖ୍ୟସେନାପତି,
'କାମ' 'କ୍ରୋଧ' ଆଦିଙ୍କର ଦେଖି ଏ ଦୁର୍ଦ୍ଦଶା,
ମୁଣ୍ଡେ କର ଦେଇ ସର୍ବେ ବସିଛନ୍ତି ଦୂରେ
ନିରାଶେ, ତୁଟିଛି ମନୁ ଦାରୁଣ ଜିଗୀଷା;
ମାତ୍ର ଏ ଦୁରନ୍ତଦଳେ ତିଳେ ନାହିଁ ପ୍ରତେ,
ବିଶ୍ୱାସଘାତକ ଏହୁ, ଛିଦ୍ର ଲୋଡ଼ିବାର
ନିତ୍ୟବ୍ରତ ଏହାଙ୍କର କଳିରାଜପଣେ;
ରହିବା ଉଚିତ ତେଣୁ ଜାଗରୂକ ହୋଇ
ତୁମ୍ଭର, ହେ ବୀର, ଏହି ତରୁଣଯୌବନେ,
ସ୍ମରିବ ନିରତେ, ପ୍ରଜାପୁଞ୍ଜ-ଗଣଭାର
ମୁଣ୍ଡାଇଛ ମୁଣ୍ଡେ ରାଜମୁକୁଟର ବ୍ୟାଜେ।
ସ୍ମରିବ ନିରତେ ତୁମ୍ଭ ଜନ୍ମ ଭବତଳେ
ନୁହଇ, ହେ କ୍ଷଣଜନ୍ମା, ଏକା ତୁମ୍ଭପାଇଁ,
ତାରକାଦଳର ଜ୍ୟୋତି ତାଙ୍କ ପାଇଁ ସିନା,
ମାତ୍ର କି ଚନ୍ଦ୍ରର ପ୍ରଭା ଏକା ଚନ୍ଦ୍ରପାଇଁ?
ଉତ୍କଳର ଆଶା-ନଭେ ତୁମ୍ଭେ ଶୁଭକ୍ଷଣେ,
ହେ ରାଜେନ୍ଦ୍ର, ବିରାଜୁଛ ଦ୍ୱିଜରାଜରୂପେ, (୧)
"ରାଜା ରାଜ୍ୟାଶ୍ରମ-ଋଷି" କବିର ଏ ବାଣୀ (୨)
ଫଳିଆସୁଅଛି ତୁମ୍ଭ ପବିତ୍ର ଜୀବନେ;
ଭାଗ୍ୟେ, କର୍ମେ, ବେନି ଦିଗେ ସୁଲକ୍ଷଣଯୁତ
ତୁମ୍ଭ ପରି ପୁତ୍ର ପାଇ ପୁତ୍ରବତୀ ଆଜି
ଚିରଅଭାଗିନୀ ଏହି ଉତ୍କଳଜନନୀ;
ହୀରା ନୀଳା ଆଦି ଗ୍ରାମ୍ୟଆଭରଣଭାରେ
ଭାରାକ୍ରାନ୍ତ ଭୂପଦଳେ ନିରତେ ଦୁର୍ଲଭ
ବିଦ୍ୟା ଦୟା ବିନୟାଦି ଅଗ୍ରାମ୍ୟଭୂଷଣେ
ଭୂଷିତ ତୁମ୍ଭଙ୍କୁ, ଭଞ୍ଜରାଜଲକ୍ଷ୍ମୀସହ,
ଦେଖଇ ଉତ୍କଳ, ଆହା, ଯେହ୍ନେ ନିଶୀଥିନୀ (୩)
ଧ୍ରୁବଙ୍କୁ ଦେଖନ୍ତି କୋଟି ତାରା-ନେତ୍ର ଫେଡ଼ି,
କିମ୍ବା ଯଥା ଦେବଦଳ ଜଳଧିମନ୍ଥନେ
ହେରିଲେ ହରଷେ ଦିବ୍ୟ ଜ୍ୟୋତିପୁଷ୍ପଧାରୀ
ସିନ୍ଧୁବାରିସମୁତ୍ଥିତ ପାରିଜାତତରୁ,
ସଙ୍ଗେ ବିଶ୍ୱବନ୍ଦ୍ୟା ଦେବୀ ଇନ୍ଦିରା ସୁନ୍ଦରୀ
ଜ୍ୟୋତିର୍ମୟୀ ଜ୍ୟୋତିର୍ମୟକମଳବାସିନୀ;
କଳ୍ପତରୁ ଲଭି ଯଥା ତ୍ରିଦିବଦୁର୍ଗତି
ଘୁଞ୍ଚିଗଲା, ଘୁଞ୍ଚିଯାଉ ଉତ୍କଳମାତାର,
ଭଞ୍ଜରବି, ତୁମ୍ଭ ଯୋଗେ ଦୁର୍ଯୋଗ-ଜଡ଼ତା।

ଚିରନିରାନନ୍ଦ ମୂର୍ହି ଦାରୁଣ ବିପାକେ,
ଝୁରୁଅଛି ନୈରାଶ୍ୟର ଅତଳ କୁହରେ,
ତଥାପି, ଯଶସ୍ୱି, ତୁମ୍ଭ ସୁଯଶସୌରଭେ
ଜଡ଼କଣ୍ଠ ମୋର ଆଜ ମୁଖର ସଙ୍ଗାତେ,
ପଲ୍ଲବ ମୁକୁଳ ଫୁଲ ମୃଦୁଳେ ଦୋଳାଇ,
କୁଞ୍ଚାଇ ତରଙ୍ଗମାଳେ ତଟିନୀର ବେଣୀ,
ମୁଖରି ନିକୁଞ୍ଜବନେ ବନପ୍ରିୟକୁଳେ,
ସୁରୁ ସୁରୁ ସ୍ୱନେ ଯେବେ କେଦାରେ କାନ୍ତାରେ
ପ୍ରସରେ ମଳୟସ୍ରୋତ ପରିମଳସଖା,
ଉଲ୍ଲାସେ ଦୁଃଖର କ୍ଷଣବିସ୍ମୃତିକି ଲଭି
ପିଞ୍ଜରବିହଙ୍ଗ ଯଥା ରାବେ କ୍ଷଣେ କ୍ଷଣେ,
ତୁମ୍ଭରି ଆଦେଶେ, ବୀର, ଏ ମହାଗୀତିକା
ଗାଇବା ଆଶୟେ ଏବେ ଧରିଛି ମୁଁ କରେ
ଚିରମୂକ ବୀଣା ମୋର ସିକ୍ତ ନେତ୍ରଜଳେ,
ଆଦିଷ୍ଟ ଏ ଗୀତ ଆସୁ ଦିବ୍ୟ ଅବଧାନେ।

ଗୃହସ୍ଥ ସଞ୍ଚୟପଟୁ ଯତନେ ସମ୍ପାଦି
ସମ୍ପତ୍ତିକି, ଠୁଳ କରି ରଖି ଆତ୍ମଘରେ,
ନିଶ୍ଚିନ୍ତ ରହଇ ଅଗ୍ନିଭୟୁଁ ମନେ ମନେ,
ଦେଖିବେ ଯେବେ ଦେଖେ ବହ୍ନି ଆତ୍ମମଣ୍ଡତଳେ
ଗୃହପତି, କାତର ସେ ହୁଅଇ ଯେସନେ;
ବିପ୍ର, କ୍ଷତ୍ରିୟ ଭାବୀ ଅବନତି ଶୁଣି
କାତର ତେସନ ହେଲେ କୌନ୍ତେୟ (୪) ସୁମତି
ସାଶ୍ରୁନେତ୍ରେ କର ଯୋଡ଼ି ବୈଶ୍ୱାନର ପଦେ
ପଡ଼ିଣ କହିଲେ, "ପ୍ରଭୁ, ତ୍ରିକାଳଦରଶୀ
ତୁମ୍ଭେ ଯେଣୁ, କହ ମୋତେ କିରୂପେ ଭାରତେ
ଘଟିବ ଏ ମହାନର୍ଥ, ସୁଜଳା ସୁଫଳା
ଏ ଶସ୍ୟଶ୍ୟାମଳା ଧରା ପରହାତେ ଦେଇ
ପରପଦାନତ କି ହେ ହେବେ ଆର୍ଯ୍ୟସୁତେ?
ଏ ମର୍ତ୍ତ୍ୟନନ୍ଦନ, ଦେବ, ହେବ କି ହେ ସତେ
ଭୀଷଣ ଦାନବଙ୍କର ବିହାର-ଅଗଣା?
ଆର୍ଯ୍ୟସ୍ୱାଧୀନତା-ରବି ଅସ୍ତମିତ ହୋଇ
ଭାରତ କି ପରିଣତ ହେବ ଅବଶେଷେ
ଊର୍ଜ୍ଜସ୍ୱଳ-ଆର୍ଯ୍ୟଙ୍କର ଗୌରବ-ଶ୍ମଶାନେ?
ଉତ୍ତରିଲେ ଅଗ୍ନି, "ବୀର, ଘଟିବ ନିକର
କହିଲି ଯା, କେବେ ତାହା ନୋହିବ ଅନ୍ୟଥା,
ସ୍ୱାଧୀନତା ବୋଲି ଯାହା ବୋଇଲ ଆପଣେ,
ସେ କେବଳ ଷଡ଼ରିପୁପ୍ରଭୁତାର ଛାୟା,(୫)

(୧) ଦ୍ୱିଜରାଜ– ଚନ୍ଦ୍ରମା। (୨) କାଳିଦାସଙ୍କର ଉକ୍ତି। ରାଜ୍ୟରୂପ ଆଶ୍ରମର ରାଜା ଋଷି ଅଟନ୍ତି। ବିଳାସିତା ରାଜଧର୍ମ ନୁହେଁ। (୩) ନିଶୀଥିନୀ– ରଜନୀ। (୪) କୌନ୍ତେୟ– କୁନ୍ତୀପୁତ୍ର ଯୁଧିଷ୍ଠିର। (୫) ଷଡ଼ରିପୁପ୍ରଭୁତା– ଷଡ଼ରିପୁ ଉପରେ ପ୍ରଭୁତ୍ୱ ଅର୍ଥାତ୍ ପ୍ରକୃତ ସଂଯମୀ ନ ହେଲେ ଲୋକେ ସ୍ୱାଧୀନପଦବାଚ୍ୟ ହୁଅନ୍ତି ନାହିଁ।

ସେ ପ୍ରଭୁତା ଚାଲିଗଲେ କଳିର କୌଶଳେ,
ବଳେ ଯିବ ସ୍ୱାଧୀନତା, ପିଣ୍ଡ ସଙ୍ଗେ ଯଥା
ଚାଲିଯାଏ, ପାଣ୍ଡୁନାଥ, ସେ ପିଣ୍ଡର ଛାୟା;
ରିପୁଅଧୀନତା ସଙ୍ଗେ ପରଅଧୀନତା
ଆସିବ ସ୍ୱଭାବେ, ରୋଗେ ଉପସର୍ଗପରି,
ସାରସ୍ୱତ ବ୍ରାହ୍ମଣର ବାଣୀ ଆରାଧନା (୧)
ଚିରବ୍ରତ, ଏବେ ସେହି ଦେବୀ ତିରୋଭାବେ
ବ୍ରହ୍ମଚର୍ଯ୍ୟ ତେଜି ବିପ୍ରେ ହେବେ କଳିଯୁଗେ
ଲୋଭମୋହ-ଜାଲେ ପଡ଼ି ଅବିଦ୍ୟାସେବକ,
ଚନ୍ଦ୍ରିକାପୀୟୂଷପାୟୀ ଚକୋର ଔରସେ,
ଜନ୍ମିବେ ଉଲୂକ ଅମାତିମିରପ୍ରଣୟୀ,
ଅକର୍ମଣ୍ୟ ଦ୍ୱିଜାତିର ହେବ ଅବଶେଷେ
ଷଟକର୍ମେ ଷଷ୍ଠକର୍ମ ଏକମାତ୍ର ବ୍ରତ, (୨)
ତପ, ଦମ, ନିୟମାଦି ସବୁ ଦୂରେ ଯାଇ
ଏକମାତ୍ର ଯଜ୍ଞସୂତ୍ର ଗୁଣ ଥିବ ଗୁଣେ, (୩)
ଧର୍ମକୁ କରିବେ ବିପ୍ରେ ଜୀବନଜୀବିକା,
ମୂଢ଼ପଣେ ଏହି ଜାତି ଏ ମର୍ତ୍ତ୍ୟମଣ୍ଡଳେ
(କୂପକୁ ସେ କୂପବାସୀ ମଣ୍ଡୂକ ଯେସନ)
ଏକମାତ୍ର ଦେଶ ଏହି ଭାରତକୁ ମଣି,
ଭାରତବାସୀଙ୍କି ଦୃଢ଼ କର୍ମକାଣ୍ଡ ଜାଲେ
ଛନ୍ଦିବେ, ସେ ଜାଲେ ପୁଣି ନିଜେ ହେବେ ଛନ୍ଦି
ସେ ଜଟିଳ କର୍ମକାଣ୍ଡେ ହୋଇ ବିଜଡ଼ିତ,
ଧର୍ମର ଯେ ସାର, ତାକୁ ଛୁଡ଼ି ଆର୍ଯ୍ୟସୁତେ
ଯାପିବେ ଜୀବନ ଧର୍ମ-ତୁଷେ ତୁଷ୍ଟ ହୋଇ। (୪)
ଯଜମାନପାଇଁ ଖାତ ଖୋଳିଣ ଗର୍ତ୍ତିଳେ,
ତହୁଁ ଯଜମାନଙ୍କର ବିରାଟସମ୍ପାତେ (୫)
ବାଟ ନ ପାଇବେ ନିଜେ ପଳାଇବା ପାଇଁ,
ଯଜମାନ ସଙ୍ଗେ ହେବେ ପୋଥିତ ସେ ଖାତେ;
ଅକ୍ଷୁଣ୍ଣ ରଖିବା ଲାଗି ସ୍ୱଜାତି ପ୍ରଭୁତା,
ଯଜମାନଜାତିଙ୍କର ଐକ୍ୟ ଭାଙ୍ଗିଦେଇ
ଶତ ଶତ ଉପଜାତି ସୃଜିବେ ବ୍ରାହ୍ମଣେ,
ଭେଦବୁଦ୍ଧି ଉପୁଜାଇ ମାନବେ ମାନବେ;
ସମାଜେ ଏ ହୀନଭାବ ଘୁଣରୂପେ ପଶି
ଅସ୍ଥି ମଜ୍ଜା ଶୋଷି ତାକୁ କରିବ ଜର୍ଜର;
ଏକ ଆରେକର ସର୍ଶେ ମଣିବ ଅଶୁଚି
ଆପଣାକୁ, ଅପବିତ୍ର ପଶୁଠାରୁ ପୁଣି
ହୀନ କରି ମାନବକୁ ମଣିବେ ମାନବେ।
କ୍ରମେ ଗୃହବିଗ୍ରହର ସୂତ୍ରପାତ ହୋଇ
ଏହିରୂପେ ଛିନ୍ନଭିନ୍ନ ହେଲେ ଆର୍ଯ୍ୟଜାତି,
ବିଶ୍ୱପୂଜ୍ୟ ଆର୍ଯ୍ୟଙ୍କର ଏହି ପୁରାତନୀ
ଭୂମି ହେବ ଛିଦ୍ରାନ୍ୱେଷୀ ଶତ୍ରୁର ଆମିଷ; (୬)
ବ୍ରାହ୍ମଣର ତପଃଫଳେ ହୋଇଥିଲା ଯେହୁ,
ଭାରତୀର ଲୀଳାକ୍ଷେତ୍ର, ସେ ଭାରତ ଏବେ
ହେବ ପରିଣତ ସେହି ବ୍ରାହ୍ମଣର ପାପେ
ଅଜ୍ଞାନ ଅନ୍ଧାରମୟ ଭୀଷଣ ଶ୍ମଶାନେ।
'ମଦନ', 'ଆଳସ୍ୟ', 'ଈର୍ଷା', ତିନି ସେନାପତି
ପଶିବେ ରାଜନ୍ୟଗୃହେ କଳିଆଜ୍ଞାମତେ,
ଆମନ୍ତ ସାଧନ ସେହି ଦୃଢ଼ପ୍ରତିଜ୍ଞତା,
ସେ ସାହସ ତୃଣ-ପ୍ରାଣ ଦେଶରକ୍ଷାବ୍ରତେ, (୭)
ସେ ପ୍ରଭାବ ଦୀପ୍ତିମନ୍ତ ଯେହ୍ନେ ମୋର ଶିଖା,
ବଜ୍ରସାର ସେହି ବୀର୍ଯ୍ୟ ଥିଲା ଆଜିଯାଏ
କ୍ଷତ୍ରର ଯା ପ୍ରିୟଧର୍ମ ସବୁ ଯିବ ଚାଲି,
ସବୁ ଯାଇ ଅଭିମାନ ରହିବ କେବଳ,
ସରସେ କର୍ଦ୍ଦମ ଯଥା ରହେ ଅବଶେଷେ
କମଳ କୁମୁଦ ସଙ୍ଗେ ଜଳ ଗଲେ ଶୁଖି।
ଜୀବନ୍ତଭାରତଦୁର୍ଗରୂପୀ ଏହି ଜାତି (୮)
ବୀର୍ଯ୍ୟହୀନ ଅକର୍ମଣ୍ୟ ହେବେ ଅଳ୍ପଦିନେ,
ଅଳ୍ପଦିନେ ଦ୍ରୋଣାଚାର୍ଯ୍ୟ ଶିଷ୍ୟବଂଶଧରେ
ଆଚରିବେ ଯୁଦ୍ଧବିଧି କେବଳ ଗଳ୍ପେ,
ଧନୁ, ଗଜାଙ୍କୁଶ, ଅସି, ଗଦା ଆସ୍ଫାଳନେ
କର୍କଶ ଯାଙ୍କର ହସ୍ତ ତାଙ୍କରି ସନ୍ତତି
ଭୀରୁ ପ୍ରାଣରଙ୍କ (୯), ଆହା, ହୋଇ କାଳବଶେ
ହସ୍ତୀ ଦେଖି ଦଶଶତ ଅଶ୍ୱ ଦେଖି ଶତ—
ହସ୍ତ ଦୂରେ ଯାଇଁ ଉଭା ହେବେ ମହାତ୍ରାସେ।
ନିଜ ସନ୍ତତିଙ୍କି ପୁଣି ଆଚାର୍ଯ୍ୟ ଅଣାଇ,
ଶ୍ଳୋକରୂପେ ଶିଖାଇବେ ଏହି ଭୀରୁନୀତି,
ଏ ମହାପ୍ରତାପୀ ଜାତି ହୀନୁ ହୀନତର
ହୋଇଯିବେ ଦିନୁ ଦିନ କଳିଉତ୍ପୀଡ଼ନେ।
ପୂର୍ବତେଜୁଁ ଅବଶିଷ୍ଟ ଥିବ ଯାହା କିଛି,
ଭିଆଇବ ସେହି ତେଜେ ଯୁଦ୍ଧ ପରସ୍ପରେ,

(୧) ସାରସ୍ୱତ— ସରସ୍ୱତୀଭକ୍ତ। (୨) ଷଟ୍‌କର୍ମ—ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ, ପ୍ରତିଗ୍ରହ। ସବୁ ଯାଇ କେବଳ ଶେଷକର୍ମ ଅର୍ଥାତ୍ ପ୍ରତିଗ୍ରହ ରହିବ; ଅର୍ଥାତ୍ ବ୍ରାହ୍ମଣମାନେ ଭିକ୍ଷୋପଜୀବୀ ହେବେ। (୩) ପ୍ରଥମ ଗୁଣ ଶବ୍ଦର ଅର୍ଥ ରଜ୍ଜୁ। ଦ୍ୱିତୀୟ ଗୁଣ ଶବ୍ଦର ଅର୍ଥ ଧର୍ମ। (୪) ବାହ୍ୟ ଅନୁଷ୍ଠାନାଦି ଧର୍ମର ଅସାର ଅଂଶ। (୫) ବିରାଟସମ୍ପାତ— ବୃହତ୍ ପତନ। (୬) ଆମିଷ— ଶିକାର। (୭) ଯେ ସାହସ ଦେଶରକ୍ଷା ସକାଶେ ନିଜର ପ୍ରାଣକୁ ତୃଣବତ୍ ମଣେ। (୮) କ୍ଷତ୍ରମାନେ ଭାରତବର୍ଷର ଜୀବନ୍ତଦୁର୍ଗ ପରି ଥିଲେ। (୯) ପ୍ରାଣରଙ୍କ— ପ୍ରାଣରକ୍ଷା ନିମନ୍ତେ ଆତୁର।

'ଈର୍ଷା' ଆସି, ଗତ ହୋଇ ସେ ବୃଥା ବିଗ୍ରହେ
ବହିରାକ୍ରମଣଭୟ-ପ୍ରତିକାରବିଧି
ଭାଳିବାକୁ ନ ଥିବଟି ଅବସର ତିଳେ,
ଉପରେ ଉଡ୍ଡୀୟମାନ ଯବନ-ଗରୁଡ଼େ
ଦେଖି ସୁଦ୍ଧା ଯୁଝୁଥିବେ ଗଜ କୂର୍ମ ପରି
ଭାବୀ-ଅନ୍ଧ, ବର୍ତ୍ତମାନସର୍ବସ୍ୱ ବର୍ବରେ, (୧)
ସର୍ବେ ଆତ୍ମଚିନ୍ତାରତ, ସର୍ବେ ଜାତିଦ୍ରୋହୀ, (୨)
ଆତ୍ମରକ୍ଷାବ୍ରତୀ ଜନ୍ମଭୂମି-ଅଧଃପାତେ,
ଭାରତର ନାନା ଅଂଶେ ଛନ୍ତି ଆର୍ଯ୍ୟ ଯେତେ
ଭିନ୍ନ ଭିନ୍ନ ନାମ ବହି, ଆର୍ଯ୍ୟଟି ସରବେ;
ହୋମାନଳ, ଦାବାନଳ, ବାଡ଼ବଅନଳ
ଏ ଆଦି ବିବିଧ ନାମେ ପ୍ରସିଦ୍ଧ ଜଗତେ
ଯଥା ମୁହିଁ, କୁରୁବର୍ଷେ, ପାଞ୍ଚାଳେ, ଅବଧେ, (୩)
କାଶ୍ମୀରେ, ନେପାଳେ, ପୁଣି ମଗଧେ, ମୈଥିଳେ,
ଅଙ୍ଗେ, ବଙ୍ଗେ, ଉତ୍କଳେ, ପୁଣି କଳିଙ୍ଗେ, ଦ୍ରବିଡ଼େ
କର୍ଣ୍ଣାଟେ, କେରଳେ, ପାଣ୍ଡ୍ୟେ, ମହାରାଷ୍ଟ୍ରେ, ଚୋଳେ
ବିଦର୍ଭେ, ନିଷଧେ, ମତ୍ସ୍ୟେ, ତ୍ରିଗର୍ତ୍ତେ, ଗୁର୍ଜ୍ଜରେ,
ଗାନ୍ଧାରାଦି କରି ସିନ୍ଧୁ-ମାତୃକ ପ୍ରଦେଶେ (୪)
ନିବସନ୍ତି, କୁରୁବର୍ଯ୍ୟ (୫), ଆର୍ଯ୍ୟସୁତ ଯେତେ
ଆଖ୍ୟାରେ ପୃଥକ, ମାତ୍ର ରକ୍ତେ ସର୍ବେ ଏକା;
ଈର୍ଷ୍ୟାର କୁହୁକେ, ଆହା, ପାସୋରି ଏ କଥା,
ଆର୍ଯ୍ୟରକ୍ତସ୍ରୋତେ ଆର୍ଯ୍ୟେ ପ୍ଲାବିବେ ଅବନୀ,
କଳିର ଆତ୍ମହାନୀତିକ୍ରୀଡ଼ନକ ହୋଇ; (୬)
ଫଣିନୀର ଶିରୋମଣି କାଢ଼ି ନେବା ପାଇଁ
ନ ଲୋଡ଼େ କେ? ମାତ୍ର ତାର ବିଷଦନ୍ତ ବେନି
କୃତାନ୍ତର ଦୂତ ମଣି, କତି ପଶିବାକୁ
ଭରସି ପାରେ କି କେହି? ରାଜନ୍ୟ ବ୍ରାହ୍ମଣେ (୭)
ଭୂତଳେ ଅତୁଳରୂପରତନକୁନ୍ତଳା –
ଭାରତଭୁଜଙ୍ଗୀର ଏ ଥିଲେ ସିନା ବେନି
ବିଷଦନ୍ତ, ସର୍ବ ଅଗ୍ରେ ଭାଙ୍ଗିବ ତା କଳି,
ନିର୍ବିଷ ଭାରତେ ଦେଖି, ଆସିବେ ଦଉଡ଼ି
ଦୁରୁଁ ବୈଦେଶିକଦଳ ଶିରୋମଣିଲୋଭେ
ପଲେ ପଲେ, ଶସ୍ୟକ୍ଷେତ୍ରେ ଶଲଭ ଯେପରି;
ବିରାଜେ ଯାବତ, ବୀର, ମୋ ତେଜ ଅଙ୍ଗାରେ,
ପାରେ କି ପରଶି କେହି? ହେଲେ ତା ନିର୍ବାଣ,
ଅବଜ୍ଞାରେ ଲୋକେ ତାହା ଦଳନ୍ତି ଚରଣେ,
ଦ୍ୱିଜାତିର ତେଜଃପୁଞ୍ଜ ଲିଭିଲେ ସେରୂପେ
ଏ ଆର୍ଯ୍ୟସମାଜ ତଥା ଦଳି ବୈଦେଶିକେ,
ଅକ୍ଷମ ପତିର ରୂପବତୀ ନାରୀ ପରି
ନିଯୋଜିବେ ନିଜ ଭୋଗେ ଭାରତ ଅବନୀ,
ଶକ୍ତିରେ ସିଂହାର ଯାହା, ଶକ୍ତି ଗଲେ ତାଲି, (୮)
ପାର୍ଥ, ସେ ସିଂହାର ହୁଏ ଅନର୍ଥର ହେତୁ, (୯)
ଅନର୍ଥର ହେତୁ ତେଣୁ ହେବ କଳିଯୁଗେ
ଭାରତଭୂମିର ଏହି ଅନୁପମ ଶୋଭା।''
ବୋଇଲେ ପାଣ୍ଡବମଣି ଆର୍ଯ୍ୟଶିରୋମଣି
ଭାବୀ-ଆର୍ଯ୍ୟ ଦୁଃଖେ ଦୁଃଖୀ, ''ଭୋଦେବ, ଭାରତେ,
ବିଶାଳ ଭାରତେ, ଆହା, ଜଣେ ହୋଇ କେହି
ଜନ୍ମିବ ନାହିଁ କି କେବେ ଉଦ୍ଧାରିବାପାଇଁ
ଆର୍ଯ୍ୟଙ୍କର ପୁରାତନ ଲୁପ୍ତ ଗଉରବ?
ବ୍ରାହ୍ମଣର ଏ ଦୁଷ୍କ୍ରିୟା-ପ୍ରତିକ୍ରିୟାବ୍ରତେ
କେହି କି ନୋହିବେ ବ୍ରତୀ? କେହି କି ନୋହିବେ
ଶକ୍ତ ଭାଙ୍ଗିବାକୁ ସେହି ସ୍ୱାର୍ଥର ଶିକୁଳି,
ଶାସ୍ତ୍ରାଖ୍ୟ ସେ ଅଶାସ୍ତ୍ରର ଅବୈଧ ବିଧିକି?
ସାମ୍ୟ ଐକ୍ୟ ବୀଜମନ୍ତ୍ରେ ଜୀବନ୍ୟାସ ଦେଇ
ମୃତ ଆର୍ଯ୍ୟସନ୍ତତିଙ୍କି ପୁନରୁଜ୍ଜୀବିତ
କରିବାକୁ କେହି କି ହେ ନୋହିବେ ପ୍ରୟାସୀ?
ବୀରପୁତ୍ରପ୍ରସୂ, ଆହା, ଏ ମହୀ କି ଆଉ
ପ୍ରସବିବେ ନାହିଁ କେବେ କୁମର ସେଭଳି?''
ତହୁଁ ଦେବ ହବ୍ୟବାହ ''ଏ ଭାରତଖଣି (୧୦)
ପ୍ରସବିବ କଳିଯୁଗେ ଅଙ୍ଗାର କେବଳ,
ବହୁଶତବର୍ଷ ଗତ ହେଲେ ଏହି ରୂପେ,
ଯଥାକାଳେ ବାହାରିବ ସେ ଖଣି ଗରଭୁ
ମହାମଣି, ଯାର ଦିବ୍ୟଜ୍ୟୋତିର ଛଟକେ
ହୀନପ୍ରଭ ହୋଇଯିବ ନଭେ କାବ୍ୟତାରା
ଗୋଧୂଳିର ମଥାମଣି, ଅଥବା କୌସ୍ତୁଭ
ବିଶ୍ୱଲୀଳାଦରପଣ ବିଶ୍ୱମ୍ଭର ହୃଦେ,

(୧) ଭାବୀ ଅର୍ଥାତ୍ ଭବିଷ୍ୟଦ୍ ଅନିଷ୍ଟ ପ୍ରତି ଅନ୍ଧ। କେବଳ ବର୍ତ୍ତମାନ ଅର୍ଥାତ୍ ଉପସ୍ଥିତ ସ୍ୱାର୍ଥ ଯେଉଁମାନଙ୍କର ସର୍ବସ୍ୱ। ଗଜ କଚ୍ଛପ ପରସ୍ପର ଯୁଦ୍ଧ କରୁଁ କରୁଁ ଉଭୟେ ଗରୁଡ଼ଙ୍କର ଆମିଷ ହୋଇଥିଲେ। ଆର୍ଯ୍ୟମାନେ ସେହିପରି ଆପଣା ମଧ୍ୟରେ କଳହ କିଆଇ ଦୁର୍ବଳ ହୋଇ ଯବନର ଅଧୀନ ହେବେ। (୨) ଜାତିର ମଙ୍ଗଳରେ ବ୍ୟକ୍ତିର ମଙ୍ଗଳ– ଏ ନୀତି ଆର୍ଯ୍ୟମାନେ ବିସ୍ମୃତ ହୋଇ କେବଳ ନିଜ ନିଜ ଉପସ୍ଥିତ ସ୍ୱାର୍ଥ ଲୋଡ଼ିବେ। (୩) ଅବଧ– ଅଯୋଧ୍ୟା। (୪) ଗାନ୍ଧାର– କାନ୍ଦାହାର। ବର୍ଣ୍ଣିତ କାଳରେ ଏ ଅଞ୍ଚଳ ଆର୍ଯ୍ୟଭୂମିର ଅଂଶ ଥିଲା। (୫) କୁରୁବର୍ଯ୍ୟ– କୁରୁଶ୍ରେଷ୍ଠ, ସମ୍ବୋଧନପଦ। (୬) ଆତ୍ମହାନୀତି– ଯେଉଁ ନୀତିରେ ନିଜର ସର୍ବନାଶ ହୁଏ। (୭) ରାଜନ୍ୟ– କ୍ଷତ୍ରିୟ। (୮) ସିଂହାର– ଅଳଙ୍କାର, ଭୂଷଣ। (୯) ପାର୍ଥ– ପୃଥାପୁତ୍ର ଯୁଧିଷ୍ଠିର, ସମ୍ବୋଧନପଦ।
(୧୦) ତହୁଁ ଦେବ ହବ୍ୟ ବାହ କହିଲେ, ଏହି କ୍ରିୟାପଦ ଏଠାରେ ଉହ୍ୟ ଅଛି।

ଅଭ୍ରଭେଦୀ ହିମଗିରି ପାଦେ ଶୁଭକ୍ଷଣେ (୧)
ଜନମିବେ ଶାକ୍ୟସିଂହ ଧର୍ମବୀରାଗ୍ରଣୀ
ଦେବଅଂଶେ, ରାଜବଂଶେ ରଜୋରିକ୍ତମନା (୨)
କାମଜୟୀ, କାମଜୟୀ ଯଥା ଉମାପତି;
ମୃତ୍ତିକାବିକାର ହୈମସିଂହାସନ ତେଜି, (୩)
ସଂସାରମମତା-ପାଶ ଛେଦି ଜ୍ଞାନବଳେ,
ମହାଜ୍ଞାନୀ, ଭାରତର ଅଜ୍ଞାନ ଅନ୍ଧାରେ
ଜାଳିବେ ବିଜ୍ଞାନ-ଦୀପ, ଯାର ଜ୍ୟୋତିପ୍ରଭା
ବିଶ୍ୱତମସ୍ତୋମ-ମହାଦାବାନଳରୂପେ (୪)
ଆଲୋକିବ ଲୋକମନ ଦେଶଦେଶାନ୍ତରେ,
କି ଉଦୀଚୀ ହୈମବତୀ ସପ୍ତର୍ଷିଶବଳା, (୫)
ପ୍ରାଚୀ ତ୍ୱିଷାମ୍ପତିଦ୍ୟୁତି-ଉଷାସହଚରୀ,
କି ଅବା ଅବାଚୀ ସ୍ନିଗ୍ଧମଳୟସୌରଭା, (୬)
ପ୍ରତୀଚୀ କୁଙ୍କୁମାରୁଣା ବରୁଣଲାଞ୍ଛନା, (୭)
ସବୁ ଦିଗେ ଏହି ଜ୍ୟୋତି ବ୍ୟାପି କ୍ରମେ କ୍ରମେ
ବିରାଜିବ ଦିଗଙ୍ଗନା-ଅବତଂସରୂପେ, (୮)
କି ଶୈଳ, କି ପାରାବାର, ନ ପାରିବେ କେହି
ରୋଧିବାକୁ ଏ ଜ୍ୟୋତିର ଦୁର୍ନିବାର ଗତି,
ଅଗସ୍ତ୍ୟର ଛାୟା ହୃଦେ ଧରି ଭାଦ୍ରପଦେ (୯)
ନିର୍ମଳେ ବହଇ ବାରି ଭବତଳେ ଯଥା,
ସେହି ରୂପେ ଏ ଜ୍ୟୋତିର ପାବନ ପରଶେ
ଭାରତୁଁ କଳୁଷରାଶି ଯିବ ଅପସରି,

ସାମ୍ୟ-ମୈତ୍ରୀ-ମହାମନ୍ତ୍ରେ ହୋଇଣ ଦୀକ୍ଷିତ,
ଭେଦମତି ପରିହରି ସଂହତିବନ୍ଧନେ (୧୦)
ବଦ୍ଧ ହେବେ ଆର୍ଯ୍ୟଭୂମେ ଆର୍ଯସୁତ ଯେତେ,
ଶାକ୍ୟସିଂହଶିଷ୍ୟାଗ୍ରଣୀ ନୃପ ଶିରୋମଣି
ଜନ୍ମିବେ ଅଶୋକ ନାମେ ନୃପ ମହାତେଜା
ପୁଷ୍ପପୁରେ, ପୂତନୀରା ସୁରଧୁନୀତୀରେ; (୧୧)
ଅନନ୍ତରତନପ୍ରସୂ ହିମାଚଳଠାରୁ
ମୁକ୍ତାପ୍ରସୂ ତାମ୍ରପର୍ଣ୍ଣୀ ଯାଏ ଦେଶେ ଦେଶେ (୧୨)
ଉଡ଼ିବ ତାଙ୍କର ଜୈତ୍ରକେତନ ଭାରତେ। (୧୩)
ସ୍ଥାନେ ସ୍ଥାନେ ଶୈଳଭାଲେ ଅକ୍ଷୟ ଅକ୍ଷରେ
ଶୋଭିବ ଏ ନବଦୀକ୍ଷା କଳୁଷନାଶିନୀ
ଅଶୋକର ଅନଶ୍ୱର ଯଶୋଲିପିରୂପେ। (୧୪)
ବରବାଜିପ୍ରତିଷ୍ଠିତ-ପାରସ୍ୟମଣ୍ଡଳେ, (୧୫)
ଶ୍ୱେତଗଜନିସେବିତ-ନୀଳ ଇରାବତୀ – (୧୬)
ଧୌତ ବ୍ରହ୍ମେ, ବର୍ଣ୍ଣୋଜ୍ଜ୍ୱଳଚୈଳପ୍ରସୂ ଚୀନେ, (୧୭)
କିମ୍ପୁରୁଷବର୍ଷେ (୧୮) (ଯହିଁ ମାନସ ଦର୍ପଣେ
ହରଶୈଳ ହେରେ ନିଜ ଭୀଷଣମୂରତି),
ହରିବର୍ଷେ ଯହିଁ ହିମବର୍ଷିଣୀ ଉଦୀଚୀ
ମଣ୍ଡେ ନିଜ ଭାଳ ଚିତ୍ରଜ୍ୟୋତିତ୍ରିପୁଣ୍ଡ୍ରକେ (୧୯)
ନୀଳରତ୍ନାକରବକ୍ଷେ ପଦକରୂପିଣୀ
ସାଗରସମ୍ଭବା ଲଙ୍କା-ଶ୍ୟାମଳ ଉରସେ, (୨୦)
ପ୍ରାଚୀଦ୍ୱୀପପୁଞ୍ଜେ ଯହିଁ ସୌରଭ ଚୋରାଇ (୨୧)

(୧) ହିମାଳୟର ପାଦଦେଶବର୍ତ୍ତୀ କପିଳବାସ୍ତୁ ନଗରରେ ବୁଦ୍ଧଦେବ ଜନ୍ମଗ୍ରହଣ କରିଥିଲେ। (୨) ରଜୋରିକ୍ତମନା – ରଜୋଗୁଣରୁ ମୁକ୍ତ (୩) ବୁଦ୍ଧଦେବ ରାଜସିଂହାସନ ପରିତ୍ୟାଗ କରି ଧର୍ମାଲୋଚନା ଏବଂ ଧର୍ମପ୍ରଚାର ସକାଶେ ସନ୍ୟାସଧର୍ମ ଗ୍ରହଣ କରିଥିଲେ। (୪) ଜଗତର ଅଜ୍ଞାନରୂପ ମହାରଣ୍ୟର ଦାବାନଳସ୍ୱରୂପ। (୫) ଉଦୀଚୀ – ଉତ୍ତରଦିଗ। ଶବଳ – ଚିତ୍ରବିଚିତ୍ର (୬) ଅବାଚୀ – ଦକ୍ଷିଣଦିଗ (୭) ପ୍ରତୀଚୀ – ପଶ୍ଚିମଦିଗ ସୂର୍ଯ୍ୟାସ୍ତରାଗରଞ୍ଜିତ ହେବାରୁ କୁଙ୍କୁମାରୁଣା, ବରୁଣଦ୍ୱାରା ଅଧିଷ୍ଠିତ ହେବାରୁ ବରୁଣଲାଞ୍ଛନା। (୮) ଦିଗ୍‌ବଧୂମାନଙ୍କର କର୍ଣ୍ଣପୂରସ୍ୱରୂପ। (୯) ଶରଦ୍‌କାଳରେ ଦକ୍ଷିଣାକାଶରେ ଅଗସ୍ତ୍ୟତାରାର ଉଦୟ ହୁଏ। ଅଗସ୍ତ୍ୟଙ୍କ ଉଦୟରେ କଳୁଷିତ ଜଳ ନିର୍ମଳ ହେବାର କିମ୍ବଦନ୍ତୀ ଅଛି। (୧୦) ସଂହତିବନ୍ଧନେ – ଏକତା ବନ୍ଧନରେ। (୧୧) ପୁଷ୍ପପୁର (ଆଧୁନିକ ପାଟଣା) ଅଶୋକ ନୃପତିଙ୍କର ରାଜଧାନୀ ଥିଲା। ପୁଷ୍ପପୁରର ଅନ୍ୟନାମ ପାଟଳିପୁତ୍ର। (୧୨) ତାମ୍ରପର୍ଣ୍ଣୀ – ସେତୁବନ୍ଧ ରାମେଶ୍ୱରର ଅନତିଦୂରବର୍ତ୍ତିନୀ ସ୍ୱନାମପ୍ରସିଦ୍ଧ ନଦୀ। ଏହି ନଦୀର ସମୁଦ୍ର ସଙ୍ଗମ ସ୍ଥଳରୁ ମୁକ୍ତାଶୁକ୍ତି ଉତ୍ତୋଳିତ ହେଉଥିଲା। (୧୩) ଜୈତ୍ରକେତନ – ଜୟଶୀଳ ପତାକା। ଅଶୋକ ସମଗ୍ର ଭାରତବର୍ଷର ସମ୍ରାଟ୍ ଥିଲେ। (୧୪) ଭାରତବର୍ଷର ନାନା ପ୍ରଦେଶରେ ପର୍ବତଦେହରେ ଅଶୋକଙ୍କର ଶାସନ ଅଦ୍ୟାପି ଦେଦୀପ୍ୟମାନ। ଓଡ଼ିଶାରେ ସୁଦ୍ଧା ଧଉଳିପର୍ବତରେ ଅଶୋକଙ୍କ ଶାସନ ଅଙ୍କିତ ହୋଇଅଛି। (୧୫) ପ୍ରାଚୀନକାଳରେ ପାରସ୍ୟ ଦେଶ ଉତ୍କୃଷ୍ଟ ଘୋଟକ ସକାଶେ ପ୍ରସିଦ୍ଧ ଥିଲା। (୧୬) ଇରାବତୀ ବ୍ରହ୍ମଦେଶର ପ୍ରଧାନ ନଦୀ। ଇରାବତୀ ଉପତ୍ୟକାରେ ଶ୍ୱେତହସ୍ତୀ ଦେଖାଯାନ୍ତି। (୧୭) ପ୍ରାଚୀନକାଳରେ ଚୀନର କୌଷେୟବସ୍ତ୍ର (ଚୀନାଂଶୁକ) ଭାରତବର୍ଷରେ ଅତ୍ୟନ୍ତ ଆଦୃତ ହେଉଥିଲା। (୧୮) କିମ୍ପୁରୁଷବର୍ଷ – ତିବ୍ବତ, ହରଶୈଳ – ମାନସରୋବରର ସନ୍ନିହିତ କୈଳାସଗିରି। (୧୯) ହରିବର୍ଷ – ସାଇବେରିଆ ଦେଶ, ଏହି ଦେଶର ଉତ୍ତରାକାଶ ବିବିଧବର୍ଣ୍ଣ ଜ୍ୟୋତିଚ୍ଛଟାରେ ଶୋଭିତ। ବୌଦ୍ଧପରିବ୍ରାଜକମାନେ ସାଇବେରିଆ ଯାଏ ନିଜ ଧର୍ମ ପ୍ରଚାର କରିଥିଲେ। (୨୦) ସିଂହଳଦ୍ୱୀପ ଅତି ଉର୍ବରା। ବନ ଏବଂ ଉପବନରେ ସର୍ବଦା ହରିତାୟମାନ। (୨୧) ପ୍ରାଚୀଦ୍ୱୀପପୁଞ୍ଜ – ଯାଭା, ସୁମାତ୍ରା ପ୍ରଭୃତି ଦ୍ୱୀପ।

ମଞ୍ଜୁଳପ୍ରଫୁଲ୍ଲ ଏବା ଲବଙ୍ଗ କୁଞ୍ଜରୁ,
ପାରାବାରବକ୍ଷେ ବହେ ସ୍ନିଗ୍ଧଗନ୍ଧବହ,
ନାବିକ ହୃଦୟେ ଗୃହସ୍ମୃତି ଉପୁଜାଇ,
ଶୋଭିବ ସଂସାରାର୍ଣ୍ଣବଦ୍ୱୀପସ୍ତମ୍ଭ ପ୍ରାୟେ। (୧)
ଭାରତୁଁ ବିକୀର୍ଣ୍ଣ ହୋଇ ଏହି ଧର୍ମଜ୍ୟୋତି
ମାତ୍ର ଲିଭିଯିବ ଏହା ଅଚିରେ ଭାରତେ,
ଜରାଜୀର୍ଣ୍ଣ ଦେଉଳର ତାମସଗରଭେ
ସଂସ୍କାର ସକାଶେ ଯେବେ ଡାକଇ ସ୍ଥପତି
ଦିହୁଡ଼ି, ତା ଶିଖା ଯେହ୍ନେ ଦିଅନ୍ତି ଲିଭାଇ
ଡେଣା ବିଞ୍ଚି ଚିରତମଃସଂଚାରୀ ଚିମଣି,
ପଲ ପଲ ବାହାରି ସେ ଦେଉଳ ସନ୍ଧିରୁ, (୨)
ସେହି ରୂପେ ଏହି ଜ୍ଞାନପ୍ରଦୀପର ଶିଖା
ଲିଭାଇ ଦେବେଟି ବେଗେ ସ୍ୱାର୍ଥାନ୍ଧ ଦ୍ୱିଜାତି (୩)
ଅଜ୍ଞାନ-ତିମିରାଚ୍ଛନ୍ନ ଭାରତମଣ୍ଡଳେ;
ଆଦିତ୍ୟପ୍ରତିମତେଜା, ଅରାତିବିଜୟୀ
ବୀରେନ୍ଦ୍ର ବିକ୍ରମାଦିତ୍ୟ ଉଜ୍ଜୟିନୀପତି (୪)
ଦ୍ୱିଜାତିର ପକ୍ଷ ହୋଇ, ପ୍ରଚଣ୍ଡ ବିକ୍ରମେ
ଆକ୍ରମିବେ ଶାକ୍ୟସିଂହଶିଷ୍ୟ-ରାଜଦଳେ,
ପ୍ରବଳ ମାରୁତେ, ଆହା, ତୁଳାରାଶି ଯଥା,
ପ୍ରତାପେ ତାଙ୍କର ସର୍ବେ ଛିନ୍ନଭିନ୍ନ ହୋଇ
ତେଜିବେ ଏ ଭୂମି, କିମ୍ବା ନବଧର୍ମେ ମତି।
ନିଜ ଦଣ୍ଡ ପ୍ରତିଷ୍ଠିତ କରିବ ଉଲ୍ଲାସେ
ପୁଣି ଦଣ୍ଡଧର କଳି, ଏ ସୁଯୋଗ ପାଇ;
ଥିଲା ଯେ ତିମିରେ ପୁଣି ବୁଡ଼ିବ ଭାରତ
ସେ ତିମିରେ, ସତ୍ୟଧର୍ମ ହୋଇ ଅସ୍ତମିତ,
ଦ୍ୱୀପରୂପେ ଥିବ ମାତ୍ର ଏ ପାପ ପ୍ଲାବନେ
କେବଳ ଗୋଟିଏ ସ୍ଥଳୀ ସମଗ୍ର ଭାରତେ।
ଧନ୍ୟରେ ଉତ୍କଳ ତୁହି, ଏ ଘୋର ଅନ୍ଧାରେ
ତୁହି ସେ ରଖିବୁ ସିନା ପୋଷି ସ୍ନେହଦାନେ
ଗୁପତେ ଏ ଧର୍ମ-ଦୀପ ନୀଳାଦ୍ରିକନ୍ଦରେ, (୫)
ପୁଣ୍ୟଧାମ। ଅସ୍ତ ଗଲେ କମଳିନୀସଖା,
ରଖଇ ମୋ ଶିଖା ଯଥା ଆଦରେ ସମାଦି
ପବିତ୍ର ସାବିତ୍ର ଜ୍ୟୋତି ତମିସ୍ରା-ତମସେ (୬)
ଅଜ୍ଞାନ-ଅନ୍ଧାରେ, ଆହା, ହେବେ ଅନ୍ଧୀଭୂତ।
ପୁଣି ଅଳ୍ପ ଦିନେ ଆର୍ଯ୍ୟେ, ସ୍ୱାର୍ଥାନ୍ଧ ରଦ୍ୱିଜେ
ଭିଡ଼ିବେ ସୁଦୃଢ଼େ ପୁଣି ସ୍ୱାର୍ଥର ଶାଙ୍କୋଳି
ଭାରତର ଗଳଦେଶେ, ବକ୍ରଗ୍ରନ୍ଥି ଦେଇ;
ଔଷଧେ ଶମିତ ବ୍ୟାଧି ଛିଦ୍ର ପାଇ ଯଥା
ଆକ୍ରମଇ ରୋଗୀ ଦେହ ଦ୍ୱିଗୁଣ ବିକ୍ରମେ।
ଲଭିବ ଭାରତ ପୁଣି ଦାରୁଣ ଦୁର୍ଗତି,
ପାସୋରି ପୁରୁଷକାର ମହିମା ପୁରୁଷେ
ମୃତ ଜଡ଼ପିଣ୍ଡବତ ହେବେ ଅଳ୍ପଦିନେ
ନିରୁତ୍ସାହ, ନିରୁଦ୍ୟମ, ଦୈବପରାୟଣ,
ପୁଣି ଛିନ୍ନଭିନ୍ନ ହୋଇ ପରସ୍ପରେ ଦ୍ୱେଷୀ
ହେବେ ଆର୍ଯ୍ୟାବର୍ତ୍ତବାସୀ, ଆର୍ଯ୍ୟଧ୍ୱଂସଲାଗି
ଯବନଙ୍କୁ ଆହ୍ୱାନିବେ ସେହି ଆର୍ଯ୍ୟେ ପୁଣି,
କୁଳ୍ୟା ଖୋଳି ନକ୍ରକୁଳେ ଆହ୍ୱାନିଲା ପରି;
କୁଠାରେ ଲଗନ ହୋଇ ବେଣ୍ଟରୂପେ ଯଥା
ନାଶେ ତରୁ ବନଦେଶେ ଅନ୍ୟ ତରୁଦଳେ,
ଯବନ ସଙ୍ଗତେ ମିଶି ଆର୍ଯ୍ୟକୁଳାଙ୍ଗାରେ
ହାଣିବେ ଆର୍ଯ୍ୟଙ୍କୁ, ଆହା, ଏହି ଆର୍ଯ୍ୟଭୂମେ। (୭)
ହିମାଦ୍ରି ନିଷ୍ୟନ୍ଦ ନୀରେ ପୁଷ୍ଟ ଯାର ବପୁ,
ପଞ୍ଚ ମହାସ୍ରୋତସ୍ୱତୀ ବାରି-କର ଦେଇ
ପ୍ରଜାରୂପେ ନିରନ୍ତର ଖଟନ୍ତି ଯା ପଦେ,
ସ୍ୱର୍ଗତୁଲ୍ୟ ଭାରତର ନିସର୍ଗ ପରିଖା
ଲଂଘି ନନ୍ଦପତି ସିନ୍ଧୁ, ପଶିବେ ଏ ଦେଶେ
ଶୃଙ୍ଖଳ ଯବନକୁଳ, ଗୋଗୋଷ୍ଠେ ଯେସନେ
ପଶନ୍ତି ଶ୍ୱାପଦେ ଗୋଷ୍ଠବୃତ୍ତି ଅତିକ୍ରମି,
ଶ୍ୱାପଦ ପରାୟେ ସର୍ବେ ମାଂସାଶୀ ନିରତେ
ଶ୍ୱାପଦ ପରାୟେ ତେଣୁ ନୃଶଂସ, କ୍ରୋଧନ

(୧) ଧର୍ମ ଭବାର୍ଣ୍ଣବର ଦୀପସ୍ତମ୍ଭପରି। ଦୀପସ୍ତମ୍ଭଯୋଗୁଁ ନାବିକମାନେ ନିରାପଦରେ ସମୁଦ୍ର ପଥରେ ବିଚରଣ କରନ୍ତି। ଜୀବନପକ୍ଷରେ ଧର୍ମ ସେହିପରି। (୨) ପ୍ରାଚୀନ ଏବଂ ଜୀର୍ଣ୍ଣ ଦେଉଳ ସଂସ୍କାର ସମୟରେ ଅସଂଖ୍ୟ ଚିମଣି ଦେଉଳସନ୍ଧିରୁ ବାହାରି ସ୍ଥପତିମାନଙ୍କର ପ୍ରଦୀପ ଲିଭାଇ ଦିଅନ୍ତି, ଯେହେତୁ ଆଲୋକ ସେମାନଙ୍କର ଅସହ୍ୟ। ପୁରୀର ବଡ଼ଦେଉଳରେ ଏହା ଘଟିଥିଲା। (୩) ସ୍ୱାର୍ଥାନ୍ଧ ବ୍ରାହ୍ମଣମାନେ ବୌଦ୍ଧଧର୍ମରୂପ ପ୍ରଦୀପ ଲିଭାଇଦେବେ। (୪) ସୁପ୍ରଥିତନାମା ବିକ୍ରମାଦିତ୍ୟ ବୌଦ୍ଧମାନଙ୍କର ଉଚ୍ଛେଦସାଧନରେ ବ୍ରତୀ ହୋଇଥିବାର କିମ୍ବଦନ୍ତୀ ଅଛି। (୫) କେବଳ ଓଡ଼ିଶାରେ ବିଶେଷତଃ ଶ୍ରୀକ୍ଷେତ୍ରରେ ବୌଦ୍ଧଧର୍ମ ବହୁକାଳ ସ୍ଥାୟୀ ହୋଇ, ପଛକୁ ରୂପାନ୍ତରିତ ହୋଇଯାଇଥିବାର କଥା ପ୍ରାତ୍ତ୍ୱିକମାନଙ୍କର ଗବେଷଣାଦ୍ୱାରା ସ୍ଥିରୀକୃତ ହୋଇଅଛି। (୬) ରାତ୍ରିକାଳରେ ସୂର୍ଯ୍ୟତେଜ ଅଗ୍ନିଠାରେ ନିହିତ ହେବାର ପ୍ରସିଦ୍ଧି ଅଛି। ସାବିତ୍ର— ସୂର୍ଯ୍ୟସମ୍ବନ୍ଧ। ତମିସ୍ରାତମସେ— ନୈଶ ଅନ୍ଧକାରରେ। (୭) କାନ୍ୟକୁବ୍ଜପତି ଜୟଚନ୍ଦ୍ର ଏହି କୁଳାଙ୍ଗାରମାନଙ୍କର ଅଗ୍ରଣୀ ହୋଇଥିଲେ।

ଅକ୍ଷମସର୍ବସ୍ୱ, ଗ୍ରାମ୍ୟସୁଖ ପକ୍ଷପାତୀ,
କୂଟଯୁଦ୍ଧେ ରତ, କୂଟ ରାଜ୍ୟତନ୍ତ୍ରେ ପଟୁ,
ଧର୍ମ ବ୍ୟପଦେଶେ ଆସି ଲୁଠିବେ ଭାରତ
ଏ ଜାତି, ଭାଙ୍ଗିବେ ହଠେ ଦେଉଳ ବିଗ୍ରହ
ଦୂଷିବେ ପବିତ୍ର ତୀର୍ଥ ଅମେଧ୍ୟ ନିକ୍ଷେପି,
ଦହିବେ ଅଶେଷ ଶାସ୍ତ୍ର ଆର୍ଯ୍ୟଜ୍ଞାନନିଧି,
ଲୋଭେ କାମେ ମତ୍ତ ହୋଇ ହରିବେ ସବଳେ
ଭୂପତିର ଶିରୋଭୂଷା ମହାର୍ହ ମୁକୁଟ,
ସତୀର ମହାର୍ହତର ସତୀତ୍ୱ-ଭୂଷଣ,
ପତିଙ୍କି ଅକ୍ଷମ ଦେଖି ସତୀତ୍ୱ ରକ୍ଷଣେ
ତ୍ରାସେ ଲକ୍ଷଲକ୍ଷ ଆର୍ଯ୍ୟକୁଳ-କମଳିନୀ
ଜ୍ୱଳନ୍ତ ଶିଖାରେ ମୋର ଅର୍ପିବେ ସ୍ୱବପୁ
ପ୍ରାଣାଧିକ ମାନରକ୍ଷା ଲାଗି ମନସ୍ୱିନୀ,
'ସ୍ୱଧର୍ମେ ନିଧନ ଶ୍ରେୟଃ' ପାସୋରି ଏକଥା
କେତେ ଆର୍ଯ୍ୟ ନରନାରୀ ନିର୍ଯ୍ୟାତନ ଭୟେ
ଗ୍ରହିବେ ଯବନଦୀକ୍ଷା ଆର୍ଯ୍ୟ ଧର୍ମ ତେଜି।
ନଭେ ଏହି ତାରାପୁଞ୍ଜ ପ୍ରାୟେ ଠାବେ ଠାବେ
ବୁଣି ହୋଇ ଯିବେ ଦେଶେ ଅସଂଖ୍ୟ ଯବନେ;
ଆତ୍ମହା ନୀତିର ଦାସ, ପରକୁ ଦେଖାଇ
ଆତ୍ମଛିଦ୍ର, ସେ ପାପର ପ୍ରାୟଶ୍ଚିତରୂପେ
ସ୍ୱଶୋଣିତେ ଆର୍ଯ୍ୟେ ଧରା କରିବେ ଉର୍ବରା
ହିମାଦ୍ରିରୁ କୁମାରୀର ତାଳୀବନଯାଏ; (୧)
ହିମାଦ୍ରିର ଦେବଦାରୁନିକୁଞ୍ଜସଦନେ,
ମଳୟେ ଚନ୍ଦନଦ୍ରୁମସ୍ନିଗ୍ଧଛାୟାତଳେ,
ଭାରତର ଦେବ ଦେବୀ ନିରଜନେ ବସି
ବିସର୍ଜିବେ ଅଶ୍ରୁ ଦେଖି ଆର୍ଯ୍ୟର ଦୁର୍ନୀତି;
ସଂହତିରେ ଜଳାଞ୍ଜଳି ଦେଇ ଏହି ଜାତି
ପରମୁଖପ୍ରେକ୍ଷୀ ହୋଇ ରହିବେ ନିରତେ,
ଦାସତ୍ୱ ଅଭ୍ୟାସ ଫଳେ ବିଧାତାର ବିଧି
ମଣି ଉଦାସୀନ ପିନ୍ଧା ରହିବେ ସରବେ;
ହୀନ ସେବାଶ୍ଳାଘ୍ୟମଣି, ଧର୍ମ ଆତ୍ମ ସ୍ନେହେ
ନିଶ୍ଚିନ୍ତ ରହିବେ ମୂଢ଼େ ଆତ୍ମସୁଖେ ରତ;

ମୃତ୍ୟୁଙ୍କଙ୍କ କୃଶାନ୍ତିରେ ପ୍ରତାରିତ ହୋଇ
ନିଶ୍ଚିନ୍ତେ ରହିବେ ଶୋଇ, ଯେହ୍ନେ ଧେନୁପଲ
ଶୁଅନ୍ତି, ଶୋଣିତ ଦେହୁଁ ଅଲକ୍ଷିତେ ଯେବେ
ଶୋଷଇ ଚିମିଣି, ମଶା ତଡ଼ି ପକ୍ଷବାତେ;
ତରୁରେ କୁସୁମ ସାର, କୁସୁମେ ତା' ମଧୁ,
ସେ ମଧୁ ନ ଲଭେ ଯଥା ସେ ପୁଷ୍ପର କୀଟ
ସେହିରୂପେ ଆର୍ଯ୍ୟେ ହେବେ ବଞ୍ଚିତ ସ୍ୱଦେଶେ,
ଦୂରୁଁ ଆସି ମଧୁଲିଟ ଲୁଣ୍ଠନ୍ତି ଆହ୍ଲାଦେ
ସେ ମଧୁ ଯେସନେ, ଏହି ଧରା ସାରଭୂତ
ଭାରତର ସାର ଯାହା, ଆସିବ ସେ ସବୁ
ଯବନର ଉପଭୋଗେ ଆର୍ଯ୍ୟ କର୍ମଫଳେ,
କାପୁରୁଷ ଆର୍ଯ୍ୟସୁତେ ଗ୍ରାମ୍ୟଶ୍ୱାନ ପରି
ଯୁଝୁଥିବେ ପରସ୍ପରେ (ହର୍ଷ ଉପୁଜାଇ
ଯବନର) ଯବନର ଉଚ୍ଛିଷ୍ଟ ଲାଳସେ;
ଉଇପ୍ରାୟେ ଭାରତକୁ ଉପରେ ଘୋଡ଼ାଇ
କ୍ରମେ ଅନ୍ତଃସାର ତାର ହରି ଅଲକ୍ଷିତେ,
ବୋଲାଇବେ ସର୍ବଗ୍ରାସୀ ଏ ଯବନେ ପୁଣି
ଭାରତ ଖଣ୍ଡର ବିଧିପ୍ରେରିତ ପ୍ରହରୀ,
ଭାରତ ସୁରଭୀ କ୍ଷୀରୁଁ ହେବେଟି ବଞ୍ଚିତ
ନିଜ ଦୋଷେ ଆର୍ଯ୍ୟବତ୍ସେ, ବହୁ ଦୂରୁଁ ଆସି
ଶୋଷିବେ ଭାରତ ଦେହୁଁ ଶୋଣିତ ନିରତେ
ଯବନ-ଜଳୌକାପୁଞ୍ଜ ଶୋଷଣକୌଶଳୀ;
କହିଲି ଘଟିବ ଯାହା, ବିସ୍ତାରି ଏକଥା।

କହିବାକୁ ନାହିଁ ଆଉ ଅବସର ଏବେ,
ଯାମମାତ୍ର ପାହିବାକୁ ଅଛି ବିଭାବରୀ,
ଦେଖ ଆସିଲେଣି ଏବେ ଧ୍ରୁବମେରୁ ବୁଲି
ମେରୁନରେ ସପ୍ତର୍ଷିର ସୁବର୍ଣ୍ଣବେଙ୍ଗଳା, (୨)
ଦିବ୍ୟାଞ୍ଜନ ଯୋଗେ ତୁମ୍ଭ ଦୃଷ୍ଟିକି ପ୍ରସାରି
ଦେଶେ, କାଳେ, ଭାବି-ଦୃଶ୍ୟ ସଂକ୍ଷେପେ ଦେଖାଇ, (୩)
ଛାମୁରୁ ମେଲାଣି ଘେନି ଯିବି, କୁରୁମଣି।

(୧) ହିମାଳୟଠାରୁ କୁମାରିକାର ହିନ୍ତାଳବନ ପର୍ଯ୍ୟନ୍ତ ଅର୍ଥାତ୍ ସମଗ୍ର ଭାରତବର୍ଷରେ। (୨) ଉତ୍ତରାକାଶରେ ସପ୍ତର୍ଷି ଧ୍ରୁବଙ୍କୁ ପ୍ରଦକ୍ଷିଣ କରି ଅପର ପାର୍ଶ୍ୱକୁ ଆସିଲେଣି। ଧ୍ରୁବଙ୍କ ସହିତ ମେରୁର ଏବଂ ସପ୍ତର୍ଷି ସହିତ ବେଙ୍ଗଳାର ଉପମା। ପ୍ରଥମ ମେରୁ ଶବ୍ଦର ଅର୍ଥ କେନ୍ଦ୍ରସ୍ତମ୍ଭ, ଦ୍ୱିତୀୟ ମେରୁ ଶବ୍ଦର ଅର୍ଥ ଉତ୍ତରଦିଗ। ସପ୍ତର୍ଷିଙ୍କର ଧ୍ରୁବ ପ୍ରଦକ୍ଷିଣ ରଜନୀର ଅବସାନସୂଚକ। (୩) ଦେଶେ, କାଳେ – ଦୂରଦେଶପ୍ରତି ଏବଂ ଭବିଷ୍ୟତ୍‌କାଳପ୍ରତି।

## [ ଷଷ୍ଠ ସର୍ଗ ]

ଦିବ୍ୟ ଅବଧାନେ ଆସୁ ଏ ଗୀତ ତୁମ୍ଭର,
ହେ ରାଜେନ୍ଦ୍ର, ମନ୍ଦ୍ରନାଦି-ପ୍ରପାତର ପତି, (୧)
ବାମଣ୍ଡାମଣ୍ଡଳେଶ୍ୱର, ଉତ୍କଳମଣ୍ଡନ;
ତୁମ୍ଭ ଶୁଭ-ଆବିର୍ଭାବେ ହୋଇଛି ଉତ୍କଳେ
ଦେବଦୁର୍ଗ, ଦେବ, ଏବେ ତୀର୍ଥ ସାରସ୍ୱତ, (୨)
ବୁଧହଂସ-କେଳିସରଃ ଅବିଦ୍ୟା-ଉଷରେ;
ରଜତକାଞ୍ଚନମୁକ୍ତାମଣିରେ ଗଠିତ
ଧନମତ୍ତ ଭୂପଙ୍କର ଗଣ୍ଡିଧନରୂପୀ,
ତୁଚ୍ଛ ଅଳଙ୍କାରେ ତୁମ୍ଭେ ପ୍ରୀତି ନ ବଳାଇ,
ଅପ୍ରାକୃତ ଅଳଙ୍କାର ଖୋଜିଲ ଯତନେ, (୩)
ହେ ନୃପ-ସବିତା, ପଶି କବିତାଭଣ୍ଡାରେ,
ସେ ଭଣ୍ଡାରୁ ବାଛି ବାଛି ସଜାଡ଼ି କୌଶଳେ
ଦେଖାଇଲ ନବଭୂଷା ଉତ୍କଳଭାବୁକେ
ଦାନେ ଯାର ନାହିଁ କ୍ଷୟ, ନ ଲାଗଇ ଯହିଁ
କଳଙ୍କ, ତସ୍କର ଯାହା ନ ପାରଇ ହରି,
ଯା ଝଟକ କେବେ ଇବେ ନ ପାରଇ ମ୍ଳାନି
କ୍ରୁର କାଳ, ନିତ୍ୟ ରତ କୀର୍ତ୍ତିନିକୃନ୍ତନେ; (୪)
କେତେ ଯେ ବିଭବ ଅଛି ବାଗ୍‌ଦେବୀଭଣ୍ଡାରେ,
ତା ସବୁ ଛାମୁରେ ଜଣା, ତୁମ୍ଭର ଭର୍ତ୍ସନା
ମୂର୍ଖଶ୍ଳାଘାଠାରୁ ଶ୍ଳାଘ୍ୟ ମଣେ ଶତଗୁଣେ, (୫)
ଆମନ୍ତ୍ରିଲି କର ଯୋଡ଼ି ଯୋଗ୍ୟ ଶ୍ରୋତା ଜାଣି,
ଦୀପୁଁ ଜାତ ଦୀପ ପ୍ରାୟେ ତୁମ୍ଭରି ଆତ୍ମଜ
ଶ୍ରୀ ସଚ୍ଚିଦାନନ୍ଦ ଦେବ କୁମାରପ୍ରତିମ (୬)

କୁମାର ସହିତେ ଆସି ବାଗ୍‌ଦେବୀମଣ୍ଡପେ
କର ଅଧିଷ୍ଠାନ, ଯେବେ ଶୁଣିବ ଏ କଥା
ପାବନୀ, ପାବନୀ ଯଥା ତ୍ରିତାପହାରିଣୀ
କଳୁଷନାଶିନୀ ତୁମ୍ଭ କୁଳ-ଅଧିଦେବୀ। (୭)
ଅଗ୍ନିଙ୍କ ବଚନ ଶୁଣି ଦୀର୍ଘଶ୍ୱାସ ତେଜି
ତୂଷ୍ଣୀମ୍ଭାବ ଭଜି ରାଜା ରହିଲେ ବିଷାଦେ
କିଛି କ୍ଷଣ, ଚିତ୍ରାର୍ପିତ ପ୍ରତିମା ଯେସନ;
ସିଙ୍ଗଡ଼ାତଟିନୀଧୌତ ଅଙ୍ଗାରପ୍ରାନ୍ତରେ
ପବିତ୍ର ହିଙ୍ଗୁଳାପୀଠେ ଜଳିଉଠେ ଯଥା
ଅଚମ୍ବିତେ ବହ୍ନିଶିଖା ନିଦାଘ ନିଶୀଥେ, (୮)
ଅଦୂରେ ଉଠିଲା ଜଳି ସହ୍ୟଗିରି ତଟେ
ବହ୍ନିଶିଖା ସେହିମତି, ସେ ଶିଖା ମଧ୍ୟରୁ
ବାହାରିଲେ ବନଭୂମି ପ୍ରଭାରେ ଉଭାସି
ହେମଆଜ୍ୟପାତ୍ର ହସ୍ତେ ସ୍ୱାହା ମହାଦେବୀ (୯)
ଜ୍ୟୋତିର୍ମୟୀ, ଆହା, ଯଥା ମହିଷମର୍ଦ୍ଦିନୀ
ବାଳେନ୍ଦୁଶେଖରା, ନୀଳପ୍ରଳମ୍ବକୁନ୍ତଳା,
ଭାସ୍ୱର ରଜତଶୂଳ ଧରି ବରଭୁଜେ,
ବାହାରିଲେ ବ୍ରହ୍ମକୁଣ୍ଡୁଁ ବିରଜାସୁନ୍ଦରୀ
ଦେବଯଜ୍ଞେ, ପୂତନୀରା ବୈତରଣୀତୀରେ; (୧୦)
ଆଜ୍ୟପାତ୍ର ନିହି ଦେବି ବୀତିହୋତ୍ରକରେ (୧୧)
ବିଜୁଳିର ବେଗେ ଗଲେ ଉଭେଇ ପଲକେ।
ସେ ଅନଳୁ ଭସ୍ମ ନେଇ, ସେ ଆଜ୍ୟେ ମିଶାଇ
ରଚି ଦିବ୍ୟାଞ୍ଜନ ତହୁଁ ଦେବ ହବ୍ୟବାହ

(୧) ବାମଣ୍ଡା ରାଜ୍ୟର ଅଧୀଶ୍ୱର ମହାରାଜ ଶ୍ରୀଯୁକ୍ତ ସୁରୁଜଦେବଙ୍କ ପ୍ରତି ସମ୍ବୋଧନ। ପ୍ରୋକ୍ତ ପ୍ରପାତର ନାମ ପ୍ରଧାନପାଟ। ଏହା ବାମଣ୍ଡା ରାଜଧାନୀ ଦେବଗଡ଼ର ଅତି ନିକଟବର୍ତ୍ତୀ। ଏହାର ମନ୍ଦ୍ରନିନାଦ ସର୍ବଦା ଦେବଗଡ଼ରେ ଶ୍ରୁତ ହୁଏ। ଏହି ପ୍ରପାତ ଓଡ଼ିଶାର ଗୋଟିଏ ପ୍ରଧାନ ଦୃଶ୍ୟ। 'ପ୍ରଧାନପାଟ' ନାମକ ଖଣ୍ଡିଏ ଅଭିନବ କାବ୍ୟରେ ଏହି ପ୍ରପାତର ସୁବିସ୍ତୃତ ବର୍ଣ୍ଣନା ହୋଇଅଛି। (୨) ଦେବଗଡ଼ ଉତ୍କଳସାହିତ୍ୟ ଚର୍ଚ୍ଚାର ଅନ୍ୟତମ କେନ୍ଦ୍ର। ଉତ୍କଳରେ ସଂସ୍କୃତସାହିତ୍ୟ ଚର୍ଚ୍ଚାର ମଧ୍ୟ ସର୍ବପ୍ରଧାନ କେନ୍ଦ୍ର। (୩) ମହାରାଜ ସୁରୁଜଦେବ ଓଡ଼ିଆ ଅଳଙ୍କାର ଗ୍ରନ୍ଥର ପ୍ରଥମ ପ୍ରଣେତା। (୪) କୀର୍ତ୍ତି-ନିକୃନ୍ତନକାରୀ କାଳପ୍ରଭାବରେ ପ୍ରାକୃତ ଅଳଙ୍କାରର ପ୍ରଭା ମଳିନ ହୁଏଇ। ମାତ୍ର ଭାବରାଜ୍ୟର ଅପ୍ରାକୃତ ଅଳଙ୍କାରର ପ୍ରଭା ଚିରଦେଦୀପ୍ୟମାନ। କାଳ ସେଥିର ପ୍ରଭା ମଳିନ କରିନପାରେ। (୫) ମୂର୍ଖର ପ୍ରଶଂସା ଅପେକ୍ଷା ପଣ୍ଡିତର ଭର୍ତ୍ସନା ଶ୍ରେୟସ୍କର। (୬) ବାମଣ୍ଡା ରାଜ୍ୟର ଯୁବରାଜ ଶ୍ରୀ ସଚ୍ଚିଦାନନ୍ଦ ଦେବ ଯୋଗ୍ୟ ପିତାର ଯୋଗ୍ୟ ପୁତ୍ର। କୁମାରପ୍ରତିମ କୁମାର– କାର୍ତ୍ତିକେୟ ପରି ପୁତ୍ର। (୭) ଗଙ୍ଗାଦେବୀ ବାମଣ୍ଡା ରାଜବଂଶର ଅଧିଷ୍ଠାତ୍ରୀ ଦେବତା। (୮) ହିଙ୍ଗୁଳାପୀଠ– ତାଳଚେର ରାଜ୍ୟର ଅନ୍ତର୍ଗତ– ସିଙ୍ଗଡ଼ା ନଦୀ ଏହିଠାରେ ପ୍ରବାହିତ। କିମ୍ବଦନ୍ତୀ ଅଛି ଯେ ଏଠାରେ ଅକସ୍ମାତ ଅନଳର ଆବିର୍ଭାବ ହୋଇ ହିଙ୍ଗୁଳାଦେବୀଙ୍କର ଅଧିଷ୍ଠାନ ହୁଏ। ଏ ଅଞ୍ଚଳରେ ପଥରକୋଇଲାର ଖଣି ଅଛି। (୯) ସ୍ୱାହା– ଅନଳପତ୍ନୀ। (୧୦) ଯାଜପୁରର ବିରଜାଦେବୀ ବର୍ଣ୍ଣିତବେଶରେ ଯଜ୍ଞାନଳରୁ ବାହାରିଥିବା କଥା 'ବିରଜାମାହାତ୍ମ୍ୟ'ରେ ଅନୁସନ୍ଧେୟ। (୧୧) ବୀତିହୋତ୍ର– ଅଗ୍ନି।

ଯୁଧିଷ୍ଠିର ପ୍ରତି ଚାହିଁ କହିଲେ ଏସନ,
"ହେ ବୀର, ଯାବତ ମୋର ଅଧିଷ୍ଠାନ ଏଥି,
ଏ ଅଞ୍ଜନ ଯୋଗେ ତୁମ୍ଭ ଇନ୍ଦ୍ରିୟନିକରେ
ପ୍ରସରିବ ଦିବ୍ୟଶକ୍ତି, ଦେଖିବ ବିସ୍ମୟେ
ଦୃଶ୍ୟାବଳୀ, ଏବେ ଯାହା ନରନେତ୍ରାତୀତ,
ଭାରତର ଭାଗ୍ୟପଟ ଫିଟାଇବ ଆଜି
ଦେଶକାଳ ବ୍ୟବଧାନ-ଉତ୍ତୋଳନପଟୁ (୧)
ଏ ଅଞ୍ଜନ ତୁମ୍ଭ ଆଗେ ତୁମ୍ଭ ଇଚ୍ଛାମତେ,
ଏହି ସେ ଅଞ୍ଜନ, ଯାହା ଦ୍ୱୈପାୟନ ଋଷି
ଦେଇଥିଲେ ସଞ୍ଜୟଙ୍କୁ, ଏ ଅଞ୍ଜନ ଯୋଗେ
ଦୂର କୁରୁକ୍ଷେତ୍ରରଣ ଦେଖି ସ୍ୱନୟନେ,
କହୁଥିଲେ ବାର୍ତ୍ତା ତୁମ୍ଭ ଜ୍ୟେଷ୍ଠତାତପଦେ
ହସ୍ତିନାପ୍ରାସାଦେ ବସି ଅଦୃଶ୍ୟଦରଶୀ; (୨)
କହ କି ଦେଖିବ ବୀର; ଦେଖାଇ ଏକ୍ଷଣି
ସେ ଦୃଶ୍ୟ, ଅନ୍ତର ହେବି ନ ପାହୁଁ ଶର୍ବରୀ।"
କହିଲେ କୌନ୍ତେୟ, "ଦେବ, ଦେଖାଅ କିରୂପେ
ଯବନର କରଗତ ହେବ କଳିଯୁଗେ
ହସ୍ତିନା, ନଗରୀରାଣୀ, ବୀରପ୍ରସବିନୀ;
ଦେଖାଅ କିରୂପେ ଆର୍ଯ୍ୟହର୍ଯ୍ୟକ୍ଷର ଗୁହା
ଯବନଜମ୍ବୁକବୃନ୍ଦେ ହେବ ପରିଣତ।"
ଉତ୍ତରିଲେ ବହ୍ନି, "ବୀର, ବହୁଦିନ ପରେ
ଜାହ୍ନବୀର ଗର୍ଭେ ହୋଇ ବିଲୀନ ହସ୍ତିନା,
ଆର୍ଯ୍ୟରାଜଧାନୀ ହେବ ଇନ୍ଦ୍ରପ୍ରସ୍ଥପୁରେ
ସୁପ୍ରଥିତ ମର୍ତ୍ତ୍ୟେ ହୋଇ ଦିଲ୍ଲିଅଭିଧାନେ।"
ଏହା ବୋଲି ବସାଇଣ ପୂର୍ବୋତ୍ତରମୁଖେ (୩)
ରାଜାଙ୍କୁ, ଉଚ୍ଚାରି ମନ୍ତ୍ର, ଦେବ ବିଭାବସୁ
ଅଞ୍ଜନ ଲଗାଇ ଦେଲେ ତାଙ୍କର ନୟନେ,
ବିବାହଉତ୍ସବେ ଯଥା ବହ୍ନିକଣାଯୋଗେ
ଦ୍ରଷ୍ଟୃବୃନ୍ଦେ ଚମକାଇ, ଭେଦି ନୈଶ ତମଃ,
ଆଗ୍ନେୟବାଣର ଗଡ଼ ସ୍ଫୁରେ ଆଚମ୍ବିତେ,
କିମ୍ବା ନୈଶସିନ୍ଧୁବାହୀ ନାବିକର ଆଖି
ଠିକରାଇ, ଉଠେ ଯଥା ଦିଗନ୍ତ ଉଜଳି,
ନୀଳ ଊର୍ମିମାଳା ଭେଦି ବାଡ଼ବାଗ୍ନିଜ୍ୱାଳା,
ସ୍ଫୁରିଲା ସହସା ଅଗ୍ରେ ଶକ୍ରଚାପଚାରୁ–
ତୋରଣା ଶୋଭନା ଦିଲ୍ଲୀ ପତାକାମାଳିନୀ,
ମନୋମୋହକରା, ସୁଖସ୍ୱପନ ଯେପରି,
ତରୁଣ ଅରୁଣରାଗେ ଦିଶି ଝକଝକ
କାଞ୍ଚନକଳସ ତୁଙ୍ଗ ଦେବାଳୟଚୂଡ଼େ
ଶାରଦସନ୍ଧ୍ୟାଭ୍ରପୁଞ୍ଜ ପ୍ରାୟେ ମହୋଜ୍ଜ୍ୱଳ;
ସୁନ୍ଦର ଗୋପୁରବୃନ୍ଦ ଜଡ଼ିତ ରତନେ, (୪)
ନାନାବର୍ଣ୍ଣଶୋଭୀ ଶ୍ରେଣୀ ଶ୍ରେଣୀ ସ୍ତମ୍ଭାବଳୀ
ଅଳିନ୍ଦେ, ଦ୍ୱିରଦରଦଗବାକ୍ଷଶୋଭିତ
ସ୍ଫଟିକଜଗତୀ ସୌଧେ ମନୋହର ଅତି; (୫)
ରତ୍ନଜାଲେ ସମୁଜ୍ଜ୍ୱଳ ବିପଣି-ବିଥିକା
ଅଗସ୍ତ୍ୟ ଶୋଷଣେ ଶୁଷ୍କରତ୍ନାକର-ଛବି,
ଅବିରତ-ମୋତିପ୍ରଭ-ଶୀକରବରଷା
ପ୍ରଧାନପାଟର ପୂତପ୍ରପାତପ୍ରତିମ (୬)
ଉତ୍ସମାଳେ ବେଢ଼ା ଇନ୍ଦ୍ରନୀଳକ୍ରୀଡ଼ାଗିରି,
ନଭଶ୍ଚୁମ୍ବୀ କୀର୍ତ୍ତିସ୍ତମ୍ଭ, କୈଳାସସଙ୍କାଶ
ପ୍ରାକାର, ସୁରମ୍ୟ ତରୁ ଲତା ଗୃହାରାମେ,
ମଞ୍ଜୁଳ ପ୍ରବାଳେ, ରୁଚି-ସୁମନ-ସମ୍ଭାରେ,
ଅଦୂରେ କାଳିନ୍ଦୀସ୍ରୋତେ ଧାଏଁ ଖରବେଗେ (୭)
ଲୀଳାତରୀ, ରଙ୍ଗେ ତୋଳି ଧବଳପଟ୍ଟିକା (୮)
ହଂସାବଳୀକେଳିସ୍ମୃତି ଚିତ୍ତେ ଉପୁଜାଇ।
ତୋରଣ ସମ୍ମୁଖେ ମହାବିସ୍ତୃତପ୍ରାନ୍ତରେ
ରୁଣ୍ଡ ହେଉଛନ୍ତି ଆଜ ଚଉଦିଗୁଁ ଆସି
ନାନାଜାତି ସେନା ନାନାବେଶଭୂଷାଧାରୀ।
ଗିରିଯୁଦ୍ଧେ ବିଶାରଦ ଗିରିଦୁର୍ଗ ଡେଙ୍ଗି
ଆସୁଛନ୍ତି ଅଜାମିଳେ ଦୀପ୍ତିମନ୍ତ ତେଜେ, (୯)
ତିର୍ଯ୍ୟକେ ବିଶାଳ ଶୂଳ ଥୋଇ ସ୍କନ୍ଧଦେଶେ
ଧାଡ଼ି ଧାଡ଼ି, ଦୀପ୍ତ (୧୦) ଯେହ୍ନେ ଫଣାଧରଫଣା;
ଚକ୍ରାଙ୍କକେତନବର ସମୀରେ ଉଡ଼ାଇ (୧୧)
ହସ୍ତେ ଚକ୍ର ଘେନି ଆସେ ଗୁର୍ଜ୍ଜରବାସିନୀ
ବାର୍ଯ୍ୟବତୀ ଉର୍ଜ୍ଜସ୍ୱଳା ଯଦୁଅନୀକିନୀ,
(ତୁମ୍ଭ ଯୋଗେ, ବାସୁଦେବ ବାମଣ୍ଡାମଘବା,
ହେ ଭୂପାଳମୌଳିମଣି, ମଣ୍ଡିତ ଏକାଳେ

(୧) ଦୂରଦେଶସ୍ଥିତ କିମ୍ବା ଭବିଷ୍ୟଦ୍‌ଗର୍ଭନିହିତ ବିଷୟକୁ ଯାହା ପ୍ରତ୍ୟକ୍ଷ କରିଦିଏ। (୨) କୌରବ ଦ୍ୱାରପାଳ ସଞ୍ଜୟ ବ୍ୟାସଦେବଙ୍କ ପ୍ରସାଦରୁ ଦିବ୍ୟଚକ୍ଷୁ ଲାଭ କରି ଅନ୍ଧରାଜା ଧୃତରାଷ୍ଟ୍ରଙ୍କ ଛାମୁରେ କୁରୁକ୍ଷେତ୍ର ଯୁଦ୍ଧ ବର୍ଣ୍ଣନ କରୁଥିଲେ। (୩) ସହ୍ୟାଦ୍ରିର ଉତ୍ତରପୂର୍ବରେ ଦିଲ୍ଲୀ ନଗରୀ। (୪) ଗୋପୁର– ବୃହଦାକାର ତୋରଣବିଶେଷ। ଦାକ୍ଷିଣାତ୍ୟର ମନ୍ଦିରମାନଙ୍କରେ ଅନେକ ଗୋପୁର ଦେଖାଯାଏ। (୫) ଜଗତୀ – ଚନ୍ଦ୍ରଶାଳା। (୬) ପ୍ରଧାନପାଟ – ବାମଣ୍ଡାର ସ୍ୱନାମପ୍ରସିଦ୍ଧ ପ୍ରପାତ। ସର୍ଗାରମ୍ଭରେ ଏହି ପ୍ରପାତର ଉଲ୍ଲେଖ ହୋଇଅଛି। (୭) କାଳିନ୍ଦୀ – ଯମୁନା। (୮) ଲୀଳାତରୀ – କ୍ରୀଡ଼ା ନୌକା। ପଟ୍ଟିକା – ଅଖାଳ। (୯) ଅଜାମିଳ – ଆଜମିରନିବାସୀ। ଆଜ୍ମୀର ଗିରିବେଷ୍ଟିତ ଅଟେ। ଏ ଅଞ୍ଚଳରେ ଅନେକ ଗିରିଦୁର୍ଗ ଅଛି। (୧୦) ଦୀପ୍ତ – ଦୀପ୍ତିମନ୍ତ (୧୧) ଗୁର୍ଜ୍ଜର ଅନ୍ତର୍ଗତ ଦ୍ୱାରକା ଯାଦବମାନଙ୍କର ରାଜଧାନୀ ଥିଲା। ଯଦୁସେନାର ପତାକା ଚକ୍ରଲାଞ୍ଛିତ।

ଉତ୍କଳେ ଯେ ମହାବଂଶ) ଦୁର୍ଦ୍ଧର୍ଷ ସଂଗ୍ରାମେ; (୧)
ହେମସାରସନେ ଗାଢ଼େ ବାନ୍ଧି ସିଂହକଟି
ଆସଇ ସୈନ୍ଧବୀ ଚମୂ, ଗାଲମୋଚାଧାରୀ, (୨)
ଶିକ୍ଷିତ ସୈନ୍ଧବୀ ଘୋଡ଼ାଖୁରେ ସମୁତ୍‌ଥିତ
ଧୂଳିରେ ଅନ୍ଧାରି ନଭଃ, ଧରି ରଣୋନ୍ମାଦେ
ଯମଚକ୍ର ପ୍ରାୟେ କରେ ବକ୍ର ବରଦଳି; (୩)
ତୁମ୍ଭ ଯଶେ ସମୁଜ୍ଜ୍ୱଳ ଯେ ବଂଶ ଏ ଦେଶେ,
ହେ ଯଶସ୍ୱୀ ରାମଚନ୍ଦ୍ର ଭଞ୍ଜଭୂମିପତି
ଆସନ୍ତି କୌଶେୟଭଟେ ଭିନ୍ଦୀପାଳଧାରୀ (୪)
ମରୁଦେଶୁଁ, ମରୁଚାରିମୃଗେନ୍ଦ୍ରବିକ୍ରମେ, (୫)
ଅପମାନଅସହିଷ୍ଣୁ, କୋପନ ପ୍ରକୃତି
ଦୀପ୍ତ ହୁତଭୁକ୍ ଯଥା, ନିରତେ ପ୍ରସ୍ତୁତ
ନେବାକୁ ଦେବାକୁ ମଥା କଥାକେ କଥାକେ।
ବୀରଦର୍ପେ ମତ୍ସ୍ୟାଙ୍କିତ କେତନ ଉଡ଼ାଇ
ଆସନ୍ତି ସତ୍ୱର କୂଳୁଁ ବୈରାଟପଦାତି (୬)
ପ୍ରାଂଶୁତନୁ, ଭୀମଧନୁ ଝମକି ଭୈରବେ
ସବ୍ୟକରେ, ସବ୍ୟେତରେ ଭାସ୍ୱର ପରଶୁ;
କରନ୍ତି ଯେ ସୁଚାଳିତ ଲାଙ୍ଗଳର ଫାଳେ
କାଳିନ୍ଦୀର ବେନି କୂଳ ଶସ୍ୟେ ଶ୍ୟାମଳିତ,
ଆସୁଛନ୍ତି ଉରସିଜ ସୌରସେନୀ ବୀରେ (୭)
ଶାଣିତ ପାଣିତ ଅସି କୌତୁକେ ଆସ୍ଫାଳି; (୮)
ଚର୍ମନ୍ୱତୀକଙ୍କପର ଖୋସି ଶିରସ୍ତ୍ରାଣେ, (୯)
କର୍କଶ, କର୍କଶ ଯେହ୍ନେ କର୍କରା ସେ ସ୍ରୋତେ,
ବିଶାଳ ଆୟସୀ ଗଦା ଧରି ଅନାୟାସେ,
ଆସୁଛନ୍ତି ମାଲବେଶେ ମାଳବ ନିବାସୀ (୧୦)

ଦାରିଦ୍ର୍ୟଧୂଳିରେ ରଙ୍ଗେ ବୋଳି ବୀରତନୁ;
ଯାହ୍ନବୀଯମୁନାବେଣୀ ମଥାମଣିରୂପୀ
ଶସ୍ୟଶାଳୀ ବସଦେଶୁଁ ଆସୁଛନ୍ତି ସାଦୀ (୧୧)
ଦଳେ ଦଳେ ଅଶ୍ୱପୃଷ୍ଠେ, ପିତ୍ତଳବର୍ମିତ, (୧୨)
ଗୁବା-ଉଚାବତ୍ ଢ଼ାଳ ଦୋହଲଇ ଚରମେ,
କରେ ଖରଶାଣ ଭଲ୍ଲ ପରହୃଦଭେଦୀ;
ସରଯୂ, ତମସା, ପୁଣି ଗୋମତୀତଟିନୀ – (୧୩)
ତୀରଦେଶୁଁ ଆସୁଛନ୍ତି ସୂର୍ଯ୍ୟବଂଶୀ ବୀରେ
ମହୋତ୍ସାହେ, ତୋଳି ସୂର୍ଯ୍ୟଲାଞ୍ଛିତ ପତାକା;
ପୃଷ୍ଠଦେଶେ ଦୋଳେ ଫୁଲିମଣ୍ଡିତ ତୂଣୀର,
ଯମଦଂଷ୍ଟ୍ରା ସହଚର ଶର ଦକ୍ଷକରେ,
ସବ୍ୟେ ଧନୁ, ଟାଣନ୍ତେ ଯା ଗୁଣ କର୍ଣ୍ଣଯାଏ,
ଶତ୍ରୁସୀମନ୍ତିନୀ କର୍ଣ୍ଣୁ ବେଗେ ପଡ଼େ ଝଡ଼ି
କର୍ଣ୍ଣୋତ୍ପଳ, ତୁଟେ କରୁ କଙ୍କଣ ଟଙ୍କାରେ। (୧୪)
ମହାଖରସ୍ରୋତସ୍ୱତୀ, ପୂତଶୀଳାମୟୀ
ଗଣ୍ଡକୀର ତୀର ଛାଡ଼ି ଗୁଣ୍ଡୀଭୂତ ଆସି (୧୫)
ନିର୍ମୋକନିର୍ମୁକ୍ତ ତମ୍ପ ପ୍ରାୟେ କମ୍ପପ୍ରଦ (୧୬)
ନାରାଚଧାରିଣୀ ସୀରଲାଞ୍ଛିତଧ୍ୱଜିନୀ
ମୈଥିଳାଖ୍ୟ, ମହାଦକ୍ଷ ବିପକ୍ଷ ଦଳନେ। (୧୭)
ମ      ମାନେ ଉଭା ସେହି ବିଶାଳ ପ୍ରାନ୍ତରେ
ବିନ୍ଧେ ୍ୱରୀଦେବୀଭକ୍ତ ସଦା ଦ୍ୱନ୍ଦ୍ୱପ୍ରିୟ (୧୮)
ଯୋଧବୃନ୍ଦ, ବଳିପଶୁଶୋଣିତେ ପିଶୁନ
ତୀକ୍ଷ୍ଣଧାର ଖଡ୍‌ଗ ହସ୍ତେ, ବାଳାର୍କପ୍ରତିମ
ଶୋଭଇ ସିନ୍ଦୂରଚିତ୍ରା ପ୍ରଶସ୍ତ ଲଲାଟେ,
ଦେବୀଙ୍କ ବାହନ ସିଂହ ଶୋଭେ ଧ୍ୱଜପଟେ,

(୧) ବାମଣ୍ଡାରାଜବଂଶ ଯଦୁବଂଶସମ୍ଭୂତ। ବାସୁଦେବ – ସମ୍ବୋଧନପଦ। ବାମଣ୍ଡାମଘବା – ବାମଣ୍ଡାର ଇନ୍ଦ୍ର ସ୍ୱରୂପ। 'ଦୁର୍ଦ୍ଧର୍ଷ' ଅନୀକିନୀର ବିଶେଷଣ। (୨) ସୈନ୍ଧବୀ ଚମୂ-ସିନ୍ଧୁଦେଶୀୟ ସେନା। ସିନ୍ଧୁଦେଶ ଘୋଟକ ନିମନ୍ତେ ପ୍ରସିଦ୍ଧ ଥିଲା। (୩) ବରଦଳି – ଚକ୍ରାକାର ଅସ୍ତ୍ରବିଶେଷ। (୪) ମୟୂରଭଞ୍ଜ ରାଜବଂଶ କୌଶେୟ ଅର୍ଥାତ୍ କୁଶବଂଶୋଦ୍ଭୂତ ଅଟନ୍ତି। ଏମାନଙ୍କର ଆଦ୍ୟସ୍ଥାନ ରାଜପୁତାନା। ରାଜପୁତାନାର ମରୁପ୍ରଦେଶରେ ପୂର୍ବକାଳରେ ଅନେକ ସିଂହ ଥିଲେ। (୫) ବିକ୍ରମେ – ପଦକ୍ଷେପରେ। (୬) ବିରାଟରାଜ୍ୟ ରାଜପୁତାନା ଅନ୍ତର୍ଗତ ସମ୍ବର ହ୍ରଦର ଅଦୂରବର୍ତ୍ତୀ। ବିରାଟବାସୀମାନେ ପ୍ରାଂଶୁକାୟ ବୋଲି ପ୍ରସିଦ୍ଧ ଥିଲେ। ସୈନିକକାର୍ଯ୍ୟ ନିମନ୍ତେ ଏମାନେ ବିଶେଷ ଉପଯୋଗୀ ବୋଲି ଭାରତବର୍ଷର ସର୍ବ ଆଦୃତ ହେଉଥିଲେ। (୭) ମଥୁରା ଅଞ୍ଚଳର ଲୋକମାନେ 'ସୌରସେନୀ' ଆଖ୍ୟାରେ ଆଖ୍ୟାତ ହେଉଥିଲେ। ଉରସିଜ – ବିଶାଳବକ୍ଷା। (୮) ପାଣିତ – ପାଣିଦିଆ। (୯) ଚର୍ମନ୍ୱତୀ – ଚମ୍ବଲ ନଦୀ। (୧୦) ମାଳବ – ମାଳବା। (୧୧) ଦୋଆବର ପ୍ରାଚୀନ ନାମ ବସଦେଶ। ସାଦୀ – ଅଶ୍ୱବାର। (୧୨) ବର୍ମ୍ମିତ – ବର୍ମ୍ମଧାରୀ। (୧୩) ସରଯୂ, ତମସା, ଗୋମତୀ ଅବଧରାଜ୍ୟର ନଦୀ। ତମସାର ଆଧୁନିକ ନାମ ଟଁସ୍। (୧୪) ଏହି ଯୋଦ୍ଧାମାନେ ଧନୁର୍ଗୁଣ ନିଜ କର୍ଣ୍ଣ ପର୍ଯ୍ୟନ୍ତ ଆକର୍ଷଣ କଲାମାତ୍ରେ ଶତ୍ରୁ ରମଣୀମାନଙ୍କ କର୍ଣ୍ଣରୁ କର୍ଣ୍ଣୋତ୍ପଳ ଝଡ଼ିପଡ଼େ। ଏମାନଙ୍କର ଧନୁଷ୍ଟଙ୍କାର ଶବ୍ଦରେ ଶତ୍ରୁରମଣୀମାନଙ୍କର କଙ୍କଣ ଭଗ୍ନ ହୁଏ, ଅର୍ଥାତ୍ ସେମାନେ ବିଧବା ହୁଅନ୍ତି। (୧୫) ଗଣ୍ଡକୀ ମିଥିଳାରେ ପ୍ରବାହିତା। ପବିତ୍ର ଶିଳା ସକାଶେ ଏହି ନଦୀ ପ୍ରସିଦ୍ଧ। (୧୬) କାତିଛାଡ଼ିଥିବା ତମ୍ପସାପ ପରି ଭୟଙ୍କର। (୧୭) ମୈଥିଳରାଜାଙ୍କ ପତାକା ଲାଙ୍ଗଳଲାଞ୍ଛିତ ଥିଲା। ଏହି ହେତୁରୁ ରାଜର୍ଷି ଜନକଙ୍କର ଅପର ଆଖ୍ୟା ସୀରଧ୍ୱଜ। (୧୮) ବିନ୍ଧ୍ୟେଶ୍ୱରୀ – ମିରଜାପୁର ସହରର ନିକଟବର୍ତ୍ତୀ ସ୍ଥାନରେ ଗଙ୍ଗାତଟରେ ବିନ୍ଧ୍ୟବାସିନୀ ଦେବୀଙ୍କର ମନ୍ଦିର ପ୍ରତିଷ୍ଠିତ।

ଜ୍ୟୋତିର୍ମୟ ସିଂହ, ଆହା, ରାଶିଚକ୍ରେ ଯଥା ।
ମହାଜବ ପୃଷ୍ଠ୍ୟପୃଷ୍ଠେ ଆସେ ଆସ୍କନ୍ଦିତେ, (୧)
କାଳଦଣ୍ଡ ପ୍ରାୟେ କୁନ୍ତ ମୁଷ୍ଟିପୀଡ଼େ ଧରି, (୨)
କର୍ଣ୍ଣକୁଳତନ୍ତୁ-ବୃଷକେତୁବଂଶଧର (୩)
ଉଡ଼ାଇ ବୃଷାଙ୍କ ବାନା, ଅଙ୍ଗଦେଶୀ ସେନା, (୪)
ଶ୍ୱେତମଣିଶିଳାଦ୍ରୋଣୀବାହିନୀ ନର୍ମଦା- (୫)
ତୀରବନେ ଅନୁକ୍ଷଣେ ମୃଗୟାବିନୋଦୀ
ଆସନ୍ତି ଅମିତ୍ରଚ୍ଛେଦୀ ଚେଦି-ମହାବୀରେ
ମହୋଜ୍ଜ୍ୱଳମରକତଅବତଂସଧାରୀ, (୬)
ଘନତାଳୀବନାକୀର୍ଣ୍ଣ ଜଳଦୁର୍ଗବାସୀ, (୭)
ଅଜସ୍ର କ୍ଷେପଣୀକ୍ଷେପେ ବଜ୍ରଦୃଢ଼ବପୁଃ, (୮)
ଗାଙ୍ଗେୟତରଙ୍ଗେ କେଳିମସଭେଦେ ପଟୁ
ସାବେଳି, ଭାସ୍ୱର ବଳି ହାବେଳିର ଶିଖା, (୯)
ସ୍କନ୍ଧେ ଥୋଇ ଆସୁଅଛି ଅମନ୍ଦବିକ୍ରମେ
ବଙ୍ଗଦେଶୀ ରଣରଙ୍ଗରସିକ ପୃତନା; (୧୦)
ହିମାଦ୍ରିନିଃସ୍ୟନ୍ଦିନୀର ପ୍ରବାହେ ପ୍ଲାବିତ,
ଶାର୍ଦ୍ଦୂଳସେବିତ-ପ୍ରାଂଶୁ-ତୃଣବନାକୁଳ (୧୧)
ପୌଣ୍ଡ୍ର, ଦେଖଁ ଆସୁଅଛି ବାର୍କ୍ଷଦୁର୍ଗବାସୀ (୧୨)
ରଣରୁକ୍ଷ-ଅନୀକିନୀ ଅନିବର୍ତ୍ତୀ ରଣେ, (୧୩)
ରିପୁବରଚ୍ଛିନ୍ନକାରୀ ବରଛିଧାରିଣୀ; (୧୪)

ଆସନ୍ତି ଆୟସସେହ୍ନା ସନ୍ନଦ୍ଧଶରୀରେ, (୧୫)
ଧୂପଖଣ୍ଡାଧାରୀ, ଚଣ୍ଡରିପୁଦଣ୍ଡଦାତା, (୧୬)
କୁଳପିମଣ୍ଡିତଗଣ୍ଡ ଉତ୍କଳପ୍ରବୀରେ, .
ଦ୍ୱିରୁକ୍ତି କେବଳ ସିନା ଚନ୍ଦ୍ରୋଜ୍ଜ୍ୱଳଭୂଷା
ଯାହାଙ୍କର ଚନ୍ଦ୍ରହାସବ୍ରଣାଙ୍କିତଦେହେ; (୧୭)
ଆସୁଛନ୍ତି ନେପାଳିଏ ମହାବୀର୍ଯ୍ୟଶାଳୀ,
ଖର୍ବଦେହ, ମାତ୍ର ରଣେ ପର୍ବତ ପରାୟେ
ଅଟଳ, ଛଟକେ ରିପୁକଟକସଂହାରୀ, (୧୮)
କଟିଦେଶେ ବିଲମ୍ବିତ କଟାରୀ-ପିଧାନେ, (୧୯)
ଶକ୍ରାୟୁଧବର୍ଣ୍ଣଶୋଭି-ପ୍ରବେଣୀଆବୃତ, (୨୦)
ଝରୋଦ୍‌ଗାରିଖଣ୍ଡଗିରି (୨୧) ପ୍ରାୟେ ମଦସ୍ରାବୀ
ସଙ୍ଗେ ଦନ୍ତାବଳଘଟା ଦିଗନ୍ତ ନିର୍ଘୋଷୀ
ଘନ ଘଣ୍ଟାରବେ, ପୁଣି ଭୈରବବୃଂହିତେ; (୨୨)
ବ୍ୟାଘ୍ରଚର୍ମ ଅଙ୍ଗତ୍ରାଣେ ସର୍ବାଙ୍ଗ ଆବରି
ଆସନ୍ତି କ୍ଷତ୍ରିୟେ କର୍ମନାଶାତୀରବାସୀ,
ବଜ୍ରବପୁ, କଷ୍ଟସହ, ନିଷ୍ଠୁର ଯେସନେ
ନିଷ୍ଠୁର ଅକର୍ମଶୀଳା କର୍ମନାସାସ୍ରୋତେ, (୨୩)
ହସ୍ତେ ଶାର୍ଙ୍ଗଧନୁ, ପୃଷ୍ଠେ ନିଷଙ୍ଗେ ପୂରିତ
ଅରାତିମାରଣପଟୁ ଆୟସବାଟୁଳି;
ଆସୁଛନ୍ତି ଭିଲ୍ଲସେନା ଏକମୁନାଧାରୀ, (୨୪)

(୧) ମହାଜବ – ବେଗଗାମୀ । ପୃଷ୍ଠ୍ୟ – ଟଟ୍ଟୁଘୋଡ଼ା । ଆସ୍କନ୍ଦିତ – କଦମ । (୨) କୁନ୍ତ – ଅସ୍ତ୍ରବିଶେଷ । ମୁଷ୍ଟିପୀଡ଼େ – ଦୃଢ଼ମୁଷ୍ଟିରେ । (୩) ବୃଷକେତୁ – କର୍ଣ୍ଣପୁତ୍ର । (୪) ମୁଙ୍ଗେର ପ୍ରଭୃତି ଅଞ୍ଚଳର ନାମ ଅଙ୍ଗଦେଶ । କର୍ଣ୍ଣଙ୍କ ଉତ୍ତାରୁ ତାହାଙ୍କ କନିଷ୍ଠପୁତ୍ର ବୃଷକେତୁ ଅଙ୍ଗଦେଶରେ ରାଜପଣ କରିଥିଲେ । (୫) ଶ୍ୱେତମଣିଶିଳାଦ୍ରୋଣୀ – ଶ୍ୱେତବର୍ଣ୍ଣ ମାର୍ବଲପର୍ବତର ଉପତ୍ୟକା । ମଧ୍ୟଭାରତବର୍ଷରେ ଜବଲପୁର ନିକଟବର୍ତ୍ତୀ ଭେଡ଼ାଘାଟ ନାମକ ସ୍ଥାନରେ ନର୍ମଦାର ସ୍ୱଚ୍ଛନୀଳସ୍ରୋତ ଧବଳମାର୍ବଲପ୍ରସ୍ତରର ଦ୍ରୋଣୀରେ ପ୍ରବାହିତ । ଏହି ସ୍ଥାନ ଭାରତବର୍ଷର ଗୋଟିଏ ପ୍ରଧାନ ଦୃଶ୍ୟ । ନର୍ମଦାର ସୁପ୍ରସିଦ୍ଧ ଧୂଆଁଧାର ପ୍ରପାତ ଏହାର ଅଦୂରବର୍ତ୍ତୀ । (୬) ଜବଲ୍‌ପୁର ପ୍ରଭୃତି ଚେଦିରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ମରକତଖଣିବିଶିଷ୍ଟ ପାନ୍ନା ନଗରୀ ଚେଦିରାଜ୍ୟର ଅନ୍ତର୍ଗତ ଥିଲା । (୭) ତାଳୀବନ – ହିନ୍ତାଳବନ । ସମୁଦ୍ରତୀରବର୍ତ୍ତୀ ଦେଶମାନ ହିନ୍ତାଳବନାକୀର୍ଣ୍ଣ । (୮) ସର୍ବଦା ଆହୁଲାରିଡ଼ା ହେତୁରୁ ସେମାନଙ୍କର ପେଶୀ ସୁଦୃଢ଼ । (୯) ସାବେଳି – ଅସ୍ତ୍ରବିଶେଷ । (୧୦) ପୃତନା – ସେନା । ପୂର୍ବବଙ୍ଗ ଜଳାକୀର୍ଣ୍ଣ – ଏହି ହେତୁରୁ ବଙ୍ଗୀୟ ସେନାଙ୍କୁ ଜଳଦୁର୍ଗବାସୀ ବୋଲାଯାଇଅଛି । ଓଡ଼ିଶାରେ କୁଜଙ୍ଗ ପାରିକୁଦ ପ୍ରଭୃତି ସ୍ଥାନମାନଙ୍କୁ ଜଳଦୁର୍ଗ ବୋଲାଯାଇପାରେ । (୧୧) ବ୍ୟାଘ୍ରସଂକୁଳ ବୃହତ୍ ଘାସବନପୂର୍ଣ୍ଣ । (୧୨) ପୌଣ୍ଡ୍ରଦେଶ -- ହିମାଳୟର ପାଦଦେଶସ୍ଥିତ ରାଜସାହି ପ୍ରଭୃତି ଅଞ୍ଚଳ । ବାର୍କ୍ଷଦୁର୍ଗ – ବୃକ୍ଷଘଟିତ ଦୁର୍ଗ । ବର୍ତ୍ତମାନ ସୁଦ୍ଧା ଅନେକ ରାଜା ଏବଂ ଜମିଦାରମାନଙ୍କ ଗଡ଼ ନିବିଡ଼ ବାଉଁଶବନବେଷ୍ଟିତ ଦେଖାଯାଏ । (୧୩) ରଣରୁ ଯେଉଁମାନେ ନିବୃତ୍ତ ହେବାର ନୁହନ୍ତି । (୧୪) ରିପୁବରଚ୍ଛିନ୍ନକାରୀ – ପ୍ରଧାନଶତ୍ରୁ ଛେଦକ । (୧୫) ଲୌହକଞ୍ଚୁକାବୃତ ଦେହରେ । (୧୬) ଧୂପଖଣ୍ଡା – ଅତ୍ୟୁତ୍କୃଷ୍ଟ ଖଡ୍‌ଗବିଶେଷ । (୧୭) ଚନ୍ଦ୍ରହାସ – ଖଡ୍‌ଗ । ଉତ୍କଳୀୟ ସୈନ୍ୟମାନଙ୍କ ଦେହରେ ଖଡ୍‌ଗାଘାତର ଚିହ୍ନ ଥିଲା । ତାହା ସେମାନଙ୍କର ସର୍ବୋତ୍କୃଷ୍ଟ ଭୂଷଣ । ସେମାନଙ୍କ ଦେହରେ ଆଉ ଯେଉଁ ଭୂଷଣ ଥିଲା, ତାହା ଦ୍ୱିରୁକ୍ତି ମାତ୍ର ଅର୍ଥାତ୍ ନିଷ୍ପ୍ରୟୋଜନ । ଅସ୍ତ୍ରବ୍ରଣାଙ୍କଠାରୁ ବୀରମାନଙ୍କର ଉତ୍କୃଷ୍ଟତର ଭୂଷଣ ଆଉ ନାହିଁ । (୧୮) ନେପାଳର ଗୁରଖାସୈନ୍ୟ ଖର୍ବକାୟ, ମାତ୍ର ଅତ୍ୟନ୍ତ ସାହସୀ ଏବଂ ରଣଦକ୍ଷ । (୧୯) ପିଧାନ – କୋଷ; କଟାରି – ଅସ୍ତ୍ରବିଶେଷ । (୨୦) ପ୍ରବେଣୀ – ହସ୍ତୀର ପୃଷ୍ଠାସ୍ତରଣ । (୨୧) ଖଣ୍ଡଗିରି – କ୍ଷୁଦ୍ରଶୈଳ । (୨୨) ବୃଂହିତ – ହସ୍ତିଗର୍ଜନ । (୨୩) କର୍ମନାଶାନଦୀ ବେହାର ଅନ୍ତର୍ଗତ ଭୋଜପୁରର ନିକଟବର୍ତ୍ତୀ । ଭୋଜପୁରବାସୀଙ୍କ ପ୍ରକୃତି ପ୍ରାବଚ୍‌ନିକ ପ୍ରସିଦ୍ଧି ଲାଭକରିଅଛି ।
(୨୪) ଏକମୁନା – ଶୂଳାକାର ଅସ୍ତ୍ରବିଶେଷ ।

ବିନ୍ଧ୍ୟଗିରିବନଗଜ-ମୃଗୟାକୌତୁକୀ,
ଅଞ୍ଜନାଭ, ଗୁଣ୍ଡାମାନେ ମଣ୍ଡିତ ବିଗ୍ରହ,
ମଧୁକମଦିରାପାନେ ରକ୍ତାକ୍ଷ ସରବେ, (୧)
ଘନ ଘନ କଟିତଟେ ବାଜେ ଘର୍ଘରିକା; (୨)
ଛାଡ଼ି ନାହିଁ ପେଷିବାକୁ ଏ ମହାମିଳନେ
ନିଜ ନିଜ ପତାକିନୀ ବିଶ୍ୱବିଜୟିନୀ
ଉଜ୍ଜୟିନୀ, ମହାକାଳପାଳିତା ନଗରୀ,
ନିରତେ ଶୀତଳ ସିପ୍ରାତରଙ୍ଗପବନେ; (୩)
ନର୍ମଦାମେଖଳା ମହାପୁରୀ ମାହିଷ୍ମତୀ,
କାର୍ତ୍ତବୀର୍ଯ୍ୟବୀର୍ଯ୍ୟେ ଯାହା ବିଶ୍ରୁତ ତ୍ରିଲୋକେ; (୪)
ବେତ୍ରବତୀଧୌତପୁରୀ ବିଦିଶାଲକ୍ଷଣା; (୫)
ହେଉଛନ୍ତି ଏହି ମତେ ରୁଣ୍ଡ ସେ ପ୍ରାନ୍ତରେ
କେତେ ଦେଖୁଁ କେତେ ଜାତି କହିବ କେ ତାହା ?
କେ ଗଣିବ ନଭେ ତାରା, ଲହରୀ ଅର୍ଣ୍ଣବେ,
କି ଅବା ଚିଲିକାନୀଳବକ୍ଷେ ହଂସାବଳୀ ? (୬)
କୃଷ୍ଣା ସ୍ୱୟମ୍ବରେ ଯଥା ଲକ୍ଷ୍ୟଭେଦକାଳେ
ପଞ୍ଚାଳେ, କି ଅବା ଇନ୍ଦ୍ରପ୍ରସ୍ଥେ ରାଜସୂୟେ,
କୁରୁକ୍ଷେତ୍ରଯୁଦ୍ଧୋଦ୍ୟୋଗେ ଅବା ମତ୍ସ୍ୟଦେଶେ,
ଅବା ଯଥା ଅଶ୍ୱମେଧେ ହସ୍ତିନାତୋରଣେ,
ଦେଖିଥିଲେ ରୁଣ୍ଡ ଆଗେ ପାଣ୍ଡୁ କୁଳମଣି
ଅସଂଖ୍ୟ ବାହିନୀ, ପୁଣି ଦୃଶ୍ୟ ସେହିପରି,
ଦେଖିଲେ ସେ ଆଜି ବସି ଅନଳପ୍ରସାଦେ
ସହ୍ୟଶୈଳେ, ତହୁଁ ତାଙ୍କୁ ଏକ ଏକ କରି
ଚିହ୍ନାଇ ଜ୍ୱଳନଦେବ ଅଙ୍ଗୁଳି ନିର୍ଦ୍ଦେଶି
ବୋଇଲେ, ''ଦେଖୁଛ ଯାହା, ଘଟିବ ଭାରତେ,
ବହୁଶତ ବର୍ଷ ଗତେ ଏହି ନବଯୁଗେ,
କଳିପାପେ ବୀର୍ଯ୍ୟ-ହୀନ ହେଲେ ଆର୍ଯ୍ୟଜାତି,
ଆରମ୍ଭିବେ ମହାଯାଗ ଅର୍ବୁଦପର୍ବତେ (୭)
ଭାରତର ହିତକାମେ ଚାରି ମହାତପା
ବଶିଷ୍ଠ, କୃଶାଶ୍ୱଶିଷ୍ୟ, ପରାଶର, ଭୃଗୁ,
ନିଜ ତେଜଃପୁଞ୍ଜଧାମୁଁ ମଞ୍ଚେ ଅବତରି, (୮)
ପ୍ରତିହାର, ପ୍ରମାରକ, ରାଠୋର, ଚୋହାନ-
ନାମଧାରୀ କୃତୀ ଚାରି କ୍ଷତ୍ରମହାବୀରେ
ଜନ୍ମଭୂମି ଲାଗି ଝାସଦେବେ ଯଜ୍ଞାନଳେ
ମହାନନ୍ଦେ, ମହାମନା ମୁନିଙ୍କ ଆଦେଶେ,
ବୀର ବିନୁ ଆନ କେହି ପାରେ କି ମୁରୁଛି,
ଜୀବନର ବ୍ରତ ଲାଗି, ଜୀବନର ମାୟା ?
ଜନ୍ମଭୂମି ଟେକ ରକ୍ଷା ଶକତି କି କେବେ
ଧରଇ, ହେ ପାଣ୍ଡୁରାଣ, ପ୍ରାଣରଙ୍କ ପ୍ରାଣୀ ?
ଝାସ ଦେଇ ସେ ଅନଳେ ସେହି ଚାରି ବୀରେ
ନବବପୁ ଧରି ପୁଣି ବାହାରିବେ ତହୁଁ,
ପ୍ରଦୀପ୍ତକବଚୀ ଖଡ୍ଗୀ ଧୃଷ୍ଟଦ୍ୟୁମ୍ନ ପରି; (୯)
ମୋ ଶିଖାରୁ ଜାତ ଯେଣୁ ହେବେ ଏହି ବୀରେ,
ବୋଲାଇବେ ଭବେ ତହୁଁ ''ଅଗ୍ନିକୁଳ'' ନାମେ,
ଯଥା ନାମେ କର୍ମେ ତଥା ତେଜଃପୁଞ୍ଜରୂପୀ;
ଶୋଭିବ ଏ ଦେଶ ଏହି ଚାରି ମହାବୀରେ,
[illegible]ବାରଣଦନ୍ତେ ସୁରଗଜ ଯଥା (୧୦)
[illegible], ଚାରିଭୁଜେ ଅବା ଦନୁଜାରି, (୧୧)
ଅ[illegible]ବାଳାଙ୍କର ଜ୍ୟୋତିପୂର୍ଯ୍ୟଙ୍କିକା
ଖୁରାରୂପୀ ଭାଦ୍ରପଦ ତାରାଚତୁଷ୍ଟୟେ; (୧୨)
ଏହି ଯେ ଦେଖୁଛ, ବୀର, ଆର୍ଯ୍ୟବରୂଥିନୀ (୧୩)
ସମବେତ ନାନା ଦିଗ ଦିଗନ୍ତରୁ ଆସି,
ଜନ୍ମିବେ ସରବେ ଏହି ଚାରି ବୀରକୁଳେ, (୧୪)
ଭାରତର ନାନାରାଜ୍ୟେ ରାଜଦଣ୍ଡ ଚାଳି
ଏ ବୀରଙ୍କ ବଂଶଧରେ ରଖିବେ ଯତନେ
ଯବନ ରାହୁର ଗ୍ରାସୁଁ ଭାରତ-ଚନ୍ଦ୍ରମା

(୧) ମଧୁକମଦିରା– ମହୂଲମଦ। (୨) ଘର୍ଘରିକା–କ୍ଷୁଦ୍ର ଘଣ୍ଟି। (୩) ଉଜ୍ଜୟିନୀର ପାଦଦେଶରେ ସିପ୍ରା ପ୍ରବାହିତା। ଭଗବାନ୍ ମହାକାଳ ମହାଦେବଙ୍କ ମନ୍ଦିର ସକାଶେ ଉଜ୍ଜୟିନୀ ଭାରତବର୍ଷର ପ୍ରଧାନ ତୀର୍ଥ ମଧ୍ୟରେ ପରିଗଣିତ। (୪) କାର୍ତ୍ତବୀର୍ଯ୍ୟଙ୍କ ରାଜଧାନୀ ମାହିଷ୍ମତୀ ନର୍ମଦା ତଟରେ ଅବସ୍ଥିତ ଥିଲା। (୫) ବିଦିଶାଲକ୍ଷଣା– ବିଦିଶାନାମ୍ନୀ। ବିଦିଶାର ଆଧୁନିକ ନାମ ଭିଲସା। ଏହା ବେତ୍ରବତୀ ଅଥବା ବେତୁଆ ତୀରରେ ଅବସ୍ଥିତ। (୬) ଶରଦାରମ୍ଭରେ ଚିଲିକାର ନୀଳବକ୍ଷ ବନହଂସରେ ଧବଳିତ ହୋଇଯାଏ। (୭) ଆବୁ ପର୍ବତ ଆରାବଲୀର ପ୍ରଧାନ ଶୃଙ୍ଗ। କିମ୍ବଦନ୍ତୀ ଅଛି ଯେ ଭାରତବର୍ଷର ଅଧଃପତନର ସମ୍ଭାବନା ଦେଖି ବଶିଷ୍ଠ, ବିଶ୍ୱାମିତ୍ର, ପରାଶର ଏବଂ ଭୃଗୁମୁନି ଅର୍ବୁଦପର୍ବତ ଶୃଙ୍ଗରେ ଯାଗାରମ୍ଭ କଲେ। ସେହି ଯାଗାନଳରୁ ଚାରି ମହାବୀର ଆବିର୍ଭୂତ ହେଲେ। ଏହି ବୀରଚତୁଷ୍ଟୟର ସାଧାରଣ ନାମ 'ଅଗ୍ନିକୁଳ' ଅଟେ। (୮) ସପ୍ତର୍ଷିରୂପ ଜ୍ୟୋତିର୍ମୟଲୋକରୁ। (୯) ଦ୍ରୁପଦପୁତ୍ର ଧୃଷ୍ଟଦ୍ୟୁମ୍ନ ଦୀପ୍ତିମାନ୍ କବଚ ଏବଂ ଖଡ୍‌ଗ ଧାରଣକରି ଯଜ୍ଞକୁଣ୍ଡରୁ ବାହାରିଥିବାର ପ୍ରସଙ୍ଗ ମହାଭାରତରେ ଅନୁସନ୍ଧେୟ। (୧୦) ଐରାବତର ଚାରି ଦାନ୍ତ ଥିବାର [illegible] ଅଛି। (୧୧) ଦନୁଜାରି ଅର୍ଥାତ୍ ବିଷ୍ଣୁ ଯେପରି ଚାରି ଭୁଜଦ୍ୱାରା ପରିଶୋଭିତ। (୧୨) ଭାଦ୍ରପଦ ତାରାଚତୁଷ୍ଟୟ ପର୍ଯ୍ୟଙ୍କାକାର। (୧୩) ବରୂଥିନୀ–ସେନା। (୧୪) ଆର୍ଯ୍ୟାବର୍ତ୍ତର ଅଧିକାଂଶ ରାଜନ୍ୟବର୍ଗ [illegible]ହି ଚାରି ନାମରେ ଆଖ୍ୟାତ। ଓଡ଼ିଶାର ଅଧିକାଂଶ ରାଜବଂଶ ମଧ୍ୟ ଏହି ବଂଶସମ୍ଭୂତ।

ବହୁକାଳ, ମାତ୍ର ତାହା ନ ସହିବ କଳି,
କଳିର ପ୍ରେରଣେ 'ଈର୍ଷ୍ୟା' ଅଳକ୍ଷିତେ ପଶି
ଭିଆଇବ ପୁଣି କଳି ଭୂପାଳେ ଭୂପାଳେ;
ଜନ୍ମିବେ ଚୋହାନ କୁଳେ ଏହି ଦିଲ୍ଲୀପୁରେ
କ୍ଷୀରୋଦୁଁ ପୀୟୂଷ ପ୍ରାୟେ ପୃଥ୍ବୁ ପୃଥୁଯଶା, (୧)
ସଂଗ୍ରାମେ ଅପ୍ରତିରଥ ଯଥା ପାର୍ଥ ରଥୀ, (୨)
ଜନ୍ମିବ ରାଠୋରକୁଳେ ସେ କୁଳପାଂଶୁଳ
କ୍ଷୀରୋଦୁଁ ଗରଳ ପ୍ରାୟେ, ମୋ ଶିଖାରୁ ଅବା
ସମଳ ଅଳନ୍ଧୁ ପ୍ରାୟେ କାନ୍ୟକୁବ୍ଜପତି (୩)
ମନ୍ଦମତି ଜୟଚନ୍ଦ୍ର ଆର୍ଯ୍ୟଭୂମିଦ୍ରୋହୀ;
ପୃଥୁଙ୍କ ବିକ୍ରମ ଯଶଃ ଶୁଣି ଏ ଦୁର୍ମତି
ଅନୁକ୍ଷଣେ ହେବ ଘାରି, ସ୍ୱଭାବେ ଉଗାରି
ଗୁଣିଙ୍କର, କର୍ଣ୍ଣଶୂଳ ମଣିବ ସେ ସ୍ତୁତି;
ମାତ୍ର କର୍ଣ୍ଣାମୃତରୂପେ ପଶିବ ସେ ବାଣୀ
ବୀରାଙ୍ଗନା ବୀରୋସଙ୍ଗ ସିଂହାସନାର୍ଥିନୀ (୪)
କାନ୍ୟକୁବ୍ଜ ହେମାମଣି ସଂଯୁକ୍ତା ଶ୍ରବଣେ (୫)
ସଂଯୁକ୍ତା, ସୁନ୍ଦରୀପଣେ ଅତୁଳା ଭୂତଳେ,
ରାଠୋରକଳଙ୍କ ଜୟଚନ୍ଦ୍ରର ଔରସେ
ପ୍ରସୂତା, ପଙ୍କିଳ ସରୁ ଯଥା ପଙ୍କଜିନୀ;
ସୁନ୍ଦରୀମୋହନମନ୍ତ୍ର ନୁହେଁ କେଉଁ କାଳେ,
କେଉଁଦେଶେ, ହେ ବୀରେନ୍ଦ୍ର, ବୀରଯଶୋଗାଥା ?
ପୃଥୁଙ୍କ ସେ ଯଶୋଗାଥା ଜାଳିବ ଯେତିକି
କ୍ରୋଧ ପିତୃହୃଦେ, ପ୍ରେମ ସେତିକି ସେ ପୁଣି
ଜାଳିଦେବ ସମକାଳେ ଦୁହିତା ହୃଦୟେ;
ରାଜସୂୟ ଯଜ୍ଞେ ହେମାସ୍ୱୟମ୍ବରବିଧି
ଭିଆଇବ ଜୟଚନ୍ଦ୍ର କାନ୍ୟକୁବ୍ଜ ପୁରେ,
ଲେଖ ପାଇ ଭାରତର ଦିଗଦିଗନ୍ତରୁ
ଆସିବେ ସେ ରାଜସୂୟେ ରାଜନ୍ୟମଣ୍ଡଳୀ,
ମାତ୍ର ନ ଆସିବେ ପୃଥ୍ବୁ; ପ୍ରତିନିଧିରୂପେ
ପୃଥୁଙ୍କର ପ୍ରତିରୂପ ଗଢ଼ାଇ କାଞ୍ଚନେ
ଥୁଆଇବ ଜୟଚନ୍ଦ୍ର ରାଜସଭାତଳେ;
ଉପେକ୍ଷି ସେ ସ୍ୱୟମ୍ବରେ ପିତୃବଚସ୍କାରୀ
ନୃପକୁଳେ, ଉପେକ୍ଷି ସେ ପିତାର ଭ୍ରୂକୁଟି
ସେହି ପ୍ରତିମାର ଗଳେ ଦେବେ ବରମାଳା
ସଂଯୁକ୍ତା ରାଠୋର-ସରେ ମଞ୍ଜୁସରୋଜିନୀ
ଦିଲ୍ଲୀର ଚୋହାନ-ରବିପ୍ରେମେ ସ୍ନେହାବତୀ; (୬)
ମନସ୍ୱିନୀ ବାଳାର ଏ ବିଷମ ସାହସ
ଦେଖି ହେବେ ସମବେତ ରାଜନ୍ୟେ ଚକିତ,
ଚମକେ ଚମକ ପୁଣି ଭିଆଇବ ତହିଁ
ପୃଥୁଙ୍କ ସଂଗ୍ରାମଶିଙ୍ଗା ଘୋଷି ବଜ୍ରଘୋଷେ
ଅଦୂରେ, ସହସା ସେହି ସ୍ୱୟମ୍ବର ସଭା
କମ୍ପାଇବ ଅଶ୍ୱବାର-ଅଶ୍ୱକ୍ଷୁରଟାପୁ, (୭)
ହେମବର୍ମାବୃତବପୁ ବରାଶ୍ୱବାହନେ (୮)
କୃପାଣଦ୍ୱିତୀୟ ପୃଥୁ ରକ୍ଷିଦଳ ଭେଦି, (୯)
ଚମକେ ଚଳକା ପ୍ରାୟେ ରାଜାଙ୍କ ସମ୍ମୁଖେ
ଉଲ୍କାବେଗେ ଆସି, ବୀର୍ଯ୍ୟଶୁଲ୍କା ରୂପସୀକି (୧୦)
ଅନୁକୂଳ ବଳାତ୍କାରେ ନେଇଯିବେ ହରି
ସଭାତଳୁଁ, ସୁଭଦ୍ରାକୁ ଯେସନେ ଫାଲ୍‌ଗୁନୀ, (୧୧)
କିମ୍ବା ମେଘାକର୍ଷୀ ମହାଚଣ୍ଡପକ୍ଷବେଗେ (୧୨)
ହେମାଙ୍ଗ ପକ୍ଷୀନ୍ଦ୍ର ବଳେ ହରିଲେ ଅମୃତ
ସୁରେନ୍ଦ୍ରରକ୍ଷିତ-ଶଶିମଣ୍ଡଳୁଁ ଯେସନେ;
ପୃଥୁର ଏ ବୀରଯଶଃ କ୍ଷାର ପ୍ରାୟେ କ୍ଷତେ
ଜାଳିଦେବ ରୋଷାନଳ ଜୟଚନ୍ଦ୍ର ହୃଦେ,
ପରିଣାମ ପ୍ରତି ଅନ୍ଧ ବୈରନିର୍ଯ୍ୟାତନେ (୧୩)
ଦୁଷ୍ଟମତି, ଜାମାତାର ନିଧନ ମନାସି
ଶରଣାର୍ଥୀ ହେବ ଯାଇ ଯବନର ପଦେ;

(୧) ପୃଥୁଯଶା – ମହାଯଶସ୍ୱୀ। (୨) ଅପ୍ରତିରଥ – ଯାହାଙ୍କର ଉପଯୁକ୍ତ ପ୍ରତିଯୋଦ୍ଧା ନାହିଁ। ଅଦ୍ୱିତୀୟ। (୩) କାନ୍ୟକୁବ୍ଜ – ଆଧୁନିକ କନୋଜ। ଜୟଚନ୍ଦ୍ର ପୃଥୁଙ୍କ ଶ୍ୱଶୁର ଥିଲେ। ପୃଥୁଙ୍କ ଯଶରେ ଈର୍ଷ୍ୟାନ୍ୱିତ ହୋଇ ତାହାଙ୍କୁ ଦମନ କରିବା ସକାଶେ ସେ ସର୍ବପ୍ରଥମେ ବୈଦେଶିକମାନଙ୍କର ସାହାଯ୍ୟ ଲୋଡ଼ିଥିଲେ। (୪) ବୀରକ୍ରୋଡ଼ରୂପ ସିଂହାସନପ୍ରାର୍ଥିନୀ – ବୀରବନିତା ହେବା ସକାଶେ ଇଚ୍ଛୁକା। (୫) ରାଠୋରରାଜ ଜୟଚନ୍ଦ୍ରଙ୍କ କନ୍ୟା ସଂଯୁକ୍ତାର ସ୍ୱୟମ୍ବର ଭାରତ ଇତିହାସର ଗୋଟିଏ ପ୍ରଧାନ ଘଟନା। ଭାରତବର୍ଷର ସ୍ୱାଧୀନତା ଲୋପ ଏହି ଘଟନାର ଗୌଣଫଳ ଅଟେ। (୬) ଚୋହାନରବି – ପୃଥୁ। ସଂଯୁକ୍ତା ପୃଥୁଙ୍କର ସୁବର୍ଣ୍ଣପ୍ରତିମା ଗଳଦେଶରେ ବରମାଲ୍ୟ ଦେଇଥିବାର କଥା ଇତିହାସରେ ପ୍ରସିଦ୍ଧ। (୭) ଅଶ୍ୱବାର – ଅସ୍ୱାର। (୮) ବରାଶ୍ୱ – ଉତ୍କୃଷ୍ଟ ଘୋଡ଼ା। (୯) କୃପାଣଦ୍ୱିତୀୟ – ଅସି ଯାହାର ଏକମାତ୍ର ସଙ୍ଗୀ। (୧୦) ବୀର୍ଯ୍ୟଶୁଲ୍କା ରୂପସୀ – କେବଳ ବୀର୍ଯ୍ୟରୂପ ଶୁଲ୍କ ପ୍ରଦାନଦ୍ୱାରା ଯେଉଁ ସୁନ୍ଦରୀ ଲଭ୍ୟା। ବୀର ବ୍ୟତୀତ ଅନ୍ୟର ଅଲଭ୍ୟା। (୧୧) ଅର୍ଜ୍ଜୁନ କର୍ତ୍ତୃକ ସୁଭଦ୍ରାହରଣ ପ୍ରସଙ୍ଗ ମହାଭାରତରେ ଅନୁସନ୍ଧେୟ। (୧୨) ପ୍ରଚଣ୍ଡ ପକ୍ଷବେଗଦ୍ୱାରା ମେଘକୁ ଯେ ଆକର୍ଷଣ କରେ। (୧୩) ଶତ୍ରୁଉପରେ ଦାଉ ସାଧିବାକୁ ଯାଇ ପରିଣାମରେ ଯେ ନିଜର ଏବଂ ସ୍ୱଦେଶର ସର୍ବନାଶ ହେବ ସେ ବିଷୟରେ ଅନ୍ଧ।

ବାହ୍ୟେ ତୋରା, ନିରନ୍ତର କୁଟିଳ ଅନ୍ତରେ,
ଛିଦ୍ରାର୍ଥୀ ଯବନପତି ଆର୍ଯ୍ୟନିର୍ଯ୍ୟାତନୁ (୧)
ଆର୍ଯ୍ୟୋଦ୍ଧାରବ୍ରତ ଛଳେ ପଶିବ ଏ ଦେଶେ
ସ୍ୱଦଳେ, ଯେ ଦଳେ ପୁଣି ଆର୍ଯ୍ୟକୁଳାଙ୍ଗାରେ
ମିଶାଇବେ ନିଜ ସେନା ଆର୍ଯ୍ୟଧ୍ୱଂସ ଲାଗି;
ପୃଥୁଙ୍କ ଭଗିନୀପତି ଅଜାମିଳପତି (୨)
ଅମର୍ଷୀ, ଅମିତତେଜା, ପରପୁରଞ୍ଜୟୀ, (୩)
ପୃଥୁଙ୍କ ସହାୟ ହୋଇ ଯୁଝିବେ ସଂଗ୍ରାମେ
ଯବନପତିର ସହ; ପୁଣି ଯବନର
ପଦଲେହୀ ଆର୍ଯ୍ୟଦ୍ରୋହୀ ଜୟଚନ୍ଦ୍ର ସହ;
ସିକ୍ତ କରି କୁରୁକ୍ଷେତ୍ର ଯବନଶୋଣିତେ (୪)
ତଡ଼ିବେ ଯବନସେନା ତ୍ୱରିତ ଭାରତୁଁ
ବେନି ଆର୍ଯ୍ୟବୀରେ ଆର୍ଯ୍ୟଗୌରବର କେତୁ,
ତେଜସ୍ୱୀ ଅଗ୍ରତେ ନତମସ୍ତକ ଯବନ
ପୃଥୁ ପାଶେ ପ୍ରାଣଭିକ୍ଷା କରି କରଯୋଡ଼େ
ପଳାଇବ ନିଜ ଦେଶେ ଦଳବଳ ସହ;
ଦଣ୍ଡଶକ୍ତିସତ୍ତ୍ୱେ କ୍ଷମା ଆର୍ଯ୍ୟଧର୍ମନୀତି,
ତେଣୁ ଦୟାସିନ୍ଧୁ ଆର୍ଯ୍ୟ ଧୁରନ୍ଧର ପୃଥୁ
ଅରିକି ବିପନ୍ନ ଦେଖି ଆଚରିବେ କ୍ଷମା,
ମାତ୍ର ଆତ୍ମଦ୍ରୋହ ବିନା କ୍ଷମା ଅଭାଜନେ! (୫)
ଅଭାଜନେ ଏହି କ୍ଷମା ପୃଥୁ ପ୍ରତି ତେଣୁ
ପରିଣାମେ ହେବ ମହା ଅନର୍ଥର ହେତୁ,
ଭୋଗତୃଷ୍ଣାବଶେ ରତ ପରସ୍ୱ ହରଣେ
ଦୁର୍ମତି ଯବନ ବେଗେ ଭାରତୁଁ ପଳାଇ,
(ଦୃଷ୍ଟପୂର୍ବ ରୂପସୀକି ଲମ୍ପଟ ଯେସନେ)
କି ସ୍ୱପନେ, କି ଜାଗ୍ରତେ, ଧାୟି ଅବିରତେ
ଭାରତର ଏହି ଶସ୍ୟଶ୍ୟାମା ବସୁନ୍ଧରା, (୬)
ପୁଣି ପ୍ରବେଶର ଆଶେ ରହିଥିବ ଚାହିଁ;
ଦୂତ ପେଷି ଜୟଚନ୍ଦ୍ର ଆଣିବ ଆହ୍ୱାନି
ପୁଣି ଏ ଭାରତେ ତାକୁ, ବିନାଶ ମନାସି
ଜାମାତାର, ଆତ୍ମନାଶ ଅଧିବାସରୂପେ, (୭)
ସାମାନ୍ୟ ଶତ୍ରୁର ଏହି ଅଭିଯାନ-ରବେ (୮)
ଭାରତର ନାନାଦେଶୁଁ ଆସିବେ କ୍ଷତ୍ରିୟେ
ଦିଲ୍ଲୀପୁରେ, ଦିଲ୍ଲୀପତି-ନିମନ୍ତ୍ରଣ ପା[illegible],
ସେ ଭବିଷ୍ୟ ଦୃଶ୍ୟ ଏବେ ଦିବ୍ୟାଞ୍ଜନଯୋଗେ
ଦିଶୁଛି ତୁମ୍ଭର ନେତ୍ରେ ବର୍ତ୍ତମାନ ମତି।" (୯)

ଉତ୍ତରିଲେ ସବିସ୍ମୟେ ପାଣ୍ଡୁଚୂଡ଼ାମଣି,
"ଶତଭ୍ରାତ କୁରୁ ପଞ୍ଚପାଣ୍ଡବ ସହିତେ
ଥିଲେହେଁ ବିବାଦେ ରତ, ଦେଶବୈରୀ ସହ
ଯୁଝୁଥିଲୁଁ ଆମ୍ଭେ ହୋଇ ପଞ୍ଚୋତ୍ତରଶତ;
ଏହି ନୀତି ଅନୁସରି ସର୍ବେ ଏକ ମେଳେ
ଗନ୍ଧର୍ବବାହିନୀ ସଙ୍ଗେ ଯୁଝି ବନବାସେ
ଉଦ୍ଧରିଲୁଁ ଅରିହସ୍ତୁଁ ହେଳେ ସୁଯୋଧନେ;
ଅନ୍ତରେ ଜର୍ଜରଭାବ ନିରନ୍ତର ବହି
ସଂହତ ମହିଷଶୃଙ୍ଗ ଶତ୍ରୁଭେଦେ ଯଥା, (୧୦)
ସାମାନ୍ୟ ବିପଦେ (୧୧) ଗୃହବିଗ୍ରହ ବିସ୍ମରି
ଯୁଝନ୍ତି ତେସନ ଆର୍ଯ୍ୟେ ଦେଶବୈରୀ ସହ।
ଆର୍ଯ୍ୟର ଏ ଚିରନୀତି ବିସ୍ମରି କି ସତେ
ବାଲୁକାରଜ୍ଜୁର ଧର୍ମ ଭଜି କର୍ମଦୋଷେ (୧୨)
ଏହିରୂପେ ଆର୍ଯ୍ୟେ, ଆହା, ଯିବେ ରସାତଳେ।"

(୧) ଆର୍ଯ୍ୟମାନଙ୍କଦ୍ୱାରା ଆର୍ଯ୍ୟମାନେ ଉତ୍ପୀଡ଼ିତ ହେଉଅଛନ୍ତି, ସେମାନଙ୍କୁ ସେହି ଉତ୍ପୀଡ଼ନରୁ ଉଦ୍ଧାର କରିବାର ଉଚିତ, ଏହି ଛଳ ଅବଲମ୍ବନ କରି ଯବନରାଜ ସସୈନ୍ୟରେ ଭାରତବର୍ଷକୁ ଆସିବେ। ପରରାଜ୍ୟଲୋଲୁପ ରାଜାଙ୍କର ଏ ଗୋଟିଏ ଚିରପ୍ରସିଦ୍ଧ କୌଶଳ। ଜିଗୀଷାକୁ ଧର୍ମର ବହିରାବରଣରେ ଆବୃତ କରି ସେମାନେ ନିଜର ଦୁରଭିସନ୍ଧି ଚରିତାର୍ଥ କରନ୍ତି। (୨) ଏହି ସମୟରେ ବୀରମାନଙ୍କ ମଧ୍ୟରେ ଦିଲ୍ଲୀପତି ପୃଥୁ ପ୍ରଥମସ୍ଥାନୀୟ ଏବଂ ଆଜମିର-ପତି ଅମର୍ଷୀ ଦ୍ୱିତୀୟସ୍ଥାନୀୟ। ଭାରତବର୍ଷର ସ୍ୱାଧୀନତା ରକ୍ଷା ସକାଶେ ଏହି ଦୁଇ ବୀର ଜୀବନୋତ୍ସର୍ଗ କରି ମର୍ତ୍ତ୍ୟେଅମରତା ଲାଭ କରିଅଛନ୍ତି। ରାଜପୁତନାର ମହାକବି ଚାନ୍ଦଙ୍କ ଲେଖନୀ ପୃଥୁଙ୍କ ପ୍ରତିଷ୍ଠା ଅବିନଶ୍ୱର କରିରଖିଅଛି। (୩) ପରପୁରଞ୍ଜୟୀ– ଶତ୍ରୁନଗର ଜେତା। (୪) ପୃଥୁଙ୍କ ସହିତ ଯବନପତିଙ୍କ ଯୁଦ୍ଧ କୁରୁକ୍ଷେତ୍ରରେ ହୋଇଥିଲା। (୫) ଦୁଷ୍ଟକୁ କ୍ଷମା ନିଜର ସର୍ବନାଶର ନାମାନ୍ତର ମାତ୍ର। (୬) ଶସ୍ୟଶ୍ୟାମା– ଶସ୍ୟ ଯୋଗୁଁ ଶ୍ୟାମମୟୀ, ଶସ୍ୟଶୋଭିତା। (୭) ଯବନପତିଙ୍କୁ ଜୟଚନ୍ଦ୍ରର ଆମନ୍ତ୍ରଣ ତାହାଙ୍କ ନିଜର ସର୍ବନାଶର ଅଧିବାସସ୍ୱରୂପ ହୋଇଥିଲା। ପ୍ରଥମେ ପୃଥୁ ନିହତ ହେଲେ ସତ୍ୟ, ମାତ୍ର ଶେଷକୁ ସେହି ଜୟଚନ୍ଦ୍ର ଯବନପତିଙ୍କ ହସ୍ତରେ ଉତ୍ପୀଡ଼ିତ ଏବଂ ଲାଞ୍ଛିତ ହୋଇ ଗଙ୍ଗାରେ ଝାସ ଦେଇ ଉତ୍କଟ ପାପର ଉତ୍କଟ ପ୍ରାୟଶ୍ଚିତ୍ତ କଲେ। (୮) ସାମାନ୍ୟ ଶତ୍ରୁ– ସମସ୍ତଙ୍କ ଶତ୍ରୁ। ଅଭିଯାନ– ଦେଶଜୟ ସକାଶେ ଯୁଦ୍ଧଯାତ୍ରା। (୯) ବର୍ତ୍ତମାନ ମତି– ପ୍ରତ୍ୟକ୍ଷ ପରି। (୧୦) "ମହିଷ ଶିଂଘ ପଟା, ଯୁଝିବାବେଳକୁ ଗୋଟା"– ଏ ପ୍ରବଚନ ଓଡ଼ିଶାରେ ସର୍ବତ୍ର ପ୍ରଚଳିତ। ସଂହତ– ଅଭିନ୍ନ (୧୧) ସାମାନ୍ୟ ବିପଦ– ସାଧାରଣର ବିପଦ। ଗୃହବିଗ୍ରହ– ଆପଣା ମଧରେ କଳହ। (୧୨) ବାଲୁକାରଜ୍ଜୁର ଧର୍ମ– ସଂହତିର ସମ୍ପୂର୍ଣ୍ଣ ଅଭାବ।

## [ ସପ୍ତମ ସର୍ଗ ]

ଅଗ୍ନି ସଙ୍ଗେ ସନ୍ଧ୍ୟଶୈଳେ ନିକାଞ୍ଚନେ ବସି
କହନ୍ତେ ଏସନ ରାଜା, ଫିଟିଲା ସହସା
ଇନ୍ଦ୍ରଧନୁତୋରା ଦିଲ୍ଲିତୋରଣ ଅଗ୍ରତେ
ବଜ୍ରନାଦେ, ସିଂହନାଦେ କମ୍ପାଇ ମେଦିନୀ
ବାହାରିଲେ ଦଳେ ଦଳେ ସେ ତୋରଣମୁଖୁଁ
ଅସଂଖ୍ୟ ପଦାତି, ସାଦି, ଆଧୋରଣ, (୧) ରଥୀ,
ଭାଗୀରଥୀ ଭର୍ଗଜଟାମଣ୍ଡଳୁଁ ଯେସନେ; (୨)
ଝଳେ ଝକଝକ ବର୍ମେ, ଚର୍ମେ, ବରାୟୁଧେ, (୩)
ଧ୍ୱଜଦଣ୍ଡେ ପ୍ରଭାପୁଞ୍ଜ ଜିଣି ସୌଦାମିନୀ,
ଖେଳେ ନାନାବର୍ଣ୍ଣ ରଙ୍ଗେ କେତନଅଂଶୁକେ,
ମହାରଣ୍ୟପ୍ରବାହିନୀ ମହାନଦୀସ୍ରୋତେ
କେଳିମଦେ ମତ୍ତ କରିକୁଳକରୋଲ୍ଲାସେ (୪)
ଉଡ୍‌ଡୀନ, ରଜତୋଜ୍ଜ୍ୱଳ ଜଳକଣାଜାଳେ (୫)
ମଧ୍ୟାହ୍ନେ ଯେସନେ ଖେଳେ କୋଟି ଇନ୍ଦ୍ରଧନୁ।
ସବା ପଛେ ବିଜେ ବେନି ଅଶ୍ୱବାର ବୀରେ
ଭାସ୍ୱରକୃପାଣପାଣି, ହେମବର୍ମଧାରୀ,
ଅରାତିପ୍ରମାଥୀ ପୃଥୁ ଦିଲ୍ଲୀ-ଅଧିପତି,
ଅମର୍ଷୀ ଅମିତତେଜାଃ ପର-ପୁରଞ୍ଜୟୀ,
ତାଙ୍କ ପଛେ ଅଶ୍ୱାରୂଢ଼ା ସଂଯୁକ୍ତା ରୂପସୀ,
ମୁକ୍ତକେଶୀ, ମୁକ୍ତାହାରା, ମଣିକିରୀଟିନୀ,
ମନୋହରା, ଆହା, ଯେହ୍ନେ ଶାରଦୀୟା ଉଷା
ନୀହାରଭୂଷଣା କାବ୍ୟତାରାକୁନ୍ତଳିନୀ
ପୁନର୍ବସୁପୃଷ୍ଠେ ଉଦେ ପ୍ରାଚୀନଭଃପଟେ, (୬)
ଝଳ ଝଳ ଦିଶେ କାନ୍ତି, ଉନ୍ମୀଳିତ ଯଥା
ତୁଳିକାରେ ଚିତ୍ର, ଅବା ସଜ ସରସିଜ
ସରସୀ ନିର୍ମଳ ନୀରେ ବାଳରବିକରେ,
କି ଅବା ସେ ଅଙ୍ଗଠାଣି, ଗଢ଼ିଛି ବିଧାଣି
ସତେ କି କରାଦ୍ରରଦେ କୁନ୍ଦେ ତା ବସାଇ!
କି ମଧୁରେ ଖେଳେ ମନ୍ଦହାସର ଚାନ୍ଦନୀ
ବିଧୁବଦନୀର ଚାରୁ ବଧୁଲୀଅଧରେ।
କେତେ ରଙ୍ଗେ ଲୀଳାନୃତ୍ୟ କରେ କେତେମତେ
ଶ୍ରୀମୁଖପଙ୍କଜରଙ୍ଗେ ଭ୍ରୂଲତା-ନର୍ତ୍ତକୀ! (୭)
କମଳପାଟଳଆଭା ଖେଳେ କ୍ଷଣେ କ୍ଷଣେ
ଅଯତ୍ନମଣ୍ଡନ, ଗଣ୍ଡଯୁଗେ, ଗଳଦେଶେ, (୮)
ମୋହିନୀର ଶ୍ରୁତିମୂଳେ ଅବତଂସ ବେନି
ସ୍ୱାତି ଚିତ୍ରା ତାରା କି ସେ ମୁଖ-ଚନ୍ଦ୍ରପାଶେ ? (୯)
ନୀଳୋତ୍ପଳନେତ୍ରଯୁଗ୍ମ ଆକର୍ଣ୍ଣ ବିସ୍ତାରି
ମାରଅସ୍ତ୍ରାଗାରରୂପେ ଭ୍ରୂଖିଲାଣତଳେ
ବିରାଜେ, ମନୋଜ ଯହୁଁ ଦ୍ୱିପ୍ରହର ଦିନେ
ଧୃତି-ସମ୍ପତ୍ତିକି ଖଣ୍ଡ ଲୁଠେ ଅକୁଣ୍ଠିତେ,
ଉଚ୍ଚ ଘଞ୍ଚ କୁଚକଳି ଆବୃତ କଞ୍ଚୁକେ
ଟୀରୁ କ୍ଷୀଣକଟୀ ବନ୍ଧ ରତ୍ନସାରସନେ,
ଉଚ୍ଚ କ୍ଷୀଣ ଏକ ପୁଣି ଆରେକ ସକାଶେ (୧୦)
କାନ୍ତିକୁଳଦେବୀ ପ୍ରାୟେ ବିଜେ ସୀମନ୍ତିନୀ (୧୧)
ସେନାକୁଳ ସେ ପ୍ରାନ୍ତରେ, ଇନ୍ଦୁକଳା ଯଥା (୧୨)
ବିଜେ, ଆହା, ଉତ୍ତରଳସିନ୍ଧୁବୀଚିଦଳେ, (୧୩)
ପ୍ରତି ହୃଦେ ପ୍ରତିଫଳି, ସେ ଶୋଭାପିତୁଳି
ଶୋଭିଲା ସେ ବୀଚିବକ୍ଷେ ଯଥା ବିଧୁଚ୍ଛବି,
ରୂପେ ଦେବସେନାପତି (୧୪) ଦେବସେନା ମତି
ପୃଥୁ, ପୃଥୁପ୍ରେୟସୀଙ୍କି ସେ ତୋରଣମୁଖେ
ଦୂରୁଁ ଦେଖି, ନିଜ ନିଜ ବାହିନୀ ସହିତେ
ନାନାଦେଶୀ ସେନାପତି ବନ୍ଦିଲେ ସାଦରେ
ବୀର ବୀରାଙ୍ଗନା ପଦ ସର୍ବେ ଯଥାବିଧି,
ସମସ୍ତଙ୍କୁ ଦିଲ୍ଲିପତି ସସ୍ମିତେ ସମ୍ଭାଷି
ଆରମ୍ଭିଲେ ମହୋତ୍ସାହେ ରଣର ମନ୍ତ୍ରଣା
ରଣପ୍ରିୟ, ମାତ୍ର ସେହି ଉତ୍ସାହର ବିଭା
ବିମ୍ବିତ ନ ଦେଖି ସେନାପତିଙ୍କ ବଦନେ,
କ୍ଷୁଣ୍ଣ ହେଲେ ବୀରମଣି ବିସ୍ମୟେ ବିଷାଦେ;

(୧) ଆଧୋରଣ– ଗଜାରୋହୀ। (୨) ଭର୍ଗ– ମହାଦେବ (୩) ବରାୟୁଧେ– ଉତ୍କୃଷ୍ଟ ଅସ୍ତ୍ରରେ। (୪) କେଳିମତ୍ତ– ବନ୍ୟହସ୍ତୀମାନଙ୍କର ଶୁଣ୍ଢର ଫୁତ୍କାରରେ। (୫) ରୌପ୍ୟବତ୍ ଶୁଭ୍ର ଜଳଶୀକରର ଆସ୍ତରଣରେ। (୬) ଶରତ୍‌କାଳର ରାତ୍ରିଶେଷରେ ପୂର୍ବଦିଗରେ ଅତ୍ୟୁଜ୍ଜ୍ୱଳ ଯୁଗ୍ମତାରା ପୁନର୍ବସୁର ଉଦୟ ହୁଏ। ଏହା ତଳେ ପ୍ରଭାତୀ ତାରା ଏବଂ ପ୍ରଭାତୀ ତାରା ତଳେ ଉଷାର ପାଟଳାଭା ଦୃଷ୍ଟ ହୁଏ। (୭) ମୁଖ ରଙ୍ଗଭୂମି, ଭ୍ରୂଲତା ସେହି ରଙ୍ଗଭୂମିର ନର୍ତ୍ତକୀ। (୮) ପାଟଳ ଆଭା, ଗଣ୍ଡ ଏବଂ ଗଳଦେଶର ଅଯତ୍ନସିଦ୍ଧ ଅଳଙ୍କାର। (୯) ସ୍ୱାତି ଚିତ୍ରା ପରସ୍ପର ନିକଟବର୍ତ୍ତୀ ତାରା। (୧୦) ସ୍ତନର ଉଚ୍ଚତାବଶତଃ କଟୀ କୃଶ ଦିଶୁଅଛି, ପୁଣି କଟୀର କୃଶତାବଶତଃ ସ୍ତନ ଉଚ୍ଚ ଦିଶୁଅଛି। (୧୧) କାନ୍ତିକୁଳଦେବୀ– ଶୋଭାର ଅଧିଷ୍ଠାତ୍ରୀ ଦେବତା। (୧୨) ସେନାକୁଳ– ସେନାପରିପୂର୍ଣ୍ଣ। (୧୩) ସମୁଦ୍ରଲହରୀ ସହିତ ସୈନ୍ୟମାନଙ୍କର ଏବଂ ଇନ୍ଦୁକଳା ସହିତ ସଂଯୁକ୍ତାର ଉପମା। (୧୪) ଦେବସେନାପତି– କାର୍ତ୍ତିକେୟ।

ବୀର୍ଯ୍ୟପୁଷ୍ଟ ଆର୍ଯ୍ୟପଣ ପିଙ୍ଗି ପୃଷ୍ଠ ଦେଶେ
ଆର୍ଯ୍ୟବୀରେ, ଭୀରୁମତି କଳିଉତ୍ପୀଡନେ,
ଭୀରୁଚିତ (୧) ବର୍ଣ୍ଣେ ଚିତ୍ରି ରଣବିଭୀଷିକା
ସର୍ବେ କଲେ ଅଳି ଦିଲ୍ଲିପତିଙ୍କ ଛାମୁରେ
ପରିହାର ଯାଚିବାକୁ ପରିପନ୍ଥୀପଦେ (୨)
ମାନବ୍ୟୟେ, ଧିକ୍କାରିତ ପ୍ରାଣର ଭିକାରୀ;
ପ୍ରାଣରଙ୍କ, ଭୟାତୁର, ଅଦୂରଦରଶୀ,
ହୀନଚେତାଙ୍କର ଏହି ହୀନମତି ଦେଖି,
ଏ ହୀନ ମନ୍ତ୍ରଣା ଶୁଣି, ରୋଷେ ଆର୍ଯ୍ୟମଣି
ଅମର୍ଷୀ ସମ୍ବୋଧି ତାଙ୍କୁ, ସମ୍ବୋଧି ବାହିନୀ,
କହିଲେ ଏସନ ବୀର ବୀରୋଚିତ ଗିରେ—
"ଏହି କି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ତୁମ୍ଭେଟିକି ଆର୍ଯ୍ୟନାମ ଦାୟାଦ ଜଗତେ ? (୩)
ବିନା ଯୁଦ୍ଧେ ନଦେବାର ସୂଚ୍ୟଗ୍ରମେଦିନୀ (୪)
ପଣ ଯେଉଁ ଆର୍ଯ୍ୟଙ୍କର, ତାଙ୍କରି ଶୋଣିତ
ବହୁଛି କି, ଆହେ ଯୋଧେ, ତୁମ୍ଭ ଧମନୀରେ ?
ଧିକ ! ଧିକ ! ଶତଧିକ ! ଧିକ ଏ ମନ୍ତ୍ରଣା !
ଏ ହୀନ ମନ୍ତ୍ରଣା, ଭୀରୁ-ପାମର-ଉଚିତ,
ଉଚ୍ଚାରି ଯା କଲ ଶୂରେ ଅପବିତ୍ର ଆଜ
ନିଜ ମୁଖ, ଶ୍ରୋତା କର୍ଣ୍ଣ, ଆର୍ଯ୍ୟବଂଶଧରେ !
ଅବା ଅଭାଜନ ତୁମ୍ଭେ ଏ ନାମ ଧାରଣେ ।
ଭୀରୁତା ଯେ, ସେହି ସିନା ବୀରର ମରଣ (୫)
ଭୀରୁଭାବ ବହି ତୁମ୍ଭେ ମୃତ ଏ ଜଗତେ,
ଲୋଡ଼ଇ କି କେହି କେବେ ମୃତର ମନ୍ତ୍ରଣା ?
ପଳାଇ ଏ ରଣସ୍ଥଳୁ ରହିବ କି ଜିଇ
ଚିରଦିନ ଭବେ ? ଯେବେ ନାହିଁ ସେ ଦୁରାଶା,
ନିଜ ମୁଖ, ପିତୃନାମ, ବୃଥା କଳଙ୍କିତ
କରିବ ଏରୂପେ କିପାଁ ପ୍ରାଣରଙ୍କ ମୂଢ଼େ ?
ହା ଧିକ ! ଏ ରଙ୍କପ୍ରାଣ ଆତଙ୍କେ ବଞ୍ଚାଇ,
ଆଶୁମୃତ୍ୟୁପ୍ରଦ ରଣୁଁ, ଅରପି ଯବନେ
ନିଜର ଏ ସ୍ୱର୍ଣ୍ଣପ୍ରସୂ ଭୂମି ସନାତନୀ, (୬)
ଯାପିବ କି ଦିନ ଚିରଅନଶନବ୍ରତେ ?
କଳ୍ପଲତାମୂଳେ ବସି ଚିରଉପବାସୀ !
ତୃଷାର୍ତ୍ତ ନିରତେ ରହି ସୁରଧୁନୀତୀରେ !
ଦିଗ୍‌ବିଜୟୀ-ଆର୍ଯ୍ୟସିଂହ-ଔରସେ ଜନମି
ହେଲ କି ଅକ୍ଷମ, ଆହା, ନିଜସ୍ୱ ରକ୍ଷଣେ ?

ହିମଉର୍ଦ୍ଧସ୍ପର୍ଶ-ଭୀମ-ହିମାଦ୍ରି-ପ୍ରାଚୀରେ
ଦୁର୍ଗମ ଭାରତ ଦୁର୍ଗ କାପୁରୁଷ ହାତେ,
କେ କହିବ ମୋତେ, କିପାଁ ଅର୍ପିଲେ ବିଧାତା ?
ହା ଦୈବ ! ଜମ୍ବୁକ ପଶି ହର୍ଯ୍ୟକ୍ଷଗୁହାରେ,
ଗୋଇଠା ପ୍ରହାରି ନେବ ତା ମୁଖୁଁ ଓଟାରି
ଗ୍ରାସ ତାର, ହର୍ଯ୍ୟକ୍ଷ ତା ସହିବ ମଉନେ !
ଏ ଲାଞ୍ଛନା ଥିଲାଟିକି ଆର୍ଯ୍ୟର ଲଲାଟେ !
ଆତଙ୍କେ ଯେ ହର୍ଯ୍ୟକ୍ଷର ଭୈରବଗର୍ଜ୍ଜ
ପଶିଥିଲା ଏ ଜମ୍ବୁକ ନିଜ ବିଳେ ଯାଇ, (୭)
ସେହି ଦିଲ୍ଲିପତି ପୃଥୁ ତୁମ୍ଭର ଅଗ୍ରଣୀ
ଏ ସଂଗ୍ରାମେ, ସେହି ଶତ୍ରୁଶୋଣିତ ପିପାସୁ
କୃପାଣ ତାଙ୍କର ପୁଣି ନିଷୋଷିତ ଆଜ,
ସେହି ଧ୍ୱଜପଟ ପୁଣି ଉଡ଼ଇ ସମୀରେ ।
ଡରିଲ କି ଯୁଝିବାକୁ ଯବନ ସଙ୍ଗତେ
ଯବନକାନନ-ମହାଦାବାନଳରୂପୀ
ଅରାତିପ୍ରମାଥୀ ପୃଥୁ ବାହୁଚ୍ଛାୟାତଳେ ?
ଏଡ଼େ ମାୟା ପ୍ରାଣେ ଯେବେ, ତେଜି ରଣଭୂମି
ସଂଖାଳିସ୍ୱରୂପେ ତୁମ୍ଭ ରଙ୍କପ୍ରାଣ ନେଇ,
ବାନ୍ଧି ରଖ ଗୃହେ ଯାଇ ନାରୀବସ୍ତ୍ରାଞ୍ଚଳେ,
ହେ ନାରୀଏ, ଘୁଣାକ୍ଷରେ ନରଦେହଧାରୀ ! (୮)
ବାହୁଡ଼ ସ୍ୱଗୃହେ ବେଗେ କଳଙ୍କିତମୁଖେ,
ଲାଙ୍ଗୁଳ ସଙ୍କୋଚି ଶ୍ୱାନ ପଳାଏ ଯେସନେ,
ଅଇଁଠାଗୋଇଠାଭୋଗୀ ସେହି ଶ୍ୱାନ ପରି
ପ୍ରସାଦାର୍ଥୀ ହୁଅ ଯାଇ ଯବନଦୁଆରେ !
ବାହୁଡ଼ ସ୍ୱଗୃହେ ବେଗେ, ଖଡ୍‌ଗ, ଶୂଳ ଆଦି
ଭୂଷଣ ନ ହୋଇ ଯାହା ମହାଭାର ଏବେ (୯)
ତୁମ୍ଭ ଭୀରୁ ହାତେ, କରି ଫାଳେ ପରିଣତ,
ଯବନର ଭୋଗଲାଗି ଚଷ ନିରୁଦ୍‌ବେଗେ
ଯବନର ଛତ୍ରତଳେ ପୈତୃକ ଅବନୀ ।
ପିଙ୍ଗିଦିଅ ଏହି ଢାଲ, କି ଲୋଡ଼ା ଏ ଢାଲେ ?
ତୁମ୍ଭ ଯୋଗ୍ୟ ଢାଲ ସିନା ଚିତ୍‌କାର, ଲୋତକ !
ସେହି ଢାଲେ ଆତ୍ମରକ୍ଷା ଆଚରିବ ଏବେ ।
ବିଳାସର କ୍ଷେତ୍ର ନୁହେଁ ସଂଗ୍ରାମଅଗଣା,
ତପସ୍ୟାର କ୍ଷେତ୍ର ଏହୁ, ତପସ୍ୱିକାଂକ୍ଷିତ,
ବିପଦର ଯଜ୍ଞବେଦି, ଜୀବନ ଆହୁତି
ଦିଅନ୍ତି ଆହ୍ଲାଦେ ଯହିଁ ଯଶୋଲିପ୍ସୁ ବୀରେ;

(୧) ଭୀରୁଚିତ – ଭୀରୁଜନୋଚିତ । (୨) ପରିପନ୍ଥୀ – ଶତ୍ରୁ । (୩) ଆର୍ଯ୍ୟପଦର ଉତ୍ତରାଧିକାରୀ (୪) ଦୁର୍ଯ୍ୟୋଧନର ପ୍ରସିଦ୍ଧ ପଣ । (୫) ଭୀରୁତା ହିଁ ବୀରମାନଙ୍କର ମୃତ୍ୟୁ । (୬) ସନାତନୀ – ଚିରକାଳର । (୭) ପ୍ରଥମଥର ପୃଥୁ ଯବନରାଜଙ୍କୁ ଭାରତବର୍ଷରୁ ତଡ଼ିଦେଇଥିଲେ । (୮) ହେ ନାରୀଏ – ଅବଜ୍ଞାବ୍ୟଞ୍ଜକ ସମ୍ବୋଧନ । ଘୁଣାକ୍ଷରରେ ନରଦେହଧାରୀ, ମାତ୍ର ବସ୍ତୁତଃ ନାରୀ । (୯) ଅସ୍ତ୍ର ବୀରମାନଙ୍କର ଭୂଷଣ, ମାତ୍ର କାପୁରୁଷଙ୍କ ପକ୍ଷରେ ଭାର ସ୍ୱରୂପ

ତୁମ୍ଭ ପରି ଶ୍ୟାମିକାର (୧) ରେଖା ଏ ନିକଷେ
ପଡ଼ିବାର ଲେଖି ନାହିଁ ବିଧି କେଉଁ କାଳେ।
କି ସାହସେ କଲ ତୁମ୍ଭେ ଅପବିତ୍ର ଆସି
ଏ ତୀର୍ଥ, ଆର୍ଯ୍ୟର ଏହି ଧର୍ମଯୁଦ୍ଧସ୍ଥଳୀ ? (୨)
ଆର୍ଯ୍ୟ ନାମେ ଏ କାଳିମା ବୋଳିଲ କିପାଇଁ ?
ଆସ ହେ ସଂଗ୍ରାମସିଂହ ଅଜାମିଳ ବୀରେ !
ଏ ମହାକଳଙ୍କ ଯାଇ ପ୍ରକ୍ଷାଳିବା ଖରେ
ରଣକ୍ଷେତ୍ରେ, ରିପୁଲୋହେ ଅବା ନିଜ ଲୋହେ,
ବଞ୍ଚିତ ତୁମ୍ଭର ଶୂଳ ରିପୁରକ୍ତ ସ୍ୱାଦୁଁ
ବହୁଦିନ, ଦିଅ ତାକୁ ଶୋଣିତ-ପାରଣା,
ଶତ୍ରୁ ଦେହେ ତାଙ୍କ ମୁନ ପୁଣି ନିଅ ଶାଣି।
ଆସ ବେଗେ, ରଣସ୍ଥଳୁଁ ଝିଙ୍କି ମହୋଲ୍ଲାସେ
ଆଣିବା ବିଜୟ-ଲକ୍ଷ୍ମୀ, ନ ପାରିଲେ ତାହା,
ବୀରଶେଯେ ଆଶ୍ରିବା ତ ନିଜ ହାତ କଥା।
ଆର୍ଯ୍ୟର ଦୁର୍ଭାଗ୍ୟ ଫଳେ ଆସିବ ଏ ଦେଶେ
ଯେବେ କି ଯବନ, ଆସୁ ଆମ୍ଭ ଶବ ମାଡ଼ି,
ଫଳୁ ଯା ଫଳିବ କର୍ମେ, ରହ ଧର୍ମ ଧରି;
'ମନ୍ତ୍ରର ସାଧନ ଅବା ଶରୀର ପାତନ'
ଆର୍ଯ୍ୟର ଯା ସାର ଧର୍ମ, ପାଳ ଆର୍ଯ୍ୟବୀରେ,
ଆର୍ଯ୍ୟକୁଳଧ୍ୱଜ ପୃଥୁରାଜଙ୍କ ଗହଣେ।
ସୂର୍ଯ୍ୟତେଜ ସ୍ପର୍ଶେ ଯେହ୍ନେ ସୂର୍ଯ୍ୟକାନ୍ତମଣି
ଉଗାରେ ଅନଳକଣା, ଅମର୍ଷିର ବାଣୀ
ଢାଳି ଦେଲା ତେଜ-ବହ୍ନି ନିସ୍ତେଜ ହୃଦୟେ
ଯୋଧଙ୍କର, ସର୍ବେ ଦମ୍ଭେ ଗର୍ଜିଲେ ହୁଙ୍କାରେ,
'ଜୟ ପୃଥୁରାଜ' ରବେ କମ୍ପିଲା ମେଦିନୀ।
ହ୍ରେଷିଲେ ତୁରଙ୍ଗେ, ଗଜେ ଗର୍ଜିଲେ ଭୈରବେ,
ଉଠିଲା ଅମ୍ବର ଜଳି ଅସ୍ତ୍ରର ଝମକେ,
ଦାବାନଳେ ବନ ଯଥା, ବୀରବାଦ୍ୟରୋଳେ
ଚକ୍ରବାଳେ ପ୍ରତିଧ୍ୱନି ଜାଗିଲେ ଚମକି,
ବ୍ୟଗ୍ର ହେଲେ ଅଗ୍ରସର ହେବାକୁ ସଂଗ୍ରାମେ
ଉଦାୟୁଧ (୩) ଯୋଧବୃନ୍ଦ, ସର୍ବେ ଏକମେଳେ
ବରିଲେ ଅମର୍ଷିବୀରେ ସେନାପତିପଦେ;
ମହାଦରେ ପୃଥୁ ତହୁଁ ବାନ୍ଧିଦେଲେ ଶାଢ଼ୀ
ତାଙ୍କ ଶିରୋଦେଶେ; ଅଶ୍ୱପୃଷ୍ଠୁ ଅବତରି,
ବନ୍ଦାଣରତନଥାଳୀ ପଦ୍ମହସ୍ତେ ଘେନି,
ସମ୍ପାଦିଲେ ଦିଲ୍ଲିରାଣୀ ନୀରାଜନାବିଧି, (୪)
ଦୈତ୍ୟଯୁଦ୍ଧେ ଶଚୀ ଯଥା ଦେବସେନାନାଥେ (୫)
ପୃଥୁଙ୍କୁ ମେଲାଣି ଦେଇ ବାହୁଡ଼ିଲେ ରାଣୀ
ଅଶ୍ରୁପୂର୍ଣ୍ଣମୁଖେ ପୂର୍ଣ୍ଣଚନ୍ଦ୍ରାକରମୁଖୀ।
''ଜୟ ପୃଥୁ'' ନାଦେ ଏଣେ କମ୍ପାଇ ମେଦିନୀ
ରଣକ୍ଷେତ୍ରଯାତ୍ରୀ ହୋଇ ଚାଲିଲା ବାହିନୀ
ଦଳେ ଦଳେ ରଣୋନ୍ମାଦେ, ରଣବାଦ୍ୟତାଳେ ;
ତାରକାଭୂଷିତ-ଚଳବ୍ୟୋମତୁଲ୍ୟାବଳି; (୬)
ପ୍ରାସାଦେ, ପ୍ରାଚୀରେ, ପୁଣି ଗବାକ୍ଷେ, କୁଟ୍ଟିମେ
ନିରେଖିଲେ ରୁଣ୍ଡ ହୋଇ ଦିଲ୍ଲୀପୁରନାରୀ
ଆର୍ଯ୍ୟର ସେ ରଣଯାତ୍ରା, କରପଦ୍ମ ଯୋଡ଼ି
ବିଜୟବାହୁଡ଼ା ଯାଚି ରଣଲକ୍ଷ୍ମୀପଦେ,
ବରଷିଲେ ଲାଜାଞ୍ଜଳି କାହିଁ ବରାଙ୍ଗନା।
କାହିଁ ରଣଯାତ୍ରୀ ପୁତ୍ରେ ବିଧୁରା ଜନନୀ
ଦୂରୁଁ ଦେଖି, ମୁହୁର୍ମୁହୁ ମୁଣ୍ଡେ କର ହାଣି
କାନ୍ଦିଲା କରୁଣେ ଦୋଷି ଦାରୁଣ ବିଧିକି।
ଅତୃପ୍ତନୟନେ କାହିଁ ଉଭା ପ୍ରଣୟିନୀ
ବ୍ୟାବର୍ତ୍ତିତପ୍ରିୟମୁଖ ଦେଖିବାର ଆଶେ
ଥରେହେଲେ, ଆମରଣ ସ୍ମୃତିର ସଞ୍ଚାରି। (୭)
କାହିଁ ପ୍ରେମଶୀଳା ନବବିବାହିତା ବାଳା
ପକାଏ ରମଣପଦେ, ବେଢ଼ିରୂପେ କି ସେ,
ନୀଳୋତ୍ପଳଦଳଦାମରୁଚି ବେନି ଆଖି।
ଅଙ୍ଗୁଳି ନିର୍ଦ୍ଦେଶେ ବାଷ୍ପଗଦଗଦଭାଷେ,
କ୍ରୋଡ଼ସ୍ଥ ଶିଶୁକୁ କାହିଁ ଦିଅଇ ଚିହ୍ନାଇ
ରଣଯାତ୍ରୀ ପିତୃ ତାର, ସେ ଶିଶୁର ମାତା,
ଲୋଚନେ ଲୋଚନଜଳ ସ୍ତମ୍ଭି ସୁଲୋଚନା। (୮)
ଶୋକୋଲ୍ଲାସେ କାହିଁ ପୁଣି ଦେଖଇ କୁମାରୀ
ମାନସପତିର ଚାରୁମୂରତି ସହିତେ (୯)
ସୁଖର ଆକାଶହର୍ମ୍ୟ, ଆଶାବିରଚିତ, (୧୦)

(୧) ଶ୍ୟାମିକା– ଭଳସୁନା। ରଣକ୍ଷେତ୍ରରୂପ ନିକଷରେ କାପୁରୁଷରୂପୀ କୃତ୍ରିମସୁବର୍ଣ୍ଣର ରେଖା ପଡ଼ଇ ନାହିଁ। (୨) ଧର୍ମଯୁଦ୍ଧ– ସ୍ୱଦେଶରକ୍ଷାର୍ଥ ଯୁଦ୍ଧ। ପରରାଷ୍ଟ୍ର ଗ୍ରାସ ସକାଶେ ଯୁଦ୍ଧ ପାପଯୁଦ୍ଧ। (୩) ଉଦାୟୁଧ– ଯେମାନେ ଅସ୍ତ୍ର ଉତ୍ତୋଳନ କରିଅଛନ୍ତି। (୪) ଯୁଦ୍ଧଯାତ୍ରା କାଳରେ ସେନାପତିମାନଙ୍କର ଆଳତି ହେବାର ବିଧି ଥିଲା। (୫) ଦେବସେନାନାଥ– କାର୍ତ୍ତିକେୟ। (୬) ସଶସ୍ତ୍ର ସୈନ୍ୟମାନଙ୍କ ଗତି ଦେଖି ବୋଧ ହେଲା ଯେମନ୍ତ କି ନକ୍ଷତ୍ରମଣ୍ଡିତ ନଭୋମଣ୍ଡଳ ଚାଲି ଯାଉଅଛି। (୭) ଯୁଦ୍ଧଯାତ୍ରୀ ପ୍ରଣୟୀ ମୁଖ ଫେରାଇ ଥରେ ଅନାଇଲେ ସେହି ଚାହାଣି ମରଣ ପର୍ଯ୍ୟନ୍ତ ସ୍ମୃତିର ସମ୍ପତ୍ତି ହୋଇ ରହିବ, ଏହି ଆଶାରେ ପ୍ରଣୟିନୀ ଉତ୍ସୁକନେତ୍ରରେ ଉଭା ହୋଇ ରହିଅଛି। (୮) ଲୋତକବିସର୍ଜନ ଅଶୁଭସୂଚକ, ଏହି ହେତୁରୁ ସେଥିର ସ୍ତମ୍ଭନ। (୯) ମାନସପତି– ମନେ ମନେ ଯାହାକୁ ପତିତ୍ୱରେ ବରଣ କରିଅଛି। (୧୦) ଆଶାବିରଚିତ– ଅଶାଗଠିତ ସୁଖର ପ୍ରାସାଦ।

ମିଶି ଯାଇଅଛି ତାର ଆଶା-ଚକ୍ରବାଳେ। (୧)
ଭାଇକି ଅନାଇଁ କାହିଁ କାନ୍ଦଇ ଭଉଣୀ,
ପିତାକୁ ଅନାଇ କାହିଁ କାନ୍ଦଇ ଦୁହିତା
ଶ୍ୱାସ ସଙ୍ଗେ ତେଜି ପୁଣି ଦର୍ଶନର ଆଶା।
ଦିଲ୍ଲିପୁରୀ ଶିରୋଦେଶ ପୂରିଲା ଏରୂପେ
ଅବଳାବିଳାପେ, ବଳି, ବ୍ରତର ମନାସେ।

ଘନସନ୍ନିବେଶେ, ସେହ୍ନାସନ୍ନଦ୍ଧଶରୀରେ
ଅଗ୍ରେ ଉଭା ଯବନର ବ୍ୟୂହିତ ବାହିନୀ, (୨)
ମହାଦୃପ୍ତ, ଉଲ୍ଲସିତ ସଂଯତସାହସେ, (୩)
ଦୃଢ଼ପ୍ରତିଜ୍ଞାର ମୁଦ୍ରା ମୁଦ୍ରିତ ଲଲାଟେ,
ଅସି, ଶୂଳ, ଭଲ୍ଲ ଆଦି ଝଳେ ଝକଝକେ
ସୌରକରେ, ଠିକରାଇ ଆଖି ଖର ତେଜେ,
ଭୀମଉପପ୍ଳବଶଂସୀ ଧୂମକେତୁ ପ୍ରାୟେ,
ବାଳେନ୍ଦୁଲାଞ୍ଛିତଧ୍ୱଜ ଉଡ଼ଇ ସମୀରେ (୪)
ଊର୍ଦ୍ଧ୍ୱଦେଶେ; ଧିକ୍, ଧିକ୍, ସେ ଧ୍ୱଜ ସହିତେ
ଦେଶଦ୍ରୋହ କଳଙ୍କର ବାନାରୂପେ ପୁଣି
ତୋଳିଅଛି ନିଜ ଧ୍ୱଜ ରାଠୋରପାଂଶୁଳ
ଜୟଚନ୍ଦ୍ର, ଯବନର ପ୍ରସାଦଭିଖାରୀ; (୫)
ନିଜପାଇଁ, ମାତୃଭୂମି ଆର୍ଯ୍ୟାବର୍ତ୍ତ ପାଇଁ
ବ୍ରତ ଯାର ଅଧୀନତା-ଶାଙ୍କୁଳି-ସର୍ଜନା,
ସେ ପାପୀ ସହିତେ ବଦ୍ଧ ପାପସନ୍ଧି-ପାଶେ,
ଆର୍ଯ୍ୟନାଶେ ଯବନର ଆର୍ଯ୍ୟସହକାରୀ,
କାଶ୍ମୀର, ପୁଷ୍କଳାବତୀ, ତକ୍ଷଶିଳାପୁରୀ, (୬)
ଶାଳାତୁର, ହଂସପୁର ଆଦି କରି ଯେତେ (୭)
ମର୍ତ୍ତ୍ୟସ୍ୱର୍ଗ-ଭାରତର ତୋରଣକୁଞ୍ଚିକା –
ପଞ୍ଚନଦ ଜନପଦ ରାଜନ୍ୟମଣ୍ଡଳୀ, (୮)
ମିଶିଛନ୍ତି ତହିଁ ଆସି ନିଜ ଦଳବଳେ,
ସଦ୍ୟଃଲାଭଲୋଭୀ, ମାତ୍ର ଅନ୍ଧ ପରିଣାମେ।
ତତ୍ପରକ୍ଷ ହୋଇ ତହୁଁ ବେନି ଅନୀକିନୀ
ଛାଡ଼ିଲେ ଭୈରବ ରଡ଼ି, ଯେହ୍ନେ ଘଡ଼ଘଡ଼ି
ଯୁଗାନ୍ତର, ନଭଗର୍ଭ ବିଦାରି ସେ ଧ୍ୱାନେ;
ଭ୍ରୁକୁଟିକୁଟିଳ ମୁଖେ, ଆରକ୍ତଲୋଚନେ
ନିରେଖିଲେ ବେନି ସେନା ବେନିଙ୍କି ସ୍ତମ୍ଭିତେ
ଲବେ ମାତ୍ର, ବାତ୍ୟା ଆଗେ ବାତସ୍ତମ୍ଭ ଯଥା; (୯)
ବିଷମ ସଂଶୟ ଦମ୍ଭ-ଆବରଣ ତଳେ
ଆନ୍ଦୋଳିଲା ମୁହୁର୍ମୁହୁ ବୀରବୃନ୍ଦମନଃ,
ରକ୍ତ ହୋଇଗଲା ଜଳ, ପାଣ୍ଡୁ ଗଣ୍ଡସ୍ଥଳୀ,
ଥରିଲା ପାଦର ଭଣ୍ଡା ଥରଥର ଥରେ
ଏକ ଆରକରେ ଭେଟି, ସାହସ ବିସ୍ମରି
ଭଜିଲା ଆତଙ୍କ ମହାସାହସୀର ହିଆ
ବିକଟାଳ କାଳଆସ୍ୟ-କୁହର ଅଗ୍ରତେ। (୧୦)
ସଂଗ୍ରାମସଙ୍କେତଶଂସୀ ନାଦିଲା ଭୈରବେ
ଏ କାଳେ ସଂଗ୍ରାମଶିଙ୍ଗା, ଡକ୍‌କା, ତୂରୀ ଭେରୀ,
ଜଗଝମ୍ପ, ଝରଝରା, ଦାମାମା, ଦୁନ୍ଦୁଭି,
ପ୍ରତିଧ୍ୱନି ଉପୁଜାଇ କକୁଭକୁହରେ
ପୁନଃ ପୁନଃ, ବିଶ୍ୱଧ୍ୱଂସୀ ରୁଦ୍ରଶିଙ୍ଗା ପରି, (୧୧)
ଆମୂଳ ବସୁଧା-ବନ୍ଧ କମ୍ପାଇ ସେ ତାନେ,
ସେ ଆରବେ ମହାଦମ୍ଭେ ମିଶିଲେ ଆହବେ
ଆର୍ଯ୍ୟ ଯବନର ସେନା ଗର୍ଜି ହୁଁ ହୁଙ୍କାରେ
ପ୍ରଳୟଜୀମୂତ ଯେହ୍ନେ, ପୂର୍ଣ୍ଣ ଇରମ୍ମଦେ। (୧୨)
ପ୍ରଭଞ୍ଜନପୃଷ୍ଠେ ନଭେ ବେଗେ ଉଡ଼ିଆସି
ବେନିଆଡ଼ୁ, ବେନିପରେ ପଡ଼ନ୍ତି ବେନିଏ,
ଆତଙ୍କେ କମ୍ପିଲା ବିଶ୍ୱ ସେ ଘୋର ନିର୍ଘୋଷେ,
ଦୈତ୍ୟେଶ୍ୱର ବୃତ୍ରଶିରେ ତପଃସାରରୂପି – (୧୩)
ଦମ୍ଭୋଳି କ୍ଷେପିଲେ ଅବା ଦମ୍ଭୋଳିନିକ୍ଷେପୀ (୧୪)
କି ପୁରେ, କି ଜନପଦେ ଭୂକମ୍ପନେ ଯଥା
ମଡ଼ ମଡ଼ ମଡ଼ ହୋଇ କମ୍ପିଲା ସଘନେ
ଭବନ, ପାଟେରୀ, ପାଢ଼ା, ଖରତରସ୍ରୋତେ
ଚାଳିଲା ଯମୁନାପାଣି ସୁରଧୁନୀମୁଖେ,
ପ୍ରଜାପତିକ୍ରତୁଧ୍ୱଂସେ ବୀରଭଦ୍ରରୂପୀ
ବିଶ୍ୱନାଶୀ ରୌଦ୍ରଜ୍ୱରପ୍ରଶ୍ୱାସ ପରାୟେ (୧୫)

(୧) ଆଶାଚକ୍ରବାଳେ – ଦିକ୍‌ଚକ୍ରରେ। (୨) ବ୍ୟୂହିତ – ବ୍ୟୂହରେ ସଜ୍ଜିତ। (୩) ସଂଯତସାହସ – ଯେଉଁ ସାହସ ଉଚ୍ଛୃଙ୍ଖଳ ନୁହେଁ। (୪) ଯବନଧ୍ୱଜ – ବାଳେନ୍ଦୁ-ଲାଞ୍ଛିତ। (୫) କାନ୍ୟକୁବ୍‌ଜପତି ରାଠୋରବଂଶୀୟ ଜୟଚନ୍ଦ୍ର ସଂଯୁକ୍ତାଙ୍କର ପିତା ଏବଂ ପୃଥ୍ୱୀଙ୍କ ଶ୍ୱଶୁର। (୬) ରାମାନୁଜ ଭରତଙ୍କ ପୁତ୍ର ତକ୍ଷ ଓ ପୁଷ୍କଳ କର୍ତ୍ତୃକ ତକ୍ଷଶିଳା ଏବଂ ପୁଷ୍କଳାବତୀ ନଗରୀ ସ୍ଥାପିତ ହୋଇଥିଲା। ଏମାନ ପଞ୍ଜାବର ଅନ୍ତର୍ଗତ। (୭) ଶାଳାତୁର – ବର୍ତ୍ତମାନ ଲାହୋର। ହଂସପୁର – ଆଧୁନିକ ମୁଲତାନ୍। (୮) ପଞ୍ଚନଦ ଜନପଦ ଅର୍ଥାତ୍ ପଞ୍ଜାବ ଭାରତବର୍ଷର ତୋରଣର କଞ୍ଚିସ୍ୱରୂପ। (୯) ମହାବାତ୍ୟାର ଅବ୍ୟବହିତ ପୂର୍ବେ ପବନ ଯେପରି ସ୍ତମ୍ଭିତ ହୋଇଯାଏ। (୧୦) ଯମର ଭୟଙ୍କର ମୁଖକୁହର ସମ୍ମୁଖରେ। (୧୧) ବିଶ୍ୱପ୍ରଳୟକାରୀ ମହାଦେବଙ୍କ ଶିଙ୍ଗା ପରି। (୧୨) ଇରମ୍ମଦ – ବଜ୍ରାଗ୍ନି। (୧୩) ତପସ୍ୟା ଅତି କଠିନ କାର୍ଯ୍ୟ। ବଜ୍ର ଅତି କଠିନ ହୋଇଥିବାରୁ ତପସ୍ୟାର ସାରରୂପେ ବର୍ଣ୍ଣିତ ହୋଇଅଛି। (୧୪) ଦମ୍ଭୋଳି – ବଜ୍ର। ଦମ୍ଭୋଳିନିକ୍ଷେପୀ – ଇନ୍ଦ୍ର। (୧୫) ଦକ୍ଷଯଜ୍ଞ ଧ୍ୱଂସ ସମୟରେ ଶିବଦୂତ ବୀରଭଦ୍ର ଜ୍ୱରରୂପ ଧାରଣ କରିଥିଲେ।

ବହିଲା ମରୁତ, ଦୂର ଦିଙ୍‌ମୁଖ ଘୋଡ଼ାଇ
ଧୂଳି ମେଘେ, ମହାବେଗେ ଉପାଡ଼ି ଦ୍ରୁମାଳି।
ଶାବକର ମାୟା ଛାଡ଼ି ଉଡିଗଲେ ନୀଡ଼ୁଁ
ବିହଙ୍ଗେ, ଗଗନ ପୂରି କରୁଣକୂଜନେ।
ପଳାଇଲେ ଜୀବକୁଳ କିଏ କେଉଁ ଆଡ଼େ
ବଣା ହୋଇ, ପଳାଇଲେ ଯୋଗୀ ଯୋଗ ଛାଡ଼ି,
ଗର୍ଭିଣୀର ଗର୍ଭ ସ୍ରବି ପଡ଼ିଲା ଅକାଳେ,
ଚକିତ ଶିଶୁକୁ ତ୍ରସ୍ତେ ଧରିଲାକ ଢାକି
ଆକଟେ (୧) ତା ମାତା କ୍ରୋଡ଼େ ସ୍ତନ୍ୟଦାନେରତା,
ଛନକାରେ ତ୍ରସ୍ତ ହୋଇ ହେଲେ ଛନ୍ନମତି
ସର୍ବପ୍ରାଣୀ କି ଜଳେ, କି ସ୍ଥଳେ, ବିହାୟସେ,
ଆବିଳା, ଫେନିଳା, ଗିରିଗୈରିକେ ଅରୁଣା,
କଲୋଲ୍ଲାସେ ବନ୍ଧ ଭାଙ୍ଗି ତୁଡୁଆପ୍ରାନ୍ତରେ (୨)
ପଶେ ଘୋ ଘୋ ରବେ ଯଥା ନଦୀକୁଳେଶ୍ୱରୀ
ମହାନଦୀ, ସେ ବିଶାଳସ୍ଥଳୀକି ଆବରି
ଜଳଆସ୍ତରଣେ ଦୂରଶୈଳଶ୍ରେଣୀଯାଏ,
ବୁଡାଇ ଶ୍ୟାମଳ କ୍ଷେତ୍ର କୃଷୀବଳଆଶା,
ଭସାଇ ଗୋଶାଳା, ଖଳା, ମଞ୍ଚ, ଧାନକୋଠୀ
ମହାବେଗେ, ମହାଦ୍ରୁମବିଟପପଲ୍ଲବେ
(ଝାଉଥିଲେ ଆଗେ ଯହିଁ ବିହଙ୍ଗଦମ୍ପତି
ପ୍ରେମାମୋଦେ ଡେଣା) ରଙ୍ଗେ ଖେଳାଇମୀନାଳୀ (୩)
ସେରୂପେ ଯବନଦଳେ ଆର୍ଯ୍ୟବରୂଥିନୀ
ପଡ଼ିଲା ପ୍ରଚଣ୍ଡ ବେଗେ, ରଥୀ ସହ ରଥୀ,
ପଦାତି ପଦାତି ସହ, ସାଦୀ ସଙ୍ଗେ ସାଦୀ,
ନିଷାଦୀ ନିଷାଦୀ ସହ ମିଶିଲେ ଆହବେ।
ରଣୋନ୍ମାଦଉଦ୍ଦୀପନ ରଣବାଦ୍ୟତାନେ,
ଅସ୍ତ୍ରର ଝନ୍‌ଝନେ, ଧନୁଷ୍ଟଙ୍କାର ଶବଦେ,
ଆହତର ଆର୍ତ୍ତନାଦେ, ଜେତାର ହୁଙ୍କାରେ,
ଚକ୍ରର ଘର୍ଘରେ, ବାଜିରାଜି ହ୍ରେଷାରବେ,
ଦନ୍ତାବଳ ଘଣ୍ଟାରବେ, ଆବର ବୃଂହିତେ,
ଉଠିଲା ନିହ୍ରାଦ କର୍ଣ୍ଣ ବିବରବିଦାରୀ,
ଅମ୍ବୁରାଶିଘୋଷ ଯଥା ପ୍ରଳୟ ପବନେ,
ବ୍ରହ୍ମାଣ୍ଡଉଦର ଫାଟିଗଲା କି ସେ ନାଦେ?
ବାଣବୃଷ୍ଟି ଘୋଟିଗଲା ଶଳଭ ପରାୟେ (୪)
ନଭୋଦେଶ, ଧୂଳିରାଶି ଅଶ୍ୱଖୁରେ ଉଠି,
ରଥଚକ୍ରେ ସାନ୍ଦ୍ର ହୋଇ, କରିକର୍ଣ୍ଣତାଳେ
ପ୍ରସରି, ଭାସ୍କର-ବିମ୍ବ ରୋଧିଲା ଆକାଶେ,
ରଣ-ଉତ୍ସବର ଯୋଗ୍ୟ ଚନ୍ଦ୍ରାତପରୂପେ, (୫)
ବାଳାତପ ପ୍ରାୟେ ଶୋହି ସେ ଧୂଳି ଅନ୍ଧାରେ
ରକ୍ତଧାରା, କର୍ଦ୍ଦମାକ୍ତ କଲା ବସୁନ୍ଧରା,
ରଣଚଣ୍ଡୀଙ୍କର କି ସେ ଅଳକ୍ତକ-ଲାଗି? (୬)
ଯୁଗାନ୍ତ-ମାର୍ତ୍ତଣ୍ଡ ପ୍ରାୟେ ଜଳିଲା ଅମ୍ବରେ
ଉଜ୍ଜ୍ୱଳ ଯାଦବଚକ୍ର, ମୈଥିଳ-ନାରାଚେ
ଅନ୍ଧାର ଦିଶିଲା ଦିଗ, ଚପଳା ଚମକେ
ଚମକି ଉଜ୍ଜ୍ୱଳୀ ଖଣ୍ଡା, ନେପାଳୀ କଟାରି,
କୌଶେୟର ଭିନ୍ଦିପାଳ, ବୈରାଟ ପରଶୁ,
ପଡ଼ିଲା ଝନ୍‌ଝନେ ଟାଣେ (୭) ରିପୁବାରବାଣେ;
ପ୍ରମତ୍ତ ମାତଙ୍ଗ ଦନ୍ତ ତୀବ୍ର-ଅସ୍ତ୍ରାଘାତେ
ଅନଳସ୍ଫୁଲିଙ୍ଗ ଝଡ଼ି ଲିଭିଲା ତକ୍ଷଣେ
ଉଲ୍ଲାସେ ଉତ୍‌ଥିତ କର-ଶୀକର-ଆସାରେ; (୮)
ଭାସ୍ୱର ଶାଣିତ ଶର ସୈନ୍ୟଙ୍କ ଶରୀରେ
ପଶିଲା ସବେଗେ, ଯେହ୍ନେ ଉରଗ ବଲ୍ମୀକେ, (୯)
ଭ୍ରୁକୁଟୀକୁଟିଳମୁଖେ ଅଧର କାମୋଡ଼ି
ଅରାତି ଅରାତି ସଙ୍ଗେ ଯୁଝିଲେ ବିକ୍ରମେ
ନିଦାରୁଣ ସେ ବିମର୍ଦ୍ଦେ, (୧୦) ପ୍ରହାରି ନିର୍ଦ୍ଦୟେ
ଅରିକି, ପ୍ରହାର ତାର ଖାଇ ଅକାତରେ,
ରକ୍ତାକ୍ଷୁଁ ସଘନେ ପିଙ୍ଗି ରୋଷାନଳକଣା;
ବିରଥ, ହତାଶ୍ୱ ହୋଇ ରଥୀ, ଅଶ୍ୱବାରେ
ଯୁଝିଲେ ପଦାତିରୂପେ ଶସ୍ତ୍ରେ ଶସ୍ତ୍ର ହାଣି,
ଶସ୍ତ୍ର ଭାଙ୍ଗିଲାରୁ ଗାଢ଼େ ହୋଇ ଝିଡାଝିଡ଼ି,
ମୁଷ୍ଟାମୁଷ୍ଟି, ମୁଥାମୁଥି, କଚାକଚି ରଚି
ଗଡ଼ିଲେ ଅବନୀତଳେ ବେନି ରଣଗୋଳେ;
ହସ୍ତୀ, ଅଶ୍ୱ, ରଥୁଁ ଖସି ପଡ଼ିଲେ ପ୍ରବୀରେ
ହତ ହୋଇ, ପୁଣ୍ୟକ୍ଷୟେ ପଡ଼ନ୍ତି ଭୂତଳେ

(୧) ଆକଟେ– ନିବିଡ଼ରୂପେ। (୨) ତୁଡୁଆ ପ୍ରାନ୍ତର ବାଙ୍କିରାଜ୍ୟ ଅନ୍ତର୍ଗତ, ମହାନଦୀର ଦକ୍ଷିଣ ତୀରରେ ଅବସ୍ଥିତ। ମହାନଦୀର ପ୍ରବଳ ବନ୍ୟା ସମୟରେ ଏହା ଦ୍ୱିତୀୟ ଚିଲିକାରେ ପରିଣତ ହୁଏ। (୩) ଯେଉଁ ବୃକ୍ଷମାନଙ୍କର ଶାଖା ପଲ୍ଲବ ମଧ୍ୟରେ ପୂର୍ବେ ପକ୍ଷୀମାନେ କ୍ରୀଡ଼ା କରୁଥିଲେ ବନ୍ୟାଜଳ ସେ ପର୍ଯ୍ୟନ୍ତ ଉଠିବାରୁ ସେଠାରେ ବର୍ତ୍ତମାନ ମତ୍ସ୍ୟମାନେ କ୍ରୀଡ଼ା କରନ୍ତି। (୪) ଶଳଭ– ଫଡ଼ିଙ୍ଗ, ଝିଣ୍ଟିକା। (୫) ରଣଧୂଳି ଆକାଶରେ ବ୍ୟାପ୍ତ ହୋଇ ରଣୋତ୍ସବେ ଉପଯୁକ୍ତ ଚନ୍ଦ୍ରାତପ ହେଲା। (୬) ରକ୍ତଧାରା ଯୁଦ୍ଧର ଅଧିଷ୍ଠାତ୍ରୀ ଦେବୀଙ୍କର ଅଳକ୍ତକ ପ୍ରାୟ ହେଲା। (୭) ଟାଣେ– ଭୟଙ୍କରରୂପେ। ରିପୁବାରବାଣେ– ଶତ୍ରୁମାନଙ୍କର ଧାତୁଗଠିତ କବଚ ଉପରେ। (୮) ଶୁଣ୍ଢର ଫୁତ୍କାରଜନିତ ଶୀକରବୃଷ୍ଟିରେ। (୯) ଉଇହୁଙ୍କା ମଧ୍ୟରେ ସାପ ପରି।
(୧୦) ବିମର୍ଦ୍ଦ– ଯୁଦ୍ଧ।

ଚୀରବେଗେ ତାରାକାରେ ଯଥା ପୁଣ୍ୟପ୍ରାଣୀ;
ଅକାଟୁଧାରଣଦମ୍ଭେ ଶତ ଶତ ଭଟେ (୧)
ଅଚ୍ଛେଦ୍ୟ ଅଭେଦ୍ୟ ଅସ୍ତ୍ରେ ନିଜ ଦେହ ମଣି,
ରଣଗୋଳେ ପଶି, ଶତ୍ରୁହସ୍ତେ ହାଣ ଖାଇ,
ବିଧିଲିପି କାଟିବାକୁ ଅକ୍ଷମ ଅକାଟୁ
କିଣିଲେ ଏ ମହାଜ୍ଞାନ ପ୍ରାଣ-ମୂଲ୍ୟ ଦେଇ।
ଗଣ୍ଡିରୁ ବିଚ୍ଛିନ୍ନ ହୋଇ ଛଟକେ ଛିଡ଼ିକି
ଛଟ ଛଟ ହେଲା ଭୂମେ ରକ୍ତଉତ୍ସସ୍ରାବୀ (୨)
ସାଳଙ୍କାର ହସ୍ତ ପାଦ, ସଶିରସ୍ତ୍ର ଶିରଃ। (୩)
ପେଷି ହୋଇଗଲେ ପତ୍ତି ଅଶ୍ୱେ, ଅଶ୍ୱ ରଥେ, (୪)
ରଥ ଗଜେ ସେ ବିମର୍ଦେ; ରୁଧିର କର୍ଦମେ
ମସ୍ତିଷ୍କ, ଯକୃତ, ପ୍ଲୀହା, ଅନ୍ତ୍ର, ମାଂସ, ବସା,
ହୃଦୟାଦି ମିଶି ହେଲା ଅଯତ୍ନେ ସେ କାଳେ
ଭୈରବୀର (୫) ଭୋଗଯୋଗ୍ୟ ବୀଭତ୍ସ ଘାଣ୍ଟିଆ;
ରଣବ୍ୟୋମେ ଶ୍ୟେନପନ୍ତି ଉଡ଼ିଲେ କୌତୁକେ
ମାଂସ ଲୋଭେ, ରଣଲକ୍ଷ୍ମୀ ପାରାବତରୂପୀ; (୬)
ରଥୀ କି ଅଚେତ ଦେଖି ଦେଲା ବାହୁଡ଼ାଇ
ରଥ ରଥଯନ୍ତା କାହିଁ ବିଜୁଳିର ବେଗେ, (୭)
ତୀବ୍ର କଶାଘାତେ ତ୍ରାସେ ତଡ଼ି ବାହାବଳୀ; (୮)
କାହିଁ ଫେଣୋଦ୍‌ଗାରିମୁଖେ, ରକ୍ତାକ୍ତ ବିଗ୍ରହେ
ଅନିଳ ଉଗାରି ଘୋଣାନିଃସୃତ-ଫୁତ୍କାରେ
ବ୍ୟସ୍ତେ ପଳାଇଲେ ଅଶ୍ୱ, ନିହତ-ସାଦିକି
ପୃଷ୍ଠେ ବହି, ଶିରସ୍ତ୍ରାଣ ଲୋଟାଇ ଭୂତଳେ
ସେ ସାଦିର, ଶୋଣିତାର୍ଦ୍ର କୁନ୍ତଳ ସହିତେ,
ପଳାଇଲେ ରଣସ୍ଥଳୁଁ ବିକଟ ଚିତ୍କାରେ
ସୌଦାମିନୀପ୍ରଭ-ହେମପ୍ରବେଣୀମଣ୍ଡିତ (୯)
କରିବୃନ୍ଦ, ମନ୍ଦ୍ରଘୋଷିଘନଘଟାକୃତି,
ତ୍ରାସେ ଥୋରପାର ଟେକି, ଫିଙ୍ଗି ଆରୋହୀକି,
ସ୍ୱଦଳ ବିପକ୍ଷଦଳ ଦଳି ନିର୍ବିଶେଷେ;
ଅସଂଖ୍ୟ ଯବନଯୋଧେ ହେଲେ ରଣଶାୟୀ,
କେତେ ଆର୍ଯ୍ୟେ ବେନିପକ୍ଷେ ଗଲେ ପ୍ରେତପୁରେ,
କେ କଳିବ ? କେ ଗଣିବ ବରଷାର ଧାରା ?
ଅମୂଲ୍ୟ ଯେ ରକ୍ତ, ଆହା, ଦେଶରକ୍ଷା ଲାଗି,
ବିଫଳେ ସ୍ରବିଲା ତାହା ଭ୍ରାତୃଘାତିରଣେ। (୧୦)
ଦେବାକୃତି ଦେବାନୀକ (୧୧) ହଂସପୁରପତି
ଶୁଆଇଲେ ଉଜ୍ଜୟିନୀପତିଙ୍କି ଝଟତି
ଅସ୍ୱପ୍ନକ୍ଷୁଭିତତଳ୍ପେ (୧୨) ପରଶୁ ଆଘାତେ;
ଅଞ୍ଜନ ଅଞ୍ଜନପ୍ରଭ ପଞ୍ଚାଳଭୂପତି (୧୩)
ଜୟଚନ୍ଦ୍ରପିୟସଖା ହେଲେ ଧରାଶାୟୀ,
ଚେଦିନାଥ ରୋହିତାସ୍ୟ ବରଛିଭେଦନେ, (୧୪)
ଶସ୍ତ୍ର ଭୂଷି ରୋହିତାସ୍ୟ ଶତ୍ରୁ ନାଭିତଳେ
ଓଟାରି ନେଲେ ତା ମୂନ ଶତ୍ରୁପ୍ରାଣ ସହ।
ବିକ୍ରମ କାଶ୍ମୀର-ପତି ଯୁଝିଲେ ବିକ୍ରମେ। (୧୫)
ରଣଚଣ୍ଡ ବଙ୍ଗରାଜ ରଣଚଣ୍ଡ ତୁଲେ, (୧୬)
ରଣଚଣ୍ଡ-ଭଲ୍ଲ ତାଙ୍କ କର୍ଣ୍ଣ ମୂଳେ ପଶି
ଶୋଣିତଝଳକା ସହ ଅଇଲା ବାହାରି,
ତୁରଙ୍ଗୁ ବିକ୍ରମ ଖସି ଆଶ୍ରିଲେ ଅନ୍ତିମେ
ଭୂମିଶଯ୍ୟା, ଚନ୍ଦ୍ରାନନୀ-କାଶ୍ମୀରୀ ତରୁଣୀ (୧୭)
ପରିବର୍ତ୍ତେ ଶ୍ୟେନୀ ଲଭି ଶଯ୍ୟାସଖୀରୂପେ;
ରଣଚଣ୍ଡ-ଜୟହର୍ଷ ହେଲା କ୍ଷଣସ୍ଥାୟୀ,
ବନ୍ଧୁଜୀବପୁଷ୍ପପୃଥୁ ରକ୍ତବିନ୍ଦୁ ସ୍ରାବୀ (୧୮)
ବିକ୍ରମର ମୁଣ୍ଡ ଊର୍ଦ୍ଧ୍ୱେ ଟେକି ଭଲ୍ଲମୁନେ
ସଦମ୍ଭେ ଦେଖାନ୍ତେ, ତାଙ୍କ ମୁଣ୍ଡ ସେହି କ୍ଷଣି
ଭଲ୍ଲଲଗ୍ନ-ମୁଣ୍ଡ ସଙ୍ଗେ ଗଡ଼ିଲା ଭୂତଳେ

(୧) ଅସ୍ତ୍ରରେ ଅଚ୍ଛେଦ୍ୟ ହେବେ, ଏହି ବିଶ୍ୱାସରେ ପୂର୍ବେ ଯୋଦ୍ଧାମାନେ ଶରୀରରେ ଏକପ୍ରକାର ଜଡ଼ି ଧାରଣ କରୁଥିଲେ। ସେହି ଜଡ଼ିର ନାମ ଅକାଟୁ। ଭଟ— ଯୋଦ୍ଧା। (୨) ରକ୍ତ-ଉତ୍ସସ୍ରାବୀ— ରୁଧିରପ୍ରସ୍ରବଣସ୍ରାବୀ। (୩) ସଶିରସ୍ତ୍ର— କିରୀଟଯୁକ୍ତ। (୪) ପତ୍ତି— ପଦାତିକ। (୫) ଭୈରବୀ— ପ୍ରେତମାନଙ୍କର ଅଧିଷ୍ଠାତ୍ରୀ ଦେବତା। (୬) ପାରା— ଲକ୍ଷ୍ମୀଙ୍କର ପ୍ରିୟ ପକ୍ଷୀ। ଶ୍ୟେନମାନେ ରଣଲକ୍ଷ୍ମୀଙ୍କର ପାରାସ୍ୱରୂପ ହେଲେ। (୭) ରଥଯନ୍ତା— ସାରଥି। (୮) ବାହାବଳୀ— ଘୋଟକମାନଙ୍କୁ। (୯) ବିଜୁଳି ପରି ଉଜ୍ଜ୍ୱଳ ସୁବର୍ଣ୍ଣାସ୍ତରଣ ଆବୃତ। ହସ୍ତିମାନଙ୍କ ସହିତ ମେଘର ଏବଂ ପ୍ରବେଣୀ ସହିତ ସୌଦାମିନୀର ଉପମା। (୧୦) ଆର୍ଯ୍ୟମାନଙ୍କର ଉଚିତ ଥିଲା ଯେ ସେମାନେ ଏକତାବନ୍ଧନରେ ବଦ୍ଧ ହୋଇ ଜନ୍ମଭୂମିର ସ୍ୱାଧୀନତା ରକ୍ଷା ସକାଶେ ସେମାନଙ୍କର ବହୁମୂଲ୍ୟ ଶୋଣିତ ପ୍ରଦାନ କରିଥାନ୍ତେ। ସେମାନେ ତାହା ନ କରି ଆପଣା ଆପଣା ମଧ୍ୟରେ ହଣାହଣି ହୋଇ ସେହି ଶୋଣିତ ବୃଥା ବ୍ୟୟ କଲେ। (୧୧) ଦେବାନୀକ— ମୁଲତାନ୍‌ର ଅଧୀଶ୍ୱର, ଯବନପକ୍ଷୀୟ। (୧୨) ଅସ୍ୱପ୍ନକ୍ଷୁଭିତତଳ୍ପ— ଯେଉଁ ଶଯ୍ୟାରେ ନିଦ୍ରା ସ୍ୱପ୍ନଦ୍ୱାରା କ୍ଷୁଭିତ ହୁଏ ନାହିଁ। ମହାନିଦ୍ରାର ଶଯ୍ୟା। (୧୩) ଅଞ୍ଜନ— ପଞ୍ଜାବର ରାଜା, ଯବନପକ୍ଷୀୟ। ଅଞ୍ଜନପ୍ରଭ— କୃଷ୍ଣବର୍ଣ୍ଣ। (୧୪) ରୋହିତାସ୍ୟ— ଚେଦିରାଜ, ଆର୍ଯ୍ୟପକ୍ଷୀୟ। (୧୫) ବିକ୍ରମ— କାଶ୍ମୀରରାଜ, ଯବନପକ୍ଷୀୟ। (୧୬) ରଣଚଣ୍ଡ— ବଙ୍ଗଦେଶର ରାଜା ପୃଥୁପକ୍ଷୀୟ। (୧୭) କାଶ୍ମୀରଦେଶୀୟ ନାରୀମାନେ ସୌନ୍ଦର୍ଯ୍ୟ ନିମନ୍ତେ ପ୍ରସିଦ୍ଧ। (୧୮) ବନ୍ଧୁଜୀବପୁଷ୍ପ ପରି ସ୍ଥୂଳରକ୍ତବିନ୍ଦୁ ଯେଉଁ ମୁଣ୍ଡରୁ ସ୍ରବୁଥିଲା।

ବିକ୍ରମସୋଦର-କ୍ଷେମଧନ୍ୱା-ଖଡ୍‌ଗାଘାତେ; (୧)
ଅଙ୍ଗନାଥ ଯୁଧାଜିତ ଆକ୍ରମିଲେ ରୋଷେ (୨)
ମଦନସୁନ୍ଦର ଯୁବା ପ୍ରସେନ ପ୍ରବୀରେ, (୩)
ଜୟଚନ୍ଦ୍ର ପୁତ୍ରବେନି, ରଥୀ, ରଥବାହୀ
ଏକା ରଥେ, ଏକମନା ଭିନ୍ନ ମାତ୍ର ଦେହେ,
ଯୁଧାଜିତ କ୍ରୂରକୁନ୍ତ ସ୍ୱରୂପ-ନିର୍ମମ, (୪)
ସୁରୂପ ପ୍ରସେନବକ୍ଷେ ସ୍ତନୋପରି ପଶି
ଫୁଟିଲା ରକ୍ତାକ୍ତ ମୁନେ ପୃଷ୍ଠେ ଗ୍ରୀବାତଳେ,
ବଲ୍‌ଗାଧାରୀ (୫) ପ୍ରବୀରକୁ ଆବର ସେକ୍ଷଣି
ଲୋଟାଇଲେ ଯୁଧାଜିତ ଭୂମେ ଅସି ଚୋଟେ,
କାଷ୍ଠାଜୀବ (୬) ଯେହ୍ନେ ବନେ ପୁଷ୍ପିତ କିଂଶୁକେ;
ଶୈଳଖୋଳେ ଭ୍ରମୁଁ ଭ୍ରମୁଁ ମୃଗୟାଆଶୟେ,
ହରିଣଶିଶୁକୁ ପଥେ ହର୍ଯ୍ୟକ୍ଷ ଯେପରି
ହାବୋଡ଼ି, କାମୋଡ଼ି ଦନ୍ତେ କ୍ଷୀଣ ପ୍ରାଣ ତାର
ଦିଏ ଝାଡ଼ି, ଅକ୍ଷମ ସେ ଶିଶୁର ରକ୍ଷଣେ
ତ୍ରାସେ ମୃଗୀ ସେହି ଦୃଶ୍ୟ ଗୁଳ୍ମତଳେ ଲୁଚି
ଦେଖୁଥାଇ ଥରି ଥରି ସ୍ୱିନ୍ନ କଳେବରେ, (୭)
ପୁତ୍ରଙ୍କର ଏହି ଦଶା ଅଦୂରୁଁ ନିରେଖି
ରହିଲେ ତେସନେ ଉଭା କାନ୍ୟକୁବ୍‌ଜପତି
ସ୍ତମ୍ଭୀଭୂତେ, ଶସ୍ତ୍ର ହସ୍ତେ, ଲୋତକ ନୟନେ;
ପୁଷ୍କଳାବତୀର ପତି ଶମ୍ବ ଶିରୋପରେ (୮)
ପ୍ରହାରିଲେ ମହାଗଦା ମହାଗଦାଧାରୀ
ଜଂଘାଳ ମାଳବରାଜ, ଯେ ଭୀମ ଆଘାତେ (୯)
ଚୂର୍ଣ୍ଣ ହୋଇ ଶମ୍ବକଞ୍ଜ ଶମ୍ବଶିରସ୍ତ୍ରାଣ (୧୦)
ଫାଟିଗଲା ଭାଲ-ଅସ୍ଥି, ପଡ଼ିଲା ବାହାରି
ନୟନକୋଟରୁ ବେନି ନୟନର ଡ଼ୋଳା;
ନ ପାରିଲେ ସଶିରସ୍କ ସ୍ୱଶିରଃ ବଞ୍ଚାଇ
ଶାଳାତୁରପତି ଶଂଖ, ଅମୋଘନିପାତୀ (୧୧)
ଉଦ୍ରପତି ଯଯାତିର ଧୂପଖଣ୍ଡା-ଚୋଟୁଁ, (୧୨)
ଦ୍ୱିଧା ହୋଇ ମୁଣ୍ଡ, ଭଗ୍ନ ଦଧିଭାଣ୍ଡ ଯଥା,
ପଡ଼ିଲା ମସ୍ତିଷ୍କ ତଳେ ଥପ ଥପ ହୋଇ।
ବଙ୍ଗେଶ୍ୱର ଶାଳାଦିତ୍ୟ ଫିଙ୍ଗିଲେ ସାବେଳି (୧୩)
ତକ୍ଷଶିଳାପତି ବକ୍ଷ ଲକ୍ଷି ମହାବଳେ, (୧୪)
ତକ୍ଷଶିଳାତାଲଗୁବା ଭେଦି, ଲାଖି ହୋଇ
ଦୋହୋଲିଲା ସେ ସାବେଳି, ଅକ୍ଷତେ ସେ ତହୁଁ
ଶାଳାଦିତ୍ୟ ପରେ ପଡ଼ି ବିଜୁଳିର ବେଗେ
ଭୁଷିଦେଲେ ତାଙ୍କ ଗଳେ ସୁତୀକ୍ଷ୍ଣ କଟାରି,
ଖଣ୍ଡି ତାଙ୍କ ରଣକଣ୍ଡୁ ଚିରଦିନଲାଗି; (୧୫)
ମାତ୍ର ପ୍ରତିଶୋଧ ତାର ଲଭିଲେ ସେକ୍ଷଣି
ପୌଣ୍ଡ୍ରପତି ମହେନ୍ଦ୍ରର ବରଛିର ମୂନେ, (୧୬)
ସେ ବରଛି ତକ୍ଷଶିଳ ପିଚୁଳିପ୍ରଦେଶେ
ପଶି ଲୋଟାଇଲା ତାଙ୍କୁ ଉଭାନେ ଭୂତଳେ,
ଭକ ଭକ ରକ୍ତ ସ୍ରାବି ବୁଜିଲେ ସେ ଆଖି।
କୌଶେୟପ୍ରବର ବଜ୍ରଘୋଷ ଭିନ୍ଦିପାଳେ (୧୭)
କନଖଳପତିଙ୍କର ସ୍କନ୍ଧସନ୍ଧି ଛିଡ଼ି (୧୮)
ଗଲା; ସେହ୍ନା ସହ ସେହୁ ପଡ଼ିଲେ ଝଂଝନେ,
ବେକଷଣ୍ଡା ସଙ୍ଗେ ଗଲା ଭବଲୀଳା ଭାଙ୍ଗି।
ଅମ୍ବାଳୟପତିଶିରୁ ଶିରସ୍କ ସୁନ୍ଦର, (୧୯)
କଣ୍ଡରୁ ସେ ଶିର ପୁଣି ଲୋଟାଇଲେ ଭୂମେ
ଅମର୍ଷିଅନୁଜ ଜିଷ୍ଣୁ ବେନି ଅସି ଚୋଟେ; (୨୦)
ବାଜେନ୍ଦୁଲାଞ୍ଛିତ ଧ୍ୱଜ ପରେ ଲକ୍ଷ୍ୟ ରଖି
ଯୁଝିଲେ ସ୍ୱଦଳେ ପୃଥୁ, ଅରାତିପ୍ରମାଥୀ,
ଆର୍ଯ୍ୟତରୀକର୍ଣ୍ଣଧାର ସମରସାଗରେ,
ନର୍ତ୍ତିତକିରୀଟ ଦେବ-କାର୍ତ୍ତିକପ୍ରତିମ, (୨୧)
ଅନିବର୍ତ୍ତୀ ରଣେ, ସୈନ୍ୟେ ସଦା ଅଗ୍ରଯାୟୀ,
ପରପୁରଞ୍ଜୟୀ ଶୂର ଅମର୍ଷିର ଅସି
ବୁଲିଲା କୁଲାଳଚକ୍ର ପ୍ରାୟେ ସେ ସଂଗ୍ରାମେ
ସହସ୍ର ସହସ୍ର ଶତ୍ରୁ ଲୋଟାଇ ଭୂତଳେ,
ସକିରୀଟ କାହା ଶିରଃ, ସଶସ୍ତ୍ର କା ବାହୁ,
ସକଙ୍କଟ କାହା ଉରଃ, ସମେଖଳ କଟୀ (୨୨)

(୧) କ୍ଷେମଧନ୍ୱା– କାଶ୍ମୀରପତିଙ୍କ ଭ୍ରାତା, ଯବନପକ୍ଷଭୁକ୍ତ। (୨) ଯୁଧାଜିତ– ଅଙ୍ଗରାଜ, ଆର୍ଯ୍ୟପକ୍ଷୀୟ। (୩) ପ୍ରସେନ ଏବଂ ପ୍ରବୀର ଜୟଚନ୍ଦ୍ରଙ୍କ ପୁତ୍ର, ଏକ ରଥରେ ଜଣେ ରଥୀ ଏବଂ ଜଣେ ସାରଥି ହୋଇ ଯୁଦ୍ଧ କରୁଥିଲେ। (୪) ସୁରୂପନିର୍ମମ– ସୌନ୍ଦର୍ଯ୍ୟ ପ୍ରତି ଯାହାର ଲେଶମାତ୍ର ମାୟା ମମତା ନାହିଁ; କୁନ୍ତର ବିଶେଷଣ। (୫) ବଲ୍‌ଗାଧାରୀ– ସାରଥି। (୬) କାଷ୍ଠାଜୀବ– କାଠ କାଟିବା ଯାହାର ଜୀବିକା। (୭) ସ୍ୱିନ୍ନ– ସ୍ୱେଦଯୁକ୍ତ, ଘର୍ମାକ୍ତ। (୮) ଶମ୍ବ– ପୁଷ୍କଳାବତୀର ଅଧୀଶ୍ୱର; ଯବନପକ୍ଷୀୟ। (୯) ଜଂଘାଳ– ମାଳବପତି, ଆର୍ଯ୍ୟପକ୍ଷୀୟ। (୧୦) ଶମ୍ବକଞ୍ଜ– ବଜ୍ର ପରି କଠିନ। (୧୧) ଶଙ୍ଖ– ଲାହୋରରାଜ, ଯବନପକ୍ଷୀୟ। (୧୨) ଯଯାତି– ଉତ୍କଳରାଜା, ଆର୍ଯ୍ୟପକ୍ଷୀୟ। (୧୩) ଶାଳାଦିତ୍ୟ– ବଙ୍ଗଦେଶର ରାଜା, ଆର୍ଯ୍ୟପକ୍ଷୀୟ। (୧୪) ତକ୍ଷଶିଳାପତି– ଯବନପକ୍ଷୀୟ। (୧୫) ରଣକଣ୍ଡୁ– ଯୁଦ୍ଧାଭିଳାଷ। (୧୬) ମହେନ୍ଦ୍ର– ପୌଣ୍ଡ୍ରରାଜ, ଆର୍ଯ୍ୟପକ୍ଷୀୟ। (୧୭) ବଜ୍ରଘୋଷ– ଆର୍ଯ୍ୟପକ୍ଷୀୟ ରାଜା। (୧୮) କନଖଳ– ହରିଦ୍ୱାରର ଅଦୂରବର୍ତ୍ତୀ। କନଖଳପତି– ଯବନପକ୍ଷୀୟ। (୧୯) ଅମ୍ବାଳୟ– ଆଧୁନିକ ଅମ୍ବାଲା, ଅମ୍ବାଳୟପତି– ଯବନପକ୍ଷୀୟ। (୨୦) ଜିଷ୍ଣୁ– ଅମର୍ଷିଙ୍କ କନିଷ୍ଠ ସହୋଦର, ଆର୍ଯ୍ୟପକ୍ଷୀୟ। (୨୧) ଦୋଦୁଲ୍ୟମାନ-କିରୀଟ କାର୍ତ୍ତିକେୟଙ୍କ ପରି। ଅମର୍ଷିର ବିଶେଷଣ। (୨୨) ସକଙ୍କଟ– କବଚଯୁକ୍ତ।

କାଟିଲେ କଦଳୀକାଣ୍ଡ ପ୍ରାୟେ କରବାଳେ
ଅଶ୍ୱବାର ମହାବୀର, ଛେଦିଲେ କାହାରି
ଉପବୀତଛନ୍ଦେ ଦେହ, ସ୍କନ୍ଧ କଟିଯାଏ, (୧)
ଶ୍ମଶ୍ରୁଳ-ଯବନମୁଣ୍ଡ ଶତ ଶତ ଭୂମେ
ଗଡ଼ାଇ ପୂରିଲେ କି ସେ ରଣଚଣ୍ଡୀପଦ
ସରଘାମଣ୍ଡିତ ରକ୍ତକମଳକୁସୁମେ ? (୨)
ଊର୍ମି ପରେ ଊର୍ମି ଯଥା ଅମ୍ଭୋନିଧିକୂଳେ,
ଦଳେ ଦଳେ କଳେ ଆସି ସଦମ୍ଭେ ଚଢ଼ାଉ
ବୀର ପରେ ଯବନର ବ୍ୟୂହିତ ବାହିନୀ,
ବୃଥା ଶ୍ରମ ! ଗିରି କେବେ ଟଳଇ କି ଗାଁରେ
ତରୁଉନ୍ମୂଳନ ଝଂଝାବାତ୍ୟାର ଆଘାତେ ?
ବର୍ତ୍ତି ନ ପାରିଲେ କେହି ଅମର୍ଷି ସମ୍ମୁଖେ
ସେ ଭୀମ ରୁଧିରବର୍ଷି-ରୋମହର୍ଷି-ହାଣେ, (୩)
ଶୋଭିଲେ ସେ ଅରିଦଳେ, ଗିରିବ୍ରଜେ ଯଥା
ବଜ୍ର; ତମଃପୁଞ୍ଜେ ତେଜଃ, ଔର୍ବ ସିନ୍ଧୁଜଳେ, (୪)
ଦାବାନଳ ତରୁଦଳେ, ବଇରି କପୋତେ,
ବାସନା-ପ୍ରପଞ୍ଚେ କିବା ବିବେକ ଯେସନେ; (୫)
କୃପାଣ-ମନ୍ଥନ-ଦଣ୍ଡେ ଯବନ ବାରିଧି
ମନ୍ଥି ଯଶଃ-କଉସ୍ତୁଭ ଅର୍ଜିଲେ ସୁରଥୀ; (୬)
ତେଜଃପୁଞ୍ଜ ଅଳାମିଳେ ଶୂଳର ପ୍ରାଚୀରେ
ରଖିଲେ ବୀରକୁ ବେଢ଼ି ବଜ୍ରଦୁର୍ଗ ପ୍ରାୟେ,
ଉରୋଳି ଶଳାକା ଯେହ୍ନେ କୁପିତ ଶଲ୍ଲକୀ; (୭)
ଯଥା ମହାନଦୀ ବନ୍ୟା ମହାବେଗେ ଆସି
ମହାଶମ୍ଭୁ ସିଂହନାଥ-ଅଧିଷ୍ଠାନେ ପୂତ — (୮)
ଦ୍ୱୀପଶୈଳମୂଳ ଭେଟି, ପ୍ରତିଘାତବଳେ
ପଛକୁ ନେଉଟି, ପୁଣି ବେନି ଧାର ହୋଇ
ଗିରି ବେନି ପାଖେ ବହିଯାଏ ପୂର୍ବମୁଖେ,
ସମରେ ଦୁର୍ଦ୍ଧର୍ଷବୀର ଅମର୍ଷୀ ଅଗ୍ରତେ,
ପ୍ରତାପେ ତେସନ ତାଙ୍କ ଅସ୍ତବ୍ୟସ୍ତ ହୋଇ
ଦ୍ୱିଧା ବିଦାରିତ ହେଲା ଯବନବାହିନୀ
ପୁନଃ ପୁନଃ, ଦଳେ ଦଳେ ପଡ଼ି ରଣୋନ୍ମାଦେ;
ଅସିଆସ୍ଫାଳନବେଗେ ତାଙ୍କର ମୂରତି
ଦିଶିଲା ପ୍ରବିଷ୍ଟ କି ସେ ବିଦ୍ୟୁତପଞ୍ଜରେ, (୯)
ଜ୍ୱାଳାବଳି-ଜିହ୍ୱା ଚାଳି ଚାଳେ ଖରବେଗେ (୧୦)
ଦାବାନଳ, ନିରର୍ଗଳ (୧୧) ଯେହ୍ନେ ମହାବନେ,
ଚାଳିଲେ ପ୍ରଚଣ୍ଡେ ସେହୁ ବୈରିଦଳ ଭେଦି,
ସହସା ସ୍ୱଦଳୁଁ ବୀର ବିଶ୍ଳିଷ୍ଟ ହୋଇଣ
ପଶିଲେ ଯବନବ୍ୟୂହେ, ଶତ୍ରୁଭଲ୍ଲାଘାତେ
ଗଳେ ବିଦ୍ଧ ହୋଇ ତାଙ୍କ ତୁରଙ୍ଗ ଏକାଳେ
ପଡ଼ିଲା ନିହତ ହୋଇ ରୁଧିର-କର୍ଦ୍ଦମେ,
ଅଶ୍ୱୁଁ ଡେଇଁପଡ଼ି ବୀର ପଦାତିକ ରୂପେ
ଯୁଝିଲେ ଅରାତି ସଙ୍ଗେ ଅତୁଟ ସାହସେ,
ଲଘୁହସ୍ତ ଯୋଗୁ ଶୋହି ସେ ମହାସଙ୍କଟେ (୧୨)
ସର୍ବାଙ୍ଗେ ଆବୃତ ଯେହ୍ନେ ନିଜ କରବାଳେ,
ଝଡ଼ିଲା ଯବନମୁଣ୍ଡ ସେ କୃପାଣ ଚୋଟେ
ଶତ ଶତ ପକ୍ୱପର୍ଣ୍ଣ ଶୀତାନ୍ତେ ଯେସନ ;
କୃଷୀବଳଦାତ୍ରେ ଅବା ପକ୍ୱଶସ୍ୟାବଳୀ (୧୩)
କୃଷିକ୍ଷେତ୍ରେ, କୃଷୀବଳପ୍ରିୟ-ଧନୁମାସେ, (୧୪)
ଶତପ୍ରସରଣେ ଏବେ ବେଢ଼ିଲେ ଅରାତି
ଅମର୍ଷୀଙ୍କି, ଆର୍ଜୁନିକି ଯଥା କୁରୁଚମୂ, (୧୫)
କିମ୍ୱା ଦାବାନଳଚକ୍ର ଯଥା କେଶରୀକି,
ମାତ୍ର ଭରସିଲେ ନାହିଁ ପାଖେ ପଶିବାକୁ
ମୂର୍ତ୍ତିମନ୍ତ କାଳପ୍ରାୟେ ତ୍ରାସେ ତାଙ୍କୁ ମଣି,
ମୂର୍ତ୍ତିମନ୍ତ କାଳପ୍ରାୟେ ଶାର୍ଦ୍ଦୂଳବଂଶର (୧୬)

(୧) ଦେହରେ ପଇତା ଯେଉଁ ଭାବରେ ପଡ଼ିଥାଏ। (୨) ସରଘାମଣ୍ଡିତ— ଶିଶୁଭ୍ରମରଯୁକ୍ତ। ଯବନମାନଙ୍କ ମସ୍ତକ ସହିତ କମଳର ଏବଂ ଶ୍ମଶ୍ରୁ ସହିତ ଭ୍ରମରର ଉପମା। (୩) ରୋମହର୍ଷିହାଣ— ଲୋମହର୍ଷଣକାରୀ ପ୍ରହାର। (୪) ଔର୍ବ— ବାଡ଼ବାନଳ। (୫) ବିବେକ ଅର୍ଥାତ୍ ଜ୍ଞାନୋଦୟ ହେଲେ ବାସନାସମୂହ ନଷ୍ଟ ହୁଏ। (୬) କୌସ୍ତୁଭ ସମୁଦ୍ରମନ୍ଥନରୁ ଉଦ୍‌ଗତ ହୋଇଥିଲା। (୭) ଶଲ୍ଲକୀ— ଝିଙ୍କ କୁପିତ ହେଲେ ତାହାର ଶଳାକାମାନ ଉଦ୍ଦଣ୍ଡ ହୁଏ। (୮) ସିଂହନାଥ— ବାଙ୍କି ଅନ୍ତର୍ଗତ ବୈଦ୍ୟେଶ୍ୱର ସମ୍ମୁଖବର୍ତ୍ତୀ ଦ୍ୱୀପଶୈଳ। ଏହି ଶୈଳର ପାଦଦେଶରେ ସିଂହନାଥଙ୍କ ଦେଉଳ ପ୍ରତିଷ୍ଠିତ। ମହାନଦୀର ବନ୍ୟା ପଶ୍ଚିମରୁ ଆସି ଏହି ଶୈଳର ପ୍ରତିଘାତରେ କିଛିଦୂର ଉଜାଣି ପ୍ରବାହିତ ହୁଏ। ସେଠାରୁ ପୁଣି ଦ୍ୱିଧା ବିଭକ୍ତ ହୋଇ ଦୁଇ ପ୍ରବାହ, ସିଂହନାଥ ଶୈଳର ଉଭୟ ପାର୍ଶ୍ୱ ଦେଇ ପୂର୍ବମୁଖରେ ପ୍ରବାହିତ ହୁଏ। ଏହି ପର୍ବତର ପ୍ରତିଘାତ ଯୋଗୁଁ ମହାନଦୀ ଏହିଠାରେ ଦ୍ୱିସ୍ରୋତା। (୯) ଅତିବେଗରେ ଅସି ଆସ୍ଫାଳନ ଯୋଗୁଁ ଅମର୍ଷୀ ତଡ଼ିତ୍‌ପଞ୍ଜରମଧ୍ୟଗତ ପରି ବୋଧହେଉଥିଲେ। (୧୦) ଜ୍ୱାଳାବଳି-ଜିହ୍ୱା— ଜ୍ୱାଳାମାଳାରୂପ ରସନା। (୧୧) ନିରର୍ଗଳ— ଅପ୍ରତିହତ ଗତି। (୧୨) ଲଘୁହସ୍ତ— ବେଗଗାମୀ ହସ୍ତ। (୧୩) କୃଷୀବଳଦାତ୍ରେ— କୃଷକଙ୍କ ଦାଆରେ। (୧୪) ଧନୁ ଅର୍ଥାତ୍ ପୌଷମାସରେ ଧାନକଟା ଯୋଗୁଁ କୃଷକମାନଙ୍କ ଗୃହ ଶସ୍ୟରେ ପୂର୍ଣ୍ଣ ଥାଏ। (୧୫) କୁରୁସେନା ଚକ୍ରବ୍ୟୂହଦ୍ୱାରା ଅଭିମନ୍ୟୁକୁ ଯେପରି ବେଢ଼ିଥିଲେ। (୧୬) ବାମଣ୍ଡା ଯୁବରାଜ ଶ୍ରୀ ସଚ୍ଚିଦାନନ୍ଦ ଦେବ ଯେମନ୍ତ ବିଦ୍ୟାରସିକ, ମୃଗୟାରେ ସେହିପରି ସିଦ୍ଧହସ୍ତ।

ବାମଣ୍ଡାକୁମାର ବୁଧ-ଚକୋର-ଚନ୍ଦ୍ରିମା,
ହେ ସଚ୍ଚିଦାନନ୍ଦ, ତୁମ୍ଭ ପାରିଧିର ସ୍ଥଳୀ –
ଚୁଳିଆ-ଅଚଳତଟେଁ ଶାର୍ଦ୍ଦୁଳ ଯେସନେ (୧)
ଓଳ୍ହାଳେ ଶିକାରଲୋକେ ବ୍ରାହ୍ମୀତୀରଭୂମେ,
ଟେଣ୍ଟା, ଏକନଳା, ଟାଙ୍ଗି ଆଦି ଶସ୍ତ୍ର ଧରି
ବେଢ଼ନ୍ତି ଚୌଦିଗେ ତାକୁ ମହିଷାଳେ ଯାଇ
ଦଳେ ଦଳେ, ମହୋତ୍ସାହେ, ମହାକୋଳାହଳେ,
ଅକ୍ଷୁବ୍ଧ ସେ ଆକ୍ରମଣେ, ନିର୍ଭୀକ ସ୍ୱଭାବେ,
ଉଭା ହୋଇ ଏକଠାବେ ରହେ ମହାବଳୀ
ମହାବଳ, ଅରିଦଳ ତୃଣ କରି ଗଣି,
ଫୁଲାଇ ତା ବପୁ ରୋଷେ, ଲଙ୍ଗାଯ ବୁଲାଇ
ଚାହୁଁଥାଏ କ୍ଷଣେ କ୍ଷଣେ ବିଦ୍ୟୁତଚାହାଣି;
ମୁହୁର୍ମୁହୁ ଭୂମିତଳେ ଲାଙ୍ଗୁଳ କଚାଡ଼ି
ପ୍ରକଟି ଦଶନପାଟି ମାରଇ ହାକୁଟି,
ମହାକ୍ଷତ୍ରିୟ ସେ ଯେଣୁ, ପଛକୁ ହଟିବା, (୨)
ଅବା ପଳାୟନେ କେବେ ନ ବଳାଏ ମତି,
ତେସନେ ଅମର୍ଷୀବୀର ପରପୁରଞ୍ଜୟୀ,
ଉର୍ଜ୍ଜସ୍ୱଳ କିବା ବଳ କି ଶିକ୍ଷାକୌଶଳେ,
ଶୋଭିଲେ ଅକ୍ଷୋଭେ, ସେହି ଅରି-ପରିବେଶେ; (୩)
ଆକ୍ରମଣେ ଅଗ୍ରସର ହୋଇ କେତେ ଶୂରେ
ଅଗ୍ରସର ହେଲେ ମାତ୍ର କୃତାନ୍ତସଦନେ,
ପ୍ରଦୀପର ଶିଖାସ୍ପର୍ଶେ ପତଙ୍ଗ ଯେପରି।
ଏକକ ସେ ଦିଶୁଥିଲେ ଅଯୁତ ପରାୟେ
ଶତ୍ରୁନେତ୍ରେ, ପ୍ରତିଜନେ ପ୍ରତିଯୋଧରୂପେ; (୪)
ମହାଶୂରୀ ଅକାମିଳେ ପ୍ରାଣପଣେ ଯୁଝି,
ଶୂଳେ ଅରି ପରେ ଅରି ପ୍ରେରି ପ୍ରେତପୁରେ
ଭେଦି ନ ପାରିଲେ ସେହି ଯବନ-ପାଚେରୀ
ଅଭେଦ୍ୟ, ଅଭେଦ୍ୟ ଯଥା କୁରୁଅନୀକିନୀ
ଚକ୍ରବ୍ୟୂହେ ସଜ୍ଜୀଭୂତ ଦ୍ରୋଣର ଭିଆଣେ; (୫)
ଢାଲେ ଢାଲ, ଭଲ୍ଲେ ଭଲ୍ଲ, କିରୀଟ କିରୀଟେ,
କଙ୍କଟ କଙ୍କଟେ ଲାଗି ହୋଇ ସେ ପ୍ରାଚୀର
ଦିଶିଲା ଭାସ୍ୱର, ଯେହ୍ନେ ଶାରଦପ୍ରଭାତେ
ପ୍ରାଚୀପଟେ ରାଜେ ସ୍ୱର୍ଣ୍ଣବର୍ଣ୍ଣ-ମେଘରାଜି
ତମୋଜୟୀ ତପନର ଉପକାର୍ଯ୍ୟାରୂପେ, (୬)
କିମ୍ବା ବହ୍ନି ଆସ୍ତରଣ ଯେହ୍ନେ ବେଣାବନେ,
ଆଲୋକେ ଯା ଶୀତରାତ୍ରେ କନିକାଅଞ୍ଚଳେ
ମୃଗସଦ୍ମ କଚ୍ଛଭୂମି ଲାବଣସୈନ୍ଧବୀ (୭)
ଦିଗ୍‌ବାରଣରୂପେ ସେବି ସିନ୍ଧୁବାହୀ ନାବେ; (୮)
ଅମର୍ଷୀଙ୍କି ଦେଖି ଘୋର ବିପଦ କବଳେ,
ପରନ୍ତପ ପୃଥୁ ଦେଲେ ଦୂରୁଁ ଝପଟାଇ
ଅଶ୍ୱବର, ପୃଥୁ ସଙ୍ଗେ ଆସିଲେ ଦଉଡ଼ି
ଅଙ୍ଗଦେଶୀ. ସାଦିଦଳ ବିଜୁଳୀର ବେଗେ,
ଘର୍ଘରେ ଚଳାଇ ରଥ ଦିଲ୍ଲିପୁରୀରଥୀ
ଆସିଲେ, ରଥାଙ୍ଗେ ବେଗେ ରକ୍ତ ଛିଟିକାଇ (୯)
କବନ୍ଧ-ବନ୍ଧୁରପଥେ, ପୃଥୁଙ୍କ ସଙ୍କେତେ (୧୦)
ଆସିଲେ ସୈନ୍ଧବୀ ଚମୂ ମନୋରଥଗତି,
ପିତ୍ତଳବର୍ମ୍ମିତ ବଙ୍ଗଦେଶୀ-ଅଶ୍ୱବାରେ
ତୀକ୍ଷ୍ଣଭଲ୍ଲଧାରୀ ଖରେ ମିଳିଲେ ତକ୍ଷଣେ,
କାଶ୍ମୀରୀ ସହିତେ ଯୁଝୁଥିଲେ ଯେ ଅଦୂରେ,
ସୌରସେନୀ ଶୂରବୃନ୍ଦ ଆସିଲେ ଦଉଡ଼ି,
ମତ୍ତମତଙ୍ଗଜେ ଚଢ଼ି ଆସିଲେ ନେପାଳୀ,
ସମରତରଙ୍ଗ ଏବେ ଦ୍ୱିଗୁଣେ ଉଚ୍ଛୁଳି
ଭସାଇଲା ରଙ୍ଗେ ତହିଁ ଚତୁରଙ୍ଗ ସେନା,
ବ୍ୟାଧଜାଳେ ଶିଶୁ ଦେଖି ବାଘୁଣୀ ଯେସନେ,
ମହାରୋଷେ ଗର୍ଜ୍ଜି ଆର୍ଯ୍ୟେ ପ୍ରଚଣ୍ଡ ବିକ୍ରମେ
ନୀରନ୍ଧ୍ର ସେ ଶତ୍ରୁଦଳ ପକାଇଲେ ଘାଣ୍ଟି, (୧୧)
ଅଗ୍ରସର ହୋଇ ଯେତେ ଯବନ ସାହସେ
ଓଗାଳିଲେ ବାଟ, ପଡ଼ି କାମୋଡ଼ିଲେ ମାଟି,
ମୁହୂର୍ତ୍ତେ ଯବନବ୍ୟୂହ ବାରେନ୍ଦ୍ରକେଶରୀ
ଭେଦି ଆର୍ଯ୍ୟସେନାନୀକି ଉଦ୍ଧରିଲେ ତହୁଁ

(୧) ଚୁଳିଆ – ବାମଣ୍ଡା ରାଜ୍ୟର ଗୋଟିଏ ଉଚ୍ଚ ପର୍ବତ, ବ୍ରାହ୍ମୀନଦୀର ଅଦୂରବର୍ତ୍ତୀ। (୨) ଜାଙ୍ଗଲପ୍ରଦେଶର ଲୋକେ ବାଘକୁ "ମହାକ୍ଷତ୍ରିୟ" ବୋଲନ୍ତି। (୩) ଅରିପରିବେଶେ – ଶତ୍ରୁ ଚକ୍ର ମଧ୍ୟରେ। (୪) ଅମର୍ଷୀ ଏକା ହୋଇ ସୁଦ୍ଧା ଦଶସହସ୍ର ପ୍ରାୟ ବୋଧ ହେଉଥିଲେ। ପ୍ରତ୍ୟେକ ଯୋଦ୍ଧା ତାହାଙ୍କୁ ଆପଣାର ପ୍ରତିଯୋଦ୍ଧା ମଣିଲା। (୫) ଦ୍ରୋଣାଚାର୍ଯ୍ୟଙ୍କର ଚକ୍ରବ୍ୟୂହରଚନାପ୍ରସଙ୍ଗ ମହାଭାରତରେ ଅନୁସନ୍ଧେୟ। (୬) ତମୋଜୟୀ ସୂର୍ଯ୍ୟଦେବଙ୍କର ତମ୍ବୁସ୍ୱରୂପ ଯେଉଁ ସ୍ୱର୍ଣ୍ଣବର୍ଣ୍ଣ ମେଘମାଳା ଶରତ୍‌ପ୍ରଭାତରେ ପୂର୍ବଦିଗରେ ଶୋଭାପାଏ, ଅସ୍ତ୍ରୋଜ୍ଜ୍ୱଳ ଯବନପ୍ରାଚୀର ସେହିପରି ଦିଶୁଥିଲା। (୭) କନିକା ଅଞ୍ଚଳରେ ସମୁଦ୍ରତଟରେ ଅଦୂରରେ ବହୁଦୂରବ୍ୟାପୀ ବେଣା ବନ ଦେଖାଯାଏ। ଏହି ବେଣାବନରେ ଅସଂଖ୍ୟ ହରିଣ ଦେଖାଯାନ୍ତି। ଶୀତ ଋତୁରେ ଏହି ବେଣାବନରେ ଅଗ୍ନି ଲାଗି ବହୁକ୍ରୋଶବ୍ୟାପୀ ଅଗ୍ନି ପ୍ରାଚୀରବତ୍ ଦିଶେ। ଲାବଣସୈନ୍ଧବୀ – ଲବଣସିନ୍ଧୁ ସମ୍ବନ୍ଧୀୟ, କଚ୍ଛଭୂମିର ବିଶେଷଣ। (୮) ନାବିକମାନେ ସମୁଦ୍ରରେ ଏହି ଅଗ୍ନିପ୍ରାଚୀର ଦେଖି ସମୟସମୟରେ ଦିଗ ନିରୂପଣ କରନ୍ତି। (୯) ରଥାଙ୍ଗେ – ରଥଚକ୍ରଦ୍ୱାରା। (୧୦) କବନ୍ଧବନ୍ଧୁର ପଥେ – ଶବବନ୍ଧୁର ମାର୍ଗରେ। (୧୧) ନୀରନ୍ଧ୍ର – ଅତି ନିବିଡ଼।

କରବାଳେ ବାଟ କାଟି ପୃଥୁ ପୃଥୁଯଶାଃ,
ସେ ରଣଶୋଣିତ ପଙ୍କ-ପିଚ୍ଛିଳ-ପ୍ରାଙ୍ଗଣେ; (୧)
ସେ ସଙ୍କଟୁଁ ମୁକ୍ତ ହୋଇ ଶୋଭିଲେ ସେନାନୀ
ମେଘମୁକ୍ତ ଶଶୀ ଯଥା, ଶୀତାନ୍ତେ ଅଥବା
ନିର୍ମୋକନିର୍ମୁକ୍ତ (୨) ଯଥା ଊର୍ଦ୍ଧ୍ୱଫଣା ଫଣୀ;
ବାୟୁକୁ ସାରଥି ପାଇ ବିଭାବସୁ ପ୍ରାୟେ (୩)
ବିପିନେ, ଅମର୍ଷୀ ପୃଥୁ ଯୁଝି ଏକସ୍ଥାନେ
ଦୁର୍ବାର ବେନିଏ ହେଲେ ବଇରିବିଭ୍ରାଟେ, (୪)
ବିକଟ ଯବନ ଥାଟ ହଟିଲା ସତ୍ରାସେ
ଉତ୍‌କେଶର-ହରି- (୫) ଆଗେ କରିପଳ ପ୍ରାୟେ,
ଭଙ୍ଗଦେଲା ଠାବେ ଠାବେ ଯବନପୃତନା,
ପଞ୍ଚପଳାୟକବୃନ୍ଦେ ପଛୁଁ ହାଣି ହାଣି
ଦୁର୍ଦ୍ଦିନ ଭିଆଇ ତାଙ୍କ ରୁଧିର-ଆସାରେ, (୬)
ଚଡ଼ିନେଇଗଲେ ବୈରିଦଳ ବେନି ବୀରେ,
ମହାବାତ୍ୟା ଯଥା, ଅମା-ସୌରି-ସ୍ୱାତି ଯୋଗେ, (୭)
ସିନ୍ଧୁସହ ଦ୍ୱନ୍ଦ୍ୱି ଧାଏଁ ବିଶ୍ୱ ଧ୍ୱଂସିବାକୁ
ହିନ୍ତାଳକୁନ୍ତଳା-ବେଳା ଲଂଘି ଘୋରଘୋଷେ; (୮)
ରଥ, ଅଶ୍ୱ, ଗଜୁଁ ଖସିପଡ଼ି କେତେ ଯୋଧେ
ଚିତି ହୋଇ, ମୁହଁ ମାଡ଼ି, ଅଥବା ପାରୁଶେ,
ଖଣ୍ଡ ଖଣ୍ଡ ପିଷ୍ଟ ହେଲେ ଅଶ୍ୱଖୁରାଘାତେ,
ରଥଚକ୍ରେ, କରିପଦେ, ପଦାତିମର୍ଦ୍ଦନେ। (୯)
ସହସା ଯବନସେନାପତିର ସଙ୍କେତେ
ନୀରବ ଏ କାଳେ ହେଲା ସମରବାଜଣା,
ଶାନ୍ତିର ପତାକା ଦେଖି, ନିବର୍ତ୍ତି ସମରୁଁ,
ରହିଲେ ଯେ ଯହିଁ ତହିଁ ଶସ୍ତ୍ର କରେ ଧରି,
ଦିଶିଲା ଆଲେଖ୍ୟ ପ୍ରାୟେ ରକ୍ତାକ୍ତ ସେ ସ୍ଥଳୀ, (୧୦)
ଦୂତବାନାଧାରୀ ସାଦୀ ଯବନପ୍ରଣିଧି (୧୧)
ପୃଥୁଙ୍କ ଛାମୁରେ ଆସି ଜୁହାରି ବିନୟେ,
ଲେଖ ଦେଇ, ଆଜ୍ଞା ଘେନି, ବାହୁଡ଼ିଲା ଖରେ। (୧୨)
ପଲକେ ଏ ମହାଦୃଶ୍ୟ ହେଲା ଅନ୍ତର୍ହିତ
ଯୁଧିଷ୍ଠିରନେତ୍ରୁଁ ସେହି ସହ୍ୟଗିରିତଟେ
ଅଗ୍ନି-ଇଚ୍ଛାମତେ, ସ୍ୱପ୍ନ ଯଥା ଜାଗରଣେ। (୧୩)

□ □ □

(୧) ରକ୍ତପିଚ୍ଛିଳ— ରଣଭୂମି। (୨) ନିର୍ମୋକନିର୍ମୁକ୍ତ— କାତିଛାଡ଼ିଥିବା। (୩) ବିଭାବସୁ— ଅଗ୍ନି। (୪) ବୈରିବିଭ୍ରାଟେ— ଶତ୍ରୁମର୍ଦ୍ଦନରେ। (୫) ଉତ୍କେଶର ହରି— ସ୍ଫୀତକେଶର ସିଂହ। (୬) ଦୁର୍ଦ୍ଦିନ— ବର୍ଷାଦିନ। ରୁଧିର-ଆସାରେ— ରକ୍ତବୃଷ୍ଟିରେ। (୭) ଅମାବାସ୍ୟା, ଶନିବାର, ସ୍ୱାତି ନକ୍ଷତ୍ର ଏ ତିନିଙ୍କର ଏକତ୍ରଯୋଗ ମହାବାତ୍ୟାସୂଚକ। (୮) ହିନ୍ତାଳକୁନ୍ତଳାବେଳା— ହିନ୍ତାଳବନାକୀର୍ଣ୍ଣ ସମୁଦ୍ରତୀର। (୯) ଅଶ୍ୱଖୁର ଏବଂ ରଥଚକ୍ରରେ ଖଣ୍ଡ ଖଣ୍ଡ ହେଲେ, ହସ୍ତିପାଦରେ ଏବଂ ପଦାତିମାନଙ୍କ ମର୍ଦ୍ଦନରେ ପିଷ୍ଟହେଲେ। (୧୦) ଆଲେଖ୍ୟ— ଚିତ୍ର। (୧୧) ଦୂତପତାକାଧାରୀ, ଅଶ୍ୱାରୋହୀ ଯବନବାର୍ତ୍ତାବହ। (୧୨) ଲେଖ— ପତ୍ର। (୧୩) ଜାଗ୍ରତ ହେଲେ ସ୍ୱପ୍ନ ଯେପରି ଅନ୍ତର୍ହିତ ହୁଏ।

## ଉତ୍ସର୍ଗପତ୍ର

ପରମମାନନୀୟ, ଅଶେଷ ସଦ୍‌ଗୁଣନିଧାନ ଶ୍ରୀଳ ଶ୍ରୀଯୁକ୍ତ ବାମଣ୍ଡାଯୁବରାଜ ଶ୍ରୀ ସଚ୍ଚିଦାନନ୍ଦ ଦେବ ମହୋଦୟଙ୍କର ଗୌରବାନ୍ୱିତ ନାମକୁ ଏହି ପୁସ୍ତକର ଶିରୋଭୂଷଣ କରି, ନିଜର ଦ୍ୱିତୀୟ ଥର ବାମଣ୍ଡା ଦର୍ଶନର ସ୍ମାରକସ୍ୱରୂପ ଗ୍ରନ୍ଥକାର ଏହା ତାହାଙ୍କ ଶ୍ରୀକରକମଳରେ ଅର୍ପଣ କଲା।

ପୁରୀ
୨୦।୧୦।୧୮୯୫

ଶ୍ରୀ ରାଧାନାଥ ରାୟ

## [ ପ୍ରଥମ ସର୍ଗ ]

ମଗଧନିବାସୀ କ୍ଷତ୍ରବଂଶ-ଜାତ
ଯାମଳ ଭାଇ ଭଗିନୀ,
ଯଯାତି ବିମଳା ପ୍ରବେଶିଲେ ଆସି
ବହେ ଯହିଁ ପ୍ରବାହିନୀ
ଗୋନାସା-ପ୍ରଭବା ଶ୍ରୀବିରଜା-ଦେବୀ-
ଦେଉଳ-ପାବଚ୍ଛ ଧୋଇ,
ତୀର ଘନ ବନ- ଲକ୍ଷ୍ମୀ ଛାମୁରେ କି
ମଣି-ଦରପଣ ଥୋଇ ?
ଭବର ଭଙ୍ଗୁର- ବିଳାସକୁ ହସି
ଧବଳ ଫେନନିବହେ
ଯା ଶାଶ୍ୱତ-ସ୍ରୋତ ଶାଶ୍ୱତ-ଶଇଳୁଁ
ଶାଶ୍ୱତ-ସିନ୍ଧୁକୁ ବହେ।
ମାଳ ମାଳ ହୋଇ ନୀଳଦେହେ ଯାର
ରାଜହଂସେ କ୍ରୀଡ଼ୁଥାନ୍ତି,
ବ୍ୟୋମଚରୀଙ୍କର ମନେ ଉପୁଜାଇ
ମଲ୍ଲିକା-ମାଳର ଭ୍ରାନ୍ତି।
ଯା ତୀରେ ମଧ୍ୟାହ୍ନ- ତାପେ ବିଷ୍ଟି ହୋଇ
ରଙ୍ଗେ ଅଙ୍ଗ ଲୀଳା-ପଦ୍ମେ
ଦୋଳୁଥାନ୍ତି ସୁର- ବାଳା ଲତା ଦୋଳେ
ରକ୍ତାଶୋକ-ଲତା-ସଦ୍ମେ।
ବନଦେବୀଙ୍କର ଅଭିସାର-ଲୀଳା
ଚଳୁଥାଇ ଅବିରତେ
ଚନ୍ଦ୍ରାଲୋକେ ଯାର ଅଭ୍ର-ତାରକିତ (୧)
ବିଶାଳ-ଶୁଭ୍ର-ସୈକତେ।
ତରୁ-ବ୍ରତତୀର ପ୍ରେମେ ବନ୍ଧାବନ୍ଧି
ଛନ୍ଦାଛନ୍ଦି, ଘେନାଘେନି –
ଯୋଗୁଁ କୁଞ୍ଜ-ପୁଞ୍ଜେ ଅନ୍ଧାରିତ ଯାର
ଠାବେ ଠାବେ ନୀର-ବେଣୀ।
ଦେବଯଜ୍ଞ-ଭୂମି ସ୍ରୋତ ଯାର ସପ୍ତ-
ମାତୃକା-ମାଜଣା-ପୂତ, (୨)

(୧) ଅନେକ ନଦୀର ବାଲୁକାରେ ଉଜ୍ଜ୍ୱଳ ଅଭ୍ରକଣା ମିଶ୍ରିତ ଥିବାର ଦେଖାଯାଏ। (୨) ଐନ୍ଦ୍ରୀ, କୌମାରୀ, ବାରାହୀ ପ୍ରଭୃତି ସପ୍ତମାତୃକାଙ୍କର ମନ୍ଦିର ବୈତରଣୀ ତୀରରେ ଅବସ୍ଥିତ। ଏହି ମୂର୍ତ୍ତି ଏବଂ ଶୁଭସ୍ତମ୍ଭ ଯାଜପୁରର ପ୍ରଧାନ ପ୍ରାଚ୍ଚିକ ଦୃଶ୍ୟ ଅଟେ।

ସିକତିଲ ବକ୍ଷେ ଶ୍ରୀବରାହରୂପୀ (୧)
ବସତି ଯାର ଅଚ୍ୟୁତ।
ସରାଗେ ମୃଗୀଏ ବିହରୁଣଥାନ୍ତି
ତୀରେ ଯାର ଚରି ବୁଲି,
ପଦାଙ୍କ ତାଙ୍କର ପୂରି ଦେଉଥାଇ
ଚୂତ ମୁକୁଳର ଧୂଳି।
ଅନୁକ୍ଷଣେ ମଦ- ମତ୍ତ ପିକ-ବଧୂ-
ବିଧୂନନେ ଭୂମେ ଝରି,
ପାଦଚିହ୍ନ ଅନୁ- ସାରି-ନିଷାଦର
ଶଙ୍କା ନେଉଥାଏ ହରି।
ଏବେ ଯା ନଗରୀ ଥିଲା ଆଗେ ତାହା
ମହାନିକାଞ୍ଚନ ସ୍ଥଳ,
ବିହଙ୍ଗ-ସଙ୍ଗୀତେ ପୂର୍ଣ୍ଣ ନାନା ଜାତି
ତରୁ-ଲତାରେ ଗହଳ।
କଷ୍ଟଫେଡ଼ କଣ୍ଠ- ତାନପୂରା ତହିଁ
ବାଜୁଥାଇ ଦିନଯାକ, (୨)
ଦିନ ଅନ୍ତେ ପୁଣି ଧରୁଥିଲେ ତାନ
ଚକ୍ରବାକୀ ଚକ୍ରବାକ।
ଭଦଭଦଳିଆ ମାଳେ ମାଳେ ନଭେ
ପ୍ରକାଶି ବିଚିତ୍ର ତନୁ
ରଚୁଥିଲେ ରଙ୍ଗେ ନବ-ଜୀମୂତର
ମୁହୂର୍ତ୍ତ-ମଣ୍ଡନ ଧନୁ।
ମେଘାଗମେ ଯହିଁ ପୁଷ୍ପିତ କଦମ୍ବେ
ଶିଖଣ୍ଡୀ-ତାଣ୍ଡବ-ରଙ୍ଗ
ଦେଖି ଆସୁଥିଲା ପ୍ରତେ ଇନ୍ଦ୍ରଜାଲ
ଭିଆଇଛି କି ଅନଙ୍ଗ?
ସାରୀ, ଶୁଆ, ଶ୍ୟାମା ତୁତି, ଚଷାପୁଅ,
ଦୟାଳୁ, ପୁଣି ମୁନିଆ,
ନେତ୍ରୋତ୍ସବ କର୍ଣ୍ଣୋ- ତ୍ସବ ବିହୁଥିଲେ
ସେ ବନେ ହୋଇ କୁଣିଆ।
ନୀଳବନ-ବ୍ୟୋମ- ନିକଷେ ହଳଦୀ-
ବସନ୍ତ ସ୍ୱକାନ୍ତି-ସୁନା
ମୁହୁର୍ମୁହୁ କଷି କରୁଥାଇ ବାର-
ବାଣୀ ସୁନା ଦର୍ପ ଚୂନା।
ନଦୀକୂଳ-ବନ୍ଧୁ ସୁଖେ ବସା ବାନ୍ଧି
ନଦୀକୂଳ ତରୁ ଡାଳେ

ବିରଜା ଦେବୀଙ୍କ ବୈତାଳିକରୂପେ
ଖଟୁଥାଇ ଯଥାକାଳେ।
ଝଙ୍କାଳିଆ-ଛାୟା- ତରୁ ମଞ୍ଜୁକୁଞ୍ଜେ
ଶୁଭୁଥାଇ ଅନୁକ୍ଷଣ
ବନଦେବୀଙ୍କର ଝୁଣ୍ଟିଆ ପରାଏ
ଝିଙ୍କାରି-ଝଙ୍କାର-ସ୍ୱନ।
ମନ୍ଦ ଗନ୍ଧବହ ଦୋହଲାଉଥାଇ
ପଲ୍ଲବ-ପୁଷ୍ପ-ମୁକୁଳ,
ହେଉଥାଇ ପ୍ରତେ ନନ୍ଦନ କି ସତେ
ହୋଇ'ଛି ଏ ବନେ ଠୁଳ।
କି ଅବା ମଞ୍ଜୁଳ ଆସିଛି ଓହ୍ଲାଇ
ଅଳକାପୁରୁଁ ବୈଭ୍ରାଜ? (୩)
ଅବା ଗନ୍ଧାଘର ଗୁପତେ ରଖିଛି
ପୁଷ୍ପାକର ଋତୁରାଜ?
ଚମ୍ପା, ନାଗେଶ୍ୱର, ପାଟଳୀ, ବକୁଳ,
ମୁଚୁକୁନ୍ଦ, ତମାଳାଦି
ତରୁଏ ପ୍ରସୂନ ପଲ୍ଲବ ଗହଳେ
ସ୍ଥଳୀକି ଥିଲେ ଆଚ୍ଛାଦି।
ଅସଙ୍ଗତ ଯେବେ ନୁହନ୍ତା ମହତେ
କ୍ଷୁଦ୍ରର ତୁଳା ପ୍ରସଙ୍ଗ,
ଛୁରିଅନା-ପୁଷ୍ପ- ପରାଗ-ପିଶଙ୍ଗ
ଏକମାତ୍ର କାଇଜଙ୍ଗ- (୪)
ସହିତେ ଏ ମର୍ତ୍ତ୍ୟ ନନ୍ଦନର ଏକା
ହୁଅନ୍ତା ଏବେ ତୁଳନା,
ମାତ୍ର ଏ ତୁଳନା ଅଶୋଭନ ସିନା
ଯେସନ ଶ୍ରୀଫଳେ ଚଣା।
ଶ୍ରୀବିରଜା ଦେବୀ ମନ୍ଦିର ସନ୍ନିଧେ
ଯାମଳ ଭଉଣୀ ଭାଇ
ଅତି ନିକାଞ୍ଚନେ ଦିନ ନେଲେ ଶକ୍ତି-
ସେବନେ ମତି ବଳାଇ।
ଏକରୂପ ଏକ- ବେଶ ବେନିଙ୍କର
ନଥିଲା ତିଳେ ବିଶେଷ,
ପୁଂସ ପ୍ରାଏ ସଦା ବିମଳାର ବେଶ,
ପୁଂସ ପ୍ରାଏ ଥିଲା କେଶ।
ଶିକ୍ଷାଫଳେ ବେନି ବାଲ୍ୟେ ଲଭିଥିଲେ
ଅସ୍ତ୍ରଚାଳନାରେ ସିଦ୍ଧି,

(୧) ବରାହନାଥ ଯାଜପୁରର ପ୍ରଧାନ ଦେବତା। ଏହାଙ୍କ ମନ୍ଦିର ବୈତରଣୀ ବକ୍ଷରେ ଅବସ୍ଥିତ। (୨) ବନଭୂମିର ଗୋଟିଏ ପ୍ରଧାନ ଗାୟକ ପକ୍ଷୀ। (୩) ବୈଭ୍ରାଜ– କୁବେରଙ୍କ ବହିରୁଦ୍ୟାନ. (୪) କାଇଜଙ୍ଗ– ଏ ବନ କଟକରୁ ଛଅ କ୍ରୋଶ ଦୂରରେ ମହାନଦୀର ଦକ୍ଷିଣକୂଳରେ ଅବସ୍ଥିତ। ଚମ୍ପା, ତମାଳ, ନାଗେଶ୍ୱର, ଅଶୋକ, ଛୁରିଅନା ବିଶେଷତଃ ଛୁରିଅନା ବୃକ୍ଷରେ ଏ ବନ ପରିପୂର୍ଣ୍ଣ। ବନର ଦୈର୍ଘ୍ୟ ତିନି କ୍ରୋଶ ଏବଂ ପ୍ରସ୍ଥ ଅର୍ଦ୍ଧକ୍ରୋଶ। ବହୁକାଳ ପୂର୍ବେ ସମ୍ଭବତଃ ଏ ଗୋଟିଏ ଉଦ୍ୟାନ ଥିଲା।

ଗମୁଥିଲେ ଦିନ ସେ ମହାବିଜନ–
ବନେ ଆଚ୍ଛି ପାରିଧି ।
ଖେଳୁଥିଲା ନବ ଲାବଣ୍ୟ ତରଙ୍ଗ
କିଶୋରୀ କିଶୋର କାୟେ,
ପାରିଧିର ବେଶେ ଦିଶୁଥିଲେ କି ସେ
ଅଶ୍ୱିନୀକୁମାର ପ୍ରାଏ ।
ତରୁଣ ପୁନାଗ ତରୁ ପ୍ରାଏ ତନୁ
ମସୃଣ ସ୍ନିଗ୍ଧ ଉଜ୍ଜ୍ୱଳ,
ଏକ ବୃନ୍ତେ ବେନି ପୁଷ୍ପ କି ସେ, ଏକ
ମୃଣାଳେ ବେନି କମଳ ?
ମାତୃହୀନ ବେନି, ଦାରୁଣ ସାବତ-
ମାତାର କ୍ରୂର ମନ୍ତ୍ରଣେ,
ସିଂହାସନ-ଭାଗୀ ତାତ ହୋଇଥିଲେ
ଭଗାରୀ ତାଙ୍କ ଛାଟନେ
ଯେଣୁ ନିଜ ଦେଶେ, ସେ ତେଣୁ ତରାସେ
ଆସିଣ ଥିଲେ ପଳାଇ,
ଭାଗ୍ୟକୁ ଆଦରି ପଡ଼ିଥିଲେ ତହିଁ
ଦେବୀ-ପାଦ-ପଦ୍ମ ଧାଇ ।
ଥିଲେ ଏହି କାଳେ କପାଳେଶ-ଦୁର୍ଗେ
ହିରଣ୍ୟ-ବର୍ମ ଭୂପତି,
ଉତ୍ତର-କୋଶଳେ ଟେକାଇଲେ ଯେହୁ
ଯଶୋରୂପ ଶ୍ୱେତଛତି ।
ଲଳିତା ରାଜାର ଏକମାତ୍ର ସୁତା
ରୂପେ ଗୁଣେ ଅନୁପମା,
ନାରାୟଣ-ବକ୍ଷ ତେଜି ମର୍ତ୍ତ୍ୟପୁରେ
ଅବତୀର୍ଣ୍ଣ କିବା ରମା ?
ଅବା ମର୍ତ୍ତ୍ୟେ ବିଜେ ଅମର୍ତ୍ତ୍ୟ-ଲାବଣ୍ୟ-
ନିଧିର ଅଧିଦେବତା,
ମଦନର ଜୈତ୍ର- ଅସ୍ତ୍ର ମଦାଳସା,
କିମ୍ବା ରୂପକଳ୍ପଲତା ।
ରାଜା ରାଣୀଙ୍କର ନୟନ-ପିତୁଳା
ଥିଲା ସେ ରାଜଦୁଲଣା,
ପୂରୁଥିଲା ତା'ର ଉର୍ଦ୍ଧ୍ୱ ବେଳକୁ
ଯେବଣ ଯେବେ ବାସନା ।
ସୁକୁମାର କଳା ସଙ୍ଗେ ଶସ୍ତ୍ରବିଦ୍ୟା
ଶିଖିଥିଲା କଳାବତୀ,
ମୃଗୟା-ବିହାରେ ଅନୁକ୍ଷଣେ ତେଣୁ
ବଳାଉଣଥିଲା ମତି ।
ମୃଗୟା-ବିହାରେ ସଖୀ ସଙ୍ଗେ ଦିନେ
ବୈତରଣୀ-ତୀର-ବନେ
ପ୍ରବେଶି ସୁକେଶୀ ଦରଶନ ଲାଗି
ଗଲା ଦେବୀଙ୍କ ସଦନେ ।

ପାରିଧି ସକାଶେ ବିମଳା ସେ ଦିନ
ଯାଇଥିଲା ବହୁ ଦୂରେ ;
ପୁଷ୍ପ ତୋଳି ହାର ଗୁନ୍ଥୁଥିଲା ବସି
ଯଯାତି ଦେବୀ ଛାମୁରେ ।
ଫୁଲ ଗୁନ୍ଥୁ ଗୁନ୍ଥୁ ଚକିତେ ସହସା
ଦେଖିଲା ଯୁବାମଣ୍ଡଳି,
ମୃଗୟାର ବେଶେ ଅଗ୍ରେ ଉଭା ଆସି
ଅପୂର୍ବ-ଶୋଭା-ପିତୁଳି ।
ବେଗେ ଲୁଚିଯାଇ ଦେଉଳର କୋଣେ
ସଙ୍ଗିନୀ-ଦଳେ ବାଛୀକି
ଦେଖି ସେହିକ୍ଷଣି ବିନାମୂଲ୍ୟେ ନିଜ
ହୃଦୟକୁ ଦେଲା ବିକି ।
ଅସମ୍ଭାଳେ ତା'ର ମନ ଲାଖିଗଲା
ମୋହିନୀର ମୁଗ୍ଧାନନେ,
ଲୌହ ଯଥା ଆହା ଅୟସ୍କାନ୍ତମଣି-
ଶଳାକାର ଆକର୍ଷଣେ ।
ସବୁ ସୁନ୍ଦରୀଏ ସଜ ହୋଇଥିଲେ
ମୃଗୟାର ପରିଚ୍ଛଦେ,
ଅଙ୍ଗ ଦିଶେ ଯେହ୍ନେ ଅଳତା ବୋଳା କି
ହୋଇଛି ଦ୍ୱିରଦ-ରଦେ ।
ରବିକର ପ୍ରାଏ ଜଳେ ଗଣ-ବଣା-
ଏଣୀଦୃଶାଙ୍କର ଭୂଷା,
ରଙ୍ଗ-ଅଙ୍ଗତ୍ରାଣେ ଆବୃତ ସରବେ,
ରଙ୍ଗଘନେ ଯେହ୍ନେ ଉଷା ।
କଣ୍ଠକେ ମୃଣାଳ ପ୍ରାୟେ ବରଭୁଜ
ଯୁଗ୍ମ ଶୋହେ ଧନୁ ତୀରେ,
ପୃଷ୍ଠେ ଦୋଳେ ବେଣୀ, ହେମ କଟିବନ୍ଧ
ଝଟକେ କୃଶ-କଟୀରେ ।
ଯୌବନର ମାଠେ ମଠା ହୋଇ ଅଙ୍ଗ-
ଯଷ୍ଟି କିବା ପଲ୍ଲବିତା,
ଶାରଦ-ଶିଶିର- ନୀରେ ସ୍ନାତ କି ସେ
ଲତିକା ଅପରାଜିତା ?
ବସାଇଛି ହସ୍ତେ ବିହଙ୍ଗ-ସଂହାରୀ
ବାଜ ବଉରୀ କେ ନାରୀ,
ଚକ୍ଷୁପାଙ୍ଗ-ତଟେ ସୁତୀକ୍ଷ୍ଣ କଟାକ୍ଷ
ମନ-ବିହଙ୍ଗ-ସଂହାରୀ ।
ସୁରଭି ନିଶ୍ୱାସ ବାସେ ଲୁବ୍ଧଚିତ୍ତ
ପ୍ରସୂନ ଛାଡ଼ି ମଧୁପେ
ଯୂଥେ ଯୂଥେ ଉଡ଼ି ପଡୁଥିଲେ ଆସି
ସେ ରୁଦ୍ର-ସୁନ୍ଦର-ରୂପେ ।
ଅପ୍ସରୀ-ନିନ୍ଦିତ ଏ ସୁନ୍ଦରୀବୃନ୍ଦେ
ଝଟକ-ହାଟକ-ଗୋରୀ,

ଶୋଭା-ସ୍ୱର୍ଗ-ପୁର- ନ୍ଦରୀ ପ୍ରାୟେ ରାଜେ
ଉତ୍କଳ-ରାଜ-କିଶୋରୀ ।
ବିକସିଥିଲେହେଁ କୋଟି କୋଟି ତାରା
ନିର୍ମଳ-ଶାରଦ-ନଭେ,
ପୁନର୍ବସୁ ସଙ୍ଗେ ଆନ କେହି କେବେ
ସରି କି ପ୍ରଭାବିଭବେ ?
ମଞ୍ଜୁ-ମଧୁ-କାଳେ କୋଟି କୋଟି ଫୁଲ
ଥିଲେହେଁ ଫୁଟି ଉଦ୍ୟାନେ,
ଚୂତ-ମୁକୁଳକୁ ମୁରୁଛି ମଧୁପ
ରସଇ କି କେବେ ଆନେ ?
ତେସନ ରସିଲା ଯଯାତିର ମନ
କିଶୋରୀ-ଶୋଭା-ସମ୍ଭାରେ,
ଶିକାରୀ ହୋଇ ସେ ପଡ଼ିଲା ଶିକାରୀ
ଫୁଲ-ଧନୁ-ବାଗୁରାରେ ।
ଦେବୀଙ୍କ ଛାମୁରେ ମଧ୍ୟେ ରାଜବାଳା
ବେନି ସଖୀ ବେନି ପାଶେ,
ତିନି ମୂର୍ତ୍ତି ଏକ ରେଖାରେ ଦିଶଇ
ଇଲ୍ବଳା ଯଥା ଆକାଶେ । (୧)
ମୋହିନୀକି କିବା ପହଣ୍ଡ ମଣାଇ
ଆଣନ୍ତି ବେନି ଅପ୍ସରୀ,
ଲକ୍ଷ୍ମୀ ବେନି ପାଶେ ସମୁତ୍‌ଥିତ କିବା
କ୍ଷୀରୋଦୁଁ କଳ୍ପ-ବଲ୍ଲରୀ ।
ଠିକେ ବର୍ଣ୍ଣିବି ମୁଁ ହେମା-ରୂପ, ହେମା-
ଚିକୁର ଭାର ପରାଏ,
ଓହ୍ଲାଇ ଯାଉ ମୋ ଭାରତୀ ତା ଶିର-
କମଳୁଁ ପୟର ଯାଏ ।
ସୁମୁଖୀ ଚନ୍ଦ୍ରମା- ମୁଖ ଦେଖି ମୁଗ୍‌ଧ
ମାନସ ଏସନ ପାଞ୍ଚେ –
ବିଶ୍ୱକାନ୍ତି-ସାର ବୋଲି ଅବା ମାର
ଢ଼ାଳିଅଛି ପ୍ରେମ-ଛାଞ୍ଚେ ।
ହେମାଙ୍ଗୀର ମାଙ୍ଗ ଭାଙ୍ଗେ ମଥାମଣି
ବିକିରଇ ଦିବ୍ୟ ପ୍ରଭା,
ମଳୟ-ଶ୍ୱାସିନୀ ଦକ୍ଷିଣା-ଲଲାଟେ
ଅଗସ୍ତ୍ୟ-ତାରା ସେ ଅବା ?
ମୁକ୍ତ-କେଶୀ କେଶ ଭଲା ମଧ୍ୟେ ଗନ୍ଧ-
ଅଳକା କି ମନୋହାରୀ,
ତାରକିତ-ନିଶା ଦିବା ମଧ୍ୟେ ସନ୍ଧ୍ୟା
ସୀମା କି ଦିଶଇ ବାରି ?
ବେନି କର୍ଣ୍ଣେ ସ୍ୱର୍ଣ୍ଣ- ତାଟଙ୍କ କିବା ସେ
ରବି ଶଶୀ ଏକା ସ୍ଥଳେ ?

ନେତ୍ର-ନୀଳାବ୍ଜ କି ଉଦିତ ମୁଦ୍ରିତ
ଭଜଇ ପଲକ ଛଳେ ?
ଲଳିତାର ସ୍ମିତ- ଲଳିତ-ଅଧର
ଉପମାକୁ କରେ ଛି ଛି,
ଯୌବନ-ପବନ – କ୍ଷୁଭିତ କିକି ସେ
ରାଗ-ସାଗରର ବୀଚି ?
ଥୋପି ପଡୁଅଛି କି ରଙ୍ଗେ ରକ୍ତିମା
ସେ ରଙ୍ଗ ଓଷ୍ଠ ଅଧରେ,
ଦନ୍ତପନ୍ତି ତହିଁ ମୋତିପନ୍ତି କି ସେ
ମାଣିକ୍ୟ-ପଟୁ କୁହରେ ?
ଭିଡ଼ା ହୋଇ ଉଚ୍ଚ ଘଞ୍ଚ ସ୍ତନ-ଯୁଗ୍ମ
କାଞ୍ଚନ-କଞ୍ଚୁକେ ବନ୍ଧ,
ବିକଚ-କୁସୁମ ଶୀତାନ୍ତେ କି ପକ୍ୱ
ପାଣ୍ଡୁର ପର୍ଣ୍ଣେ ପିନଦ୍ଧ ?
ସ୍ତନ ଜଘନର ମଧ୍ୟେ କଟୀ କାମ
ତୀର୍ଥ ପ୍ରାଏ ପ୍ରତିଭାତ,
ତୀର୍ଥ-କାକ ପ୍ରାୟେ (୨) ଲାଖି ନେତ୍ର ଯହିଁ
କରୁଥାଇ ଆତଯାତ ।
ଘନକଘନାର ଘନ ଜଘନ କି
କାମ ବଣିକର ଫନ୍ଦା ?
ଉରୁ-ଯୁଗେ କାଞ୍ଚି- ଦାମେ ମରକାମ-
କରୀ କି ହୋଇଛି ବନ୍ଧା ?
ଆହା, ସେ ବାମୋରୁ ! କାମ-ବୈଜୟନ୍ତ-
ତୋରଣ-କନକ-ସ୍ତମ୍ଭ !
କଳ୍ପନା ପଶଇ ଯହିଁରେ ନ ସହି
କବି-ବର୍ଣ୍ଣନା-ବିଳମ୍ବ ।
ଶାରଦ-ପ୍ରଭାତେ ଶିଶିର-ମଣ୍ଡିତ
ଧିକ୍‌କାରି ସ୍ଥଳକମଳ,
ରକ୍ତିମା ଉଗାରି ବିରାଜଇ ରଦ୍ଧ-
ମଣ୍ଡିତ ପାଦଯୁଗଳ ।
ଝଳି ଭାଳତଳେ ବଙ୍କିମ-ଭ୍ରୂଲତା
ସରଳେ ଲୀଳା-ତାଣ୍ଡବ,
ମନେ ଆସେ ପାଞ୍ଚ ଆଞ୍ଚି ଶାର୍ଙ୍ଗ-ଧନୁ
ଚଳେ ଅବା ମନୋଭବ ।
ରବିକରେ ଦର- ଫୁଲ୍ଲ ଅରବିନ୍ଦେ
ଯେଉଁ ଆଭା କରେ କ୍ରୀଡ଼ା,
ସେ ଆଭା ସଘନେ ବ୍ରୀଡାବତୀ-ଗଣ୍ଡେ
ବୋଲି ଦେଉଥିଲା ବ୍ରୀଡ଼ା ।
ସୁନ୍ଦରୀଙ୍କ ଗଣ୍ଡ- ଉଦ୍ୟାନୁ ଏ ଫୁଲ
କମାଣେ ଯୋଖି ଆହ୍ଲାଦେ,

(୧) ଇଲ୍ବଳା – ଆର୍ଦ୍ରା ନକ୍ଷତ୍ରର ନିକଟବର୍ତ୍ତୀ ଶ୍ରେଣୀବଦ୍ଧ ୩ଟି ତାରା । (୨) ତୀର୍ଥକାକ – ଉଭୟ ତୀରସ୍ଥିତ ବଳି ତଣ୍ଡୁଳଲୋଭରେ ନଦୀଗର୍ଭରୁ ବାହାରି ପାରେ ନାହିଁ । ସର୍ବଦା ଦୁଇକୂଳ ମଧ୍ୟରେ ଗମନାଗମନ କରୁଥାଏ ।

ଫୁଲଶର ପଞ୍ଚ ଫୁଲଶର କାର୍ଯ୍ୟ
ଏକହିଁ ଶରେ ସମ୍ପାଦେ।
ଜଗୁଆଳି ସଦା ଜେମାର ଗହଣେ
ଅଲକ୍ଷିତେ ଫୁଲଶର,
ନିର୍ଦ୍ଦୟେ ସେ ଶରେ ବିନ୍ଧି ଯଯାତିର
ହୃଦୟ କଲା ଜର୍ଜର।
ସୁନେତ୍ରା ଏକାଳେ ଯଯାତି ଆଡ଼କୁ
ଅଜ୍ଞାତେ ଡାକି ଚାହାଁଣି,
ସଂହାରି ନେଲା ତା କି ଛଟାରେ ଖେଳା-
ଖଞ୍ଜନ ଲେଉଟା ଆଣି।
ତୁଳନା ଏକା ସେ ସେହି ତାର ସିନା
ହେଲା ଯେ ଶୋଭା ସେ ବେଳେ,
ହରନେତ୍ରାନଳେ ଦଗ୍ଧ ମଦନକୁ
ଜିଆଇଥାନ୍ତା ତା ହେଳେ।
କାମ କାଣ୍ଡ ସଙ୍ଗେ ସେ କଟାକ୍ଷ ଗଲା
ଯଯାତି ମରମେ ପଶି,
ନବ-ପ୍ରେମ-ସ୍ରୋତ ଉଲ୍ଲାସେ ପଡ଼ିଲା,
ଧୈର୍ଯ୍ୟତଟ ମୂଳ ଧସି।
ତନୁ ଲୋମାଞ୍ଚିଲା, ସର୍ବାଙ୍ଗୁ ବହିଲା
ସ୍ୱେଦ ନୀର ଦରଦରେ,
ନାସିକାପୁଡ଼ାରୁ ବହିଲା ସଘନେ
ତପତ ଶ୍ୱାସ ପ୍ରଖରେ।
ସ୍ତମ୍ଭିତେ ରହିଲା ଯୁବାମଣି ବାଳା
ସେ କାଳ ଠାଣିକି ଧାୟି,
ମନୋନଦୀ ତାର ଉଚ୍ଛଳେ ସେ ଶୋଭା
ସିନ୍ଧୁରେ ମିଶିଲା ଯାଇ।
ଆଣୋଇ ଆୟୁଧ ଥୋଇ ଅବନୀରେ
ଓଳଗି ହେଲେ ଅବଳା,
କୋରକିତ କରି କରକୁ ଅବନୀ–
ଲମ୍ବିତ-ଲମ୍ବକୁନ୍ତଳା।
ଶୋଭାର ତରଙ୍ଗେ ତରଙ୍ଗ ଉଠିଲା
ପୁଣି ସେ ସୁନ୍ଦରୀକୁଳେ,
ଅମଳ-କପୋଳେ ମଣିକର୍ଣ୍ଣପୂର
ଏକାଳେ ଦୋଳି ମୃଦୁଳେ।
ସହସା ଚନ୍ଦ୍ରମା- ହାଟ ଭାଙ୍ଗିଗଲା,
ଦେବୀ ଦରଶନ ସାରି,

ଦେଉଳୁଁ ବାହାରି ଯେଝା ବାଟ ତହୁଁ,
ଚଳିଲେ ଯେତେକ ନାରୀ।
ଉଭେଇ ଗଲେ ସେ ଗହନ-ଉଦ୍ଭାଳେ
ବିଦ୍ୟୁଲ୍ଲତା ଯଥା ଘନେ,
ମନୋମୁଗ୍ଧକର ସ୍ୱପନ-ସମ୍ପଦ
କିମ୍ବା ଯଥା ଜାଗରଣେ।
ପଶ୍ଚିମାଦ୍ରି ପୃଷ୍ଠେ କୁଙ୍କୁମ-ବରଣା
ଶାରଦ ସନ୍ଧ୍ୟାର ଲୀଳା,
ଅନୁକରି ସେହି ଜନଶୂନ୍ୟ ବନେ
ବିଲୀନ ହେଲେ ଛଇଳା।
ବିସ୍ମୟେ ସ୍ତମ୍ଭିତେ ଦେଖିଲେ ଯଯାତି
ପ୍ରସ୍ଥାନ ନୃପସୁତାର,
ନବପ୍ରେମେ ଭୋଳ ହୋଇ ବିଶ୍ୱ ତାକୁ
ଦିଶିଲା ଆନ ପ୍ରକାର।
ଫିଟିଗଲା ଯୁବା ନୟନ ଅଗ୍ରତେ
ନବ ପ୍ରେମ କାବ୍ୟଗ୍ରନ୍ଥ,
ପ୍ରେମ-ଗୁରୁଠାରୁ ଶିଖିଲା ସେ ଆତ୍ମ-
ବିସ୍ମୃତିର ଆଦ୍ୟ ପନ୍ଥ।
ଅନାବିଳ କରି ଦେଲା ନବ-ପ୍ରେମ
କାମନା ସ୍ରୋତର ଧାରା,
କାମନା ନଦୀର କଳୁଷ ଶୋଧନେ
ପ୍ରେମ ସେ ଅଗସ୍ତ୍ୟ ତାରା। (୧)
ପ୍ରେମଗଦଗଦେ କିଶୋର-ତିଳକ
ଭାଳିଲା ମନେ ଏସନ,
"କଷ୍ଟ ସହିଥିଲି ବୋଲି ସିନା ଆଜ
ଧନ୍ୟ ହେଲା ଏ ଜୀବନ।
ସହିଲାକୁ ସିନା ହୀରକ ଦାରୁଣ–
ଅୟୋଘନ-ଘାତ-ଦୁଃଖ (୨)
ଅବତଂସ ଛଳେ ଲଭଇ ସୁନ୍ଦରୀ-
କପୋଳ-ଚୁମ୍ବନ-ସୁଖ।
କଷ୍ଟଫଳେ ସିନା ଦେଖିଲି ପ୍ରବାସେ
ଆସି ଏ ମର୍ତ୍ତ୍ୟ-ଚନ୍ଦ୍ରମା,
ବିଶ୍ୱସୀମନ୍ତିନୀ ଶିରୋମଣି ରାମା
ବିଶ୍ୱଶୋଭା-ତିଳୋତ୍ତମା।
ଧନ୍ୟ ଏ ଉତ୍କଳ ଭୂମି ଗର୍ଭେ ଧରି-
ଥିଲା ଏ ଚନ୍ଦ୍ରମାମୁହାଁ,

(୧) ଅଗସ୍ତ୍ୟ ତାରା ଉଦୟରେ ନଦୀର କଳୁଷିତ ପ୍ରବାହ ନିର୍ମଳ ହେବାର କିମ୍ବଦନ୍ତୀ ଅଛି। ହୃଦୟରେ ବିଶୁଦ୍ଧ ପ୍ରେମ ଉଦିତ ହେଲେ ଜୀବନପ୍ରବାହ ସେହିପରି ନିର୍ମଳ ହୁଏ। ଅଗସ୍ତ୍ୟ ଦକ୍ଷିଣାକାଶର ଗୋଟିଏ ଅତ୍ୟୁଜ୍ଜ୍ୱଳ ତାରକା। ଶରତର ଆରମ୍ଭରୁ ଗ୍ରୀଷ୍ମର ଶେଷ ପର୍ଯ୍ୟନ୍ତ ଏହା ଦେଖାଯାଏ। (୨) ଅୟୋଘନଘାତଦୁଃଖ– କିମ୍ବଦନ୍ତୀ ଅଛି ଯେ ହାତୁଡ଼ିରେ ପ୍ରହାର କଲେ ଯେଉଁ ହୀରା ଚୂର୍ଣ୍ଣ ହୁଏ ନାହିଁ, ତାହା ପ୍ରକୃତ ହୀରା। ପ୍ରକୃତ ହୀରା ପ୍ରହାରର କଷ୍ଟ ସହ୍ୟ କଲା ଉତ୍ତାରୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ବୋଲି ପରିଗଣିତ ହୁଏ ଏବଂ ସହିଷ୍ଣୁତାର ପୁରସ୍କାରସ୍ୱରୂପ ସୁନ୍ଦରୀମାନଙ୍କ କର୍ଣ୍ଣଭୂଷଣ ହୋଇ ତାହାଙ୍କର କପୋଳ ଚୁମ୍ବନର ସୁଖ ଅନୁଭବ କରେ।

ଚକ୍ଷୁ ଲଭି ଚକ୍ଷୁ- ଫଳ ଏତେ କାଳେ
ଅରଜିଲି ସିନା ମୁହିଁ।
ରଚିଥିଲେ ବିଶ୍ୱ- ଶିଳ୍ପୀ ଏ ଶୋଭାଙ୍ଗୀ
କେତେ କଷ୍ଟ ଏଥି ଲାଗି,
ବିଶ୍ୱ-ଲୋଚନକୁ କବି-ବଚନକୁ
ପବିତ୍ର କରିବା ଲାଗି ?
ଅନୁମାନେ ଆସେ ଆଗେ ବିଧି ସାଧି
ପଦ୍ମେ ଚନ୍ଦ୍ରେ ହାତବଳା,
ଅଭ୍ୟାସେ ପାଟବ ଅରଜି ପଛକୁ
ଗଢ଼ିଲେ ଏହି ଅବଳା।
ଯେ ଯହିଁ ଶୋଭିବ ଉପମାର ଦ୍ରବ୍ୟ
ଏକତ୍ରେ ସକଳ ଲିହି,
ଏକଠାରେ ଶୋଭା ଦେଖିବାକୁ ଅବା
ଏ ରୂପ ବିହିଲେ ବିହି।
ସୁଷମାର ପୁଷ୍ପ ଉପବନ ପ୍ରାୟେ
ଆଭାସେ ଉତ୍କଳ ଧରା,
ପୁଷ୍ପ-ସୁକୁମାରୀ ଏ କୁମାରୀ ଏଥି
ସାରପୁଷ୍ପ ହେବ ପରା ?
ପୁଣ୍ୟଭୂମି ନୋହି ଥିଲେ କି ଏ ବାଳା
ଜନମିଥାନ୍ତା ଉତ୍କଳେ,
ତ୍ରିଦଶ-ସୁନ୍ଦରୀ ସୌଦାମିନୀ କେବେ
ସ୍ଫୁରେ କି ବସୁଧା ତଳେ ?
ଅନାଘ୍ରାତ-ଫୁଲ ଅନଙ୍ଗୁଳି-ଲୂନ-
କିଶଳୟ ପ୍ରାୟେ ତନୁ,
ଥାଉଁ ଏ ବାଳାର ଫୁଲଧନୁଭାର
ବହେ କିପାଁ ଫୁଲ-ଧନୁ ?
ନରେ ସ୍ୱର୍ଗେ ଟେକି ଦେବାକୁ, ଅମରେ
ମର୍ତ୍ତ୍ୟେ ଆଣିବାକୁ ଝିକି,
ଭୁବନ-ଲାବଣ୍ୟ ଲକ୍ଷ୍ମୀ ଏହି ସିନା
ଭାଜନ ଏକା ତହିଁକି।
ମଗଧେ, ମୈଥିଳେ, ଅଙ୍ଗେ, ବଙ୍ଗେ, ପୁଣି
ଦେଖିଛି କେତେ ସୁନ୍ଦରୀ,
ଏ ଯୋଷା-ଚରଣ ଘଷା ପଥରକୁ
ହେବେ ଟିକି କେହି ସରି ?
ଆନ ନାରୀ ସିନା ମର୍ତ୍ତ୍ୟର ତଟିନୀ,
ଏ ଯେ ମନ୍ଦାକିନୀ ଧାରା !
ଆନ ନାରୀ ସିନା ମର୍ତ୍ତ୍ୟର କୁସୁମ,
ଏ ଯେ ଗଗନର ତାରା !
ମାତ୍ର, ଆହା, କାହିଁ ଅକିଞ୍ଚନ ମୁହିଁ,
କାହିଁ ଉତ୍କଳେଶ-ସୁତା ?

ନୋହିବା କଥାକୁ ମନେ ପୋଷି ମନ
ଥୟ ଧରୁ ନାହିଁ ବୃଥା।
ଆକୁଳ ହେଉଛି ବାହୁଡ଼ି ନ ଜାଣି
ଶୋଭାଙ୍ଗୀ-ଶୋଭା-ଅରଣ୍ୟ,
ବାକୁତ ହୃଦୟ କୁରୁକ୍ଷେତ୍ରେ ଯଥା
ଚକ୍ରବ୍ୟୂହେଁ ଅଭିମନ୍ୟୁ।
ରାଜରକ୍ତ ଦେହେ, କ୍ଷତ୍ରବୀର୍ଯ୍ୟ ହୃଦେ
ଧରି ଏଥି କେଉଁ ଫଳ ?
ନ ବିକାଏ ଦେହ ସଂସାରେ, ବିକାଏ
ଅବସ୍ଥା ସିନା କେବଳ।
ଭାଗ୍ୟଧର-ଭାଗ୍ୟ ଆକାଶେ ଫୁଟିବ
ତାରାରୂପେ ଏ ନବୀନା,
ମୋହ ପକ୍ଷେ ନୁହେଁ ଆଶାର ତାରା ଏ
ଦୁରାଶାର ଉଲ୍‌କା ସିନା।
ବାମନର ଚନ୍ଦ୍ର ପରାୟେ ମୋହର
ଦୁର୍ଲ୍ଲଭ ଏ ରାଜବାଳା,
କି ଶ୍ରେୟେ ଗୁନ୍ଥିବି ଦୁରାଶାର ସୂତ୍ରେ
ଆକାଶ-କୁସୁମ-ମାଳା ?
ବୃଥା ନ ବଳାଇ ମତିକି ଏ ବାଳା
ମଉଳି-ରତନ-ଲାଭେ,
ନୟନ ରଞ୍ଜନ ନବ ଇନ୍ଦ୍ରକଳା
ଦେଖନ୍ତି ଜନେ ଯେ ଭାବେ,
ସେହି ଭାବେ ମୁହିଁ ଦୂରୁଁ ପ୍ରେମ-ପୁଷ୍ପେ
ପୂଜିବି ଏ ରୂପ ରାଶି,
ଦିନେ ହେଲେ ହେବ ଶ୍ଲାଘ୍ୟ ଅଙ୍ଗ ବାଳା-
ଶ୍ରୀଅଙ୍ଗ-ସେବାରେ ଆସି।''
ଦିନ ନେଲା ଯୁବା- ମଣି ଏହି ରୂପେ
କିଶୋରୀ ଶୋଭାକୁ ଭାଳି,
କିଶୋରୀର ସ୍ମୃତି ଯଯାତିକୁ ହେଲା
ରଙ୍କକୁ ଯଥା ସଂଖାଳି।
ତା ନେତ୍ରେ ଲଳିତା ଦିଶିଲା କିବା ସେ
ବିଶ୍ୱଶୋଭା ପୁଞ୍ଜୀଭୂତ,
ଯହିଁ ଦେଖିଲା ସେ ଯେ ଶୋଭା, ମଣିଲା
ବାଳାମଣି ଅଙ୍ଗୁ ଚ୍ୟୁତ।
କାହୁଁ କାହିଁ ଯାଇ ଉଛନ୍ନେ ଭ୍ରମିଲା
ଠାବେ ଲବେ ନ ବରତି,
ନବପ୍ରେମିକର ଅବିଦ୍ୟା ନାଗରୀ-
ଶତଲିପିକରୀମତି, (୧)
ଅନ୍ତରେ, ବାହାରେ, ଆଗେ, ପଛେ ସେହି
ସୁନେତ୍ରା ନେତ୍ର-ଉତ୍ପଳ,

(୧) ସଂକଳ୍ପ-ନାୟିକାର ଛବି ଯେ ପୁନଃ ପୁନଃ ଚିତ୍ର କରୁଥାଏ।

ଚାପେ ଯୋଖି ମାର ବିନ୍ଧୁଥିଲା ତାର
ଅନ୍ତରର ଅନ୍ତଃସ୍ଥଳ ।
ଧୈର୍ଯ୍ୟ-ଆବରଣେ ଘୋଡ଼ାଇ ପ୍ରେମକୁ
ପୋଷିଲା ସେ ଅନ୍ତର୍ଗତେ,
ଫଲ୍‌ଗୁ ଅନ୍ତଃସ୍ରୋତା ନୀର ସ୍ରୋତ ଯଥା
ଘୋଡାଇ ରଖେ ସୈକତେ ।

## [ ଦ୍ୱିତୀୟ ସର୍ଗ ]

ରାଜେନ୍ଦ୍ର-ତନୁଜା ଗହଣେ ଗହନ
ବନେ ବୈତରଣୀ-ତୀରେ
ମତ୍ତ ହେଲେ ମତ୍ତ ମାତଙ୍ଗ ଗମନା
ନାନାରଙ୍ଗେ ପାରିଧିରେ ।
ନଭେ ତାରା ପ୍ରାୟ ବାମାଦଳ ଗଲେ
ବିଛଣି ହୋଇ କାନନେ,
ସଂହାରିଲେ ବିନ୍ଧି ନାନା ପଶୁ ପକ୍ଷୀ
ଅମୋଘପାତୀ ମାର୍ଗଣେ ।
ଚିତ୍ରବିଚିତ୍ରାଙ୍ଗ ମୃଗଟିଏ ଦେଖି
ରାଜେନ୍ଦ୍ର ସୁତା ଉଷତେ,
ଝପଟାଇ ଦେଲା ଖରେ ତୁରଙ୍ଗମ
ସେ ଘୋର କାନ୍ତାରପଥେ ।
ମୃଗୀ ପଛେ ପଛେ ଏକାକିନୀ ଧାଇଁ
ଭେଟିଲା ରମ୍ୟ ସରସୀ,
ନିବିଡ଼ କାନନେ ଚୌଦିଗେ ବେଷ୍ଟିତ
ମେଘମାଳେ ଯେହ୍ନେ ଶଶୀ ।
ସ୍ୱଚ୍ଛ ସୁଗଭୀର ଦୂରୁ ଆଭାସଇ
ନଭ ପ୍ରାୟେ ନୀଳିମାରେ,
ଝଙ୍କାରିତ ଊର୍ଦ୍ଧ୍ୱେ ଆକାଶେ ଉଡ୍‌ଡୀନ
ସରାଳି-କୁଳ ଝଙ୍କାରେ ।
ନୀର ଦେଖି ପ୍ରତେ ଆସେ କି ପୁଞ୍ଜିତ
ତ୍ରିଭୁବନ ପୁଣ୍ୟରାଶି,
ସ୍ୱବିଭବ ଅବା ନିଭୃତେ ଥୋଇଛି
ଶରତର ପୌର୍ଣ୍ଣମାସୀ ?
ଶରଦଭ୍ର ଦ୍ରବି ରହିଛି ଗୁପତେ
ହୁଅଇ କିମ୍ୱା ପ୍ରତୀତି,
ପୂର୍ଣ୍ଣ ଥାଇ ସୁଦ୍ଧା ଶୂନ୍ୟ ପ୍ରାୟେ ଦିଶେ
ମହତର ଯଥା ରୀତି ।
ନୀର ବସନର ଧଡ଼ି ପ୍ରାୟେ ଫୁଟି
ରହିଛି ରମ୍ୟ କମଳ,
ତୀରଭୂମି ସଦା ହରିତ, ଚାହିଁଲେ
ଲୋଚନ ହୁଏ ଶୀତଳ ।
ତୀରପ୍ରାନ୍ତେ ସେହି କମଳିନୀ-ଷଣ୍ଡେ
ଉଠିଛି ଅନ୍ତରାନ୍ତରା,
ନୀଳ-କଇଁ ଶ୍ୱେତ କହ୍ଲାର ଲାଞ୍ଛିତ
ହରିତ- ଘଣ୍ଟ- ସନ୍ତରା ।

ବୈତରଣୀ-ତୀର- ନିବାସିନୀ-ବନ-
ଦେବତା-ସୌଧ ପ୍ରକାଣ୍ଡ,
ପଦାଶ୍ରିତ ବନ- ଲତା-ବିଜଡ଼ିତ-
ଶିଉଳି-ମସୃଣ —କାଣ୍ଡ ।
ଠାବେ ଠାବେ ଉଭା ନଭସ୍ଥଳ-ଚୁମ୍ୱୀ
କଳ୍ପାନ୍ତ-ଜୀବୀ ପାଦପ,
ଊର୍ଦ୍ଧ୍ୱେ ରୋଧେ ଚଣ୍ଡ — ଚଣ୍ଡାଂଶୁ କିରଣ
ଘନପର୍ଣ୍ଣ-ଚନ୍ଦ୍ରାତପ ।
ସେ ନୀରନ୍ଧ୍ର-ପର୍ଣ୍ଣ- ଚାନ୍ଦୁଆ ଛାୟାରେ
ଘଟିଲା ଯା ଏବେ ଶୁଣ,
ସର୍ବଶକ୍ତିମତୀ ଭବିତବ୍ୟତାର
ଅସାଧ କି ଅଛି ପୁଣ ?
କରାଉଛି, ଆହା, ମର୍ତ୍ତ୍ୟେ ସେ ପ୍ରାଣୀଙ୍କି
କେତେମତେ ହଟହଟା,
ଖେଳାଇ ଜୀବନ ଜଳଧିରେ ସୁଖ-
ଦୁଃଖର ଜୁଆର ଭଟ୍ଟା !
ସଚ୍‌କିତେ ଏକ ତରୁମୂଳେ ତହିଁ
ଦେଖିଲା ରାଜ-କୁମାରୀ,
କନ୍ଦର୍ପ ସୁନ୍ଦର ଯୁବା ଶୋଇଅଛି
ମୃଗୟାର ବେଶଧାରୀ ।
ସ୍ୱଭାବେ ପୁରୁଷ ନୁହେଁ ସେ ମାତର
ପୁରୁଷ-ରୂପୀ ଅବଳା,
ଆନ କେହି ନୁହେଁ ମଗଧନରେନ୍ଦ୍ର-
ନନ୍ଦନା ସେହି ବିମଳା ।
ଝଳି-ଗୌର-ବପୁ ଆଭାପୁଞ୍ଜ ବୀର-
ବାଣ-ସୁନା ଦର୍ପ ହରେ,
ହେମାଙ୍ଗ ମୈନାକ ଲୁଚି ରହିଛି କି
ତ୍ରାସେ ଏ ବନ-ସାଗରେ ?
ଏକା ମୁଖ ବିନୁ ବୀର ପରିଚ୍ଛଦେ
ଆବୃତ ବିମଳା ତନୁ,
କୃଶ-କଟି-ତଟେ ଲମ୍ୱ ଅସିଲତା
ପାଶେ ଥୁଆ ଶରଧନୁ ।
ସରସୀର ମୃଦୁ-ବାତେ ମନ୍ଦେ ଦୋଳି
ସ୍ୱେଦାର୍ଦ୍ର-ଭାଳେ ବାବୁରି-
କୁନ୍ତଳର ଲଗ୍ନ ଗୁଚ୍ଛ ଦିଶୁଅଛି
ଅଯତ୍ନ-ଜାତ ମାଧୁରୀ ।

ସେ ରୂପ ଦର୍ଶନେ ରାଜକୁମାରୀର
ତୁଟିଲା କୁମାରୀ-ଦମ୍ଭ,
ସ୍ୱେଦେ ଆର୍ଦ୍ର ହୋଇ ପଦ୍ମକର-ତଳ
ଶରୀର ଭଜିଲା ସ୍ତମ୍ଭ।
ରାଗାଙ୍କୁର-ନିଭ ପୁଲକ-ପଟଳେ
ଟାଙ୍କୁରିଲା ଗଣ୍ଡସ୍ଥଳ,
ନବଭାବୋଲ୍ଲାସେ ସଘନେ ସ୍ଫୁରିଲା
କିଶୋରୀ-କୁଚଯୁଗଳ।
ତୁରଙ୍ଗୁ ଓହ୍ଲାଇ ମନେ ମନେ ବାଳୀ
ଭାଳିଲା ସେ ରୂପ ଧ୍ୟାୟି,
"ଆହା, ଏ ସୁନ୍ଦର- ବର ତ ମନ୍ଥର
ନର ପ୍ରାୟେ ଦିଶୁ ନାହିଁ।
ପ୍ରେମ-ସିଂହାସନେ ଏହାପରି ଜଣେ
ବସିବାପାଇଁ ଭାଜନ,
ମର୍ତ୍ତ୍ୟମଣ୍ଡଳେ ତ ଆଜିଯାଏ ଦେଖି
ନ ଥିଲା ମୋର ନୟନ।
ମର୍ତ୍ତ୍ୟ-ଉପାଦାନେ କେବେ କି ସମ୍ଭବେ
ଏ ଅପୂର୍ବ ରୂପଠାଣି ?
ଦେବ ହୋଇଥିଲେ, ଆନ କିଏ ହେବ
ବିନା ପୁଷ୍ପ-ଧନୁ-ପାଣି ?
ବିଶ୍ୱରୂପ ସାର ଅବା ଏ କୁମାର
ହେବ ପରା ଆସେ ପ୍ରତେ,
ବନଦେବୀଙ୍କର ଅତିଥି ହୋଇ କି
ଭ୍ରମେ ଏ କାନ୍ତାରପଥେ ?
ନର ହେଲେ, ଧନ୍ୟ ସେ ଭୂମି, ଯେ ଭୂମି
ଏ ଯୁବା ଜନମେ ପୂତ,
ଧନ୍ୟ ସେ ଦମ୍ପତି ଏ ନନ୍ଦନେ ଯାର
ଅଙ୍କ ହେଲା ଅଳଂକୃତ।
ହୋଇ ନ ଥିବଟି କେଡ଼େ ଭାଗ୍ୟବତୀ
ଜନନୀ ଯୁବାମଣିର,
ଏ ଲଳିତ ବପୁ ବଢ଼ାଇଲା ଯେହୁ
ନିଜ ସ୍ତନୁ ଦେଇ କ୍ଷୀର।
ତହୁଁ ଶତଗୁଣେ ଭାଗ୍ୟବତୀ ପୁଣି
ଭବେ ସେ ମରାଳାକ୍ଷିନୀ,
ତପଫଳେ ଯେହୁ ହୋଇଛି ଏ ବିଶ୍ୱ-
ମୋହନ ମନୋମୋହିନୀ।
କେଉଁ ବାଳା ଦେଖି ନୋହିବ ଯୁବାର
ସଙ୍କେ ପ୍ରଣୟ-ସଖୀ ?
ମାର କି ଗଢ଼ିଲା ଏ ମୂର୍ତ୍ତିକି କରି
ଯୁବତୀ-ଧୃତି-ପାରଖୀ ?
ଚନ୍ଦ୍ରାନନ ଦେଖି ଅମରୀଏ ସୁଦ୍ଧା
ଚୁମ୍ବିବେ ହୋଇ ସରାଗ,
ସରାଗେ ଚୁମ୍ବିବେ ତାରୁ ବିମ୍ବାଧର
ରୂପଖଣି-ପଦ୍ମରାଗ।
ରୂପାକାଶେ ଏହି ପୂର୍ଣ୍ଣ ଚନ୍ଦ୍ର, ରୂପ–
ସରେ ଏ ଫୁଲ୍ଲରାଜୀବ,
ଥରେ ଦେଖିଲା ଯେ, ଛାଡ଼ି ପୁଣି ଏହା
କେବେ କି ତା ମନୁ ଯିବ ?
ମର୍ତ୍ତ୍ୟନାରୀ-ଭାଗ୍ୟ ନିଶ୍ଚେ ପ୍ରଶଂସିବେ
ରମ୍ଭା, ଉର୍ବଶୀ, ମେ୍ୟ
ଥରେ ମାତ୍ର ନେତ୍ରେ ଆସ୍ୱାଦି ଏ ରୂପ
ଯୁବତୀ-ପରାଣଘେନା।
ଏତେଦିନ ଯାଏ ଥିଲା ମୋ ହୃଦୟ
ବତ୍ସର ମୋର ହୋଇ,
କିଏ ଜାଣିଥିଲା କ୍ଷଣେ ହୋଇଯିବ
ଏହିରୂପେ ପ୍ରଭୁଦ୍ରୋହୀ।
ଚାହିଁଲେ କି ପୁଣି ନୋହିବ ? ମୁଦ୍ରିତ
ନୟନେ ତ ଏତେ ସରି।
ବିକି ହେବେ ପାଦେ ଏକ କଟାକ୍ଷର
ମୂଲ୍ୟେ କାନ୍ତିକୁଳେଶ୍ୱରୀ।
କୁମାର ଏ ଯେବେ, କରିବି ଏହାକୁ
ପ୍ରେମତରୀ କର୍ଣ୍ଣଧାର,
କୁମାର ନୋହିଲେ ଲେଖାଅଛି ମୋର
ଲଲାଟେ ଚିରକୌମାର।
ନୋହେ ମୋର ଯେବେ, କି ଫଳ ଭିଆଇ
ପ୍ରାରବ୍ଧ ସଙ୍ଗେ ବିରୋଧ ?
ରୋଧିବ ନାହିଁ ତ ପ୍ରାରବ୍ଧ ଯୁବାର
ସଙ୍କଳ୍ପ-ସଙ୍ଗ ବିନୋଦ ?"
ଏହି ରୂପେ ଭାଳି ସେ ସୌନ୍ଦର୍ଯ୍ୟମଦ
ପିଇଲା ହରିଣୀଦୃଶା,
ଯେତେ ପିଇଲା ସେ ନିଶାବଶେ ତାର
ତେତିକି ବଢ଼ିଲା ତୃଷା।
ଲାଖି ରହିଲା ତା କମଳ-ନୟନ
ବିମଳା ରୂପ ଶୋଭାରେ,
ବିମଳାର ନିଦ୍ରା ତୁଟିଲା ହେମାର
ଘୋଟକ ଘୋଣା ଫୁତ୍କାରେ।
ଚକିତେ ଦେଖିଲା ନେତ୍ର ଫେଡ଼ି ବାଳା
ଅଗ୍ରତେ ଶମ୍ପା-ଗଉରୀ,
ଉଭା ଚିତ୍ରାର୍ପିତ ପରାୟେ ଉଜ୍ଜଳ
ଧରିତ୍ରୀ-ଚମ୍ପା-ଚଉଁରୀ।
ଏକାଠି ହେବାରୁ ଚାରିନେତ୍ର ହେମା
ତ୍ରପାରେ ପୋତିଲା ମଥା,
ମଉଳଇ ମୃତ ପ୍ରାୟେ କରସର୍ଶେ
ଯଥା ଲାଜକୁଳି ଲତା।

ଅଯତନ-ମୁଖ    ରାଗେ ରଞ୍ଜି ଦେଲା
ସେ ଦ୍ରୁପା କଣ୍ଠକପୋଳ,
ଲଳିତ-କୁମାରୀ –    ବିଭ୍ରମାଦି ତହିଁ
ରଙ୍ଗେ ରଚିଲେ କି ଦୋଳ ?
ଦ୍ରୁପାର ପାଟଳ    ଏକ ଯୋଗ୍ୟପୁଟ
ସିନା ରୂପ-ସୁନା ପ୍ରତି,
ଆଭାସେ-ଲଳିତା    ସେ ପାଟଳେ କିବା
ରାଗଲତା ପୁଷ୍ପବତୀ ।
ଦରସ୍ଫୁଟ ଭାଷେ    ଦେଲା ପରିଚୟ
ପୁଚ୍ଛିଲାରୁ ଚାନ୍ଦମୁହାଁ,
ନିଆଳି-ବିକାଶୀ    ଚୋରା ବସନ୍ତକୁ
ବନେ ଯଥା ଫୁଲଚୁହାଁ । (୧)
ନ କହିଲା ସେ ଯା,    ନୀରବ ଭାଷାରେ
କହିଦେଲା ସେ ସକଳ,
ପ୍ରେମ-ଆର୍ଦ୍ର ତାର    ଦରମୁକୁଳିତ
ଲାଜଲୋଳ ନେତ୍ରୋତ୍ପଳ ।
ହେମା ମୁଖଭଙ୍ଗୀ,    ଚାହାଁଣୀ ଭାଷାରୁ
ଅନୁରାଗ ଲକ୍ଷି ତାର,
ଦରହାସ-ଛଟା    ବିଭାସିଲା ଚାରୁ-
ଆସ୍ୟ-ବିମ୍ବେ ବିମଳାର ।
ବିଭାସିଣ ଥିଲା    ହାସ-ଛଟା ଯଥା
ସମୁଦ୍ର ମନ୍ଥନ ବେଳେ,
ମୋହନ ମୋହିନୀ    ରୂପୀ ହରିମୁଖେ
ତ୍ରିପୁରାରିଙ୍କର ମେଳେ ।
ଲକ୍ଷି ଲଳିତାର    ଲଳିତ ମଧୁର
ହାବ, ଭାବ, ବିକାରାଦି,
ଜାଣିଲା ତା'ଠାରେ    ହୋଇଛି ଦୁରନ୍ତ
କୁସୁମ-କାଣ୍ଡ ବିବାଦୀ ।
ବୋଇଲା ବିମଳା,    "ଶୁଣ ହେମାମଣି,
ଏ ନୁହେଁ ଲଜ୍ଜାର ସ୍ଥଳ,
ମଳୟା-ଅୟରେ    ହେଲା ଏ ତୁମର
ସୁବର୍ଣ୍ଣ ଭ୍ରମ କେବଳ ।
ଯା ମନେ ମଣିଲ,    ନୁହଇ ମୁଁ ତାହା,
ଅବଳା ତୁମରି ପରି,
ଦେଶ ଦେଶାନ୍ତରେ    ଏକାକିନୀ ଭ୍ରମେ
ଭୈରବୀ ବ୍ରତ ଆଚରି ।
ପିତୃମାତୃ ସୁଖୁଁ    ଶୈଶବୁଁ ବଞ୍ଚିତ,
ସଂସାର ମାୟା ମୁରୁଛି,
ନିକାଞ୍ଚନେ ରହି    ଦିନ ଗମଇ ମୁଁ
ଯହିଁ ଯେବେ ଅଭିରୁଚି ।

ମୁଗ୍‌ଧ-ମୃଗାଙ୍ଗନା    ସେବିତ ସୁରମ୍ୟ
କୋମଳ ଶ୍ୟାମଳ ଛବି,
ବୈତରଣୀ-ବିଚି –    ଶୀକର-ଶୀତଳ
ଶ୍ରୀବିରଜାପୀଠାଟବୀ ।
ନୀଳାଚଳ-ପଥେ    ଦେଖି ଉପୁଲନ୍ତେ
ହୃଦରେ ଅପାର ପ୍ରୀତି,
ସେହି କାଳୁଁ ଏଥି    ପର୍ଣ୍ଣଶାଳା ରଚି
କରୁଅଛି ଅବସ୍ଥିତି ।
ଶୈଶବେ ମୃଗୟା    ଅସ୍ତ୍ରଚାଳନାରେ
ଦକ୍ଷ ହୋଇ ନିଜ ଦେଶେ
ପ୍ରବାସେ ଭ୍ରମଇଁ    ଅନୁକ୍ଷଣ ଏହି
ବୀରପୁରୁଷର ବେଶେ ।
ବହୁଜିହ୍ୱା ଜନ-    ଶ୍ରୁତି କହଇ ଯା
ତା ପ୍ରାୟେ ହୁଏ ଅଳୀକ,
ମାତ୍ର ତୁମ କଥା    ଶୁଣିଥିଲି ଯେତେ
ଦେଖିଲି ତହୁଁ ଅଧିକ ।
ଶୋଭାମୟି ! ତୁମେ    ରୂପେ ଗୁଣେ ଏହି
ଉତ୍କଳମହୀ ଗୌରବ,
ଉତ୍କଳ ସରସେ    ଶତଦଳ, ଅବା
ସେ ଶତଦଳେ ସୌରଭ ।
ଦ୍ରଷ୍ଟବ୍ୟର ସୀମା    ଏତେ ଦିନେ ଦେଖି
ଜୀବନ ମଣିଲି ଶ୍ଲାଘ୍ୟ,
ତୁମ ସଙ୍ଗେ ମୋର    ଏ ମିଳନ ଆଜ
ଘଟାଇଲା ସିନା ଭାଗ୍ୟ ।"
ବିମଳାର ବାଣୀ    ଶୁଣି ରାଜବାଳା
ଅସଙ୍କୋଚେ ପାଶେ ଯାଇ,
ଭକ୍ତିଭରେ ନତି    କଲା ତା ପୟରେ
ମହୀରେ ଶିର ଲଗାଇ ।
ମାତ୍ର ପୂର୍ବ ପୁଂସ-    ଭ୍ରମ ତୁଟିବାରୁ
ମର୍ମେ ବାଜା ହେଲା ଦହି,
ବିଦ୍ଧ ସ୍ମରଶର    ଆସିଲା ବାହାରି,
ମାତ୍ର ଫଳା ଗଲା ରହି ।
ଭ୍ରମ ଅଟେ ସିନା    ନାମାନ୍ତର ତାର
ବିଶ୍ୱେ ଯା ସୁଖ ବୋଲାଏ ?
ତତ୍ତ୍ୱାଲୋକେ ବିଶ୍ୱ    ଶୂନ୍ୟ ଦେଖିବାକୁ
କିଏ କେବେ ସୁଖ ପାଏ ?
ଶ୍ରାନ୍ତ ଜାଣି ରାଜ-    ସୁତାକୁ ବିମଳା
ସରସେ ପଶି ତକ୍ଷଣ,
ତୋଳି ଆଣି ଫୁଲ୍ଲ-    ପଦ୍ମ, ପଦ୍ମଦଳେ
ବିରଚି ପୁଷ୍ପ-ଶୟନ

(୧) ପକ୍ଷିବିଶେଷ । ବସନ୍ତ ପ୍ରାରମ୍ଭରେ ପୁଷ୍ପିତ ବୃକ୍ଷମାନଙ୍କରେ ବସି "ଚୁହାଁ ଚୁହାଁ" ରାବ ଦିଏ । ଗ୍ରାମମାନଙ୍କର ପୁଷ୍ପିତ ସଚନାଗଛମାନେ ଏହା ପ୍ରାୟ ଦେଖାଯାଏ ।

ଲତାଦୋଳାପରେ, ତହିଁ ଲଳିତାକୁ
ବସାଇଲା ପ୍ରେମାଦରେ,
ପାର୍ଶ୍ୱେ ବସି ତାର ସୁମନ୍ଦେ ବିଞ୍ଚିଲା
ଜଳାର୍ଦ୍ର ପଦ୍ମପତରେ।
ସ୍ତୋକ-ପରିଚୟେ ବେନି ହୋଇଗଲେ
ବେନିଙ୍କର ପ୍ରେମଦାସୀ,
ଜଳପିଲେ କେତେ ରଙ୍ଗେ ବେନି କଳା-
କଲ୍ଲୋଳିନୀ କଳଭାଷୀ।
ଯଯାତିର କଥା ପ୍ରସଙ୍ଗ ବିମଳା
ନ କଲା ତହିଁ ପ୍ରକାଶ,
ଆନ କଥା ଘେନି ନାନାମତେ ବେନି
କଲେ ହାସ ପରିହାସ।
କରପଦ୍ମେ ତହୁଁ ଲଳିତା ସୁନ୍ଦରୀ
ଧରି ବିମଳାର କର,
ଅଳି କଲା ତାକୁ ଘେନିଯିବାପାଇଁ
ଗହଣେ ପିତୃ-ନବର।
ହେମା ଅନୁସରି ଆଳୀଏ ଏ କାଳେ
ତହିଁ ହେଲେ ଉପସ୍ଥିତ,
ପୁରୁଷ-ସଙ୍ଗିନୀ ଲଳିତାକୁ ମଣି
ସରବେ ହେଲେ ବିସ୍ମିତ।
କାନ୍ତା କାନ୍ତ ପ୍ରାୟେ ଯୁଗଳବେଶରେ
ବେନିଙ୍କି ଦେଖି ନୟନେ
ବିଷମ-ସମସ୍ୟା ଫେଡ଼ିବାକୁ କେତେ
ପାଞ୍ଚ ସେ ପାଞ୍ଚିଲେ ମନେ।
ହେମାର ସସ୍ମିତ ସଙ୍କେତେ ସେ ଭ୍ରମ
ତୁଟିଗଲା ତାହାଙ୍କର,
ବିମଳା ପୟରେ ସର୍ବେ ଯାଇ ତହୁଁ
ଓଳଗି ହେଲେ ସତ୍ୱର।
ବେନି ସୁନ୍ଦରୀର ଆଗେ ସେ ସଖୀଏ
ବନ୍ଦନା କାଳେ ଶୋଭିଲେ,
ଉଷା କାବ୍ୟତାରା ଆଗେ, ଯଥା ଆହା,
ପଦ୍ମାକର ମନ୍ଦାନିଳେ।
ବେଢ଼ିଣ ବସିଲେ ବେନିଙ୍କି ସେ ମଞ୍ଜୁ-
ଭୂଷଣା ବାମା ସକଳ,
ଚିତ୍ରା ଚନ୍ଦ୍ରମାକୁ ଯଥା ଚିତ୍ର ବର୍ଣ୍ଣ-
ଉଜ୍ଜ୍ୱଳ-ବିଧୁମଣ୍ଡଳ।
ରଙ୍ଗରସେ ରହି ସନ୍ଧ୍ୟାଯାଏ ରାଜ-
ନନ୍ଦିନୀ ସେ ଅଟବୀରେ,
ବିମଳାକୁ ସଙ୍ଗେ ଘେନି ସଖୀଦଳେ
ବାହୁଡ଼ିଲା ସ୍ୱଶିବିରେ।
ହେମା ଅନୁରୋଧେ ଶିବିରେ ବିମଳା
ପୁରୁଷର ବେଶ ଛାଡ଼ି,
ଇନ୍ଦୀବରେକ୍ଷଣା ପିନ୍ଧିଲା କନକ-
କୁସୁମିତ ଝୀନଶାଢ଼ୀ।
ବିମଳାର ବାସ ଲାଗି ଦିବ୍ୟ ତମ୍ବୁ
ତୋଳାଇ ଦେଲେ କଞ୍ଚୁକୀ,
ସେ ତମ୍ବୁରେ ସୁଖେ ଯାପିଲା ରଜନୀ
ପୂର୍ଣ୍ଣରଜନୀଶମୁଖୀ।
କମଳର ମୁଦ୍ରା- ଭଙ୍ଗକାଳେ ନିଦ୍ରା
ପରିହରି ରାଜସୁତା,
ଦୁର୍ଗେ ବିଜେ ହେଲା ବିମଳା ସଙ୍ଗତେ
ରକ୍ଷିଦଳେ ହୋଇ ବୃତା।

## [ ତୃତୀୟ ସର୍ଗ ]

ମାର୍ଗେ ଯାଉଁ ଯାଉଁ ବେନି ସୁନ୍ଦରୀର
ପୀରତି କ୍ରମେ ବଢ଼ିଲି
କ୍ଷୀର ନୀର କିମ୍ବା . ସିନ୍ଧୁ ସମୁଦ୍ରର
ରୀତିକି ଗଲା ସେ ଚଳି।
ଏକା ବୟଃ, ରୂପ ରୁଚି ଘେନି ସେହି
ବେନି କମ୍ବୁଜିତ-କଣ୍ଠୀ,
ହୃଦେ ହୃଦେ ପଡ଼ି ଗଲା ପୀରତିର
ପୁଷ୍ପବକ୍ରମୟ ଗଣ୍ଠି।
ବନପଥେ ଝର- ସ୍ରୋତା ବାହୁ୍ନୀ ପାର
ହୋଇ ସେ ଗହନ ଦଳ,
ମିଳିଲା ବିରୂପା ତୀରେ ଉଭା ଯହିଁ
ପୁରାଣ ଉଦୟାଚଳ। (୧)
ଗୁମ୍ଫାକୀର୍ଣ୍ଣ ଯାର ଅସଂଖ୍ୟ ଗୁମ୍ଫାରୁ
ବୋଧିସତ୍ତ୍ୱଙ୍କର ଶିଳା-
ମୂର୍ତ୍ତିଏ ଦେଖନ୍ତି ଯୁଗେ ଯୁଗେ ଏହି
ମର୍ତ୍ତ୍ୟର ଭଙ୍ଗୁର ଲୀଳା।
ଶୈଳତଟେ ଆମ୍ର ତୋଟାରେ ପଥିକେ
ମଧ୍ୟାହ୍ନନୀତି ବଢ଼ାଇ,
ଅସ୍ତାଚଳେ ରବି- ସଙ୍ଗେ କପାଳେଶ-
ଦୁର୍ଗେ ପ୍ରବେଶିଲେ ଯାଇ।

(୧) ଐତିହାସିକ ଉଦୟଗିରି ବିରୂପାକୂଳରେ ଅବସ୍ଥିତ। ଏ ପର୍ବତରେ ଯେତେ ବୌଦ୍ଧମୂର୍ତ୍ତି ଦେଖାଯାଏ, ଉତ୍କଳରେ ଅନ୍ୟ କୌଣସି ପର୍ବତରେ ତାହା ନାହିଁ। ଲଳିତଗିରି ଏହାର ଅଦୂରବର୍ତ୍ତୀ।

କେ ବର୍ଣ୍ଣିବ ସେହି ନଗରର ଶୋଭା ?
ଥିଲା ତା ଶୋଭାପସରା,
ଗଭାମାଳା ରୂପେ ପିନ୍ଧିଥିଲା ଯାକୁ
ଶୋଭାଙ୍ଗୀ ଉତ୍କଳଧରା ।
ଦାତେ ଛିନ୍ନ ଭିନ୍ନ ସନ୍ଧ୍ୟାକାଶେ ସ୍ୱର୍ଣ୍ଣ-
ବର୍ଣ୍ଣ ଅଭ୍ରଖଣ୍ଡାକାର,
ଜରିଗୁଳ୍ମାକୀର୍ଣ୍ଣ (୧) ଜୀର୍ଣ୍ଣ ସୌଧରାଜି
ଅଦ୍ୟାପି ବିକସେ ଯାର;
ଘୋଡ଼ାଇଛି, ଆହା, କାଳ ଖ୍ୟାତି ଯାର
ବିସ୍ମୃତିର ଆବରଣେ, (୨)
ଜରାଜୀର୍ଣ୍ଣ ତାର ଦେଉଳ-ପନ୍ତି କି
ଶୈବାଳ-ସ୍ତରେ ଯେସନେ ।
ତୁଙ୍ଗଟଙ୍କେ ଚିତ୍ର ପ୍ରାୟ ଚାରୁ ଛବି
ସ୍ଫୁରୁଥିଲା ସେ ପୁରୀର,
ବାରୁଣୀ-ଗଗନେ ଭିତ୍ତି ପ୍ରାୟେ ପୃଷ୍ଠେ
ବିରାଜି ଶୈଳ-ପ୍ରାଚୀର ।
ଶକ୍ରଚାପରୂପୀ ପୁଷ୍କର ତ୍ରିଦିବେ
ଯେତେ ଯେତେ ବର୍ଣ୍ଣ ଖେଳେ,
ଚୂଳେ ଖେଳୁଥିଲା ସେହି ବର୍ଣ୍ଣ ତାର
ଦେଉଳର ଧ୍ୱଜ-ଚେଳେ ।
ପ୍ରାଚୀର ନିତମ୍ବେ ବହୁଥିଲା ତାର
ଇନ୍ଦ୍ରନୀଳ-କାନ୍ତିରୂପା,
ତରଙ୍ଗ-ମାଳିନୀ କଳନିନାଦିନୀ
ପ୍ରସନ୍ନ-ନୀରା ବିରୂପା ।
ପ୍ରଦୋଷ କିରଣେ ଦୂରୁ ପୁରୀ ଦେଖି
ମଗଧରାଜ ନନ୍ଦନା –
ଚିତ୍ତେ ହେଲା ପ୍ରତେ, ଶୈଳ କି ପିନ୍ଧିଛି
ଦାବାନଳର ଓଢ଼ଣା ?
ହେମା ସଙ୍ଗେ ବାଳ- ମୃଗାକ୍ଷୀ ମାଗଧୀ
ପ୍ରବେଶନ୍ତେ ସେ ନଗରେ,
ରାଣୀଦଳେ ପାଟ- ମହାଦେଈ ତାକୁ
ସଙ୍ଗୋଳି ନେଲେ ଆଦରେ ।
ଶୋଭା-ଖଣି-ଗର୍ଭ- ଶଳାକାରୂପିଣୀ
ହେରି ସେ ନବକିଶୋରୀ,
ରାଜରୂପସୀଙ୍କ ନୟନ ବିସ୍ମୟେ
ପଲକ ଗଲା ବିସୋରି ।
ସେ ରୂପ ଦର୍ଶନେ ରାଜ-ଅବରୋଧ
ରୂପମଦ ହେଲା ଚୂନା,

ଭାଳିଲେ "ଉଦ୍ୟାନ ଫୁଲ୍ଲ ବନଫୁଲ
କେଉଁ ଗୁଣେ ଆହା ଊଣା !
ଏ ବାଳାକୁ ବନ- ବାସ ସହାଇଲେ
ବିଧି ଆହା କି ବିଚାରେ ?
ଶମୀ ଛେଦିବାକୁ ଲୋଡ଼ିଲେ ସିନା ସେ
ନୀଳୋତ୍ପଳ-ଦଳଧାରେ !"
ପ୍ରେମାଦରେ ହେମା ନିଜ ଚଉଁରୀକି
ବିମଳାକୁ ଗଲା ନେଇ,
ପ୍ରେମ ଯୋଗୁଁ ଯେଣୁ ହୋଇଥିଲେ ବେନି
ବେନିଦେହେ ଏକ ଦେହୀ ।
ଏକତ୍ରେ ଅଶନ ଆଦି ନୀତି ସାରି
ଶୋଇଲେ ଏକ ପର୍ଯ୍ୟଙ୍କେ,
ଶାନ୍ତି ଲଭିବାକୁ ନିଦ୍ରାଦେବୀଙ୍କର
କୁସୁମ-କୋମଳ-ଅଙ୍କେ ।
ଏକ ଶଯ୍ୟା ହୋଇ ଥିଲେହେଁ ବେନିଙ୍କ
ହୃଦୟେ ଭିନ୍ନ ଭାବନା,
ଏକର ପ୍ରଗାଢ଼- ନିଦ୍ରାଭୋଗ, ମାତ୍ର
ଆନର ପରି-ବେଦନା ।
ବିମଳା ସଙ୍ଗତେ ଆଦ୍ୟଭେଟ କାଳେ
ଜନମିଥିଲା ଯେ ଭ୍ରମ,
ଯେଉଁ ଭ୍ରମରନ୍ଧ୍ରେ କ୍ରୂର ଫୁଲଧନୁ
ବିନ୍ଧିଲା ହେମା ମରମ ।
ଭ୍ରମ ସଙ୍ଗେ ସେହି ସୁତୀକ୍ଷ୍ଣ-ବିଶିଖ
ହୋଇଥିଲେହେଁ ଉତ୍ଖାତ,
ନିଃଶେଷେ ବିଶଲ୍ୟ ନୋହି ଅନ୍ତର୍ଗତେ
ଶୁଖି ନଥିଲା ସେ ଘାତ ।
ଭସ୍ମାବୃତ ବହ୍ନି ପ୍ରାୟେ ଅନ୍ତଃସ୍ଥଳେ
ଲୁଚିଥିଲା ସେହି କାମ,
ବିମଳାକୁ ଶଯ୍ୟା- ସହଚରୀ ଦେଖି
ପୁଣି ତା ହେଲା ଉଦ୍ଦାମ ।
ସେ ଉଦ୍ଦାମ କାମ ନୁହେଁ ତୃପ୍ତି-କ୍ଷମ
ପାରୁଥିଲା ବାଳା ଜାଣି,
ମାତ୍ର ସେ ନୈରାଶ୍ୟ ସେହି ବାସନାର
ଧାର ଦେଉଥିଲା ଶାଣି ।
ଗଡୁଥିଲା ବାଳା ଶୟନେ ତନୁକୁ
ଏ ପଟେ ସେ ପଟେ ରଖି,
ଆତୁରେ ତ୍ରିଦୋଷ- ରୋଗୀ ଗଡ଼େ ଯଥା
ଘୋଟିଲେ ଶଯ୍ୟାକଣ୍ଟକୀ ।

(୧) ପ୍ରାଚୀନ ପ୍ରସ୍ତରଗଠିତ ହର୍ମ୍ୟର ଭଗ୍ନାବଶେଷରେ ଜରିଗୁଳ୍ମ ଅଧିକପରିମାଣରେ ଦେଖାଯାଏ । ଏହି ବୃକ୍ଷ ପ୍ରସ୍ତରଗୃହର ଶତ୍ରୁ ବୋଲି ବିଖ୍ୟାତ । (୨) ଚୌଦ୍ୱାରର କପାଳେଶ୍ୱର ଗଡ଼ର ଭଗ୍ନାବଶେଷ ଉତ୍କଳରେ ସର୍ବାପେକ୍ଷା ପ୍ରାଚୀନ ବୋଧହୁଏ ।

ଶୁଷ୍କ-କଣ୍ଠ-ତାଳୁ ଜ୍ୱରରୋଗୀ ଯଥା
ତୃଷାରେ ହୋଇ ଅସ୍ଥିର
ସଂକଳ୍ପେ ପିଅଇ ଦୃଷ୍ଟପୂର୍ବ ଯେତେ
ନଦୀ ସରସୀର ନୀର ।
ବିମଳାକୁ ଜେମା ସଂକଳ୍ପେ ପୁରୁଷ
ଗଢ଼ିନେଇ ସେହିପରି
ଇଚ୍ଛିତ ସମ୍ଭୋଗ ରାତିମାନ ମନେ
ଆଚରିଲା ଅମ୍ବୋଦରୀ ।
ସେ ସଂକଳ୍ପ-ସୁଖେ ତୃପ୍ତି କାହିଁ ? ସେ ତ
କେବଳ ତୃଷାବର୍ଦ୍ଧକ ।
ପୂରାଇଲା, ଆହା, କେଉଁ କାଳେ କାହା
ଉଦର ମନମୋଦକ ?
କ୍ରୂର-ସ୍ମୃତି କ୍ଷଣେ ଭାଙ୍ଗି-ଦେଉଥିଲା
ସଂକଳ୍ପ-ସୁଖ-ପ୍ରାସାଦ,
ବିଦ୍ୟୁ ଝଟକାନ୍ତେ ତମ ପ୍ରାଏ ଆଣି
ଦ୍ୱିଗୁଣ ହୃଦେ ବିଷାଦ ।
ନିଦ୍ରାପଥ ନେତ୍ରେ ରୁଦ୍ଧ ହେଉଥିଲା
ଲୋତକ-ବିନ୍ଦୁ-କଳାପେ,
ଶୁଖି-ଯାଉଥିଲା ଚାରୁ ବିମ୍ବାଧର
ଶୋକ-ଉଚ୍ଛ୍ୱାସର ତାପେ ।
ଏ ପ୍ରପଞ୍ଚେ ପୁଣି ପ୍ରପଞ୍ଚ ଭିଆଣେ
ଶକ୍ତି ଯାର ନିରର୍ଗଳା,
ଦେଶ କାଳ ସୀମା ଲଂଘି ଅଘଟନ-
ଘଟନେ ସଦା କୁଶଳା ।
ନିଦ୍ରାସଖୀ ସ୍ୱପ୍ନ- ଦେବୀ କଦାଚିତେ
ସୁଖ ଦେଉଥିଲେ ଆଣି,
କ୍ରୂର ଜାଗରଣ ଦେଉଥିଲା ପୁଣି
ଅଙ୍କୁରେ ସେ ସୁଖ ହାଣି ।
ଲୌହକାର ଷଣ୍ଢ- ଆସି ପ୍ରାଏ ସ୍ୱପ୍ନ
କ୍ଷଣେ ସୁଖମୟ ଜଳେ,
ବୁଡାଇ ପୋଡ଼ାଉ- ଥିଲା ତାକୁ ପୁଣି
ପରକ୍ଷଣେ ଦୁଃଖାନଳେ ।
ସ୍ମୃତି-ବିନାଶିନୀ ଭ୍ରାନ୍ତି-ବିଳାସିନୀ
ସ୍ୱପନଦେବୀ କୁହୁକେ,
ଲଳିତା ପୁରୁଷ ରୂପେ ବିମଳାକୁ
ଭିଡନ୍ତେ ଗାଢ଼େ ସ୍ୱବୁକେ ।
ଜାଗରଣ ଆସି ନିମିଷେ ସେ ସୁଖ
ଦେଉଣଥିଲା ସଂହାରି,
ଦେଖୁଥିଲା ପୁଣି ବିମଳାକୁ ଜେମା
ଯେ ନାରୀକି ସେହି ନାରୀ ।
ମାୟାକାନ୍ତ ଚୁମ୍ବ ଯୋଗୁଁ ତା କପୋଳ
ଉଲ୍ଲସି ଉଠିଲା କ୍ଷଣେ

ଫିକା ହେଉଥିଲା ତାହା, ଆହା, ସେହି
ବିଷାଦର ଜାଗରଣେ ।
ଭୁଜଲତା-ପାଶେ ସ୍ୱପ୍ନେ ମାୟାକାନ୍ତ-
କଣ୍ଠକୁ ଧରନ୍ତେ ଯାକି,
ଜାଗି ଦେଖୁଥିଲା ଶୂନ୍ୟକୁ ଆକଟେ
ଭିଡ଼ିଛି ସିନା ବରାକୀ ।
ବଳୟିତ ଭୁଜେ ବନ୍ଦି କରି ବାଳା
କାନ୍ତକୁ ପ୍ରେମ କୌତୁକେ,
ଜାଗି ଦେଖୁଥିଲା କରମାଣ୍ଡି ମାତ୍ର
କୁଣ୍ଢାଇଛି ଭ୍ରାନ୍ତ ସୁଖେ ।
ଜାଗରର ଯେତେ ସଂକଳ୍ପ ନିଦ୍ରାରେ
ଫଳୁଥିଲା ସ୍ୱପ୍ନାକାରେ,
ତୋଷୁଥିଲା ସ୍ୱପ୍ନ- ପୁଂସ ରୂପସୀକି
ଅନୁକୂଳ-କଳାହାରେ ।
ସ୍ୱପ୍ନେ ଲାଜେ ବାଳା ପକାଇବା ବେଳେ
ପରାଙ୍ମୁଖ-ପରିଷ୍ୱଙ୍ଗ,
ଆଚରନ୍ତେ କାନ୍ତ, କରି-ଦେଉଥିଲା
ଜାଗର ସେ ରସଭଙ୍ଗ ।
ମର୍ତ୍ତ୍ୟେ ସ୍ୱର୍ଗ-ସୁଖ ଆଣି ଦେଉଥିଲା
ସ୍ୱପ୍ନ ହୋଇ ଆଜ୍ଞାକାରୀ,
ମାତ୍ର ସେହି ସୁଖ ସାରିଦେଉଥିଲା
ଜାଗର ହୋଇ ଭଗାରି ।
ଜୀବନ କେବଳ ଦୀର୍ଘ ସ୍ୱପ୍ନ ମାତ୍ର
ଜ୍ଞାନୀଙ୍କର ଏହା ମତ,
ଲଳିତା ବାଞ୍ଛିଲା ଏ ସ୍ୱପନ ହେଉ
ପୁଣି ସ୍ୱପ୍ନେ ପରିଣତ ।
ବୋଇଲା ଛଇଳା — "ସୁଖ ଦେଇ ବିଧି
ସାଧିଲା କିପାଁ ଏ ବାଦ ?
ଜାଗରଣ-ଦୁଃଖ ପେଣ୍ଠି ଭିଆଇଲା
କି ହର୍ଷେ କେତେ ବିଷାଦ ।
କିପାଁ ସ୍ୱପ୍ନ-ରାଜ୍ୟୁଁ ଘଉଡ଼ାଇ ମୋତେ
ଦେଲା ଏଡ଼େ ତରତରେ ?
ସୁଖର ଶଇଳ- ଶୃଙ୍ଗୁ ପେଲିଦେଲା
ଗଭୀର ଦୁଃଖ ଗହ୍ୱରେ ।
ଦେବ ପୁଷ୍ପବାଣ, ତୋହ ବରେ ପୁଣି
ଏ ସୁଖ ଭୁଞ୍ଜଇ ପ୍ରାଣୀ ।
ସୁଖେ ବଢ଼ି ସୁଦ୍ଧା ଆଜଯାଏ ମୁହିଁ
ଏ ସୁଖ ନଥିଲି ଜାଣି ।
ମଜ୍ଜା ଯାଏ ତନୁ ଉଲ୍ଲସି ଉଠିଲା
କି ମଧୁର ସୁଖେ ରସି,
କାହିଁ ଥିଲି, କର୍ମ ଦୁର୍ଯୋଗକୁ ଏବେ
କାହିଁ ମୁଁ ପଡ଼ିଲି ଖସି ।

ଏବେ ସୁଦ୍ଧା ଲାଗି ସେ ସୁଖ ତରଙ୍ଗ
ଛାତି କରେ ଦୁକୁ ଦୁକୁ,
ସ୍ମରଣେ ଯାହାର ଏଡ଼େ ସୁଖ, ସୁଖ
କି ଅଛି ବଳି ସେ ସୁଖୁଁ ?
ବାଣସୁତା ସ୍ୱପ୍ନ- ପୁଂସ ସଙ୍ଗେ ମାତି
ନାନା ରଙ୍ଗେ ପ୍ରେମୋଲ୍ଲାସେ,
ଚେଡି ଚତୁରୀ ସେ ପୁଂସ-ରତନକୁ
ଅଣାଇଲା ନିଜ ପାଶେ ।
ସତେ ଥିଲାକୁ ସେ ପୁଂସ, ସୁଖୀ ହେଲା
ଜାଗରଣେ ଭାଗ୍ୟବତୀ,
ଅବସ୍ଥରେ ଯେଣୁ ନିର୍ବନ୍ଧ ମୋହର,
ସ୍ୱପ୍ନ ଏକା ମୋର ଗତି ।
କର ଯୋଡ଼ି, ବିଧି, ମାଗୁଛି ପୟରେ
ଦିଅ ମୋତେ ଏହି ବର,
ସ୍ୱପ୍ନ-ସୁଖ ରାଜ୍ୟେ ଚିରଦିନ ଲାଗି
ବସତି ହେଉ ମୋହର ।''
ନେତ୍ର ନୀରେ ପୁଣି ସିକ୍ତ ହୋଇ ଧନୀ
ବୋଲେ ଦୁଃଖ-ଅସମ୍ଭାଳେ,
''ଅଲୋକିତ କଥା ବିଧି କି କେବଳ
ଲେଖିଥିଲା ମୋହ ଭାଲେ ?
ପ୍ରେମତନ୍ତ୍ରମତେ ପୁଂସରେ ପ୍ରମଦା,
ପ୍ରମଦାରେ ପୁଂସ ରତ,
ଚତୁର୍ଦ୍ଦଶ ପୁରେ ଚଳୁଅଛି ଏହି
ବିଧିର ବିଧି ଶାଶ୍ୱତ ।
ରଙ୍ଗରସେ କେବେ କୁରଙ୍ଗୀଠାରେ କି
ରସଇ କୁରଙ୍ଗ-ନାରୀ ?
ବିହଙ୍ଗୀକି ହେରି ବିହଙ୍ଗୀ କି କେବେ
କାମଶରେ ହୁଏ ଘାରି ?
ପୁରାଣେ ଶୁଣିଛି ଭିନ୍ନ ଯୋନି ହୋଇ
ପୁରୁଷେ ନାରୀର ପ୍ରୀତି,
ଛାର କରମକୁ ତହୁଁ ବଳିଗଲା
ମୋର ଏ ପାରତି ରୀତି ।
କି ଜଙ୍ଗମେ କିବା ସ୍ଥାବରେ ବିଧାନ
ପ୍ରବଳ ସଦା ବିଧିର,
ଲତା ସଙ୍ଗେ ଲତା ପ୍ରେମାମୋଦେ କେବେ
ଛନ୍ଦି କି ହୁଏ ଶରୀର ?
ଏ କି ହଟହଟା ଭିଆଇଲା, ଆହା,
ହଟିଆ କେଳତି-ପତି ?
ତରୁଣୀକି ପୁଣି କରିଦେଲା ଆଜ
ତରୁଣୀରେ ସ୍ପୃହାବତୀ ।
ନିଦାରୁଣ ଭାଗ୍ୟ ନାରୀକି କରାଇ-
ଦେଲା ମୋର ମନଚୋର ।

କ୍ଷତେ କ୍ଷାର ପ୍ରାଏ କଲା ତାକୁ ପୁଣି
ଶୟନ-ସଙ୍ଗୀ ମୋହର ।
ସୁଖ ଦେଇ, ସୁଖ ପଥେ ବଜ୍ରବାଡ଼
ଦେଇ ବୁଜିଦେଲା ରାହା,
ଜଳେ ଥାଇ ସିନା ସେ ଜଳ ବିନ୍ଦୁକେ
ତୃଷାରେ ମଲି ମୁଁ ଆହା !
ଘେନାଇ କହିଲି ଅବୋଧ ମନକୁ,
ବୋଲ ମୋର ଘେନୁ ନାହିଁ,
ଅଥୟେ ଦଉଡ଼ି ସଂକଳ୍ପର ପଥେ
ବାହୁଡ଼ଇ ବାଧା ପାଇ ।
ଆଶାଭୂମେ ସିନା ଜନ୍ମେ ପ୍ରେମାଙ୍କୁର
ବଢ଼ଇ ଆଶା-ସଲିଳେ,
ନୈରାଶ୍ୟ-ଊଷରେ ପ୍ରେମ-ବୀଜ, ଆହା,
କି ଫଳ ହେବ ବୁଣିଲେ ?
ବୃଥା କିପାଁ ମୁହିଁ ମନାସିଲି ମନେ
ମୃଗତୃଷ୍ଣିକାରେ ସ୍ନାନ ?
ମୋହରି ଭାଗ୍ୟେ କି ଲେଖାଥିଲା, ଆହା,
ଲୋଡ଼ିବା ଶଶ-ବିଷାଣ ?
କାହିଁ ସେ ହୃଦର ଯେ ହୃଦର ବଳେ
ପୁରୁଷ ହେବ ରମଣୀ ?
ଦେବ ହେଲେ ଶକ୍ତି ନାହିଁ ଓଲଟାଇ
ଦେବାକୁ ବିଧି-କରଣୀ ।
ନୋହିବାର ଯାହା ଏସନ ବିଷମ
ବାସନାକୁ ମନେ ପୋଷି,
ନିଜେ ଦୋଷୀ ହୋଇ ଅକାରଣେ କିପାଁ
ବିଧିକି କରୁଛି ଦୋଷୀ ?
ବିଧି ସୃଷ୍ଟି କ୍ରମ— ପ୍ରତୀପେ ବାସନା
ପୋଷଇ ହୃଦେ ଯେ ପ୍ରାଣୀ,
ତୃଣ ହୋଇ ସିନା ଭାସିବାକୁ ଲୋଡ଼େ
ପ୍ରପାତ ସ୍ରୋତେ ଉଜାଣି ।
ଭ୍ରମେ ପଡ଼ି ମୁହିଁ ପ୍ରେମ-ସ୍ରୋତେ ମନ-
ତରୀକି ଦେଲି ଭସାଇ,
ଭ୍ରମ ତୁଟିଗଲା, ମାତ୍ର ସେହି ମନ-
ତରୀ ତ ଫେରିଲା ନାହିଁ ।
ନୈରାଶ୍ୟ-ଚଡ଼ାରେ ଲାଗି ରହିଲା ସେ,
ବାହୁଡ଼ିବ ନାହିଁ ଆଉ,
ଚିର କୌମାର ଯା ମନାସିଥିଲି
ସାଧିଲା ବିଧି ସେ ଦାଉ ।''
ଥରେ ଥରେ ଶେଜ ତେଜି ବରାଙ୍ଗନା
ଭ୍ରମୁଣଥିଲା ପ୍ରାଙ୍ଗଣେ,
ଚନ୍ଦ୍ରାଲୋକେ ଧୌତ ଧରିତ୍ରୀ ଗଗନ
ଦେଖୁଥିଲା ଶୂନ୍ୟମନେ ।

ସୌଧ ଚାରିପାଶେ ପୁଷ୍ପୋଦ୍ୟାନେ ପୁଷ୍ପ-
ପଲ୍ଲବ ଭାରେ ନମିତ
ଚଳୁଚଳେ ଅନ୍ଧ- କାରେ ହୋଇଥିଲା
ଜ୍ୟୋତ୍ସ୍ନା ତିଳତଣ୍ଡୁଳିତ । (୧)
ପୌର୍ଣ୍ଣମାସୀ-ନଭେ ଶୋଭୁଥିଲେ ଦେବ
କ୍ଷୀରାବ୍ଧି-ଶୁକ୍ତି-ମୌକ୍ତିକ,
ତାରାଗୋଷ୍ଠେ ଷଣ୍ଢ ଅଖଣ୍ଡ ଚନ୍ଦ୍ରମା
ସୁରଧୁନୀ-ପୁଣ୍ଡରୀକ ।
ବିଯୋଗିନୀ ମର୍ମ- ଚ୍ଛେଦି-କାମଚକ୍ର,
ସଂଯୋଗିନୀ ହୃଦାହ୍ଲାଦୀ,
ମୁଗ୍ଧ ଦିଗଙ୍ଗନା ବିଭ୍ରମ-ଦର୍ପଣ,
ଶୃଙ୍ଗାର-ଅଦ୍ୱୈତବାଦୀ । (୨)
କୋଟି ଜ୍ୟୋତି ପୁଷ୍ପେ ମଣ୍ଡି ନୀଳବପୁ
ବହୁଥିଲା ଦୁର୍ଗ ପାଦେ
ବିରୂପା ମିଶାଇ ନିଜ କଳନାଦ
ସୁଗମ୍ଭୀର ଝିଲ୍ଲୀନାଦେ ।
ଉତ୍କୀର୍ଣ୍ଣ ପରାଏ ଆଭାସୁଥିଲା
ସୁଧାଂଶୁ କିରଣେ ଭାସି,
ଚକ୍ରବାଳେ ଶୈଳ, ବନ, ଟଙ୍କଭୂମି,
ନଦୀଶଯ୍ୟା, ନଦୀନାସୀ ।
ଦିଶୁଥିଲା ଦୂରେ ଦିଗନ୍ତ ବିସ୍ତାରୀ
ଚନ୍ଦ୍ରିକା ସ୍ନାତ ସୈକତେ
ନୀଳ ମହାନଦୀ, ବିଷ୍ଣୁ କି ଶାୟିତ
କ୍ଷୀରୋଦଶୟନେ ସତେ ?
ବ୍ୟୋମ-ଗଙ୍ଗାନୀରେ ନାବକେଳିରତ
ପୁଣ୍ୟାଙ୍ଗନା କ୍ଷେପଣୀରେ,
ଛିଟା ଉଠି, ପଡୁ- ଥିଲା କି ଆସି ତା
ହିମ ଛଳେ ଧରଣୀରେ ?
ମାନିନୀ ଚକୋରୀ ମାନ ଫେଡୁଥିଲା
ଚନ୍ଦ୍ରିକା-ପୀୟୂଷପାୟୀ
ସହକାର-ଚୂଳେ ଚଟୁଳ ଚକୋର
ନିଜ ପ୍ରେମଗୀତ ଗାଇ ।
ସଙ୍ଗତେ ଉଡ୍ଡୀନ ପ୍ରେୟସୀର ପ୍ରେମ-
ରାବେ ପ୍ରତିରାବ ଦେଇ,
ଉଡ଼ିଯାଉଥିଲା ଉଲ୍ଲାସେ ଟିଟ୍ଟିଭ
ସଙ୍ଗୀତ କିବା ସେ କେହି ?
ଶୀତଦ୍ୟୁତି-କରେ ଦ୍ୱିଗୁଣେ ଜେମାର
ବଢ଼ିଲା ହୃଦ-ତପତି,
ତା ନେତ୍ରେ ଚନ୍ଦ୍ରମା ଦିଶିଲେ କିବା ସେ
ମନ୍ମଥ ରାଜାର ଛତି ।

ଚକୋର ଟିଟ୍ଟିଭ ସ୍ୱର ଶୁଣି ବାଳା
ଦ୍ୱିଗୁଣେ ହେଲା ଆକୁଳ,
ଆନନ୍ଦର ଧ୍ୱନି ଉପୁଜାଏ ସିନା
ଦୁଃଖୀର ଶ୍ରବଣ-ଶୂଳ ।
କିଞ୍ଚିତେ ସାନ୍ତ୍ୱନା ଲଭୁଥିଲା ଧନୀ
ମର୍ମଭେଦୀ ସେ ସନ୍ତାପେ,
ବିରୂପା ତଟିନୀ ତଣ୍ଡି ପଠାଚାରି-
ରଥାଙ୍ଗ ବଧୂ-ବିଳାପେ ।
ରଥାଙ୍ଗୀକି ଚାହିଁ କହିଲା, "ବିହଙ୍ଗି !
ଝୁରୁ କିପାଁ ମୋହ ପରି ?
ଆଶ୍ୱାସନାପାଇଁ ଅଛି ତ ତୋହର
ସଙ୍ଗେ ଆଶାସହଚରୀ ।
ବିଭାବରୀ ତୋର ବିରହ ଅବଧି,
ଏଥିକି ଏତେ ତୁ ଦୀନା ?
ଏ ବିରହ ତୋର ମିଳନର ସ୍ୱାଦୁ
ବଢ଼ାଇବାଲାଗି ସିନା !
ଅଚିର ବିରହେ ଛାତି ତୋର ଏତେ
ହେଉଛି ଦୁଃଖେ କରତି,
ମାତ୍ର ମୋହ ସଙ୍ଗେ ଭାଗ୍ୟବିନିମୟେ
ବଳାଇବୁ କି ତୁ ମତି ?
ସୁଖାନ୍ତ ବିରହ ସହି ନ ପାରି ତୁ
ନିଜ ଭାଗ୍ୟ ମଣୁ ମନ୍ଦ,
ଏ ଅନ୍ଧାର ତୋର କ୍ଷଣସ୍ଥାୟୀ ସିନା,
ମୁଁ ଯେ ବେନିନେତ୍ରେ ଅନ୍ଧ !
ନିଶାରେ ଦେଖୁ ତୁ ଆଶା ମୁଖ, ନିଶା-
ଅନ୍ତେ ଦେଖୁ କାନ୍ତ ମୁଖ,
ସୁଖସୀମା ସିନା ମୋ ଲେଖାରେ ତାହା,
ତୋ ଲେଖାରେ ଯାହା ଦୁଃଖ ।"
ବାହୁନି ବାହୁନି କାନ୍ଦିଲା ଏରୂପେ
ନିରାନନ୍ଦେ ଚନ୍ଦ୍ରାନନୀ,
ନ ଶୁଭିବା ଯାଏ ବିଳ-ବଇଁଶିଆ
ଭରତିଆ ବଂଶୀଧ୍ୱନି ।
ବିରୂପାର ପାଟେ ସେ ବିହଙ୍ଗ ତୃଣ-
ଶଯ୍ୟାରୁ ହୋଇ ଉତ୍‌ଥିତ
ନୀଳବ୍ୟୋମେ ଉଠି ଢାଳିଲା ତାହାର
ଅମର୍ତ୍ତ୍ୟ ମର୍ତ୍ତ୍ୟ ସଙ୍ଗୀତ ।
ଦେଖୁଁ ଦେଖୁଁ ଦେଖା ଦେଲା ପାଟଳିମା
ପରାଚୀ ମୂଳେ ବିରାଜି,
ତାରାରତ୍ନାଞ୍ଚିତ ତମଃସିନ୍ଧୁରେ କି
ପ୍ରବାଳ-ନିକୁଞ୍ଜ-ରାଜି ?

(୧) ତଣ୍ଡୁଳ ଶ୍ୱେତ, ତିଳ କୃଷ୍ଣବର୍ଣ୍ଣ; ଅର୍ଥାତ୍ ଛାୟାରେ ଜ୍ୟୋତ୍ସ୍ନା ଚିତ୍ରବିଚିତ୍ର ହୋଇଥିଲା । (୨) ଶୃଙ୍ଗାରରସ ବ୍ୟତୀତ ଆଉ ଜଗତରେ କିଛି ନାହିଁ, ଏହି ମତର ପ୍ରଚାରକ ।

କାହିଁ ଜ୍ୟୋତ୍ସ୍ନା ଧଳା, କାହିଁ ପୁଣି କଳା
ମସୀପ୍ରଭ ଅନ୍ଧକାରେ,
କାହିଁ ଫୁଲ୍ଲପଦ୍ମ ପରାଗେ ହାରିଦ୍ର,
ପ୍ରାତଃ ସନ୍ଧ୍ୟା ରକ୍ତିମାରେ।
କାହିଁ ରଙ୍ଗବର୍ଣ୍ଣ, ଦିଶିଲା ବ୍ରହ୍ମାଣ୍ଡ
ନିଶାନ୍ତେ ଚିତ୍ର ବିଚିତ୍ର,
ଉନ୍ମୀଳିତ ହୋଇ ତୁଳିରେ ଯେସନ
ଶୋହେ ବର୍ଣ୍ଣୋଜ୍ଜ୍ୱଳ ଚିତ୍ର।
ପ୍ରାଚୀଗିରିରଙ୍ଗେ ଫିଟିଗଲା ଏବେ
ବିଭାବରୀ ଯବନିକା
ଅଭିନିବାପାଇଁ ସୂର୍ଯ୍ୟସୂତ ମହୀ—
ଅଟନ ମହାନାଟିକା।
ସମୁଜ୍ଜ୍ୱଳ ବେଶେ ଉଭା ହୋଇ ଦେବ
ପ୍ରଭାମୟ ସେ ମଞ୍ଚରେ;
ସୂତ୍ରଧାରରୂପେ ତାରାପୁଷ୍ପ ପୁଞ୍ଜ
ଫିଙ୍ଗିଲେ ରଙ୍ଗ ସ୍ଥକରେ।
ବାଳାତପ ଠାବେ ଠାବେ ଶୈଳଦେହେ
ଦେଖି ହେଲା ମନେ ପ୍ରତେ,
ସଦ୍ୟଃ-ପକ୍ଷଚ୍ଛିନ୍ନ ହୋଇ କି ଶୋଣିତ
ସ୍ରବେ ତାଙ୍କ ଦେହୁଁ ସତେ ?
ନିଦ୍ରା ପରିହରି ନଳିନୀସୁନ୍ଦରୀ
ସୁଷମା କଲା ବିସ୍ତାର,
କୁମୁଦିନୀଠାରେ, ଜେମାଠାରେ ନ୍ୟସ୍ତ-
କରି ନିଜ ଦୁଃଖ ଭାର।
ନିଦ୍ରା ପରିହରି ବିମଳାସୁନ୍ଦରୀ
ଧରି ଲଳିତାର ପାଣି,
ବାହୁଡ଼ିବା ଲାଗି ସ୍ୱବାସେ ମାଗିଲା
ବିନୟ ଭାଷେ ମେଲାଣି,
"ଅଳ୍ପ ଦିନେ ଆସି ଭେଟିବି ଛାମୁରେ"
ଅଶ୍ରୁମୁଖୀ ଲଳିତାର
ଅନୁରୋଧେ ଏହି ପ୍ରତିବାଣୀ ଦେଇ
ସେ ପୁରୁଁ ହେଲା ବାହାର।
ଯାତ୍ରାକାଳେ ତାକୁ ମହାଦରେ ଜେମା
ମହାର୍ହ ଶାଢ଼ୀ ପିନ୍ଧାଇ
ନିଜ କଣ୍ଠୁ ରତ୍ନ କଣ୍ଠି ନେଇ ତାର
କଣ୍ଠରେ ଦେଲା ଲମ୍ବାଇ।
ଗୌରମଣିବନ୍ଧେ ପିନ୍ଧାଇ ଆବର
ଦେଲା ଇନ୍ଦ୍ରମଣି ବଳା,
ଘଞ୍ଚ-କୁଚ-କଞ୍ଚି- ଆବରଣେ ଦେଲା
ସୁଚାରୁ ରତ୍ନକାଞ୍ଚଲା।

ବିମଳା ଗଲାରୁ ବିରହ ସନ୍ତାପେ
ବିବର୍ଣ୍ଣ ହେଲା ସେ ରାମା,
ଚନ୍ଦ୍ରିକା-ସଜନୀ ଛାଡ଼ିଗଲେ ଭଳେ
କାଳିମା ସିନା ତ୍ରିଯାମା।
ବୈଶାଖର ଖର ପବନ ପରଶେ
ସହଜେ କ୍ଷୀଣ-ଜୀବିନୀ,
ମଉଳିଲା, ଆହା, ନିଆଁକି ଲତା କି
ନବପୁଷ୍ପ-ସ୍ତବକିନୀ ?
କର-ପଦ୍ମେ ଗଣ୍ଡ- ମଣ୍ଡଳ ବିନ୍ୟାସି
କରୁଥାଇ ବାଳା ଧାନ,
କୃଶାଙ୍ଗୀର ହେଲା ଶ୍ରୀଅଙ୍ଗ ମୁଦ୍ରିତ-
ମୃଣାଳୀ ପରାଏ ମ୍ଳାନ।
ଫିକା ହୋଇଗଲା କାନ୍ତ ମୁଖକାନ୍ତି
ବିଧୁ ଯଥା ଦିବାଭାଗେ,
ବିନା ହୁତାଶନେ ଦଗ୍‌ଧ ହେଲା ଧନୀ
ବିସିନୀ ଯେସନ ମାଘେ।
ତୁହିନ ଶୀତଳ ଶୁଭ୍ର ଶେଯେ ପଡ଼ି
ଜଳୁଥାଇ କୃଶୋଦରୀ,
ତୁଷାର ଭୂଧର ପୃଷ୍ଠେ ନିଶାକାଳେ
ତୃଣ-ଜ୍ୟୋତିର୍ଲତା ପରି।
କରଗତ ଦେବ- ଦୁର୍ଲ୍ଲଭ ସମ୍ପଦେ
ଉଦାସୀନ ହେଲା ଧୀରା,
କରତୋୟା ପ୍ରାଏ (୧) ସରୋଜ-ନେତ୍ରୀର
ଦୃଷ୍ଟି ହେଲା ସଦାନୀରା।
ନିଦାଘେ ଚାତକୀ କାଦମ୍ବିନୀ ପ୍ରତି
ଯେହ୍ନେ ଲୟ ରଖିଥାଇ,
ଉତ୍କଳିକାକୁଳେ ରହିଲା ବିମଳା-
ଆଗମନକୁ ଅନାଇ।
ଉତ୍କଳିକାକୁଳେ ଦୂତ ପଦେ ବରି
ପେଷୁଥିଲା ତା ଅନ୍ତିକ,
ପୟୋଦ, ପତତ୍ରୀ ଆଦିକରି ଯେତେ
ନଭସିନ୍ଧୁ ସାଂଯାତ୍ରିକ।
ଜଗତୀରେ ଗଜ- ଦନ୍ତ ବାତାୟନ
ବିବରେ ନିହି ବଦନ,
ଗୁଣି ହେଉଥିଲା ବିମଳାର କଥା
ଉତ୍ତରାସ୍ୟେ ଅନୁକ୍ଷଣ।
ଉତ୍ତରାପବନେ ଆଲିଙ୍ଗନ ବାଳା
କରୁଥିଲା ଭୁଜ ତୋଳି
ମାର୍ଗେ ଆସୁଁ ଆସୁଁ ବିମଳାର ଅଙ୍ଗ
ଛୁଇଁ ଆସିଅଛି ବୋଲି।

(୧) ହିମାଳୟୋତ୍ପନ୍ନ ବଙ୍ଗଦେଶୀୟ ନଦୀ। ଏହାର ଅପର ନାମ ସଦାନୀରା।

## [ ଚତୁର୍ଥ ସର୍ଗ ]

ତିନିଦିନ କାଳ ବନ ପଥେ ଭ୍ରମି
ପୁଣି ବୈତରଣୀ ତୀରେ,
ସୋଦର ସହିତେ ମାଗଧୀ ସୁନ୍ଦରୀ
ମିଳିଲା ଯାଇ କୁଟୀରେ ।
ଅଦର୍ଶନେ ତାର ଯଯାତିର ମନ
ହୋଇଥିଲା ଶଙ୍କାକୁଳ,
ବେନିଙ୍କି ବେନିଏ ଦେଖି ହେଲେ ଏବେ
ହରଷରସେ ପ୍ରଫୁଲ୍ଲ ।
ଉତ୍କଳେଶ-ହେମା ସଙ୍ଗେ ଭେଟ ହେଲା
ଦିନରୁ ଆରମ୍ଭ କରି,
ଘଟିଥିଲା ଯେତେ ଚରିତ ବିମଳା
କହିଲା ସବୁ ବିବରି ।
ଉପହାର ବସ୍ତ୍ର ଆଭରଣମାନ
ଦେଖାଇ ହରଷମନେ,
ସାଇତି ସୁଦନ୍ତୀ ରଖିଲା ସେମାନ
ପେଡ଼ିରେ ଅତି ଯତନେ ।
ଲଳିତାର ଦଶା ଯଯାତି ନ ଯାହା
ଜାଣିଲା ବିମଳା ଗିରୁ,
ତହୁଁ ବଳି ତାହା ଜାଣିଲା ସ୍ୱସାର
ସଲଜ୍ଜ ମୁଖଭଙ୍ଗୀରୁ ।
ଜାଣିଲା ଯା ଘେନି ଉତ୍କଳେଶ-ହେମା
ହୋଇଛି ଏତେ ଉତ୍ସୁକ,
ଚତୁର-ଶ୍ରବଣେ ମୌନ ଠାବେ ଠାବେ
ହୁଏ ବଡ଼ ବାବଦୂକ ।
ଆଭାମୟ ବସ୍ତ୍ର ଆଭରଣ ଦେଖି
ହୃଷ୍ଟ ହେଲା ଯୁବାମଣି,
ନୈରାଶ୍ୟ-ନିଦାଘ ଅନ୍ତେ ତାକୁ ଆଶା-
ମେଘେ ବିଦ୍ୟୁଲ୍ଲତା ମଣି ।
ଛାର ମଣୁଥିଲା ଜୀବନକୁ ଯେହୁ
ଏବେ ଆଶାବାରି ଲଭି,
ଶୁଷ୍କପ୍ରାୟ ହୃଦେ ପ୍ରେମାଙ୍କୁର ତାର
ଉଠିଲା ପୁଣି ପଲ୍ଲବି ।
ଜନମ-ରଙ୍କ କି ପରଶୁ ପାଇଲା,
ଅମୃତ ଜନମ-ରୋଗୀ,
ଲୋଚନ କି ଅବା ଅନ୍ଧ, ମୂକ ବାଣୀ,
ଅବା ମହାତତ୍ତ୍ୱ ଯୋଗୀ ?
କହିଲା ସ୍ୱଗତେ, ଭାଗ୍ୟଦେବୀ ଆଗେ
ପେଷି ମୋର ମନୋରଥ
ହେମା ପାଶେ ଏବେ ଯିବାପାଇଁ ମୋତେ
ଫିଟାଇ ଦେଲେ ଏ ପଥ ।
ନ ଲଭି ଲଭିଛି ବଲ୍ଲଭୀର ପ୍ରେମ
ଏଥିରେ ନାହିଁ ସଂଶୟ,
ଅଜ୍ଞାତେ ଚୋରାଇ ନେଇ ମୋ ହୃଦୟ
ଦେଇଛି ନିଜ ହୃଦୟ ।
ଯେଉଁ ପୁଷ୍ପାୟୁଧ ବିନ୍ଧିଲା ମୋ ହୃଦ
ବିନ୍ଧୁଛି ସେହି ତା ହୃଦ,
ମଣିଥିଲି ଯାକୁ ଅରି କରି, ଏବେ
ସେ ମୋର ଇଷ୍ଟ ସୁହୃଦ ।
ବିମଳାର ବେଶେ ଅନାୟାସେ ହେବି
ହେମା ପାଶେ ଉପଗତ,
ଥାଉ ଆନ, ଭେଦ ବାରି ନ ପାରିବ
ହେଲେ ଚକ୍ଷୁ ସାରସ୍ୱତ ।
ତଥାପି ବିଷମ କଥା ଛଦ୍ମବେଶେ
ଭେଟିବାର ହେମାମଣି,
କଣ୍ଟକ ବେଷ୍ଟିତ ପଦ୍ମ ସେ ରମଣୀ,
କିମ୍ବା ଫଣୀ ଶିରେ ମଣି ।
ମଲେ ପଛେ ମୁହିଁ ମରିବି, ଏ କାର୍ଯ୍ୟେ
ପ୍ରାଣକୁ କରିବି ଦୃଢ଼,
ଚନ୍ଦ୍ରଲୋକୁଁ ସୁଧା ହରଣେ କୁଳିଶେ
ଡରି କି ଥିଲେ ଗରୁଡ଼ ?
ଅଙ୍ଗ କ୍ଷୟ, ଅବା ହେମା-ଅଙ୍ଗ-ସଙ୍ଗ,
ଲଲାଟ ଲିପି ମୋହର,
ବଜ୍ର ପଡ଼ୁ ମୁଣ୍ଡେ, ବାରି ଅବା ତୁଣ୍ଡେ,
ମେଘ-ଗତି ଚାତକର ।
ଅନଳର ଶିଖା- ରୂପିଣୀ ଲଳିତା
ଉତ୍କଳ ଲାବଣ୍ୟ ରାଣୀ,
ପତଙ୍ଗର, କିବା ଚକୋରର ଦଶା
କି ଅଛି ଭାଗ୍ୟେ ନ ଜାଣି ।'' (୧)
ଏହିମତେ ଭାଳି ବିମଳା ସମ୍ମତେ
ହେମା ଉପହାରମାନ
ସଙ୍ଗେ ନେଇ ଯୁବା କପାଳେଶ ଦୁର୍ଗେ
ଏକାକୀ କଲା ପ୍ରସ୍ଥାନ ।
ଯାତ୍ରାକାଳେ ଦେବୀ ବିରଜା ଛାମୁରେ
ସାଷ୍ଟାଙ୍ଗେ କରି ପ୍ରଣତି,
କର ଯୋଡ଼ି ଭକ୍ତି ଉଦ୍ଭୂତ ହୃଦୟେ
ଜଣାଇ ଗଲା ଏମତି—

(୧) ପତଙ୍ଗ ଅନଳରେ ଦଗ୍ଧ ହୁଏ । ଚକୋର ଅନଳକଣା ଆହାର କରୁଥିବାର କିମ୍ବଦନ୍ତୀ ଅଛି ।

"ମାତା ବିଶ୍ୱଧାତ୍ରି, ବରାଭୟଦାତ୍ରି,
ଦିଅ ବର କୃପା କରି,
ତୋର ଏ କେଶରୀ ହେଉ ସଦା ମୋର
ବିପଦ-କରି-କେଶରୀ।"
ଦୁର୍ଗ ଉପକଣ୍ଠେ ମହାବନେ ବେନି-
ଦିବସେ ହୋଇ ପ୍ରବେଶ,
ହେମା-ଦତ୍ତ ବାସ ଭୂଷଣେ ରଚିଲା
କପଟେ ଅବଳା ବେଶ।
ପ୍ରଦୋଷେ ସେ ବେଶେ ପ୍ରବେଶିଲା ବୀର
ଉତ୍କଳ ରାଜ ନବରେ
ବୃହନ୍ନଳାରୂପୀ ପାର୍ଥ ରଥୀ ଯଥା
ବିରାଟ-ପୁରେ ଦ୍ୱାପରେ।
ହେମାସଖୀ ମଣି ବାଟ ଛାଡ଼ିଦେଲେ
ଅନ୍ତଃପୁରେ ପ୍ରତିହାରୀ,
ବାମାରୂପୀ ନୃପ- କୁମାର ଉଲ୍ଲାସେ
ଭେଟିଲା ନୃପକୁମାରୀ।
ଅସ୍ତ ଯାଉଥିଲେ କପିଳାସ-ଶୃଙ୍ଗେ (୧)
ଏକାଳେ ଦେବ ତପନ
ବିଶ୍ୱରାଜ-ତେଜ- ଭଣ୍ଡାର-ମେକାପ (୨)
ପଦ୍ମିନୀ-ମୁଦ-କରଣ। (୩)
ବାରୁଣୀ-କୁଞ୍ଜିମେ କୋଟି ହୀରା ନୀଳା
ମଣି ମୁକ୍ତା ଜରି ଶାଢ଼ୀ
ପ୍ରକୃତି କି ସ୍ତରେ ସ୍ତରେ ରଖିଥିଲା
ଗଣତି ଲାଗି ସଜାଡ଼ି?
ସେହି ଆଭା ପଡ଼ି ପ୍ରାସାଦର ଚୂଡ଼େ
ଦେଉଳର ଆମଳକେ
ଝଟକୁଥିଲା ସେ ରାଜେନ୍ଦ୍ର କଟକ
ଶୈଳତଟେ ଝକଝକେ।
ଦିଶୁଥିଲା ଅସ୍ତ- ଆତପ ହେବାରୁ
ନୀଳ ଦେହେ ନିପତିତ,
ପ୍ରତୀଚୀର ଗିରି- ପ୍ରାଚୀର କୋମଳ
ଧୂମଳବର୍ଣ୍ଣେ ରଞ୍ଜିତ। (୪)
ମାଡ଼ି ଆସୁଥିଲା କ୍ରମେ ପୂର୍ବମୁଖେ
ପ୍ରସାରି ବିରାଟ କାୟା
ଝିଲ୍ଲି ସଙ୍ଗେ ଖରା - ଛାପିଛାପିକିଆ
ପ୍ରଦୋଷର ମହାଛାୟା।
ଚଉଦିଗେ ସ୍ୱର୍ଣ୍ଣ- ବର୍ଣ୍ଣେ ବୋଳିଥିଲା
ଅସ୍ତଗାମୀ ସୂର୍ଯ୍ୟାଂଶୁକ,
କାନନ-କେଦାର- ଟଙ୍କ ନଦୀ-ସ୍ରୋତେ
ଶବଳ ମେଦିନୀ ମୁଖ।
ଜଗତୀ ଉପରେ ଜଗତମୋହିନୀ
ବସି ହେଉଥିଲା ବେଶ,
ପିଟି ଲୋଟୁଥିଲା ସୁସଜ୍ଜେ ଚରଣେ
ତରଙ୍ଗ କୁଞ୍ଚିତ କେଶ।
କରେ ଚୁଡ଼ି, ବାହୁ ଯୁଗେ ବାହୁବନ୍ଧ,
ଗ୍ରୀବାଦେଶେ ଗ୍ରୈବେୟକ,
ଗୌରଗଣ୍ଡ ଚୁମ୍ବି ହୀରାଅବତଂସ
କରୁଥିଲା ଝକଝକ।
ଦିଶୁଥିଲା ଶିଶୁ- ହରିଣାକ୍ଷୀ ରତ୍ନ-
ଭୂଷଣେ କିବା ମଞ୍ଜୁଳ!
ତୁଳ ତାର ସିନା ହୁଅନ୍ତା ତଡ଼ିତ-
ଲତାରେ ଫୁଟିଲେ ଫୁଲ!
ନିତମ୍ବିନୀ ଗୋଲ ପୃଥୁଳ ନିତମ୍ବେ
ଶୋଭୁଥିଲା କାଞ୍ଚିଦାମ,
ସ୍ଥାନ ଜାଣି ଅବା ନିହିଥିଲା ତହିଁ
କାର୍ମୁକ-ଶିଞ୍ଜିନୀ କାମ!
ସରଳ ସୁନ୍ଦର ବାଳୀ ଅଙ୍ଗଯଷ୍ଟି
ଆହା କିବା ସୁଲଳିତ!
ହୋଇଥିଲା କି ସେ ଅନଙ୍ଗ-ଶିଳ୍ପୀର
ଶାଣ-ଯନ୍ତ୍ରେ ସୁବଳିତ!
ବିଭାସିତ ହୋଇ ବିମ୍ବାଧରୀ ଚାରୁ-
ଆସ୍ୟ-ବିମ୍ବ ଅସ୍ତକରେ
ପ୍ରତେ ହେଉଥିଲା ସତେ କି ମୃଗାଙ୍କ-
ମଣ୍ଡଳୁଁ ପୀୟୂଷ ଝରେ।
ଯୁବାଜନ ମନ ଉନ୍ମାଦକ ଲାଜ
ଛପିଥିଲା କି ବିଳାସେ,
କୁନ୍ଦେ, ଆହା, ତାର ସୁବାସ ଯେସନ,
କୁନ୍ଦହାସୀ ଦରହାସେ!
ପଛେ ବସି ସଖୀ ଟାଳୁଥିଲା କେଶେ
ଗଜଦନ୍ତ କଙ୍କତିକା,
ମଞ୍ଜୁ ପାଦପଦ୍ମ ରଞ୍ଜୁଥିଲା ଅଗ୍ରେ
ଲାକ୍ଷାରସେ ପ୍ରସାଧିକା।
ଆହା ସେ ଅବନୀ- ରମ୍ଭାର ଉଜଟ
କନକ-ରମ୍ଭା-ଚରଣ,
ପାହୁଡ଼େ ଯାହାର ଈର୍ଷା ବହ୍ନି ଦହି
ହୁଅଇ ରସିକ ମନ!

(୧) କପିଳେଶ୍ୱର ଦୁର୍ଗର ପଶ୍ଚିମରେ ବିରାଟ ନକ୍ରାକୃତି କପିଳାସ ପର୍ବତଶ୍ରେଣୀ ସ୍ପଷ୍ଟ ପରିଦୃଶ୍ୟମାନ। (୨) ଭଣ୍ଡାରରକ୍ଷକ। (୩) ଯେଉଁ କର୍ମଚାରୀ ତାଲା ବନ୍ଦ କରି ମୋହର ଦେଇଥାଏ। (୪) ନୀଳ ରକ୍ତ ମିଶ୍ରିତ ହେଲେ ଧୂମଳବର୍ଣ୍ଣ ହୁଏ।

ଉପୁଜାଏ, ଆହା, ସଦମ୍ଭେ ଦେଖାଇ
ଯେଉଁ କମନୀୟ ଊରୁ
ଶତ ମନୋରାଜ୍ୟ ହୃଦୟେ ମନୋଜ
ମନୋରାଜ୍ୟ ଦୀକ୍ଷାଗୁରୁ !
ଯୁବା-ମନୋରାଜ୍ୟ – ରୂପିଣୀ ରୂପସୀ
ବିମଳ ହେମ ଦର୍ପଣ,
କରପଦ୍ମେ ଧରି ଦେଖୁଥିଲା କ୍ଷଣେ
କ୍ଷଣେ ପୂର୍ଣ୍ଣ ଚନ୍ଦ୍ରାନନ।
ମାତ୍ର ମୁଖ ଭଙ୍ଗୀ କହିଦେଉଥିଲା,
ବେଶେ ତାର ଆସ୍ଥା ନାହିଁ,
ଦେହେ ମାତ୍ର ତହିଁ ବସିଅଛି, ମନ
ଯାଇ ଚରୁଅଛି କାହିଁ।
ବିଷାଦର ଛାୟା ବଢ଼ାଇଣ ଥିଲା
ଦ୍ୱିଗୁଣେ କାନ୍ତି ବାଳାର,
କି ବର୍ଣ୍ଣିବି ତାହା ରୂପ ଶୋଭା, ଆହା,
ବିଷାଦ ଯାର ସିଙ୍ଗାର ?
ଭାଳିଲା ତରୁଣ ତରୁଣୀର ସେହି
ଲାବଣ୍ୟ ଦେଖି ଅଦୂରୁ,
ସମୁତ୍‌ଥିତା, ଆହା, ନବ ଇନ୍ଦିରା କି
କନ୍ଦର୍ପ-ଦର୍ପ-ସିନ୍ଧୁରୁ ?
ବହ୍ନିଶିଖା ପ୍ରାୟ ରୁଦ୍ରସୁନ୍ଦର ଯେ
ଆନ ବେଶେ ଦିଶୁଥିଲା,
ସର୍ଶକ୍ଷମ ରତ୍ନ ପ୍ରାୟେ ପ୍ରତିଭାତ
ଏବେ ହେଲା ସେ ସୁଶୀଳା।
ମନୋବୃନ୍ତେ ଚିର- ଆଶାୟୀ ପୁଂସର
ଫୁଟିଲା ଆଶା କଳିକା,
ସ୍ନେହନିଃସ୍ୟନ୍ଦିନୀ ସୁନ୍ଦରୀର ଲଭି
ବଦନ ଚନ୍ଦ୍ର-ଚନ୍ଦ୍ରିକା।
ପ୍ରେମ କ୍ଷୁଧାତୁରେ ଅଦୂରୁ ତରୁଣ
ଦେଖି ସେ ନବଛଇଳୀ,
ବିସ୍ତାରିତ-ନେତ୍ରେ ଅସମ୍ଭାଳେ ତୀକୁ
ପକାଇଲା କି ସେ ଗିଳି ?
ସଖୀ ମଣି ଯୁବା- ମଣିକି ହରଷେ
ପୂଇଜିଲା ହେମାମଣି,
ବିରହ ନିଶାନ୍ତେ ଉଷା ଦେଖି ଯଥା
ଉଷତ କୋକରମଣୀ।
ଅଥବା କାସାରେ କୁମୁଦିନୀ ଚଣ୍ଡ-
ଚଣ୍ଡାଂଶୁ ତାପେ କାତର,
ଦିନାନ୍ତେ ଯେସନ ଉଲ୍ଲାସେ ଶାରଦ-
ଜ୍ୟୋତ୍ସ୍ନା-ଯୋଗେ ବିକସ୍ୱର।
ହେମା ସୁଖେ ସୁଖୀ ସହଚରୀବୃନ୍ଦ
ବନ୍ଦିଲେ ଯୁବା ପୟରେ,
କର ଧରି ତାକୁ ବସାଇଲା ହେମା
ନିଜ ପାଶେ ପ୍ରେମାଦରେ।
ବାମା ପାଶେ ବସି ଛଦ୍ମବେଶୀ ହେଲା
ଅପୂର୍ବ ସୁଖେ ଅବଶ,
ସଶରୀରେ ଶଶି ବିମ୍ବକୁ ଛୁଇଁଲା
କିବା ତୃଷାତୁର ଶଶ ?
ଆହା, କି ସରସ ସେ ଦିବ୍ୟ ପରଶ !
ଲେଶମାତ୍ର ଯାର ପାଇ,
ଜୀବନ୍ୟାସ ଲଭି ଉଲ୍ଲାସେ ଉଠିବ
ଶୁଷ୍କ-ତରୁ କଅଁଳାଇ।
ସୁନ୍ଦରୀର ସେହି ସାନ୍ଦ୍ର-ସ୍ପର୍ଶ-ସୁଖେ
ଭୋଳ ହୋଇଗଲା ମନ,
ସାବଧାନେ ଯୁବା କଲା ସେ ଉଦ୍ଧାମ
ସାତ୍ତ୍ୱିକ-ଚିହ୍ନ ଗୋପନ।
ସଂଯମ ଆପଟେ ଏହିରୂପେ ରହି
ନିପଟ ଗଙ୍କ ପରାଏ,
ମନେ ମନେ ଗଲା ଚୁମ୍ବି ସେ ବାଳାକୁ
ଚିକୁରୁ ଚରଣ ଯାଏ।
ସମ୍ଭାଷଣ ପରେ ଅଶନାଦି ନୀତି
ଏକତ୍ରେ ଦୁହେଁ ଆଚରି,
ଶୋଇଲେ କିଶୋରୀ କିଶୋର ନିଭୃତେ
ଏକା ଶେଯେ ପୂର୍ବପରି।
ଦୁଃଖ-ଶେଯ ତାକୁ ଜାଣି ହେମା ତହିଁ
ଆଗ୍ରହେ କଲା ଶୟନ,
ଅଛି ଦୁଃଖ ଯହୁଁ ମୁକ୍ତି ଲଭିବାକୁ
ନ ଲୋଡ଼ଇ ଦୁଃଖି-ମନ।
ଶେଯେ ଶୋଇ କହେ ଲଳିତା, "ସଜନି,
ମେଲାଣି ହେବା ସମୟେ,
ଏତେ ବେଗେ ପୁଣି ଦେଖା ଦେବ ଆସି
ନ ଥିଲା ଆଶା ହୃଦୟେ।
ଶୁଝି ନ ପାରିବି ତୁମ୍ଭ ସ୍ନେହ ଋଣ
ହେଲି ପାଦେ ଚିରଋଣୀ,
ଏ ସୁଦୟା ରହୁ ହୃଦୟ କମଳେ,
ଏତିକି ମୋର ମାଗୁଣି।"
ବୋଲେ ବାମାରୂପୀ, "କିଲାଗି ଅଇଲି
କହିବି ସେହି ଚରିତ,
ସମ୍ଭବିଥିଲେହେଁ ଅନ୍ୟ ଯୁଗେ ତାହା
କଳିକାଳେ ଅଲୌକିକ।
ଯେ ଦିନେ ନୟନେ ଅଙ୍ଗ ଶୋଭା ତୋର
ଦେଖିଲି ନୟନ ଭରି,
ପାଞ୍ଚିଲି ଗଢ଼ିଲେ ନାହିଁ କିପାଁ ମୋତେ
ବିରଞ୍ଚି ପୁରୁଷ କରି।

ପୁଂସ ହୋଇଥିଲେ, ପୁରଟେ ଯେସନ
ଜଡ଼ି ରହିଥାନ୍ତା ମଣି,
ଶ୍ରୀଅଙ୍ଗେ ତୋହର ଅଙ୍ଗକୁ ମିଶାଇ
ରହିଥାନ୍ତି ହେମାମଣି ।
ପୁଂସ ହୋଇଥିଲେ ହୋଇଥାନ୍ତି ସିନା
ସେବାରେ ତୋର ନିପୁଣ,
ଖଟଣି କିଙ୍କର ପାଦେ ହୋଇ ତୋର
ତ୍ରିଦିବ ମଣନ୍ତି ତୃଣ ।
ଖ-ପୁଷ୍ପ ପ୍ରାୟେ ଏ ବାସନାକୁ ଜାଣି
ଖେଦ ମାରିଥିଲି ମନେ,
ମାତ୍ର ପାରି ହେଲି ପୁଣି ସଙ୍ଗେ ତୋର
ଏକତ୍ର ଶୋଇ ଶୟନେ ।
କୁନ୍ଦେ କଟା ପ୍ରାୟେ ଏ ନିତମ୍ବ ତୋର
ଦେଖି ହେଲା ବଡ଼ ଶୋକ,
ପୂର୍ଣ୍ଣ ଇନ୍ଦୁ ବିମ୍ବ ଦେଖି ମନୋଦୁଃଖେ
ଝୁରି ହୁଏ ସିନା କୋକ ।
ଭାବିଲି, ବିଧି କି ଛାଡ଼ି ଦେଲା ମୃଗ
ତୁଣ୍ଡେ ବଜ୍ର ତୁଣ୍ଡି ଦେଇ,
ଶୈଳଦରୀଝର- ଶୋଭି ଶୋଭାବନ
ତା ଚକ୍ଷୁ ଅଗ୍ରତେ ଫେଇ ।
ଧିକ ସେ ବିଧିକି । ଆଗୁଁ ଯେବେ ମୋତେ
ଅବଳା କରି ଗଢ଼ିଲା,
ଅକାରଣେ କିପାଁ ତୋ'ପରି ରୂପସୀ-
ପାଶେ ଆଣି ଭେଟାଇଲା ?
ନାରୀ ପୁଷ୍ପେ ନାରୀ ପୁଷ୍ପର ଯୋଜନା
ନିଷ୍ଫଳ ସିନା କେବଳ ।
ସେ ପୁଷ୍ପରୁ ପୁଷ୍ପ- ସରଜନେ ଏକା
ଭାଜନ ପୁଂସ-ଭ୍ରମର । (୧)
ପୁଂସ-ଅଳି ଯୋଗେ ପୁଷ୍ପ ସୁକୁମାରୀ
କୁମାରୀ ହୁଏ ପ୍ରସୂତା,
ଏ ବିଧିରେ ବିଧି କରାଉଛି ଭବେ
ନୂତନ ଶୋଭା ସମ୍ଭୂତି ।
ଏ ବିଧି ବିଧିର ଆନ ହେବ ନାହିଁ,
ଯେଣୁ ସେ ସ୍ୱବିଧି ବଶ,
ମୋତେ ହଟହଟା କରାଇ ଏରୂପେ
ଅରଜିଲା କେଉଁ ଯଶ ?
ଖିନ୍ନ ମନେ ଶେଯ ତେଜି ଉଷାକାଳେ
ତୋ'ଠାରୁ ନେଲି ବିଦାୟ,
କଲି ଦୃଢ଼ପଣ ପୁରୁଷ ହେବାର
ଲୋଡ଼ିବି ଥିଲେ ଉପାୟ ।

ଶୁଣିଥିଲି ପୂର୍ବେ ଶିଖଣ୍ଡିନୀ ବାଳା (୨)
ପଞ୍ଚାଳ ମହୀମଣ୍ଡଳେ,
ଦେବବ୍ରତେ ହିଂସା ବହି ହୋଇଥିଲା
ପୁଂସ ଉଗ୍ରତପଃଫଳେ ।
ଭାଳିଲି ସମ୍ଭବ ନୋହିବ କି ପ୍ରେମେ
ସମ୍ଭବିଥିଲା ଯା ଦ୍ୱେଷେ ?
ସେହି ତପଃ ଶିକ୍ଷା ଲାଗି ମୁଁ ଖୋଜିବି
ଦୀକ୍ଷାଗୁରୁ ଦେଶେ ଦେଶେ ।
ଭେଟିଲି କାନନ ପଥେ ପଥେ ଯାଇ
ସେ ଉଦୟ ସାନୁମାନ,
ତୋ ଗହଣେ ଆସୁ ଆସୁ ତଟେ ଯାର
କରିଥିଲି ଅବସ୍ଥାନ ।
ପୁଂସବେଶେ ସେହି ଶୈଳେ ଭ୍ରମୁ ଭ୍ରମୁ
ଦେଖିଲି ଦିବ୍ୟ ଆଶ୍ରମ,
ଅକାଳ କୁସୁମ ଫଳେ ଯହିଁ ତରୁ
ଲତାରାଜି ମନୋରମ ।
ଆବର ଦେଖିଲି ଶୋଇଅଛି ଅହି
ନୀଳକଣ୍ଠ-ପୁଚ୍ଛ ତଳେ,
କୁରଙ୍ଗ ଶିଶୁଙ୍କୁ ପିଆଉଛି ସ୍ତନ୍ୟ
ଶାର୍ଦ୍ଦୂଳୀ ସ୍ନେହ ବତ୍ସଳେ ।
ଆଶ୍ରମର ମଧ୍ୟ- ସ୍ଥଳେ ଦିବ୍ୟ ସର
ମୁକୁର ପ୍ରାୟେ ନିର୍ମଳ,
ସମସ୍ତ ଆଶ୍ରମ ଛବି ହୃଦେ ବହି
ଛଳ କରେ ଢଳ ଢଳ ।
ତା ତୀରେ ଦେଖିଲି ମହାତେଜଃପୁଞ୍ଜ
ତପୋଧନ ଧ୍ୟାନେ ରତ,
ନିଭୃତେ ନିଶ୍ଚଳେ ଆସୀନ, ନିସ୍ବାତେ
ନିଷ୍କମ୍ପ-ପ୍ରଦୀପବତ ।
କେ ଜାଣି ସେ ଯତି ସମାଧି ଆସନେ
ଥିଲେ ତହିଁ କେତେ କାଳ ?
ମାତ୍ର ତାଙ୍କ ଦେହେ ଊର୍ଣ୍ଣନାଭ ଠାବେ
ଠାବେ ବୁଣିଥିଲା ଜାଲ ।
ସମାଧି ସରିଲେ ଦୁଃଖ ଜଣାଇବି
ଏହି ଆଶା ବହି ମନେ
ଜୀବନେ ମମତା ତେଜି ଅଧାପଡ଼ି
ରହିଲି ତାଙ୍କ ଚରଣେ ।
ଯଥାକାଳେ ଯୋଗ- ସମାଧି ଆଚରି
ଉଠିଲେ ସେ ମହାଜ୍ଞାନୀ,
"ଉଠ ବତ୍ସ" ବୋଲି ଶ୍ରୀମୁଖୁଁ ତାଙ୍କର
ନିଃସରିଲା ଆଶାବାଣୀ ।

(୧) ଭ୍ରମର ଓ ମଧୁମକ୍ଷିକାର ସଂଯୋଗରେ ପୁଷ୍ପର ଗର୍ଭଧାରଣ ବିଜ୍ଞାନସମ୍ମତ ଅଟେ । (୨) ଶିଖଣ୍ଡିନୀ ପ୍ରଥମେ ସ୍ତ୍ରୀ ଥିଲା । ଭୀଷ୍ମଙ୍କୁ ସଂହାର କରିବାପାଇଁ ତପସ୍ୟା କରି ପୁରୁଷ ହେବାର କଥା ମହାଭାରତରେ ଦେଖ ।

"କି ମାଗୁଣି ତୋର" ଏହି ପ୍ରଶ୍ନେ କର
ଯୋଡ଼ି ବୋଇଲି ବହଳ,
"କିଛି ମାଗୁ ନାହିଁ, ମାତ୍ର ପୂର୍ଣ୍ଣ ହେଉ
ତୁମ୍ଭ ଶ୍ରୀମୁଖ ବଚନ।
ନାରୀ ଅଟଇ ମୁଁ ନୁହଇ ପୁରୁଷ,
ନାରୀଜନ୍ମୁ କର ପାରି,
ଶ୍ରୀମୁଖନିଃସୃତ ବାଣୀ ସତ୍ୟ ହେଉ
ଏତିକି ମୋର ଗୁହାରି।"
ମୋ ଆରତି ଦେଖି କୃପା-ଅକୂପାର
କୃପା ବହି ତପୋଧନ,
ଆଦେଶିଲେ ମୋତେ କରିବାକୁ ସେହି
ସରସୀ ନୀରେ ମଜ୍ଜନ।
ସରସୀରେ ମଜ୍ଜି ଉଠିଲାକ୍ଷଣି ମୁଁ
ଦେଖିଲି ହୋଇ ବିସ୍ମିତ,
ସେ ଆଶ୍ରମ ସଙ୍ଗେ ତପୋଧନ ତହୁଁ
ହୋଇଛନ୍ତି ଅନ୍ତର୍ହିତ।
ମାତ୍ର ସେହି କ୍ଷଣେ ସଞ୍ଚରିଲା ମୋର
ଶରୀରେ ଅପୂର୍ବ ବଳ,
ପୂର୍ବ ବନ୍ଧୁରତା ତେଜି ହୋଇଗଲା
ସମତଳ ବକ୍ଷସ୍ଥଳ।
କଣ୍ଟକିତ ହେଲା ଚିବୁକ, ଚରଣ
ତେଜିଲା ମନ୍ଥର-ଗତି,
ଦକ୍ଷିଣ ପୟର ପ୍ରସାରି ତୀରେ ମୁଁ
ଉଠିଲି ଯାଇ ତଡ଼ତି।
ଉଦ୍ଦେଶ୍ୟେ ସାଷ୍ଟାଙ୍ଗେ ପ୍ରଣମି ମୁନିଙ୍କି
ସେ ଶୈଳୁଁ ତଳେ ଓହ୍ଲାଇ,
ପୂର୍ବ ନାରୀବେଶ ଧରି ମୁଁ ଆସିଲି
ଏ ବାରତା ଦେବାପାଇଁ।
ତୋହରି କିଙ୍କର ହେବା ଆଶାରେ ମୁଁ
ଆଶ୍ରିଲି ପୁଂସ-ବିଗ୍ରହ,
ପୁଂସ ହେଲି ବୋଲି ମାଗୁଛି ପୟରେ
ଊଣା ନୋହୁ ଅନୁଗ୍ରହ।"
ଏହା ବୋଲି ହୃଦୁଁ କାଞ୍ଚଲା ଫିଟାଇ
ଦେଖାଇଲା ବକ୍ଷସ୍ଥଳ,
ପକାଇଲା ଇନ୍ଦ୍ର- ନୀଳମଣି ଚୁଡ଼ି
ପ୍ରକୋଷ୍ଠୁଁ କାଢ଼ି ଚଞ୍ଚଳ।
ଶାଢ଼ି କାଢ଼ିବାରୁ ଆଡ଼ କରି ମୁଖ
ଦେଖିଲା ଚନ୍ଦ୍ରବଦନୀ,
ପିନ୍ଧିଛି ସେ ଶାଢ଼ି ତଳେ ପୁରୁଷର
ପରିଚ୍ଛଦ ଯୁବାମଣି।
ବିସ୍ମୟ, ହରଷ ଏକ ପରେ ଏକ
ରାଜସୁତା ହୃଦେ ଆସି,
କଲେ ପ୍ରଭୁପଣ, ଅବଶେଷେ ତାକୁ
ଲଜ୍ଜା ପକାଇଲା ଗ୍ରାସି।
ଲଜ୍ଜାବଶେ ବାଳା ଶଯ୍ୟାରୁ ଓହ୍ଲାଇ
ତଳେ ଯାଇଁ ହେଲା ଉଭା,
ସଙ୍ଗେ ସଙ୍ଗେ ତଳେ ଓହ୍ଲାଇ ତା କର-
ପଲ୍ଲବ ଧଇଲା ଯୁବା।
ଚାଟୁଗିରେ ବାଳା- ମଣିକି ମନାଇ
ଆଣିଲା ଖଟକୁ ପୁଣି,
ମନ୍ଦବାତେ ପଦ୍ମ- ଲତା ପ୍ରାୟେ ଥରେ
ତଥାପି ଲାଜେ ତରୁଣୀ।
ଆଶ୍ୱାସନା ଦେଇ ପ୍ରଗଲ୍‌ଭେ ରସିକ
ବର ପ୍ରେମ ଉତ୍ତରଳେ
କମଳ-କୋରକ- ସ୍ତନା ନୂତନାକୁ
କୋଳେ ବସାଇଲା ବଳେ।
ପ୍ରେମ ଲଜ୍ଜା ମଧ୍ୟେ ବଳ ଟଣାଟଣି
ଲାଗି ପ୍ରେମଶୀଳା ମନେ,
ହାରି ପଳାଇଲା ଲଜ୍ଜା ଲାଜ ପାଇ
ଜିଣିଲା ପ୍ରେମ ଏ ରଣେ।
ସ୍ମିତ ଜ୍ୟୋତ୍ସ୍ନା ଦେଖି ସୁନ୍ଦରୀ ବଦନେ
ଯୁବକ ହେଲା ଉନ୍ମତ,
ଜାଣିଲା ତା ପ୍ରେମ ପାଛୋଟି ନେବାକୁ
ଆସିଲାଣି ଅଧେ ପଥ।
ବିଭା ବିନା ହେବ ସମ୍ଭୋଗ କେସନେ ?
ଏତିକି ମାତର ବାଧା,
ମାତ୍ର କିଏ କେବେ ଏଭଳି ସୁଯୋଗେ
ରଖଇ ଶାସ୍ତ୍ରମର୍ଯ୍ୟାଦା ?
ମହୋତ୍କଟ ଦନ୍ତୀ ମାନଇ କି କେବେ
ମୃଣାଳ ତନ୍ତୁ ଅର୍ଗଳା ?
ବାଲିବନ୍ଧେ କେବେ ସମ୍ଭାଳି ହୁଏ କି
ମହାବେଗା ବିଦ୍ରୋହିଳା ?
ସଂସର୍ଗ-ଲାଳସୀ ବେନିଏ, ହୋଇଛି
ବେନିଙ୍କ ଭେଟ ନିର୍ଜନେ,
ଜର୍ଜର କରଇ ବେନିଙ୍କର ତନୁ
ଅତନୁ ପୁଷ୍ପମାର୍ଗଣେ।
ସୁରୂପ, ଯୌବନ, ପ୍ରେମ, ଏ ତିନିହେଁ
ବିବେକ ବୈରୀ ସର୍ବଥା,
ତିନିହେଁ ମିଳିଲେ ବିବେକର ବେକ
ମୋଡ଼ି ଦେବା କିବା କଥା ?
ତଥାପି ବିବେକ ମୁଖକୁ ଅନାଇଁ
କି ପୁରୁଷ, କିବା ରାମା,
ବିବେକ ସହିତେ ଗାନ୍ଧର୍ବ ବିଧାନେ
କରିନେଲେ ରଫାନାମା।

ମଣହରୀ ଛାୟା- ମଣ୍ଡପ, ରତନ-
ପଲଙ୍କ ହେଲା ବେଦିକା,
ନାୟକନାୟିକା ଭୁଜଯୁଗ୍ମ ହେଲା
ବରଣ-ପୁଷ୍ପ-ମାଳିକା।
କନ୍ୟାକର୍ତ୍ତା ହେଲା କନ୍ୟା ଏ ବିବାହେ,
ବରକର୍ତ୍ତା ହେଲା ବର,
ପୁରୋଧା-ଅଭାବ ଘୁଞ୍ଚାଇଲା ଆସି
ଧନୁଷ୍ପାଣି ପୁଷ୍ପଶର।
ମିଳନର ଆଗେ ଯେହୁ ହୋଇଥିଲା
ବେନିଙ୍କର ପରିପନ୍ଥୀ,
ପୁରୋହିତ ହୋଇ ସେହି ହର୍ଷେ ଏବେ
ପକାଇଲା ହସ୍ତଗ୍ରନ୍ଥି।
ନାସାମଣି ହେଲା ନଟୀ, ବାଦ୍ୟକାର
କଙ୍କଣ ପୁଣି କିଙ୍କିଣୀ,
ଅଦୃଶ୍ୟରୂପେ ବିଜେ ହେଲେ ଏ ଉତ୍ସବେ
ନିଜେ କାମ-ସୀମନ୍ତିନୀ।
ତପ୍ତ ଥାଉ ଯଥା ଲୌହକୁ ଯୋଡ଼ଇ
ଅୟୋଘନେ ଲୌହକାର,
ପ୍ରହାରି ବିଶିଖେ ରସିକା ରସିକେ
ଯୋଖିଲା ତେସନେ ମାର।

## [ ପଞ୍ଚମ ସର୍ଗ ]

ରସିକ ରସିକା ପରସ୍ପରେ ମିଳି
ଏହିରୂପେ ସଂଗୋପନେ,
ଚୋରା ସୁଖେ ରତ ହୋଇ କଟାଇଲେ
ଦିନ ଅତି ହୃଷ୍ଟମନେ।
ରସିକ-ଶେଖର କୁମର, କୁମାରୀ
ରସିକା - ବଇଜୟନ୍ତୀ,
ଲଭିଲେ ଅଶେଷ ରତନ ସୁହାଗେ
ଭାବ-ସାଗରକୁ ମନ୍ଥି।
ରାଜକିଶୋରୀର ଚିତ୍ତ ତୋଷୁଥିଲା
ନିଭୃତେ ରାଜକିଶୋର,
ବିଶ୍ୱମନୋରମା- ଉତ୍କଳେଶ-ହେମା-
ଶ୍ରୀମୁଖ ଚନ୍ଦ୍ର-ଚକୋର।
ଲଳିତ-କନକ- କଳିତ-କେତକୀ-
ଗଉରୀକି ଯୁବାମଣି,
ସୁହାଗ ରଭସେ ମଣୁଥାଇ ପ୍ରେମ-
ପୟୋଧି-ହେମ-ତରଣୀ।
ପ୍ରେମଗୁରୁଠାରୁ ପ୍ରେମତନ୍ତ୍ର ଶିଖି
ସେ ତନ୍ତ୍ରେ ହୋଇ ପ୍ରବୀଣା,
ଯୁବତୀ-ଚାତୁରୀ ଦେଉଥିଲା ଧନୀ
ଗୁରୁଙ୍କୁ ଗୁରୁଦକ୍ଷିଣା।
ଦିବାଯୋଗେ ଯୁବା- ଠାରୁ ମଞ୍ଜୁକେଶୀ
ହେଉଥିଲେ ଅସଂଯୁତା,
ନିଶାଯୋଗେ ବେନି ତନୁ ମଧ୍ୟେ ଗଳୁ
ନ ଥିଲା ମୃଣାଳ-ସୂତା।
ହୃଦପରି ଦେହେ ମିଶାଇ ଦେବାକୁ
ସୌଚିକ କୁସୁମ-ଧନୁ,
ସିଇଁ ଦେଉଥିଲା ସୂକ୍ଷ୍ମ-ପୁଷ୍ପଶର-
ସୂଚିରେ କି ବେନି ତନୁ?
ଅସଂଯୋଗେ କେବେ ବେନିଠାରୁ ବେନି
ଛିନ୍ନ ହେଲେ ଏକଦଣ୍ଡ,
ଲଭୁଥିଲେ ଏକ ଆରେକରୁ ସୁଧା-
ସୋଦର ସୁହାଗ ଦଣ୍ଡ।
ଉଚ୍ଛୁର ଘଟିଲେ ଏକର, ଆରେକ
ଜଗି ବସିଥିଲେ କଣ୍ଡ,
ଶତ ପ୍ରାୟଶ୍ଚିତ୍ତ କଲେ ହେଉଥିଲା
ଦୋଷକୁ ତାହା ନିଅଣ୍ଡ।
ଉଠୁଥିଲା ଯେବେ ଯେବଣ ଲଳିତ-
ସ୍ପୃହା ଜଣକର ମନେ,
ଦର୍ପଣ ପରାଏ ପ୍ରତିବିମ୍ବୁଥିଲା
ଆନ ମନେ ତତକ୍ଷଣେ।
ବେନିଙ୍କ ବଦନ ବେନିଙ୍କି ହେଲା କି
ପ୍ରେମର ହେମ-ଦର୍ପଣ?
ବେନିଙ୍କି ଦେଖିବା ଲାଗି କି ବେନିଏ
ବହୁଣଥିଲେ ଈକ୍ଷଣ?
ପଲକ ଜନିତ ଦୃଷ୍ଟିବାଧା ହେଲା
ସମ୍ବତ୍ସର ପ୍ରାୟେ ପ୍ରତେ,
ପୁଲକ ଅନ୍ତର ପରିରମ୍ଭେ ପୁଣି
ଯୋଜନ ବେନିଙ୍କ ମତେ।
ନାରୀକି ହୃଦୟେ ରଖିଲେ ପ୍ରେମିକ-
ଶେଖର କମଳାବର,
ନାରୀ ପ୍ରେମେ ଦେବ ଅର୍ଦ୍ଧେନ୍ଦୁମଉଳି
ହେଲେ ଅର୍ଦ୍ଧନାରୀଶ୍ୱର।
ମାତ୍ର ଏ ଯୁବକ- ଯୁବତୀର ପ୍ରୀତି
ସେ ପ୍ରୀତିକି ବଳିଗଲା,
ପ୍ରେମେ ଏକାକାର ହୋଇଗଲେ କିବା
ମହୋଦଧି ଚିତ୍ରୋତ୍ପଳା?

ପ୍ରେମ-ରସାୟନ- ଯୋଗେ ବେନି ହୋଇ
ପୂର୍ବ-ରୂପ-ବିରହିତ,
ହେଲେ ଅବା ସୁଧା ହରିଦ୍ରା ପରାଏ
ରାଗାକାରେ ଆକାରିତ ?
ପରସ୍ପରେ ବିଶ୍ୱ- ବିଲୋଚନ-ଚୋର
ସେ ସୁନ୍ଦରୀ, ସେ ସୁନ୍ଦର,
ହୋଇଥିଲେ ସବୁ- ମତେ ଯେଣ୍ଟା ଯୋଗ୍ୟ
ସହଚରୀ ସହଚର ।
ଉତ୍କଳେଶ ହେମା ରତିସ୍ୱରୂପିଣୀ
ଯୁବାମଣି ରତିନାଥ,
ପ୍ରଫୁଲ୍ଲ ପଦ୍ମିନୀ ହେମା, ଯୁବାମଣି
ପଦ୍ମିନୀ-ପ୍ରାଣ-ସଙ୍ଗାତ ।
ବାସନ୍ତୀ ଲତିକା ସେ ନବ-ବାଳିକା,
ଯୁବା କାନ୍ତ ସହକାର,
ପ୍ରେମତରଙ୍ଗିଣୀ ସେ ନବ-ରଙ୍ଗିଣୀ,
ଯୁବା ପ୍ରେମ- ପାରାବାର ।
ଯୌବନ-କାନନେ ପୁଷ୍ପଲକ୍ଷ୍ମୀ ହେମା,
ଯୁବାମଣି ଋତୁରାଜ,
ଚନ୍ଦ୍ରିକା-ରୂପିଣୀ ସେ ଚନ୍ଦ୍ରବଦନୀ,
ଚନ୍ଦ୍ର ଯୁବା-ଶିର-ତାଜ ।
ଚପଳା ରୂପିଣୀ ପ୍ରେମାକାଶେ ହେମା,
ଯୁବା ନବ ଜଳଧର,
କୁସୁମମଞ୍ଜରୀ ପ୍ରେମ କୁଞ୍ଜେ ହେମା,
ଯୁବା ମତ୍ତ ମଧୁକର ।
ଶୋଭାରାଜ୍ୟେ ରାଜା ରାଣୀର ଭିଆଇ
ଏ ମିଳନ ଅଭିରାମ,
ବିଶ୍ୱ - ଶିଳ୍ପି - ଶିଳ୍ପ ବିଳସିଲା, ପୁଷ୍ପ –
କାର୍ମୁକ ହେଲା ସକାମ ।
ଯୁବତୀ ଜଘନ ସ୍ୱର୍ଣ୍ଣସିଂହାସନ,
ପୂର୍ଣ୍ଣ-କୁମ୍ଭ ସ୍ତନଯୁଗ,
ଯୋଗେ ପ୍ରେମରାଜ୍ୟେ ଯୁବା ଅଭିଷେକ
ଭିଆଇଲା ପୁଷ୍ପାଶୁଗ,
ନିକାଞ୍ଚନେ ନିଶା- ଯୋଗେ ଚୋରାସୁଖେ
ମଜ୍ଜିଲେ ନାରୀ ପୁରୁଷ,
ରସିକ ଯେ, ତାଙ୍କୁ ଜଣା ସିନା ଚୋରା-
ସୁଖ ସେ ଛଣା ପୀୟୂଷ ।
ଅଭିରୂପେ ଗୁପ୍ତ ପ୍ରୀତିରୁ ଯେ ମଧୁ
ପିଅନ୍ତି ପୁଂସ୍ୱ ନାଗରୀ,
ରସିକଙ୍କ [illegible] ସୁନାଶୀର ଶିରୀ
ସେ ସୁଖକୁ ନୋହେ ସରି ।
[illegible] ତାରା- ପୁଞ୍ଜ ନଭସ୍ଥଳେ,
ପୁଷ୍ପରାଜି ଉପବନେ,

ବେନିଙ୍କ ପ୍ରଣୟ ସାକ୍ଷୀ ହେଉଥିଲେ
ହର୍ମ୍ୟ ପୃଷ୍ଠେ ନିକାଞ୍ଚନେ ।
ନବ ଦମ୍ପତିର ଆବର ଚକୋର
ଚକୋର – ପ୍ରାଣକାନ୍ତାର
ହେଉଥିଲେ ଇନ୍ଦୁ – ଚିରପ୍ରେମ – ବନ୍ଧୁ-
ଶୃଙ୍ଗାର-ସୁଧା-ଭୃଙ୍ଗାର ।
କେତେ ଛନ୍ଦାଛନ୍ଦି, ଗଳା ଗୁଣ୍ଠାଗୁଣ୍ଠି,
କେତେ ଗେଲ ଘେନାଘେନି,
ବିହୁଥିଲେ ବେନି ବିଜନେ ହୋଇ କି
କାମ-କୁଞ୍ଜ-ଏଣ-ଏଣୀ ?
କିଅବା ପହଗୁଁ- ଥିଲେ ସେ ରସିକ
ରସିକା ସୁହାଗଭରେ,
ହଂସହଂସୀରୂପେ ପ୍ରେମ-ସୁଧାପୂର୍ଣ୍ଣ
ମନସିଜ- ପଦ୍ମାକରେ ?
ଏକକୁ ଆରେକ ଆଶ୍ଳେଷ – ପଞ୍ଜରେ
ତଡ଼ୁଥିଲା ସଦା କାମ,
ନିଦ୍ରାକାଳେ ସୁଦ୍ଧା ସ୍ୱପ୍ନ-ବଶେ ତାଙ୍କ
ନ ଥିଲା ରସେ ବିରାମ ।
ଚାଟୁକାର ହୋଇ ମନ୍ଦାନିଳ ମହା-
ନଦୀ-ନୀର-କଣବାହୀ,
ସ୍ୱେଦ-ବିନ୍ଦୁମୋତି ନେଉଥିଲା ଅଛି,
କୁନ୍ତଳା-ଗଣ୍ଡ ଚୋରାଇ ।
ଶେଯ ତ୍ୟାଗ ଆଗେ ମଣୁଥାନ୍ତି ନବ-
ତରୁଣୀ ନବ ତରୁଣ
ଏକେ ଆରେକର ମୁଖ ବିଲୋକନ
ପ୍ରତ୍ୟୁଷେ ଶୁଭ ଶକୁନ ।
ମନଚୋର ସଙ୍ଗେ ଚୋରା-ସୁଖ-ଭୋଗେ
ଯାପି ନିଶା ସୁକୁମାରୀ,
ଦିବସେ ରଥାଙ୍ଗ- ଦମ୍ପତିର ସଙ୍ଗ
ଦେଖି ହେଉଥାଇ ଘାରି ।
ସଙ୍ଗେ ଥାଇ ସୁଦ୍ଧା ବିଚ୍ଛେଦେ ବେନିଏ
ଉଚ୍ଛନ୍ନ ହୋଇ ସନ୍ତତ,
ଦିନେ ମଣୁଥାନ୍ତି ନିଜକୁ ଯାମିନୀ-
କୋକ କୋକ-ଜାୟାବତ ।
ପ୍ରେମ-ସୁଖ-ଭୋଗେ ପଦେ ପଦେ ବାଧା
ଲଭି ସେ ଜନ ସମୀପେ,
କଳ୍ପନା ଡେଣାରେ ଉଡ଼ିଯାଉଥାନ୍ତି
ସୁଖର ନିରୋଳ ଦ୍ୱୀପେ ।
ଯାପୁଥିଲେ ଦିନ ସଖୀଙ୍କର ମେଳେ
ବେନିଏ ନାନା ବିନୋଦେ,
ଚିତ୍ର କର୍ମେ, ବୀଣା- ବାଦନେ, ସଙ୍ଗୀତେ,
ଦ୍ୟୂତେ, ଅବା କାବ୍ୟାମୋଦେ ।

କାବ୍ୟର ଅବ୍ୟକ୍ତ ଚରିତାଦି ଦିନେ
ହୃଦୟେ କରି ସଞ୍ଚୟ,
ପ୍ରେମାମୋଦେ ବେନି କରୁଥାନ୍ତି ତାହା
ନିଶା ଯୋଗେ ଅଭିନୟ।
କି ଉଲ୍ଲାସେ ବେନି କରୁଥାନ୍ତି ଦିବା-
ଉପାସେ ଅଧୀରମନା,
ଦିବା ଉପବାସେ ଦ୍ୱିଗୁଣ ମଧୁର
ନିଶାର ପ୍ରେମପାରଣା।
କେତେ ଅଙ୍ଗଭଙ୍ଗୀ ଶିଖାଉଣଥାଇ
ନାଟଗୁରୁ ପୁଷ୍ପବାଣ
କେଳିତନ୍ତ୍ରେ, ନୂଆ ଚାଟକୁ ଯେସନ
ଛାଟ ଧରି ଅବଧାନ।
ସ୍ମରାଚାର୍ଯ୍ୟ ଶିକ୍ଷା – ଛଳେ ସେ ଛଇଳା
କେତେ ଛଇ ପ୍ରକଟାଇ,
ନେଉଥାଇ ନାନା ରଙ୍ଗେ ସେ ନବୀନ-
ନାଗର ମନ ରସାଇ।
ଅଳୀକ କାତର ପଣକୁ ଦେଖାଇ
କେବେ କର-ପଦ୍ମ ଯୋଡ଼େ,
କେବେ ଅବା ମୌନୀ ହୋଇ ଅଭିମାନେ
ବଙ୍କ-ବଦନ ମୋଡ଼େ।
ଭର୍ତ୍ସନା ସହିତେ ବିକସୁଣଥାଇ
ସ୍ମିତ-ପ୍ରଭା ବାଳା ମୁଖେ,
ଲାଜ ସଙ୍ଗେ ପୁଣି ଲଳିତ ଧୃଷ୍ଟତା,
ଶୁଖିଲା ରୋଦନ ସୁଖେ।
ହାବ ଭାବ ବଶେ ଥରେ ଥରେ ଥରି
ଉଠୁଥାଇ ବାଳା ଅଙ୍ଗ,
ଉଛଳଇ ସିନ୍ଧୁ ବକ୍ଷେ, ଆହା, କି ସେ
ଶାରଦ-ଚନ୍ଦ୍ରିକା ରଙ୍ଗ ? (୧)
ଅଳୀକ-କୋପରେ ଉଠୁଥାଇ କେବେ
ଅର୍ଦ୍ଧେନ୍ଦୁ-ଭାଳେ ଭ୍ରୁକୁଟୀ,
କେତେବେଳେ ଅବା ଯାଉଥାଇ ଲାଜ-
ପାଟଳ-ଗଣ୍ଡେ ଉକୁଟି।
ଆଖି ଠାରାଠାରି ହେଉଥାନ୍ତି ବେନି
ଅନ୍ୟ ସଜନୀଙ୍କ ପାଶେ,
ଭୁକ୍ତ-ସୁଖ-ସ୍ମୃତି – ଅପେକ୍ଷିତ ସୁଖ
ଆଶାର ସାନ୍ଦ୍ର-ଉଲ୍ଲାସେ।
ବେନିଙ୍କ ହୃଦୟେ କରୁଥାଇ କେତେ
ବିଳାସ-ଲାଳସା ଜାତ,
ବେନିଙ୍କ ଉପରେ ବେନିଙ୍କର ସ୍ମିତ
ମଧୁର-କଟାକ୍ଷପାତ।

ପ୍ରେମ – କୂଟ – ଭାଷା ବୁଝି ନେଉଥାନ୍ତି
ବେନି ବେନିଙ୍କ ନୟନୁଁ,
ବୁଝିବାର ତହିଁ କି କଠିନ, ଯହିଁ
ଭାଷ୍ୟକାର ପୁଷ୍ପଧନୁ ?
ଅସତର୍କେ କେବେ ଦେଖିଲେ ସିହାଣୀ
କାନ୍ତକୁ ରାଗତରଙ୍ଗ,
ବୋଧୁଥାଇ ତାକୁ କ୍ଷଣେ କ୍ଷଣେ କରେ
ମୁଦି ଲୀଳା-ଶତଦଳ।
କେବେ ଅବା କାନ୍ତ ଚୁମ୍ବନଛଳେ ସେ
ରହସ୍ୟର ବ୍ୟାଜ ଧରି,
କାନ୍ତା କର୍ଣ୍ଣେ କହେ କଥା, ପୁଷ୍ପ କର୍ଣ୍ଣେ
ମଳୟାନିଳ ଯେପରି।
ନେତ୍ର ଯୁଗ୍ମ ପ୍ରାୟେ ଗୁପ୍ତ ଭାବ – ସୂତ୍ରେ
ବନ୍ଧ ବେନିଙ୍କର ଚିତ୍ତ,
ଏକର କଷଣେ ଆରେକ ହୁଅଇ
ସମକାଳେ ବିଚଳିତ।
ନୟନ ଇଙ୍ଗିତେ ଦ୍ୟୂତେ କାନ୍ତାକାନ୍ତ
ଚୁମ୍ବନାଦି କରି ମୂଳ,
ରାତ୍ରେ କରୁଥିଲେ ବେନିଠାରୁ ତାହା
ନିର୍ଜନେ ବେନି ଅସୁଲ।
କି ମଧୁର ପ୍ରେମ- ରଣ ସେ, ଯେ ରଣେ
ଅନୁରାଗେ ପୁଂସ ନାରୀ,
ଏକକୁ ଆରେକ ଜିଣିବାକୁ ଯାଇ
କୃତାର୍ଥ ହୁଅନ୍ତି ହାରି।
ହାରି ଯାଉଥିଲା ଅନୁକ୍ଷଣେ ପୁଂସ
ଜିଣୁଣ ଥିଲା ପ୍ରମଦା,
ଅବଳା ପ୍ରବଳା ନୁହନ୍ତି କି ଏଥି
ପୁଷ୍ପାୟୁଧ ବଳେ ସଦା ?
ସୁନ୍ଦର ସୁନ୍ଦରୀ – ମଣି ଏହିମତେ
ସନ୍ତରି ପ୍ରେମ ସରିତେ,
କଟାଇଲେ କିଛି ଦିନ, ମାତ୍ର ସଦା
ମହାଶଙ୍କା ବହି ଚିତ୍ତେ।
ମଧୁର ଯେମନ୍ତ ସେହିପରି ଗୁପ୍ତ-
ପ୍ରୀତିଟି ବଡ଼ ପ୍ରମାଦ !
ନର ଭାଗ୍ୟେ ଏଡେ ଭୋଗକୁ ନ ସହି
ଭିଆଏ ଦୈବ ବିବାଦ।
ଏହା ଜାଣି ମହା- ସତର୍କେ ବେନିଏ
ଦିନେ ରହୁଥିଲେ ଭିନ୍ନ,
ଘୋଡ଼ାଉଣଥିଲେ [illegible]
ଚିତ୍ତବିକାରର ଚିହ୍ନ।

(୧) ରଙ୍ଗ – ନର୍ତ୍ତନ।

ସମ୍ଭୋଗର ଯେତେ ଚିହ୍ନମାନ, ଗୁପ୍ତ-
ସୁଖର ନୀରବ ସାକ୍ଷୀ,
ଲିଭାଉଣଥିଲା ଅତି ଯତ୍ନେ ନିଶା-
ଶେଷେ ଶିଶୁ-ହରିଣାକ୍ଷୀ।
ଶ୍ଳଥ କେଶପାଶ, ବିଶୀର୍ଣ୍ଣ ଚର୍ଚ୍ଚିର
ସୁରଭି କୁସୁମମାଳ,
ରଚନ ପଲଙ୍କେ ବିଦଳିତ ଶେଯ
ମୁଖ ନ ଥାଇ ବାଚାଳ।
ସଜାଡୁଥିଲେ ସେ ଅତି ସାବଧାନେ
ରମଣୀମଣି ରମଣ,
ଘୋଡ଼ାନ୍ତି ଯତନେ ଯଥା ଦୋଷୀ-ଜନେ
ନିଜ ଦୋଷ ନିଦର୍ଶନ।
ଏମାନ ଆଚ୍ଚରି ସୁଚତୁରୀ ଫେଡ଼ି
ଶୟନ – ମନ୍ଦିର – ଦ୍ୱାର,
କପଟ ଅବଳା – ବେଶୀ-କାନ୍ତ ସଙ୍ଗେ
ହେଉଣଥାଇ ବାହାର।
ସହସ୍ର ଯତନେ ଲୁଚାଇଲେ ହେଲେ
ଲୁଚଇ କି ଏ ରହସ୍ୟ ?
ଶତସ୍ତରେ ବହ୍ନି ଘୋଡ଼ାଇଲେ ଫୁଟି
ବାହାରିବ ସେ ଅବଶ୍ୟ।
ଅଳ୍ପଦିନେ ସେହି ଗୁପତଚରିତ
ସଖୀଙ୍କଠାରେ ପ୍ରକଟ,
ହୋଇଗଲା, ସଖୀ- ଠାରୁ ଅବରୋଧେ
କ୍ରମେ ତା ହେଲା ଚହଟ।
ଶତ-ମୁଖୀ ଜନ- ଶ୍ରୁତି-ସ୍ରୋତେ କଥା
କର୍ଣ୍ଣୁ ଗଲା କର୍ଣ୍ଣାନ୍ତର,
କ୍ରମେ ଏ ରହସ୍ୟ ଜାଣିଲେ ଉତ୍କଳ-
ଧରାଖଣ୍ଡ ଦଣ୍ଡଧର।
ଆଚମ୍ବିତେ ଦିନେ ସ୍ଥବିର କଞ୍ଚୁକୀ
ପଶି ଜେମା ହଂସପୁରେ,
କପଟରୂପୀକି ନେଇଗଲା ନୃପ-
ଆଦେଶେ ନୃପ ଛାମୁରେ।
ସ୍ତ୍ରୀବେଶ ଉତାରି ନିଜ ବେଶେ ତାକୁ
କଲା ତହିଁ ଉପଗତ,
ରୂପ ଦେଖି ରାଜ- ସଭାଜନେ ହେଲେ
ଆଲେଖ୍ୟ ପିତୁଳାବତ।
ଏ ସଙ୍କଟେ ସୁଦ୍ଧା ଯୁବାର ମୂରତି
ଅଟଳ ଧୀର ଗମ୍ଭୀର,
ବିପଦ ସିନା ସେ ବୀରର ପରଖ
ହୀରାର ପରଖ ନୀର। (୧)

ସେ ଶାରଦ-ବିଧୁ- ବିମଳ ବଦନ,
ନିର୍ଭୀକ-ଜ୍ୟୋତି ଚାହାଣି,
ସେ ବିଶାଳ ବକ୍ଷ, ଦୀର୍ଘ ବାହୁଯୁଗ,
ସେ ମତ୍ତ-କେଶରୀ ଠାଣି।
ସ୍ୱଗତେ ବଖାଣି ସର୍ବ ସଭାଜନେ
କହିଲେ ହର୍ଷ ବିଷାଦେ,
"ବିହିଥିଲା ବିହି ଏରୂପ କି, ଆହା,
ନିହିବାକୁ ଏ ପ୍ରମାଦେ ?
ଅରି-କରୁଁ ଅସି ସୁନ୍ଦରୀ ମନରୁ
ଧୃତି ପଡେ କ୍ଷଣେ ଖସି,
ଯାକୁ ଦେଖି, ସେହି ପୁରୁଷ ବୋଲାଏ,
ଏହି ସେ ପୁରୁଷ-ଶଶୀ।
ହୋଇଥିବ କେଉଁ ପ୍ରସିଦ୍ଧ କୁଳର
ଅପ୍ରସିଦ୍ଧ ଏ ଅଙ୍କୁର,
ଆସିଅଛି କେଉଁ ଧରାଖଣ୍ଡ କରି
ନିଜ ବିରହେ ବିଧୁର।
ଜେମାପାଇଁ ଯୁବା ଯୁବାପାଇଁ ଜେମା
ଗଢ଼ିଥିଲା ଯେବେ ବିଧି,
ଅବିଧିରେ କିପାଁ ମିଳାଇ ବେନିଙ୍କି
ପଣ୍ଡ କଲା ନିଜ ବିଧି ?
ଅବାଟରେ ସୁଦ୍ଧା ଯାଇ ଜେମାମଣି
ଲକ୍ଷ୍ୟ ତ ନ ଥିଲା ହୁଡ଼ି,
ମାତ୍ର ସବୁ ଗୁଣ ଯିବ ସିନା ସେହି
ଅବିଧି ଦୋଷରେ ବୁଡ଼ି।"
ବଧ – ଦଣ୍ଡ – ଆଜ୍ଞା ରାଜମୁଖୁଁ ଶୁଣି
ତରୁଣ ମୌଳି ମଣ୍ଡନ,
ନିର୍ଭୟେ ବିନୟେ କରପଦ୍ମ ଯୋଡ଼ି
କହିଲା ଗିର ଏସନ -
"ଭୋ ଦେବ, କ୍ଷତ୍ରିୟ କୁଳେ ଜାତ ମୁହିଁ
ସଦା କ୍ଷତ୍ରଧର୍ମାଚାରୀ,
କ୍ଷତ୍ରିୟ-ମରଣ ଆଜ୍ଞା ହେଉ ମୋତେ
ଏତିକି ପାଦେ ଗୁହାରି।
ରାଜଅସ୍ତ୍ରାଗାରୁ ଆଜ୍ଞା ହେଉ ମୋତେ
ଆୟୁଧ, ବର୍ମ, ବାହନ,
ରାଜବାହିନୀରୁ ସପ୍ତବୀର ମୋତେ
କରନ୍ତୁ ରଣେ ନିଧନ।
ପୂରିବ ଏମନ୍ତେ ମୋର ବାଞ୍ଛା, ହେବ
ଦୁଷ୍କୃତର ପ୍ରାୟଶ୍ଚିତ୍ତ,
ଏତିକି ପ୍ରସାଦ ଆଜ୍ଞା ହେଉ, ପ୍ରଭୋ,
ଉତ୍କଳ-ପଦ୍ମ – ଆଦିତ୍ୟ।"

(୧) କିମ୍ବଦନ୍ତୀ ଅଛି ଯେ ପ୍ରକୃତ ହୀରାର ପରୀକ୍ଷା ଏହି ଯେ, ତାହା ଜଳରେ ମଗ୍ନ ହେବ ନାହିଁ। ପ୍ର[illegible] ବୀର ବିପଦରେ ଏବଂ ପ୍ରକୃତ ହୀରା ଜଳରେ ବୁଡେ ନାହିଁ।

ସଭାଜନ ନେତ୍ରୁ- ନୀରବେ ଏକାଳେ
ଝରୁଥିଲା ଅଶ୍ରୁ-ଧାର,
ନିର୍ବାତ-କାନନେ ଉଭା ତରୁ ପତ୍ରୁଁ
ନିଶାନ୍ତେ ଯଥା ତୁଷାର।

ସଭାଜନ ମନ ଜାଣି ପ୍ରାତଃକାଳେ
ରଣ ଲାଗି ଆୟୋଜନ,
କରିବାକୁ ଚମୂ– ପତିଙ୍କି ଆଦେଶ
ବିହିଲେ ରାଏ ତକ୍ଷଣ।

ସପ୍ତ ଅଶ୍ୱବାର ବାହିନୀରୁ ବଛା
ହୋଇ ଲଭିଲେ ଆଦେଶ,
ଶସ୍ତ୍ରେ ସଜ ହୋଇ କରିବାକୁ ରଙ୍ଗ-
ପ୍ରାଙ୍ଗଣେ ପ୍ରାତେ ପ୍ରବେଶ।

ବିଜୁଳି ବେଗେ ଏ ବାର୍ତ୍ତା ପ୍ରସରିଲା
କି ନଗରେ କିବା ଗ୍ରାମେ,
ସଭାରୁ ଶୁଦ୍ଧାନ୍ତେ ବିଜେ ହେଲେ ରାଏ
ଯାମିନୀ ଦ୍ୱିତୀୟ ଯାମେ।

ଯୋଗଣାନ୍ତେ ରାଏ ରତନ ପର୍ଯ୍ୟଙ୍କେ
ହୋଇ ନିଦ୍ରା ଅଭିଭୂତ,
ନିଶା ଶେଷ ଯାମେ ଶୟନୁଁ ଉଠିଲେ
ସ୍ୱପନ ଦେଖି ଅଦ୍ଭୁତ।

କେମାକୁ ସୁବେଶ କରାଇବା ଲାଗି
ସତ୍ୱରେ କେମା-ସଜନୀ –
ବୃନ୍ଦକୁ ଡକାଇ ମହାବ୍ୟଗ୍ରେ ଆଜ୍ଞା
ବିହିଲେ ଭୂପାଳମଣି।

ସଜନୀ ସହିତେ ରାଣୀଦଳ ପୁଣି
କେମାକୁ ନେଇ ଗହଣେ,
ବିଜେ ହେଲେ ଯାଇ ପ୍ରତ୍ୟୁଷେ ସୁସଜ
ମଞ୍ଚେ ସେ ରଣ ପ୍ରାଙ୍ଗଣେ।

ପ୍ରତ୍ୟକ୍ଷ – ଚାରିଣୀ – କରୁଣା ପରାଏ
କେମାର ଏକାଳ ଛବି,
ଦେଖିଥିଲେ ନିଶ୍ଚେ ତରଳି ଯାଆନ୍ତା
କି ଗ୍ରାବା କି ଅବା ପବି!

ଯାଇଥିଲା ଶିଶୁ– ସାରଙ୍ଗ-ଲୋଚନ
ନିରତେ ରୋଦନେ ଫୁଲି,
ଶିଥିଳପରାଣ ହୋଇଥିଲା କି ସେ
ନିଶାନ୍ତ ଗଙ୍ଗଶିଉଳି!

ସଖୀ କରେ କର ପଇଠିକି ଦେଇ
ମଞ୍ଚେ ଉଭା କୃଶୋଦରୀ,
ନୈରାଶ୍ୟେ ନୀରବ ନିଶ୍ଚଳ ଆଲେଖ୍ୟ
ଲିଖିତ ପ୍ରତିମା ପରି।

ପୁରଜନପଦୁ ରୁଣ୍ଡ ହେଲେ ଜନେ
ଦେଖିବାକୁ ସେ ସମର,
ଦର୍ଶକେ ଦିଶିଲା ସେ ସ୍ଥଳୀ କିବା ସେ
ମନୁଷ୍ୟ-ଶିର-ସାଗର।

ବିସ୍ତୃତ ସେ ରଙ୍ଗ- ଭୂମି ହୋଇଥିଲା
ବୃତିରେ ଦୃଢ଼େ ବେଷ୍ଟିତ,
ଜଗୁଆଳ ଥିଲେ ଚଉଦିଗେ ଅସ୍ତ୍ରେ
ଶସ୍ତ୍ରେ ହୋଇ ସୁସଜ୍ଜିତ।

ରଣଶିଙ୍ଗା ନାଦେ ଆଗେ ରଙ୍ଗସ୍ଥଳେ
ପଶିଲା ଆସି ଯଯାତି,
ଦୈତ୍ୟଯୁଦ୍ଧ ଲାଗି ସନ୍ନଦ୍ଧ ହୋଇ କି
ଆସିଲେ ତାରକାରାତି ?

କି ଅବା ମାନସେ ପଦ୍ମବନୋନ୍ମାଥି –
ଦ୍ୱିରଦ ବୃଂହିତେ ଜାଗି,
ଶଇଳୁଁ ଖସିଲା ସିଂହ କିଶୋରକ
ତାକୁ ସଂହାରିବା ଲାଗି ?

ସ୍ୱର୍ଣ୍ଣବର୍ଣ୍ଣ ବର୍ମେ ବର୍ମିତ, ଧବଳ-
ତୁରଙ୍ଗ ପୃଷ୍ଠେ ଆରୂଢ଼,
କାବ୍ୟତାରା ପ୍ରାୟେ ଭାସ୍ୱର ଲଲାଟେ
ଝଟକେ ଦିବ୍ୟ ମହତ୍ୱ।

ରାହୁ ଗ୍ରାସେ ରବି- ପରିଧି ପରାଏ
ଫଳକ ପୃଷ୍ଠେ ବର୍ତ୍ତୁଳ,
ସ୍କନ୍ଧେ ମହାଶୂଳ ଲଞ୍ଜାତାରା କି ସେ
ନାଶିବାକୁ ବୈରିକୁଳ!

ସମକାଳେ ଅସ୍ତ୍ରେ ଶସ୍ତ୍ରେ ସୁସଜ୍ଜିତ,
ବର୍ମିତ ହୋଇ କଞ୍ଚୁକେ,
ସପ୍ତ ପ୍ରତିଯୋଧ ପ୍ରବେଶିଲେ ମାତ୍ର
ବିଷାଦ-ମଳିନ-ମୁଖେ।

ଅଶ୍ୱୁଁ ଅବତରି, ଭୂତଳେ ଆୟୁଧ
ଥୋଇ, ଯୋଡ଼ି ବେନିକର,
ବୋଇଲେ, "ଭୋ ଦେବ, ଅବଧାନ ହେଉ,
ଉତ୍କଳ ମଣ୍ଡଳେଶ୍ୱର।

ଦୁଃସ୍ୱପ୍ନ ଦେଖିଲୁଁ ସର୍ବେ ନିଶାଶେଷେ
ଦର୍ପୋଦ୍ଧତ ଊର୍ଜ୍ଜସ୍ୱଳ,
ଏକ ପରେ ଏକ ଆସି ଆକ୍ରମିଲେ
ସପ୍ତ ମତ୍ତ ଦନ୍ତୀ-ଦଳ

ଏ ଯୁବା ବୀରକୁ, ମାତ୍ର ଅସ୍ତବ୍ୟସ୍ତେ
ସର୍ବେ ପଳାଇଲେ ଡରି,
ଗର୍ଜି ତଡ଼ିଦେଲା ତାଙ୍କୁ ଆସି ଏକ
ଅଦ୍ଭୁତ ଜ୍ୟୋତି କେଶରୀ।

ରୋଷାନଳ-କଣା ଉଡୁଥିଲା କିବା
ସେ ସିଂହର ଦୃଷ୍ଟିପାତେ,
ତପ୍ତ ଲୌହଖଣ୍ଡୁ ସ୍ଫୁଲିଙ୍ଗ ଯେସନେ
ଝଡେ ଅୟୋଘନଘାତେ।

ସେ ଭୈରବ ରଡ଼ି ଶୁଣି ହେବ ମହା
ନିଦ୍ରିତର ନିଦ୍ରାଭଙ୍ଗ,
ଅଦ୍ୟାପି ସେ ରାବ ସ୍ମରି କ୍ଷଣେ କ୍ଷଣେ
ଥରି ଉଠୁଅଛି ଅଙ୍ଗ।
ଛାମୁ ଆଜ୍ଞା ହେଲେ ଏହିକ୍ଷଣି ରଙ୍ଗେ
ଯୁଝିବୁଁ ସର୍ବେ ସର୍ବଥା,
ମାତ୍ର ଏକା ସ୍ୱପ୍ନ ସମସ୍ତେ ଦେଖିଲୁଁ
ଏ ବଡ଼ ଅଦ୍ଭୁତ କଥା !''
ମଞ୍ଚୁ ଅବତରି କହିଲେ ରାଜେନ୍ଦ୍ର
ବିଜେ ହୋଇ ଅବନୀରେ,
ଜନତାକୁ ଚାହିଁ, ''ଶୁଣିଲ ତ ସର୍ବେ
କହିଲେ ଯା ସପ୍ତବୀରେ।
ଯା କହିଲେ ବୀରେ ସ୍ୱପ୍ନ ହେଲେ ସୁଦ୍ଧା
ନୁହଇ ତୁଚ୍ଛା ସ୍ୱପନ,
ଏ ବୀର-କିଶୋର ଅଜଣା ହେଲେହେଁ
ନୁହନ୍ତି ପ୍ରାକୃତଜନ।
ଗତ ରାତ୍ରେ ମୁହିଁ ଦେଖିଲି ସ୍ୱପନେ
କରାଳରୂପୀ-ହର୍ଯ୍ୟକ୍ଷ,
ଆକ୍ରମିବା ଲାଗି ମୋତେ ଝୁଲି ଝୁଲି
ପୁନଃ ପୁନଃ କଲା ଲକ୍ଷ୍ୟ।
ସେ ବକ୍ର-ବିବର, ସ୍ଫୁରିତ-କେଶର,
ଘୂର୍ଣ୍ଣିତ ରକ୍ତଲୋଚନ,
ଦେଖି ତ୍ରାସେ ମୁହିଁ ମନେ ମନେ ଦେବୀ-
ଶ୍ରୀପାଦେ ନେଲି ଶରଣ।
ଦେବୀଙ୍କ ସ୍ମରଣେ ସୌମ୍ୟମୂର୍ତ୍ତି ଧରି
ଉଭା ହେଲା ସେ କେଶରୀ,
ତା ପୃଷ୍ଠେ ଦେଖିଲି ତ୍ରିଶୂଳଧାରିଣୀ
ମୁକ୍ତ-କେଶୀ ଶକ୍ତିଶ୍ୱରୀ।
ମାତାଙ୍କ ଶ୍ରୀମୁଖୁଁ ସ୍ନିଗ୍ଧଜ୍ୟୋତି ମୋର
ହୃଦୁଁ କାଟି ପାପ-ମଳ,
ସେହି କ୍ଷଣି କରି ଦେଲା ହୃଦେ ଭାଦ୍ର–
ତଟିନୀ ପ୍ରାୟେ ନିର୍ମଳ।
ନିଜେ ପୁଷ୍ପାକର ସେ ଦିବ୍ୟ ସୌରଭ
ଘ୍ରାଣି ନ ଥିବେ ସ୍ୱପନେ,
ଛଅ ରାଗ ପୁଣି ଛତ୍ରିଶ ରାଗିଣୀ
ମୂକ ହେବ ସେ ବଚନେ।
ଅପୂର୍ବ କଥା ସେ, ମର୍ତ୍ତ୍ୟେ କେବେ ନର
ନୟନ, ନାସା, ଶ୍ରବଣ,
ଦେଖି ଘ୍ରାଣି ଶୁଣି ନ ଥିବ ସେ ଶୋଭା,
ସେ ସୌରଭ, ସେ ବଚନ।
ବୋଇଲେ ଜନନୀ, ''ବୈତରଣୀତୀରେ
ଅଟେ ମୋର ଅଧିଷ୍ଠାନ,
ବିରଜା ଦେବୀ ମୁଁ, ଆସିଲି ବାଳୁତ,
ମନଃସି ତୋର କଲ୍ୟାଣ।
ସପ୍ତ-ଅଶ୍ୱବାର ନିୟୋଜିଲୁ ଆଜ
ହୋଇ ମହାକ୍ରୋଧ-ଭାଗୀ,
ଅସମ-ସଂଗ୍ରାମେ ଭକତକୁ ମୋର
ରଙ୍ଗେ ସଂହାରିବା ଲାଗି।
ଏହି ଯେ କେଶରୀ, ଯା ସ୍ମରଣେ କମ୍ପେ
ବିଶ୍ୱ-ପ୍ରକମ୍ପନ କାଳ,
ନ ଜାଣିଲୁ ବକ୍ର- ଡାଳରୂପେ କରେ
ଯୁବାକୁ ସଦା ଉଢ଼ାଳ।
ଏ କେଶରୀ ଥାଉଁ ବୀରକିଶୋରର
ବିପଦ-କରି-କେଶରୀ,
କାର୍ଯ୍ୟେ ଥାଉ, ରକ୍ଷା ନାହିଁଟି ତା'ଠାରେ
ମାନସେ ଦ୍ରୋହ ଆଚରି।
ଯଯାତି ଅଟଇ ମଗଧ ମଣ୍ଡଳ
ନରେନ୍ଦ୍ର ଜ୍ୟେଷ୍ଠ କୁମର,
ରୂପେ ଗୁଣେ କୁଳେ ଶୀଳେ ସବୁମତେ,
ଲଳିତାର ଯୋଗ୍ୟ ବର।
ମୋର ଇଚ୍ଛାବଳେ ଉତ୍କଳମଣ୍ଡଳେ
ଆସିଛି ଯୁବା ରତନ;
ପୁତ୍ର-ରୂପେ ପୁଣି ଜାମାତା ରୂପରେ
କର ତୁ ତାକୁ ଗ୍ରହଣ।
ଭକ୍ତ-ମଣି ମୋର ଅଟଇ ନୃମଣି,
ପୁରୁଷ-କୁଳ-ଲଲାମ;
ଅପ୍ରଧୃଷ୍ୟ ରଣେ ଅସ୍ତ୍ର କଉଶଳେ,
ଅଗାଧ ବୀର୍ଯ୍ୟର ଧାମ।
ଅଖିଳ ଉତ୍କଳେ ସ୍ଥାପିବ ଯଯାତି
କୀର୍ତ୍ତି-ରାଜି ଅନଶ୍ୱର,
ନଦୀ ତୀରେ ମୋର ଅଧିଷ୍ଠାନ ବନେ
ରଚିବ ଦିବ୍ୟ ନଗର।
ହେବ ଏ ଅବନୀ ଯଯାତିର ଯଶ–
ବୀଜର ପ୍ରରୋହ-ସ୍ଥଳୀ;
ଯୁଗେ ଯୁଗେ ଏହି ଯଯାତିର ଯଶ
ଗାଇବେ ହର୍ଷେ ଉତ୍କଳୀ।
ଯଯାତିର କୀର୍ତ୍ତି– ପାଦ ପ୍ରକ୍ଷାଳିବେ
ଅମ୍ବୁରାଶି ନିଜ ନୀରେ,
ସେ କୀର୍ତ୍ତି ପିନ୍ଧିବେ କିରୀଟ ସ୍ୱରୂପେ
ଶୈଳ ରାଜି ନିଜ ଶିରେ।
ଏକାମ୍ରକୁ ଭେଦି ନଭଃ ପରଶିବ
ଯଯାତି କୀର୍ତ୍ତି-ଲତିକା
ପୁଷ୍ପ ରୂପେ ଯାର ଆଭାସିବେ ଗ୍ରହ
ନକ୍ଷତ୍ର ତାରା ମାଳିକା।

ଚକ୍ରବର୍ତ୍ତୀ ହୋଇ ମଣ୍ଡିବ ଏ କ୍ଷିତି
ଏହି ଯଯାତିର ବଂଶ,
ହେବ ଯାର ଯଶଃ— ପ୍ରସୂନ ସ୍ତବକ
ଦିଗଙ୍ଗନା-ଅବତଂସ।
ମହାଦରେ ଏହି ଯୁବା — ବଂଶଧର —
କୀରତି — ମାଳା ଅମଳା,
ମଣି -କାଞ୍ଚି-ରୂପେ ନିତମ୍ୱେ ପିନ୍ଧିବେ
ସଗିଦ୍‌ବରା ଚିତ୍ରୋତ୍ପଳା।
ଯଥାକାଳେ ହୋଇ ଏ ମହାବଂଶର
କୀର୍ତ୍ତି-ମୁଦେ ସମୁଜ୍ଜ୍ୱଳ,
ନାନା ଦେବ ଦେବୀ ଅଧିଷ୍ଠାନେ ମର୍ତ୍ତ୍ୟ
ତ୍ରିଦିବ ହେବ ଉତ୍କଳ।
ରତନ କୋଡ଼ନ୍ତି ଯତନେ ମାନବେ
ନାନା ଦୂରଦେଶ ଯାଇ,
ଅଯତନଲବ୍‌ଧ ସେ ରତ୍ନ ବସିଚ୍ଛ
ତୁହି ଫିଙ୍ଗିଦେବାପାଇଁ ?
ସର୍ବ ଜନ ଆଗେ ପ୍ରୀତେ ରଙ୍ଗେ ତୁହି
ତନୟାକୁ ସମ୍ପ୍ରଦାନ,
କରିବୁ ଏ ବୀର ଯୁବାକୁ, ଯେବେ ତୁ
ମନାସୁ ନିଜ କଲ୍ୟାଣ।
କର ତୁ ଏକ୍ଷଣି ବିଭା ଆୟୋଜନ
ମୋର ଆଜ୍ଞା ଶିରେ ଧରି,
ନିଜେ ମୁଁ ଶକୁନ ହେବି ଏ ବିବାହେ
ମାୟାରୂପେ ଅବତରି।"
ରାଜାଙ୍କ ବଚନେ ଜନତାରୁ ଉଠି
ମହାହର୍ଷ କୋଳାହଳ,
ପ୍ରତିଧ୍ୱନି-ଯୋଗେ ପୃଥୁଳତା ଭଜି
କମ୍ପାଇଲା ରଙ୍ଗସ୍ଥଳ।
ହର୍ଷ ବିକସ୍ୱର ହେଲା ଉତ୍କଳେଶ-
କିଶୋରୀ ଚନ୍ଦ୍ରବଦନ,
ଘର୍ମାନ୍ତେ ମୟୂରୀ ଶୁଣିଲା କି, ଆହା,
ନବ-ଜଳଧର-ସ୍ୱନ।
ଅଣସର ଖର — ମଧ୍ୟାହ୍ନେ ଯେସନେ
ଦୁଃସହ ଗ୍ରୀଷ୍ମ ଆକୁଳେ,
ରହୁଥାଇ ବୃକ୍ଷ- କୋଟରେ ଝିଙ୍କାରୀ,
ଚାତକିନୀ ବୃକ୍ଷ ଚୂଳେ।
ଅନଳ — ଜିହ୍ୱାକ ହୁଳା ବାହାରଇ
ଉତପ୍ତ ମେଦିନୀ ଅଙ୍ଗେ,
ଲଣ୍ଡା ତରୁ ସନ୍ଧି ବିବରେ ଧଇଁଇ
ହେଉଣଥାନ୍ତି ବିହଙ୍ଗେ।

ବାତସ୍ତମ୍ଭ ଯୋଗୁଁ ଗୋଟିଏ ପଲ୍ଲବ
ହଲେ ନାହିଁ ବୃକ୍ଷ ଡ଼ାଳେ,
ବାଷ୍ପ ଆବରଣେ ଦିଶୁଥାଇ ଗିରି
ଧୂଷରିତ ଚକ୍ରବାଳେ।
ମଧ୍ୟାହ୍ନ-ମଉନ ଭାଙ୍ଗେ ଏକା ସେହି
ଝିଙ୍କାରୀ ଚାତକୀ ସ୍ୱନ,
କାହିଁ କାହିଁ ଅବା ତିନ୍ତିଡ଼ୀ କୁସୁମେ
ମଧୁମକ୍ଷି ଗୁଞ୍ଜରଣ। (୧)
ଏକାଳେ ଅମର ଗୋଟି, ନୀଳିମାରେ
କଳା ଭ୍ରମରକୁ ଜିଣି,
ଜଳପୂରେ ପ୍ଲାବି ଦେଲେ ଅବନୀକି
ବଳାକିନୀ କାଦମ୍ବିନୀ।
କାସାରେ ମଣ୍ଡୁକ କାସାର ଉପାନ୍ତେ
ବାଉଁଶ ବନେ ଡାହୁକ,
ନାନା ତାନେ ରାବି ଜଗତେ ଘୋଷନ୍ତି
ନବ-ନୀରୋତ୍ସବ-ସୁଖ।
ଅପରାଜିତାର ନୀଳବର୍ଣ୍ଣେ ବୋଳା
ହେଲା ପ୍ରାୟ ଦିଶେ ଗିରି,
ନୟନ ରଞ୍ଜଇ ତରୁ ବଲ୍ଲରୀର
ପ୍ରଫୁଲ୍ଲ ଶ୍ୟାମଳଶିରୀ।
ପ୍ରକୃତିର ପୂର୍ବ- ମ୍ଳାନ ଛବି ଯାଏ
ପାଇଟି ଯଥା ପଲକେ,
ପାଇଟିଲା ହେମା କାନ୍ତି ସେହି ମତି
ପାରଦୁଁ କ୍ଷଣେ କନକେ।
ଆନନ୍ଦ-ସଲିଳେ ପୂରିଗଲା ତାର
ହୃଦର ଶୁଷ୍କ ସରସୀ,
ଶୋକର ନିଦାଘ ଦଗ୍‌ଧ ଆଶା ବନେ
ଅମୃତ ଗଲା ବରଷି।
ହୃଦୟ ଉଶ୍ୱାସ କରି ଦୀର୍ଘ ଶ୍ୱାସେ
ସ୍ନିଗ୍‌ଧନେତ୍ରେ ବାଳା ଚାହିଁ,
ମୁଗ୍‌ଧାନନୀ ପ୍ରାଣ- କାନ୍ତକୁ ଦେଲା କି
ଦୁଗ୍‌ଧସ୍ରୋତେ ଅବଗାହି ?
ରାଜାଦେଶେ ଲଜ୍ଜା — ନମ୍ରମୁଖେ ତଳେ
ଓହ୍ଲାଇଲା କୃଶୋଦରୀ,
ରାଜାଦେଶେ ଯୁବା ହେମା ପାଶେ ଉଭା
ହେଲା ଅଶ୍ୱୁଁ ଅବତରି।
କହି ନୁହଇ କି ସୁଷମା ବହିଲେ
ବେନି ପାଶେ ରହି ବେନି,
ଦ୍ୱାପରେ ପାଞ୍ଚାଳ ସ୍ୱୟମ୍ବରେ କି ସେ
ଧନଞ୍ଜୟ ଯାଜ୍ଞସେନୀ।

(୧) ତେନ୍ତୁଳି ଗଛରେ ଏହି ସମୟରେ ଫୁଲ ଫୁଟେ।

କିମ୍ବା ସୀତା, ସୀତା – ହୃଦୟ ଚନ୍ଦନ
ବିଶ୍ବ-ବନ୍ଦନ ଶ୍ରୀରାମ,
କିମ୍ବା ନଳ, ଭୈମୀ ମର୍ତ୍ତ୍ୟସୌଦାମିନୀ-
ଭାମିନୀ – କୁଳ – ଲଲାମ ।

ଯଯାତିକି ଚାହିଁ କହିଲେ ଗୋସାଇଁ,
"ବାବୁ, ମୋର ଗଣ୍ଡିଧନ,
ଯୋଗ୍ୟପାତ୍ର ଜାଣି ତୋର ହସ୍ତେ ମୁହିଁ
କଲି ଆଜ ସମର୍ପଣ ।

ପରମ ଭକତ ତୁହି, ବତ୍ସ, ଯେଣୁ
ବିଶ୍ୱେ ବିଶ୍ୱଧାତ୍ରୀଙ୍କର,
ପବିତ୍ର ଉତ୍କଳ ଧରା ହେଲା ଏବେ
ତୋ ଯୋଗୁଁ ପବିତ୍ରତର ।

ନାରୀକୁଳେ ଧନ୍ୟା ଏ କନ୍ୟା ମୋହର,
ନରକୁଳେ ତୁହି ଧନ୍ୟ,
ମଣି କାଞ୍ଚନର ଯୋଗ ଭିଆଇଲା
ଦୈବ ହୋଇ ସୁପ୍ରସନ୍ନ ।

ବହୁଦିନ ମୁହିଁ ପାଳିଲି ଯତନେ
ଏ ଉତ୍କଳ ବସୁନ୍ଧରା,
କର୍ଣ୍ଣମୂଳ ମୋର ଆଶ୍ରିଲାଣି ଆସି
ପଳିତଜନନୀ ଜରା ।

ଯୌତୁକ-ସ୍ୱରୂପେ ତୋର ହସ୍ତେ ନିହି
ମୋର ଏ ରାଜସମ୍ପଦ,
ବାନପ୍ରସ୍ଥ ଧର୍ମ ଆଶ୍ରି, ବାବୁ, ମୁହିଁ
ଧାୟିବି ଶାଶ୍ୱତ ପଦ ।"

ଏହା କହି ହର୍ଷେ ଜେମା କର ଦେଲେ
ଯଯାତି କରେ ନୃମଣି,
ଫୁଲମାଳେ ବେନି ହସ୍ତ ବାନ୍ଧି ବିପ୍ରେ
ଉଚ୍ଚେ କଲେ ବେଦଧ୍ୱନି ।

ବାଜିଲା ମଙ୍ଗଳ ବାଜଣା ଏ କାଳେ
ଉପୁଜାଇ ଧରାକମ୍ପ,
ତୁରୀ, ଭେରୀ, ଡମ୍ବା, ଢୋଲ, ମଧୁରିକା,
ଝରଝରା, ଜଗଝମ୍ପ ।

ସହଚରୀ ସହ ହର୍ଷେ ହୁଳହୁଳୀ
ମଞ୍ଜୁ ଦେଲେ ରାଣୀଦଳ,
ଯଯାତିର ସ୍ତୁତି ସଙ୍ଗୀତ ଗାଇଲେ
ଆନନ୍ଦେ ବନ୍ଦିସକଳ ।

ଜନତା ନୟନ ଏ ଦୃଶ୍ୟୁଁ ସହସା
ଫେରିଗଲା ଅନ୍ୟ ପାଖେ,
ପଦ୍ମାକରୁଁ ଉଡ଼ି ମିଳିନ୍ଦେ ଯେସନେ
ମୁକୁଳିତ ଚୂତ-ଶାଖେ ।

ସହସା ଅପୂର୍ବ ଜ୍ୟୋତିରେ ଦ୍ୟୋତିତ
ହେଲା ପ୍ରାଚୀ ନଭୋଦେଶ,
ନବୋଦିତ-ରବି ଉପରେ ଦିଶିଲା
ଇନ୍ଦ୍ରଧନୁ ପରିବେଶ ।

ବୃତ୍ତାଭାସାକାର ବ୍ରହ୍ମାଣ୍ଡ-ମୁକୁର
ବିରଞ୍ଚି ଦେଲେ ଝୁଲାଇ,
ପରାର୍ଦ୍ଧୀ କାଳେ କି ରଙ୍ଗେ ରୁଣ୍ଡ ଜନ-
ବୃନ୍ଦେ ଦେଖାଇବା ପାଇଁ ?

ସେହି ପରିବେଶେ ହେଲା ସ୍ୱର୍ଣ୍ଣବର୍ଣ୍ଣ-
କେଶରୀର ଆବିର୍ଭାବ,
ପଦ୍ମରାଗ-ଦ୍ୟୁତି ବର୍ତ୍ତୁଳ ଲୋଚନ
ନଖ ଦନ୍ତ ହୀରକାଭ ।

ଜ୍ୟୋତିଃ-କେଶରୀର ସ୍ଫୁରିତ-କେଶରୁ
ପ୍ରଭା ସ୍ଫୁରି ମହୋଲ୍କେ,
ସଶୈଳ କାନନ ଧରଣୀକି ଧୌତ
କଲା କି ସୁବର୍ଣ୍ଣ-ଜଳେ ?

ସ୍ୱର୍ଣ୍ଣ ଆସ୍ତରଣ ପରାଏ ଶୋଭିଲା
ପ୍ରବାହ ବେନି ନଦୀରେ,
ସ୍ୱର୍ଗର ସୁବର୍ଣ୍ଣ – ଦିନ ଆସି ମର୍ତ୍ତ୍ୟ-
ଦିନେ ମିଶି ଗଲା କି ରେ ?

କେଶରୀର ପୃଷ୍ଠେ ଅଦ୍ଭୁତେ ସ୍ଫୁରିଲା
ରଙ୍ଗ ଜ୍ୟୋତିଃ-ପଦ୍ମାସନ,
ସେ ଆସନେ ଆଭା– ପୁଞ୍ଜ ଦେଖି ବୁଡ଼ି
ପଡ଼ିଲା ଜନ-ନୟନ ।

ଦୃଷ୍ଟିକ୍ଷମ ହେଲା ତହିଁରୁ କେବଳ
ଊର୍ଦ୍ଧ୍ୱେ ମୁକୁଟର ଛବି,
ଝଟକୁଥିଲା ଯେ ରତନ ମୁକୁଟେ
ଲଳିତ କଳା ଐନ୍ଦବୀ ।

ଝଟକୁଥିଲା ସେ ପ୍ରଭା ଆଗେ ପୁଣି
ଦୁଷ୍ଟ ଦୈତ୍ୟ-କୁଳ-ତ୍ରାସ
ବିଶାଳ ତ୍ରିଶୂଳ– ଦଣ୍ଡ ତିରଶ୍ଚୀନେ (୧)
ତପତ-ହେମ-ସଙ୍କାଶ ।

ପଦ୍ମରାଗ-ପକ୍ଷ ଇନ୍ଦ୍ରପ୍ରଭା-ଚିଲ
ସେ ପ୍ରଭା-ପୁଞ୍ଜୁଁ ନିଃସରି
ବରବଧୂ ଶିର ପରେ ଉଡ଼ିଗଲା
ପଶ୍ଚିମେ ବିଜୁଳି ପରି ।

ପଲକମାତ୍ରେ ଏ ସବୁ କଥା ଦେଖି
ବିସ୍ମିତ ହେଲେ ସରବେ,
ପଲକେ ସହସ୍ର ଘଟଣା ଦେଖନ୍ତି
ସ୍ୱପନେ ଯେହ୍ନେ ମାନବେ ।

(୧) ତିରଶ୍ଚୀନ– ତେରଛା ।

"ଜୟ ଜୟ ସିଂହ- ବାହିନୀ ବିରଜେ"
ବୋଲି ସର୍ବେ ଉଚ୍ଚୈଃସ୍ୱରେ,
ବୈତରଣୀ ତୀର- ବାସିନୀ ଦେବୀଙ୍କି
ପ୍ରଣମିଲେ ଭକ୍ତିଭରେ ।
ସର୍ବେ ହର୍ଷେ ହେଲେ ଗଦ୍‌ଗଦ ଯଯାତି
ଜେମାଭାଗ୍ୟ ଶ୍ଲାଘ୍ୟ ମଣି,
ଗାଇଲେ ବନ୍ଦିଏ "ଧନ୍ୟ ଭାଗ୍ୟବତୀ
ଧନ୍ୟ ତୁହି ଜେମାମଣି ।
ରୋହିଣୀ-ଗଞ୍ଜିନୀ ଯେଣୁ ତୁହି ଧନୀ,
ତୋହରି ସୁକୃତ-ରାଶି-
ଯୋଗୁଁ ଏ ଶଶାଙ୍କ- ଗଞ୍ଜନ କୁମର
ଦେଖିଲେ ଉତ୍କଳବାସୀ !
ଦେବସେନା ସଙ୍ଗେ ମିଳିଲେ କି, ଆହା,
ଦେବ ଶିଖି-ଧ୍ୱଜ ସ୍କନ୍ଦ,
ମହୋଦଧି-ଜେମା ସଙ୍ଗେ ଅବା ପ୍ରଭୁ
ଜଗତ-ଆନନ୍ଦକନ୍ଦ ।
ଧନ୍ୟ ହେ ମଗଧ- ନରେନ୍ଦ୍ର ନନ୍ଦନ
ଶୂରେନ୍ଦ୍ର-ସିଂହ ଯଯାତି,
ତୁମ୍ଭ ଆବିର୍ଭାବେ ପ୍ରଭାତିଲା ଏବେ
ଉତ୍କଳର ଦୁଃଖରାତି ।
ସୁଖିନୀ ତୁମ୍ଭଙ୍କୁ ପତିରୂପେ ଲଭି
ନୃପବାଳା ଚାରୁଶୀଳା,
ତୁମ୍ଭ ଯୋଗୁଁ ଚର୍ମ- ନୟନେ ଦେଖିଲୁଁ
ଏ ଅଦ୍ଭୁତ ଦୈବୀ ଲୀଳା ।

ରତ୍ନପ୍ରସୂ ସଦା ତୁମ୍ଭ ଭାଗ୍ୟେ ହେବେ
ରତ୍ନଗର୍ଭା ଏ ଧରଣୀ,
ତୁମ୍ଭେ ଯେଣୁ, ବୀର, ଶ୍ରୀବିରଜା ଦେବୀ
ଭକ୍ତକୁଳ-ଚୂଡ଼ାମଣି ।
ଦେବୀଙ୍କ ବାହନ – କେଶରୀ-ପ୍ରସାଦ
ଅନୁକ୍ଷଣ ଶିରେ ଧରି,
ଅରି-କରି-କୁଳ – ମର୍ଦ୍ଦନ –କୁଶଳ
ତୁମ୍ଭେ ଯଯାତି କେଶରୀ ।"
ବନ୍ଦୀଙ୍କ ବଦନୁ ସେହି ତାନ ଧରି
ରଙ୍ଗେ ରୁଣ୍ଡ ସର୍ବଜନେ,
"ଯଯାତି କେଶରୀ" "ଯଯାତି କେଶରୀ"
କହିଲେ ଉଚ୍ଚେ ସଘନେ ।
"କେଶରୀ" "କେଶରୀ" ଉଚ୍ଚେ ପ୍ରତିଧ୍ୱନି
ଗାଇଲା ପ୍ରତିଉତ୍ତରରେ,
ବିରୂପା ଗରଭେ ପୂରବେ, ଆବର
ପଶ୍ଚିମେ ଗିରି-କନ୍ଦରେ ।
"କେଶରୀ" ଉପାଧି ଧରି ବୀରମଣି
ପାଳିଲେ ସୁଖେ ଉତ୍କଳ,
ଯଥାକାଳେ ହେଲା ଦେବୀଙ୍କ ଭବିଷ୍ୟ
ଭାରତୀ ସବୁ ସଫଳ ।
ଯଥାକାଳେ କଲେ ବିମଳାକୁ ଯୋଗ୍ୟ
ରାଜସୁତେ ସମ୍ପ୍ରଦାନ,
ବୈତରଣୀ-କୂଳେ ଯଥାକାଳେ କଲେ
ସୁରମ୍ୟ-ପୁରୀ ନିର୍ମାଣ ।

□ □ □

# ଉତ୍ସର୍ଗପତ୍ର

ନିଖିଳଗୁଣନିଧାନ ଅଷ୍ଟମଲ୍ଲିକାଧୀଶ୍ୱର
ଶ୍ରୀଳ ଶ୍ରୀଯୁକ୍ତ ମହାରାଜ ମହେନ୍ଦ୍ର ଦେଓ ବାହାଦୁର ଶ୍ରୀ କରକମଳେଷୁ
ସବିନୟ ନିବେଦନମିଦଂ –

ଶ୍ରୀମନ୍ ମହାରାଜ,

'ମହାଯାତ୍ରା' ରଚନା ସମ୍ବନ୍ଧରେ ଯେଉଁ ଦିନ ମୁଁ ଶ୍ରୀ ଛାମୁଙ୍କଠାରୁ ଉତ୍ସାହପ୍ରଦ ଓ ସହାନୁଭୂତିବ୍ୟଞ୍ଜକ ଅନୁଗ୍ରହଲିପି ପାଇଥିଲି, ସେଦିନ ମୋହର ଜୀବନର ଗୋଟିଏ ସ୍ମରଣୀୟ ଦିନ। ପୂର୍ବେ ମୋହର ଧାରଣା ଥିଲା ଯେ ଭାଷାନୁରାଗ, ସାହିତ୍ୟରସିକତା ଏବଂ ଗ୍ରାହକତା ଓଡ଼ିଶା ପରିତ୍ୟାଗ କରି ଗଙ୍ଗବଂଶାବତଂସ ଶ୍ରୀ ସୁଢ଼ଳଦେବପାଳିତ ସୁଦୂର ବାମଣ୍ଡା ରାଜ୍ୟରେ ଆଶ୍ରୟ ଗ୍ରହଣ କରିଅଛନ୍ତି। ମାତ୍ର ଉଲ୍ଲିଖିତ ଦିନଠାରୁ ମୋହର ସେହି ଧାରଣା ପରିବର୍ତ୍ତିତ ହେଲା। 'ମହାଯାତ୍ରା' ରଚନା ସମାପ୍ତ ହେଲେ ତାହା ଶ୍ରୀଛାମୁଙ୍କୁ ଉତ୍ସର୍ଗ କରିବାର ସଂକଳ୍ପ ଥିଲା, ମାତ୍ର ସେହି ସଂକଳ୍ପକୁ କାର୍ଯ୍ୟରେ ପରିଣତ କରିବାର ଆଶା ବର୍ତ୍ତମାନ ଦୁରାଶାବତ୍ ପ୍ରତୀୟମାନ ହେଉଅଛି। ସ୍ୱାସ୍ଥ୍ୟ, ଶାନ୍ତି ଏବଂ ଅବକାଶ ବ୍ୟତୀତ ବାଗ୍‌ଦେବୀଙ୍କର ଆରାଧନା କେବଳ ବିଡ଼ମ୍ବନାରେ ପରିଣତ ହୁଏ।

ଶ୍ରୀଛାମୁଙ୍କ ପ୍ରତି ଭକ୍ତି ଏବଂ କୃତଜ୍ଞତା ପ୍ରଦର୍ଶନ ମୋହର ନିତାନ୍ତ କର୍ତ୍ତବ୍ୟ। ବାଗ୍‌ଦେବୀଙ୍କ ଉଦ୍ୟାନରୁ ସୁନ୍ଦର ପୁଷ୍ପ ତୋଳି ସେହି ପୁଷ୍ପରେ ସ୍ତବକ ପ୍ରସ୍ତୁତ କରି ଉପହାର ଦେଲେ ତାହା ଶ୍ରୀଛାମୁଙ୍କ ଗୌରବାନ୍ୱିତ ନାମର କଥଞ୍ଚିତ୍ ଉପଯୁକ୍ତ ହୁଅନ୍ତା। ମାତ୍ର ମୋହର ସେପରି ସୁବିଧା ନଥିବାରୁ ରୂପସମ୍ପର୍କରହିତ କେତେଗୁଡ଼ିଏ ତୁଳସୀଦଳରେ ଏହି ସ୍ତବକ ପ୍ରସ୍ତୁତ କରି ଶ୍ରୀଛାମୁରେ ଅର୍ପଣ କରିବାକୁ ସାହସୀ ହେଲି। ଗ୍ରହଣାନୁମତି ହେଲେ ଚରିତାର୍ଥ ହେବି।

କଟକ
୨୭।୭।୧୮୯୪

ଶ୍ରୀଛାମୁଙ୍କର ବିନୟାବନତ ଭୃତ୍ୟ
ଶ୍ରୀ ରାଧାନାଥ ରାୟ

# ବର୍ଷା

[ ରାଗ – କଳହଂସ କେଦାର ]

ପ୍ରସ୍ରବଣ-ଶଇଳେ କଲେ ବସତି (୧)
  ସୌମିତ୍ରି ସଙ୍ଗେ ପ୍ରଭୁ ରାଘବ-ପତି।
ବହଇ ଗୋଦାବରୀ ସେ ଗିରି-ପାଦେ
  ଶିଳାବନ୍ଧୁର ଶେଯେ ଝର୍ଝର ନାଦେ।

ଏବେ ସୁନ୍ଦର ଗିରି ଝର-ଶିରାଳ,
  ଦୁଲେ ମହୀରେ ବିଜେ ବରଷାକାଳ।
ମେଘମାଳେ ମେଦୁର ଦେଖି ବିତାନ
  କହନ୍ତି ଲକ୍ଷ୍ମଣଙ୍କୁ ଶ୍ରୀ ରଘୁରାଣ –

"ଲକ୍ଷ୍ମଣ, ଘନ ଦେଖି ନାଚଇ କେକୀ,
  ଭକତ ଯଥା ଭବମାୟା ଉପେକ୍ଷି।
ବିତରେ ଅକାତରେ ଜୀବନ ଘନ,
  ଧନ୍ୟ ଯେ ଦାତା ଜାଣେ ଯାଚକ-ମନ।

ନୀଳ ନୀରଦମାଳେ ଖେଳେ ଚପଳା,
  ଖଳପୀରତି ପ୍ରାୟେ ସଦା ଚପଳା।
ବର୍ଷନ୍ତି ମହୀମୁଖେ ନଇଁ ଅମ୍ବୁଦେ,
  ବିଦ୍ୟା-ସମ୍ପଦେ ଯଥା ନମନ୍ତି ବୁଧେ।

ବେନି କୋଟିକି ନିହି ବେନି ଶିଖରେ,
  ତ୍ରିବର୍ଣ୍ଣ-ଜ୍ୟୋତିଃ-ସ୍ରୋତ ସୃଜି ଅମ୍ବରେ,
ମଣ୍ଡେ ଜୀମୂତ-ଭାଳ ଶକ୍ର-କାର୍ମୁକ,
  ଆଶା ଉଜଳେ ଯଥା ଆସ୍ତିକ-ମୁଖ।

ଠାବେ ଠାବେ ଶଇଳ ନୀଳ ବିଗ୍ରହେ
  ଧବଳ ଅଭ୍ରଖଣ୍ଡ କି ଶୋଭା ବହେ!
ଚିରେ ହୁଅଇ ପ୍ରତେ ପଡ଼ିଛି ଟିକି
  କ୍ଷୀରୋଦ-ଫେଣ ବିଷ୍ଣୁ ଅଙ୍ଗେ ଛିଡ଼ିକି।

ଜଳପ୍ରପାତ ଗର୍ଜି ଗଭୀର ରବେ
  ତୁଙ୍ଗ ଭୃଗୁରୁ ଡେଇଁ ପଡେ ଭୈରବେ।
ସେ ରାବେ ପ୍ରତିରାବ ଦିଅଇ ଦରୀ
  ଧର୍ମଶାସନେ ହୃଦୁଁ ବିବେକ ପରି।

ସହନ୍ତି ଧାରା-ପାତ ଶଇଳଗଣ,
  ଖଳ ବଚନ ଯଥା ସହେ ସୁଜନ।
ଫିଟିଛି ଝର, ଦେଖ, ଟାଙ୍ଗର-ଅଙ୍ଗେ,
  ପାଷଣ୍ଡେ ହରି-ପ୍ରେମ ଯଥା ସୁସଙ୍ଗେ।

ଚାଳନ୍ତି କୂଳ ଲଙ୍ଘି ଗିରି-ସରିତେ,
  ମତ୍ତ ପାମର ଯଥା ଅଳପ ବିତ୍ତେ।
ଗୋଦାବରୀକି ସର୍ବେ କରନ୍ତି ଗତି,
  ମହତ ଆଶ୍ରା ବିନୁ କାହିଁ ମୁକତି?

ଆବିଳ ନବଜଳ ପରଶି ମହୀ,
  ମାୟାରେ ଜୀବ ଯଥା ଜଡ଼ି ହୁଅଇ।
ନିରତେ ନୀର-ପାତେ ପୂରିଲା ସର,
  ସାତ୍ତ୍ୱିକ-ଗୁଣେ ଯଥା ସାଧୁ-ଅନ୍ତର।

ନିମ୍ନଗା-ନୀର ବେଗେ ସାଗରେ ଧାଏଁ
  ଶାଶ୍ୱତେ ଭକ୍ତ-ଜନ-ମନ ପରାୟେ, (୨)
ସାଗରେ ନିଜ ଗୋତ୍ର ଯାଏ ବିସ୍ମରି,
  ଭକ୍ତ ତନ୍ମୟ ଯଥା ଲଭିଲେ ହରି।

ଉପୁଡ଼ି ପଡେ ତୀର-ବିଟପୀ ନୀରେ,
  ବିଟପୀ-ମନ ଯଥା ଲମ୍ପଟ-ଗିରେ।
ମାତ୍ର ଶଇଳ, ଦେଖ, ଉଭା ଅଟଳେ,
  କାମୀ-ଚାଟୁରେ ସତୀ-ମନ କି ଟଳେ?
ଲଙ୍ଘଇ ନଦୀସ୍ରୋତ ସେତୁ ବନ୍ଧନ,
  ରାଜଦ୍ରୋହୀ ଯେସନ ରାଜଶାସନ।
ବହି ଯାଉଛି ବାରି ଭେଦି କିଆରି,
  ମର୍ଯ୍ୟାଦା ଲଙ୍ଘେ ଯଥା ସ୍ୱତନ୍ତ୍ରା-ନାରୀ।

ଦର୍ଦ୍ଦୁର-ରବ ଶୁଣି ନୀରବ ପିକ,
  ମୂଢ଼-ସଭାରେ ମୂକ ଯଥା ଧାର୍ମିକ।
ଡାହୁକ ବଂଶକୁଞ୍ଜେ ନିରତେ ରାବେ,
  ବହୁଭାଷୀ ଯେସନ ଜଳ୍ପେ ସ୍ୱଭାବେ।

ହରିତ ଦୂର୍ବାଦଳେ ହୋଇ ମଣ୍ଡନ
  ନିଦାଘରୁକ୍ଷ ମହୀ ଦିଶେ ଯତନ;
ସରସ ସାଧୁ-ହୃଦ ହୁଏ ଯେପରି
  ଶୁଷ୍କ ବୈରାଗ୍ୟେ ଭକ୍ତିରସ ସଞ୍ଚରି।

ପଲ୍ଲବ କଅଁଳିଲା ବୃକ୍ଷେ ଅନେକ,
  ସାଧକ-ହୃଦେ ଯଥା ଉଦେ ବିବେକ!
ଅର୍କ ପାଦପ ହେଲା ପତ୍ର-ବିହୀନ,
  ସୌରାଜ୍ୟେ ଖଣ୍ଡେ ଯଥା ହୁଅନ୍ତି ଦୀନ।

(୧) ପ୍ରସ୍ରବଣ – ଗୋଦାବରୀ ତୀରବର୍ତ୍ତୀ ନିର୍ଝରଶୋଭିତ ସ୍ୱନାମପ୍ରସିଦ୍ଧ ପର୍ବତ (୨) ଶାଶ୍ୱତେ – ଭଗବାନ୍‌ଙ୍କ ପ୍ରତି।

କଦମ୍ବ ବିକସିଲା ଗିରି-କାନନେ
କଦମ୍ବବନ୍ଧୁ ମେଘ ମନ୍ଦ୍ର ନିଃସ୍ୱନେ।
ଭକତବନ୍ଧୁ ହରିନାମ କୀର୍ତ୍ତନୁ
ହର୍ଷେ ପୁଲକେ ଯଥା ଭକତତନୁ।
ଗୁଳ୍ମ-ଗହଳେ ପଥ ଗଲାଟି ହରି,
ବିଧର୍ମୀ-ରାଜପଣେ ଶାସ୍ତ୍ର ଯେପରି।
ଶସ୍ୟେ ବସୁଧା କେଡେ ଶୋଭା-ଆସ୍ପଦ
ଉପକାରୀ ଜନର ଯେହ୍ନେ ସମ୍ପଦ।
ଉଭେଇ ଗଲେ ନଭୁଁ ଜ୍ୟୋତିଷ୍କଗଣେ,
ଜ୍ୟୋତି ଦେଖାଇ ହେଲେ ଜ୍ୟୋତିରିଙ୍ଗଣେ।
ମୂର୍ଖରାଜ୍ୟେ ଯେସନ ବଢ଼େ ଆଦର
ନିର୍ଗୁଣେ, ଗୁଣୀ-ଜନେ ହୁଅନ୍ତି ପର।
କୃଷକେ ଉପାଡ଼ନ୍ତି ବାଳୁଙ୍ଗା କ୍ଷେତୁଁ,
ସାଧୁ ଯେସନ ଆତ୍ମ-ବଡ଼ିମା ଚେତୁଁ।
ସଲିଳୁଁ ପଳାଇଲେ କୋକେ ତ୍ୱରିତେ,
ଅବୁଝରାଜା ରାଜ୍ୟୁଁ ଯଥା ପଣ୍ଡିତେ।
ନ ଉଠେ ନୀର-ସଙ୍ଗେ ତୃଣ ଉଷରେ,
ବିକାରେ କାମ ପ୍ରାୟେ ସନ୍ଥ-ଅନ୍ତରେ।
ଜନ୍ତୁ-ସଂକୁଳ ବନସ୍ଥଳୀ ସମ୍ପ୍ରତି,
ସୌରାଜ୍ୟେ ପ୍ରଜା-ପୂର୍ଣ୍ଣ ରାଷ୍ଟ୍ର ଯେମତି।
ବାଟୋଇ ଠାବେ ଠାବେ ଅଟକି ରହେ,
ଇନ୍ଦ୍ରିୟ ଯଥା ଦିବ୍ୟ-ଜ୍ଞାନ ଉଦୟେ।

ପ୍ରବଳ-ବାୟୁ କେବେ ଚଡେ ଜଳଦ,
କୁପୁତ୍ର ଯଥା କୁଳ-ଧର୍ମ, ସମ୍ପଦ।
କ୍ଷଣେ ନିବିଡ଼ତମ ଗ୍ରାସଇ ଧରା,
କ୍ଷଣେ ଉପୁଜେ ପୁଣି ପ୍ରଚଣ୍ଡ ଖରା;
କୁସଙ୍ଗ ଏହିପରି ସୁଜ୍ଞାନ ନାଶେ,
ସୁସଙ୍ଗ ଏହିପରି ଜ୍ଞାନ ପ୍ରକାଶେ।
ଦେଖ ମଳିନ ହୋଇ ଆଶ୍ରମ-ସର
ନ ବହେ ହୃଦେ ଛବି ତୀର-ବନର।
ମତିକି କଳୁଷିତ କଲେ ଯେସନେ
ଅକ୍ଷମ ଜନେ ପର ଗୁଣ ଗ୍ରହଣେ।
ଦେଖ ଦେଖ ଅଗ୍ରତେ ସରସୀଜଳେ
ପଡ଼ି ମଣ୍ଡୂକ-କ୍ରୂର-ଅହି-କବଳେ,
ବିକଳେ ରାବୁଁ ରାବୁଁ, ଉର୍ଦ୍ଧ୍ୱେ ଉଡ୍ଡୀନ
ଉଦୁକି ଶିଶୁ କଙ୍କି ଦେଲା ଗିଳିଣ।
କାଳକବଳେ ସିନା ଏରୂପେ, ଭାଇ,
ଆରତେ ନର ଘାରି ହେଉଣଥାଇ;
ତେବେହେଁ ମନାସଇ ଲଭି ଏ ଦଶା
ମେଣ୍ଟାଇବାକୁ ଭବ-ଭୋଗ-ଲାଳସା!
ବରଷାକାଳ ଅଟେ ଉଦ୍ଭିଦ-ମିତ୍ର,
ମାତ୍ର ପଙ୍କଜ ମଲା, ନୋହେ ବିଚିତ୍ର!
ଜଳ-ଗହନ ହେଲା ତା'ପକ୍ଷେ ଯମ,
ଅତି-ସମ୍ପଦ, ବାବୁ, ମହାବିଷମ।''

## ଶରଦ୍

ଗିରି-ତଟେ ଶରତ ଶୋଭାକୁ ଚାହିଁ
କହିଲେ ଅନୁଜକୁ କୋଦଣ୍ଡସାଇଁ—
''ବର୍ଷାଗତେ ଆସିଲା ଋତୁ ବିମଳ,
ଦିଶନ୍ତି କାନ୍ତି-ବାସେ ଦିଶେ ଉଜ୍ଜ୍ୱଳ।
ଜରତୀ ବରଷାର ଧବଳ-ଜଟା—
କାଶକୁସୁମେ ଶୁକ୍ଳ ତଟିନୀ-ପଠା;
ଅଗସ୍ତ୍ୟ ମାର୍ଗୁ ନୀର ଶୁଖାଇ ଦେଲେ, (୧)
ସନ୍ତୋଷ ତଡେ ଯଥା ଲୋଭକୁ ହେଳେ।
ଦୁଃସହ ହେଲା ଖରରଶ୍ମି-କିରଣ,
ଦୁଃସହ ଗୁଣୀ-ଯଶ ଖଳେ ଯେସନ;

ସର-ସରିତ-ନୀର ପ୍ରସନ୍ନ ଅତି,
ମୋହ ତୁଟିଲେ ଯଥା ସଜ୍ଜନମତି।
ସର-ସରିତ-ନୀର କ୍ରମେ ହଟଇ,
ମମତା ଯଥା ସାଧୁ ମନୁ ତୁଟଇ।
ଆସିଲା ରମ୍ୟ ଋତୁ ଦେଖି ଖଞ୍ଜନ,
ସୁକୃତ ଫଳେ ଯଥା ପାଇ ସୁକ୍ଷଣ।
କି ରଙ୍ଗେ ସାର ସ୍ୱର-ତରଙ୍ଗ ତୋଳେ (୨)
ପର୍ଣ୍ଣ-ଶ୍ୟାମଳ ଦୂର ଶଇଳ-ଖୋଲେ!
ମୁମୂର୍ଷୁ-ସାଧୁ କର୍ଣ୍ଣେ ନାରଦ-ବୀଣା—
ଝଙ୍କାର ପରି ଏହି ସଙ୍ଗୀତ ସିନା!

(୧) ଅଗସ୍ତ୍ୟ— ଦକ୍ଷିଣାକାଶରେ ଶରତରେ ଅଗସ୍ତ୍ୟ ତାରାର ଉଦୟ ହୁଏ। ଅଗସ୍ତ୍ୟ ଉଦୟରେ ପଙ୍କମୟ ମାର୍ଗ ଶୁଷ୍କ ଏବଂ ନଦୀ ଓ ପୁଷ୍କରିଣୀଜଳ ନିର୍ମଳ ହେବାର ପ୍ରସିଦ୍ଧି ଅଛି। (୨) ସାର— ମଇନା, ଯେଉଁମାନେ ମହାରଣ୍ୟରେ ଭ୍ରମଣ କରି ନାହାନ୍ତି, ସାରର ସ୍ୱରର ମିଷ୍ଟତା ଏବଂ ବିଚିତ୍ରତା ସେମାନେ ଉପଲବ୍ଧି କରି ପାରିବେ ନାହିଁ। ଶରତ୍କାଳରେ ମହାନଦୀର ସାତକୋଶିଆ ଗଣ୍ଡରେ ଅସଂଖ୍ୟ ସାରର ମଧୁରରବ ଶ୍ରୁତିଗୋଚର ହୁଏ। ଗୃହପାଳିତ ସାରର ସ୍ୱରରେ ସେ ମଧୁରତା ଅନୁଭୂତ ହୁଏନାହିଁ।

କର୍ଦ୍ଦମ ରେଣୁ ବିନୁ ଶୋହେ ଧରଣୀ,
ଯେସନ ନୀତି-ପଟୁ-ନୃପ-କରଣୀ; (୧)
ଜଳସଂକୋଚେ ହେଲା ବିକଳ ମୀନ,
ବହୁକୁଟୁମ୍ବୀ ଯଥା ସମ୍ବଳହୀନ।

ଘନ ବିନୁ ନିର୍ମଳ ହେଲା ଆକାଶ,
ଭକତି ଛେଦି ଯଥା ଆଶାର ପାଶ;
ହୁଅଇ ଅଳ୍ପ ବୃଷ୍ଟି କାହିଁ କୁଚିତେ,
ଲକ୍ଷକେ ଭକ୍ତି ଯଥା ଏକର ଚିତେ।

ବଣିକ, ଭିକ୍ଷାଜୀବୀ, ନୃପ, ତାପସ (୨)
ସ୍ୱବାସୁଁ ବାହାରିଲେ ହୋଇ ହରଷ;
ସୁକୃତ-ଫଳେ ଭକ୍ତି ଉଗିଁଲେ ମନେ,
ମାୟା-ବନ୍ଧନ ତୁଟି ଯେହ୍ନେ ସୁଜନେ।

ନିଃଶଙ୍କ ମୀନ ଯହିଁ ନୀର ଅଗାଧ,
ହରି-ଆଶ୍ରିତେ ଯଥା ନାହିଁ ପ୍ରମାଦ।
କମଳ ଫୁଟି ଦହ ଶୋହେ ତେସନ,
ନିର୍ଗୁଣ-ବ୍ରହ୍ମ ଗୁଣ ଆଶ୍ରି ଯେସନ।

ତଡ଼ାଗ ତାରକିତ ଶ୍ୱେତ-କୁମୁଦେ,
ତାମସ-ହୃଦେ ସତ୍ତ୍ୱଗୁଣ କି ଉଦେ? (୩)
ପଦ୍ମବନେ ଶୁଭଇ ଅଳି-ଝଙ୍କାର,
ବ୍ରହ୍ମବାଦୀର କି ସେ ନାଦ ଓଁ କାର?
ଅଦୃଶ୍ୟେ ସୋମଫୁଲ ବିତରେ ବାସ,
ସାତ୍ତ୍ୱିକର ନ ଥାଏ ନାମେ ପ୍ରୟାସ।
ଛଳକମଳେ କେତେ ରୂପର ଭାତି!
ନିର୍ଗୁଣ ହେଲେ ଲୋକ ହୁଏ ଏ ଜାତି।

ଠାବଠାବକେ ଦେଖ ଶ୍ୟାମ ଅଟବୀ
ସପ୍ତଚ୍ଛଦ-ପ୍ରସୂନେ ଶବଳ ଛବି,
ଆଘ୍ରାଣ ଯାର ଶିରଶୂଳ ଜନ୍ମାଏ
ଗୁଣଗର୍ବୀର ଆତ୍ମଶ୍ଳାଘା ପରାୟେ।

ସୁନତ ଶାଳି-ତୃଣ ଏବେ କେଦାରେ
ମଞ୍ଜୁଳ ପକ୍ୱ ଫଳଗୁଚ୍ଛର ଭାରେ,
ଏଥୁଁ ଏ ଦୀକ୍ଷା ସିନା ଲଭେ ହୃଦୟ
ପରିପକ୍ୱ ଜ୍ଞାନର ଫଳ ବିନୟ।

ନିର୍ମଳ ରଜୋହୀନ ରମ୍ୟ ଶରଦେ
ଶୋହେ ପ୍ରକୃତି ପୂର୍ଣ୍ଣ ଶୋଭା-ସମ୍ପଦେ,
ହୃଦୁଁ ରାଜସ-ଭାବ ହେଲେ ନିଃଶେଷ
ପ୍ରସ୍ଫୁଟ ଦିଶେ ଯଥା ଅଧ୍ୟାତ୍ମଦେଶ।

ଗଗନର ନୀଳିମା-କୁହରେ ବୁଡ଼ି
ହୃଦୟ ଯାଏ ନିଜ ସତ୍ତାକୁ ହୁଡ଼ି,
ନ ପାଇ ଆଦ୍ୟ ଅନ୍ତ ହୁଏ ସ୍ତବଧ।
ଜୀବନ୍ତେ ଲଭେ କି ସେ ନିର୍ବାଣପଦ?

ପ୍ରଦୋଷେ କାଦମ୍ବିନୀ ବାରୁଣୀପଟେ
କୁଙ୍କୁମବର୍ଣ୍ଣେ କେତେ ଛବି ପ୍ରକଟେ!
କି ରଙ୍ଗେ ଶୂନ୍ୟେ ବେଗେ ହୁଏ ଉଭାନ!
ଭଙ୍ଗୁର ସୁଖ ଆଶା-ସୌଧ ସମାନ।

ରଥାଙ୍ଗ ବିଭାବରୀ ଦେଖି ବିରସ,
ପର-ସମ୍ପଦେ ଯଥା ଖଳ-ମାନସ;
ନିଶା-ଶିଶିର ହରେ ଦିବସ-ତାପ
ସାଧୁ ସଙ୍ଗମ ଯଥା ବିନାଶେ ପାପ।

ନିଶାରେ ଉପୁଜାଏ କେତେ ଉଲ୍ଲାସ
ଜଳ-ଜଳ-ଚାନ୍ଦନି-ଧୌତ ଆକାଶ,
ସେ ଭାବେ ଭୋଳ ହୋଇ ସାଧୁ ହୃଦୟ
ଭାଳେ ହେଲା କି ଜଡ଼ ବିଶ୍ୱଚିନ୍ମୟ!

ଚକୋର ବିଧୁଛବି ହେରି ଉଷତ,
ହରିଙ୍କି ଧ୍ୟାନେ ଧରି ଯଥା ଭକତ;
ଶୀତେ ଉଭେଇ ଗଲେ ମଶକ, ଦଂଶ,
ସଦ୍‌ଗୁରୁ ଯୋଗେ ଯଥା ଅବିଦ୍ୟା ଧ୍ୱଂସ।

ଉଜ୍ଜ୍ୱଳ ଛାୟାପଥ ନୟନ ରମେ,
ଧରମଦାଣ୍ଡ କି ସେ ପାପ-କର୍ଦ୍ଦମେ?
ଜ୍ୟୋତିଷ-ବିଭା କିବା ଉଜ୍ଜ୍ୱଳ ଦିଶେ?
ଜ୍ୟୋତିର୍ଧାମର କୋଟିଗବାକ୍ଷ କି ସେ?

ବିଶ୍ୱଦ୍ୟୋତିନୀ, ଦିବ୍ୟଦ୍ୟୁତିମାଳିନୀ,
ମୌକ୍ତିକ-ନିନ୍ଦି-ହିମ-ବିନ୍ଦୁଶାଳିନୀ,
କେତେ ସୁନ୍ଦର, ଆହା, ଶରତ-ଉଷା!
ସୁନ୍ଦର ଗୋଦାବରୀ ଶରତ-କୃଶା।

(୧) ନୀତିନିପୁଣ ରାଜାମାନେ ଏକପକ୍ଷରେ ଅଭାବ ଏବଂ ଅପରପକ୍ଷରେ ଆଧିକ୍ୟ ଏହି ଉଭୟ କୋଟୀର ଅସୁବିଧା ପରିହାର କରିବାରେ ଯତ୍ନବାନ୍ ହୁଅନ୍ତି। (୨) ଶରଦାରମ୍ଭରେ ବଳଦିଆମାନେ ଘଣ୍ଟାମଣ୍ଡିତ ବଳଦ ଘେନି ବାଣିଜ୍ୟ ସକାଶେ ଟଡ଼ଜାତକୁ ଯା'ନ୍ତି। ପୂର୍ବେ ଭାରତୀୟ ରାଜାମାନେ ଶରତ୍କାଳରେ ଦିଗ୍‌ବିଜୟ ସକାଶେ ବହିର୍ଗତ ହେଉଥିଲେ। ଅଦ୍ୟାପି ସୁଦ୍ଧା ଦଶହରାରେ ଗଡ଼ଜାତୀୟ ରାଜ୍ୟମାନଙ୍କରେ ସେହି ପୂର୍ବପ୍ରଥା କେବଳ ବିଧିରକ୍ଷାସ୍ୱରୂପ ଅନୁଷ୍ଠିତ ହେଉଅଛି। ତାପସମାନେ ଚାତୁର୍ମାସ୍ୟା ଅନ୍ତେ ତୀର୍ଥାଟନ ସକାଶେ ବହିର୍ଗତ ହୁଅନ୍ତି। (୩) କୃଷ୍ଣବର୍ଣ୍ଣ ହେବାରୁ ତଡ଼ାଗର ତାମସହୃଦୟ ସହିତ ଉପମା। ଶୁଭ୍ର କୁମୁଦ ସତ୍ତ୍ୱଗୁଣ ସହିତ ଉପମିତ।

ଦେଖଇ ନିତି ଉଇଁ ଏ ଗିରି ଶିରେ
ପ୍ରଭାତୀ ତାରା ମୁଖ ଗୋଦାବରୀରେ,
ପରଜ୍ୟୋତିର ପ୍ରଭା ଭକ୍ତ-ମାନସେ
ପ୍ରାୟେ ତା ଛବି ସ୍ୱଚ୍ଛ ସ୍ରୋତେ ବିଳସେ।

ପୂଳିନୁ କୁହେଳିକା ହୋଇ ପ୍ରକଟ
କ୍ରମେ ଆବରେ ଶ୍ୟାମ-ଶଇଳ-ତଟ,
ବାଳାତପେ ତରଳି ଯାଏ ତା କାୟା,
ତତ୍ତ୍ୱ-ଆଲୋକେ ଯଥା ସଂସାର-ମାୟା।''

# ଉର୍ବଶୀ

## [ ପ୍ରଥମ ସର୍ଗ ]

ଅତି ମନୋହର- କାଳ, ଶୀତଋତୁ
ଧରା ଛାଡ଼ି ଛାଡ଼ି ନାହିଁ,
ପଲ୍ଲବ-ପାଟଳ- ମଧୁ ଋତୁ-ରାଟ
ଧରା ମାଡ଼ି ମାଡ଼ି ନାହିଁ।
ନଦୀତୀର ସ୍ୱର୍ଣ୍ଣ- ବର୍ଣ୍ଣ ରାମତିଳା,
ସର୍ଷପକୁସୁମେ ଦିଶେ,
ମଧେ ନୀର-ବେଣୀ ସନ୍ଧ୍ୟା-ମେଘ-ରନ୍ଧ୍ରେ
ନୀଳ ନଭ-ରେଖା କି ସେ ?
ଖଳା ଅଗଣାରେ କଳେଇ-ଗଦାର
ଆମୋଦ ସଙ୍ଗତେ ମିଶି
ବବୁର ପ୍ରସୂନ- ବାସ ଜନପଦେ
ପ୍ରସରଇ ଅହର୍ନିଶି।
ଥରେ ଥରେ ଚୋରା ମଳୟ ଚୋରାଇ
ଆସି ଚୁମ୍ବିଯାଏ ଧରା,
ଛାୟାରେ ଲାଗଇ ଶୀତ, ପୁଣି ଗଳେ
ଖରାକୁ କାଟଇ ଖରା।
ଖରାବେଳେ ପାନ୍ଥ- ଭ୍ରାନ୍ତି ଜନମାଏ
ନିଦାଘ-ଅଗ୍ର-ଦୂତିକା,
ସମୟେ ସମୟେ ଭରତ-କୂଜିତ
ଦିଗନ୍ତେ ମୃଗତୃଷ୍ଣିକା।
କୁହେଳିକି ଡରି ଜଳୁଁ କମଳିନୀ
ଟେକି ପାରୁ ନାହିଁ ମୁଣ୍ଡ,
ମୁକୁଳ-ଉଦ୍‌ଗମ ଲାଗି ଚୂତ ଡାଳେ
ବାନ୍ଧୁଅଛି ପର୍ଣ୍ଣକୁଣ୍ଡ।
ମଧୁସ୍ରାବି-ପୁଷ୍ପ- ସ୍ତବକେ ସରାଗେ
ମଣ୍ଡିବାକୁ ନିଜ ଅଙ୍ଗ,
ଡେମ୍ଫେ ଡେମ୍ଫେ କ୍ଷୁଦ୍ର କ୍ଷୁଦ୍ର ପର୍ଣ୍ଣକୋଷ
ସଜାଡୁଅଛି ବାସନ୍ତ।
ହିମ ଯୋଗୁଁ ଅଳି- ସଂଯୋଗ ବିହୁନେ
ସୁନ୍ଦରୀ-ରଦନ-ଛବି,
କୁନ୍ଦ ସୁନ୍ଦରୀଙ୍କ କଟାକ୍ଷ ଲକ୍ଷ୍ମୀର
ଲୀଳା ପାରି ନାହିଁ ଲଭି।

ଚୌଦିଗେ ଶୁଭଇ ସିନ୍ଦୂର-ମୁଣ୍ଡିର
ସ୍ୱାଗତ ଋତୁନାୟକେ;
ମଧୁ ଚାଖି ଚାଖି ପ୍ରଜାପତି ବୁଲେ
ଗେଣ୍ଡୁ ଫୁଲେ କୁରୁବକେ।
ଯାମେ ଯାମେ ଆମ୍ର- କୁଞ୍ଜେ ନଦୀତୀରେ
ସମସ୍ୱରେ ଟେକି ଧ୍ୱନି,
ହୁଳହୁଳି ହର୍ଷେ ଦିଅନ୍ତି ସଘନେ
ଘଟରଘୁମା-ଘରଣୀ।
କାନନେ ଅସ୍ଫୁଟେ ଶୁଭେ କେବେ କେବେ
କଳଗୀତି କୋକିଳର,
ଟଙ୍କାରି ଚଢ଼ାଉ— ଅଛି କି ସେ ନିଜ
କଣ୍ଠ-ଯନ୍ତ୍ରେ ନୂଆ ତାର ?
କାନନେ କାନନେ ଠାବେ ଠାବେ ଶ୍ୱେତ
ପଲ୍ଲବେ ସ୍ୱବପୁ ମଣ୍ଡି
କାନନଲକ୍ଷ୍ମୀର ଚନ୍ଦନ ରଚନା
ପରାଏ ଶୋଭେ ଅତଣ୍ଡି।
ନିଆଳୀ ବସନ୍ତ— ପୂଜା ଇଚ୍ଛି କଳି-
ଗୁଚ୍ଛକୁ କରୁଛି ସଜ,
ବଉଳିଛି ବନେ ପିଆଳ ବିଟପୀ
ମାତ୍ର ବାନ୍ଧି ନାହିଁ ରଜ।
ସୁଖ ଆଶେ ଭୋଳ ସରବେ ଏକାଳେ
ସୁଖ ତ ଭବେ କ୍ଷଣିକ,
କିଏ ନ ଜାଣଇ ସୁଖଠାରୁ ସୁଖ-
ଆଶାରେ ସୁଖ ଅଧିକ ?
ହିମାଦ୍ରି କାନ୍ତାରେ, ମୃଗୟା ରଚନ୍ତି
ହସ୍ତେ ଧରି ଧନୁଃଶର
ପ୍ରଦୋଷେ ଏକାଳେ ଯୁବା ପୁରୁରବା
ବଙ୍ଗ-ଦେଶ-ଅଧୀଶ୍ୱର।
ସୁପଣ୍ଡିତ ଶାସ୍ତ୍ରେ ଶସ୍ତ୍ରେ ମହାବୀର
ନିଖିଳ ସଦ୍‌ଗୁଣଧାମ,
ରୂପ ଦେଖି ଚିତ୍ତେ ଆସଇ ମର୍ତ୍ତ୍ୟେ କି
ମୂର୍ତ୍ତି ଧରି ବିଜେ କାମ!

ସିଂହ ବ୍ୟାଘ୍ର ମାରି ଭ୍ରମନ୍ତି ଏକାକୀ
ନରେନ୍ଦ୍ର ନିର୍ଭୀକ ମନେ
ମଦକଳ ପକ୍ଷି- ରୁତେ ଝଙ୍କାରିତ
ସେ ଘୋର ନିର୍ଜନ ବନେ ।
ନିର୍ଝର-ଶିକରେ ଶ୍ୟାମଳ ସେ ବନ
ଚିତ୍ର ପତ୍ର-ପର୍ଣ୍ଣଜାଳେ,
ଉତ୍ଫୁଲ୍ଲେ ବରହୀ ନାଚୁଥାନ୍ତି ଯହିଁ
ମତ୍ତ କରି-କର୍ଣ୍ଣ-ତାଳେ ।
ଗୁଞ୍ଜରନ୍ତି କାହିଁ ମଧୁଚକ୍ରେ ମଧୁ-
ମକ୍ଷିକା ତରୁକୋଟରେ,
କାହିଁ ଝରେ ଝର ଝର୍ଝରେ, ଝିଙ୍କାରି
କାହିଁ ରାବେ ଝିଁ ଝିଁ ସ୍ୱରେ ।
କବି ପ୍ରାୟେ ସଦା କୋଳାହଳଦ୍ୱେଷୀ
ବିବିକ୍ତ-ସ୍ଥଳୀବିଳାସୀ,
ମୃଦୁନାଦେ କାହିଁ ରଟେ ଟିକଟିକ-
ବିହଙ୍ଗ ଜାଙ୍ଗଳବାସୀ ।
ଭ୍ରମୁ ଭ୍ରମୁ ଠାବେ ଠାବେ ଉଭା ହୋଇ
ସ୍ତମ୍ଭିତେ ରହନ୍ତି ରାୟେ,
ସ୍ୱମର୍ଦ୍ଦିତ-ଶୁଷ୍କ- ପତ୍ର ଖଡ଼୍‌ଖଡେ
ଚମକି ପଡ଼ିଲା ପ୍ରାୟେ ।
ଗୋଟିଏ ଗୋଟିଏ ପତ୍ର ତରୁତାଙ୍କୁ
ଖସାଇଣ ପବମାନ
ମଧ୍ୟେ ମଧ୍ୟେ ଆସି ଶ୍ରୀଛାମୁରେ ଭେଟି
ହେଉଅଛି ଅନ୍ତର୍ଦ୍ଧାନ ।
ପାଦ-ଗିରି-ଇନ୍ଦ୍ର- ନୀଳ-ବେଦି ପରେ
ଅଗ୍ରତେ ହିମ-ଶିଖରୀ,
କୌବେରୀ-ଲଲାଟେ ଶୋଭେ କୋଟି ମଣି-
-ଶିଳା-ଚନ୍ଦ୍ରଶାଳା ପରି ; (୧)
ଶାଶ୍ୱତ ଦର୍ପଣ — ବିମାନେ ବିମାନ-
ଚାରିଣୀ ସୁରବାଳାର,
ସୁର-ତରଙ୍ଗିଣୀ ଗଙ୍ଗାର ଶାଶ୍ୱତ-
ତୁଷାର ସୂତିକାଗାର ।
ବିରାଟ ମୂରତି ବ୍ୟୋମକେଶ ଗିରି
କୋଟି କୋଟି ସାନୁମାନ
ଭେଦି ଉଠିଅଛି ଉର୍ଦ୍ଧ୍ୱେ, ଗଢ଼ା କି ସେ
ସ୍ଫଟିକେ ସ୍ୱର୍ଗ ସୋପାନ ।
କୋଟି ଇନ୍ଦ୍ରଚାପ — ଲାଞ୍ଛିତ-ପ୍ରପାତେ
ମଣ୍ଡିତ ବପୁ ବିଶାଳ,
କୋଟି ରତ୍ନପୂର୍ଣ୍ଣ ଚାକ୍ଷୁଷ ବିଶ୍ୱେ କି
ବିଶ୍ୱକର୍ମା ଶିଳ୍ପଶାଳ ?

ଝଟକେ ଆଲୋକେ ଧଳା ମେହେରାବି
ହିମର ହିମାଦ୍ରି ଶିଖେ,
ଗଢ଼ା ହୋଇଛି କି ବିରାଟ ବିମାନ
ଦିଗ୍‌ଦନ୍ତି-ଦନ୍ତ-ମୌକ୍ତିକେ ?
ଠାବେ ଠାବେ ଘୃଷ୍ଟ — ମସୃଣ-ରଜତ —
ଧବଳ ମେଘମାଳିକା ,
ଲଭନ୍ତି ବିଶ୍ରାମ — ସୁଖ ଆଶ୍ରି ପାଦ
-ଗିରି-କ୍ରୋଡ଼-ପର୍ଯ୍ୟଙ୍କିକା ।
ଏ ଅଦ୍ଭୁତ ଶୋଭା — ନିରୀକ୍ଷଣେ ଲୋଭା
ସହସା ନେତ୍ର ନୃପର
ରନ୍ଧ୍ରରେ ଓଟାରି ନେଲା ପ୍ରାୟ ନେଲା
ସ୍ତ୍ରୀକଣ୍ଠ-ସମ୍ଭବ ସ୍ୱର !
ଅତୁଳନା ଭବେ ସେ ସ୍ୱରମାଧୁରୀ,
ତୁଳିବାର ସପ୍ତସ୍ୱରା —
ସ୍ୱର ସଙ୍ଗେ ତାହା ତୁଳିବାର ସିନା
କର୍କରା ସଙ୍ଗେ ଶର୍କରା !
ଖଣ୍ଡେ ଦୂର ଯାଇଁ ଦେଖିଲେ ଭୂପତି
ଭୂତଳେ ଏକ ସୁନ୍ଦରୀ,
ପଡ଼ିଛି ଅଚେତେ, ବାତାହତ, ଆହା,
କନକଲତିକା ପରି ।
ଦୂର ପତନର ବେଗ-ବଶେ ପଡ଼ି
ନିଷ୍ପନ୍ଦେ ରହିଛି ଅବା
ନଗେନ୍ଦ୍ର-ବିହାରୀ — ମେଘ କୋଳୁଁ ଖସି
ମହୀରେ ଅଚିର-ପ୍ରଭା ।
ସଖୀ ଅନିନ୍ଦ୍ୟାଙ୍ଗୀ କାନ୍ଦେ ପାର୍ଶ୍ୱେ ବସି
ସୌନ୍ଦର୍ଯ୍ୟେ କାନନ ଦ୍ୟୋତି,
କମଳ-ନୟନୁ ଅବିରଳେ ଝରେ
ଅମଳ କରୁଣା-ମୋତି ।
ଅଶ୍ରୁସିକ୍ତ-ମୁଖେ ନିରୁପମ ଶୋଭା
ବହି ସେ ମଉକାଶିନୀ
ହିମ-ବିନ୍ଦୁ-ସ୍ତବ- କିନୀ-ଅମ୍ଭୋଜିନୀ-
ଶୋଭା ଯାଇଥିଲା ଜିଣି ।
ଦୟାର୍ଦ୍ରବଦନ ନରେନ୍ଦ୍ରର ଦେଖି
ସୁନ୍ଦରୀ ହୃଦ ଆଶ୍ୱାସେ
ଶ୍ରୀ ଛାମୁରେ ଦୁଃଖ କାହାଣୀ ଏରୂପେ
ବୋଇଲା ଗଦ୍‌ଗଦ ଭାଷେ ;
"ଭୋ ଦେବ, ନିଶାନ୍ତେ ଦିବାକର ବିଜେ
ହେଲେ ଏକଚକ୍ର ରଥେ,
ଇନ୍ଦ୍ରାଦେଶେ ନୃତ୍ୟ ଗୀତ କରି ଯାଉଁ
ଆମ୍ଭେ ସେ ରଥ ଅଗ୍ରତେ;

(୧) ମଣିଶିଳା — ମାର୍ବଲ ପ୍ରସ୍ତର ।

ବ୍ୟୋମେ ଆମ୍ଭ ପଥେ ହରୁଥାଇ ଖର-
ଚାପ ଖରଦୀଧିତିର
ସୁରଗଜ-ମଦ— ସୁରଭି ସ୍ୱର୍ଣଦୀ—
ଶୀକର-ଶୀତ-ସମୀର;
ତିଲୋତ୍ତମା (୧) ବିଶ୍ୱ-ରମା, ଏଣୀ-ନେତ୍ରା
ମେନା, ରମ୍ଭା ରମ୍ଭା-ଊରୁ,
ସୁକେଶିନୀ ମିଶ୍ର- କେଶୀ ଯା ସଙ୍ଗୀତ—
ଆଚାର୍ଯ୍ୟ ନିଜେ ତୁମ୍ବୁରୁ, (୨)
ସହଜନ୍ୟା, ରୂପ— ଧନ୍ୟା, ପ୍ରେମଶୀଳା
ପ୍ରେମଲୋଚା, ସୁମଧ୍ୟମା,
ଅଣୁଦରୀ ଅନୁ— ମ୍ଲୋଚା, ଦ୍ୱିଜରାଜ—
ଜିତମୁଖୀ ଦ୍ୱିଜୋତ୍ତମା,
ବିଶ୍ୱନେତ୍ର-ରୁଚି ଘୃତାଚୀ, ବିଶ୍ୱାଚୀ
ବିଶ୍ୱ-ମନୋମୃଗ-ଫାଶ,
ଚିତ୍ରଲେଖା ମୂର୍ତ୍ତି; ଏ ସଖୀ ମୋହର
ଉର୍ବଶୀ, ହେ ମହେଷ୍ୱାସ।
ବଜ୍ରର ଅସାଧ ତ୍ରିଦିବ-ସମ୍ପଦ—
ଲୋଭେ ତୀବ୍ର-ତପଶ୍ଚାରୀ
ଶତ୍ରୁ ଜିଣିବାକୁ ସୁକୁମାର ଅସ୍ତ୍ର
ଶକ୍ରର ଏ ସୁକୁମାରୀ।
ହେମ-ବଲ୍‌ଗାଧାରୀ ଅନୂରୁ ଛାମୁରୁ (୩)
ବେନିଏ ମେଲାଣି ମାଗି
ଖଟଣି ବଢ଼ାଇ ଆସିଥିଲୁଁ ଆଜ
ଏ ବନେ ଭ୍ରମିବା ଲାଗି।
ମହୋଲ୍ଲାସେ ନୀଳ— ବ୍ୟୋମୁ ଅବତରି
ନିରାତଙ୍କ ମଣି ବନ
ନିଃଶଙ୍କେ ବେନିଏ ନିକାଞ୍ଚନେ ଏଥି
କରୁଥିଲୁଁ ବିଚରଣ।
ସହସା ଦାନବ— ଯୁବା ଜଣେ ଏହି
କନ୍ଦରୁ ହୋଇ ବାହାର
ବଳେ ଘେନି ଯାଉ- ଥିଲା ସଜନୀକି
ପାପ ପାଞ୍ଚି ଦୁରାଚାର।
ପାପ ଚିନ୍ତା ମାତ୍ରେ ପାପଦଣ୍ଡଦାତା
ତୁମ୍ଭଙ୍କୁ ଦେଖି ସେ ଡରେ
କମଳିନୀ-ସଖା ଆଗେ ତମ ପ୍ରାୟେ
ପଳାଇଲା ଦୁଷ୍ଟ ଖରେ।

ତ୍ରିଦିବ-ଚନ୍ଦ୍ରମା— ମୁକ୍ତ କଲା ଆଜ
ଦାରୁଣ ଦାନବ-ରାହୁ—
ମୁଖୁଁ ସିନା, ବୀର, ଅଭୟ-ଦକ୍ଷିଣା-
ଦାନ-ଦକ୍ଷ ତୁମ୍ଭ ବାହୁ।
ତ୍ରାସେ ମୂର୍ଚ୍ଛା ଭଜି କି ବିକଳେ, ଆହା,
ଭୂତଳେ ପଡ଼ିଛି ବାଳା!
ହୃଦକମ୍ପ ଯୋଗୁଁ ଦେଖ ଉଠେ ପଡ଼େ
ବକ୍ଷେ ପାରିଜାତମାଳା।
ଅମରୀ ହେଲେହେଁ ଶୁଝିବାକୁ ମୋର
ଶକତି କାହିଁଛି ପୁଣ,
ଶରଣପଞ୍ଜର ଭୋ ଦେବ, ତୁମ୍ଭର
କାତରେ ଏ ଦୟା-ଋଣ?"
ଅଚେତେ ଅବଶା ସେ ତ୍ରିଦଶ-ଯୋଷା-
ମଉଳି-କୁସୁମ-ଗଭା
ଉର୍ବଶୀକି ଦେଖି ଅବଶେ ସେ ରୂପେ
ମୁଗ୍ଧ ହେଲେ ପୁରୁରବା।
ଭାଳିଲେ "ଅମରେ ଅପଲକ କରି
ଗଢ଼ିଲା ବିହି କି ସତେ
ଏ [illegible]-ନିର୍ଝରୁ ନେତ୍ରେ ରୂପାମୃତ
ପିଇବାକୁ ଅବିରତେ?"
କିରୀ[illegible]ଝରୁ ନୀର ଆଣି ରାଜା
ସିଞ୍ଚାଇ ସଜନୀ ହାତେ
ଚେତା କରାଇଲେ ଉର୍ବଶୀକି ନବ-
ପଲ୍ଲବ-ବିଞ୍ଚଣା-ବାତେ।
ଚେତନା ପ୍ରବେଶେ ଉର୍ବଶୀର କାନ୍ତି
ଝଟକିଲା ଅଭିରାମେ,
ସେ ଚେତନା ଯଥା ଭଜେ ନିର୍ମଳତା
ଯାମିନୀ ଅନ୍ତିମ ଯାମେ। (୪)
ଯାମିନୀର ଅଙ୍ଗ ରସାଣିଲା, ଆହା,
ଉଇଁ କି ନବଚନ୍ଦ୍ରିକା?
କିବା ସେ ଯାମିନୀ— ଯୋଗେ ଉଜ୍ଜ୍ୱଳେ କି
ଜଳିଲା ଅନଳଶିଖା?
ବିଶ୍ୱତ୍ରାସକର ବିଷମେଷୁ-ଶର
ଖାଲି କି ତ ରକ୍ଷା ନାହିଁ,
ସେ ଶରକୁ ଦେଲା ମାର କି ସେ ତୀବ୍ର
ବିଷର୍ପି-ବିଷେ ବିଷାଇ?

(୧) ୧୨ ଜଣ ଅପ୍ସରା ସୂର୍ଯ୍ୟଙ୍କ ରଥ ସମ୍ମୁଖରେ ନୃତ୍ୟ ଗୀତ କରିବାର କ[illegible] ପୁରାଣରେ ପ୍ରସିଦ୍ଧ। ୧୨ ଅପ୍ସରାଙ୍କ ନାମ ଯଥା :— ତିଲୋତ୍ତମା, ମେନକା, ରମ୍ଭା, ମିଶ୍ରକେଶୀ, ସହଜନ୍ୟା, ପ୍ରେମଲୋଚା, ଅନୁମ୍ଲୋଚା, ଦ୍ୱିଜୋତ୍ତମା, ଘୃତାଚୀ, ବିଶ୍ୱାଚୀ, ଚିତ୍ରଲେଖା, ଉର୍ବଶୀ। (୨) ତୁମ୍ବୁରୁ— ଦେବତାମାନଙ୍କ ସଙ୍ଗୀତାଚାର୍ଯ୍ୟ। (୩) ଅନୂରୁ— ସୂର୍ଯ୍ୟସାରଥି। (୪) ରାତ୍ର ଶେଷ ପ୍ରହରରେ ମନୁଷ୍ୟର ଚୈତନ୍ୟ ଅର୍ଥାତ୍ ବୁଦ୍ଧିବୃତ୍ତି ନିର୍ମଳ ହୁଏ।

"ବରାରୋହା, ନେତ୍ର ଫେଡ଼ି ଚାହାଁ, ଦୈତ୍ୟ-
ତସ୍କର ଭୟ ଗଲାଣି,
ତୋ ଭାଗ୍ୟେ ପ୍ରହରୀ— ରୂପେ ଅଗ୍ରେ ଉଭା
ପୁରୁରବା ଧନୁଷ୍ପାଣି।
ମଧ୍ୟଲୋକ-ପାଳ ତ୍ରିଦଶ-ବାନ୍ଧବ
ଚନ୍ଦ୍ରପ୍ରଭ ଚନ୍ଦ୍ରବଂଶୀ,
ତରୁଣୀ-ନଳିନୀ— ବିକାଶି ତରଣି,
ଦିତିସୁତ-ଧ୍ୱାନ୍ତଧ୍ୱଂସୀ।"
ଏ ଆଶ୍ୱାସ ଗିରେ ସଖୀର ନୟନ
ଫେଡ଼ିଲା ନାଗ-ନାଗରୀ,
ମୁଦ୍ରିତ ପଙ୍କଜ ମୋଦେ ପଙ୍କଜିନୀ
ପ୍ରାତେ ଫୁଟାଇଲା ପରି।
ରାଜମୁଖ ଦେଖି ଲାଜେ ଚନ୍ଦ୍ରମୁଖୀ
ଆଡ଼ କଲା ଚନ୍ଦ୍ରମୁଖ,
ମାତ୍ର ଅନାୟରେ ମନ ହେଲା ତାର
ମନୋଜ-କ୍ରୀଡ଼ା-କନ୍ଦୁକ।
ରାଗେ ପାଟଳିତ ହୋଇ ଗଣ୍ଡସ୍ଥଳ
ପୁଲକ ବହିଲା ପୁଣ,
ମନୋଜ-ତରୁରେ ପଲ୍ଲବ କଅଁଳି
ଫୁଟିଲା ପରା ପ୍ରସୂନ?
ଉଲ୍ଲାସର ବ୍ୟାଜେ ଦ୍ରବୀଭୂତ ହୃଦ
ଅଜାଡ଼ି ଦେଲା ଅବଳା,
ସୁରଭି ସମୀର ମୁଞ୍ଚିଲା କି ଦିଗ
ଦକ୍ଷିଣା-ସିନ୍ଧୁ-ମେଖଳା?
ଭାଳିଲା ସୁନ୍ଦରୀ "ଭଲା ପ୍ରହରୀ ତ
ଦଇବ ଦେଲା ଭେଟାଇ!
ଚୋର ଥିଲା ଭଲ, ଏଭଳି ପ୍ରହରୀ
ହସ୍ତରୁ ତ ରକ୍ଷା ନାହିଁ!
ବଳାତ୍କାରେ ଦେହ ମାତ୍ର ବନ୍ଦୀ କରି
ଥିଲା ଦୈତ୍ୟ ଦୁରାଶୟ,
ଦେହ ମୁକୁଳାଇ ପ୍ରହରୀ ହୋଇ ଏ
ଚୋରାଇ ନେଲା ହୃଦୟ!
ଅବା ଏ ଭ୍ରମଇ ମରତେ କପଟ-
କିରାତ-ରୂପେ ଅନଙ୍ଗ,
ବାଗୁରାରେ ଯାର ମନକୁ ପଡ଼ଇ
ଅବଳା-ମନ-ବିହଙ୍ଗ।
ଜାଣିଲି ନିଶ୍ଚେ ସେ ଦୈତ୍ୟ ଆସି ମତେ
ହରିଥିଲା ଶୁଭକ୍ଷଣେ,
ସେ ବିପଦ ଯୋଗୁଁ ଏ ରୂପ-ସମ୍ପଦ
ଦେଖିଲି ସିନା ନୟନେ!
ନିଜ ଘଳୀ ବୋଲି ସ୍ୱର୍ଗ ଟେକ ସିନା
ବଢ଼ାନ୍ତି ଅମରଗଣ,
ଏ ମୂର୍ତ୍ତିକି ବହି ଉପଙ୍ଗେ ସ୍ୱର୍ଗର
ସ୍ୱର୍ଗ ଏ ମର୍ତ୍ତ୍ୟଭୁବନ!
ପ୍ରେମାବେଶେ ବାଳୀ ଏହି ରୂପେ ଭାଳି
ଅପାଙ୍ଗେ ନୃପଙ୍କୁ ଚାହିଁ
ଲଜ୍ଜାବେଶେ ଆଣୁ- ଥାଇ ସେ ଚାହାଣୀ
ମୁହୁର୍ମୁହୁ ବାହୁଡ଼ାଇ।
ସାଧୁବାଦ ନୃପେ ଦେବାଲାଗି ଧନୀ
ମନାସିଲା ବାରମ୍ବାର,
ମାତ୍ର ସାଧୁବାଦ ହୁଦୁଁ ଉଠି ତାର
ରହିଲା ଲାଖି ଗଳାର।
ମନ-ପ୍ରାଣ-ଦାନ- ସ୍ଥଳେ ଶିଷ୍ଟାଚାର
କି ଛାର ଅବା ସମ୍ପରି?
ଋଦ୍ଧ ଦେଇ ପୁଣି ବରାଟକ ଦାନେ
ବଳେ କି କାହାରି ମତି?
ସାରଥି ଏକାଳେ ବନେ ବନେ ଭ୍ରମି
ରାଜାଙ୍କ ପାଇ ସନ୍ଧାନ
ଶ୍ରୀଛାମୁରେ ଆଣି ରଥ କଲା ଉଭା
ଦିବା ଜାଣି ଅବସାନ।
ଦିଗ୍‌ବିଜୟ ପାରେ ରବି ରଥ ଏଣେ
ନେବାରୁ ବାହି ଅନୂରୁ,
ଅଭିନବ ମୂର୍ତ୍ତି ପ୍ରକଟିଲେ ଗିରି—
ଚକ୍ରବର୍ତ୍ତୀ ଗୌରୀଗୁରୁ।
ସନ୍ଧ୍ୟାତପ ଅର୍ଦ୍ଧ- ଅଙ୍ଗେ, ଅର୍ଦ୍ଧଅଙ୍ଗେ
ଜ୍ୟୋସ୍ନା-ପ୍ରତିବିମ୍ବ ଲଭି,
ପ୍ରତି ଶୃଙ୍ଗ ବିଡ଼- ମ୍ବିଲା ମାହେଶ୍ୱରୀ
ଅର୍ଦ୍ଧନାରୀଶ୍ୱର-ଛବି;
ଆସି-ଶ୍ୟାମ ବ୍ୟୋମ— ଭିତ୍ତିରେ ଏ ଚିତ୍ର
ଦେଖି ସ୍ୱର୍ବେ ଭକ୍ତିଭରେ
ଗିରିଜା ଗିରୀଶ— ମୂର୍ତ୍ତି ମଣି ତାକୁ
ପ୍ରଣମିଲେ ଯୋଡ଼କରେ।
ବନସ୍ପତି ଡାଳେ ପକ୍ଷୀ ଝୁଣ୍ଡ ଦେଖି
ହୃଦଯେ ହେଲା ପ୍ରତୀତି,
ଦିନର ଚରିତ— ଜଳ୍ପନା ଲାଗି କି
ବସିଲା ପକ୍ଷୀ-ସମିତି।
ଗାଇଲେ ସ୍ୱାଗତ କଳରୁତେ ପ୍ରେମ-
ଅନୁକୂଳା ରଜନୀକି
ନିବିଡ଼ କୀଚକ— କୁଞ୍ଜେ ମଦକଳ
କଳବିଙ୍କ କଳବିଙ୍କୀ।
ପ୍ରବେଶିଲେ ଶୈଳେ ମୃଦୁପଦେ ଆସି
ଶଶି-ଚାରୁ-ବିଳାସିନୀ
ତାରାସୀମନ୍ତିନୀ— ସନ୍ଧ୍ୟା ପଛେ ପଛେ
ତାରାହାରା ନିଶୀଥିନୀ।

ଭୀରୁଣୀଳା ଚିତ୍ର- ଲେଖା ଅଗ୍ରେ ଦେଖି
ଉପସ୍ଥିତ ବିଭାବରୀ
ସ୍ୱର୍ଗେ ବାହୁଡ଼ିବା ଲାଗି ହେଲା ବ୍ୟଗ୍ର
ସଙ୍ଗେ ଘେନି ସହଚରୀ ।
ରଥେ ତହୁଁ ବେନି ବାଳାଙ୍କି ବସାଇ
ସ୍ୱହସ୍ତେ ସେ ରଥ ବାହି
ଦାନବ-ଅଗମ୍ୟ ହେମକୂଟ ଶୈଳେ
ଦେଲେ ରାଜା ପହୁଞ୍ଚାଇ ।
ସଂକଳ୍ପ-ରମଣୀ – ସଙ୍ଗେ ଗଣ୍ଡୋଲ୍ଲାସେ
ବାହିଲେ ନୃମଣି ରଥ,
ସଂକଳ୍ପ-ଘୋଡ଼ାରେ ଦଉଡ଼ିଲା ସଙ୍ଗେ
ରଙ୍ଗେ ତାଙ୍କ ମନୋରଥ ।
ପଥେ ରଥକ୍ଷୋଭୁଁ ଭେଟିବାରୁ ନିଜ
ଖୁଆରେ ଖୁଆ ପ୍ରିୟାର,
ସେ ସ୍ପର୍ଶ ମଣିଲେ ନରେଶ ଶ୍ରମର
କୋଟିଗୁଣ ପୁରସ୍କାର ।
ନେତ୍ରଭଙ୍ଗୀ, ସ୍ମିତ, ସ୍ପର୍ଶ ଆଦି ମୁଦ୍ରା
ହୁଏ ଯାହା ପ୍ରଚଳନ,
ପ୍ରେମ ବିପଣୀରେ, ଚିହ୍ନରା ଗ୍ରାହକ
ତାର ସିନା ପ୍ରେମି-ଜନ !
ମୋହନ ପରଶେ ନରେନ୍ଦ୍ରର ବପୁ
ସ୍ୱେଦେ ହେଲା ଜରଜର,
ସଞ୍ଚରିଲା ପ୍ରତି – ଶିରାରେ ପ୍ରେମର
ବୈଦ୍ୟୁତ-ସ୍ରୋତ ପ୍ରଖର ।
ମୋହନ ପରଶେ ଉର୍ବଶୀର ମନ
ତରଳି ଗଲା ନିତାନ୍ତ,
ତରଳିଲା ଗିରି- ତଟେ ସେହି କାଳେ
ଯଥା ମଣି ଚନ୍ଦ୍ରକାନ୍ତ ।
କ୍ରମେ ନଭେ ଶଶୀ ଉଠନ୍ତେ କନ୍ଦରେ
ତମସ୍ତୋମ ପଶିଗଲା,
ସହସ୍ର-ସ୍ଫଟିକ – ଶୃଙ୍ଗେ ଚମକିଲା
ଜ୍ୟୋତ୍ସ୍ନାଜାଳ-ଝଳଝଳା ।
ଶଶିକରଜାଳେ ତରଳି ଶଇଳେ
ଶଶିମଣି ପ୍ରେମାନନ୍ଦେ,
କନ୍ଦକିଲା ପୁଣି ଚନ୍ଦ୍ରିକା କି ସେହି
ଶଶିମଣି-ମକରନ୍ଦେ ?
କଳ୍ପପାଦପର ହୀରା-ଶାଖାପୁଞ୍ଜ
ମୁକ୍ତାଗୁଣେ ଯଥା ଶୋହେ,
ମଞ୍ଜୁଳ ଦିଶିଲା ପ୍ରତି ଶୃଙ୍ଗ ସେହି
ଉଜ୍ଜ୍ୱଳ ଜ୍ୟୋତି-ପ୍ରରୋହେ ।

ଚନ୍ଦ୍ରିକା ସଦନେ ଗିରୀନ୍ଦ୍ରର ଶୋଭା
ଅପସରୀଏ ଅନୁଭବି
ସ୍ମରିଲେ ସ୍ୱଚ୍ଛନ୍ଦ – କାଳୀନ ମନ୍ଦର –
କ୍ଷୁଭିତ-କ୍ଷୀରୋଦ-ଛବି ।
ହେମକୂଟ ଗିରି ନିତମ୍ବେ ପ୍ରବେଶି
ସ୍ୱପୁରେ ଯିବା ସକାଶେ,
ଘେନିଲେ ମେଲାଣି ବେନି ନିତମ୍ବିନୀ
ବିନୟ-ମଧୁର-ଭାଷେ ।
ବିନୟ-ମଧୁର- ଭାଷେ ସୁନ୍ଦରୀଙ୍କି
ମେଲାଣି ଦେଲେ ରାଜନ,
ମାତ୍ର ପ୍ରିୟା ପଛେ ପଛେ ଦଉଡ଼ିଲା
ପ୍ରେମୋଚ୍ଛନ୍ନ ଯୁବା ମନ ।
ଉପୁଜାଉଥିଲା ଏକାଳେ ବିରହୀ
ବିରହିଣୀ କର୍ଣ୍ଣଜ୍ୱର,
କୌମୁଦୀ-ମୁଦିତ – ଚକୋର-ଚକୋରୀ–
ସ୍ୱର ହର୍ଷ-ବିକସ୍ୱର ;
ଯାଉଁ ଯାଉଁ ମୁଖ ପଛକୁ ବୁଲାଇ
କାନ୍ତକୁ ମିଳିନ୍ଦ-ମାଳା –
ରମ୍ୟ ନେତ୍ରେ ବକ୍ରେ ଚାହୁଁଥିଲା ଖେଳା –
ଖଞ୍ଜନ-ଲୋଚନା ବାଳା ।
ଶୃଙ୍ଗେ ଉଠୁଁ ଉଠୁଁ ଉର୍ବଶୀର ମଠ
ଦେଖି ଡାକିବାରୁ ସଖୀ,
କଣ୍ଟାବନେ ଲାଗି ପଣନ୍ତ ବାଳାର
ସହସା ଗଲା ଅଟକି ।
ବିକ୍ରମର ବ୍ୟାଜ ଲୋଡ଼ନ୍ତି ଏପରି
ଘାରି ହୋଇ କାମବାଣେ,
କାମିନୀଏ ସବୁ ଦିନେ, ଏ କଥା ତ
ପ୍ରସିଦ୍ଧ ପ୍ରୀତି-ପୁରାଣେ ।
"ରହ, ଅଟକିଲା କଣ୍ଟାରେ ବସନ"
ବୋଲିବାରୁ ଉରୁବଶୀ,
"ଅଟକିବ, ଜାଣି- ଥିଲି, ଛଟକିନୀ"
ସଜନୀ ବୋଇଲା ହସି ।
ଶୃଙ୍ଗୁ ଉଠି ସଖୀ- ସଙ୍ଗେ ଶଶିମୁଖୀ
ମିଶିଗଲା ନଭସ୍ଥଳେ,
ଏକଦୃଷ୍ଟେ ତାର ପ୍ରୟାଣ ଦେଖିଲେ
ନରେନ୍ଦ୍ର ଗିରିମେଖଳେ ।
ରାଜଦେହୁଁ ମନ ଓଟାରୁଣ ଥିଲା
ଉର୍ଦ୍ଧ୍ୱେ ଉଠି ସୁରବାଳୀ,
ଛିନ୍ନ ମୃଣାଳରୁ ଥଣ୍ଡେ ସୂତ୍ର ଯଥା
ଓଟାରି ଉଡେ ମରାଳୀ ।

□ □ □

# ଦ ର ବା ର

ଉତ୍କଳର ପୂର୍ବକୀର୍ତ୍ତି-ସ୍ମୃତି-ପୂତ
ବାରବାଟୀ ଆଜ ସାଜେ ସଜ୍ଜୀଭୂତ।
ଐତିହାସିକ ଏ ଦୁର୍ଗ ବାରବାଟୀ,
ବୀର ରକ୍ତପିଣ୍ଡେ ଗଢ଼ା ଯାର ମାଟି।
ବାରବାଟୀ ଯହିଁ ମନ-ସ୍ମୃତି-ପୋତେ
ବାହିଯାଏ ପ୍ରତିଲୋମେ କାଳସ୍ରୋତେ।
କାଳେ କାଳେ କେତେ ଦେଖି ଯେ ଆସିଲା
ନଶ୍ବର ନରର ଗରିମାର ଲୀଳା।
ପୁଣି ନୂଆ ଲୀଳା ଲାଗିଛି ଏଠାରେ,
ପୁଣି ମତ୍ତ ନରେ ନଶ୍ବର ବ୍ୟାପାରେ।
ପୁଣି ଦେଖ ଆଜ ଗରିମାର ଘଟା,
ଲୁଚିବସି କାଳ କରେ ଯାକୁ ଥଟା।
ଦେଖିବାକୁ ଏହି ରାଜସ-ଉତ୍ସବ
ରୁଣ୍ଡ ଦୁର୍ଗାଙ୍ଗଣେ ଅସଂଖ୍ୟ ମାନବ।
କାଞ୍ଚୀ ଅଭିଯାନେ ଯେ ଦୁର୍ଗ ପ୍ରାଚୀର
ବାଦ୍ୟନାଦେ ଦେଇଥିଲା ପ୍ରତିଗିର।
ଜରାଜୀର୍ଣ୍ଣ ବେଶେ ଦେଖଇ ସେ ଆଜ
ନବ୍ୟ ଉତ୍କଳର ଏ ସଭ୍ୟସମାଜ।
ପୂର୍ବ ନରପତି-ପ୍ରେତ-ଆତ୍ମାମାନ
ବ୍ୟୋମେ ବ୍ୟୋମଯାନେ ହୋଇ ଅଧିଷ୍ଠାନ;
ଦେଖନ୍ତି ସଖେଦେ ତାଙ୍କର ଦୁର୍ଜ୍ଜୟ
ଉତ୍କଳର ଏହି ଦଶା-ବିପର୍ଯ୍ୟୟ। (୧)
ଏହି ଶିଳାବନ୍ଧ ଯାଙ୍କର କୀରତି
ପୁଣ୍ୟଶ୍ଳୋକ ମରକତ ମହୀପତି,
ଦେଖୁନାହାନ୍ତି କି ମନେ ବହି ଲାଜ
କି ଥିଲା ଏ ରାଜ୍ୟ, କି ହୋଇଛି ଆଜ।
ଇନ୍ଦ୍ରନୀଳ ଶିର ତୋଳି ନଭସ୍ତଳେ
ଏ ଦୃଶ୍ୟ ଦେଖନ୍ତି ଶାଶ୍ବତ-ଅଚଳେ।
ମଞ୍ଜରମା କାଞ୍ଚୀକେମା ସ୍ବାନେ ପୂତା (୨)
କାଞ୍ଚୀକେମା-ବେଣୀ-ପ୍ରଭ-ବେଣୀଯୁତା।
ଦୃଷଦ୍ବତୀରୂପେ ଚର୍ଚ୍ଚରା ମୁଖରା (୩)
ସୈକତିନୀରୂପେ ନୀଳନୀରାମ୍ବରା।
ଠାବେ ଠାବେ ଦ୍ବୀପ-ଶୈଳ-ଦୀପଦଣ୍ଡୀ-
ପୁଞ୍ଜେ ବକ୍ଷ ଯାର ହୋଇଅଛି ମଣ୍ଡି।
ପ୍ରବାହ-ବିହାରୀ ଅରଣ୍ୟ ଦନ୍ତୀର
ମଦେ ଚନ୍ଦ୍ରକିତ ଯାର ନୀଳନୀର। (୪)
ଅଗ୍ରେ ସେହି ନଦୀ ବହୁଅଛି ରଙ୍ଗେ
ଏ ରଙ୍ଗ ନିରେଖି ତରଙ୍ଗ-ଭ୍ରୂଭଙ୍ଗେ।
ଏକ ପରେ ଏକ ରାଜା, ମହାରାଜା
ଆସନ୍ତି ବଜାଇ ନାନାରଙ୍ଗେ ବାଜା।
ଉଡ଼ଇ ପତାକା, ଝଟକଇ ତ୍ରାସ,
ପାଏକ-କୁହାଟେ ମନେ ଲାଗେ ତ୍ରାସ।
ଆସ୍କନ୍ଦେ ଆସନ୍ତି ଅଶ୍ବ ମାଳ ମାଳ,
ଚିତ୍ରିମୁଣ୍ଡ କେତେ ଆସନ୍ତି ଶୁଣ୍ଡାଳ।
ଯାନ ବାହନରେ ଲାଗିଅଛି ଧୂମ,
ପଡୁଅଛି ତୋପ ଗୁଡୁମ ଗୁଡୁମ।
ଚନ୍ଦ୍ରାତପ ତଳେ ବିରାଜଇ ମଞ୍ଚ
ମହାର୍ହ-ବସନ-ଭୂଷଣେ ସୁସଞ୍ଚ।
ସ୍ତମ୍ଭାବଳୀ ପତ୍ରେ ହୋଇଛି ମଣ୍ଡନ
ଅଗ୍ରେ ଧାଡ଼ି ଧାଡ଼ି ରାଜେ ବେତ୍ରାସନ।
ନୀରବ ଗରବେ ପ୍ରହରୀମାଳିକା
ଦେଖାନ୍ତି ଭାସ୍ବର ଅସ୍ତ୍ର-ବିଭୀଷିକା।
ଉପାଧିଜଡ଼ିତେ ଉପାଧିଜଡ଼ିତ
ଉପାଧିରେ ଆଜ କରିବେ ଜଡ଼ିତ।
ପଦଟିଏ ଦେବେ କର୍ଣ୍ଣ-ରସାୟନ
ପଦ ଅନୁରୂପେ ବସନ ଭୂଷଣ।
ଜଙ୍ଗ-ଭକ୍ଷ୍ୟ କ୍ଷୟଶୀଳ ତଲବାର
ପୋଷାକ ତୃଟିଆମୂଷାର ଆହାର।
ମୋତିମାଳା ଅସ୍ଥି-ବିକାର କେବଳ
ଜଳକା ନୟନେ ଦିଶେ ଯା ଉଜ୍ଜ୍ବଳ।

(୧) ଯେଉଁମାନେ ଭୁବନେଶ୍ବର, କୋଣାର୍କ ପ୍ରଭୃତିର ପ୍ରାଚୀନ କାରିଗରୀ ସ୍ବଚକ୍ଷୁରେ ଦେଖିଅଛନ୍ତି, ପ୍ରାଚୀନ ଏବଂ ଆଧୁନିକ ଉତ୍କଳର କିପରି ପ୍ରଭେଦ ତାହା ସେମାନେ ଅବଶ୍ୟ ହୃଦୟଙ୍ଗମ କରିଥିବେ। (୨) କାଞ୍ଚୀକେମା – ପଦ୍ମାବତୀ ପୁରୁଷୋତ୍ତମ ଦେବଙ୍କ ମହିଷୀ। (୩) ସମ୍ବଲପୁର, ସୋନପୁର ଏବଂ ବୌଦ ରାଜ୍ୟରେ ମହାନଦୀର ଦୃଷଦ୍ବତୀ ରୂପ ଦେଖିଲେ ଏହି ଉକ୍ତିର ଯାଥାର୍ଥ୍ୟ ଉପଲବ୍ଧି ହୋଇପାରିବ। (୪) ହସ୍ତି-ଗଣ୍ଡନିଃସୃତ ମଦ ତୈଳାକ୍ତ ହେବାରୁ ସେଥିର ସଂଯୋଗରେ ନଦୀର ନୀଳ ପ୍ରବାହ ମୟୂରଚନ୍ଦ୍ରକରେ ଆଚ୍ଛନ୍ନପ୍ରାୟ ଦିଶେ।

ଶିର-ପେଞ୍ଚ ଯାହା କିଛିଦିନ ଅନ୍ତେ
ଚରଣେ କରକା ପ୍ରାୟେ କାଳଦନ୍ତେ।
ପଦାର୍ଥ-ସମ୍ପର୍କ-ଶୂନ୍ୟ ନୂଆ ପଦ
ସଙ୍ଗେ ମିଳିବ ଏ ନୂଆ ପରିଚ୍ଛଦ।
ଏହି ଛାର, ଏହି ଅକିଞ୍ଚିତକର
ସମ୍ମାନ ସକାଶେ ଏଡେ ବ୍ୟସ୍ତ ନର !
ହା ଧିକ ! ଏ ତ୍ୱକସାର ପଦପାଇଁ (୧)
ଦେଉଛନ୍ତି ଲୋକେ ସମ୍ପଦ ଉଡ଼ାଇ।
ଏଥିପାଇଁ ଲୋକେ ଦିଅନ୍ତି କିଭଳି
ମନୁଷ୍ୟତା ହୀନ-ସେବା-ପୀଠେ ବଳି।
ଉପାଧି-ଲାଳସା-ରୂପୀ ମହାବ୍ୟାଧି
ହୋଇଛି ସାତ୍ତ୍ୱିକ ଧରମର ବାଦୀ।
ଅସାର ଝଟକ ହୋଇଅଛି ସାର
ଭଣ୍ଡତାର ବଢ଼ି ଯାଉଛି ପ୍ରସାର।
କରୁଛନ୍ତି ଲୋକେ ଉପାଧି ଆଶାରେ
ମନୁଷ୍ୟର ପୂଜା ଷୋଡ଼ଶୋପଚାରେ।
ମନୁଷ୍ୟ ତୋଷିବାପାଇଁ ସହି କଷ୍ଟ
ମନୁଷ୍ୟ-ପଣରୁ ହେଉଛନ୍ତି ଭ୍ରଷ୍ଟ।
ପଦପାଇଁ ଲୋକେ ହୋଇ ଲାଳାୟିତ
ତୋଷିବାକୁ ବ୍ୟସ୍ତ ମନୁଷ୍ୟର ଚିତ୍ତ।
ଭ୍ରମନ୍ତି ମନୁଷ୍ୟ-ପାଦ ଅନୁସରି
ସେହି ମନୁଷ୍ୟର ପୋଷା ଶ୍ୱାନପରି।
ମନୁଷ୍ୟର ସ୍ମିତ, ମନୁଷ୍ୟ ଭ୍ରୁକୁଟୀ
ହୋଇଛି ଜୀବନ ମରଣର ବୁଟୀ।
ମାନୁଷୀ-ଅର୍ଚ୍ଚନା ଲାଗି ଅଗଣନ
ରଚନ୍ତି ଯତନେ ପୁଷ୍ପ-ଉପବନ।
ଦେବୀପାଇଁ ତହୁଁ ପୁଷ୍ପ ନେଲେ କେହି
ମାଳିଏ ମରନ୍ତି ଜରିମାନା ଦେଇ।
ପବିତ୍ର ଶ୍ରୋତ୍ରିୟେ ନ କରି ଗୋଦାନ
ଛତରେ ଦିଅନ୍ତି କିଣି ଦିବ୍ୟ ଶ୍ୱାନ।
ତପ୍ତ ବୈତରଣୀ ହେବେ ପରା ପାରି
ସେହି କୁକ୍କୁରର ହୋଇ ପୁଚ୍ଛଧାରୀ ?
ଧିକ ଧିକ, ଆହା ! ଜାଣି ଶୁଣି ନରେ
ଶାଶ୍ୱତକୁ ଛାଡ଼ି ଆସକ୍ତ ନଶ୍ୱରେ।
ଚିଦାକାଶ-ପକ୍ଷୀ ଜାଣି ଶୁଣି ମହା-
ଭ୍ରମ-ଜାଲେ ପଡ଼ି ହୁଅନ୍ତି ଆତ୍ମହା।
ଜାଣି ଶୁଣି ସିନା ବଣିଜର ପାଣ୍ଡି
କରନ୍ତି ତେଜକୁ, ହୁଡ଼ି ସୁନା ଖାଣ୍ଡି।
ସତ୍ତ୍ୱାମୃତ ହୁଡ଼ି ହୁଅନ୍ତି ସକଳେ

ନଖଶିଖ (୨) ଘାରି ରାଜସ-ଗରଳେ।
ନଖଶିଖ ଘାରି ଥିବାରୁ ଅଜ୍ଞାନ
ଅବସ୍ତୁରେ ହେଉଅଛି ବସ୍ତୁଭାନ।
ମନୁଷ୍ୟ-ପୂଜାରେ ଯେତେ କାଳ ଯାଏ
ଆତ୍ମତତ୍ତ୍ୱେ ଯେବେ ସେହିଥିରୁ ପାଏ,
ସାରାସାର ବୁଝି ଦେଉଥାନ୍ତେ ଲୋକେ
ଓହ୍ଲାଇ ଆସନ୍ତା ସ୍ୱର୍ଗ ମର୍ତ୍ତ୍ୟ ଲୋକେ।
ନିରୁପାଧି-ସତ୍ତା-ପୀୟୂଷ ଆସ୍ୱାଦି
ସ୍ୱପ୍ନେ କେହି ଲୋଡୁ ନ ଥାନ୍ତେ ଉପାଧି।
ହେଉଥାନ୍ତା ସିନା ଅକ୍ଳେଶେ ଅର୍ଜନ
ଏ ମର ଜୀବନେ ଅମର ଜୀବନ।
ହେଉଥାନ୍ତା, ଆହା, ମର୍ତ୍ତ୍ୟେ ବିଶ୍ୱଗେହେ
ଦେବତା ମାନବ ଏହି ମର୍ତ୍ତ୍ୟଦେହେ।

ମଞ୍ଚ ପାଶେ କିପାଁ ଏତେ ଲୋକ ଠିଆ ?
ଲାଗିଅଛି ପରା ଆସନ କଳିଆ !
ନିଜ ଅହମିକା-ସଦୃଶ ଆସନ
ନ ଦେଖି ଥୋକାଏ ମହାକ୍ଷୁଣ୍ଣମନ।
ଔପାଧିକ ରାଜା ଉଚ୍ଚାସନେ ରୁଷି
କ୍ଷୁଣ୍ଣ ହେଉଛନ୍ତି ରାଜା ମଉରୁସି।
ଆସନ ସକାଶେ ବୃଦ୍ଧେ ଏଡେ ବାଇ
ବାଳକେ ଯେସନେ କ୍ରୀଡ଼ନକପାଇଁ !
ଲଡୁ ଲାଗି ଯଥା ଯୁଝୁଥାନ୍ତି ପିଲା
କେତେ ବୃଦ୍ଧେ କରୁଛନ୍ତି ବାଳଲୀଳା !
କେହୁ ବୋଲେ "ମୁହିଁ ଉଚ୍ଚପଦଧାରୀ,
ଉଚ୍ଚ ଆସନର ମୁହିଁ ଅଧିକାରୀ !"
ଆନ ବୋଲେ "ମୁହିଁ ଉଚ୍ଚବଂଶଧର,
ତୁ ସିନା ଅଢ଼େଇ ଦିନର ଚାକର !
ବଡ଼ ସିନା ତୁହି ରାଜ-ଦତ୍ତ ମାନେ
ମାତ୍ର ତୋର କାହିଁ ନାହିଁ ଭୂମି ମାଣେ !
ମୋତେ କେ ନ ଜାଣେ ଏ ମହୀମଣ୍ଡଳେ ?
ମୋର ଏ ଆସନ କିପାଁ ହେଲା ତଳେ ?"
ଆନ ବୋଲେ "ମୁହିଁ ପାଇକର ନାହା
ବିପଦେ ରାଜାର ଆଶ୍ରା ମୋର ବାହା।
ଏହି ହସ୍ତେ କେତେ ମସ୍ତକ ଗଡ଼ାଇ
କେତେ କେତେ ଗ୍ରାମ ଦେଇଛି ପୋଡ଼ାଇ।
ସଂଗ୍ରାମେ ପଦକ ଦେଲେ ମୋତେ ରାଣୀ
ମୋହଠାରୁ ପୁଣି କିଏ ବଡ଼ ମାନୀ ?"
ଆନ ବୋଲେ "ମୁହିଁ ଅଟଇ ପୁଲିସ

(୧) ତ୍ୱକସାର– ପୋଲା। ପାରଲୌକିକ ଦୃଷ୍ଟିରେ ତ୍ୱକ୍‌ସାର, ସାଂସାରିକ ଦୃଷ୍ଟିରେ ରାଜଦତ୍ତ ଉପାଧି ଏବଂ ରାଜଦତ୍ତ [illegible] ସର୍ବଥା ସ୍ପୃହଣୀୟ ଏବଂ ଗୌରବାବହ ଅଟେ। (୨) ନଖଶିଖ– ଆପାଦମସ୍ତକ।

ବିନା ମେଘେ ସୃଜି ପାରଇ କୁଳିଶ।
କି ଦୋଷୀ, କି-ଅବା ଦୋଷହୀନ ନର
ମୋ ପ୍ରତାପେ ରାଜ୍ୟେ ସର୍ବେ ଥରହର।
କିବା ଦୁଃଖୀ ରଙ୍କ କି କୋଟିପତିଏ
ଲାଲ-ପଗଡ଼ିକି ନ ଡରନ୍ତି କିଏ ?
ମୋତେ ଦେଖି କିଏ ନ ଭଜେ କମ୍ପକୁ
କିଏ ନ ଡ଼ରଇ ଉଦ୍‌ଫଣ ଡମ୍ପକୁ ?
ରାଜାଙ୍କ ଅଟଳ ବିଶ୍ୱାସ ମୋଠାରେ
ମୋହଠାରୁ କିଏ ବଡ଼ ଦରବାରେ ?''
ଆନ କହେ ''ମୁହିଁ ନଗର-ରକ୍ଷଣୀ –
ସଭାର ସଦସ୍ୟ-ଦଳର ଅଗ୍ରଣୀ।
ଲାଟଙ୍କର ହେଲେ ଶୁଭ ଆଗମନ
ସର୍ବାଗ୍ରେ କରନ୍ତି ମୋ ପୂଜା ଗ୍ରହଣ।
ମୋର ହସ୍ତେ ନ୍ୟସ୍ତ ନଗରର ଚାବି
ସମ୍ମାନେ ମୋହର ସର୍ବୋପରେ ଦାବି।''
କେହି ବୋଲେ ''ମୁହିଁ ଅଟଇ ଡିପୋଟୀ,
କଳା ଲୋକଙ୍କର ଉନ୍ନତିର କୋଟୀ।
ଲଭିଅଛି ମୁହିଁ ବଳେ କଉଶଳେ
ମୋତେ ପୁଣି କିଏ ବସାଇବ ତଳେ ?''
ଲୋଭୀ ଭୋଜେ ଯଥା ସ୍ୱମର୍ଯ୍ୟାଦା ଜଗି
ପ୍ରତିବାସି-ପଦ୍ରେ କହେ ଦେବା ଲାଗି।
କେହି ଅବା ନିଜ ଦୁଃଖକୁ ଘୋଡ଼ାଇ
ପ୍ରତିବାସି-ଦୁଃଖ ଗାଇହେଉଥାଇ।
କହେ ''ନ୍ୟାୟ ନାହିଁ ଏହି ଦରବାରେ,
ତା ଆସନ ତୁମ୍ଭ ଆଗେ କି ବିଚାରେ ?''
ସଭାପତିଙ୍କର ଖଟଣି-କିଙ୍କର
ବୋଲି କେହି ହେଉଛନ୍ତି ଫରଫର।
ଗରୁଡ଼ ଉପରେ ଦେଖାନ୍ତି ପ୍ରତାପ
ସେ ଯେଣୁ ଅଟନ୍ତି ଶିବଙ୍କର ସାପ।
ସବୁ ଦେଖେ, ସବୁକାଳେ ଉର୍ଦ୍ଧ୍ୱମୁହାଁ
ହୋଇଥାନ୍ତି ସିନା ଶ୍ରୀଛାମୁ-ଛାମୁଆ।
ଲାଗିଛି ଏରୂପେ ଅହମିକା ଖେଳ
ଅହମିକା-ସିନ୍ଧୁ ହୋଇଛି ଉଦ୍‌ବେଳ।
ଅହମିକା-ବାୟୁ-ଗ୍ରସ୍ତ ହୋଇ ବ୍ୟସ୍ତେ
'ମୁଁ' 'ମୁଁ' କରି, ଆହା, ମରନ୍ତି ସମସ୍ତେ।
ଘୋଟିବାରୁ ଘୋର ରଜୋରୂପୀ ବ୍ୟାଧି
ଉପାଧିରେ ବୁଡ଼ି ଲୋଡ଼ନ୍ତି ଉପାଧି।
'ମୁଁ' ଭାବେ ଜଡ଼ିତ ଅମର ଚିଦ୍-କଣା
ଦେଖାଉଛି ଭବେ ଅସଂଖ୍ୟ ପେଖନା।
ଲଭଇ ଲାଞ୍ଛନା, ଆହା, କେତେ ରୂପେ,
ପଡ଼ି ଅହମିକା-ରୂପୀ ଅନ୍ଧକୂପେ।
ପିନ୍ଧି ନୂଆ ଚକଚକିଆ ପୋଷାକ
ଥୋକାଏ ବହନ୍ତି ମନେ ବଡ଼ ଝାଁକ।
ଭ୍ରମନ୍ତି ବୈଦିରେ ଅଙ୍ଗଭଙ୍ଗୀ କରି
ଅହମିକା-ବନେ ପ୍ରଜାପତି ପରି।
କିମ୍ବା ଘନକାଳେ ଉଚ୍ଚେ ବର୍ହ ଟେକି
କେକୀ ନାଚେ ଯଥା ଦୋହଲି ଦୋହଲି।
ସାହେବି ପୋଷାକ କେହୁ ଅବା ପିନ୍ଧି
ସସ୍ମିତେ କହଇ ବଙ୍କା ବଙ୍କା ହିନ୍ଦୀ।
ଥରେ ଥରେ କାସି ସାହେବି ଠାଣିରେ
ପୋଛଇ ବଦନ ରୋମାଲ-କାନିରେ।
ପ୍ରକଟାଇ ପୂରା ସାହେବିପଣିଆ
ଫରକଟା ଗୋଡେ ହୁଏ ପୁଣି ଠିଆ!
ମିଶି ଘଷିଥିବା ବିସିନୀ ଯେସନ
କରୁଥାଇ ଦନ୍ତ୍ୟବର୍ଣ୍ଣ ଉଚ୍ଚାରଣ।
କୁଣ୍ଡଳ ଦେଖାଇ ହେବା ଅଭିପ୍ରାୟେ
କୁଣ୍ଡଳୀ ଯେସନେ ମୁଣ୍ଡକୁ ହଲାଏ।
ସମୟ ଜାଣିବା ମିଛ ବାହାନାରେ
ଘଡ଼ି କାଢ଼ି କେହି ଦେଖାଏ ବାହାରେ।
ନାନା ଅଳଙ୍କାର କରେ ଝଲମଲ
ନବ୍ୟ ଘଡ଼ି ଚେନ, ପ୍ରାଚୀନ କୁଣ୍ଡଳ।
ହୃଦେ ଲମ୍ବମାନ ସୁବର୍ଣ୍ଣ-ତକମା
ନାସିକା-ଶୋଭନ ସୁବର୍ଣ୍ଣ-ଚଷମା।
କେତେ ରଙ୍ଗ କରୁଛନ୍ତି କେତେ ଜଣ
କହିଲେ ନ ସରେ ନର ଫୁଲାପଣ।
ଘାରିଅଛି ପ୍ରତି ଜନେ ଯେହ୍ନେ ନିଶା
କି ଛାର କଥାରେ କି ଘୋର ଜିଗୀଷା!
ଅକିଞ୍ଚନ କେହୁ କହେ ହାତ ଯୋଡ଼ି
ବୃଥା ଲାଗ କିପାଁ କାମୋଡ଼ାକାମୋଡ଼ି ?
ଅଳ୍ପ ଦିନ ଛିଡି ପାଇଁ ଭବ ଚଟି
ଏଥିଲାଗି କିପାଁ ଏତେ କଟାକଟି ?
ମଣ ସିନା ଆପଣାକୁ ବଡ଼ କରି
ମାତ୍ର କଥା-ବୃଷ (୧) ଦେହେ ମଶାପରି।
ମହୀରେ କାହାରି ପ୍ରବେଶେ ପ୍ରୟାଣେ
ଓଜନ ଉଶ୍ୱାସ ମହୀ ତ ନ ଜାଣେ।
ଦେଖ ସାବଧାନେ ଜ୍ଞାନ-ନେତ୍ର ଫେଇ,
ତୁମ୍ଭ ମଧ୍ୟେ ସାନ ବଡ଼ ନାହିଁ କେହି।
ସାନ ବଡ଼ ଜ୍ଞାନ ଭେଦର ଭିଆଣ,
ଭେଦ ତଳେ କେହି ନାହିଁ ବଡ଼ ସାନ।
ଜଣେ ଜଣେ ଗୋଟି ଗୋଟିଏ ସୁଆଙ୍ଗ,

(୧) କଥାବୃଷ – ଉଷପ ରଚିତ ମଶକ ଓ ବୃଷର ଗଳ୍ପ ଦେଖ।

ଚାଲିଯିବ, ଭବ-ଲୀଳା ହେଲେ ସାଙ୍ଗ ।
ସର୍ବେ ଯିବ, ଭାଇ, ଉଭେଇ ଅଚିରେ,
ବୁଦ୍‌ବୁଦ ପରାଏ ଏହି ନଦୀ ନୀରେ ।
ଅଖଣ୍ଡ-ଦଣ୍ଡାୟମାନ-କାଳସିନ୍ଧୁ-
ମଧ୍ୟେ ବିନ୍ଦୁ ରହି ନୁହଁ ଏକ ବିନ୍ଦୁ ।
ମାଟି ଘଟେ ବୃଥା ବହି ଅଭିମାନ,
ଅଜ୍ଞାନେ ଧରାକୁ କର ଶରାଜ୍ଞାନ ।
ଅଜ୍ଞାନେ ନଶ୍ୱର ଭାଗ୍ୟର ଗରବେ,
ଭାଳ ତୁମ୍ଭେ ତିମି, ସଫରୀ ସରବେ ।
ସପ୍ତବିତସ୍ତିର କୀଟ ହୋଇ, ଭାଇ,
ବୃଥା କର କିପାଁ ଭାଗ୍ୟର ବଡ଼ାଇ ?
ବୃଥା କର କିପାଁ ସମ୍ପଦେ ବିଶ୍ୱାସ
ବିଜୁଳି ପ୍ରାୟ ଯା ବିଭାର ବିକାଶ ।
ସୁଖ ଝଟକେ ଯେ ଚକ୍ଷୁ ଚମକାଇ,
ଦୁଃଖ-ବଜ୍ରେ ପରେ କରେ ଧରାଶାୟୀ ।
ବୃଥା ବହି ଏହି ଭଙ୍ଗୁର ରୋଗଭୂ (୧)
ମଣ ଆପଣାକୁ ଜଣେ ଜଣେ ପ୍ରଭୁ ।
ରୋଗ ବ୍ୟାଜେ କାଳ ଥରେ ଥରେ ତୁଟି
ଝିଙ୍କି ଦେଲେ, ଏହି ଦର୍ପ ଯାଏ ତୁଟି ।
ଦର୍ପ ତୁଟେ କ୍ଷଣେ ଭେଟେ ବିପଦର,
ହାବୋଡେ ଆସି ଯେ ନ ଦେଇ ଖବର ।
ଅବଧି କି ସେହି ଦର୍ପ ତୁଟି ନାହିଁ,
ଲଢୁଛ କିପରି, କିବା କଥା ପାଇଁ ?
କେତେ ଦିନ ଲାଗି ମର୍ତ୍ତ୍ୟେ ଅବା ଘର,
ଏଥି ଲାଗି କିପାଁ ଏଡେ ଆଡ଼ମ୍ବର ?
ମର୍ତ୍ତ୍ୟେ ପଡ଼ି କାନ୍ଦି ଲୋଡ଼ ଦୁଧ ଥୋଡ଼ା,
ଯିବାବେଳେ ଛଅ ଖଣ୍ଡି କାଠ ଲୋଡ଼ା ।
ମଧ୍ୟେ କେତେଦିନ ମାତର କୁଣିଆ,
ଏଥିପାଇଁ ପୁଣି ନ ଅଣ୍ଟେ ଦୁନିଆ ।
କେତେ ଦିନପାଇଁ ଦର୍ପର ପତାକା
ଟେକି, ଦେଉଥିବ, ଖାଉଥିବ ଧକା ?
ଏହି ଦରବାରେ ରୁଣ୍ଡ ଯେତେ ନରେ
ଏଥିରୁ ଥୋକାଏ ବର୍ଷକ ଭିତରେ,
ଅନ୍ୟ ଦରବାରେ ହେବେଟି ତଲବ
ତୁମ୍ଭେ ତହିଁ ଥିବା ନୋହେ ଅସମ୍ଭବ ।
ସେ ଦାରୁଣ ଦରବାରେ ଯିବା ପାଇଁ
ଗାଡ଼ି ଘୋଡ଼ା ଆଦି ଲୋଡ଼ା ହେବ ନାହିଁ ।
ପାଇକ ସ୍ୱରୂପେ ଆସି ରୋଗ ନାନା,
ଦେଖାଇବେ ତଲବର ପରବାନା ।
ତଲବ ନୁହଇ, ବାରେଣ୍ଟ ସିନା ସେ,
ନ ଦେବେ ମାଗିଲେ ମହଲତ ମାସେ ।
କରି ଯିବାପାଇଁ, ନୋହି ବ୍ୟତିବ୍ୟସ୍ତ,
ଘରବାଡ଼ି, ଜମି, ଜମା ବନ୍ଦୋବସ୍ତ ।
ଆର୍ତ୍ତ-ଦାରା-ସୁତ-ରୋଦନେ ମୁଖର,
ସ୍ନେହକାରି-ଜନ-ଲୋତକେ ଜର୍ଜର ।
ମୃତ୍ୟୁଶଯ୍ୟା, ଅଣଆଶ ଲୀଳାସ୍ଥଳୀ,
ସେ ଦରବାରର ଭୀଷଣ ଦେହଳୀ ।
ଅଭ୍ରାନ୍ତ ଘଟିକା-ଯନ୍ତ୍ର ବାମ କରେ,
ଭୀମ କାଳଦଣ୍ଡ ଧରି ବାମେତରେ ।
ସେହି ବୈଶ୍ୱାନର (୨) ଦରବାରେ ନିଜେ
ପ୍ରେତପତି ସଭାପତିରୂପେ ବିଜେ ।
ଥରେ ମନେକର ସେହି ଦରବାର,
କିଭଳି ଆସନ ଲଭିବ ସେଠାର ।
କିଭଳି ପୋଷାକ ଲୋଡ଼ା ହେବ ତହିଁ,
ଲଭିବ ସମ୍ମାନ କେଉଁ ଗୁଣ ବହି ?
ଏ ଦରବାରର ଆସନ-ଫରଦ,
ଚିତ୍ରଗୁପ୍ତ-ପାଞ୍ଜି କରିଦେବ ରଦ ।
ତୋତେ ରୋଚୁ ଅବା ନ ରୋଚୁ ସେ ନ୍ୟାୟ,
ଚରମ ଅଟଇ ଚିତ୍ରଗୁପ୍ତ ରାୟ ।
ନ ଥିବେ ଓକିଲ, ଲଢ଼ି ଯେ ମାମଲା,
କରିଦେବେ ଯୁକ୍ତିବଳେ କଳା ଧଳା ।
କରିବୁ ନାହିଁଟି ସ୍ୱପନେ ଏ ପାଞ୍ଚ,
ଉଚ୍ଚାସନ ନେବୁ ତହିଁ ଦେଇ ଲାଞ୍ଚ ।
କେଜାଣି ବସିବ ତୋତେ ପାଦେ ଦଳି,
ତୋହାରି ଉପରେ ତୋର ଅରଦଳି ।
ସେ ଦରବାରେ ତ ଗଣା ହେବ ନାହିଁ,
ଉଚ୍ଚ ପଦ ତୋର, କିମ୍ବା ଦରମାହି ।
କିମ୍ବା ଭୂସମ୍ପତ୍ତି, କିମ୍ବା ରାଜପଣ,
କିମ୍ବା ବିଦ୍ୟା, କିମ୍ବା ବୁଦ୍ଧି ବିଚକ୍ଷଣ ।
ଉଇଲ୍‌ସେନ ଘରୁ ସୁଆର ଅଣାଇ,
କେତେ କେତେ ଭୋଜ ଦେଇଅଛ ଭାଇ ।
ଦେଇଅଛ ଡାଲା ଭରି ମେବା ନାନା,
କେତେ ଥର ଦେଇଅଛ ନାଚ୍‌ଖାନା ।
ଦୁଃଖୀ ରଙ୍କୀ ତଣ୍ଟି ଚିପି ବାରମ୍ବାର
ଦାତାପଣ କେତେ କରୁଛ ପ୍ରଚାର ।
ସମ୍ଭାଳିବା ଲାଗି ଜନତାର ପ୍ରୀତି,
ଭୋଜ ପରେ ଭୋଜ ଦେଉଅଛ ନିତି ।
ନୀତି-ମୁଣ୍ଡ ଖାଇ ନଚାଉଛ ବାଇ,
ଫୁଟାଉଛ ବାଣ ଚକ୍ଷୁ ଚମକାଇ ।
ସୁଜ୍ଞଜନେ ତୁମ୍ଭ ନାଚ ଦେଖି କାବା,

(୧) ରୋଗଭୂ– ଶରୀର ।  (୨) ବୈଶ୍ୱାନର– ବିଶ୍ୱ-ନରସମ୍ବନ୍ଧୀୟ, ସାର୍ବଜନିକ ।

ଜନତା କୁହାଟେ "ବାହାବା, ବାହାବା"।
ବନ୍ଧୁ ବ୍ୟୟେ ଏହି ବହୁଶୀର୍ଷ ପଶୁ, (୧)
ତୋଷି ସିନା ଖାଲି କୁଟୁଅଛ ଚକ୍ଷୁ।
ଅଢ଼େଇ-ଦିନିଆ ଯଶ ଲାଗି ବାଇ,
ହୋଇ ବୃଥା କାର୍ଯ୍ୟେ ମାତିଛ କିପାଇଁ?
ଭାଳିଛ ପରା ଏ କଥା ମର୍ତ୍ତେ ନର,
ଗାଇବେ ଯାବନ୍ତ ଚନ୍ଦ୍ର ଦିବାକର।
ଭାଳିଛ ପରା ଏ ଦୀପ ନ ଲିଭିବ,
ବିସ୍ମୃତି-ଅନ୍ଧାରେ ସଦା ଜଳୁଥିବ।
ଲେଖୁଅଛ ନିଜ ନାମ ଏହି ମତେ,
ବାଳ ପ୍ରାୟେ କାଳସିନ୍ଧୁ-ସଇକତେ।
ଲିଭାଇ ଦେବ ଯା ପରକ୍ଷଣେ ଆସି,
ନାଚି ନାଚି ଫେଣଚୂଡ଼-ଜଳରାଶି।
ବୃଥା କରୁଅଛ ଅସାର ଆଟୋପ,
ଛତ୍ରାକ ପ୍ରାୟେ ଯା ଉଇଁ ଭଳେ ଲୋପ।
ବୃଥା ଲୋଡ଼ି ହେଉଅଛ ଆତ୍ମଘାତୀ,
ଦୁନିଆର ଦୁଇଦିନିଆ ସୁଖ୍ୟାତି।
ଜନତାର ଯଶ ପାଣିର ଫୋଟକା,
ହୀରାଭ୍ରମେ କିପାଁ ଲୋଡ଼ୁଛ କରକା?
ସାର ମଣ କିପାଁ ଅସାର ଧନକୁ,
ତାରା ମଣ କିପାଁ ଜ୍ୟୋତିରିଙ୍ଗଣକୁ?
ଏ ଯଶ ତୁମ୍ଭର ଖ୍ୟାତ ଦୁନିଆରେ
ପଣ୍ଡ ହେବ ସିନା ଯମ ଦରବାରେ।
ଗ୍ରାସେ ଅନ୍ନ ଦେଇ ଭୋକୀକି କେବଳ,
ଶୋଷୀକି ମନ୍ଦାଏ ମାତ୍ର ଦେଇ ଜଳ,
ତୋହପରେ ତହିଁ ବସିବେ ଗୌରବେ
ତୋର ମତେ କେତେ ନଗଣ୍ୟ ମାନବେ।
ବଡ଼ ଟାଣ, ଭାଇ, ଚିତ୍ରଗୁପ୍ତ ହିଆ,
ବିଚକ୍ଷଣ ତାର ପାଞ୍ଜିଆ-ପଣିଆ।
ଥାଉ ଆନ, ଚିତ୍ତେ ଚିନ୍ତୁଥାଉ ଯାହା,
ତା ପାଞ୍ଜିରେ ଲେଖା ହୋଇଯାଏ ତାହା।
ନଗର ସମଗ୍ର ଜୀବନର ଚିତ୍ର,
ପଲକେ ଦେଖାଏ ସେ ପାଞ୍ଜି ବିଚିତ୍ର।
ଚିନ୍ତା-ପୁରେ ଅଛି ଯେତେ ଗଳିକୁଞ୍ଚି,
ରହି ନ ପାରେ ତା ଆଲୋକରେ ଲୁଚି।
କି ବହିର୍ଜ୍ଜଗତେ, କି ଅନ୍ତର୍ଜ୍ଜଗତେ
ଯେତେବେଳେ ଯାହା ଘଟେ ଏ ମରତେ,
ସବୁ ଲେଖେ ସେହି ପାଞ୍ଜିକାର ରାଢ଼
କଡ଼ା ଦାଢ଼ ତହୁଁ ଯାଏ ନାହିଁ ଛାଡ଼।
ବ୍ରହ୍ମାଣ୍ଡେ ତା'ପରି ନାହିଁ ପାଞ୍ଜିକାର,
ତା ହିସାବ ପୁଣି ଦୁନିଆ ବାହାର।
ଏ ପଦଗୌରବ, ଏତେ ସାଜସଜ୍ଜା –
ପ୍ରତି ତା'ର ତିଳେ ନାହିଁ ଚକ୍ଷୁଲଜ୍ଜା।
ସେ ନ ମାନେ ତୋର ମୃଦୁ ହାସଛଟା
ସେ ନ ଜାଣେ ପାନ ଅତରର ଘଟା।
ସେ ଗଣିବ ନାହିଁ ତୋର ସୁନାଘଡ଼ି,
ଗଣିବ ନାହିଁ ତୋ ସାଲର ପଗଡ଼ି।
କରିନେବ ଯେବେ ସେହୁ ତୋତେ କାବୁ,
ସେଠାରେ ନ ଥିବେ କେହି ଦେଶୀ ବାବୁ,
ତୋହର ଆସନ ଟେକିଦେବାପାଇଁ
ଶ୍ୱେତାଙ୍ଗ ଛାମୁରେ ମିଛ ସତ ଗାଇ।
ପ୍ରତାରଣା ବର୍ତ୍ତି ନ ପାରେ ତା ଆଗେ,
ବାହାର ଭିତର ଦେଖେ ସେହିଲାଗେ।
ବଡ଼ ତାର୍କିକ ସେ, ଶୁଣି ତା ଯୁକତି
ବଣା ହେବେ ନିଜେ କଣାଦ-ଭାରତୀ। (୨)
ମାନଦଣ୍ଡ ତାର ଅଦ୍ଭୁତ ଭିଆଣ,
ମାପେ ଯାର ସାନ ବଡ଼, ବଡ଼ ସାନ।
ଭଲ ସୁନା ବୋଲି ଭବେ ଯେ ବିକସେ,
ଭେଲ ସିନା ଚିତ୍ରଗୁପ୍ତର ନିକଷେ।
ତରାଜୁ ତାହାର ଦୁନିଆ ବାହାର,
ଗୁରୁ ଲଘୁ, ଲଘୁ ଗୁରୁ ତୁଳେ ଯାର।
ଜେତା ଜିତେ ତାର ନାହିଁ ଭେଦଜ୍ଞାନ,
କଳା ଧଳା ଚର୍ମ ତା ନେତ୍ରେ ସମାନ।
ଭିଆଇ ନ ପାରେ ତା ଚିତ୍ତେ ଚମକ,
ଏ ମହାଭାସ୍ୱର ଅମ୍ବର ଝମକ।
କରଇ ସେ କେତେ ରଙ୍ଗ, କେତେ ମଜା,
ବସାଇ ଦିଅଇ ରାଜା ପରେ ପ୍ରଜା।
ବାଗୀଶ ଉପରେ ବସାଏ ବାଳିଶ,
ସବାର ଉପରେ ବସାଏ ସଇସ।
ଦୁର୍ବଳକୁ ଦିଏ ବଳୀ ପରେ ସ୍ଥାନ,
ସୁସ୍ଥଠାରୁ ଦିଏ ରୋଗୀକି ସମ୍ମାନ।
ସୁନ୍ଦର ଉପରେ ବସାଏ କୁତ୍ସିତ,
ବସାଇ ଦିଏ ସେ ଜେତାପରେ ଜିତ।
ଯେତେ ହୋଇ ଯାଇଥିଲେ ଘଷି ମାଜି,
ଭାଙ୍ଗିଦିଏ ଦର୍ପ ଚିତ୍ରଗୁପ୍ତ ପାଞ୍ଜି।
ସେ ନମାନେ, ଭାଇ, ଫେଶନ ଚେହେରା,
ବାବୁପରେ ଦିଏ ବସାଇ ବେହେରା।
ସିଂହପରେ ଦିଏ ବସାଇ ଶଶାକୁ,
କରଣ ଉପରେ ବସାଏ ଚଷାକୁ।
ଜଜପରେ ଦିଏ 'ବସାଇ ଆସାମୀ,

(୧) ବହୁଶୀର୍ଷ ପଶୁ– ଜନତା। (୨) କଣାଦ– ବୈଶେଷିକ ଦର୍ଶନ ପ୍ରଣେତା। ଏହି ଦର୍ଶନ ଭାରତର ପ୍ରଧାନ ତର୍କଶାସ୍ତ୍ର ଅଟେ।

ରଇତ ବସାଇ, ବସାଏ ଭୂସ୍ୱାମୀ।
ବସାଏ ଚଣ୍ଡାଳ ତଳେ ଶ୍ରେଷ୍ଠବର୍ଣ୍ଣ,
ଅଧମର୍ଣ୍ଣ ତଳେ ତାର ଉତ୍ତମର୍ଣ୍ଣ।
ମାଗିବ ଯେବେ ସେ ମର୍ତ୍ତ୍ୟର ହିସାବ,
କି ହିସାବ ଦେବ, ବେଳୁଁ ତାହା ଭାବ।
ଭଣ୍ଡିବାର ତାକୁ ନୁହଇ ସହଜ,
ନିଖାରି ନିଖାରି ଦେଖେ ସେ କାଗଜ।
ଦେଇଅଛ କେତେ କୋଠି ଭଡ଼ା ଛାଡ଼ି,
ଦେଇଅଛ କେତେ ଥର ଘୋଡ଼ାଗାଡ଼ି,
କେତେଥର ଯାଇ ବିକ୍ରୟ ନିଲାମେ
କିଣିଅଛ ଦ୍ରବ୍ୟ ଚତୁର୍ଗୁଣ ଦାମେ,
ବାଣ ପ୍ରଦର୍ଶନ, ତୋରଣ ଗଠନ,
ସ୍ୱର୍ଣ୍ଣାକ୍ଷରେ ଅଭିନନ୍ଦନ-ମୁଦ୍ରଣ –
ଆଦି ଶୁଭ-କାର୍ଯ୍ୟେ ନେତୃପଣ ନେଇ
ଅଳ୍ପାତରେ କେତେ ମୁଦ୍ରା ଅଛ ଦେଇ,
ଦେଇଅଛ ଭୋଜେ କେତେ ମାଂସ ସୁରା,
ତାପାଇଁ କଡ଼ାଏ ନୋହିବ ମଜୁରା।
ସେ ଦରବାରର ରୀତି ନୀତି ଭାବି,
ଧର୍ମେ ବଳବାନ କର ନିଜ ଦାବି।
ଚତୁରପଣର ଥିଲେ ଅଭିମାନ,
ମର୍ତ୍ତ୍ୟ-ଅଭିମାନ ଦିଅ ବଳିଦାନ।
ଶୋଭଇ କି, ଭାଇ, ତୁମ୍ଭର ବିଶ୍ୱରେ,
ଶାଶ୍ୱତ ହୋଇ ଏ ମମତା ନଶ୍ୱରେ ?
ହେବାର ଲୋଡ଼ୁଛି ଯେ ସମ୍ମାନ-ପାତ୍ର,
ସ୍ୱର୍ଣ୍ଣ ନୁହଇ ତା, ସ୍ୱର୍ଣ୍ଣାଭାସ ମାତ୍ର। (୧)
ସ୍ପର୍ଶମଣି ଯାର ପାଇବାର ଆଶ,
ଭେଳପାଇଁ କିପାଁ ତାର ଏ ପ୍ରୟାସ ?
ବିନୟେ କହୁଛି ଘେନ ମୋର ବୋଲ,
ନିଦା ମଣି ଭ୍ରମେ କିପାଁ ନିଅ ପୋଲ ?
ଶିଶୁ-ମନୋହର ବାହାରର ଝଲି,
ଦେଖି କର କିପାଁ ଶିଶୁ ପ୍ରାୟେ ଅଳି ?
କେତେ ବଡ଼ ତୁମ୍ଭେ, କେତେ କ୍ଷୁଦ୍ର ପୁଣି,
ଜାଣି ହୁଅ ଏହି କଳିଆରେ ତୁନି।
ଅସାର ବେପାରେ ନିରତେ ନିର୍ଲେପ,
ରହି ସାର-ତତ୍ତ୍ୱେ କର କାଳକ୍ଷେପ।
ନ ପଡ଼ି ବଡ଼ିମା-ତାମସ-ଗହ୍ୱରେ,
କ୍ରମେ ଉଠ ଧର୍ମ-ଶଇଳ-ଶିଖରେ।
ଚାହିଁଲେ ଯେସନ ଶଇଳ ଶିଖରୁ,
ସମ ଦିଶେ ମହୀସ୍ଥିତ ତୃଣ ତରୁ,
ଧର୍ମନେତ୍ରେ ସାନ ବଡ଼ ଦୁନିଆର
ଦୂରୁଁ ସବୁ ସିନା ଦିଶେ ଏକାକାର।
ଧର୍ମ-ଶୈଳେ ବସି ନିରତେ ନିଃସଙ୍ଗ (୨)
ହୋଇ ଦେଖ ଦୁନିଆର ନାଟ ରଙ୍ଗ।
ଦୁନିଆର କଳିଗୋଳର ତୋଫାନ –
ଊର୍ଦ୍ଧ୍ୱେ ରହି କର ଶାନ୍ତି-ସୁଧା ପାନ।
ମଣ ନାହିଁ ମୁହିଁ ନେଇଛି ଏସନ,
ଜ୍ଞାନଦର୍ପେ ଜ୍ଞାନଦାତାର ଆସନ।
ଥୋଇ ଏ ମୁକୁର ତୁମ୍ଭ ଆଗେ, ଭାଇ,
ନିଜ ମୁଖ ମୁଁ କି ନିଜେ ଦେଖୁ ନାହିଁ ?
ପାସୋରି ନାହିଁ ମୁଁ, ହେଉଅଛୁଁ ବ୍ୟସ୍ତେ
ଏକା ଅନ୍ଧକୂପେ ଦରାଣ୍ଡି ସମସ୍ତେ।
ପାସୋରି ନାହିଁ ମୁଁ ସ୍ୱପ୍ନେ କଦାଚିତେ,
ସର୍ବେ ଅଛୁଁ ଏକ ଦଦରା ବୋଇତେ।
ଆଗେ ପଛେ ତୋଳି ଭୀମ ଊର୍ମିମାନ,
ଭବ-ଜଳଧିରେ ଗର୍ଜଇ ତୋଫାନ।
ଯେଣେ ମନ ତେଣେ ଚାଲୁଅଛି ନାହା,
ନାହିଁ କଣ୍ଡୁଆଳ ଦେଖାଇବ ରାହା।
କାହୁଁ ଅଇଲା ଏ, କାହିଁ ଯିବ ବାହି,
କହିବାକୁ ଏହା ନାବେ କେହି ନାହିଁ।
କେହି ନାହିଁ ଏଥି, ହେବ ଯେ ଭାଜନ,
ଫେଡ଼ିବାକୁ ଏ ସମସ୍ୟା ସନାତନ।
ଜାଣେ ମୁହିଁ ଏହି ସାଂଯାତ୍ରିକଦଳେ (୩)
ହୀନଠାରୁ ହୀନ ମୁହିଁ ଜ୍ଞାନବଳେ।
ଅଜ୍ଞାନ ଅଟେ ମୁଁ ଏ ଜ୍ଞାନୁଁ ବଞ୍ଚିତ,
ଭାଳ ନାହିଁ, ଭାଇ, ମୋତେ କଦାଚିତ,
ପ୍ରଭେଦ ମଧ୍ୟରେ ଏତିକି କେବଳ –
ଯହିଁ ତୋଫାନର ସବୁଠାରୁ ବଳ
ଗୁଣ-ବୃକ୍ଷ-ଚୂଳେ, (୪) କେଜାଣି କିପାଇଁ
ଭାଗ୍ୟ, ଭାଇ, ମୋତେ ଦେଇଛି ବସାଇ।
ହେଉଅଛି ନାହା କେତେ ଟଳମଳ,
ତୋଫାନ କିପରି ହେଉଛି ପ୍ରବଳ।
ସବୁଠାରୁ ମୁହିଁ କଳୁଛି ଅଧିକ,
ସବୁଠାରୁ ଯେଣୁ ହଲୁଛି ଅଧିକ।
ତେଣୁ ଆର୍ତ୍ତେ ସିନା ପକାଉଛି ହୁରି,
ନୋହେ ଏହା ଜ୍ଞାନଗୁମାନ ଚାତୁରୀ।
ସମଦୁଃଖୀଠାରେ ଦୁଃଖୀ-ଆର୍ତ୍ତନାଦ
ସିନା ଏହା, ନୁହେ ଅଜ୍ଞେ ପ୍ରଜ୍ଞାବାଦ।

ଆହେ ମାନଶୌଣ୍ଡ ଭୂପାଳ-ମଣ୍ଡଳି,
ଦେଇଛ କି କୁଳଧର୍ମେ ଜଳାଞ୍ଜଳି ? (୫)

(୧) ସ୍ୱର୍ଣ୍ଣାଭାସ – ବହିର୍ଦୃଷ୍ଟିରେ ଯାହା ସ୍ୱର୍ଣ୍ଣ ପରି ଦିଶେ। (୨) ନିଃସଙ୍ଗ – ଆସକ୍ତିରହିତ। (୩) ସାଂଯାତ୍ରିକ – ସମୁଦ୍ରଯାତ୍ରୀ। (୪) ଗୁଣବୃକ୍ଷ – ଜାହାଜର ମାସ୍ତୁଲ। (୫) ଉତ୍କଳୀୟ ରାଜନ୍ୟବୃନ୍ଦରେ ପ୍ରକୃତ ମନସ୍ୱୀ ଏବଂ ମହାନୁଭବ ରାଜାମାନଙ୍କ ପ୍ରତି ଏହି ଉକ୍ତି ଅବଶ୍ୟ ପ୍ରଯୋଜ୍ୟ ନୁହେଁ। ଦୁର୍ଭାଗ୍ୟକ୍ରମେ ଏପରି ରାଜାଙ୍କର ସଂଖ୍ୟା ନିତାନ୍ତ ଅଳ୍ପ।

ବୃଥା କିପାଁ ହେଉଅଛ ହୀନମାନ ?
ସିଂହାସନ କର ସ୍ୱର୍ଗର ସୋପାନ ।
ଜନ୍ମ-ଫଳେ ଲଭିଅଛ ଅପ୍ରମିତ –
ଶକ୍ତି ସାଧିବାକୁ ସଂସାରର ହିତ ।
ଜନ୍ମଫଳେ ଲଭି ସମ୍ପଦ ଅମାପ,
ଭୋଗି ନାହିଁ କେବେ ଅଭାବର ତାପ ।
ଜମା ଅନୁରୂପେ ବ୍ୟୟଲାଗି ଦାୟୀ
ହେବ, ଏହା ଦିନେ ମନେ କଲ ନାହିଁ ।
ଏ ଯୋଗ ଜଗତେ ପାନ୍ତି କେତେ ଜଣ ?
ଏହା ପାଇଁ ତୁମ୍ଭେ ହେଲ ଅଭାଜନ ।
ବୁଡ଼ିଣ ରହିଲ ଆମୋଦେ ଆବାଲ୍ୟ,
ବିଦ୍ୟାକୁ ମଣିଲ ଶିବ-ନିରମାଲ୍ୟ ।
ରକ୍ଷଣ, ପାଳନ, ଭୋଗ ଏ ଧରାର,
ତିନି କାର୍ଯ୍ୟେ କଲ ତୃତୀୟକୁ ସାର ।
ପରସେବା ଲାଗି ତୁମ୍ଭର ଜନମ,
ଆତ୍ମସେବା କଲ କୌଳିକ ଧରମ ।
କାଷ୍ଠ-କଣ୍ଠୀରବ ମାତ୍ର ଜଣେ ଜଣେ,
ପ୍ରଧାନ ମନୁଷ୍ୟେ ଅମନୁଷ୍ୟପଣେ ।
ଐଶ୍ୱର୍ଯ୍ୟ ତିମିରେ ଦୃଷ୍ଟି ପ୍ରତିହତ,
ଧନଦର୍ପ-ଶୋଥେ ରୁଦ୍ଧ କର୍ଣ୍ଣପଥ ।
ଆଭାସନ୍ତି ତୁମ୍ଭ ନେତ୍ରେ ବାଗୀଶ୍ୱରୀ,
ଦିବା ଦିବାନ୍ଧର ନୟନେ ଯେପରି ।
ପଣ୍ଡିତଙ୍କୁ ମଣ କେବଳ କଣ୍ଟକ,
ଆସ୍ଥାନ-ନଳିନୀ-ଧୂର୍ତ୍ତ ବକ ଠକ ।
ପ୍ରତିଧ୍ୱନି ପରି ସଦା ସ୍ତବକାରୀ,
ତୁମ୍ଭ ପ୍ରିୟପାତ୍ର ଗଉଡ଼ ଭଣ୍ଡାରି । (୧)
ପ୍ରଭୁ ବୋଲାଇଣ ତୁମ୍ଭେ ଅନୁକ୍ଷଣ,
ହେଲ ଦେହଲଗା ଭୃତ୍ୟର ବାହନ ।
ବାଇ ଶୁଣିବାକୁ ଖଳର ଜଳ୍ପନା,
ଭଲ କଥା ଲାଗେ କାନକୁ ଅଲଣା ।
ସତ୍ୟ ହୃଦେ ବାଜେ ଯେହ୍ନେ ଶତ ସୂଚୀ,
ସ୍ୱାର୍ଥାନ୍ୱେଷୀ-ମିଥ୍ୟାବାଦେ ସଦା ରୁଚି ।
ସତ୍ତ୍ୱ ଲେଶେ ସ୍ଥାନ ନ ଲଭେ ମାନସେ,
ସଦା ଅଭିରୁଚି ରାଜସେ, ତାମସେ ।
ସଙ୍ଗୀତ, ମୃଗୟା, ପକ୍ଷୀ, ନିଶା, ପଶା –
ଖେଳ କଲ ତୁମ୍ଭେ ଜୀବନ ବ୍ୟବସା ।
କିଏ ତୁମ୍ଭେ, ମର୍ତ୍ତ୍ୟେ ଆସିଲ କାହିଁକି ?
କାହିଁ ଯିବ ଥରେ ଭାଳିବ ନାହିଁ କି ?

ମୁକୁଟ ଘୋଡ଼ାଇ ରଖିଲା ପଳିତ,
ରୋଧିଲା ସ୍ୱର୍ଲୋକ ଦୃଷ୍ଟି ଛତ୍ରସିତ ।
ନିଜକୁ ନିଜର ବଡ଼ିମାର ଗଜେ,
ମାପି ବଡ଼ ତୁମ୍ଭେ ହେଉଛ ସହଜେ ।
ଅସନର ବଡ଼ପଣ ନିଜଠାରେ
ଆରୋପି ମାତିଛ ସିନା ଅହଙ୍କାରେ ।
ପ୍ରାଂଶୁ ନରସ୍କନ୍ଧେ ବସି ଶିଶୁଜନେ,
ନିଜକୁ ମଣନ୍ତି ସର୍ବୋଚ୍ଚ ଯେସନେ,
ନିଜସ୍ୱ ତୁମ୍ଭର କି ଅଛି ତହିଁରେ,
ଯା ଘେନି ବୋଲାଅ ବଡ଼ ଏ ମହୀରେ ?
କାଠିଲାଗି, ନୀତି, ମୁଣୋହି, ପହଡ଼
ଘେନି କି ହେ ତୁମ୍ଭେ ନର ମଧ୍ୟେ ବଡ଼ ?
ବଡ଼ ପରା, ଯେଣୁ ସଦା ପରବଶ,
ଜଡ଼ ପରି ପର ହାତେ ଉଠ ବସ ।
କ୍ରୀଡ଼ା-ମୃଗ ତୁମ୍ଭେ ହେଲ ନିରନ୍ତର
ବିଧି-ରକ୍ଷା-ପ୍ରିୟ ବୈଧେୟବୃନ୍ଦର । (୨)
ନୀତି ସାରୁ ସାରୁ ଦିନ ଅସ୍ତ ନାହିଁ,
ଧର୍ମ ଅର୍ଜିବାକୁ ଅବସର କାହିଁ ?
ଗ୍ରାମ୍ୟାମୋଦ-ପଙ୍କେ ଶୂକର ପରାୟେ,
ଘାଣ୍ଟି ହେଉଥିବ କେତେଦିନ ଯାଏ ?
ଆତ୍ମୋନ୍ନତି-କକ୍ଷେ ଏ ସୁବିଧା ନେଇ,
ହୋଇଥିବ କି ହେ ପଶୁ-ଧର୍ମଦେହୀ ?
ମନେ ନାହିଁ କାହୁଁ ପଡ଼ିଅଛ ଖସି,
କି ଆସନ ଛାଡ଼ି କାହିଁରେ ଲାଳସୀ ।
ପରିଚ୍ଛଦରୂପେ ସେନା ନେଇ ସଙ୍ଗେ,
ଅଙ୍ଗ ଢାଳୁଥିଲେ ଯେ ରଣତରଙ୍ଗେ,
ତାଙ୍କରି ଦାୟାଦ ହୋଇ କି, ହେ ବୀରେ,
ଝୁଲୁଥିବ କାନ୍ତା ପଣତ-କାନିରେ ?
ପାତ୍ରର ଉଡ଼ାଙ୍କେ ରହିଥିବ ଡରି,
ବିଦେଶୀ-ସମ୍ମୁଖେ କାନ୍ଦିଶିକ ପରି । (୩)
ମନେ ନାହିଁ ତୁମ୍ଭେ କାହାର ସନ୍ତାନ,
କେଶରୀ-ଔରସେ ତୁମ୍ଭେ ସିନା ଶ୍ୱାନ ।
ପୂର୍ବପୁରୁଷର ପ୍ରତିଷ୍ଠା ବିଶାଳ,
ବିକି ଭାଙ୍ଗି ଖାଉଥିବ କେତେ କାଳ ?
ସେ ପ୍ରତିଷ୍ଠା ନିଜେ ତିଳେ ନ ବଢ଼ାଇ,
କରୁଥିବ ଆଉ କେତେ ତା ବଡ଼ାଇ ?
ଥିଲେ ଆଗେ ଯେହୁ ଉତ୍କଳର ସ୍ୱାମୀ,
ବହ୍ନିଶିଖା ପରି ସଦା ଊର୍ଦ୍ଧ୍ୱଗାମୀ,

(୧) ଗଉଡ଼ ଭଣ୍ଡାରି – ବୋଲିବା ବାହୁଲ୍ୟ ଯେ କୌଣସି ଜାତି ପ୍ରତି ଏଠାରେ ଆକ୍ଷେପ ହୋଇ ନାହିଁ, କେବଳ ଦେହଲଗା ଭୃତ୍ୟମାନେ ଏ ଉକ୍ତିର ଲକ୍ଷ୍ୟସ୍ଥଳ । (୨) ବୈଧେୟ – ମୂର୍ଖ । (୩) କାନ୍ଦିଶିକ – ମୁଁ କେଉଁ ଦିଗକୁ ପଳାଇବି ସର୍ବଦା ଯେ ଏହି ଚିନ୍ତା କରେ, ଭୀରୁ ।

ତୁମ୍ଭେ ହୋଇ ସେହି ବଂଶର ସନ୍ତତି,
ଜଳଧାରା ପରି ହେଲ ଅଧୋଗତି।
ତୁମ୍ଭ ପିତୃଗଣ ପରମ ଉଦାର,
ରାଜ୍ୟ ମଣୁଥିଲେ ଏକ ପରିବାର।
କାହିଁ ଗଲା ସେହି ପ୍ରାଚୀନ ସୁଧାରା,
ରାଜା ପ୍ରଜା ଏବେ ହେଲେ ବାଜ ପାରା!
କାଢ଼ିନେଲା ରାଜ-ଭୋଗ-ଅଭିଳାଷ,
ପ୍ରଜାମୁଖୁଁ ତାଙ୍କ ଶ୍ରମାର୍ଜିତ ଗ୍ରାସ।
ଦେଶୀ ହୋଇ ତୁମ୍ଭେ ଆଚରିଲ ନିତି,
ନିର୍ମମ-ବିଦେଶୀ-ସର୍ବ-ଶୋଷୀ-ନୀତି।
ବାସଲ୍ୟେ ନ ବାନ୍ଧି ପ୍ରଜାଙ୍କର ଚିତ୍ତ,
ବିଦେଶୀ-ସଙ୍ଗୀନେ କଲ ତାଙ୍କୁ ଭୀତ।
ଗନ୍ତାଘର ହେଲା ତୁମ୍ଭର ସର୍ବସ୍ୱ,
ସର୍ବସ୍ୱ ପ୍ରାସାଦ, ଗାଡ଼ୀ, ହସ୍ତୀ, ଅଶ୍ୱ।
ରାଜଧର୍ମ ହେଲା ପ୍ରଜାଧନ ବୁହା,
ମନ୍ତ୍ରୀ ହେଲେ ଖଳ, ଖଣ୍ଡ, କାନକୁହା।
ତଣ୍ଟି ଦୁଃଖୀ, ରଙ୍କ, ଅରକ୍ଷିତ, ରାଣ୍ଡ,
ବିଦେଶୀଙ୍କି ଖୁଆଇଲ କୁକୁଟାଣ୍ଡ।
ନ ପାଇଲେ ଦୁଃଖୀ ପ୍ରଜା ଖୁଦକୁଣ୍ଡା,
ନେଲେ ଘିଅ ଅଟା ସଙ୍ଗେ ଛାଗମୁଣ୍ଡା
କାଣ୍ଡଜ୍ଞାନହୀନ କାଣପୃଷ୍ଠ ହୁଣ୍ଡା। (୧)
ଅଭୀଷ୍ଟ ଦେବତା କଲ ଲୋଭପ୍ରେତ,
ନ ଚେତିଲ ଖାଇ ବିପଦର ବେତ।
ସଦା ହୋଇ ପାପ-ଦ୍ରବିଣ-ପ୍ରତ୍ୟାଶୀ,
ପ୍ରଜା ମଧ୍ୟେ ପାପବୁଦ୍ଧିକି ମନାସି।
ରହିଥାଅ ଚାକି, କରି ଜରିମାନା
ଧନେ ପୂରାଇବା ଲାଗି ମାଲଖାନା।
ଧନର ଲାଳସା ଜାଗ୍ରତେ ସ୍ୱପନେ,
ଧନ ବିନୁ ନାହିଁ ଆନ ଚିନ୍ତା ମନେ।
ଧନର ସାଫଲ୍ୟ ସୁବ୍ୟୟେ କେବଳ,
ଯକ୍ଷ ପ୍ରାୟେ ତାକୁ ଜଗି କେଉଁ ଫଳ?
ମର୍ତ୍ତ୍ୟେ କେତେ ଆସି କେତେ ଗଲେ, ଭାଇ,
କିଏ ନେଇଗଲେ କି ଧନ ମୁଣ୍ଡାଇ?
ପଡ଼ି ତ ରହିଲେ ପଛେ ହାତୀ ଘୋଡ଼ା,
ପଡ଼ି ତ ରହିଲା ସୁନା ରୁପା ତୋଡ଼ା।
ପଡ଼ି ତ ରହିଲା ରତନେ ଭାସ୍ୱର,
କୁବେରଭଣ୍ଡାର ସମ ଗନ୍ତାଘର।

"ଜିଣିବାକୁ ଆଉ ନାହିଁ ଧରାଖଣ୍ଡ"
ବୋଲି କଲେ ଯେହୁ ଅଶ୍ରୁସିକ୍ତ ଗଣ୍ଡ, (୨)
ମଲାବେଳେ ବିଶ୍ୱ-ବିଜୟୀ ସନ୍ଦର (୩)
କି କହିଥିଲେ ତା ଚିତ୍ତେ ଥରେ ଧର।
ବୋଇଲେ "ଏ ପ୍ରାଣ ଗଲେ ପିଣ୍ଡ ଛାଡ଼ି,
ନେବ ଯେବେ ମୋତେ କୋକେଇରେ ବାଢ଼ି,
ଦେଇଥିବ ତହିଁ ମୋ ଶବ ଶୁଆଇ
ବେନି ପାଶେ ବେନି କରକୁ ଝୁଲାଇ,
ଯା ଦେଖି ଜାଣିବେ ଜଗତେ ସମସ୍ତେ
ଆସିଥିଲି ଫେରିଗଲି ଶୂନ୍ୟ ହସ୍ତେ।"
ଏହି ମହାବାକ୍ୟ ମନେ ମନେ ହେଜି
ସଦ୍‌ଗୁଣ ଭଜ ଲୋଭ ମଦ ତେଜି।
ଅକାରଣେ କିପାଁ ତଣ୍ଟି ଅରକ୍ଷିତ,
ଅଳ୍ପଦିନପାଇଁ ସଞ୍ଚୁଅଛ ବିତ୍ତ?
ବୋଲାଅ ଜଗତେ ସିନା ଲକ୍ଷ-ପୋଷୀ,
ଫଳେ ତୁମ୍ଭେ ଜଣେ ଜଣେ ଲକ୍ଷ-ଶୋଷୀ।
ଗଣିକା, ଓକିଲ, ଛାମୁଆ ପୋଷଣ,
ଲାଗି କର କିପାଁ ପ୍ରଜାକୁ ଶୋଷଣ?
ପ୍ରଜା ରକ୍ତ, ସ୍ୱେଦ, ଲୋତକେ ଅର୍ଜିତ
ଅଭିଶପ୍ତ ରାଶି ରାଶି ପାପବିତ୍ତ।
ପ୍ରାୟଶ୍ଚିତ୍ତେ ବ୍ୟୟ ନ କରି ଯତନେ,
ପାପ ଅର୍ଜୁଅଛ ପାପାର୍ଜିତ ଧନେ।
ଅର୍ଜୁଅଛ ସିନା କେବଳ ଦୁଷ୍କୃତ,
ଘୃଷ୍ଟିମୁଖେ (୪) ଢ଼ାଳି ଯଜ୍ଞକୁଣ୍ଡ-ଘୃତ।
ଏ ଅପ୍ରିୟ ସତ୍ୟେ ଛଳକୁ ନ ଧରି,
ନିଜ ଶ୍ରେୟ ଦେଖ ଚିତ୍ତେ ଚିନ୍ତା କରି।
ଭଗ୍ନଘଟୁଁ, ଆହା, ସଳିଳ ଯେସନ
ସରିଯାଉଅଛି ଆୟୁ ପ୍ରତି କ୍ଷଣ।
ବଡ଼ କ୍ରୂର କାଳ, ବଡ଼ ଅବିଶ୍ୱାସୀ,
ହାବୋଡ଼ି ଯିବ ସେ ଆଚମ୍ବିତେ ଆସି।
ଦୂରବର୍ତ୍ତୀ ଜାଣି କାଳକୁ ଯେ ହସେ,
ହସି ସେ ତା ପଛେ ଆସି ଲୁଚି ବସେ।
ନୀତିବେଳ ବୁଝି ଛାମୁରେ ହାଜର
ହେବା ବିଧି ତାକୁ ନାହିଁଟି ଗୋଚର।
କେତେ ଦିନ ଖେଳୁଥିବ ଏହି ଖେଳ,
ପାଖେଇ ଆସୁଛି ସେ ଅନ୍ତିମ ବେଳ।
ଆସୁଛି ନୀରବେ ସେହୁ ପ୍ରତିକ୍ଷଣେ

(୧) କାଣପୃଷ୍ଠ– ଶସ୍ତ୍ରବ୍ୟବସାୟୀ। କୌଣସି କୌଣସି ସ୍ଥଳରେ ଏହାର ଅଭିନୟ ଏକାଧିକ ଥର ହୋଇଅଛି। (୨) ଗ୍ରୀକ୍ ବୀର ଆଲେକ୍‌ଜାଣ୍ଡର ଦିଗ୍‌ବିଜୟରେ ପଞ୍ଜାବ ପର୍ଯ୍ୟନ୍ତ ଆସି ଦକ୍ଷିଣାଭିମୁଖରେ କ୍ରମଶଃ ଅଗ୍ରସର ହୋଇ ଯେତେବେଳେ ରତ୍ନାକର ତୀରରେ ଉପସ୍ଥିତ ହେଲେ "ଜୟ କରିବାକୁ ଆଉ ଦେଶ ନାହିଁ" ଏହି କଥା କହି ଅଶ୍ରୁ ବିସର୍ଜନ କଲେ। (୩) ସନ୍ଦର– ଆଲେକ୍‌ଜାଣ୍ଡର। (୪) ଘୃଷ୍ଟି– ଘୁଷୁରି।

ନିତ୍ୟଗାମି-ରଥ-ଚକ୍ର ଆବର୍ତ୍ତନେ।
ଆୟୁ-ସୂର୍ଯ୍ୟ ଯାଏ ତଳେ ଯେତେ ଗଡ଼ି,
ତୁମ୍ଭ ମାୟା ଯାଏ ଛାୟା ପରି ବଢ଼ି।
ମାୟା-ଫେର ତଳେ ଭେଦିବ ଯେତିକି,
ଅନ୍ତକ ରଗଡ଼େ ଝିଙ୍କିବ ତେତିକି।
ସେ କଠିନ ଝିଙ୍କାଝିଙ୍କିରୁ ନିସ୍ତାର-
ଲାଭ ଲାଗି ଆଗୁଁ ହୁଅ ହୁସିଆର।
ବେଳ ଥାଉଁ ଥାଉଁ ଅରଜି ଧରମ,
ଜନ୍ମ ଅନୁରୂପେ ଦେଖାଅ କରମ।
ଜନ୍ମଫଳେ ଭବେ ବଡ଼ପଣ ପାଇ,
ଧର୍ମଫଳେ ତାକୁ କର ଚିରସ୍ଥାୟୀ।
ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି,
ତରିବାକୁ ଏହି ସଂସାର-ବାରିଧି।
ଧର୍ମ ଏକା ସିନା ମହତପଣିଆ,
ଆଉ ବଡ଼ପଣ ଅଢ଼େଇଦିନିଆ।
ବଡ଼ପଣ, ଭାଇ, ଏକା ସିନା ସେହି,
ଛଡ଼ାଇ କେହି ଯା ନ ପାରଇ ନେଇ।
ବଡ଼ପଣ ସେହି, ଅନ୍ତେ ସୁଦ୍ଧା ଯାର,
ଯୌରଭେ ଚହଟୁ ଥାଏ ଏ ସଂସାର।
ବଡ଼ପଣେ ସିନା ସେହି ତାକୁ ଗଣି,
ଯେଉଁ ବଡ଼ପଣ ତ୍ରିଲୋକସାଧନୀ।
ସେହି ସିନା ବଡ଼ପଣ, ଯହିଁ ଲାଗି
ଅନ୍ତକର ବକ୍ର-ଦନ୍ତ ଯାଏ ଭାଙ୍ଗି।
ସେହି ବଡ଼ପଣେ ବଳାଅ ମତିକି,
କାଳ ନ ପାରିବ ପଶି ଯା କତିକି।
ହେଲା କର ନାହିଁ ପାଇ ଏ ସୁବିଧା,
ଲଭିବାକୁ ସେହି ବଡ଼ପଣ ନିଦା।
ସଂସାରର ତ୍ରୁକସାର ବଡ଼ପଣ—
ଲାଳସାରୁ ନିଅ ବାହୁଡ଼ାଇ ମନ।
ଉଦାସୀନ ନେତ୍ରେ ଦୁନିଆର ମାନ,
ଦେଖି କର ମନ ଧର୍ମେ ଏକତାନ।
ରାଜଧର୍ମେ ଆତ୍ମ-ତତ୍ତ୍ୱେ ଦେଇ ମତି,
ଉଚ୍ଚ ହୋଇ ଲଭ ଉଚ୍ଚତର ଗତି।

ମଣ୍ଡିଅଛ କିପାଁ ଆସି ସଭାଘର,
ଉତ୍କଳଶେଖର ହେ ଚନ୍ଦ୍ରଶେଖର ?
ଚିତ୍ରୋତ୍ପଳାନୀର-ପାୟୀ କି ଆଶାରେ
ପଶିଲ କାସର-ସେବିତ କାସାରେ ?
କହ ଫେଡ଼ି, ପଡ଼ି କେଉଁ ଭ୍ରମଜାଲେ,
ସତ୍ୟଲୋକୁଁ ଖସି ଆସିଲ ପାତାଳେ ? (୧)
ଲୋଡ଼ୁଅଛ କି ହେ ବିଶ୍ୱପୂଜାସ୍ପଦ,
ଖଦ୍ୟୋତନ (୨) ହୋଇ ଖଦ୍ୟୋତର ପଦ ?
ଏ ସମ୍ମାନେ ତୁମ୍ଭେ ହେବ କି ହେ ବଣା ?
ତୁମ୍ଭଙ୍କୁ ତ ଏହା ମୂଲ୍ୟ ଅଛି ଜଣା।
ଏ ସମ୍ମାନ-ମାଳା ମାନୁଛି କି ଗଳେ,
ବିଶୁଦ୍ଧ-ସ୍ୱର୍ଣ୍ଣେ କି ମୁଦ୍ରା ବସେ ଭଲେ ? (୩)
ଜାଣେ ମୁଁ, ନ ଥିଲ ସମ୍ମାନ-ଆଶାୟୀ,
ସମ୍ମାନ ତୁମ୍ଭଙ୍କୁ ଲୋଡ଼ି ନେଲା ଯାଇ।
ତୁମ୍ଭ ମୁଖ୍ୟକର୍ମ ତପ ଆଚରିବା,
ଦୁନିଆର ଯଶେ ଯାଏ ଆସେ କିବା ?
ଧନ୍ୟ, ଧନ୍ୟ, ଆହେ ତପସ୍ୱି-ସରମ,
ମର୍ତ୍ତ୍ୟ ଦେହେ ତୁମ୍ଭେ ପରାଜିଲ ଯମ।
ଦେଇଛନ୍ତି ଦିବ୍ୟଚକ୍ଷୁ ବାଗୀଶ୍ୱରୀ,
ଦେଖିବାକୁ ମହାଭୂତି ମାହେଶ୍ୱରୀ। (୪)
ସବୁବେଳେ ଧ୍ୟାନ କରୁଛ ଭାସ୍ୱତୀ
ହିରଣ୍ୟ-ଗର୍ଭର ମୂରତି ଶାଶ୍ୱତୀ। (୫)
ତୁମ୍ଭ ଆଗେ ଭାସେ ପ୍ରତିନେତ୍ରୋନ୍ମେଷେ,
କୋଟି କୋଟି ବିଶ୍ୱ ସୀମାତୀତ-ଦେଶେ।
କୋଟି ଗ୍ରହ, ଉପଗ୍ରହ, ଧୂମକେତୁ
ତୁମ୍ଭ ତପେ ତୁଷ୍ଟ ବାଗ୍‌ଦେବୀ ସଂକେତୁଁ।
କରୁଛନ୍ତି କେତେ ଲୀଳା କୁତୂହଳେ,
ଯାଦୋଗଣ ଯଥା ମହାର୍ଣ୍ଣବ ଜଳେ।
ତୁମ୍ଭଙ୍କୁ ନିଶାରେ ନିତି ନବ ନବ,
ଦେଖାନ୍ତି ନକ୍ଷତ୍ର-ପୁରୁଷେ ତାଣ୍ଡବ। (୬)
ଜ୍ୟୋତିର୍ଲୋକବାସୀ ମହାମୁନିଙ୍କର,
ଜ୍ୟୋତିର୍ବିଦ, ତୁମ୍ଭେ ନିତ୍ୟ ସହଚର।
ରହିବ ତାବତ ଭବେ ତୁମ୍ଭ ଯଶ,
ଦୀପିବେ ଯାବତ ଏ ଜ୍ୟୋତି ଛାନ୍ଦସ। (୭)
ଛାନ୍ଦସ ବିଧିର ଅନୁଷ୍ଠାନ ଚାରୁ
ସାଧ ହେଲା ଯେଣୁ ତୁମ୍ଭ ଗଣନାରୁ। (୮)
ହେ ଉତ୍କଳମାତା-ଯୋଗ୍ୟତମ ସୁତ,

(୧) ସତ୍ୟଲୋକ— ସର୍ବୋଚ୍ଚ ସ୍ୱର୍ଗ, ପାତାଳ ସବୁଠାରୁ ନୀଚ। (୨) ଖଦ୍ୟୋତନ— ସୂର୍ଯ୍ୟ। (୩) ଶୁଦ୍ଧ ସ୍ୱର୍ଣ୍ଣରେ ତାମ୍ରାଦି ନିକୃଷ୍ଟ ଧାତୁ ନ ମିଶିଲେ ମୁଦ୍ରା ଭଲ ବସେନାହିଁ। (୪) ମାହେଶ୍ୱରୀ ଭୂତି— ଈଶ୍ୱରଙ୍କର ଐଶ୍ୱର୍ଯ୍ୟ। (୫) ହିରଣ୍ୟଗର୍ଭ— ବିରାଟପୁରୁଷ, ଯାହାଙ୍କ ଗର୍ଭରେ କୋଟି କୋଟି ହିରଣ୍ମୟ ବ୍ରହ୍ମାଣ୍ଡ ଅବସ୍ଥିତ। (୬) ଅନେକ ନକ୍ଷତ୍ର ଏକତ୍ର ହୋଇ ଗୋଟିଏ ଗୋଟିଏ ଜ୍ୟୋତିର୍ମୟ ପୁରୁଷରୂପେ କଳ୍ପିତ ହୁଅନ୍ତି। (୭) ଛାନ୍ଦସ ଜ୍ୟୋତି— ସୂର୍ଯ୍ୟ। (୮) ବୈଦିକ କର୍ମକାଣ୍ଡ ବିଶୁଦ୍ଧ ପଞ୍ଜିକାସାପେକ୍ଷ। ସାମନ୍ତ ମହାଶୟଙ୍କଦ୍ୱାରା ପଞ୍ଜିକାର ବିଶୁଦ୍ଧତା ସମ୍ପାଦିତ ହୋଇଅଛି।

ତୁମ୍ଭଯୋଗୁଁ ଆମ୍ଭେ ସର୍ବେ ହେଲୁଁ ପୂତ।
ଗୋଦାବରୀଠାରୁ ଗଙ୍ଗାଯାଏ ବ୍ୟାପି,
କୀର୍ତିମାଳା ଯାର ବିରାଜେ ଅଦ୍ୟାପି,
ଏକାମ୍ରେ କୋଣାର୍କେ ଯା କୀର୍ତି ଭାସ୍ୱର,
ଯୋଗ୍ୟପୁତ୍ର ତୁମ୍ଭେ ସେହି ଉତ୍କଳର।
ମାତ୍ର କାଳମୁଖେ ସେ କୀର୍ତି ବିମଳ
ଦେଇ, ନିଜ ମୁଖେ ଏବେ ଯେ ଉତ୍କଳ
ବୋଳିଦେଇଅଛି ଅଜ୍ଞାନର ମସି,
ସେ ଉତ୍କଳେ ତୁମ୍ଭେ ଶ୍ମଶାନ-ତୁଳସୀ।
ତାରାରୂପେ ଉଇଁ ଉତ୍କଳ-ଗଗନେ
ରହିଲ ଅଜ୍ଞାନ-ମେଘ-ଆବରଣେ,
ଦୂରୁଁ ଦେଖି ତବ ଦିବ୍ୟ ଜ୍ୟୋତିରାଶି
ଚିହ୍ନିଲେ ତୁମ୍ଭଙ୍କୁ ଦୂରଦେଶବାସୀ।
ଉତ୍କଳ ଉଦୟ-ଅଚଳେ ଭାସ୍କର,
ହେଲ ଭାରତର ଦ୍ୱିତୀୟ ଭାସ୍କର। (୧)
ମାତ୍ର ହେଲା ଯେହୁ ତୁମ୍ଭର ପ୍ରସୂତୀ,
ନ ଚିହ୍ନିଲା ସେ ତ ନିଜର ବିଭୂତି।
ଗୁଣଜ୍ଞ ଉତ୍କଳେ ଜଣେ କେହି ନାହିଁ
ଗୁଣୀନ୍ଦ୍ର, ତୁମ୍ଭର ହେବ ଗୁଣଗ୍ରାହୀ।
ସଳିଳ ନ ସିଞ୍ଚି ଖାଲି ଦଣ୍ଡବତ
କରିବାକୁ ଅଛନ୍ତି ଲୋକ ଶତ ଶତ।
ଥାଉଁ କି ଶ୍ରୀରାମଚନ୍ଦ୍ର ନରରାଣ
ବୟସେ କିଶୋର, ଜ୍ଞାନେ ବର୍ଷୀୟାନ,
ଥାଉଁ ଥାଉଁ ବାସୁଦେବ ନୃପବର
ବିଦ୍ୱାନ-ମରାଳ-କୁଳ-ପଦ୍ମାକର,
ନରେଶ ମହେନ୍ଦ୍ର, ସ୍ୱଦେଶଗୌରବ,
ଗୁଣିବୃନ୍ଦ-ଅନିବନ୍ଧନ-ବାନ୍ଧବ,
ତୁମ୍ଭ ପରି ଜ୍ଞାନତରୁ ମଉଳିଲା,
ଏହା ଦେଖିବାକୁ ବିହି ଲେଖିଥିଲା!
ଶୁଷ୍କ ବନ୍ଧ୍ୟ ଯଶ ସଙ୍ଗେ ଅର୍ଦ୍ଧାଶନ
ପ୍ରତିଭାର ପରା ଲଲାଟ-ଲେଖନ।
ଲକ୍ଷ୍ମୀଙ୍କ ସପତ୍ନୀ ହେବାରୁ ବରଦା,
ଦାରିଦ୍ର୍ୟ ତୁମ୍ଭର ସଙ୍ଗୀ ହେଲା ସଦା।
ସଦା, ଆହା, ରୋଗ ଯନ୍ତ୍ରଣାରେ କ୍ଷୀଣ,
ଗଣର ଦାରୁଣ-ଚିନ୍ତାରେ ମଳିନ।
ନିରତେ ତୁମ୍ଭଙ୍କୁ ସେହି ଚିନ୍ତା ଝିଙ୍କି,
ଜ୍ୟୋତିଷ୍କଙ୍କୁ ଆଣେ ଏ କ୍ଷୁଦ୍ର ମହୀକି।
ଆହା ଶୀର୍ଣ୍ଣ ଅଙ୍ଗ ଦିଶେ କେତେ ମ୍ଳାନ,
ପ୍ରାତେ ଦୀପ ଯଥା ଆସନ୍ନ-ନିର୍ବାଣ।
ସବୁବେଳେ ଜଳୁଅଛ ଚିନ୍ତାନଳେ,
ଏହାପରେ ପୁଣି କ୍ରୂର ଭାଗ୍ୟଫଳେ,
ପ୍ରାକୃତ ପାଶବ-ଶକ୍ତି-ଅଧିକାରୀ
ତୁମ୍ଭ ପରେ କରେ ପ୍ରଭୁପଣ ଭାରୀ।
ଅନ୍ୟ କୁଳେ ଜନ୍ମିଥିଲେ ଯେଉଁ ଜନ
ତୁମ୍ଭର ଆପଟ ହେବାକୁ ଭାଜନ
ନୁହନ୍ତା, ଆଜ ସେ ପାପ-ଧନ-ଶୋଥୀ
ଲିଭାଇ ଦେବାକୁ ଲୋଡେ ତୁମ୍ଭ ଜ୍ୟୋତି।
ଯାର ଈର୍ଷା ଯୋଗୁଁ ତୁମ୍ଭର ଏ ଦଶା,
ଦେହେ ରାଜା ହେଲେ ମନେ ସେହି ଚଷା,
ରତନ କାହିଁ ସେ ଖୋଷିବ କିରୀଟେ,
ଅନାଦରେ ତାହା ଦଳେ ପାଦପୀଠେ।
ମୋତି ମୂଲ୍ୟ କାହୁଁ ଜାଣିବ ଶବର,
ମୋତି ଫିଙ୍ଗି କରେ ଗୁଞ୍ଜାରେ ଆଦର।
ଧୀର-ମଣି, ଏଥିଲାଗି ବିଚଳିତ
ହେବାର ତୁମ୍ଭର ନୁହଇ ଉଚିତ।
ମଳିନ କରଇ ସିନା ମୂହୂର୍ତ୍ତକ
ଧ୍ରୁବତାରା ଜ୍ୟୋତି ଉଲ୍‌କାର ଝଟକ।
ଭୋଗ ବିଳାସର କୀଟ ଦୁନିଆର
ଅସାର, ତପସ୍ୱୀ, ତୁମ୍ଭେ ବଜ୍ରସାର।
ଭୋଗବିଳାସୀଙ୍କ ଜୀବନ ସଞ୍ଚିତ
କୋଟି କୋଟି-ମୁଦ୍ରା-ବ୍ୟୟେ ସୁଗଠିତ
ପ୍ରାସାଦ, ସଜ୍ଜିତ ସୁପରିପାଟିରେ,
ମାଟିଦ୍ରବ୍ୟ ମିଶିଯିବ ସେ ମାଟିରେ।
ମାତ୍ର ଉତ୍କଳର ଦର୍ପ, ଚିତ୍-ପ୍ରସୂତି,
ଜ୍ୟୋତିଷ ଦର୍ପଣ, ଦରିଦ୍ରର କୃତି,
"ସିଦ୍ଧାନ୍ତ ଦର୍ପଣ" (୨) ହେବ ନାହିଁ ଲୟ,
ନରଦେହେ ଥିବ ଯାବତ ହୃଦୟ।

□ □ □

(୧) ଭାସ୍କରାଚାର୍ଯ୍ୟ। (୨) ସିଦ୍ଧାନ୍ତଦର୍ପଣ – ଚନ୍ଦ୍ରଶେଖର-ପ୍ରଣୀତ ଗ୍ରନ୍ଥ।

# ଦଶରଥ ବିୟୋଗ

## ଉତ୍ସର୍ଗପତ୍ର

ସର୍ବକଲ୍ୟାଣଭାଜନ ଶ୍ରୀଯୁକ୍ତ ଯୁବରାଜ ଶ୍ରୀ ବୀରବିକ୍ରମଦେବ ମହୋଦୟ
ଶ୍ରୀକରକମଳେଷୁ ସବିନୟ ନିବେଦନମିଦଂ –

ଶ୍ରୀମନ୍ ଯୁବରାଜ !

ଓଡ଼ିଶାରେ ଏବଂ ଉତ୍କଳଭାଷୀ-ସମାଜ ମଧ୍ୟରେ ଅବସ୍ଥିତ ହୋଇ ସୁଦ୍ଧା ଅନେକ ଲୋକଙ୍କୁ ଉତ୍କଳଭାଷା ପ୍ରତି ଆସ୍ଥାଶୂନ୍ୟ ଦେଖାଯାଏ। କିନ୍ତୁ ଓଡ଼ିଶାର ସୀମାର ବହିର୍ଭାଗରେ ଏବଂ ହିନ୍ଦୀଭାଷୀ ସମାଜ ମଧ୍ୟରେ ଅବସ୍ଥିତ ହୋଇ ଏବଂ ବିଭବଶାଳିନୀ ହିନ୍ଦୀଭାଷାର ବିଭବଶାଳିତା ଉତ୍ତମରୂପେ ହୃଦୟଙ୍ଗମ କରି ସୁଦ୍ଧା, ଉଦାର ଜାତୀୟ ଭାବର ପ୍ରେରଣାନିବନ୍ଧନ ଆପଣ ଦରିଦ୍ର ଉତ୍କଳ-ସାହିତ୍ୟର ଉନ୍ନତିବିଧାନରେ ସର୍ବଦା ବଦ୍ଧପରିକର। ଫଳତଃ ଏ ବିଷୟରେ ଆପଣଙ୍କର ଏବଂ ଖଡ଼ିଆଳ ରାଜବଂଶୀୟ ଅନ୍ୟାନ୍ୟ କୌଣସି କୌଣସି ବିଶିଷ୍ଟ ବ୍ୟକ୍ତିଙ୍କର ସଦୁଦାହରଣ ଉତ୍କଳବାସୀଙ୍କ ପ୍ରତି ଗୋଟିଏ ଅନୁସରଣଯୋଗ୍ୟ ଆଦର୍ଶ ହୋଇଅଛି ଏବଂ ସେହି ହେତୁରୁ ଖଡ଼ିଆଳ ଓଡ଼ିଶାରୁ ବହୁଦୂରବର୍ତ୍ତୀ ହୋଇ ସୁଦ୍ଧା ଓଡ଼ିଶା ସହିତ ପ୍ରୀତିବନ୍ଧନରେ ଆବଦ୍ଧ ହୋଇଅଛି। ବିଶେଷତଃ ଆପଣ ସ୍ୱତଃପ୍ରବୃତ୍ତ ହୋଇ ମୋହ ପ୍ରତି ଯେଉଁ ଅକୃତ୍ରିମ ଶ୍ରଦ୍ଧା ପ୍ରଦର୍ଶନ କରିଅଛନ୍ତି, ସେଥିସକାଶରୁ ମୁଁ ଆପଣଙ୍କଠାରେ ଚିରକୃତଜ୍ଞ ହୋଇ ରହିଅଛି। ସେହି କୃତଜ୍ଞତାର ଚିହ୍ନସ୍ୱରୂପ ଏହି କ୍ଷୁଦ୍ର କାବ୍ୟ ଆପଣଙ୍କ ଛାମୁରେ ଉପସ୍ଥାପନ କରିବାକୁ ସାହସୀ ହେଲି। ଗୃହୀତ ହେଲେ କୃତାର୍ଥ ହେବି।

ହୁଗୁଳୀ
୨୦।୨।୧୯୦୧

ଆପଣଙ୍କର ସଦା-ଶୁଭାନୁଧାୟୀ
ଶ୍ରୀ ରାଧାନାଥ ରାୟ

ରାମ ବିବାସନ ଯୋଗୁଁ ବିବଶା ବିଷାଦେ
ରଘୁକୁଳରାଜଧାନୀ ସୌଧ-କିରୀଟିନୀ
ଅଯୋଧ୍ୟାନଗରୀ ଆଜ, ମହାଶୋକୋଚ୍ଛ୍ୱାସେ
ପୁତ୍ର ନରନାରୀ ଯେତେ ଭାସନ୍ତି ଲୋତକେ।
ଶୂନ୍ୟ ରାଜପଥ, ଶୂନ୍ୟ ବିପଣି-ବିଥିକା,
ଶୂନ୍ୟ ଶୃଙ୍ଗାଟକ, ଯାହା ଜନମଳ ସଦା
ହେଉଥିଲା ଜନତାର ହର୍ଷକୋଳାହଳେ।
ଶୂନ୍ୟ ରାଜୋଦ୍ୟାନ, ଯହିଁ ବେଶଭୂଷାଧାରୀ
ମଉଜେ ବିହରୁଥିଲେ ନାଗରିକ ଯୁବା।
ଖେଳୁ ନାହିଁ ସରଯୂର ବକ୍ରନୀଳସ୍ରୋତେ
ଶକ୍ରଧନୁ-ବର୍ଣ୍ଣୋଜ୍ଜ୍ୱଳ ପତାକା ଉଡ଼ାଇ
ବିଳାସୀର ଲୀଳାତରୀ ଗଜଦନ୍ତେ ଗଢ଼ା।
ନୀରବ ସଙ୍ଗୀତଶାଳା, ଉଠୁଥିଲା ଯହୁଁ
ଅବିରତେ କଣ୍ଠଯନ୍ତ୍ର ସଙ୍ଗୀତର ଧ୍ୱନି
ତାଳେ ତାଳେ, ନର୍ତ୍ତନର ମଞ୍ଜୁଳଶିଞ୍ଜିତେ।
ଥାଉ ଆନ କଥା, ଅଶ୍ବ ମୁଞ୍ଚନ୍ତି ନୀରବେ
ରାଜହସ୍ତୀ ହସ୍ତିଶାଳେ, ମନ୍ଦୁରାରେ ବାଜି।
ରାମ ପଛେ ପଛେ ଆହା. ଯାଇଛି ଗୋଡ଼ାଇ
ଅଯୋଧ୍ୟାର ଶିରୀ, ଯାଏ ଗୋଡ଼ାଇ ଯେସନେ
କୌମୁଦୀ କୁମୁଦାନନ୍ଦ ଶଶାଙ୍କ ସଙ୍ଗତେ।
ରତ୍ନହାରା ରାଣୀ ପ୍ରାୟେ ପ୍ରଦୀପମାଳିନୀ
ମହୋଜ୍ଜ୍ୱଳ ନାଟ୍ୟଶାଳା ସମ ମନୋହରା

ମହାମହୋତ୍ସବମୟୀ ସାକେତନଗରୀ
ଦିଶେ ପରିଣତ ଯେହ୍ନେ ଭୀଷଣ ଶ୍ମଶାନେ ।
ଆବୃତ ନଗରୀ ଆଜ ନିବିଡ଼ ତମସେ,
ସୁଗଭୀରା ନିଶୀଥିନୀ ଘୋଷୁଛି ନିରତେ
ସଂସାରର ନଶ୍ୱରତା ଝିଲ୍ଲିକା-ନିନାଦେ ।
ଶାଶ୍ୱତ ନକ୍ଷତ୍ରମାଳା ଜଳି ଦପଦପେ
ମହାଶୂନ୍ୟେ ଦେଖନ୍ତି କି ଭ୍ରୂଭଙ୍ଗେ କୌତୁକେ
ମର୍ତ୍ତ୍ୟର ନଶ୍ୱର ଲୀଳା, ଶୁଭେ କେବେ କେବେ
ନିଦାରୁଣ ନିୟତିର ତୂରୀ-ଧ୍ୱନି ପରି
ନଗରର ଉପକଣ୍ଠେ ବିଲୁଆର ରଡ଼ି,
ଉପବନ-ତରୁକୁଞ୍ଜେ ଉଲୂକର ଧ୍ୱନି,
ଶୋକର ଝଟିକା ବହେ ରାଜାଙ୍କ ନବରେ,
ବାତ ଦୀର୍ଘଶ୍ୱାସ ଯହିଁ, ଲୋତକ ବରଷା,
ରାଜରାଣୀଙ୍କର ଘନ ନୀଳ କେଶରାଜି
କାଦମ୍ବିନୀ, ଚାରୁ ଅଙ୍ଗଯଷ୍ଟି ସୌଦାମିନୀ,
ଅସରା ଏ ବିଭାବରୀ ଆଜ ରାଜପୁରେ
ପରିଶ୍ରାନ୍ତ ପାନ୍ଥେ ତାର ଶେଷ କ୍ରୋଶ ପରି ।
ବନବାସେ ରାମଚନ୍ଦ୍ର ବିଜେ ହେଲା ଦିନୁ
ଷଷ୍ଠ ଦିନ ଆଜ, ବୃଦ୍ଧ ସୁମନ୍ତ୍ର ସାରଥି
ଗଙ୍ଗାପାରେ ଭରଦ୍ୱାଜ ମୁନିଙ୍କ ଆଶ୍ରମେ
ବେନି ଭାଇ ବଧୂଠାରୁ ଘେନିଣ ମେଲାଣି
କ୍ଷୁଣ୍ଣମନେ ଶୂନ୍ୟରଥେ ବାହୁଡ଼ି ନବରେ
ସନ୍ଧ୍ୟାକାଳେ, ଦେଇଗଲେ ଛାମୁରେ ବାରତା ।
ଫାଟିଯାଇଅଛି, ଆହା, ଶୋକତପ୍ତ-ହୃଦ
ବୃଦ୍ଧ ରାଜାଙ୍କର ସେହି ଦାରୁଣ ସମ୍ବାଦେ,
ତପ୍ତ ଲୌହଖଣ୍ଡ ଯଥା ଅୟୋଘନଘାତେ ।
ମୁଞ୍ଚନ୍ତି ନୃପତି ଶ୍ୱାସ ଶୋକ-ଅସମ୍ଭାଳେ
ମୁହୁର୍ମୁହୁ, ସଦ୍ୟଧୃତ କୁଞ୍ଜର ଯେସନେ
ରମ୍ଭାପତ୍ର ପ୍ରାୟେ ଦେହ ଥରେ ଅବିରତେ ।
ଅଶ୍ରୁମୁଖେ ରାଜାଙ୍କର ଉପଚାରେ ରତ
କୈକେୟୀ ବିହୁନେ ଆଉ ଯେତେ ରାଜଯୋଷା,
ମାତ୍ର ସେହି ଉପଚାରେ ବଢ଼ଇ ଅଧିକେ
ବୃଦ୍ଧ ରାଜାଙ୍କର ତାପ, ବଜ୍ରାନଳଶିଖା
ଜଳଇ ଦ୍ୱିଗୁଣେ ଯେହ୍ନେ ବୃଷ୍ଟିଜଳପାତେ ।
ଅନୁତାପ-କଶାଘାତେ ଜରଜର ହୋଇ
ଅଶ୍ରୁମୁଖୀ କୌଶଲ୍ୟାଙ୍କୁ କରଯୋଡ଼ି ରାଏ
କହନ୍ତି ନୁଆଇଁ ଶିର ଗଦଗଦ ଭାଷେ—
"ସତ୍ୟବ୍ରତ କ୍ଷମାଶୀଳ ରାମର ଜନନୀ
ତୁମ୍ଭେ, ଦେବି, ମୂର୍ତ୍ତିମତୀ କରୁଣା ଜଗତେ,
ନୋହିଲେ ଭାଜନ, ଦେବି, ହୁଅନ୍ତ କି କେବେ
ହେବାକୁ ସେ ପୁଣ୍ୟଶ୍ଳୋକ ବୀରର ଜନନୀ,
ପବିତ୍ର ଅବନୀ ଯାର ପାବନ ପରଶେ ।
ପ୍ରତିବାସି-ତରୁଗଣେ ସ୍ୱଗୁଣପ୍ରଦାତା
ଘାତକ ହେଲେହେଁ ତାକୁ ବାସ ବିତରଣେ
ଅକାତର ଯେ ଚନ୍ଦନ ନିଜ ସତ୍ତ୍ୱ ଗୁଣେଁ,
ଭାଜନ ସେ ଚନ୍ଦନର ହେବାକୁ ପ୍ରସୂତି
ଆନ କିଏ ମଳୟାଦ୍ରି ଉପତ୍ୟକା ବିନା ?
ମାନସସରସୀ ବିନା ଆନ ସର କେବେ
ଭାଜନ ହେବାକୁ ସ୍ୱର୍ଣ୍ଣପଦ୍ମର ପ୍ରସୂତି ?
ଯେଡ଼େ ଶତ୍ରୁ ହେଲେ ତାକୁ କ୍ଷମା ଆଚରିବା
ସ୍ୱଭାବ ତୁମ୍ଭର ସଦା, ମୁଁ ତୁମ୍ଭର ପତି,
ଦେବତା ନାରୀର ପତି ଗୁଣୀ କି ନିର୍ଗୁଣ,
ଅଭାଜନ ହେଲେ ପତି, ଅୟି ପତିବ୍ରତେ,
ହୁଏ କି ତା ପ୍ରତି ବାମ କେବେ ପତିବ୍ରତା ?
ଶ୍ରୀରାମର ଶୋକ ଶତମୂନା ଶଙ୍କୁ ପରି
ଫୁଟିଅଛି ଏ ହୃଦୟେ ଶିରା ପ୍ରଶିରାରେ,
ସର୍ବାଙ୍ଗେ ସୌଧର ଭେଦେ ଅଦୃଶ୍ୟେ ଯେସନେ
ଅଶ୍ୱତ୍ଥର ଚେର ଶାଖା ପ୍ରଶାଖା ବିସ୍ତାରି,
ଘାରିହେଉଅଛି ମୁହିଁ ଆତ୍ମକୃତ ପାପେ,
କଣ୍ଠାଗତ ପ୍ରାଣ ମୋର, ଏହି ନିଶା ଶେଷେ
ଲୋକଚକ୍ଷୁ ଦିନମଣି ଆଲୋକି ଧରଣୀ
ନଳିନୀ-ନୟନ-ମୁଦ୍ରା ଫେଡ଼ିବେ ଯେ କାଳେ,
ଏ ନୟନ ଥିବ ଚିର ମୁଦ୍ରାରେ ମୁଦ୍ରିତ ।
ଅନ୍ତିମକାଳରେ ମୋର ମାଗୁଣି ଏତିକି,
ରୋଷ ନ ବହିବ ମୋର ଅପରାଧ ସ୍ମରି,
ଅଲଙ୍ଘ୍ୟ ନିୟତି ବଳ, ଅଲଙ୍ଘ୍ୟ ଜଗତେ
କର୍ମଫଳ, ଚାରା ତହିଁ ନାହିଁଟି କାହାରି ।
ଯେ ଯା ବୁଣେ କାଟେ ତାହା, ବିଧିର ଏ ବିଧି,
ପଳାଶର ରମ୍ୟ କାନ୍ତି ଦେଖି କେହି ଯେବେ
ସନ୍ନିହିତ ମୁକୁଳିତ ଚୂତତରୁ ଛେଦି,
ସିଞ୍ଚଇ ସୁଫଳ ଆଶେ ପଳାଶେ ଯତନେ,
ନୋହିବ ନିରାଶ କି ସେ ଫଳଲାଭ ବେଳେ ?
ରୂପଜ ମୋହରେ ମୁହିଁ ମାତି ଯଉବନେ
ବରିଲି କୈକେୟୀ ମୋର ନିୟତି-ରୂପିଣୀ ।
ରୂପଜ ମୋହରେ ସିନା ପତଙ୍ଗ ଏପରି
ପଡ଼େ ମହୋଲ୍ଲାସେ ଯାଇ ଦୀପଶିଖାନଳେ ।
ରୂପଜ ମୋହରେ ମୁହିଁ ପୁଷ୍ପମାଳା ଭ୍ରମେ
ଗଳାମାଳା କଲି ଏହି କାଳ ଭୁଜଙ୍ଗିନୀ ।
ଯମଚକ୍ର-ରୂପି-ନକ୍ର ଗର୍ଭେ ଗୂଢ଼େ ବହି
ପ୍ରଲୋଭଇ, ଆହା, ଅବଗାହକେ ଯେସନେ
ସ୍ୱଚ୍ଛ ହ୍ରଦ ସୁମଞ୍ଜୁଳ ଫୁଲ୍ଲ କୋକନଦେ ;

ମାୟାବିନୀ ମାୟାପ୍ରେମ-କୁହୁକ ଲଗାଇ
ସାଧିଲା କାମନା ମୋତେ ସଂହାରି ଜୀବନେ।
ଜାଣି ତ ନ ଥିଲି ପୁଷ୍ପରାଶି ତଳେ ଅହି,
ଭସ୍ମରାଶି ତଳେ ଥିଲା ଅନଳ ଗୁପତେ,
ବୁଡ଼ି ତୃଣାଚ୍ଛନ୍ନ ଖାତେ ପଡ଼ଇ ଯେସନେ
ମାତଙ୍ଗ, ପଡ଼ିଲି ମୁହିଁ କୈକେୟୀର ଜାଲେ।
ପୂର୍ବଦତ୍ତ ବର ମୋର ଯତ୍ନେ ପାପୀୟସୀ
ରଖିଥିଲା ଗୁପ୍ତେ ହୃଦ-କନ୍ଦରେ ପୂରାଇ,
ରଖଇ ବସୁଧା ଯଥା ପୂରାଇ ବିବରେ
କାଳସର୍ପ, ରାମ ଅଭିଷେକ କଥା ଶୁଣି
ନିଦାଘେ ବସୁଧା ପ୍ରାୟେ ଈର୍ଷ୍ୟାନଳେ ବାମା
ମନେ ମନେ ଦହିହେଉଥିଲା ଅଭିମାନେ।
ନିଦାଘାନ୍ତେ ବସୁନ୍ଧରା ନବ-ବାରି-ସେଚେ
ଉଗାରେ ଭୁଜଙ୍ଗ ଯଥା, କୈକେୟୀ ତେସନେ
ଆଶ୍ୱାସବଚନେ ମୋର, ହୃଦୟୁଁ ଉଗାରି
ସେହି ବର, ଭିଆଇଲା ଏ ଘୋର ଦୁର୍ନୀତି।
ଏ ଦାରୁଣ କାଳେ, ବେନି ଲୋକ ସନ୍ଧିସ୍ଥଳେ
ଉଭା ହୋଇ ଦେଖଇ ମୁଁ ପଛକୁ ଅନାଇ
ଚିର ଜୀବନର ଛବି ସ୍ମୃତିର ଫଳକେ,
ଚିଳତଣ୍ଡୁଳିତ ପାପ ପୁଣ୍ୟର ବରଣେ,
ସ୍ୱପନେ ଯେସନେ, ଦେବି, ଦେଖନ୍ତି ପ୍ରାଣୀଏ
ସୁଦୀର୍ଘ କାଳର କଥା ପଲକ ମାତରେ।
କୁମାର ବୟସେ, ଦେବି, ରୋପିଥିଲି ମୁହିଁ
ଯେ ମହା-ଦୁଷ୍କୃତ-ବୀଜ, ଫଳିଲା ତା ଏବେ,
ମୋ କର୍ମ-ବୀଜରୁ ଜାତ ବିଷବଲ୍ଲୀରୂପା
କୈକେୟୀ ସେ ନିମିତ୍ତର ଅପଯଶଭାଗୀ।
କୁମାର ବୟସେ ମୁହିଁ ଶବ୍ଦବେଧୀ ବୋଲି
ହେଲି ଖ୍ୟାତ, ମତ୍ତ ହୋଇ ସେ ପ୍ରାକୃତ ଯଶେ
ଧନୁଶର ହସ୍ତେ ମୁହିଁ ଭ୍ରମୁଥାଇଁ ବନେ,
ମୃଗୟା ବ୍ୟସନେ ହୋଇ ଅନୁକ୍ଷଣେ ରତ,
ରାଜାଏ ରାଜସ ଧର୍ମେ ମଜ୍ଜି ଏହିରୂପେ
ଲଭନ୍ତି ଅନ୍ତିମେ ସିନା ଦାରୁଣ ଦୁର୍ଗତି।
ଏକଦା ବସନ୍ତ ଅନ୍ତେ ନିଦାଘ ପ୍ରବେଶେ
ପ୍ରଚଣ୍ଡ ମାର୍ତ୍ତଣ୍ଡ ତାପେ ତାପିଗଲା ମହୀ,
ଝାଉଁଳି ମଉଳି ଯାଇ ତରୁ ଲତା ଶିରୀ
ବନଭୂମି ଝଙ୍କାରିଲା ଝାଇଁ ଝାଇଁ ରବେ,
ଗ୍ରୀଷ୍ମର ପ୍ରଭାବ ଭବେ ଘୋଷିଲେ ଝିଙ୍କାରି।
ଧୂମାୟିତ ହୋଇ ଦିଗ ଦାବାନଳ ଧୂମେ
ଦିଶିଲା ଆଚ୍ଛନ୍ନ ଯେହ୍ନେ କୁହେଳିକାସ୍ତରେ।
ଆସିଲା ନିରାଟ ଖରା ଯାହୁଁ ଯାହୁଁ ମାଡ଼ି
ସିନ୍ଦୂରମୁଣ୍ଡାର ଖର ଏକତାନ ନାଦେ
ନଦୀକୂଳ ତୋଟା ହେଲା ମୁଖର ନିରତେ।
ତଟିନୀ-ସୈକତେ, ପାଟେ ନାଚିଲା ଭୀଷଣେ
ମାୟାବିନୀ ମରୀଚିକା ତୃଷା-ସହଚରୀ,
ବହିଲା ପ୍ରଖରେ ତପ୍ତବାଲୁକାଝଟିକା
ମଧ୍ୟାହ୍ନେ ଦିଗନ୍ତ ବ୍ୟାପୀ ସରଯୂପୁଳିନେ,
ବିହଙ୍ଗେ ଧକେଇ ହେଲେ ଶୀର୍ଣ୍ଣ-ପର୍ଣ୍ଣ-ତରୁ-
କୋଟରେ, ଛାୟାରେ ଶୋଷ ଲାଳାର୍ଦ୍ରରସନା
ପ୍ରସାରି ବ୍ୟାକୁଳେ ଶ୍ୱାନେ ଶ୍ୱାସିଲେ ସଘନେ,
ରାବିଲେ ଚାତକେ ଊର୍ଦ୍ଧ୍ୱମୁଖେ ତରୁଚୂଳେ,
ବନପଶୁ ତପ୍ତ ହୋଇ ବନ-ବହ୍ନି-ତାପେ,
ଚିରରୂଢ଼ ବୈରିପଣ ତେଜି ପରସ୍ପରେ
ଭଜିଲେ ବ୍ୟାକୁଳେ ଯାଇ ସରିତ ସରସୀ,
ଜୀବନର ଆଶ୍ୱା ନେଇ ବର୍ତ୍ତିଲେ ଜୀବନେ
ଜୀବକୁଳ, ନିଦାଘର ନିଦାରୁଣ ଶୋଷେ।
ତାମସୀ ନିଶିରେ ଦିନେ ପାଟଳ-ସୁରଭି
ସମୀରଣ ସେବି ମୁହିଁ ଭ୍ରମୁଥିଲି ଏକା
ସରଯୂର ତୀର ବନେ ପାରିଧି-ଉଦ୍ଦେଶ୍ୟେ
ଜଳାର୍ଥୀ ଗୟଳ, ମୃଗ, ବରାହାଦି କରି
ବନପଶୁ କେବେହେଲେ ଓହ୍ଲାଇବେ ଜଳେ,
ଏହି ପାଞ୍ଚ ମନେ ବହି ରହିଲି ମୁଁ ଲୁଚି
ଘଞ୍ଚ-ତରୁ-ଲତା-ପୂର୍ଣ୍ଣ ବନ ଅନ୍ତରାଳେ।
ନୀରେ କୁମ୍ଭ-ପୂରଣର ଧ୍ୱନି ଦୂରୁ ଶୁଣି,
ବାରଣ-ବୃଂହିତି ମଣି, ସେ ଘୋର ଅନ୍ଧାରେ
କାଳସର୍ପାକୃତି ଶର ଛାଡ଼ିଲି ସେ ମୁଖେ।
ଛନକା ପଶିଲା ମନେ ଶୁଣି ସେ ବିଜନେ
ମର୍ମାହତ ମନୁଷ୍ୟର ଏ ବିକଳ ବାଣୀ—
"ଓହୋ ମୁଁ ତାପସ ବାଳ, ଜଳ ନେବାପାଇଁ
ଆସିଥିଲି ସରଯୂକୁ ଆଶ୍ରମୁଁ ନିଶୀଥେ,
କିଏ ସେ ଚଣ୍ଡାଳ ମୋତେ ବିନ୍ଧିଲା ଏରୂପେ ?
କି ହାନି କାହାର କେବେ କରିଥିଲି ମୁହିଁ ?
ଏ କ୍ଷୁଦ୍ର ପରାଣ ମୋର ନେଇ କେଉଁ ଶ୍ରେୟଃ
ଅରଜିଲା ସେ ଅଜ୍ଞାନ ? ଆହା, କେଉଁ ଦୋଷେ
ଏ ଦାରୁଣ ଦଣ୍ଡ ମୋତେ ବିହିଲା ବିଧାତା ?
ଥାଉ କର୍ମେ, ମନେହେଲେ ଆଚରି ତ ନାହିଁ
ହିଂସା ମୁଁ କାହାରିଠାରେ କେବେ ଏ ଜୀବନେ।
ଯତି ମୁହିଁ ପରପୀଡ଼ା - ପରିହାରବ୍ରତୀ ,
ମୁଣ୍ଡେ ଜଟା ବହି, ଦେହ ଆବରି ବଲ୍କଳେ,
ଫଳ ମୂଳ ଖାଇ ମୁହିଁ ବଢ଼ିଥିଲି ବନେ।
କେଉଁ ନ୍ୟାୟ ଏହା, ମୁହିଁ ନିରୀହ ପରାଣୀ,
କାହା ଲୋଡ଼ା ଥିଲା ହାହା, ମୋର ଏ ପରାଣେ !
ଗଲା ଏ ପରାଣ ତହିଁ ନାହିଁ ମୋ ଶୋଚନା,

ମୋ ବିହୁନେ ବୃଦ୍ଧ ପିତା ମାତାଙ୍କର ଦଶା
ଭାବି ଥୟ ଧରୁନାହିଁ ହୃଦ ଅସମ୍ଭାଳେ।
ଆବାଲ୍ୟ ବେନିଙ୍କି ଯତ୍ନେ ଆସିଲି ମୁଁ ପାଳି,
ମୋ ବିନା ଜୀବନ-ବୃତ୍ତି ଚଳିବ କେସନେ ?
ହା ଦେବ ! ହେଲେଟି ହତ ଏକା ଏ ଶରକେ
ବନବାସେ ବିନାଦୋଷେ ତିନି ମହାପ୍ରାଣୀ।''
ନର କେଉଁ ଛାର, ଦେବି, ପଡ଼ନ୍ତା ତରଳି
ପାଷାଣ ହେଲେହେଁ ଖରେ ସେ କରୁଣ ଗିରେ।
ପଶନ୍ତେ ବୋବାଳି ମୋର ଶ୍ରବଣବିବରେ
ହଜିଗଲା ବୁଦ୍ଧି ଜ୍ଞାନ, ପଡ଼ିଲା ଭୂତଳେ
ଅନାୟରେ ବେନି ହାତୁଁ ଧନୁଃଶର ଖସି,
ଅନାୟରେ ସେ ଦାରୁଣ ମର୍ମଭେଦି-ତାପେ
ଜଡ଼ ପ୍ରାୟେ ବସି ମୁହିଁ ପଡ଼ିଲି ଭୂମିରେ,
ବୁଲିଲା ଚୌଦିଗେ ଧରା, କି କଲି, କି ହେଲା,
କହି, ମୁଣ୍ଡେ କର ମାରି, ଖଣ୍ଡେ ଦୂର ଯାଇ
ଦେଖିଲି ବେତସ-କୁଞ୍ଜେ ନଦୀସ୍ରୋତ ଦାଢ଼େ
କୁମ୍ଭକୁ ଆଉଜି ଭୂମେ ଶୟାନ ଉତ୍ତାନେ
ତପସ୍ୱି-କୁମର ରକ୍ତଲିପ୍ତ କଳେବରେ,
କଙ୍କପତ୍ର-ଯୁକ୍ତ ଶର ଭେଦିଛି ତିର୍ଯ୍ୟକେ
ବକ୍ଷସ୍ଥଳେ, ତୀକ୍ଷ୍ଣଫଳ ମର୍ମେ ପୋତାହୋଇ।
କ୍ଷତ୍ରିୟ ମୁଁ, ଭୀତି ଠାବ ନ ଲଭେ ମୋ ମନେ,
କେତେ କେତେ ଯୁଦ୍ଧେ କେତେ ନାରାଚ୍‌-ଝଟିକା
ଅଟଳ ଅଚଳ ପ୍ରାୟେ ସହିଛି ନିର୍ଭୀକେ
ମତ୍ତ ଦନ୍ତାବଳ ପ୍ରାୟେ ସେନା-ଅଗ୍ରଯାୟୀ,
ମାତ୍ର ସେ ଆହତ ମୁନି-ସୁତର ଚାହାଣି
ଆଗେ ଉଭା ହୋଇ ଚଳ ପିପ୍ପଳର ଦଳ
ପରାୟେ ସର୍ବାଙ୍ଗେ ମୁହିଁ ଥରିଲି ଅବଶେ,
ସର୍ବାଙ୍ଗୁ ବହିଲା ଝାଳ ଯଥା ସନ୍ନିପାତେ।
ସମ୍ମୁଖେ ସେ ଦେଖି ମୋତେ ବିକଳ ବଚନେ
କହିଲେ, ''ଭୋ ନରନାଥ ! ବନବାସୀ ମୁହିଁ,
ପିତାମାତାପାଇଁ ଜଳ ନେବାଲାଗି ଆସି
କି କଲି ତୁମ୍ଭର ? ମୋତେ ବଧିଲ କିପାଇଁ ?
ଯେ ଶରେ ବଧିଲ ମୋତେ, ସେହି ଶରେ ସିନା
ହତ ହେଲେ ମୋର ବୃଦ୍ଧ ଅନ୍ଧ ପିତା ମାତା।
ନିଦାଘର ତୀବ୍ର ତାପେ ତପ୍ତ ଅହର୍ନିଶ,
ଦୁର୍ବଳ, ତୃଷାରେ ମହାବ୍ୟାକୁଳ ସେ ହୋଇ
ରହିଥିବେ ମୋତେ ଚାହିଁ ଚାତକ ପରାୟେ
ମାନବସଂଚାରହୀନ ଗହନ କାନନେ,
ସେ ତ ନ ଜାଣିଲେ ମୋର ଏ ଦାରୁଣ ଦଶା,
କି କରିବେ ଜାଣି ଅବା, ସ୍ଥିତ ପଙ୍ଗୁ ପ୍ରାୟେ
ଯହିଁ ତହିଁ, ଶକ୍ତି କିମ୍ବା ଲୋଚନ ବିହୁନେ,
ଦାବାନଳେ ତରୁ ପ୍ରାୟେ ତାଙ୍କ ଶାପାନଳେ
ଦଗ୍ଧ ନ ହେଉଣୁ, ରାଏ, ଏହି ମାର୍ଗେ ଯାଇ
ନିଜେ ନିଜ ଦୋଷ ଫେଡ଼ି କହ ତାଙ୍କ ଆଗେ।
ବିଶଲ୍ୟ, ରାଜନ, ମୋତେ କର ଏହିକ୍ଷଣି,
ଖର ସ୍ରୋତୋରୟ ଯଥା କୋରେ ଅବିରତେ
ତୁଙ୍ଗ ନଦୀତଟମୂଳୁଁ ବାଲୁକା, ତେସନେ
ଏ ଦାରୁଣ ଶଲ୍ୟ ମୋର ମର୍ମେ ଲାଖି ହୋଇ
କଦର୍ଥ୍ୟ କରଇ ମୋତେ ଅସହ୍ୟ ଯନ୍ତ୍ରଣେ,
ବିଶଲ୍ୟ କରିଣ ମୋତେ ମୁକ୍ତ କର ତହୁଁ ।
ଉପାଡ଼ିଲେ ଶଲ୍ୟ ଏଥି ସଙ୍ଗେ ଯିବ ଉଡ଼ି
ପ୍ରାଣ-ବିହଙ୍ଗମ ମୋର ଏ ଦେହ-ପଞ୍ଜରୁ,
ମାତ୍ର ମୃତ୍ୟୁ ଶ୍ରେୟଃ ମୋତେ ଏ ଯନ୍ତ୍ରଣାଠାରୁ।
ପିତୃ ମାତୃ ପାଦେ ମୋର ପ୍ରଣତି ଜଣାଇ
କହିବ, ଛାଡ଼ିଲି ଜୀବ ତାଙ୍କୁ ଧାୟି ମନେ,
ତାଙ୍କ ସେବା ବିନୁ ଆନ ସୁଖେ ମୋର ସ୍ପୃହା
ନ ଥିଲା ଜୀବନେ କେବେ, ହାହା କ୍ରୂର ବିଧି
ଦରିଦ୍ରର ସେହି ସୁଖେ ହେଲେଟି ଭଗାରି।
କାତର ନ ହୁଅ, ରାଏ, କଲ ଯା ଅଜ୍ଞାନେ
କ୍ଷମିଲି ମୁଁ, ବୋଲ ମୋର କର ବେଗ କରି,
ଯନ୍ତ୍ରଣାରୁ ବେଗେ ମୋତେ ଦିଅ ହେ ମୁକତି।''
ତାଙ୍କ ଆଜ୍ଞାମତେ ତାଙ୍କ ହୃଦରୁ ଓଟାରି
ନେଲି ମୁହିଁ ଶର ମହାଭୀତି ବହି ମନେ,
ଭୀତିରେ ବିବର୍ଣ୍ଣ ହେଲା ତାଙ୍କ ମୁଖଚ୍ଛବି,
ଥରି ଥରି ଅସାଷ୍ଟମେ ଲୋଟି ସେ ମହୀରେ,
ମୃତ୍ୟୁ କଳବଳେ ଶ୍ୱାସ ମୁହୁର୍ମୁହୁ ଛାଡ଼ି,
ତେଜିଲେ ନିଷ୍ପାପ ପ୍ରାଣ ମୋହରି ଅଗ୍ରତେ।
ଦୁରାଚାର ମୁହିଁ, ମୋର ଏ ଦୁଷ୍କୃତି-ଫଳେ
ସାଧୁର ଅମୂଲ୍ୟ ପ୍ରାଣ ଗଲା ଅକାରଣେ।
କ୍ରୂର କୀଟ ହୋଇ, ଆହା, କାଟିଲି ମୁଁ ସିନା
ଏ ନବ କୋରକ, ଦେବି, ପୁଣ୍ୟର ଉଦ୍ୟାନେ,
ନ ଫୁଟୁଣୁଁ ଜଳିଗଲା ଅକାଳ ଶିଶିରେ
ଏ ମଞ୍ଜୁ ପଙ୍କଜ-କଳି ପୁଣ୍ୟର ସରସେ,
ଏ ଦଶା ତାଙ୍କର ଦେଖି ବିଷାଦେ ନିର୍ବେଦେ
ଘାରି ହୋଇ ନଦୀଜଳେ କୁମ୍ଭକୁ ପୂରାଇ
କୁମ୍ଭ ହସ୍ତେ ଗଲି ମୁହିଁ ତପସ୍ୱି-ଆଶ୍ରମେ,
ତୃଷାରେ ବିକଳ ହୋଇ ଜଳ-ପାନ-ଆଶେ
ଜାଗିବସିଥିଲେ ଯହିଁ ତାପସ ତାପସୀ
ଅନ୍ଧ, ଜରାଜୀର୍ଣ୍ଣ, ପକ୍ଷୀ ଛିନ୍ନ-ପକ୍ଷ ଯଥା।
ପୁତ୍ରର ବିଳମ୍ବ ଦେଖି ଚିନ୍ତାକୁଳ ହୋଇ
ନାନା ତର୍କ ମନେ ପାଞ୍ଚି ହେଉଥିଲେ ବେନି
ବୋଲାବୋଲି ପରସ୍ପରେ ଯେଝା ମନକଥା,

ତ୍ରାସେ ଧଡ଼ଧଡ଼ ମୋର କମ୍ପୁଥିଲା ହିଆ
ଘୋର ଅପରାଧୀ ଯଥା ଧର୍ମାସନ ଆଗେ ।
କହିଲେ ତାପସ ମୋର ପାଦଶବ୍ଦ ଶୁଣି,
''କିଆଁ ଏଡ଼େ ମଠ, ବାବୁ, ଆଣ ଜଳ ବେଗେ,
ଖେଳୁଥିଲୁ ପରା, ବାବୁ, ସରଯୂର ସ୍ରୋତେ
ଏତେ କାଳ, ତୁଟି ନାହିଁ ତୋର ବାଳମତି,
ଧକେଇ ହେଉଣଥିଲା ତୋହର ଜନନୀ
ଉତ୍କଣ୍ଠାରେ, ଧନ, ତୋର ଏଡ଼େ ମଠ ଦେଖି
ଯୁଗ ମଣି କ୍ଷଣ, କାନ ଡେରି ସେହି ଦିଗେ
ବସିଥିଲା ଏକଧ୍ୟାନେ ତୋ ପଥ ଅନାଇ,
ପଶିଲା ତା ପିଣ୍ଡେ ପ୍ରାଣ ଆସନ୍ତେ ତୁ ଗୃହେ ।
ତୁନି ହେଲୁ କିଆଁ ? ତୁ କି ରୁଷିଲୁ ରେ ବଳା
ରଙ୍କର ତୁ ନିଧିବାବୁ, ବୃଦ୍ଧର ଲଉଡ଼ି,
ଅଚକ୍ଷୁର ଚକ୍ଷୁ ତୁହି, ଅଗତିର ଗତି,
ରହିଛନ୍ତି ଆଜିଯାଏ ତୋହଯୋଗୁଁ ସିନା
ଏ ଅନ୍ଧ ଅନ୍ଧୁଣୀ, ବାବୁ, ଜୀବନେ ବଗତି ।''
ମୁନିଙ୍କର ଏ ବିକଳ ଏ ବତ୍ସଳ ବାଣୀ
ଶୁଣି ହଜିଗଲା ମୋର ହୃଦୟର ଧୃତି,
ମଉନେ ବସିଲି ମୁହିଁ ଅଧୋମୁଖ ହୋଇ
କିଛି କ୍ଷଣ, ଧୈର୍ଯ୍ୟ ଧରି, ବକ୍ଷେ ବାନ୍ଧି ହିଆ,
ଉତ୍ତର ବିହିଲି ତାଙ୍କୁ ଆରତେ ଏସନେ,
''ନୁହେ ମୁଁ ତୁମ୍ଭର ପୁତ୍ର, ଆହେ ତପୋନିଧି,
କ୍ଷତ୍ରିୟ ମୁଁ, ଦଶରଥ ଅଯୋଧ୍ୟାର ନାହା,
ଅଜ୍ଞାନେ ବିହିଲି ମୁହିଁ ଦାରୁଣ ଦୁଷ୍କୃତି,
ଆରତେ ଶରଣ ତେଣୁ ପଶିଲି ପୟରେ,
ତୁମ୍ଭେ ସେ ସକ୍ଷମ ମୋର ଆରତି ଫେଡ଼ଣେ,
ଛାମୁରୁ ଯେ ଆଜ୍ଞା ହେବ ଶିରୋମାଳାରୂପେ
ଜୀବ ଥିବାଯାଏ ମୁହିଁ ବହିବି ତା ଶିରେ ।''
ଏହା କହି ଘଟିଥିଲା ଯେତେ ଯେତେ କଥା
ସରଯୂର ତୀରେ, ମୁହିଁ ନିବେଦିଲି ସବୁ
ବାଷ୍ପଗଦଗଦ ଭାଷେ ମୁନିଙ୍କ ସକାଶେ ।
ଦୀନବାଣୀ ଶୁଣି ମୋର କ୍ଷମା-ବାରାନିଧି
ତପୋଧନ ନ ବହିଲେ କୋପ ଲବେ ମୋତେ,
ମାତ୍ର ଉଛୁଳାଇଦେଲା ନିର୍ଘାତ ବାରତା
ଶୋକସିନ୍ଧୁ, ତାଙ୍କ ହୃଦେ, ଧୃତିବନ୍ଧ ତୁଟି
ନୟନୁ ବହିଲା ବେଗେ ଲୋତକର ଧାରା,
ନାସିକା ପୁଡ଼ାରୁ ତପ୍ତ ଶ୍ୱାସ ମୁହୁର୍ମୁହୁ,
ବାଷ୍ପରୁଦ୍ଧ ସ୍ୱରେ ମୁନି କହିଲେ, 'ହେ ରାଏ,
ଏ ମହାଦୁଷ୍କୃତି ବିହି, ମୋର ପାଶେ ଆସି
ଏ କଥା ନ ଥିଲେ କହି ନିଜେ ନିଜମୁଖେ,
ମୂର୍ଦ୍ଧାପାତ ହୋଇଯାଇଥାଆନ୍ତା ଏଯାଏ,
ବାନପ୍ରସ୍ଥେ ଜ୍ଞାନକୃତ ବଧ ଆଚରିଲେ
ଇନ୍ଦ୍ର ହେଲେ ଇନ୍ଦ୍ରପଦୁଁ ପଡ଼ନ୍ତିଟି ଖସି,
ଅଜ୍ଞାନେ ବିହିଲ, ତେଣୁ ବର୍ତ୍ତିଲ ଜୀବନେ,
ଜ୍ଞାନକୃତ ହେଲେ ଏହା, ଥାଉ ତୁମ୍ଭ କଥା,
ନିର୍ମୂଳ ହୁଅନ୍ତା ରଘୁକୁଳ ଏ କଳୁଷେ ।
ସଙ୍ଗତେ ଆମ୍ଭଙ୍କୁ ନେଇ ଚାଲ, ହେ ନୃପତି,
ଅନ୍ତିମ ଶୟନେ ଯହିଁ ଶୋଇଛି ମୋ ସୁତ,
ନିଜେ ଯାଇ ଦେଖିବି ମୁଁ ଶୋଇଛି କେସନେ
ବାଳକ ଅକାଳେ କାଳକବଳିତ ହୋଇ ।'
ତାଙ୍କ ଆଜ୍ଞାମତେ ଅନ୍ଧ ଦମ୍ପତିଙ୍କୁ ନେଇ,
ଗଲି ପୁଣି ନଦୀତୀରେ, ପ୍ରବେଶି ସେ ସ୍ଥାନେ
ହସ୍ତ ଧରି ବେନିଙ୍କର ଦେଲି ମୁଁ ଛୁଆଇଁ
ମୃତ ବାଳକର ଶବ ଆପ୍ଲୁତ ରୁଧିରେ,
ରୁଧିରାର୍ଦ୍ର କୃଷ୍ଣାଜିନ, ଯଜ୍ଞ ଉପବୀତ
ସ୍ରସ୍ତ ହୋଇ ଅସ୍ତେବ୍ୟସ୍ତେ ପଡ଼ିଛି ପାରୁଶେ ।
ଶୋକ ଅସମ୍ଭାଳେ ଋଷି ଶବପରେ ପଡ଼ି
କାନ୍ଦିଲେ ଏସନ ମୃତ ସୁତକୁ ସମ୍ବୋଧି,
'ବାବୁରେ, ଭୂତଳେ କିପାଁ ଶୋଇଛୁ ଏପରି ?
ଏ କି ରୁଷା ତୋର ? ତୋର ଦୁଃଖିନୀ ଜନନୀ
ଡାକଇ ଆରତେ ତୋତେ, ଉଠୁନାହୁଁ କିଆଁ ?
କିଆଁ ତୋଷୁ ନାହୁଁ କର୍ଣ୍ଣ ତୋର ସୁଧାଗିରେ ?
ମୋପାଇଁ ରାନ୍ଧିବୁ ଅନ୍ନ ଏଥିଲାଗି ପରା
ନୀବାର ପାଚରୁ ଆଣି ଥୋଇଲୁ ପ୍ରଦୋଷେ
ଉଦୂଖଳେ, ଏହି ପ୍ରାତେ କୁଟିବୁ ତା ବୋଲି ?
ପିତୃବତ୍ସଳ ତୁ, ବାବୁ, ସ୍ୱପ୍ନେ ହେଲେ କେବେ
ଲଙ୍ଘି ନାହୁଁ ପିତୃବାଣୀ, ଆଜ କିଆଁ ହେଲା
ପୁତ୍ର, ତୋର ସେହି ପିତୃ-ଆଦେଶ-ପାଳନେ ?
କେଉଁ ଟାଣପଣେ, ବାବୁ, ଛାଡ଼ିଗଲୁ ତୁହି
ଏ ବେନିଙ୍କି, ଥିଲୁ ଯାର ଜୀବନସଙ୍ଖାଳି ?
ଯାମିନୀ ଅନ୍ତିମ ଯାମେ ଗାଇ ସୁମଧୁରେ
ବେଦସ୍ତବ କିଏ ଦେବ ଆମ୍ଭଙ୍କୁ ଜଗାଇ
ନିତି ନିତି ପରଂବ୍ରହ୍ମ ଉପାସନାପାଇଁ ?
ହୋମବିଧି ବେଳେ କିଏ ସରଯୂରୁ ଆଣି
ନିତି ଜଳ ଦେବ ମୋତେ ଗାଧୋଇ ଯତନେ ?
ସ୍ଥବିର, ଅପଟୁ, ଅନ୍ଧ, ବାତୁଳରେ, ମୁହିଁ,
କିଏ କନ୍ଦମୂଳ ଫଳ ଆହରି ଆୟାସେ
ଭୁଞ୍ଜାଇବ ନିତି ମୋତେ ଅତିଥି ପରାୟେ ?
ଅକ୍ଷମ ମୁଁ ନିଜେ, ବାବୁ, ପାଳିବି କେସନେ
ଏକାଳେ ଏ ବୃଦ୍ଧ, ଅନ୍ଧ, ରୁଗ୍ଣ ତାପସୀକି ?
ଉତ୍ସ ତୁହି ଥିଲୁ, ବତ୍ସ, ଜୀବନ-ମରୁରେ
ବେନିଙ୍କର, କେଉଁ ଲୋଡ଼ା ଆଉ ଏ ଜୀବନେ ?

ଆହା ହା, ନିର୍ମମ କାଳ ଉପାଡ଼ିଲା କେହ୍ନେ
ଏ ନବ ଅଙ୍କୁର ପୁଣ୍ୟ-ଉଦ୍ୟାନୁ ଅକାଳେ।
ନିଷ୍ପାପ ତୁ, ସୁତ, ହତ ହେଲୁ ପରପାପେ,
ପୁଣ୍ୟେ ତୋର ମତି, ପିତୃ-ମାତୃ-ସେବା-ବ୍ରତେ
ଏକବ୍ରତୀ ଥିଲୁ ତୁହି ତୋ ବାଳ-ଜୀବନେ,
ଲଭ ସେହି ଦିବ୍ୟ ଲୋକ, ନିବସନ୍ତି ଯହିଁ
ଜୀବନ ଦିଅନ୍ତି ଯେହୁ ସମ୍ମୁଖ ସଂଗ୍ରାମେ
ଅବହେଳେ, ସ୍ୱଦେଶ ସ୍ୱଧର୍ମ ରକ୍ଷାଲାଗି,
ଲଭ ସେହି ଜ୍ୟୋତିର୍ଲୋକ, ବସନ୍ତି ଯେ ଲୋକେ
ରାଜା ହରିଶ୍ଚନ୍ଦ୍ର, ଶୈବ୍ୟା, ନହୁଷ, ମାନ୍ଧାତା,
ଧର୍ମବୀର ବୋଲି ଯେହୁ ବିଶ୍ରୁତ ତ୍ରିଲୋକେ,
ଜିତେନ୍ଦ୍ରିୟ ଶାନ୍ତ ଏକ-ପତ୍ନୀ-ବ୍ରତ-ଧାରୀ
ଲଭନ୍ତି ଯେ ଗତି, ବାବୁ, ଲଭ ତୁ ସେ ଗତି।'
ଏହିରୂପେ ନାନାମତେ ବାହୁନି ବାହୁନି
ବିଳପି ସେ ତପୋଧନ ଆଦେଶିଲେ ମୋତେ
ସୁତର ସଂସ୍କାର ଲାଗି ରଚିବାକୁ ଚିତା।
ଆଦେଶେ ତାଙ୍କର ମୁହିଁ ସଂଘାଟ ସଜାଡ଼ି
ଥୋଇଲି ସେ ଶବ ତହିଁ ବିହିତ ବିଧାନେ,
ଅଲାତ ସ୍ୱହସ୍ତେ ଘେନି ତାପସ ତାପସୀ,
ଉଚ୍ଚାରିଣ ବେଦମନ୍ତ୍ର ଉଚ୍ଚେ ସୁଗମ୍ଭୀରେ,
ବାଷ୍ପାକୁଳ ନେତ୍ରେ ବେନି ଜାଳିଲେ ସେ ଚିତା।
ଉଠନ୍ତେ ଚିତାଗ୍ନି-ଶିଖା ଦପ ଦପ ହୋଇ
ଆକାଶେ, ସେ ତପୋଧନ କହିଲେ ଏସନ
ମୋତେ ଚାହିଁ, 'ହେ ରାଜନ, ଦେଲ ଯେଣୁ ମୋତେ
ଏ ମହାଦାରୁଣ ଶୋକ ଏ ବୃଦ୍ଧ ବୟସେ,
ନିଦାରୁଣ ପୁତ୍ରଶୋକେ ମର୍ମେ ଘାରିହୋଇ
ତେଜିବ ଜୀବନ ତୁମ୍ଭେ ଦିନେ ଏହିପରି।'
ଏହା କହି ଶ୍ୱାସ ଦେଇ ସହସା ଅନଳେ
ଜାୟାପତି ବିସର୍ଜିଲେ ପ୍ରାଣ ମୋର ଆଗେ।
ମୋ ଦୁଷ୍କୃତି ଯୋଗୁଁ ଆହା ତିନି ମହାପ୍ରାଣୀ
ପରମସୁକୃତିମନ୍ତ ଗଲେ ପ୍ରେତପୁରେ,
ମୁଁ ପୁଣି ମୁକୁଟ-ଧାରୀ ସନ୍ଥ-ରକ୍ଷା-ବ୍ରତୀ।
ଆନ ସାକ୍ଷୀ ନଥିଲାରୁ, ଏ ଦୁଷ୍କୃତ ମୁହିଁ
ଘୋଡ଼ାଇ ଯତନେ ରଖିଥିଲି ଅନ୍ତର୍ଗତେ;
ଦୁଷ୍କୃତି କୁହୁଳୁଥାଏ ଅଲକ୍ଷିତେ, ଦେବି,
ସଂସାରର ଦୈନନ୍ଦିନ ଲୀଳାଖେଳା ତଳେ,
କାଳେ ସେ ବାହାରେ ଫୁଟି, ବାହାରେ ଯେସନେ
ପ୍ରଚଣ୍ଡ ବିକ୍ରମେ ନୀଳ ଅମ୍ବୁରାଶି ଭେଦି
ବିଶ୍ୱଗ୍ରାସୀ ବାଡ଼ବର ନଭଶ୍ଚୁମ୍ବି-ଶିଖା,
ଅପଥ୍ୟସେବୀର ଦେହେ କ୍ରମେ ଠୁଳ ହୋଇ
ଅଲକ୍ଷିତେ ଘୋର ବ୍ୟାଧି ପଡ଼ଇ ବାହାରି
ପଦାକୁ ସହସା ଯଥା, ପୂର୍ବ କର୍ମଫଳେ
ଘାରିହେଉଅଛି ମୁହିଁ ଆଜ ଏ ବିପାକେ,
ପିଣ୍ଡ ଛାଡ଼ି ପାପ ପ୍ରାଣ ବାହାରିଯିବାକୁ
ଲୋଡ଼ିଲାଣି ବାଟ, ବେଗେ ଆସୁଅଛି ଘୋଟି
ମହାଘୋର ମୋହ, ଆଉ ଦିଶୁ ନାହିଁ କିଛି।
ଛୁଇଁ ଦେଖ, ଦେବି, ମୋତେ; କୃତାନ୍ତର ଦୂତେ
ବେଢ଼ିଲେଣି ଆସି ଏବେ ମୋର ଚଉପାଶେ,
ଅଗୁଣୀ ହେଲେହେଁ ସୁତ, ତେଜଇ କି କେବେ
ତାକୁ ତା'ର ଜନ୍ମଦାତା ? ମୁଁ ପାମର ପୁଣି
ଶିଷ୍ଟ, ଶାନ୍ତ, ଅଭିରାମ, ଲୋକକାନ୍ତ ଗୁଣେ,
ଜଗତନୟନାନନ୍ଦ କୁଳଚନ୍ଦ୍ର ରାମେ
ପେଷିଲି ଅରଣ୍ୟ-ବାସେ ରାକ୍ଷସୀର ବୋଲେ!
ନ୍ୟାୟ ଦୟା, ଶକ୍ତି କ୍ଷମା ଠୁଳ ଏକାଧାରେ,
ରାମଟି ଦେବତା ମର୍ତ୍ତ୍ୟଧାମେ ନରରୂପେ,
ଅମର୍ତ୍ତ୍ୟ ସେ ପାରିଜାତ ମର୍ତ୍ତ୍ୟ-ଉପବନେ,
ଚାରିତ୍ର୍ୟ-ସୌରଭ ଯାର ଚହଟି ଚୌଦିଗେ
କାଳେ କାଳେ ଆମୋଦିବ ନିଖିଳ ମେଦିନୀ।
ଆହା, କେଡ଼େ ଭାଗ୍ୟବନ୍ତ ସେହୁ ଯେ ଦେଖିବେ
ଚତୁର୍ଦ୍ଦଶ ବର୍ଷ ଅନ୍ତେ ବାହୁଡ଼ିବ ଯେବେ
ଗୁଣାରାମ ରାମଭଦ୍ର ଅଯୋଧ୍ୟାନଗରେ,
ସୁକୃତର ଫଳେ ସିନା ଦେଖିବେ ସେ ପୁଣି
ପ୍ରଶାନ୍ତ, ପ୍ରସନ୍ନ, ସୌମ୍ୟ, ପୂତସ୍ମିତଶାଳୀ
ରାମର ଶ୍ରୀମୁଖ, ଯହିଁ ରୂପେ ନୋହେ ସରି
ପ୍ରଫୁଲ୍ଲ ପଙ୍କଜ କିମ୍ବା ଶାରଦ ଚନ୍ଦ୍ରମା,
ଶୁଣିବେ ରାମର ବାଣୀ ସୁଧା-ନିଷ୍ୟନ୍ଦିନୀ,
ପବିତ୍ର, ନିର୍ମଳ, ଆହା, ଗଙ୍ଗାଜଳ ଯଥା
ଶକ୍ରଧନୁ-ସୀମନ୍ତିତ ଗୋମୁଖୀ ପ୍ରପାତେ।
କାହିଁ ସେ ସୁକୃତ ମୋର ? ହେଲା ତେଣୁକରି
ଯବନିକାପାତ ମୋର ଭବ-ରଙ୍ଗଭୂମେ,
ଏ ନୟନେ, ଦେବି, ମୁହିଁ ନ ଦେଖିବି ଆଉ
ସେ ନନ୍ଦନେ, ସନ୍ଥର ସେ ହୃଦୟଚନ୍ଦନେ,
ଏ ଶ୍ରବଣେ ମୁହିଁ ଆଉ ଶୁଣିବି ତ ନାହିଁ
ସତ୍ୟପୂତ ତା'ର ସେହି ଅମୃତଭାରତୀ।
ହା ରାମ, ହା ଗୁଣାରାମ, ରଘୁଚୂଡ଼ାମଣି,
ହା ଚନ୍ଦ୍ରବଦନି ବଧୂମାତା ଶ୍ରୀ ଜାନକି,
ହା ଲକ୍ଷ୍ମଣ ବିମଣ୍ଡିତ ସର୍ବସୁଲକ୍ଷଣେ,
ହା ରାମ ଶ୍ରୀରାମ!'' କହି ରାଜା ଶୋକୋଚ୍ଛ୍ୱାସେ
କୌଶଲ୍ୟା ସୁମିତ୍ରା ପାଶେ ମର୍ତ୍ତ୍ୟ ଦେହ ତେଜି
ଗଲେ ଦିବ୍ୟଧାମେ ଦଶରଥ ମହାମତି।

□ □ □

# ସାବିତ୍ରୀ ଚରିତ

ଅଶ୍ୱପତି ନାମେ ଥିଲେ ରାଜା ମହାତେଜା
ମଦ୍ରଦେଶେ, ସାହସିକ, ଜ୍ଞାନୀ, ସତ୍ୟବାଦୀ,
ଜିତେନ୍ଦ୍ରିୟ, ଦେବଦ୍ୱିଜେ ଭକ୍ତିମନ୍ତ ସଦା,
ମହାଦାତା, କି ପୌର କି ଜନପଦବାସୀ
ସଭିଙ୍କର ଶ୍ରଦ୍ଧା, ପ୍ରୀତି ଲଭିଥିଲେ ସେହୁ।
ସଭିଙ୍କର ସୁଖ ଲୋଡ଼ା ଏକମାତ୍ର ସୁଖ
ଥିଲାଟି ତାଙ୍କର, ସେହି ସୁଖେ ଥିଲେ ସୁଖୀ,
ଧର୍ମମାର୍ଗ ଅନୁସରି ପାଳିଲେକ ପ୍ରଜା
ବହୁକାଳ ଅଶ୍ୱପତି, ବୃଦ୍ଧକାଳଯାଏ
କମଳାର ପୂର୍ଣ୍ଣ କୃପା ଲଭି ପଦେ ପଦେ,
ସର୍ବ ସୁଖେ ସୁଖୀ ଥାଇ ସନ୍ତତି ବିହୁନେ
ଝୁରିହେଉଥାନ୍ତି ନିତି, ସନ୍ତତି ସକାଶେ,
ଆଚରୁଣଥିଲେ ରାଏ ବ୍ରତ ଅହର୍ନିଶି,
ମିତାହାରୀ, ମିତାଚାରୀ ହୋଇ ସେ ନିରତେ
ପୂଜୁଥିଲେ ଏକମନେ ସାବିତ୍ରୀ ଦେବୀଙ୍କି।
ଷୋହଳ ବରଷବ୍ୟାପୀ ପୂଜା ଅନ୍ତେ ଦିନେ
ପ୍ରସନ୍ନ ରାଜାଙ୍କୁ ହୋଇ ଦେବୀ ଜ୍ୟୋତିର୍ମୟୀ
ହୋମାନଳ ଭେଦି ହେଲେ ରାଜା ଆଗେ ଉଭା।
ରାଜାଙ୍କୁ ସମ୍ବୋଧି ତହୁଁ ଭାଷିଲେ ଏସନେ
ବରଦା ଶ୍ରୀ ମହାଦେବୀ, "ପ୍ରସନ୍ନ, ହେ ରାଏ,
ଧର୍ମେ, ସତ୍ୟେ, ଦାନେ ପୁଣି ଜନସେବାବ୍ରତେ
ତୁମ୍ଭର ଏ ନିଷ୍ଠା ଦେଖି, ହେଲି ତୁମ୍ଭଠାରେ,
କି ବର ମାଗୁଛ, ମାଗ, ଦେବି ଏହିକ୍ଷଣି,
ଉଚିତ ସତ୍କାରଯୋଗ୍ୟ ସଦ୍‌ଗୁଣ ଏ ଭଳି।"
ଉତ୍ତରିଲେ ଅଶ୍ୱପତି, "ହେ ଦେବି ବରଦେ,
ଆଚରିଲି ଏହି ବ୍ରତ ସନ୍ତତି ସକାଶେ,
ହେଲ ଗୋସାମଣି, ଯେବେ ପ୍ରସନ୍ନ ମୋ ପ୍ରତି,
ସୁସନ୍ତାନ ବର ମୋତେ ଦିଅ କୃପା ବହି,
ବିଧିର ଶାଶ୍ୱତ ବିଧି ଅନୁସରି ମୁହିଁ
ମାଗୁଅଛି ଏହି ବର ଶ୍ରୀ ପାଦପଙ୍କଜେ,
ନିଜ ନିଜ ବଂଶ ଭବେ ରଖିଯିବାପାଇଁ
ଅର୍ହ ସର୍ବେ, ବିଧିଙ୍କର ଶାଶ୍ୱତ ବିଧାନେ,
ପ୍ରଥିତ ଏ ଋଷିବାଣୀ ଅଖିଳ ଜଗତେ।"
କହିଲେ ବରଦା ଦେବୀ, "ଜାଣିଥିଲି ଆଗୁଁ
ମନାସିଣଥିଲ ତୁମ୍ଭେ ଯେଉଁ ବର ମନେ,
ତୁମ୍ଭର କାମନା ସିଦ୍ଧି ଲାଗି ମୁହିଁ, ରାଏ,
ଜଣାଇଣଥିଲି ମୋର ଅଜି ବିଭୁପଦେ,
ଅଖିଳବ୍ରହ୍ମାଣ୍ଡସାଇଁ ଅଖିଳ-କରତା

ଦେଇଛନ୍ତି ଆଜ୍ଞା, ହେବ ସଫଳ କାମନା;
ଜଗତଲଲାମଭୂତା ସୁନ୍ଦରୀ ଦୁହିତା
ଲଭିବ ଅଚିରେ, ରାଜା, ବିଭୁଙ୍କ ବିଧାନେ
ଘଟିବ ଯା ତୁମ୍ଭ ଭାଗ୍ୟେ ଜାଣି ଶ୍ରୀପଦରୁ
ତାଙ୍କର, କହିଲି ମୁହିଁ ଏ ଶୁଭ ବାରତା।"
"କୃତାର୍ଥ ମୁଁ ହେଲି ମାତଃ", ଏହା କହି ରାଏ
ଦେବୀଙ୍କି ବନ୍ଦିଲେ ଭକ୍ତିଭଦ୍‌ଗତମାନସେ
ପୁନଃ ପୁନଃ, ଧାଡିକାରେ ଦେବୀ ଜ୍ୟୋତିର୍ମୟୀ
ଅନ୍ତର୍ଦ୍ଧାନ ହେଲେ ତହୁଁ, ଏଣେ ସ୍ୱପ୍ରାସାଦେ
ବାହୁଡ଼ିଲେ ଅଶ୍ୱପତି, ସିଂହାସନେ ବସି
ସମ୍ପାଦିଲେ ରାଜକାର୍ଯ୍ୟମାନ ଯଥାବିଧି;
ସର୍ବସୁଲକ୍ଷଣା ପାଟରାଣୀଙ୍କ ସଙ୍ଗତେ
ସଂଗତି ହେବାରୁ ଦିନେ ଶୟନେ ସୁକ୍ଷଣେ
ରାଜାଙ୍କ ଔରସେ ରାଣୀ ହେଲେ ଗର୍ଭବତୀ,
କ୍ରମେ ଗର୍ଭ ବୃଦ୍ଧି ହୋଇ (ଶୁକ୍ଳପକ୍ଷେ ଯଥା
ବଢ଼ଇ ଶଶାଙ୍କକଳା ବେଢ଼ି ତାରାମାଳେ)
ଜନ୍ମିଲା ତନୟା ଚାରୁ ପଙ୍କଜନୟନା,
ସୁଶୋଭନା, ସୁଲକ୍ଷଣା ସର୍ବ ଅବୟବେ;
ସମ୍ପାଦିଲେ ସମାରୋହେ ଜନ୍ମୋତ୍ସବ-ବିଧି
ମହାନନ୍ଦେ ମହୀପତି, ସାବିତ୍ରୀଙ୍କ କୃପା –
ଫଳେ ଜାତ କନ୍ୟା ବୋଲି, ଋଷିଙ୍କ ସମ୍ମତେ
ସାବିତ୍ରୀ ଏ ନାମ ତାକୁ ଦେଲେ ଶ୍ରଦ୍ଧା ବହି।
ରୂପିଣୀ କମଳା ପ୍ରାଏ କମଳଲୋଚନୀ
ବଢ଼ିଲା ଦିନକୁଦିନ ରାଜେନ୍ଦ୍ରତନୟା,
କ୍ରମେ ବାଳଭାବ ତୁଟି, ଯୌବନ ପ୍ରବେଶେ
ଗଞ୍ଜିଲା ତା ତନୁକାନ୍ତି ବିଶୁଦ୍ଧ କାଞ୍ଚନେ,
କମ୍ବୁକଣ୍ଠୀ, କ୍ଷୀଣକଟୀ, ସୁବଳିତଭୁଜା,
ପ୍ରଫୁଲ୍ଲପୁଷ୍କରମୁଖୀ, ଆୟତଲୋଚନା
ବାଳାକୁ ଦେଖିଣ ଲୋକେ ବିସ୍ମୟ-ବିହ୍ୱଳେ
ମଣୁଥିଲେ ଦିବୁଁ କିବା ଆସିଛି ଅପ୍‌ସରା;
ରାଜକୁଳେ ଥିଲେ ଯେତେ ମୁଖ୍ୟ ନରନାହା,
ଅନିନ୍ଦ୍ୟ ସୌନ୍ଦର୍ଯ୍ୟ ତାର ନିରେଖି ନୟନେ,
ମାନବକାମନାତୀତା ଜ୍ୟୋତିଃସ୍ୱରୂପିଣୀ
ଦେବଯୋଗ୍ୟା ଦିବ୍ୟାଙ୍ଗନା ମଣି ରୂପସୀକି,
ବରିବାକୁ କେହି ମନେ ନ ହେଲେ ସାହସୀ।
ଦିନେ ସ୍ନାନବିଧି ସାରି ଅଗ୍ନି-ଆୟତନେ
ପ୍ରବେଶି ସୁକେଶୀ ଦେବେ ପୂଜି ଭକ୍ତିଭରେ,
ପ୍ରସାଦକୁସୁମ ଘେନି ପୁରୋହିତଠାରୁ

ଉଭା ହେଲା ଯାଇ ବାଳା ରାଜାଙ୍କ ଛାମୁରେ,
ସନ୍ଧ୍ୟାଃ ସ୍ନାନେ ଧୌତକାନ୍ତି ଦେବାର୍ଚ୍ଚନେ ପୂତ,
ଝଟକୁଣଥିଲା ବାଳା ଦ୍ୱିଗୁଣ ଉଜ୍ଜ୍ୱଳେ,
ହିମବିନ୍ଦୁ ସ୍ତବକିନୀ ଫୁଲ୍ଲ କମଳିନୀ
ଦ୍ୱିଗୁଣ ମଞ୍ଜୁଳ ଯଥା ବାଳଭାନୁକରେ।
କୃତାଞ୍ଜଳିପୁଟେ ତାକୁ ଅଗ୍ରେ ଉଭା ଦେଖି
ଏଭଳି ସୌନ୍ଦର୍ଯ୍ୟେ ତାକୁ ଅପ୍ରାର୍ଥିତା ଜାଣି,
ଖିନ୍ନ ଅନ୍ତର୍ଗତେ ହେଲେ ରାଜା ଅଶ୍ୱପତି।
କନ୍ୟାକୁ ସମ୍ବୋଧି ପୁଣି କହିଲେ ଏସନେ,
''ବତ୍ସେ, ସମୁଚିତ ସିନା ମୋର ପକ୍ଷେ ଏବେ
ସମ୍ପାଦିବି ତୋର ଶୁଭ ପରିଣୟ ବିଧି,
କେହି ଯେଣୁ ନୋହିଲେଟି ଅର୍ଥୀ ତୋର ଲାଗି,
ଦେଲି ଅନୁମତି ତୁହି ବର ନିଜପାଇଁ
ନିଜ ପତି, ସୁସଦୃଶ ଦିଶଇ ଯେ ତୋତେ;
ବରିବୁ ତୁ ଯାକୁ ମୋର ଇଷ୍ଟତମ ସେହି,
ଋଷିବାକ୍ୟ ଏହା, ବତ୍ସେ, ପ୍ରଥିତ ଜଗତେ—
ନିନ୍ଦନୀୟ ପିତା, ଯେହୁ ବିବାହ ନ ଦିଏ
ସନ୍ତତିର, ନିନ୍ଦନୀୟ ସେହି ନରପତି,
ନ ବଳାନ୍ତି ମତି ଯେହୁ ଦାରପରିଗ୍ରହେ,
ନିନ୍ଦନୀୟ ପୁଣି ସେହି ନନ୍ଦନ, ଯେ କରେ
ପିତୃବିୟୋଗାନ୍ତେ ହେଳା ମାତାର ରକ୍ଷଣେ।
ଋଷିଙ୍କର ଏହି ମହାବାକ୍ୟେ ଶ୍ରଦ୍ଧା ବହି
ସତ୍ୱରେ ତୁ ନିଜ ବର ବର ହେମାମଣି,
ବର ତୁ ଏସନ ପାତ୍ର ନ ସ୍ପର୍ଶିବ ଯହିଁ
ସର୍ବଦର୍ଶୀ ଦେବନେତ୍ରେ ଦୋଷ ମୋହଠାରେ।''
ସଲଜ୍ଜେ ସାବିତ୍ରୀ ଶୁଣି ପିତାଙ୍କର ବାଣୀ
ସମୁଦ୍ୟତ ହେଲା ତାହା ପାଳନ ସକାଶେ;
ଅମାତ୍ୟ ଋଷିଙ୍କ ସଙ୍ଗେ ଦିବ୍ୟ ରଥବରେ
ଆରୋହିଣ ବରାରୋହା ଭ୍ରମିଲା କୌତୁକେ
ନଗରେ ନଗରେ, ତୀର୍ଥେ, ବନେ, ଜନପଦେ
ଧର୍ମନିଷ୍ଠ ରାଜସୁତ ନିବସୁଣ ଥିଲେ
ଯହିଁ ଯହିଁ, ପ୍ରତି ସ୍ଥାନେ ପୂଜି ଭକ୍ତିଭରେ
ଦେବଦ୍ୱିଜେ, ଠାବୁଁ ଠାବେ ଭ୍ରମିଲା ସୁକେଶୀ।
ଦେବର୍ଷି ନାରଦ ସହ ରତ ଆଳାପନେ
ଥିଲେ ମଦ୍ର ନରପତି ଆସ୍ଥାନେ ଯେକାଳେ
ପାତ୍ରମିତ୍ରବର୍ଗେ ବୃତ, ବାହୁଡ଼ିଣ ଆସି
ଭ୍ରମଣୁ ସାବିତ୍ରୀ ବାଳା ବନ୍ଦିଲା ସାଦରେ
ବେନିଙ୍କି ନୁଆଇଁ ଶିର ବିନୟେ ଭୂତଳେ।
କହିଲେ ଦେବର୍ଷି ତହୁଁ, ''କାହୁଁ ଏ ଅଇଲା
ତନୟା ତୁମ୍ଭର, ରାଏ, ହୋଇଛି ତ ଏବେ
ବିବାହର ଯୋଗ୍ୟା, ପାତ୍ରସାତ କରିବାରେ
ଏହାକୁ [illegible] ଏତେ କରୁଛ କିପାଇଁ?''

ଉତ୍ତରିଲେ ନରପତି, ''ବର-ଅନ୍ୱେଷଣେ
ଯାଇଥିଲା ହେମା ମୋର, ବରିଲା କାହାକୁ
ଜଣାଉ ସେ ନିଜ ମୁଖେ ତୁମ୍ଭ ଶ୍ରୀପଯରେ।''
ରାଜାଙ୍କ ଆଦେଶ ଶୁଣି ସାବିତ୍ରୀ ସୁନ୍ଦରୀ
ଜଣାଇଲା କରପୁଟେ, ''ଦ୍ୟୁମତ୍ସେନ ନାମେ
ଶାଲ୍ୱ ଦେଶ ନରପତି ଥିଲେ ପୁଣ୍ୟଚେତା,
ନିଜେ ଚକ୍ଷୁହୀନ, ପୁତ୍ର ଶିଶୁ ଥିବା ଯୋଗୁଁ
ଅରିକୁଳ ତଡ଼ିଦେଲେ ତାଙ୍କୁ ସିଂହାସନୁ
ଭାର୍ଯ୍ୟାପୁତ୍ରସହ ରାଜା ନିର୍ବାସିତ ହୋଇ
ଆଶ୍ରୟ ଭଜିଲେ ଆସି ଗହନ କାନନେ,
ଯାପନ୍ତି ସେ ଦିନ ଏବେ ବାନପ୍ରସ୍ଥାଶ୍ରମେ,
ସତ୍ୟବାନ ନାମେ ତାଙ୍କ କୁମର ଯେ ଥିଲେ
ବାଲ୍ୟେ ରାଜକୁଳେ ବଢ଼ି, ନିରତ ସେ ଏବେ
ପିତୃ-ସେବାବ୍ରତେ ସେହି ପିତାଙ୍କ ସଙ୍ଗତେ,
ବରିଛି ତାହାକୁ ମୁହିଁ ମୋର ପତିରୂପେ।''
ବୋଇଲେ ନାରଦ ଋଷି, ''ବରିଛି ଅଜ୍ଞାନେ
ସତ୍ୟବାନେ ପତିରୂପେ ତୁମ୍ଭର ତନୟା,
ରୂପେ ଗୁଣେ କୁଳେ ଶୀଳେ ସତ୍ୟବାନ ପରି
ନାହିଁ ଆନ ଯୁବା କେହି ଏ ମହୀମଣ୍ଡଳେ,
ସତ୍ୟେ ତା'ର ନିଷ୍ଠା ଜାଣି ଋଷିଏ ଆହ୍ଲାଦେ
ନାମ ରଖିଥିଲେ ତା'ର ସତ୍ୟବାନ ବୋଲି,
ତେଜେ ସେ ମାର୍ତ୍ତଣ୍ଡ ପରି, ବୃହସ୍ପତି ପରି
ଜ୍ଞାନେ ଜ୍ଞାନୀ, ବଳବୀର୍ଯ୍ୟେ ଯେସନ ମଘବା,
ଧରଣୀ ସମାନ ସେହୁ ଧୈର୍ଯ୍ୟେ କ୍ଷମାଗୁଣେ,
ଧାର୍ମିକ ସେ ଶିବି ପରି, ଯଯାତି ନୃପତି—
ସମ ରୂପେ, ଆତ୍ମ-ଜିତ, ଶାନ୍ତ, ନୟଶାଳୀ,
ବିନୟୀ, ଯଥାର୍ଥବାଦୀ, ଜିତେନ୍ଦ୍ରିୟ, ସାଧୁ,
ମହାମତି ସତ୍ୟବାନ ନାନା ଗୁଣେ ଗୁଣୀ।''
ବୋଇଲେ ଭୂପତି, ''ଆହେ ସର୍ବଦର୍ଶୀ ଋଷି,
ପ୍ରୀତ ହେଲି ଶୁଣି ତା'ର ଗୁଣରାଶି ଯେତେ,
ଥାଏ ଯେବେ ଦୋଷ ତାହା କହନ୍ତୁ ଆପଣେ।''
''ନାହିଁ କେହି'' ଉତ୍ତରିଲେ ମୁନି ମହାତପା,
''ଗୁଣୀ ଭବତଳେ ଯେହୁ ନିର୍ମୁକ୍ତ ଦୋଷରୁ,
ଦୋଷେ ମିଶ୍ର ଗୁଣ ଯଥା ଆଲୋକ ଅନ୍ଧାରେ,
ଯେଉଁ ଦୋଷ ଅଛି, ରାଜା, ସାଧୁ ସତ୍ୟବାନେ,
ଖଣ୍ଡିବାର ତାହା ତା'ର ନାହିଁଟି ଶକତି,
ସବୁ ଗୁଣ ପଣ୍ଡ ତାର ହୋଇଛି ସେହେତୁ;
ବିଧାତାର ଲିପି ତା'ର ଅଙ୍କିତ ଲଲାଟେ—
ସରିଯିବ ମର୍ତ୍ତ୍ୟଲୀଳା ବର୍ଷକ ଉତ୍ତାରୁ।''
''ସାବିତ୍ରୀ'', କହିଲେ ନୃପ, ''ଅନ୍ୟ ବର ଏବେ
ବର ଯାଇ, ଦେଲି ମୁହିଁ ତୋତେ ଅନୁମତି,
ଗୁଣୀ ସତ୍ୟବାନ, ମାତ୍ର ଏକ ଦୋଷ ଯୋଗୁଁ

ପଣ୍ଡ ହୋଇଅଛି ତା'ର ଗୁଣରାଶି ଯେତେ,
ବର୍ଷ ଅନ୍ତେ ସମ୍ବରିବ ମର୍ତ୍ତ୍ୟଲୀଳା ସେହୁ,
ଦେବର୍ଷି ବଚନ କେବେ ନୋହିବ ଅନ୍ୟଥା।''
କହିଲେ ସାବିତ୍ରୀ, ''ତାତ, ଆସୁ ଅବଧାନେ
ନିବେଦିବି ମୁହିଁ ଯାହା ତୁମ୍ଭ ଶ୍ରୀ ପୟରେ,
ଥରେମାତ୍ର କନ୍ୟା ସିନା ବରେ ନିଜ ପତି,
ବରିବାକୁ ଥରେ ମାତ୍ର ଦିଅନ୍ତି ତା ପିତା
ତାକୁ ଆଜ୍ଞା, ଥରେ ହେଲେ ଫେରେନାହିଁ ଆଉ,
ଥରେ ହେଲେ ହେଲା ତାହା ଚିରକାଳପାଇଁ,
ବରିଛି ଯାହାକୁ ମୁହିଁ, ହେଉନ୍ତୁ ଅଳ୍ପାୟୁ
ଅଥବା ଦୀର୍ଘାୟୁ ସେହି, ହେଉନ୍ତୁ ସେ ଗୁଣୀ
ବଖାଣିଲେ ଦେବଋଷି ତାହାଙ୍କୁ ଯେପରି,
ଅଥବା ତହିଁରୁ ନ୍ୟୂନ, ବରିଛି ତାହାଙ୍କୁ,
ବରିବାକୁ ଆନେ ପୁଣି ନାହିଁ ମୋ ଶକତି।
ଏ ହୃଦୟ ଅର୍ପିଛି ମୁଁ ତାଙ୍କରି ପୟରେ,
କହୁଅଛି ଏହି କଥା ସର୍ବଜନ ଆଗେ,
ବିହିବ ଏ ହସ୍ତ ଯାହା କହିଛି ଏ ମୁଖେ,
ଏହି ଗତି ବିନୁ ମୋର ନାହିଁ ଅନ୍ୟ ଗତି।''
କହିଲେ ନାରଦ, ''ନିଷ୍ଠା ଜେମାର ଯେପରି,
ସତ୍ୟମାର୍ଗୁ ଚ୍ୟୁତ ତାକୁ କରିବାକୁ କେହି
ନୋହିବେ ସକ୍ଷମ ଏହା ଜାଣଇଁ ମୁଁ ଭଲେ,
ଗୁଣିକ ଧାର୍ମିକ ଯୁବା ସତ୍ୟବାନ ପରି
ଦୁର୍ଲଭ ଏ ଭବେ; ତେଣୁ ଦେବି ନାହିଁ ବାଧା
ଏ ସମ୍ବନ୍ଧେ, ଶୀଘ୍ର ଜେମା ପରିଣୟବିଧି
ସାଧୁ ସତ୍ୟବାନ ସଙ୍ଗେ ଭିଆଅ, ନୃମଣି।''
ଦୀର୍ଘଶ୍ୱାସ ତେଜି ରାଜା କହିଲେ ଏସନେ,
''ଭବିତବ୍ୟତାର ପଥେ କିଏ ଦେବ ବାଧା ?
ଘଟିବ ଯା ଅଛି ଭାଗ୍ୟେ, କହୁଛି ଯା ଜେମା
ନୁହଇ ଅଯୁକ୍ତ ତାହା, ତୁମ୍ଭେ ମୋର ଗୁରୁ,
ଭିଆଇବି ପରିଣୟ ତୁମ୍ଭରି ବଚନେ।''
କହିଲେ ନାରଦ, ''ଶୀଘ୍ର ପରିଣୟବିଧି
ଭିଆଅ ଜେମାର, ସର୍ବ କଲ୍ୟାଣଭାଗିନୀ
ହେଉ ବାଳା, ଖଣ୍ଡିଯାଉ ନିୟତିର ଲିପି,
ସତ୍ୟବାନ ସତ୍ୟବାନ, ସାବିତ୍ରୀ ସୁମତି,
ଯୋଗ୍ୟାର ମିଳନ ହେଉ ଯୋଗ୍ୟର ସଙ୍ଗତେ,
ପରିଣୟ ବେନିଙ୍କର ହେଉ ସର୍ବଶୁଭେ।''
ଏହା କହି ଦେବଋଷି ଘେନିଲେ ମେଲାଣି,
ରତ ହେଲେ ନରପତି ବିଭା-ଆୟୋଜନେ।
ବସ୍ତ୍ର ଆଭରଣ ପୁଣି ସମ୍ଭାରାଦି ଯେତେ
ଆୟୋଜନ କରି ରାଜା, ଘେନି ସ୍ୱଗହଣେ
ମୁନି ପୁରୋହିତ ପୁଣି ପାତ୍ର ମିତ୍ର ଆଦି
ବାହାରିଲେ ଜେମା ସଙ୍ଗେ ମଙ୍ଗଳଦିବସେ।

ମହାବନ ମଧ୍ୟେ ଯାଇ ଆସୀନ ଦେଖିଲେ
ଶିଳାବତୀ ସୈକତିନୀ ଗିରିନଦୀତୀରେ
କୁଶାସନେ ଦ୍ୟୁମତ୍‌ସେନ ଶାଳତରୁମୂଳେ;
ଶଙ୍ଖଳା ସମ୍ଭାଷ ଆଦି ବିହିତ ବିଧାନେ
ବିହି ରାଜା ଆତ୍ମ-ପରିଚୟ ଦେଲେ ତହୁଁ।
ତୋଷିଲେ ଆଦରେ ତାଙ୍କୁ ପ୍ରତିସମ୍ଭାଷଣେ
ସାଧୁ ଦ୍ୟୁମତ୍‌ସେନ ଅନ୍ଧ ବୃଦ୍ଧ ରାଜଋଷି,
ଅବସ୍ଥାସଦୃଶ ଖଣ୍ଡେ କୁଶାସନ ଦେଇ,
ସୁନିର୍ମଳ ଜଳ ଦେଇ ମୃତ୍ତିକାଭାଜନେ,
ପଚାରିଲେ ସବିନୟେ ଆଗମନହେତୁ।
ସତ୍ୟବାନ ପ୍ରତି ଦୃଷ୍ଟି ଦେଇ ଅଶ୍ୱପତି
କହିଲେ, ''ସାବିତ୍ରୀନାମ୍ନୀ ମୋର ଏ ଦୁହିତା,
ପୁତ୍ରବଧୂରୂପେ ତାକୁ ବିହିତ ବିଧାନେ
ନିଅ, ହେ ବିଧିଜ୍ଞ ନୃପ, ଏ ମୋର ମାଗୁଣି।''
ଉତ୍ତରିଲେ ଦ୍ୟୁମତ୍‌ସେନ, ''ବିତାଡ଼ିତ ହୋଇ
ସିଂହାସନୁ ହୋଇଅଛି ମୁହଁ ବନବାସୀ,
ନାହିଁ ବିଭବର ଚିହ୍ନ, ଯତିବ୍ରତେ ବ୍ରତୀ
ହୋଇ ମୁହିଁ ଯାପୁଅଛି ଦିନ ବନାଶ୍ରମେ,
ନିରିମାଖୀ, ନିରାଶ୍ରୟ, ଫଳମୂଳାହାରୀ,
ରାଜସୁତା ସୁକୁମାରୀ, ସୁଖରେ ଲାଳିତା,
ରଖିବି କେସନେ ତାଙ୍କୁ ଏ ପର୍ଣ୍ଣକୁଟିରେ ?
ନୁହଇ ଏ ଜେମାଙ୍କର ବାସଯୋଗ୍ୟ ସ୍ଥଳୀ,
କିପାଁ ଅରପିଲ ଏଡ଼େ ଭାର ଅକିଞ୍ଚନେ ?''
ଉତ୍ତରିଲେ ଅଶ୍ୱପତି, ''ସୁଖ ଦୁଃଖ କଥା
ଜାଣଇଁ ମୁଁ, ଜାଣେ ଜେମା, କେ ବସ୍ତୁ, କେ ମାୟା,
ନିଜେ ବିଡ଼ି ଆମ୍ଭେ ତାହା ଜାଣିଅଛୁଁ ଭଲେ,
କିଏ ସାର, ଭାନ କିଏ, ଆମ୍ଭଙ୍କୁ ଗ୍ୟ ଜଣା,
ସେ ଭୟେ ଟଳିବ ନାହିଁ ଦୃଢ଼ନିଷ୍ଠ ମନ
ଆମ୍ଭର, ହେ ନରରାଣ, ବନ୍ଧୁଭାବେ ଆସି
ବିନୟେ ମାଗୁଣି ମୋର କହିଲି ଛାମୁରେ,
ମୋ ହୃଦୟ ଜାଣି ଘେନ ମୋର ଏ ବିନତି,
ବିଭବେ ନ ଥାଇ ତୁମ୍ଭେ ଅତୁଳବିଭବୀ,
ହେ ମନସ୍ୱି ରାଜଋଷି, ଶୌର୍ଯ୍ୟର ମୁକୁଟେ
ତୁମ୍ଭର ମୁକୁଟହୀନ ମସ୍ତକ ନିରତେ
ଭାସ୍ୱର, କି ଛାର ଆନ ମୁକୁଟ ତା ପାଶେ,
ଆଭିଜାତ୍ୟେ ତୁମ୍ଭେ ମୁହିଁ ସମକକ୍ଷ ବେନି,
ବରିଛି ତୁମ୍ଭର ପୁତ୍ରେ ମୋର ଏ ଦୁହିତା,
ପୁତ୍ରବଧୂରୂପେ ତାକୁ ନେଇ, ନରମଣି,
ପୂତ କର ତାକୁ, ପୁଣି ପୂତ କର ମୋତେ
ମହାଶ୍ଳାଘ୍ୟ ଏ ସମ୍ବନ୍ଧେ, ହୃଦେ ଦୟା ବହି।''
ଉତ୍ତରିଲେ, ଅନ୍ଧ ରାଜା, ''ତୁମ୍ଭ ସଙ୍ଗେ, ରାଏ,
ସମ୍ବନ୍ଧ ବାନ୍ଧିବା ଲାଗି ପୋଷିଥିଲି ଆଶା

ଆଗେ ମୁହିଁ, ମାତ୍ର ରାଜ୍ୟ ସମ୍ପଦ ହରାଇ
ମୁରୁଛିଥିଲି ସେ ଆଶା ମଣି ତା ଦୁରାଶା,
ମାତ୍ର ଏ ନିର୍ବନ୍ଧ ଏବେ ତୁମ୍ଭଠାରେ ଦେଖି
ବିଧିର ନିର୍ବନ୍ଧ ଏହା ଜାଣିଲି ନିଶ୍ଚିତେ;
ଅତିଥି ମୋହର ତୁମ୍ଭେ ପ୍ରିୟ ସର୍ବମତେ;
ତୁମ୍ଭର ବାସନା ଯାହା ମୋର ସେ ବାସନା।''
ତହୁଁ ପୁରୋହିତ ଆସି ବିହିତ ବିଧାନେ
ଶୁଭକ୍ଷଣେ ବରକନ୍ୟା ବେଦିରେ ବସାଇ
ପକାଇଲେ ହସ୍ତଗ୍ରନ୍ଥି, ସାବିତ୍ରୀକି ରଖି
ବାହୁଡ଼ିଲେ ଅଶ୍ୱପତି ସୁଖେ ସ୍ୱନଗରେ।
ସୁନ୍ଦରୀ ଲଳନା ନାନା ଯୌତୁକ ସହିତେ
ଲଭି ସତ୍ୟବାନ ହେଲେ ସୁଖୀ ଯେଉଁମତି,
ତହୁଁ ବଳି ସୁଖୀ ହେଲେ ମଦ୍ରରାଜ-ଜେମା
କଠୋର ତପସ୍ୟାଲବ୍ଧ ଇଷ୍ଟବର ପ୍ରାୟେ
ନିଜ ମନୋନୀତ ବର ଲଭି ମନସ୍ୱିନୀ।
ଅଶ୍ୱପତି ଗଲେ ଯହୁଁ, ବରାଙ୍ଗୀ ସେକ୍ଷଣି
ବସ୍ତ୍ର ଆଭରଣ ନିଜ ବରାଙ୍ଗୁ ଉତାରି
ଆବରିଲା ତାକୁ ପୁଣି ତାରବ ବଳ୍କଳେ –
ତାପସଉଚିତ ବାସ; ରାଜଭୋଗସ୍ପୃହା
ଛାଡ଼ିଦେଇ, ଜାଗରୂକ ହୋଇ ସେବାବ୍ରତେ
ଗୁରୁଜନ ଅତିଥିଙ୍କ ଭୋଜନ ଉତାରୁ
ବଳୁଥିଲା ନୀବାରାନ୍ନ ଫଳମୂଳ ଯାହା –
ତପସ୍ୟାର ଯୋଗ୍ୟାଶନ – ସେହି ସେ ଅଶନେ
କ୍ଷୁଧା ହରି ମଣୁଥିଲା ନିଜକୁ ସୁଖିନୀ,
କୁଶଶେଯଭାଗୀ ହୋଇ ପତିଙ୍କ ସଙ୍ଗତେ
ହେୟ ସେ ମଣିଲା ହେମପର୍ଯ୍ୟଙ୍କଶୟନେ।
ଅତିଥିର ପରିଚର୍ଯ୍ୟା, ଦୟା ଦାକ୍ଷିଣ୍ୟାଦି
ଦେଖି ତା'ର, ଶୁଣି ତା'ର ସତ୍ୟପୂତ ବାଣୀ
ମଧୁର ମଧୁର ଯେହ୍ନେ ତ୍ରିଦିବର ସୁଧା
ବଢ଼ାଇଲେ ବାଳା ପ୍ରତି ପ୍ରୀତି ଅତିରେକେ
ଯାବନ୍ତ ଆଶ୍ରମବାସୀ, ପ୍ରୀତ ହେଲେ ରାଣୀ
ସେବାଧର୍ମେ ଆସ୍ଥା ତା'ର ଦେଖି ଅହର୍ନିଶି,
ତନୟା ଅଧିକ ପ୍ରୀତି ବହିଲେ ତାଠାରେ
ବଶ ହୋଇ ଗୁଣେ ତା'ର ଅନ୍ଧ ରାଜଋଷି,
ଗମିଲା ସେ କାଳ ସୁଖେ ପତିସେବାବ୍ରତେ,
ପତିର ସନ୍ତୋଷ ତା'ର ଇଷ୍ଟମନ୍ତ୍ର ସଦା,
ପତି ଧ୍ୟାନ, ପତି ଜ୍ଞାନ, ପତି ସେ ଦେବତା।
ଏହିପରି ମହାସୁଖେ ଗଲା ଦିନ ଚାଲି
ଶାନ୍ତିରସାସ୍ପଦ ସେହି ଅରଣ୍ୟ ଆଶ୍ରମେ,
ମାତ୍ର ସୁଖେ ଥାଇ ବାଳା ପାସୋରିନଥିଲା
ଦେବର୍ଷିକଥିତ ସେହି ଦାରୁଣ ନିୟତି;
ନିତି ଦିନ ଗଣି ସେହି ଦିନ ପ୍ରତୀକ୍ଷାରେ
ଘାରିହେଉଥାଇ ମନେ ମନେ ମନସ୍ୱିନୀ,
କି ଜାଗ୍ରତେ କି ସ୍ୱପନେ ସେହି କ୍ରୂରସ୍ମୃତି
ଭିଆଉଣ ଥିଲା ତା'ର କମ୍ପ ଅନ୍ତର୍ଗତେ।
ସୁଖର ସେ ଦିନଯାକ ସୁଖେ ଗଲା ଚାଲି,
ଦାରୁଣ ସେ ଦିନ ଏବେ ଆସିଲା ପାଖେଇ –
ସେ ଦିନ, ଯା ଟାଳିବାର ଶକ୍ତି ନାହିଁ ଦେବେ,
ନିୟତିର ଦିନ ଜାଣି ତିନି ଦିନ ପରେ
ତ୍ରିରାତ୍ରର ଉପବାସ ଆଚରି ସୁନ୍ଦରୀ
ତେଜିଲା ଆହାର ନିଦ୍ରା ସେହି ତ୍ରିବାସରେ।
ବଧୂର ଏ ବ୍ରତ କଥା ଶୁଣି ଅନ୍ଧ ରାଜା
କହିଲେ ବାଳାକୁ ଡ଼ାକି, ''ଏ କଠୋର ବ୍ରତେ
କିଆଁ ବଳାଇଲ ମନ? ଯତି ମଧ୍ୟେ ଯେହୁ
ସିଦ୍ଧତମ, ଏ ବ୍ରତ ନ ପାରନ୍ତି ଆଚରି।''
''ନକର ଭାବନା ଏଥି'' ଉତ୍ତରିଲା ବାମା;
''ମନାସିଛି ଯାହା ମୁହିଁ ପାଳିବି ନିଶ୍ଚିତେ।''
ଏହା କହି ଆଚରିଲା ଏକନିଷ୍ଠ ହୋଇ
ସେ କଠୋର ବ୍ରତ ବାଳା, ତ୍ରିଦିବସ ପରେ
ତୃତୀୟ ଯାମିନୀ ଅବସାନ କାଳ ଜାଣି,
'ନାଥର ଅନ୍ତିମ ଦିନ ଏହି' ଏହା ଭାବି,
ତ୍ୱରା ଉଠି ଇଷ୍ଟମନ୍ତ୍ର ଜପି ପତିପ୍ରାଣା
ହୋମାନଳେ ଯଥାବିଧି ଦେଲାକ ଆହୁତି,
ତଦନ୍ତେ ବିନୟେ ଯାଇ ରାଜା-ରାଣୀ ପାଦୁଁ
ପଦଧୂଳି ନେଇ ବୋଳି ହେଲା ନିଜ ମାଥେ,
ବନ୍ଦି ଦ୍ୱିଜବର୍ଗେ ନେଲା ତାଙ୍କ ଆଶୀର୍ବାଣୀ,
ସସ୍ନେହେ ମହିଷୀ ତହୁଁ ସାବିତ୍ରୀକି ଡାକି
କହିଲେ, ''ପାଳିଲ ବ୍ରତ ମନାସି ଯା ଥିଲ,
କର ତୁ ଭୋଜନ ଏବେ।'' ଉତ୍ତରିଲା ବାମା,
''କରିବି ଭୋଜନ ଆଜ ରବି ଅସ୍ତପରେ,
ମନାସିଣଥିଲି ଏହା ବ୍ରତ ସଙ୍ଗେ ମୁହିଁ।''
ଏ ସମୟେ ସତ୍ୟବାନ ଥୋଇ ସ୍କନ୍ଧଦେଶେ
କୁଠାର, ଉଦ୍ୟତ ହେଲେ ବନେ ଯିବାପାଇଁ।
ଭାଷିଲା ଏସନ ବାଳା ତାଙ୍କ ପାଶେ ଯାଇ,
''ହେ ନାଥ, ଅରଣ୍ୟେ ଆଜ ନ ଯାଅ ଏକାକୀ,
ନିଅ ମୋତେ ତୁମ୍ଭ ସଙ୍ଗେ, ତୁମ୍ଭଙ୍କୁ ମୁଁ ଛାଡ଼ି
ରହି ନ ପାରିବି ଆଜ କହିଲି ନିଶ୍ଚିତେ।''
''କିଆଁ କହ ଆଜ ଏହା, ପରାଣପ୍ରେୟସି,''
ଉତ୍ତରିଲେ ସତ୍ୟବାନ, ''ବନସଂଚରଣେ
ତୁମ୍ଭର ଅଭ୍ୟାସ ନାହିଁ, ଉଚ୍ଚାବଚ ପୁଣି
ବନମାର୍ଗ, ପ୍ରାସ ହେବ କୋମଳଚରଣେ
ତୁମ୍ଭର, ଦୁର୍ବଳ ପୁଣି ତୁମ୍ଭେ ଉପବାସେ,
ନାହିଁ ଶକ୍ତି ଲେଶ ଦେହେ, ଚାଲିବ କେସନେ?''
କହିଲେ ସାବିତ୍ରୀ, ''ମୁହିଁ ଉପବାସ ଯୋଗୁଁ

ହୋଇ ନାହିଁ କ୍ଳାନ୍ତ କିମ୍ବା ଅଶକ୍ତ ଭ୍ରମଣେ,
ନକର ନିଷେଧ ମୋତେ, ମୋ ଆଗ୍ରହ ଜାଣି
ବନଭୂମେ ହେବାପାଇଁ ତୁମ୍ଭ ସହଚରୀ।''
''ଯିବାକୁ ବାସନା ଯେବେ କରୁ ନାହିଁ ମନା,
ମାତ୍ର ଗୁରୁଜନଠାରୁ ନିଅ ଅନୁମତି,
ନୁହଇ ଯୁକତ କିଛି ତାଙ୍କ ଆଜ୍ଞା ବିନା।''
ଏ ଉତ୍ତର ଶୁଣି ବାଳା ପ୍ରାଣନାଥ-ମୁଖେ
ବେଗେ ଯାଇ ସେହିକ୍ଷଣି ଗୁରୁଙ୍କ ସନ୍ନିଧି
ଚରଣେ ଓଳଗି ହୋଇ ଜଣାଇଲା ଅଳି,
''ପୁଷ୍ପ ଫଳ ଆହରଣେ ଯାଉଛନ୍ତି ବନେ
ପ୍ରାଣନାଥ ମୋର, ତାଙ୍କ ସଙ୍ଗେ ଯିବାପାଇଁ
ଦିଅ ମୋତେ ଅନୁମତି, ଅଗ୍ନିହୋତ୍ର ଲାଗି
ପୁଷ୍ପଫଳ ଆହରଣେ ବ୍ରତୀ ଯେଣୁ ସେହି,
ବାରିତ ନୋହିବ ତାଙ୍କୁ ତହୁଁ କଦାଚିତେ,
ଦିଅ ଆଜ୍ଞା ଯିବି ମୁହିଁ ତାଙ୍କରି ଗହଣେ,
ବର୍ଷେ ହେଲା ଯାଇଥିଲି ଥରେ ବନଭୂମେ
ପୁଷ୍ପିତ କାନନକୁଞ୍ଜ ଶୋଭା ଦେଖିବାକୁ,
ଆଜ ପୁଣି ଦେଖିବାକୁ ମୋହର ବାସନା।''
ଉତ୍ତରିଲେ ମୃଦୁଭାଷେ ଅନ୍ଧ ରାଜରଷି,
''ବର୍ଷେ ହେଲା ବଧୂରୂପେ ତୁମ୍ଭେ ଏ ଆଶ୍ରମେ
ଆସିଅଛ, ବତ୍ସେ, ତୁମ୍ଭ ଅଭୀଷ୍ଟ ପୂରଣେ
କୁଣ୍ଠିତ ନୁହଇ ମୁହିଁ, ଯେଣୁ କେଉଁ କାଳେ
କରି ନାହଁ ଅସମୟେ କେବଣ ପ୍ରାର୍ଥନା,
ଯାଅ, ବତ୍ସେ, ଦେଲି ଆଜ୍ଞା, ସ୍ୱାମୀସଙ୍ଗେ ବନେ,
ସ୍ୱାମୀର କୁଶଳେ ତୁମ୍ଭେ ଅବହିତ ସଦା।''
ଶ୍ୱଶୁର ଶାଶୁଙ୍କ ଆଜ୍ଞା ଲଭି ଏହି ମତି
ପତିସଙ୍ଗେ ବାହାରିଲା ସାବିତ୍ରୀ ସୁନ୍ଦରୀ
ମହାକ୍ଷିନ୍ନମନେ, ମାତ୍ର ପ୍ରଫୁଲ୍ଲବଦନେ,
ପୁଷ୍ପାନତ ତରୁରାଜି, ମଞ୍ଜୁ କୁଞ୍ଜରାଜି,
କ୍ରୀଡୁଥିଲେ ସୁଖେ ଯହିଁ ମୟୂର ମୟୂରୀ,
ସ୍ୱଚ୍ଛତୋୟା ସ୍ରୋତସ୍ୱିନୀ, ତୁଙ୍ଗ ଗିରିମାଳା,
ଶବଳିତ ତଟ ଯାର ମୁକୁଳ କୁସୁମେ,
ମାର୍ଗେ ଭେଟି ସତ୍ୟବାନ ଦେଖାଉଣଥିଲେ
ପ୍ରେୟସୀକି, ଦୃଷ୍ଟି ଦେଇ ତହିଁ ଚାରୁମୁଖୀ
ଫେରାଉଣଥିଲା ତାହା ପତି ପ୍ରତି ପୁଣି
ଉଭା ଜାଣି ତାଙ୍କୁ କ୍ରୂର ନିୟତିତୋରଣେ,
ନାରଦଙ୍କ ବାଣୀ ସ୍ମରି ପତି ପଛେ ପଛେ
ଯାଉଥିଲା ପତିପ୍ରାଣ ଅବହିତଚିତ୍ତେ,
ବିଦୀର୍ଣ୍ଣ ହୃଦୟ ତା'ର ବେନିଖଣ୍ଡ ହୋଇ
ଖଣ୍ଡେ ଚଢ଼ି ରହିଥିଲା ପତିଠାରେ ଅବା,
ଆନ ଖଣ୍ଡ ଦେଖୁଥିଲା ଆସୁଛି କେସନେ
ସଦ୍ୟଃ ଗ୍ରାସିବାକୁ ତାଙ୍କୁ ନିର୍ମମ ନିୟତି।

ଠାବେ ଫଳବୃକ୍ଷ ଦେଖି ଅବନତ ଫଳେ
ଫଳ ତୋଳି ପୂରାଇଲେ ଚାଙ୍ଗୁଡ଼ା ଦମ୍ପତି,
ତହୁଁ ରତ ହେଲେ ପତି ସମିଧ ଛେଦନେ।
କୁଠାରେ ସମିଧ ଛେଦୁଁ ଛେଦୁଁ ସେହିକ୍ଷଣି
ଅଭିଭୂତ ହେଲେ ଅତି ତୀବ୍ର ଶିରଃଶୂଳେ,
ଝରିଲା ଦେହରୁ ଝାଳ ଦରଦର ହୋଇ,
କହିଲେ ପତ୍ନୀକି ଡାକି କ୍ଷୀଣ ଜଡ଼ସ୍ୱରେ,
''କି ଯନ୍ତ୍ରଣା, ପ୍ରିୟେ, ଏହି, କାଟିବାକୁ ଆଉ
ନାହିଁ ଶକ୍ତି ଲେଶ ମୋର, ଶିରାରେ ଶିରାରେ
ତରଳ ଅନଳସ୍ରୋତ ବହେ କେଡ଼େ ଖରେ,
ଉପୁଜଇ ଥର, ତପ୍ତ ଶଣ୍ଢୁଆସି କେହି
ଭୁସିଦେଲା ଶିରେ ଅବା ହୁଥଇ ପରତେ,
ଛିଡ଼ା ହୋଇ ପାରୁ ନାହିଁ, ଦିଅ ଗୋ ଶୁଆଇ।''
ନ ପଡୁଁ କତାଡ଼ି, ସତୀ ଯାଇ ଧାଡ଼ିକାରେ
ଧରିନେଲେ ଭୁଜେ ବ୍ୟଗ୍ରେ ବିଧୁର ପତିକି,
ଶୁଆଇ ତାହାଙ୍କୁ, କୋଳେ ଥୋଇ ତାଙ୍କ ଶିର,
ନୀରବେ ବିଞ୍ଚିଲେ ତାଙ୍କୁ ପଲ୍ଲବ-ବ୍ୟଜନେ,
ଜାଣିଲେ ନାରଦରଷିକଥିତ ନିୟତି
ପ୍ରବେଶିଲା ଆସି ପରା, ସହସା ଏକାଳେ।
ଦେଖିଲେ ଅଗ୍ରତେ ଏକ କରାଳମୂରତି,
ଅସ୍ପଷ୍ଟ ଆକୃତି, ବର୍ଣ୍ଣେ କୁହେଳିକା ପରି,
ପାଶ ହସ୍ତେ ହୋଇଛନ୍ତି ପତି ଅଗ୍ରେ ଉଭା,
କରାଳ ତାଙ୍କର ଛାୟା ଉତ୍ତରାଙ୍ଗେ ପଡ଼ି
ପତିଙ୍କର, କଳା ହୋଇଅଛି ବର୍ଣ୍ଣ ତହିଁ।
ତାଙ୍କୁ ଦେଖି ପତିଶିର ଧୀରେ ରଖି ତଳେ
ତୃଣୋପରି, କମ୍ପମାନ ହୃଦୟେ ଅବଳା
କର ଯୋଡ଼ି କାକୁସ୍ୱରେ ଭାଷିଲା ଏସନେ,
''ଦେବତା ନିଶ୍ଚୟ ତୁମ୍ଭେ, ମର୍ତ୍ତ୍ୟାତୀତରୂପେ
କେଉଁ ଦେବ ତୁମ୍ଭେ, ଦେବ, କହ କୃପା ବହି,
କହ ମୋତେ କେଉଁ କାର୍ଯ୍ୟେ ଆସିଛ ଏଠାବେ ?''
ଉତ୍ତରିଲେ ଭୀମାକୃତି, ''ମହାପତିବ୍ରତା
ସାବିତ୍ରୀ ତୁ ଶୁଦ୍ଧମତି, ସ୍ୱଧର୍ମଚାରିଣୀ,
ଉତ୍ତର ଏ ପ୍ରଶ୍ନେ ତୋର ଦେବି ତେଣୁକରି,
ଯମ ମୁହିଁ, ରାଜପୁତ୍ର ଏହି ତୋର ପତି
ମରିବ ଏକ୍ଷଣି ଜାଣି ବାନ୍ଧି ନେବା ଲାଗି
ଆସିଲି ମୁଁ ଏହିଠାବେ, ବିଧିଙ୍କ ନିଯୋଗେ,
ଏ ନିଯୋଗ ମୋର, ତାହା ପାଳିବି ଏକ୍ଷଣି।''
ପୁଚ୍ଛିଲେ ବିନୟଭାଷେ ରାଜେନ୍ଦ୍ରତନୟା,
''ଶୁଣିଛି ମୁଁ, ନିଅ ତୁମ୍ଭେ ଦୂତଗଣେ ପେଷି
ପ୍ରେତଆତ୍ମା, କିପାଁ ତେବେ ବିଜେ ହେଲ ନିଜେ,
ଆହେ ମହାପ୍ରଭୁ, ଏହା ପୁଚ୍ଛଇ ଶ୍ରୀପାଦେ।''
ପତିବ୍ରତା ପ୍ରତି ହୋଇ ଆର୍ଦ୍ର କରୁଣାରେ

ଉତ୍ତରିଲେ ନିଷ୍କରୁଣ, "ତୁମ୍ଭର ଏ ପତି
ବିଶ୍ୱେ ବିଶ୍ୱ-ପୂଜ୍ୟ ସାଧୁକୁଳଚୂଡ଼ାମଣି,
ନିଜେ ମୁଁ ଆସିଲି ତେଣୁ ତାକୁ ନେବା ଲାଗି
ସମ୍ମାନେ, ଇତର ଦୂତେ ଏ କାର୍ଯ୍ୟେ ନପେଶି।"
ଏହା କହି ଭୀଷଣଦର୍ଶନ ପ୍ରେତନାହା
ରାଜସୁତ ପ୍ରାଣ ନେଲେ ଆକର୍ଷି ସ୍ୱପାଶେ
ମାୟାରୂପୀ, ଆକୃତିରେ ବୃଦ୍ଧାଙ୍ଗୁଳିପ୍ରାୟେ,
ପ୍ରାଣ ଛାଡ଼ିଲାରୁ ରୁଦ୍ଧ ହେଲା ପ୍ରାଣବାୟୁ,
ଥଗିଲା ଶୋଣିତସ୍ରୋତ, କଳା ପଡ଼ି ଯାଇ
ଦେହଯାକ ହୋଇଗଲା ଶୀତଳ ନିମିଷେ,
ବାନ୍ଧି ସତ୍ୟବାନ ଜୀବ ଶମନ ନୀରବେ
ବିଜେ ହେଲେ ଭୀମରୂପୀ ଦକ୍ଷିଣାଶାମୁଖେ।
ସାବିତ୍ରୀ ରାଜେନ୍ଦ୍ରସୁତା ତାଙ୍କ ପଛେ ପଛେ
ଶୌଚ୍, ପତିପ୍ରେମ ଯୋଗୁଁ ମହାସାହସିନୀ
ଗୋଡ଼ାଇଲେ ତିଳେ ଭୀତି ନଭଜି ମାନସେ,
ହେଲେହେଁ ସ୍ୱଭାବେ ଭୀରୁ ମହାତେଜସ୍ୱିନୀ
ଭାମିନୀ, ନିର୍ମଳା ଯେଣୁ କର୍ମେ ବାକ୍ୟେ ମନେ।
ବାଳା ପ୍ରତି ଫେରି ଚାହିଁ ପ୍ରେତକୁଳସାଇଁ
କହିଲେ, "ଯା କଲୁ ତୁହି; ପ୍ରଚୁର ଏ ଭବେ
ପ୍ରେମପକ୍ଷେ, ଫେରି ଏବେ ଯାଅ ନିଜ ସ୍ଥାନେ,
ଆସିଲୁଣି ବହୁ ଦୂର, ବାହୁଡ଼ ତୁ ଏବେ,
ପତିର ଅନ୍ତ୍ୟେଷ୍ଟିକ୍ରିୟା କର ବିଧିମତେ।"
ଉତ୍ତରିଲେ ପତିବ୍ରତା, "ପତି ଯିବେ ଯହିଁ
ମୁଁ ଯିବି ଗହଣେ ତାଙ୍କ, ନିଷ୍ଠା ମୋର ଏହି,
ନାହିଁ ଆନ ଗତି ମୋର, ପାଳିଅଛି ଯେବେ
ଶୁଦ୍ଧାଚାରେ ସତୀବ୍ରତ, ସେବିଅଛି ଯେବେ
ଭକ୍ତିଭରେ ଗୁରୁଜନେ, ଯିବି ମୁଁ ଅବାଧେ।
କହନ୍ତି ଋଷିଏ ସପ୍ତପଦ ସଙ୍ଗେ ଗଲେ
ସାଧୁ ସଙ୍ଗେ ସାଧୁ, ମିତ୍ର ହୁଅନ୍ତି ବେନିଏ,
କହିବି ଛାମୁରେ ଖଣ୍ଡେ ଗାଥା ପୁରାତନୀ,
ଦିବ୍ୟ ଅବଧାନେ ଆସୁ, ହେ ପରେତପତି,
'ପାଳିବ ସ୍ୱକାର୍ଯ୍ୟ ଯେବେ ହୁଅ ଆତ୍ମେଶ୍ୱର,
ନିଜକୁ ସ୍ୱବଶେ ରଖି ନ ପାରେ ଯେ ନର,
ସକ୍ଷମ ନ ହୁଏ ହିତକାର୍ଯ୍ୟ ସମ୍ପାଦନେ,
କି ଯୌବନେ କି ବାର୍ଦ୍ଧକ୍ୟେ କି ଘରେ କି ବନେ,
ଏକମାତ୍ର ସୁଖ ଧର୍ମ କହନ୍ତି ଜ୍ଞାନୀଏ,
ଯେଉଁ ମାର୍ଗେ ତାହା ଲଭି ପାରନ୍ତି ସଭିଏଁ।
ଜ୍ଞାନ ଅରଜିବା ଭବେ ଅଟଇ ଦୁଷ୍କର,
ମାତ୍ର ଧର୍ମ ଆଚରଣ ଜ୍ଞାନୁ ଶ୍ରେୟସ୍କର।
କହନ୍ତି ସାଧୁଏ ତେଣୁ ଭାରତୀ ଯୁକତ,
ଧର୍ମର ଯେ ମାର୍ଗ ତାହା ସଭିଙ୍କି ମୁକତ।"
କହିଲେ ପରେତନାହା, "ନିଅ ନିଜ ରାହା,
ଭଦ୍ରେ, ଏବେ, ତୋହର ଏ ପବିତ୍ର ଭାରତୀ
ମଞ୍ଜୁଳ କୋମଳ ସାଧୁ ଅର୍ଥଯୁତ ଶୁଣି
ପ୍ରୀତି ତୋହଠାରେ, ସତି, ବହି ଅତିରେକେ
କହୁଛି ଅଦେୟ ଯା ତୋ ପତିପ୍ରାଣ ଛାଡ଼ି—
ମାଗିବୁ ଯେ ବର ତାହା ଦେବି ଏହିକ୍ଷଣି।"
ଉତ୍ତରିଲେ ଗୁରୁକୁଳବତ୍ସଳା ତରୁଣୀ,
"ମୋହର ପତିଙ୍କ ପିତା ଅନ୍ଧ ରାଜର୍ଷି
ଲଭନ୍ତୁ ସ୍ୱଚକ୍ଷୁ ପୁଣି, ଜରାଜୀର୍ଣ୍ଣ ଦେହେ
ହେଉନ୍ତୁ ସବଳ ସୁସ୍ଥ ତେଜସ୍ୱୀ ଦୀର୍ଘାୟୁ।"
"ଦେଲି ବର" ଉତ୍ତରିଲେ ଦେବ ମୃତ୍ୟୁପତି,
"ଯାଅ, ସାଧ୍ୱି, ଯାଅ ଏବେ ପୂରିବ ବାସନା,
ଶ୍ରାନ୍ତ ତୁମ୍ଭେ ମୋର ପଛେ ଏତେଦୂର ଆସି,
ମହାଦୀର୍ଘ ମହାରୂଢ଼ ପୁଣି ଏ ସରଣୀ,
ବାହୁଡ଼ ବିପନ୍ନ ଆଉ ନ କର ନିଜକୁ,
ସୁକୁମାର ପ୍ରାଣ ତୋର ଯିବଟି ବାହାରି।"
ଉତ୍ତରିଲେ ରାଜସୁତା, "ଶ୍ରାନ୍ତ କିଆଁ ମୁହିଁ
ହେବି, ପ୍ରଭୋ, ଅଛି ଯେଣୁ ପତିଙ୍କ ଗହଣେ,
ନେଉଛ ତାହାଙ୍କୁ ଯହିଁ ଯାଉଛି ମୁଁ ତହିଁ,
ଯହିଁ ତାଙ୍କୁ ନେବ ମୁହିଁ ଯିବି ପଛେ ପଛେ,
ଏ ଘେନି ଯେ ଗାଥା ମୁହିଁ କହିବି ଏକ୍ଷଣି
ଭୋ ଦେବ, ତା ଆସୁ ତୁମ୍ଭ ଦିବ୍ୟ ଅବଧାନେ।
"ସାଧୁ ସଙ୍ଗେ ସହବାସ ସବୁଠାରୁ ଶ୍ରେୟ,
ଯେମନ୍ତ ତା ଶ୍ରେୟ ତଥା ସାଧୁଙ୍କର ପ୍ରେୟ,
ଏକନିଷ୍ଠ ହୋଇ ସ୍ନେହ କରଇ ଯେ ଜନ,
କେଡ଼େ ସୁଖକର ତା'ର ସଙ୍ଗେ ବିଚରଣ,
ସେ ସ୍ନେହର ଫଳ ଅଟେ ମିଷ୍ଟ ଅତିଶୟ,
ପାରେ କି ମୁରୁଛି ତାକୁ କେହି ସହୃଦୟ?"
ସସ୍ମିତେ କହିଲେ ଯମ, "ସୁଶୀଳା, ତୋ ବାଣୀ
କେଡ଼େ ସୁମଧୁର, ଆହା, ଲଭିବେ ଜ୍ଞାନୀଏ
ଜ୍ଞାନ ଶୁଣି ତୋର ଏହି ସୁମଧୁର ଗାଥା,
ପତି ପ୍ରାଣ ଛାଡ଼ି, ଅୟି ମଞ୍ଜୁଳବାଦିନି,
ମାଗ କିଛି ବର, ଦେବି ସେ ବର ଆଗ୍ରହେ।"
କହିଲେ ସାବିତ୍ରୀ, "ମୋର ପତିଙ୍କର ପିତା
ସ୍ୱରାଜ୍ୟ ହରାଇ ଏବେ ଦାରୁଣ କଷଣେ
ନିର୍ବେଷିତ ହୋଇ କାଳ କାଟନ୍ତି କୁଟୀରେ,
ଲଭନ୍ତୁ ସେ ରାଜ୍ୟ ପୁଣି, ପୁଣି ଧର୍ମେ ନ୍ୟାୟେ
ପାଳନ୍ତୁ ପରଜା ଆଗେ ପାଳୁଥିଲେ ଯଥା।"
"ତଥାସ୍ତୁ" ଉଚ୍ଚାରି ଯମ ବାଳାକୁ ସମ୍ବୋଧି
କହିଲେ, "ଶ୍ୱଶୁର ତୋର ପୁଣି ସିଂହାସନେ
ବସିବେ, ପାଳିବେ ପ୍ରଜା ପାଳୁଥିଲେ ଯଥା
ନ୍ୟାୟ ଦୟା ଧର୍ମେ ପୂତ ଶାଶ୍ୱତ ବିଧାନେ;
ନେଲୁ ବର, ଯାଅ ଭଦ୍ରେ, ଅଗ୍ରସର ଆଉ

ନ ହୁଅ, ଦେଖୁଛ କେଡ଼େ କଠୋର ଏ ରାହା।''
''ଭୋ ଦେବ ଭୈରବରୂପୀ'' ଉତ୍ତରିଲେ ବାମା,
''ଦୁଷ୍ଟର ଦମନେ ପୁଣି ଶିଷ୍ଟର ପାଳନେ
ସଦା ବ୍ରତୀ, ଚଳାଉଛ ତୁମ୍ଭେ ସାଧୁପଥେ
ଚରାଚର, କି କହିବି ମୁହିଁ ଶ୍ରୀପୟରେ ?
ସଂହାର ତୁମ୍ଭର ବୃତ୍ତି, ମାତ୍ର ତାହା ତଳେ
ଭିତିରୂପେ ବିରାଜିତ ଭବହିତୈଷଣା,
ପ୍ରେମ ସେ ନିହିତ ତୁମ୍ଭ କଠୋରତା ମୂଳେ
ନିବେଦିବି ପୁଣି ଖଣ୍ଡେ ଗାଥା ପୁରାତନୀ,
ଶୁଣିବା ହେଉନ୍ତୁ ଦୁଃଖିଜନେ ଦୟା ବହି।
''ପ୍ରେମ ସେ ଅଟଇ ସାଧୁ ଜନଙ୍କର
ମୁଖ୍ୟ ଧର୍ମ ଭବତଳେ,
କି ଇତର ବଡ଼ ଛନ୍ତି ଯେତେ ପ୍ରାଣୀ
ସମାନ ତାଙ୍କୁ ସକଳେ।
ଦୟାପୂର୍ଣ୍ଣ ହୃଦେ ଦେଖନ୍ତି ସଭିଙ୍କି
ସମସ୍ତଙ୍କ ଶ୍ରେୟସ୍କର,
ମନେ କର୍ମେ ବାକ୍ୟେ ଆଚରନ୍ତି ପର-
ହିତ ହୋଇ ଦୟାପର।
ପ୍ରେମଟି ଧରମ, ଦୟାଟି ଧରମ,
ସାଧୁଙ୍କର ଏହା ମତ,
ମିତ୍ର ହୋଇ ଯାନ୍ତି ସାଧୁ ଶତ୍ରୁ ଯେବେ
ହୁଏ ପାଶେ ଉପଗତ।''
''ତୃଷାର୍ତ୍ତେ ସଲିଳ ପ୍ରାୟେ ତୋର ମୃଦୁ ବାଣୀ
ଲାଗଇ ମଧୁର ମୋତେ, ଅୟି ଶୁଚିଶୀଳେ।''
ଏହା କହି ପ୍ରେତପତି ଯାଚିଲେ ସାଦରେ
ବର ପୁଣି ମାତ୍ର ସତ୍ୟବାନ ପ୍ରାଣ ଛାଡ଼ି।
ବୋଇଲେ ସାବିତ୍ରୀ, ''ମୋର ପିତା ଅଶ୍ୱପତି
ପୁତ୍ରହୀନ, ପୁତ୍ରବର ଦେଇ ତାଙ୍କୁ ସୁଖୀ
କରନ୍ତୁ, ତାଙ୍କର ବଂଶ ସ୍ଥାୟୀ ସିଂହାସନେ
ହେଉ ଚିରଦିନ, ଏହା ମାଗଇ ପୟରେ।''
''ଶିଷ୍ଟ ଶାନ୍ତ ଶତ ସୁତ ମହାପରାକ୍ରମୀ
ଲଭିବେ ତୁମ୍ଭର ତାତ ଦାୟାଦସ୍ୱରୂପେ,
ତାଙ୍କ ବଂଶ ବହୁକାଳ ଶାସିବେ ଅବନୀ,
ଲଭିଲ ଅଭୀଷ୍ଟ ବର,'' – ଯମ ଏହା କହି
ଭାଷିଲେ କରୁଣେ ପୁଣି, ''ବହୁ ଦୂର ଏବେ
ଆସିଲଣି ଚାରୁଶୀଳେ, ବାହୁଡ଼ ସ୍ୱସ୍ଥାନେ।''
''ନୁହେ ଦୂର ଏହା ପ୍ରଭୋ,'' କହିଲା ତରୁଣୀ,
''ଅଛି ନାଥ ସଙ୍ଗେ ଯେଣୁ ଯିବି ଶେଷଯାଏ,
ଦୃଢ଼ ନିଷ୍ଠା ବାନ୍ଧିଅଛି ଏହା ମୁଁ ହୃଦୟେ।
ଅଭିରୁଚି ଯେବେ, ପ୍ରଭୋ, ଆଉ ଖଣ୍ଡେ ଗାଥା
ଶୁଣିବା ହେଉନ୍ତୁ, ପାଦେ ମୋର ଏ ମାଗୁଣି।
''ତୁମ୍ଭେ ଦେବ ବୈବସ୍ୱତ, ଧର୍ମରକ୍ଷା ତୁମ୍ଭ ବ୍ରତ
ପାଳନା ନୀତିର ଫଳେ, ସଂହାର ଜୀବ ସକଳେ,
ମାତ୍ର ନୁହେ ସେ ସଂହାର, କେବଳ ଅଟେ ସଂସ୍କାର,
ଅପାର ତୁମ୍ଭ ମହିମା, କିଏ ତା'ର ଜାଣେ ସୀମା,
ଧର୍ମରାଜ ନାମ ଧର, ସନ୍ଥଜନ ଦୁଃଖ ହର,
ତୁମ୍ଭେ ଦେବ ନ୍ୟାୟପତି, ନ୍ୟାୟଦାନେ ସଦା ବ୍ରତୀ,
ଧର୍ମ ଯେ ତୁମ୍ଭର ରାହା, ସାଧୁଙ୍କର ତୁମ୍ଭେ ନାହା,
ବିଶ୍ୱ ଯେ ସେ ସାଧୁଜନେ, ନିଜଠାରୁ ପ୍ରେୟ ମଣେ।''
ପ୍ରୀତି ବହି ପ୍ରେତପତି କହିଲେ ଏସନେ,
''ଶୁଣି ତ ନ ଥିଲି ଏଡ଼େ ମଧୁର ଭାରତୀ
କାହାରି ତୁଣ୍ଡରୁ କେବେ, ଦେବି ବର ପୁଣି,
ମାଗ ଯା ମାଗିବ ଦେବି, ଏହି ପ୍ରାଣ ଛାଡ଼ି।''
ଉତ୍ତରିଲେ ରାଜସୁତା, ''ସୁନ୍ଦର ସୁମତି
ସୁଦକ୍ଷ ବଳିଷ୍ଠ ଶତପୁତ୍ର ମୁଁ ଲଭିବି
ଯଥାକାଳେ ଏହି ସତ୍ୟବାନଙ୍କ ଔରସେ,
ହେ ଦେବ ବରଦ, ଦିଅ ଏହି ବର ମୋତେ।''
''ଦେଲି ବର'' ଉତ୍ତରିଲେ କାଳଦଣ୍ଡଧାରୀ,
''ଶିଷ୍ଟ, ଶାନ୍ତ, ମହାତେଜାଃ, ବଳେ ମହାବଳୀ,
ହେବୁ ତୁହି, ସତି, ଶତ ପୁତ୍ରର ପ୍ରସୂତି,
ଯାଅ ଏବେ ବାହୁଡ଼ି ତୁ ନିଜ ପ୍ରାଣ ନେଇ,
ଯାଅ ବେଗେ ଆସିଲୁଣି ବହୁଦୂରଯାଏ।''
ସୁମଧୁରତର ସ୍ୱରେ ସାବିତ୍ରୀ ସୁନ୍ଦରୀ
ମଧୁରମୂରତି ବାଳା ଗାଇଲା ଏସନେ,
''ସୁଜନ ଧର୍ମପଥେ ସଦା ଚରଇ,
କଲ୍ୟାଣ ତାକୁ ଆସି ନିଜେ ବରଇ।
ସନ୍ଥଜନେ କଦାପି ଦୁଃଖ ନ ପାରେ,
କୁଶଳ ଆସି ନିଜେ ଘଟେ ତା ଦ୍ୱାରେ।
ସତ୍ୟ ଯେ ସେ ଧର୍ମର ଅଟେ ଆଧାର,
ସତ୍ୟ ଧରେ ଧର୍ମକୁ, ଧର୍ମ ସଂସାର।
ସତ୍ୟ ଶିବ ସୁନ୍ଦର ସତ୍ୟ ମହାନ,
ନିଜେ ସତ୍ୟମୂରତି ଶ୍ରୀ ଭଗବାନ।
ସରଳ ସଦା ଭବେ ସତ୍ୟ ସରଣୀ,
ସତ୍ୟ ସେ ଭୀମ ଭବସିନ୍ଧୁ ତରଣୀ।
ସତ୍ୟ ସେ ଚଳାଉଛି ରବିଙ୍କି ନଭେ,
ସତ୍ୟରେ ଚାଲୁଛନ୍ତି ଗ୍ରହ ସରବେ।
ସତ୍ୟରେ ଦିଏ ପ୍ରଭା ଶଶୀ ନିଶାରେ,
ବ୍ରହ୍ମାଣ୍ଡ ମାଳଗୁନ୍ଥା ସତ୍ୟର ତାରେ।
ପବିତ୍ର ଯା ଜଗତେ ସତ୍ୟେ ନିହିତ,
ସନ୍ଥର ହୃଦ ସଦା ସତ୍ୟେ ଦୀକ୍ଷିତ।
ସତ୍ୟ ସେ ଛେଦେ କ୍ଷଣେ ମିଥ୍ୟାର ଜାଲ,
ସନ୍ଥରକ୍ଷଣେ ସତ୍ୟ ଅଭେଦ୍ୟ ଢାଲ।
ସତ୍ୟ ଧର୍ମ ଏ ବେନି ନିତି ସଂଯୁକ୍ତ,
ଏ ମହାବାଣୀ ବେଦେ ପୁରାଣେ ଉକ୍ତ।

ଏକ ବିନୁ ଅପର ଥାଇ ନପାରେ,
ସଛ ଯେ ସତ୍ୟ ତେଣୁ ନ ଟଳେ ଗାରେ।
ସତ୍ୟ ସେ ଦୀକ୍ଷା ଶିକ୍ଷା, ସତ୍ୟ ସେ ସାର,
ସବୁ କୁଶଳରଚି ସତ୍ୟ ଭଣ୍ଡାର।
ସତ୍ୟ ସେ ଅଟେ ସିନା ପରମପଦ,
ସତ୍ୟହିଁ ସେ ଅମୃତ ସର୍ବଶୁଭଦ।
ସବୁ ଉପରେ ସତ୍ୟ, ସତ୍ୟ ଉପରେ
ସବୁ ପ୍ରତିଷ୍ଠିତଟି ଏ ଚରାଚରେ।
ସତ୍ୟକୁ ଯେଉଁ ନର ଦୃଢ଼େ ଧରଇ,
ଭୀମ ଭବାର୍ଣ୍ଣବ ସେ ହେଳେ ତରଇ।''
କହିଲେ କୃତାନ୍ତ ହୋଇ ଗଦ୍ଗଦ ଆହ୍ଲାଦେ,
''ସୁଧା ବର୍ଷାଇଲୁ, ବତ୍ସେ, ଅକ୍ଷରେ ଅକ୍ଷରେ
ଶ୍ରବଣେ ମୋହର ତୋର ମଧୁର ସଙ୍ଗୀତେ।
ଆହା, କିବା ସୁପବିତ୍ର ତୋହର ଭାରତୀ!
ସର୍ବଶୁଭଭାଜନ ତୁ ଏ ମହୀମଣ୍ଡଳେ,
ଶ୍ଳାଘ୍ୟ ଏହି ବସୁନ୍ଧରା ବକ୍ଷେ ତୋତେ ଧରି,
କି ହୃଦୟ ଦେଇଛନ୍ତି ତୋତେ ବିଶ୍ୱଯୋନି
ଯା ଯୋଗୁଁ ପବିତ୍ର ତୁହି, ପବିତ୍ର ମେଦିନୀ।
ମାଗ ଯା ମାଗିବୁ, ସତି, ଯେବଣ ବାସନା,
ଯା ମାଗିବୁ, ଦେବି ମୁହିଁ ତୋତେ ଅକାତରେ।''
ଉତ୍ତରିଲା ପତିରତା ସୁପ୍ରସନ୍ନ ଅତି
ଦେଖି ପ୍ରେତନାଥେ, ''ଲୋଡ଼ୁ ନାହିଁ ମୁହିଁ ପ୍ରଭୋ,
ସ୍ୱର୍ଗ କିମ୍ୱା ସ୍ୱର୍ଗ ସୁଖ, କେବଳ ମାଗଇ
ମୋର ପ୍ରାଣପତିପ୍ରାଣ, ମୃତ ମୁଁ ଯା ବିନୁ,
ସେହି ସେ ବରର ବର, ସେହି ବର ବିନା
ଆନ ବରେ ନାହିଁ, ଦେବ, ମୋର କିଛି ଲୋଡ଼ା।
ମାଗୁ ନାହିଁ ଧନ ଜନ ପ୍ରତିଷ୍ଠା କୀରତି,
କିମ୍ୱା ସେହି ଶତ ପୁତ୍ର, ଯେ ବର ଆପଣେ
ଦେଇ ପ୍ରତିଶ୍ରୁତ ପୂର୍ବେ, ମୋ ଆଶା ଭରସା –
ସେହି ଶତ ପୁତ୍ରଙ୍କର ହେବେ ଯେହୁ ପିତା –
ତାଙ୍କୁ ବାନ୍ଧି ନେଇ ତୁମ୍ଭେ ଯାଉଛ ସଙ୍ଗତେ।
ପାଳ ନିଜ ପ୍ରତିଶ୍ରୁତି, ଆହେ ମହାମତି,
ମୁକୁଳାଇ ଦିଅ ମୋତେ ମୋର ପ୍ରାଣନାଥେ,
ନୋହୁ ଅବିତଥ, ଦେବ, ତୁମ୍ଭର ଭାରତୀ।''
ସ୍ତବ୍ଧଭାବ କ୍ଷଣେ ଭଜି ଉତ୍ତରିଲେ ତହୁଁ
ନ୍ୟାୟପତି ପ୍ରେତପତି, ''ଦେଲି ମୁକୁଳାଇ
ତୋ ପ୍ରାଣପତିକି ଏବେ, ନିଅ ତୁ ହରଷେ।
ନାରୀରତ୍ନ ନରଲୋକେ ତୁହି ସୀମନ୍ତିନୀ,
ଧନ୍ୟ ତୋ ସାଧନା, ଯେଉଁ ସାଧନାର ଫଳେ
ଅସାଧ ସାଧିଲୁ ତୁହି ହେଲେହେଁ ଅବଳା।
ପବିତ୍ରତା ମୂର୍ତ୍ତିମତୀ, ଶକ୍ତି-ସ୍ୱରୂପିଣୀ
ତୁହି ବତ୍ସେ, ପତି ତୋର ବଞ୍ଚିବେ ଏ ଭବେ
ବହୁକାଳ, ତାଙ୍କ ସଙ୍ଗେ ରହିବୁ ତୁ ସୁଖେ,
ରତ ହେବେ ନାନା ଯାଗ ଯଜ୍ଞ ଅନୁଷ୍ଠାନେ,
ସ୍ୱଧର୍ମେ ସେ ବଳୀ, ପୁଣି ତତୋଧିକ ବଳୀ
ତୋ ଭଳି ସାଧ୍ୱୀକି ଲଭି ସଧର୍ମିଣୀରୂପେ।
ପ୍ରସରିବ ତାଙ୍କ କୀର୍ତ୍ତି ଏ ବିଶ୍ୱମଣ୍ଡଳେ,
ପ୍ରାତଃସ୍ମରଣୀୟରୂପେ ବେନିଙ୍କର ନାମ
ଗାଇବେ ଜଗତେ ଲୋକେ ମହାଶ୍ରଦ୍ଧାଭରେ।
ଶତ ପୁତ୍ର ଜନମିବେ ପତିଙ୍କ ଔରସେ
ତୋର ଗର୍ଭେ, କ୍ଷତ୍ରକୁଳେ ମହାରଥିରୂପେ
ହେବେ ଖ୍ୟାତ, ତାଙ୍କ ଯଶଃ ଘୋଷିବ ଧରଣୀ।''
ଅନ୍ତର୍ଦ୍ଧାନ ହେଲେ ଏହା କହି ପ୍ରେତପତି,
ସତ୍ୱରେ ସାବିତ୍ରୀ ଧାଇଁଗଲେ ସେହିଠାବେ
ଦୟିତର ମୃତଦେହ ପଡ଼ିଥିଲା ଯହିଁ,
ଯାଇ କୋଳେ ଧରି ଶିର ଉଠାଇଲେ ଧୀରେ।
ପ୍ରିୟାସ୍ପର୍ଶେ ଉଷ୍ଣ ପ୍ରାଣ ପଶିଲା ସେ ଦେହେ,
ସ୍ତିମିତନୟନେ ପୁଣି ସଞ୍ଚରିଲା ଜ୍ୟୋତି,
ଧୀରେ ଧୀରେ କ୍ଷୀମପାଣ୍ଡୁ ଅଧର କମ୍ପିଲା,
ନିଦ୍ରାରୁ ଉଠିଲା ପ୍ରାୟେ ଉଠିଲେ ସଚେତେ।
ସତ୍ୟବାନ, ପ୍ରେୟସୀକି କହିଲେ ସମ୍ବୋଧି,
''ଶୋଇଗଲି ବହୁ ବେଳ ମୁହିଁ, ପ୍ରିୟତମେ,
ନ ଜଗାଇ ମୋତେ କିଆଁ କଲ ମଠ ଏଡ଼େ?
କାହିଁ ଗଲେ କୃଷ୍ଣବର୍ଣ୍ଣ ବିରାଟ-ମୂରତି
ସେ ପୁରୁଷ, ଉଭାହୋଇଥିଲେ ଯେ ମୋ ଆଗେ?''
ଉତ୍ତରିଲେ ରାଜବାଳା, ''ବହୁ ବେଳଯାଏ
ଶୋଇଯାଇଥିଲ, ନାଥ, ଗାଢ଼ ନିଦ୍ରାବଶେ।
ସେ କୃଷ୍ଣ-ପୁରୁଷ ଦେବ କାଳଦଣ୍ଡପାଣି,
ହେଲେଣି ସେ ଅନ୍ତର୍ଦ୍ଧାନ, ଉଠ ତୁମ୍ଭେ ଏବେ
ଉଠିବାକୁ ଶକ୍ତି ଯେବେ ହୋଇଛି ଏ ଦେହେ,
ବେଳ ବୁଡ଼ିଲାଣି, ନାଥ, ଆସନ୍ନ ଶର୍ବରୀ।''
ନବ ପ୍ରାଣ ଲଭି ନବ ଜାଗରଣ ପରେ
ଛାୟାପୁଞ୍ଜେ ତମୋମୟ ବନସ୍ଥଳୀ ପ୍ରତି
ଅନାଇ କହିଲେ ରାଜକୁମର ବିସ୍ମୟେ,
''ଆସିଥିଲି ମୁହିଁ ପୁଷ୍ପ ଫଳ ଆହରଣେ
ତୁମ୍ଭ ସଙ୍ଗେ, କାଷ୍ଠ ଛେଦୁଁ ଛେଦୁଁ କି ଯନ୍ତ୍ରଣା
ହେଲା ମୁଣ୍ଡେ ମୋର, ଶୋଇପଡ଼ିଲି ତୋ କୋଳେ
ଅଛି ମୋର ମନେ ସବୁ; ତା ପରେ କି ହେଲା
ଦେଖିଲି କି ସ୍ୱପ୍ନ ମୁହିଁ? ବିରାଟ-ଆକୃତି
କରାଳ ପୁରୁଷ କେହି ଆଗେ ହେଲେ ଉଭା,
ଦେଖିଥିଲଟିକି ତୁମ୍ଭେ ତାଙ୍କୁ ସୁଲୋଚନେ?
ସତ୍ୟ ଏହା, ଅବା ମୋହ ମାୟାର ଛଳନା?''
ମୃଦୁଭାଷେ ଉତ୍ତରିଲେ ନରେନ୍ଦ୍ର ନନ୍ଦିନୀ,
''ଆସିଲାଣି ରାତ୍ରି, ନାଥ, ନିବେଦିବି କାଲି;

ଉଠ, ଚାଲ ଯିବା ଏବେ ବାହୁଡ଼ି ଆଶ୍ରମେ:
ଘୋଟିଲାଣି କି ନିବିଡ଼ ତମ ଚଉଦିଗେ,
ନିଶାଚର ପଶୁ ଏବେ ସ୍ୱବାସୁ ବାହାରି
ଭ୍ରମୁଛନ୍ତି ଦଳେ ଦଳେ, ଖଡ଼ଖଡ଼ ଶୁଭେ
ତରୁପର୍ଣ୍ଣେ ଶ୍ୱାପଦର ସଞ୍ଚରଣଧ୍ୱନି।
ଦକ୍ଷିଣ କାନନୁ ଶୁଭେ ଫେରୁଙ୍କର ରଡ଼ି
କି ଭୀଷଣ; ଭ୍ରମୁଥିବେ ବ୍ୟାଘ୍ରେ ଅବା ତହିଁ,
ବଡ଼ ଭୟ ମାଡ଼େ ମୋତେ ଚାଲ ବେଗ କରି।''
ଉତ୍ତରିଲେ ସତ୍ୟବାନ, ''ଘୋଟିଲାଣି ତମ
ଚଉଦିଗେ ବନସ୍ଥଳେ, ବାରି ହେବ ନାହିଁ
ମାର୍ଗ ଏଥି, ତୁମ୍ଭେ ପୁଣି ଅତି ସୁକୁମାରୀ,
ଯାଇ ହେବ ନାହିଁ ଆଜ, ରହ ଏହିଠାବେ।''
କହିଲେ ସାବିତ୍ରୀ ସତୀ, ''ଆଜ ଏହି ଦିଗେ
ଜଳୁଥିଲା ଦାବାନଳ, ଏବେ ସୁଦ୍ଧା ଜଳେ
ଶୁଷ୍କ ତରୁ ସ୍ଥାନେ ସ୍ଥାନେ, ଆଣିବି ଏକ୍ଷଣି
ହୁଳା ଜାଳି, ଯିବା ଲାଗି ଯେବେ, ଅଭିରୁଚି,
ଶ୍ରାନ୍ତ ତୁମ୍ଭ ଦେହ ଯେବେ, ରହିବା ଏଠାବେ
ରାତ୍ରଯାକ, ଉଷାଯୋଗେ ଯିବା ନିଜ ସ୍ଥାନେ।''
ଉତ୍ତରିଲେ ସତ୍ୟବାନ, ''ଗଲାଣି ବେଦନା,
ଅସାଷ୍ଟମେ ଶୋଇଥିଲି ଯେ ବେଦନାଯୋଗୁଁ,
ସବଳ ମୁଁ ଏବେ, ପ୍ରିୟେ, ତୁମ୍ଭେ ସାହା ହେଲେ
ନିଜାଶ୍ରମେ ବାହୁଡ଼ି ମୁଁ ଯିବି ଅନାୟାସେ।
ପ୍ରତିଦିନ ଯାଇ ମୁହିଁ ବନ୍ଦଇ ଆଶ୍ରମେ
ଉତ୍କଣ୍ଠିତ ଗୁରୁଜନପାଦ ସାୟଂକାଳେ,
ଚିନ୍ତାରେ ବିକଳ ହେବେ ଆମ୍ଭଙ୍କୁ ନ ଦେଖି
ପିତା ମାତା, ଅରକ୍ଷ ଯେ ଆମ୍ଭର ବିହୁନେ।
ଚଞ୍ଚଳେ ଫେରିବାପାଇଁ ଆଦେଶିଣ ଥିଲେ
ବେନି ମୋତେ, ବାହାରିଲି ତୁମ୍ଭ ସଙ୍ଗେ ଯେବେ।
କହିଲେ ସମ୍ବୋଧି ମୋତେ, 'ଆସିବୁ ବାହୁଡ଼ି
ବେଗେ, ବାବୁ, ତୋହ ଯୋଗେ ବର୍ତ୍ତିଛୁଁ ଜୀବନେ,
ତୁହି ସେ ଆମ୍ଭର ଆଶା ଭରସା ଏ ଭବେ,
ସଙ୍ଖାଳି ଆମ୍ଭର ତୁହି, ଇହ ପର ଲୋକେ,
ତୋ ବିନୁ ଆମ୍ଭର, ବାବୁ, ନାହିଁ ଆନ ଗତି,
ଅନ୍ତକାଳେ ତୁହିଁ ସିନା ବିହିବୁ ସତ୍କ୍ରିୟା
ଏ ବେନିର, ତରପିବୁ ପିଣ୍ଡୋଦକଦାନେ।'
କିସ ଭାଳୁଥିବେ ବେନି ଆମ୍ଭଙ୍କୁ ନ ଦେଖି!
ଧିକ ମୋତେ! ଏତେକାଳ ଗଲି ଯା ମୁଁ ଶୋଇ,
ପୁଚ୍ଛୁଥିବେ ଆମ୍ଭ କଥା ବନଚାରୀ ଜନେ
ଜଣ ଜଣ କରି ବନୁ ବାହୁଡ଼ିବାବେଳେ।
ଆମ୍ଭପାଇଁ ଚିନ୍ତା ମୋର ନାହିଁ ପ୍ରିୟତମେ,
ଚିନ୍ତା ସେ ତାଙ୍କରିପାଇଁ, ତାଙ୍କର କୁଶଳେ
କୁଶଳ ଆମ୍ଭର ସିନା, ସନ୍ତୋଷ ସର୍ବଥା,
ତାଙ୍କ ସେବା ଇଷ୍ଟତମ ଆମ୍ଭର ଜଗତେ।''
ଏହା କହି ସତ୍ୟବାନ କାନ୍ଦିଲେ ବିକଳେ,
ବିଷାଦେ ତାଙ୍କର ହୋଇ ବ୍ୟଥିତା ଦୟିତା,
ପୋଛିଦେଲେ ସ୍ନେହଭରେ ଲୋତକ ନୟନୁଁ,
କହିଲେ ସାଦରେ ପୁଣି ପତି ପ୍ରତି ଚାହିଁ,
''ନିଷ୍ଠା କରି ସେବିଥିବି ଯେବେ ଗୁରୁଜନେ,
ପାଳିଥିବି ବ୍ରତମାନ ଉପବାସ ଆଦି,
ବାହାରିନଥିବ ଯେବେ ଏ ତୁଣ୍ଡରୁ କେବେ
ପରିହାସ ଛଳେ ସୁଦ୍ଧା ଅସତ୍ୟ ଭାରତୀ,
ଉଜ୍ଜ୍ୱଳ ମୋ ଗିରେ ହେବ ତାମସୀ ଶର୍ବରୀ
ବନଭୂମେ, ଚାଲ ଏବେ ଯିବା ନିଜାଶ୍ରମେ,
ଭେଟିବା କୁଶଳେ ଯାଇ ବେନି ଗୁରୁଜନେ।''
ଉତ୍ତରିଲେ ସତ୍ୟବାନ, ''ଅକୁଶଳ ଘଟେ
କିଛି ଗୁରୁଜନେ ଯେବେ, ନ ପାରିବି ଜିଇ,
କହିଲି ନିକର ତୋତେ, ତୁହି ପତିବ୍ରତା,
ପବିତ୍ରହୃଦୟା, ପ୍ରିୟେ, ସାହା ହୁଅ ମୋତେ।''
ଉଠିଣ ସାବିତ୍ରୀ ତହୁଁ, କେଶଗୁଚ୍ଛ ବାନ୍ଧି
ସୁକେଶିନୀ ଉଠାଇଲେ ନାଥେ ଭୁଜଯୁଗେ;
ଉଠି ସତ୍ୟବାନ ବସ୍ତ୍ରୁଁ ପକାଇଲେ ଝାଡ଼ି
ବୃକ୍ଷପତ୍ର, ଫଳପୂର୍ଣ୍ଣ ଚାଙ୍ଗୁଡ଼ାକୁ ବାଳା,
ନାଥଙ୍କୁ ଅଶକ୍ତ ଜାଣି ତାହାର ବହନେ,
ଓହଳାଇ ଦେଲା ନେଇ ବନ ତରୁଡ଼ାଳେ,
ପରଦିନ ଆସି ତାହା ନେଇଯିବ ବୋଲି।
କୁଠାରକୁ ବାମକରେ ଘେନି ସୀମନ୍ତିନୀ,
ଦକ୍ଷଭୁଜ ପତିସ୍କନ୍ଧେ ଥୋଇ ପ୍ରେମଭରେ
ବାହାରିଲା ମୃଦୁପଦେ ନିଜାଶ୍ରମମୁଖେ,
ପ୍ରବେଶିଲେ ବେନି ତହିଁ ନିଶାଶେଷଯାମେ।
ଏଣେ ଚିନ୍ତାକୁଳ ଅତି ଅନ୍ଧ ରାଜଋଷି
ଲଭିଲେକ ନଷ୍ଟ ଚକ୍ଷୁଯୁଗ ଅଦ୍ଭୁତେ,
ଋଷିଙ୍କୁ ଡକାଇ ରାଜା ନିବେଦି ଏ କଥା
ପୁତ୍ର ପୁତ୍ରବଧୂ କଥା ପୁଚ୍ଛିଲେ ବିନୟେ।
ସ୍ୱସ୍ତି ବୋଲି ପ୍ରବୋଧିଲେ ତାହାଙ୍କୁ ଋଷିଏ,
ପ୍ରବେଶିଣ ପୁତ୍ର ପୁତ୍ରବଧୂ ଏହି କାଳେ
ବନ୍ଦିଲେ ଗୁରୁଙ୍କ ପଦ, ବନ୍ଦିଲେ ଋଷିଙ୍କି,
ପୁଚ୍ଛିବାରୁ ବାର୍ତ୍ତା, ରାଜସୁତା କରପୁଟେ
ନିବେଦିଲା ଘଟିଣ ଯା ଥିଲା ବନସ୍ଥଳେ।
ଆନନ୍ଦେ ଋଷିଏ ଅଭିନନ୍ଦିଲେ ସତୀଙ୍କି,
ଘୋଷିଲେ ସାବିତ୍ରୀ ଯଶ ଗଦ୍‌ଗଦେ ଏସନେ,
''ଧନ୍ୟରେ ସାବିତ୍ରି ଧନ୍ୟ, ହେଲେହେଁ ତୁ ଶିଶୁ
ଅଥବା ଆମ୍ଭର ଶିଷ୍ୟା, ସକ୍ଷମ ଯେ ତୁହି
ମହାଜ୍ଞାନୀଙ୍କର ଶ୍ରଦ୍ଧା ଭକ୍ତି ଆକର୍ଷଣେ,
ହେଲେହେଁ ତୁ ଶିଶୁ କିମ୍ବା ଜାତ ନାରୀକୁଳେ,

ଜଗତର ବନ୍ଦନୀୟା ତୁହି ଅନିନ୍ଦିତା,
ଗୁଣିଜନେ ନାହିଁ ବୟଃ ଲିଙ୍ଗ ବିଚାରଣା।
ଜୟବୈଜୟନ୍ତୀ ତୁହି ସତୀତ୍ୱର, ସତି,
ସର୍ବଜୟୀ ଯମ ତୁହି ଜିଣି ଅବହେଳେ
ଖଣ୍ଡାଇଲୁ ତୋ ନାଥର ନିୟତିର ଲିପି।
ତା ଘେନି ସୁଭଗା ତୁହି, ତତୋଧିକ ପୁଣି
ତୋ ଘେନି ସୁଭଗ ତୋର ପତି ସତ୍ୟବ୍ରତୀ,
ଚରିଜୀବୀ ହୋଇ ବେନି ରହ ସର୍ବସୁଖେ।
ଚାରିତ୍ର୍ୟ-ବଳରେ, ତୋର ଏ ପବିତ୍ର କଥା
ନାରୀଙ୍କର ହେଉ ଭବେ ଚାରିତ୍ର୍ୟ-ପଞ୍ଜିକା।''
ଦ୍ୟୁମତ୍‌ସେନ ରାଜ୍ୟୁଁ ଆସି ପ୍ରଣିଧି ଏ କାଳେ
ଜଣାଇଲା ଶତ୍ରୁଙ୍କର ନିଧନବାରତା,
ଆମନ୍ତ୍ରିଲା ବସିବାକୁ ହୃତ ସିଂହାସନେ।
ହୃଷ୍ଟମତି ପ୍ରଜାଙ୍କର ଆମନ୍ତ୍ରଣ ପାଇ,
ରାଜା, ରାଣୀ, ପୁତ୍ର, ପୁତ୍ରବଧୂ ମହୋଲ୍ଲାସେ
ନିଜ ରାଜ୍ୟେ ଫେରି ଗତହେଲେ ମହୋତ୍ସବେ।

□ □ □

# ମ ହେ ନ୍ଦ୍ର ଗି ରି

**ଉ ତ୍ସ ର୍ଗ ପ ତ୍ର**

ଉତ୍କଳ-ନନ୍ଦନାଗ୍ରଣୀ, ଉତ୍କଳ-ନନ୍ଦନ, ଶ୍ରୀଯୁକ୍ତ ମଧୁସୂଦନ ଦାସ, ସି.ଆଇ.ଇ.
ମହୋଦୟଙ୍କ ମହନୀୟ ନାମରେ ଉତ୍ସର୍ଗୀକୃତ।

(ଅସମ୍ପୂର୍ଣ୍ଣ କାବ୍ୟ) *

ଏତେଦିନେ ହେଲା ମୋ ନେତ୍ରଗୋଚର
ଉତ୍କଳମଣ୍ଡଳେ ଶିଖରି-ଶେଖର।
ମହୀୟାନ ଏହି ମହେନ୍ଦ୍ର ପର୍ବତ,
ଅବୟବ ଯାର ଭୀମ ହୈମବତ।
ଦୃଷ୍ଟି ମାତ୍ର କରେ ସ୍ତବଧ ହୃଦୟ,
ସତ୍ତାର ସ୍ୱାତନ୍ତ୍ର୍ୟ କରି ଦିଏ ଲୟ।
ଉତ୍କଳେ ରାଜନ୍ତି ଯେତେ ଗିରିକୁଳ
ନୁହନ୍ତି ଯା ଦେହ-ବଳି-ସମତୁଲ।
ଉତ୍କଳେ ଯେ ଗିରି ଗିରିଙ୍କର ଗୁରୁ,
ମହୀତଳେ ଶୈଳେ ଯଥା ଗୌରୀଗୁରୁ।
ଉତ୍ତୁଙ୍ଗ, ମହାନ, ବିରାଟ, ପୁରାଣ,
ମହିମା ଯାହାର ଘୋଷଇ ପୁରାଣ।
ଦେବାତ୍ମା, ଭୀଷଣବପୁ, ଅଭ୍ରଂକଷ,
ଯାଦଃପତି ଯାର ଯୋଗ୍ୟ ଆଦରଶ।
ଗିରିଚକ୍ରବର୍ତ୍ତୀ ଯେହୁ ଉତ୍କଳରେ,
ପ୍ରତ୍ୟୁଷେ ସର୍ବାଗ୍ରେ ବାଳାରୁଣକରେ।
ଯା ଶୃଙ୍ଗ ପରଶ ଛଳେ ଦିବାକର
ଚୁମ୍ବନ୍ତି ଉତ୍କଳ-ଧରା-ବିମ୍ବାଧର।
ଉତ୍କଳେ ଅଖିଳ ସୁଷମାର ଧାମ
ବକ୍ଷେ ଧରି ଯାକୁ ଧନ୍ୟ ଏ ଗଞ୍ଜାମ।
ଅତୁଳ ଉତ୍କଳେ ସିନା ଏହି ଧରା,
ପ୍ରକୃତି-ବିଭବେ ବିଶ୍ୱ ମନୋହରା।
ସମଗ୍ର ଉତ୍କଳ-ଶୋଭା-ତିଳୋତ୍ତମା,
ଛବିଳ ଉତ୍କଳେ ଏ ଛବିଳତମା।
ଏ ଗଞ୍ଜାମ ମହୀ ମଞ୍ଜୁ-ଶତଦଳ,
କେଶର ତହିଁ ଏ ମହେନ୍ଦ୍ର ଅଚଳ।
ଉତ୍କଳଲକ୍ଷ୍ମୀର ପ୍ରିୟ ଅଟ୍ଟାଳିକା,
ବିଶ୍ୱାଲୋକେ ଇନ୍ଦ୍ରନୀଳ ବଳଭିକା।
ବିମାନଚାରିଣୀ ହେମାଭ୍ରବାହନା
ଅମରୀଙ୍କ ସଙ୍ଗେ ଯହିଁ ଚନ୍ଦ୍ରା ନନା।
ଅମରୀ ବାଞ୍ଛିତ ଭଜି ଏ ବିଜନ
କରନ୍ତି କୌତୁକେ ପ୍ରିୟ ସମ୍ଭାଷଣ।

* ଏହି କାବ୍ୟ ମୁଁ ଆରମ୍ଭ ମାତ୍ର କରିଥିଲି। ସମ୍ପୂର୍ଣ୍ଣ କରିବାର କିମ୍ବା ଲିଖିତାଂଶ ସଂଶୋଧନ କରିବାର ସୁବିଧା ମୁଁ ପାଇନାହିଁ। ମହେନ୍ଦ୍ରପର୍ବତ ମୁଁ କେବଳ ଦୂରରୁ ଦେଖିଥିଲି। ଯାହା ଲେଖିଅଛି, ସେଥିର ଅଧିକାଂଶ ଅନୁମାନ ଏବଂ ଜନପ୍ରବାଦମୂଳକ। – ଲେଖକ

କୌତୁକେ କହନ୍ତି ମର୍ତ୍ତ୍ୟର ବାରତା,
ଶୁଣନ୍ତି ସୁଦୂର ଜଗତର କଥା ।
କଳ୍ପନା ଯୋଗାଇ ଦେଲାରୁ ବାହନ
ସେ ବାହନେ କଲି ଗିରି ଆରୋହଣ । (୧)
ଦୟା ବହି ସେହି କଳ୍ପନା-ସୁନ୍ଦରୀ,
ଗିରିମାର୍ଗେ ମୋର ହେଲେ ସହଚରୀ ।
ଛଅ ସ୍ତର ଗିରି ଲଙ୍ଘି ପରେ ପରେ
ଉଠିଲି ଶେଷେ ମୁଁ ମହେନ୍ଦ୍ର ଶିଖରେ ।
ଜାଡ଼େ ଦେହ ଥରି ଉଠେ ଦିବାଭାଗେ,
ଓଳିକ ଭିତରେ ବୈଶାଖ କି ମାଘେ
ହେଲା ପରିଣତ, ହୁଅଇ ପରତେ,
ଅନଳ ସେବନେ ବାସନା ନିରତେ ।
ଚଉଦିଗେ ଏ କି ଦୃଶ୍ୟ ମହୀୟାନ,
ତ୍ରିଦିବର ଏ କି ପ୍ରଥମ ସୋପାନ ।
ପାଦ ଗିରିମାଳା ପରେ ପରେ ତଳେ
କ୍ରମେ ଯାଇ ମିଶିଛନ୍ତି ଧରାତଳେ ।
ଆଗେ ଦିଶୁଥିଲେ ଯେହୁ ମହାତୁଙ୍ଗ,
କେତେ ତଳେ ରହି ଗଲେଣି ସେ ଶୃଙ୍ଗ ।
ଭୁଜଙ୍ଗ ଗତିରେ ନିମ୍ନେ ଗିରିପଥ
ଉଠିଛି କି ରଙ୍ଗେ ପର୍ବତୁଁ ପର୍ବତ ।
ବର୍ତ୍ମ ବେନି ପାର୍ଶ୍ୱେ ଭୀମ ଗୁହାମାନ
କରିଛନ୍ତି କାହିଁ ବଦନ ବ୍ୟାଦାନ ।
କିବା ସେ ଅତଳ ପାତାଳର ଦ୍ୱାର,
ଅନ୍ଧାରର ଅବା ଶାଶ୍ୱତ ଆଗାର ।
ଦୂରାଗତ ଝର-ଝର୍ଝର-ଶବଦ
ଯୋଗେ କାହିଁ ବର୍ତ୍ମ ଶାନ୍ତିରସାସ୍ପଦ ।
ଝିରି ଝିରି ହୋଇ ଝରଇ ସଲିଳ
କାହିଁ ଧୋଇ ସେହି ବର୍ତ୍ମ କର୍କରିଳ ।
ରଞ୍ଜିଛନ୍ତି ଖର କରଜାଳେ ରବି
ଛବିଳା-ଧରିତ୍ରୀ ମନୋହର ଛବି ।
ମେଘ, କୁହେଳିକା, ଛାୟାରେ ମେଦୁର
ହୋଇ ଦୃଶ୍ୟ କାହିଁ ଦିଶଇ କର୍ବୁର,
ଶ୍ୟାମଳିତ ନାନା ବନସ୍ପତିମାଳେ
ଉପତ୍ୟକାରାଜି ଶୋହେ ଅନ୍ତରାଳେ ।
ଯହିଁ ଠାବେ ଠାବେ ଉଭିଦର ସ୍ତର
ଭେଦି ଊର୍ଦ୍ଧ୍ୱେ ଟୋଳେ ମସ୍ତକ ପ୍ରସ୍ତର ।

ଟୋଳିଛନ୍ତି ଶିର କାହିଁ ଅଗଣିତ
ଶିଳାସ୍ତୂପ ଘନ– ବିଟପେ ବେଷ୍ଟିତ ।
ଠାବେ ଠାବେ ପୁଣି ଟାଙ୍ଗର ମୁଣ୍ଡିଆ
ଉଭା ରୁକ୍ଷ ଟଙ୍କ, ରଗଡ଼ି ମୁଣ୍ଡିଆ ।
କାହିଁ ସ୍ତମ୍ଭାକାରେ ପାଷାଣ ଗୋଦନ୍ତ (୨)
ଦିଶେ ଉଭା କି ସେ ଦାନବ ଦୁରନ୍ତ ।
ବୋଳିଦିଏ ନେତ୍ରେ କିବା ସ୍ନିଗ୍ଧସୁଧା
ସର୍ବତଳେ ହରିଦ୍‌ବସନା-ବସୁଧା ।
ସିନ୍ଧୁ ଜଳେ ଦେଖି ଲହରୀ ପ୍ରେଙ୍ଖୋଳା
ବନେ ଦେଖି ବନ-ଲତା-ଲୀଳା-ଦୋଳା ।
ଭଜି ଯହିଁ କୁଞ୍ଜ ନିଳୟ ମଞ୍ଜୁଳ
ମହୋଲ୍ଲାସେ ଜଳ-ବନ-ଦେବୀକୁଳ,
ବିନିମୟ ରଙ୍ଗେ କରନ୍ତି ଆଦରେ
ସିନ୍ଧୁରତ୍ନ, ବନପୁଷ୍ପ ପରସ୍ପରେ ।
ଜୈତ୍ରଯାତ୍ରା କାଳେ ତ୍ରେତାରେ ପ୍ରମୋଦେ
ନାରିକେଳାସବ ରଘୁଙ୍କର ଯୋଧେ
ମହାଦମ୍ଭେ ମାତି ସମରତରଙ୍ଗେ
ପିଇଥିଲେ ଯହିଁ ଶତ୍ରୁ ଯଶ ସଙ୍ଗେ ।
ପ୍ରକଟି ଶ୍ୟାମଳ ଶିରୀ ଯେଉଁ ସ୍ଥଳୀ
ଅଧଃକୃତ କରେ ସୁଷମା ସୈଂହଳୀ ।
ନାରିକେଳ-ପୂଗ-ଖର୍ଜୁରେ ମଣ୍ଡିତ,
ସାଗର ସମୀରେ ସଦା ମର୍ମରିତ ।
କେତକୀ, ଚମ୍ପକ, ସୁରପୁନ୍ନାଗର (୩)
ଆମୋଦେ ମୋଦିତ ଯେହୁ ନିରନ୍ତର ।
ସହ୍ୟାଦ୍ରିର ନିତ୍ୟବର୍ଷ-ଦେଶମାନ (୪)
ଉର୍ବରତା ଗୁଣେ ଯାର ଉପମାନ,
ସେହି ସେ ଉଦ୍ୟାନଖଣ୍ଡର ନୀଳିମା (୫)
ବାରିଦିଏ ଶେଷେ ଧରିତ୍ରୀର ସୀମା ।
ତା ପରେ କର୍ପୂର-ଶୁଭ୍ର ବେଳା ପାରେ
ନୀଳ ସିନ୍ଧୁ ଶୋହେ ଅର୍ଦ୍ଧ-ଚନ୍ଦ୍ରାକାରେ ।
ପ୍ରାଚୀ ମୂଳେ ସଦା ତରଙ୍ଗ-ଭଙ୍ଗୁର,
ଗର୍ଜନେ ଯାହାର କମ୍ପେ ମର୍ତ୍ତ୍ୟପୁର ।
ବାରୁଣୀରେ ଏଣେ ଚକ୍ରବାଳଯାଏ
ଇନ୍ଦ୍ରନୀଳମଣି ବିମାନ ପରାଏ ।
ଅଗଣିତ ଶୈଳ-ଶୃଙ୍ଗ ପରେ ପରେ
ଶୋଭନ୍ତି ଉଜ୍ଜ୍ୱଳ ବେଶେ ସୌରକରେ ।

(୧) ମହେନ୍ଦ୍ରଗିରି ଆରୋହଣର ସୁବିଧା ମୋହ ଭାଗ୍ୟରେ ଘଟି ନାହିଁ । (୨) ଗୋଦନ୍ତ– ଅର୍କମଣିଳା । (୩) ସୁରପୁନ୍ନାଗ– ଛୁଣିଅନା । (୪) ସହ୍ୟାଦ୍ରିର ପଶ୍ଚିମରେ ଏହି ଦେଶ ଅବସ୍ଥିତ । ପ୍ରତ୍ୟହ ବର୍ଷା ଯୋଗୁଁ ଏହା ଅତିଶୟ ଉର୍ବରା । (୫) ଉଦ୍ୟାନଖଣ୍ଡ– ଏହି ଉଦ୍ୟାନଖଣ୍ଡ ଗଞ୍ଜାମରୁ ଆରମ୍ଭ ହୋଇ ଦକ୍ଷିଣାପଥର ବହୁଦୂର ପର୍ଯ୍ୟନ୍ତ ବିସ୍ତୃତ । ଗଞ୍ଜାମର ଏହା ଗୋଟିଏ ପ୍ରଧାନ ଦୃଶ୍ୟ । ରଘୁବଂଶର ଚତୁର୍ଥ ସର୍ଗରେ ଏଥିର ଉଲ୍ଲେଖ ଅଛି ।

ଉଦ୍‌ବେଳ ନୀଳିମା ସିନ୍ଧୁରୁ ଉଠିଛି।
ଆକାଶେ କିଅବା ବୀଚି ପରେ ବୀଚି!
ଚମ୍ପା, ଆମଳକ, ତମାଳ, ଅଠିଳ—
ତରୁରେ ମହେନ୍ଦ୍ର ମସ୍ତକ ଜଟିଳ।
ନଭସ୍ତଳଚୁମ୍ବୀ ଏ ଜଟିଳ ଶିର,
କିରୀଟ ପରାଏ ଭୀମର ମନ୍ଦିର। (୧)
ଏଥିପରେ ଥାଇ, ଅତି ପୁରାତନ,
ଦୂରୁ ଓଟାରଇ ପାନ୍ଥର ନୟନ।
ବିଟପଶ୍ମଶ୍ରୁଳ-ଶୈଳ-ଚିବୁକର
ବେନି ଦିଗେ ଝରେ ବେନି ପୂତ ଝର।
ବାରି ଯାର ସଦା ପ୍ରସନ୍ନ ସୁରସ,
ହରିଦ୍ୱାରେ ଯଥା ସ୍ରୋତ ତ୍ରୈସ୍ରୋତସ।
ମହେନ୍ଦ୍ରତନୟା ନାମେ ନିମ୍ନେ ବହି
ବେନି ମଧ୍ୟେ ଏକ ସାଗରେ ମିଶଇ।
ରାଜହଂସ-ଅବତଂସା ବଂଶଧାରା—
ସ୍ରୋତେ ମିଶେ ସେହି ନାମେ ଅନ୍ୟ ଧାରା।
ମଦ ଧାରା ଯଥା ମଦମତ୍ତ ଦନ୍ତି—
ଗଣ୍ଡସ୍ଥଳେ ସ୍ରବେ, ଏ ବେନି ସ୍ରବନ୍ତୀ।
ଶୋଭନ୍ତି ତେସନ ମହେନ୍ଦ୍ରର ଶିରେ
ସ୍ନିଗ୍ଧ କରି ଗିରି ଅଙ୍ଗ ସୁଧାନୀରେ।
ଶୋହେ ଶୈଳତଟେ ସରସୀପଲ୍ୱଳ
ବିକସିତ ଯହିଁ ଜଳ— ପୁଷ୍ପଦଳ।
ଅମଳ-ପାବନ-ଜୀବନ-ଦାୟିନୀ,
ଝରେ ସ୍ଥାନେ ସ୍ଥାନେ କ୍ଷୁଦ୍ର ନିର୍ଝରିଣୀ।
ଲୀଳାମଞ୍ଚ ଯେଣୁ ମେଘର ପର୍ବତ,
ଅଜସ୍ର ଏହାର ନୀରଦାନବ୍ରତ।
ପରିଚାର ଯାର ଜଳଧରଗଣ,
ନୀରଦାନେ କିପାଁ ହେବ ସେ କୃପଣ?
ପର୍ବତ ଚୌଦିଗେ ପର୍ବତ ଉପରେ
ସୁସଜ୍ଜିତ ଜଳଧର ସ୍ତରେ ସ୍ତରେ।
ବନଦେବତାଙ୍କୁ ଏହି ମେଘମାନ
କିବା ଯବନିକା, କ ଆସନ, ଯାନ,
କିବା ଛତ୍ର ତ୍ରାସ, କି ପଟମଣ୍ଡପ,
ଅବା ଚିତ୍ରବର୍ଣ୍ଣ ଶୋଭୀ ଚନ୍ଦ୍ରାତପ,
କିବା ପର୍ଯ୍ୟଙ୍କିକାରୂପେ ନିରନ୍ତର
ଖଟିବାରେ ସଦା ଅଟନ୍ତି ତତ୍ପର।
ପୁଷ୍ପକୁଞ୍ଜେ କେବେ ବିଚିତ୍ରବରଣ
ବିରଚନ୍ତି ଶକ୍ରଚାପର ତୋରଣ।
ଚପଳାକୁ କେବେ ନଚାଇ ସଙ୍ଗତେ
ବଜାନ୍ତି ମୁରଜ ନୃତ୍ୟ ଅନୁଗତେ।

କେବେ ଅବା ରଙ୍ଗେ ବାର୍ତ୍ତାବହ ବେଶେ
କାମଚାରେ ଭ୍ରମି ଭିନ୍ନ ଭିନ୍ନ ଦେଶେ,
ପାରାବାରେ, ହ୍ରଦେ, ନଦୀସ୍ରୋତେ ସ୍ନାନି
ଦିଅନ୍ତି କୌତୁକେ ନାନା ବାର୍ତ୍ତା ଆଣି।
ମହେନ୍ଦ୍ରର ଚଉଦିଗେ ଏହି ମତେ
ଜଳଧର ଲୀଳା ଲାଗିଛି ନିରତେ।
ତାଙ୍କ ଯୋଗେ ସଦା ସରସ ଏ ଗିରି,
ସରସ ଏହାର ତରୁ ଲତା ଶିରୀ।
ସରସ୍ରୋତ ସଦା ପରିପୂର୍ଣ୍ଣ ଜଳେ,
ପରିପୂର୍ଣ୍ଣ ବନ ସଦା ପୁଷ୍ପ ଫଳେ।
ଅନନ୍ତ ଯେସନ ଶୈଳର ବିଭୂତି,
ବିଜଡ଼ିତ ଏଥି କେତେ ପୂତ ସ୍ମୃତି।
ଶିଳାବୃଷ୍ଟିକାରୀ ଶୈଳକୁ ଯେସନ
ପକ୍ଷଚ୍ଛେଦୋଦ୍ୟତ ବଜ୍ରୀ ବୃତ୍ରହନ।
ଗଜତ୍ପମୃପତି କଳିଙ୍ଗଙ୍କୁ ରଣେ
ଅବହେଳେ ଜିଣି ଦିବ୍ୟ ପ୍ରହରଣେ,
ନିହିଥିଲେ ଜୟସ୍ତମ୍ଭ ଏହା ଭାଲେ
ଚକ୍ରବର୍ତ୍ତୀ ରଘୁ ଦିଗ୍‌ବିଜୟକାଳେ,
ମାହୁତ ଯେସନ ମତ୍ତ-ମତଙ୍ଗଜ—
ଶିରେ ପୋତେ ତୀକ୍ଷ୍ଣ-ମୂନ ଲୌହଗଜ,
ରାମଚନ୍ଦ୍ର ହସ୍ତେ ଲଭି ପରାଭବ
ରଚିଲେ ଏ ଶୈଳେ ଆଶ୍ରମ ଭାର୍ଗବ।
କ୍ଷତ୍ରକ୍ଷୟ ବ୍ରତୁଁ ହୋଇଣ ବିରତ
ଆଚରିଲେ ପୂତ ଆରଣ୍ୟକ ବ୍ରତ।
କ୍ଷତ୍ରକ୍ଷୟକାରୀ କୁଠାରକୁ ବନେ
ନିଯୋଜିଲେ ଯଜ୍ଞ-ସମିଧ ଛେଦନେ।
ତାଙ୍କୁ ଭେଟିବାକୁ ଏଥି ଘନଘନ
ଆସୁଥିଲେ ଦେବ ମୟୂରବାହନ,
ଉପୁଜାଇ ତାରୁ ମୟୂରଚନ୍ଦ୍ରକେ
ଶକ୍ରଚାପଶୋଭା ଶଇଳ ମସ୍ତକେ।
ଦ୍ରୋଣ କର୍ଣ୍ଣ ଆଦି ଏହି ଶୈଳେ ଆସି
ହୋଇଥିଲେ ତାଙ୍କ ପାଦେ ଅନ୍ତେବାସୀ।
ବନବାସବ୍ରତ ଧରି ଧନଞ୍ଜୟ
ଲଭିଥିଲେ ଏହି ଶଇଳେ ଆଶ୍ରୟ।
ତାଙ୍କ ପ୍ରତିଷ୍ଠିତ ଗୋକର୍ଣ୍ଣଈଶ୍ୱର- (୨)
ଯୋଗୁଁ ବଢ଼ିଅଛି ପ୍ରତିଷ୍ଠା ଶୈଳର।
ଏହି ଶୈଳୁଁ ସିନା ବୀରେନ୍ଦ୍ରକେଶରୀ
ସିନ୍ଧୁ କୂଳେ କୂଳେ ଏକାକୀ ବିଚରି,
ମଣିପୁରଲେମା ପ୍ରେମ ର ଆଶାୟୀ
ଭେଟିଥିଲେ ତାଙ୍କୁ ମଣିପୁରେ ଯାଇ।

(୧) ଭୀମଦେଉଳ— ମହେନ୍ଦ୍ର ଶିଖରରେ ଅବସ୍ଥିତ। (୨) ପ୍ରଚଳିତ ପ୍ରବାଦ ଅନୁସାରେ ଗୋକର୍ଣ୍ଣେଶ୍ୱର ଅର୍ଜୁନଙ୍କ କର୍ତ୍ତୃକ ପ୍ରତିଷ୍ଠିତ।

ବୈତରଣୀ ନଦୀ ଉତ୍ତର ପ୍ରଦେଶେ
ତୀର୍ଥପର୍ଯ୍ୟଟନ ସାରି ଅବଶେଷେ,
ବୈତରଣୀ ମୁଖୁଁ ମହୋଦଧି ନୀରେ
ପାର୍ଥ ବିନୁଁ ଆନ ପାଣ୍ଡବପ୍ରବୀରେ,
କୃଷ୍ଣା ସଙ୍ଗେ ଦିବ୍ୟ ବେଦିକା ଆରୋହି
ଆସିଥିଲେ ରାମଦର୍ଶନାର୍ଥୀ ହୋଇ,
ଏହି ଶୈଳାଶ୍ରମେ, କୀରତି ତାଙ୍କର
ଅଦ୍ୟାପି ଶଇଳ-ଲଲାଟେ ଭାସ୍ୱର।
ପୂତ ହୋଇଥିଲେ ଏହି ଝରମାନେ
ପୁଣ୍ୟଶ୍ଲୋକ ଯଜ୍ଞସେନସୁତା ସ୍ନାନେ।
ଭବେ ଅବତୀର୍ଣ୍ଣ ସାକ୍ଷାତ ଶଙ୍କର
ଶଙ୍କରଙ୍କ ପାଦ ସ୍ପର୍ଶେ ଏ ଶିଖର,
ହୋଇଥିଲା ପୂତ, ଶିବକ୍ଷେତ୍ର ଜାଣି
ଆସିଥିଲେ ଏଥି ଯେବେ ମହାଜ୍ଞାନୀ,
କାଞ୍ଚୀ ଜୟ ପରେ ପଦ୍ମିନୀ ସଙ୍ଗତେ
ଶ୍ରୀ ପୁରୁଷୋତ୍ତମ ବାହୁଡ଼ି ଏ ପଥେ,
ସୈନ୍ୟ ସହ ଉଠି ଏ ଗିରି ଶିଖରେ
ପୂଜିଥିଲେ ଦେବ ଗୋକର୍ଣ୍ଣେଶ୍ୱରେ।
ହୁଳହୁଳି ଦେଇ ଶବର-ଲଳନା
ପଦ୍ମିନୀଙ୍କି କରିଥିଲେ ସଭାଜନା।
ଲତାଏ ସ୍ୱାଗତିଥିଲେ ଲାସ୍ୟଛନ୍ଦେ,
କାନନ ବିହଙ୍ଗେ ସୁମଧୁର କଣ୍ଠେ
ପୁଷ୍ପବୃକ୍ଷ ଦେଖି ମୁଗ୍ଧ ମଧୁକରେ
ଉଡ଼ିଆସି ମୁହୁଃ ଗୁଣୁ ଗୁଣୁ ସ୍ୱରେ
ଭିଆଉଣ ଥିଲେ ଚମକ ସଘନେ
ପଦ୍ମାବତୀ-ନୀଳନଳିନ-ନୟନେ।
ହରିପ୍ରେମସ୍ରୋତ ବୁହାଇ ଉତ୍କଳେ
ଆସିଥିଲେ ଏଥି ଚୈତନ୍ୟ ସଦଳେ।
ତାଙ୍କ ହରିବୋଲେ ଏ ଗିରିକନ୍ଦର
ହେଉଥିଲା ପ୍ରେମ-ଉଲ୍ଲାସେ ମୁଖର।
ଭକ୍ତ-ମୁନି-ଯୋଗୀ-ବୀର-ଲୀଳାସ୍ଥଳୀ
ନାହିଁ ଆନ ଗିରି ଉତ୍କଳେ ଏଭଳି।
ଉତ୍କଳୀୟ ହୋଇ ଯେଣୁ ଭାରତୀୟ
ଆର୍ଯ୍ୟ ଋଷିଙ୍କର ଏହି ଗିରି ପ୍ରିୟ,
ନାହିଁ ଆନ ଗିରି ଯହିଁରେ ସୁଲଭ
ଏ ଗିରିର ପୁଣ୍ୟ-ସ୍ମୃତିର ବିଭବ।

ପୁଣ୍ୟପ୍ରଦ ଯେଣୁ ଏହାର ଦର୍ଶନ,
ପୁଣ୍ୟପ୍ରଦ ତେଣୁ ଏଥି ସଂଚରଣ।
ପୁରାଣେ କି ଅବା ଲୋକମୁଖେ ଖ୍ୟାତ
ନାନା ସ୍ଥଳୀ ନିମ୍ନେ ହୁଏ ପ୍ରତିଭାତ।
ଋଷିମାଳସୁତା ଋଷିକୁଲ୍ୟା ନଦୀ (୧)
ପତିତପାବନୀ ଯଥା ବିଷ୍ଣୁପଦୀ।
ସଦା ଅନାବିଳ-ସଲିଳ-ଦ୍ରବିଣା,
କର୍ପୂରଧବଳ-ବିପୁଳ-ପୁଳିନା।
ଜଉଗଡ଼ ରାଜେ ସେହି ନଦୀ ତୀରେ
ଅଙ୍କିତ ଅଶୋକ-ଶାସନ-ଲିପିରେ।
ମହିମା ଯେ ଲିପି ଘୋଷେ ଅହିଂସାର,
ବୌଦ୍ଧ ଧରମର ଅଟଇ ଯା ସାର।
ଅନ୍ୟ ତୀରେ ଶୋହେ ମହାସ୍ତନବତ
'ସ୍ତନପୀଠ' ତାରାତାରିଣୀ ପର୍ବତ। (୨)
ବହୁଥାଇ ଯେଉଁ ପୀଠେ ଅନୁକ୍ଷଣ
ଦେବୀ ଅଗ୍ରେ ବଳିରକ୍ତ-ପ୍ରସ୍ରବଣ;
ଅନୁକ୍ଷଣ ଘନ ଛାୟାରେ ଶୀତଳ,
ଖଗମୃଗକୁଳ – ବିହରଣ-ସ୍ଥଳ,
ଚିଲିକାର ଘନ ବନାକୀର୍ଣ୍ଣ ଦ୍ୱୀପ (୩)
ବିହାରରସିକ ଯେ ସାଧୁ ମହୀପ,
ତାଙ୍କ ଅଧିଷ୍ଠିତ ଖଲ୍ଲିକୋଟ ଧରା,
ନିଖିଳ-ନିସର୍ଗ-ଶୋଭା-ମନୋହରା।
ସୁରଙ୍ଗୀ ମଞ୍ଜୁଳ କମଳା କାନନେ,
ଖିମିଡ଼ି ମଣ୍ଡିତ ତପ୍ତ ପ୍ରସ୍ରବଣେ,
ତପ୍ତକୁଣ୍ଡେ ପୂତ ବୁଡ଼ାସିଂହମହୀ,
ଆଦି ନାନା ରାଜ୍ୟ ଅଗ୍ରେ ବିରାଜଇ।
ପୁଷ୍ପ-ଫଳ-ଶସ୍ୟ-ଶାଳିନୀ ପାରଳା,
ଅଚପଳା ଯହିଁ ଚପଳା ଚପଳା,
ହୋଇଥିଲା ସର୍ବ ଉତ୍କଳେ ପ୍ରଚାର
ଫଳିତ ଜ୍ୟୋତିଷେ ପ୍ରତିଷ୍ଠା ଯାହାର।
ଉତ୍କଳର ବେନି ସୁକୃତି-ସନ୍ତତି,
ଯାଙ୍କ ଯୋଗୁଁ ଏହି କ୍ଷିତି ବିଦୁସ୍ଫୁଟୀ,
ବଳଭଦ୍ର, ଉପଇନ୍ଦ୍ର କବିମଣି,
ଉତ୍କଳ ଖଣିର ଯେ ଅମୂଲ୍ୟ ମଣି,
ତାଙ୍କ ଜନ୍ମଭୂମି ସୁଚିତ୍ର ସୁନ୍ଦର,
ଦିଶେ ତଳେ ଆଠଗଡ଼ ଘୁମୁସର।

(୧) ଋଷିକୁଲ୍ୟା ଋଷିମାଳ ପର୍ବତରୁ ନିଃସୃତ। (୨) ତାରାତାରିଣୀ ସତୀଙ୍କର ସ୍ତନପୀଠ ବୋଲି ପ୍ରସିଦ୍ଧ। (୩) ଖଲ୍ଲିକୋଟାଧୀଶ୍ୱରଙ୍କ ଅଧିକୃତ ଏହି ଦ୍ୱୀପଗୁଡ଼ିକର ସୌନ୍ଦର୍ଯ୍ୟ ବର୍ଣ୍ଣନାଦ୍ୱାରା ଅନ୍ୟର ହୃଦୟଙ୍ଗମ କରାଇବା ସହଜ ନୁହେଁ। ସମଗ୍ର ଓଡ଼ିଶାରେ ଏପରି ମନୋହର, ନିର୍ଜନ, ଶାନ୍ତିପୂର୍ଣ୍ଣ ସ୍ଥଳୀ ଅନ୍ୟତ୍ର ମୋହର ଦୃଷ୍ଟିଗୋଚର ହୋଇନାହିଁ। ଦ୍ୱୀପଗୁଡ଼ିକ ଚିଲିକା ତରଙ୍ଗୋଦ୍‌ଗତ କ୍ଷୁଦ୍ର କ୍ଷୁଦ୍ର ପର୍ବତର ସମତଳ ବାଲୁପ୍ରଦେଶ ମାତ୍ର। ଏହି ଦ୍ୱୀପପୁଞ୍ଜ ମହାରାଜାଙ୍କର ଶୋଭାନୁଭାବକତାର ଅତି ଉତ୍କୃଷ୍ଟ ନିଦର୍ଶନ।

ବିଟପ ଟୋପରେ ଶିର ଶୋଭାବନ,
 ସୁଢଳ ତରୁଣ କୁଞ୍ଜର ଯେସନ।
ଉଦ୍ୟାନ ପ୍ରଦେଶେ ଦିଶେ ଗିରି ହ୍ରସ୍ୱ
 ରାଟି ନାମେ, ଯାର ତଟଦେଶେ ଅଶ୍ୱ (୧)
ବାନ୍ଧିଥିଲେ ତରୁଦେହେ ବିଶ୍ୱସାଇଁ
 କାଞ୍ଚିଯାତ୍ରୀ କଳା ଧଳା ବେନି ଭାଇ।
ଅଦ୍ୟାପି ଯେ ତରୁ– ସ୍ଥାଣୁ ପୂଜା ପାଏ
 ସେହି ଶୈଳେ ଦେବବିଗ୍ରହ ପରାଏ।
ଦକ୍ଷିଣେ ଶ୍ରୀ ଆଦିକୂର୍ମ ଅଭିହିତ
 ବିଷ୍ଣୁକ୍ଷେତ୍ର ରାମାନୁଜ-ପ୍ରତିଷ୍ଠିତ।
ବୌଦ୍ଧ-ଉପାସନା-ପୀଠ ପୁରାତନ
 ରାଜେ ଅଗ୍ନିକୋଣେ କଳିଙ୍ଗପତନ।
'ସାହସିକ' ବୋଲି ଆର୍ଯ୍ୟଗ୍ରନ୍ଥମାନ
 କରୁଥିଲେ ଯାର ସୁଯଶଃ ବ୍ୟାଖ୍ୟାନ। (୨)
ପଡ଼ି ସର୍ବହର କାଳର କବଳେ
 ନାମଶେଷ ମାତ୍ର ଏବେ ଯା ଉତ୍କଳେ।
ବାଣିଜ୍ୟ ଚହଳେ ଥିଲା ଯା ମୁଖର
 ଶୁଭେ ତହିଁ ତାଳୀବନର ମର୍ମର।
ଯହୁଁ ପୋତ ବାହି ଉତ୍କଳ କୁମରେ
 ବାଣିଜ୍ୟ ସକାଶେ ଦ୍ୱୀପ ଦ୍ୱୀପାନ୍ତରେ,
ବିହରୁଣଥିଲେ ନିର୍ଭୀକ ହୃଦୟେ,
 ଧର୍ମପ୍ରାଣ ଧର୍ମ ପ୍ରଚାର ଆଶୟେ।
ବିହରୁଣଥିଲେ ପୋତେ ବୌଦ୍ଧ ଯତି,
 ନିରତେ ଅହିଂସା-ମହାବ୍ରତେ ବ୍ରତୀ।
ଯେ ପତନୁ ଯାଇ କୁମାର ବିଜୟ
 ବିହିଥିଲେ ଦୂର ସିଂହଳ ବିଜୟ।
ମହାସେନ ନାମେ ସିଂହଳ ରାଜନ
 ଲଭିଥିଲେ ଯହୁଁ ପବିତ୍ର ଦଶନ
ବୁଦ୍ଧଦେବଙ୍କର, ଯେହୁ ଆଜଯାଏ
 ପୂଜିତ ସିଂହଳେ ବୌଦ୍ଧ ସଂପ୍ରଦାୟେ।
ଏ ଆଦି ଅଶେଷ ସ୍ଥଳୀ ମହୀତଳେ
 ଓଟାରି ନିଅନ୍ତି ମନକୁ ସବଳେ।
ଯୁଗଯୁଗାନ୍ତର ଲଙ୍ଘି କ୍ଷଣେ ମନ
 ଅତୀତର ରାଜ୍ୟେ କରେ ବିଚରଣ।
ଅତୀତର ଲୀଳା ଖେଳା ଦେଖି ରଙ୍ଗେ
 ଏକୀଭୂତ ହୋଇ ଯାଏ ତହିଁ ସଙ୍ଗେ।
ବୀର, ଯୋଗୀ, ଋଷି ଆଦି ମହାଜନ
 ସଙ୍ଗେ କଳ୍ପନାରେ କରେ ସମ୍ଭାଷଣ।
ଅତୀତର ବେଶ ଭୂଷା ରୀତି ନୀତି
 ଦେଖି ଲଭୁଥାଇ ନିରବଦ୍ୟ ପ୍ରୀତି।
ଅତୀତର ଧ୍ୟାନେ ହୋଇ ଏକତାନ
 ଅତୀତକୁ ମଣେ ଯେହ୍ନେ ବର୍ତ୍ତମାନ।

□ □ □

(୧) ରାଟି– ଏହି କ୍ଷୁଦ୍ର ପର୍ବତ ଉଦ୍ୟାନଖଣ୍ଡରେ ଅବସ୍ଥିତ। ମଞ୍ଜୁଷାର ଅତି ନିକଟବର୍ତ୍ତୀ।
(୨) ''କଳିଙ୍ଗ-ସାହସିକ''– ଏହି ଚିରପ୍ରସିଦ୍ଧ ପ୍ରବାଦ ସଂସ୍କୃତ ଅଳଙ୍କାର ଗ୍ରନ୍ଥରେ ଅନୁସନ୍ଧେୟ।

## ଧବଳେଶ୍ୱର ସ୍ତୋତ୍ରମ୍

[ ଭୈରବୀ ରାଗ କାବାଲୀ ତାଳାଭ୍ୟାଂ ଗୀୟତେ ]

ଜୟ ଧବଳେଶ୍ୱର, ଜୟ ଧବଳେଶ୍ୱର,
ଜୟ ଧବଳେଶ୍ୱର ଶମ୍ଭୋ,
ପାଦ-ପ୍ରଣତଜନ-ଭବଭୟଭଞ୍ଜନ,
ପାହି ମାମଶରଣଂ ଭୋ ।
ସ୍ରାବସ୍ୱଚ୍ଛନ୍ଦବିରଳ-ଲହରୀ-ପରି –
ଶୀଳିତ-ମଞ୍ଜୁନିକୁଞ୍ଜେ,
ପ୍ଲବନନିମଜ୍ଜନ-ରତ-ବର୍ଣ୍ଣୋଜ୍ଜ୍ୱଳ –
ବିବିଧବିହଙ୍ଗମପୁଞ୍ଜେ ।
କୋକିଳକୂଜିତ-ମଧୁକରଗୁଞ୍ଜିତ –
ଚିରବିଳସିତ-ମଧୁମାସେ,
ମରକତମେଦୁର-ନୀଳକାନ୍ତନିଭ –
ଗିରିଗଣ-ଦନ୍ତୁରିତାଶେ ।

କନ୍ଦର-କାନନ-ପୁଳିନବିଭାସିତ –
ନାରାନ୍ତରଣବିଚିତ୍ରେ,
ଇହ ବିହରସି, ବିଷୟେ, ଶଶିଶେଖର,
ଶାନ୍ତରସୈଃ ସୁପବିତ୍ରେ ।
ତଟିନୀବଳୟିତ-ତରୁକୁଳପୁଲକିତ –
ବାଳମହୀଧରବାସିନ୍,
ଜୟ ଜୟ ଶଙ୍କର, ସର୍ବଶୁଭଙ୍କର,
ଭକ୍ତ ବିପଦିବିନାଶିନ୍ ।
ରାଧାନାଥଭଣିତ-ଭବବନ୍ଦନ –
ଗୀତମେତଦନୁବାରମ୍,
ଶୃଣୁ, ମତିମନ୍ନବହିତମନସା, ଯଦି
ଜିଗମିଷୁରସି ଭବପାରମ୍ ।

## ଶ୍ରୀ କାଳିକାସ୍ତୁତିଃ

[ ଭୈରବୀ ରାଗ କାବାଲୀ ତାଳାଭ୍ୟାଂ ଗୀୟତେ ]

କାଳି କପାଳିନି ମସ୍ତକମାଳିନି
ଜନନି ବରାଭୟହସ୍ତେ,
ସମରବିଳାସିନି ଦାନବନାଶିନି
ଜୟ ଜୟ ଦେବି ନମସ୍ତେ । ଧ୍ରୁବଂ । ୧ ।
ତ୍ୱଂ ବାଣୀ, ତ୍ୱଂ ଜଳନିଧିଦୁହିତା,
ତ୍ୱଂ ଲଳିତା, ତ୍ୱଂ ଭୀମା,
ଶକ୍ତିସ୍ତେ, ଶକ୍ତୀଶ୍ୱରି, ଦେବୈ –
ରପି ଖଲ୍ୱକଳିତସୀମା । ୨ ।
ସ୍ଥୂଳା ତନୁକା ବ୍ୟକ୍ତାଽବ୍ୟକ୍ତା –
ତିଷ୍ଠସି ନନୁ ବହିରନ୍ତଃ,
ପଶ୍ୟନ୍ତି ତ୍ୱାମନ୍ତର୍ବହିରିବ
ଯୋଗିଜନାଃ ଧ୍ୟାୟନ୍ତଃ । ୩ ।
ଗତିରଗତୀନାଂ ତ୍ୱମସି, ଶରଣ୍ୟେ,
ସର୍ବମନୋରଥଦାତ୍ରୀ,
ଶର୍ମବିଧାୟିନି ଶଙ୍କରଭାମିନି
ବିଶ୍ୱାନନ୍ଦବିଧାତ୍ରି । ୪ ।
ଅଭୟେ ଭୁବନେଶ୍ୱରି ଭବତାରିଣି
ଜୟ ଜୟ ମଙ୍ଗଳରୂପେ,

ମାମୁଦ୍ଧର, ଧରନନ୍ଦିନି, ନିପତିତ –
ମତିଗହନେ ଭବକୂପେ । ୫ ।
ପାପବିନାଶିନି ପାପନିବାରିଣି
ଦୁଷ୍କୃତହାରିଣି, ମାତଃ,
ଅଘହରଣୌ ତବ ଚରଣୌ ଭକ୍ତ୍ୟା
ବନ୍ଦେ ସାୟଂ ପ୍ରାତଃ । ୬ ।
ଭସ୍ମୀକୁରୁ ମେ ସର୍ବବୃଜିନମୟି
ଦେବି ବିପନ୍ନଂ ପାହି,
ଭୈରବରୂପିଣି ଭୈରବମୋହିନି
ସର୍ବଭୟାନ୍ ମାଂ ତ୍ରାହି । ୭ ।
ପ୍ରଣତଜନାର୍ତ୍ତିହରେ ହରସୁନ୍ଦରି
ସୁରନରବନ୍ଦିତପାଦେ,
ବ୍ୟସନେ ନିପତିତମୁଦ୍ଧରମାମତି –
ବିଷମେ ସାନ୍ଦ୍ର-ବିଷାଦେ । ୮ ।
ପାପାଦୁଦ୍ଧର ହୃଦୟଂ ମମ ନନୁ
ପାପାଦୁଦ୍ଧତ ହୃଦୟଂ କାୟାଂ
ଶଙ୍କରି, ଦେହି ଶିରସି ମେ ଶ୍ରୀପଦ –
ପଙ୍କଜ ଶୀତଳ-ଛାୟାଂ । ୯ ।

ନାହମଯୋଗ୍ୟସ୍ତବ କରୁଣାୟାଃ
ମାତଣ୍ଣେଦପି ପାପୀ,
କୁସୁତାଃ ଶତଶଃ ଲୋକେଽସ୍ମିନ୍ନହି
ଭବତି କୁମାତା କ୍ୱାପି । ୧୦ ।

ରାଧାନାଥଭଣିତମିଦମଘହର –
ମଦ୍ରିସୁତାସ୍ତବଗାନଂ
ଭକ୍ତମନସି ବିତନୋତୁ ମୁଦଂ ବିଦ –
ଧାତୁ ନିଖିଳକଲ୍ୟାଣଂ । ୧୧ ।

## ମହାରାଣୀ ଭିକ୍‌ଟୋରିୟାଙ୍କ ପଞ୍ଚାଶତ୍ ବର୍ଷର ଜୁବିଲୀ-ସଙ୍ଗୀତ

[ ୧୬ ତାରିଖ ଫେବୃଆରୀ, ୧୮୮୭ ସାଲ ]

[ ରାଗ ଖମ୍ୱାଜ – ତାଳ ଝୁଲା ]

ଆଜ ଆନନ୍ଦେ ମିଳିଣ ଗାଅ ସରବେ,
ପୂରୁ ଚୌଦିଗେ ଯଶ ଆନନ୍ଦରବେ ।
ମାତୃକୋଳ ପରାୟେ କି ରାଜା କି ପ୍ରଜାଏ
ଯା ରାଜ୍ୟେ ଛନ୍ତି ନିତ୍ୟ ନିରୁପଦ୍ରବେ ।
ସେ ମାତା ଭିକ୍‌ଟୋରିୟା ଜଗତପୂଜନୀୟା,
ପଞ୍ଚାଶ ବର୍ଷ ରାଜ୍ୟ କଲେ ଏ ଭବେ ।
ଜନନୀ ସେ ଆମ୍ଭର, ଅଟନ୍ତି ପ୍ରିୟତର,
ଧରି ନାହାନ୍ତି ମାତ୍ର ସିନା ଗରଭେ ।
କେ ଅଛି ମାତା ସମ ଶିଶୁଙ୍କ ପ୍ରିୟତମ,
ମାତ ମାତୃମଙ୍ଗଳ – ମହାଉତ୍ସବେ ।
ମାତାଙ୍କ ସ୍ନେହ ଭାଳି ଦିଅ ରେ କରତାଳି,
ହର୍ଷ ଚହଳ ଉଠୁ ଭୂତଳୁଁ ନଭେ,
ମାତାଙ୍କୁ ଆୟୁଷ୍ମତୀ କରନ୍ତୁ ବିଶ୍ୱପତି,
ପୂରୁ ଅବନୀ ମାତା – ଯଶଃସୌରଭେ ।

## ମହାରାଣୀ ଭିକ୍‌ଟୋରିୟାଙ୍କ ଷଷ୍ଠିତମ ବର୍ଷର ଜୁବିଲୀ ସଙ୍ଗୀତ

( ୨୨ ତାରିଖ ଜୁନ୍, ୧୮୯୭ ସାଲ )

[ ଭିକ୍ଟୋରିୟା ରାଜ୍ଞୀଙ୍କର ଗାଅ ଯଶୋଗୀତି । ଘୋଷା ]

ରାଜ୍ୟେ ଯାର ପରିଚାର-ରୂପେ ଖଟେ ପାରାବାର,
ନ ହୁଅନ୍ତି ଅସ୍ତ ଯହିଁ ସହସ୍ରଦୀଧିତି,
ନ୍ୟାୟ, ଦୟା, କ୍ଷମା, ପ୍ରୀତି, ଯାର ସିଂହାସନ-ଭିତ୍ତି
ଧର୍ମନୀତି ଯାହାଙ୍କର ଅଟେ ରାଜନୀତି ।
ସୁଦୁହିତା, ସୁଜନନୀ, ପତ୍ନୀ ସତୀଶିରୋମଣି
ଯଶସଉରଭେ ଯାର ଚହଟଇ କ୍ଷିତି,
ପୁଣ୍ୟେ ଯଥା ଅନୁପମା, ଭାଗ୍ୟେ ତଥା ମର୍ତ୍ତ୍ୟେ ରମା,
ପାଳିଲେ ଯେ ଷଷ୍ଠିବର୍ଷ ପ୍ରଜା ଯଥାରୀତି ।

## ତିନିବନ୍ଧୁ

ଭବପୁରେ ଥିଲେ ମହାଧନୀ ନରଦାସେ,
ବନ୍ଧୁଗଣ ବେଢ଼ି ରହିଥିଲେ ଚଉପାଶେ ।
ସବୁ ବନ୍ଧୁ ମଧ୍ୟେ ବଡ଼ ଥିଲେ ତିନି ମିତ,
ତିନିଙ୍କର ନାମ କର୍ମରୁ ହେବ ବିଦିତ ।
ତିନି ବନ୍ଧୁ ମଧ୍ୟେ ଏକ ଥିଲେ ପ୍ରିୟତମ,
ଦ୍ୱିତୀୟଙ୍କଠାରେ ମମତା ଥିଲା ମଧ୍ୟମ ।
ତୃତୀୟଙ୍କଠାରେ ଉଦାସୀନ ଦାସେ ଅତି,
ସେ ତୃତୀୟ ପୁଣି ବଡ଼ ଅପ୍ରଗଲ୍‌ଭ-ମତି ।
ସେବନ୍ତି [illegible]ଙ୍କୁ ନୀରବେ ଗହଣେ ଥାଇ,
ନିଜ [illegible] କେବେ ଦେଖାଇ ହୁଅନ୍ତି ନାହିଁ ।
ଦେଖାଇ ହେବାର ଠାବ ସିନା ଭବପୁର !
ଦେଖାଇ ହୁଏ ଯେ, ସେହି ସିନା ବାହାଦୁର !
ମିତ ଥିଲେ ଯେଣୁ ଏ ମହାଗୁଣେ ବଞ୍ଚିତ,
'ବାହାବା' ନେବାକୁ ହେଉଥିଲେ ବଡ଼ ଭୀତ ।
ଆଗଭରି ଆସି କହନ୍ତି ନାହିଁ ସେ କଥା,
ଆଗଭରି ଆସି ନୁଆନ୍ତି ନାହିଁ ସେ ମଥା ।
ଚାଟୁକାରପଣେ ଅପଟୁ ଥିବାରୁ ସେହି,
ଦାସେ ତାଙ୍କଠାରେ ନ ଥିଲେ ନିରତେ ସ୍ନେହୀ ।
କେବେ ହେଲେ ତାଙ୍କୁ ସ୍ମରନ୍ତି ନାହିଁ ସରାଗେ,
ସ୍ମରି, ପୁଣି ତାଙ୍କୁ ପାସୋରନ୍ତି ସେହିଲାଗେ ।

ଭୋକ ହୋଇ ଆନ ବେନିବନ୍ଧୁ-ସହବାସେ
ବୋଲକରା ହୋଇ ରହିଲେ ତାଙ୍କର ଦାସେ।
ତାଙ୍କ ସହବାସେ କଲେ ଦାସେ କେତେ ଲୀଳା,
ଆଚମ୍ବିତେ ମହା ବିପତ୍ତି ଆସି ଘୋଟିଲା।
ସବୁ ବନ୍ଧୁ ସୁନା, କିଏ ସୁନା, କିଏ ଭେଳ
ପରଖର ସିନା ନିକଷ ବିପତ୍ତି-ବେଳ!
ରାଜାଙ୍କ ହକରା ଆସିଲା ଦାସଙ୍କ ପ୍ରତି,
ଛାଟିଆ ଆସିଲେ ନେଇଯିବେ ଛାମୁକତି।
ସେ ହକରା ଶୁଣି ଦାସଙ୍କ ଉଡ଼ିଲା ହଂସା,
"କି କରିବି, ଆହା, ଦିଶୁ ତ ନାହିଁ ଭରସା!
କେବଣ ଦୋଷରୁ ରୁଷ୍ଟ ହେଲେ ନରନାହା,
ଏ ସଙ୍କଟେ ମୋର କେଉଁ ମିତ ହେବ ସାହା ?"
ତିନିବନ୍ଧୁଙ୍କର ମୁହଁ ଚାହିଁ ନରଦାସେ
ପୁଚ୍ଛିଲେ ଏ କଥା ବାଷ୍ପ-ଗଦଗଦ ଭାଷେ।
ତିନିବନ୍ଧୁଠାରେ ଏ କଥା ହୁଅନ୍ତେ ପୁଚ୍ଛା,
ପ୍ରିୟତମ ବନ୍ଧୁ ଆଗେ ଦେଲେ ପଛ-ଘୁଞ୍ଚା।
ବୋଇଲେ, "ଏ କଥା ମୋତେ ନ ବୋଲିବ, ଭାଇ,
ଗହଣେ ତୁମ୍ଭର ମୁଁ ତ ନ ପାରିବି ଯାଇ।"
ଦ୍ୱିତୀୟ ମିତଙ୍କୁ ପୁଚ୍ଛିଲେ ଦାସେ ବ୍ୟାକୁଳେ,
"ଏ ସଂକଟକାଳେ ଯିବଟିକି ମୋର ତୁଳେ ?"
ଦାସଙ୍କ ଆରତି ଦେଖି ଦୁଃଖେ ସେହି ମିତ
ଅଶ୍ରୁପୂର୍ଣ୍ଣ-ମୁଖେ ଉତ୍ତର ଦେଲେ ତ୍ୱରିତ,
"ଗହନ କଥା ସେ ଉଭା ହେବା ଶ୍ରୀଛାମୁରେ!
ନିଜ ଦେହ ଜଗି ରହିବି ତେଣୁ ମୁଁ ଦୂରେ,
ସିଂହଦ୍ୱାରଯାଏ କଷ୍ଟେ ସୃଷ୍ଟେ ଯିବି, ଭାଇ,
ତେଣିକି ଯିବାକୁ ଶକତି ତ ମୋର ନାହିଁ।"
ତୃତୀୟ ମିତଙ୍କୁ ତହୁଁ ରାଇ ନିଜ ପାଶେ
ଲାଜେ ମଥା ପୋତି ପଚାରିଲେ ନରଦାସେ,
"କପଟ ମିତଙ୍କ ଚାଟୁ ବୋଲେ ଭୋଳ ହୋଇ
ତୁମ୍ଭଠାରେ, ଭାଇ, ହୋଇଥିଲି ମୁହିଁ ଦ୍ରୋହୀ।
ବାହାରେ କେବଳ ଦେଖାଇ ମୁଖେ ଆଦର
ମନ୍ଦ କରିଥିଲି ତୁମ୍ଭଙ୍କୁ ସଦା ଅନ୍ତର।
ତୁମ୍ଭ ଭଲ କଥା ଦେଉଥିଲି ହେଳେ ଏଡ଼ି,
କି ପାଞ୍ଚ ତୁମ୍ଭର କହ ମୋତେ ଏବେ ଫେଡ଼ି ?
ମୋର ଦୋଷଯାକ, ଭୋ ମିତ, ଘେନା ନ କରି
ଅବେଳେ ଯିବ କି ସଙ୍ଗେ ମୋତେ ତୁମ୍ଭେ ଧରି ?"
ଅବେଳର ମିତ ଉତ୍ତରିଲେ, "ଡର ନାହିଁ,
ଭେଟିବି ମୁଁ ତୁମ୍ଭ ସଙ୍ଗେ ଯାଇ ନରସାଇଁ।
ଯିବାକୁ କେବଳ ମୋତେ ଏକା ବଳ ପାଏ
ସିଂହଦ୍ୱାର ଲଘିଂ ତାଙ୍କ ସିଂହାସନଯାଏ।
ତୁମ୍ଭ ଲାଗି ତାଙ୍କ ଛାମୁରେ କରିବି ଅଳି,
ମୋ ଗୁହାରି ଶୁଣି ନିଶ୍ଚେ ସେ ଯିବେ ତରଳି।
ତାଙ୍କ ଶ୍ରୀଛାମୁରୁ ଆଣିବି ମୁଁ ମୁକୁଳାଇ,
ମୁହିଁ ଏକା ସିନା ବାନ୍ଧବ ଏ ବେଳପାଇଁ।"
ସୁଜନେ, ଜଗତେ ଏହି ତିନି ବନ୍ଧୁ ଘେନି
ରହନ୍ତି ସରବେ ପ୍ରିୟ ମଣି ଆଦ୍ୟ ବେନି।
କିଏ କେଉଁ ଭଳି, ଅନ୍ତିମେ ଏ ବନ୍ଧୁ ସିନା,
ନରଦାସେ ଯଥା, ନରଙ୍କୁ ଦିଅନ୍ତି ଚିହ୍ନା।
ଆଦ୍ୟ ବନ୍ଧୁ ଘରେ ରହେ, ପ୍ରେତଭୂମିଯାଏ
ଦ୍ୱିତୀୟ ବନ୍ଧୁ ସେ ଶବ ସଙ୍ଗେ ସଙ୍ଗେ ଯାଏ;
ପ୍ରେତଭୂମିପରେ ତେଣେ ଯେ ବିଷମ ରାହା;
ପ୍ରେତର ତହିଁ ସେ ତୃତୀୟ ବନ୍ଧୁଟି ସାହା!
'ଧନଦାସ' 'ଜନଦାସ' 'ଧର୍ମଦାସ' ଜାଣି –
ଜନେ, ଏ ତିନିଙ୍କ କର୍ମ ନେଇଥିବ ଜାଣି।

□□□

## ବାଣ-ହରଣ *

### [ ପ୍ରଥମ ସର୍ଗ ]

ପୁଚ୍ଛିଲେ ଜନମେଜୟ ମୁନିଙ୍କ ପୟରେ,
ଭୋ ମୁନି, ବାସନା ମୋର ପୂରାଅ ସତ୍ୱରେ,
ଭୀଷ୍ମର ପାଣ୍ଡବ-ବଧ-ପ୍ରତିଜ୍ଞା ବିଷୟ
ଶୁଣି ବିସ୍ମୟରେ ମନ ହେଉଛି ଅଥୟ।
କିରୂପେ ପାଇଲେ ବାର୍ତ୍ତା ରାଜା ଯୁଧିଷ୍ଠିର,
କିରୂପେ ବିହିଲେ ରକ୍ଷା ପ୍ରଭୁ ଯଦୁବୀର ?
କହନ୍ତି ମହର୍ଷି, ଶୁଣ ପୂର୍ବର କଥନ,
ଉଭରେ ଶିବିରେ ରହି ପାଣ୍ଡୁପୁତ୍ରଗଣ,
ସଭା କରି ବସିଛନ୍ତି ଶ୍ରୀକୃଷ୍ଣ ସହିତ,
ପାଣ୍ଡବର ପକ୍ଷ ନୃପଗଣ ଅଗଣିତ
ସହିତେ ଲାଗିଛି ନାନା କଥୋପକଥନ,
ଏ ସମୟେ ଶୁଣ, ରାଏ, ଘଟିଲା ଯେସନ।

* ଆମ୍ଭମାନଙ୍କର ପୂର୍ବପୁରୁଷ ୰ଉଦୟନାରାୟଣ ରାୟ ଲିଖିତ ବଙ୍ଗଳା କାଶିରାମଦାସୀୟ ମହାଭାରତର ଖଣ୍ଡିଏ ଅତି ପ୍ରାଚୀନ ପାଣ୍ଡୁଲେଖ୍ୟର ଆଖ୍ୟାନ ଅବଲମ୍ବନରେ ଏହି "ବାଣ-ହରଣ" ପ୍ରସଙ୍ଗ ମତ୍‌କର୍ତ୍ତୃକ ସଙ୍କଳିତ ହୋଇଥିଲା। ଶ୍ରୀ ରାଧାନାଥ ରାୟ।

ଅସ୍ତଗାମୀ ରବିଙ୍କର କନକକିରଣେ
ଶିବିରର ତୁଙ୍ଗଚୂଡ଼ା ଝଟକେ କେସନେ।
ଏକାଳେ ଶିବିରଦ୍ୱାରେ ଉଭା ହେଲା ଚାର,
ଶୁଣି ଆସିଥିଲା ଯେହୁ ପୂର୍ବ ସମାଚାର;
ଦୁର୍ଯ୍ୟୋଧନ ଅଳି ଶୁଣି ଭୀଷ୍ମ ମହାବୀର
ପାଣ୍ଡବେ ବଧିବେ ବୋଲି ଦେଇଥିଲେ ଗିର।
ଶୁଣି ଚାର ଊର୍ଦ୍ଧ୍ୱଶ୍ୱାସେ ଆସିଲାକ ଧାଇଁ,
ନୃପତି ଛାମୁରେ କହେ ମସ୍ତକ ନୁଆଇଁ,
"ଅବଧାନ ଭୋ ମଣିମା, ଭୋ ନାଥ ଶ୍ରୀପତି,
ଶୁଣି ଆସିଲଇଁ ଆଜ ଅଦ୍ଭୁତ ଭାରତୀ।
ଅସଦୃଶ କଥା ସେହି କହିବି କେସନେ,
ଅଭୟ ପାଇଲେ ସବୁ କହିବି ଚରଣେ।"
ଚାର କଥା ଶୁଣି ଦେଲେ ଅଭୟ ଗୋସାଇଁ,
"ଯା କହିବ କହ ଫେଡ଼ି, କିଛି ଭୟ ନାହିଁ।"
ବ୍ୟାଧ ବୋଲେ, "ଅବଧାନ କର ନରନାହା,
ଠିକେ କହିଯିବି କର୍ଣ୍ଣେ ଶୁଣିଲି ମୁଁ ଯାହା।
ହସ୍ତିନାକୁ ଯାଇଥିଲି ତୃଣ କାଷ୍ଠପାଇଁ,
ଥିଲି ଭୀଷ୍ମ ତମ୍ବୁ ପାଶେ ନିଜକୁ ଲୁଚାଇ।
ଏକାଳେ କୌରବନାଥ ପ୍ରବେଶି ଶିବିରେ
ସେନାପତିପଦେ ଭୀଷ୍ମେ ବରିଲେ ବିଧିରେ।
ରାଜା ଆଗେ ବାକ୍ୟ ଦେଲେ ଭୀଷ୍ମ ବୀରମଣି,
'ଅପାଣ୍ଡବା କାଲି ମୁହିଁ କରିବି ଧରଣୀ।'
ପିତାମହ ମୁଖେ ଶୁଣି ଏ ପ୍ରତିଜ୍ଞା-ଗିର
ବାହୁଡ଼ିଲେ ହୃଷ୍ଟମନେ ରାଜା ସ୍ୱଶିବିର।
ସ୍ୱନେତ୍ରେ ଦେଖିଲି ସବୁ, ଶୁଣିଲି ଶ୍ରବଣେ,
ଯା ଦେଖିଲି ଯା ଶୁଣିଲି କହିଲି ଚରଣେ।
ଛାର ମୁହିଁ, ବୁଦ୍ଧି ମୋର ହୋଇଗଲା ବଣା,
ଏଥିକି ଉପାୟ ଲୋଡ଼ା ହେଉ ବିଚାରଣା।
ଗୋବିନ୍ଦ ତୁମ୍ଭର ସାହା ବ୍ରହ୍ମାଣ୍ଡଠାକୁର,
ବିହିବେ ଅବଶ୍ୟ ଏହି ଉପାୟ ପ୍ରଚୁର।"
ଚାର ମୁଖୁଁ ଏହି ବାଣୀ ଶୁଣି ଯୁଧିଷ୍ଠିର
ଭ୍ରାତୃଗଣ ସହ ହେଲେ କମ୍ପିତ ଶରୀର।
ରମ୍ଭାପତ୍ର ପ୍ରାୟେ ତନୁ କମ୍ପିଲା ସଘନେ,
ଉଠିଲେ ସମାଜ ଛାଡ଼ି ଗୋବିନ୍ଦ ତକ୍ଷଣେ।
ବୋଇଲେ ଅର୍ଜୁନ, "କିଆଁ ଉଠିଲ ହେ ମିତ,
ଅଧୀର ହେଉଛ କିପାଁ, ଏହା କି ଉଚିତ?"
ବୋଇଲେ ଶ୍ରୀକୃଷ୍ଣ, "ଶୁଣ ପାର୍ଥ ଧନୁର୍ଦ୍ଧର
ନିଶ୍ଚୟ ସେ କଥା ଯାହା କହିଲା ଏ ଚର।
ମାଗୁଣି ଏତିକି ମୋର, ଭୋ ଧର୍ମନୃପତି,
ବିଦା କରି ଦିଅ, ମୁହିଁ ଯିବି ଦ୍ୱାରାବତୀ।"
କୃଷ୍ଣ ବାଣୀ ଶୁଣି ରାଜା କହନ୍ତି ବିନୟ,
"ଯିବ ଯେବେ, କିଛି କ୍ଷଣ ରହ, ଦୟାମୟ।
ଜଗତେ ବିଦିତ କୃଷ୍ଣ ପାଣ୍ଡବର ସାହା,
ପାଣ୍ଡବର ବଳ ବୁଦ୍ଧି, ପାଣ୍ଡବର ନାହା।
ତୁମ୍ଭର ଭରସା, ନାଥ, ରଖିଥିଲି ମନେ,
ଚରିତ୍ର ତୁମ୍ଭର ପ୍ରଭୁ, ବୁଝିବି କେସନେ?
କୁରୁକ୍ଷେତ୍ରେ କାଲି ଯାର ହେବଟି ସମର,
ତାକୁ ଛାଡ଼ି ଆଜ ତୁମ୍ଭେ ଯିବ ନିଜ ଘର।"
ଭୀମ ବୋଲେ, "କୃଷ୍ଣ, ତୁମ୍ଭ ବିଚାର ବିଚିତ୍ର,
ବିସ୍ମୟ ଲାଗଇ ଦେଖି ତୁମ୍ଭର ଚରିତ୍ର!
ଅଳ୍ପ ବୁଦ୍ଧି ତୁମ୍ଭର ଭାଳଇ ମୁହିଁ ମନେ,
ଆସ ଆସ ବସ ଆସି ନିଜ ସିଂହାସନେ।"
ଏହା କହି ଝିଙ୍କି ନେଇ କୃଷ୍ଣଙ୍କୁ ସବଳେ
ବସାଇ ଦେଲେକ ଭୀମ ପୁଣି ସଭାତଳେ।
ଦାରୁଣ ଦୁରନ୍ତ ବଳ ଧରଇ ପାବନି,
କମ୍ପିଲେ ତା ଝିଙ୍କା ପାଇ ପ୍ରଭୁ ଯଦୁମଣି।
କହନ୍ତି ନୃପଙ୍କୁ ଚାହିଁ ହାସ୍ୟମୁଖେ, "ଆହେ,
ଭୀମର ଏ ହୁଣ୍ଡାପଣ ଦେଖିଲଟି ରାଏ!
ମୋହଠାରେ ଲବେ ଯାର ନାହିଁ ଉପରୋଧ,
ଆନ ଜନେ କିବା କଥା ବିହିଲେ ଏ କ୍ରୋଧ?"
କହନ୍ତି ନୃପତି କରି ବିନୟ ବହୁତ,
"ଭୀମର ଯେତେକ ଦୋଷ କ୍ଷମ ହେ ଅଚ୍ୟୁତ।
ହୁଣ୍ଡାପଣ ଭୀମର ସେ ନୁହଇ ନୂତନ,
ଏହା ଜାଣି କ୍ଷମ ତାକୁ, ହେ ମଧୁସୂଦନ।"
ଯୁଧିଷ୍ଠିର ବାଣୀ ଶୁଣି କୃଷ୍ଣ ସହାସରେ
ସ୍ନେହ-ଆଲିଙ୍ଗନ ଦେଲେ ଭୀମକୁ ସାଦରେ।
ବ୍ୟଗ୍ର ହୋଇ ବୋଇଲେ, "ହେ ଧର୍ମନରପତି,
ଯାହାହେଉ, ଆଜ ମୁହିଁ ଯିବି ଦ୍ୱାରାବତୀ।"
ଆରତେ କହନ୍ତି ରାଏ, "ଆହେ ବନମାଳୀ,
କି ଗତି ଆମ୍ଭର ହେବ ତୁମ୍ଭେ ଗଲେ ଚାଲି?
ଭୋ ପ୍ରଭୁ ଆରତତ୍ରାଣ ବ୍ରହ୍ମାଣ୍ଡ-କରତା,
ତୁମ୍ଭେ ଯେବେ ଛାଡ଼ି ଯିବ, ସରିଲାଟି କଥା!"
କହନ୍ତି ଶ୍ରୀକୃଷ୍ଣ, "ନାହିଁ ଉପାୟ ଏହାର,
ପାଣ୍ଡବର ମୁହିଁ ଏହା ଜାଣଇ ସଂସାର।
ତୁମ୍ଭର ଗହଣେ, ରାଏ, ଯାପିଲି ଜୀବନ,
ଶକ୍ତିମତେ କଲି ତୁମ୍ଭ ସଙ୍କଟ-ଖଣ୍ଡନ।
ଏ ସଙ୍କଟୁ ଉଦ୍ଧାରିବା ଅସାଧ୍ୟ ମୋହର,
ତେଣୁ ଏ ବାସନା, ଏଥୁଁ ହୋଇବି ଅନ୍ତର।
ତ୍ରିଭୁବନେ ନାହିଁ ବୀର ଭୀଷ୍ମର ସମାନ,
ଭୀଷ୍ମ ଯା କହନ୍ତି କେବେ ନୋହିବଟି ଆନ।
ଇନ୍ଦ୍ର ଚନ୍ଦ୍ର ପବନ ଶମନ ପ୍ରେତପକ୍ଷ,
ଗନ୍ଧର୍ବ କିନ୍ନର ସୁରାସୁର ଯକ୍ଷ ରକ୍ଷ,

ସମସ୍ତେ ଯୁଝନ୍ତି ଯେବେ ସହସ୍ର ବତ୍ସର,
ଭୀଷ୍ମେ ନ ପାରିବେ ଜିଣି କହିଲି ନିକର ।
ଭୀଷ୍ମର ପ୍ରତିଜ୍ଞା କଥା ସଂସାରେ ବିଦିତ,
ନିଜକୁ ସଂସାରସୁଖୁଁ କଲା ଯେ ବଞ୍ଚିତ,
ପିତୃସୁଖ ଲାଗି ନିଜ ସୁଖେ ଜଳାଞ୍ଜଳି
ଦେଇ ଚିରକୁମାରର ବ୍ରତ ନେଲା ବଳୀ ।
ଯେ ପ୍ରତିଜ୍ଞା କରେ ଭୀଷ୍ମ, କରେ ତା ପୂରଣ,
ଯେବେ ଯାହା କହେ ତାହା ନ କରେ ଲଙ୍ଘନ ।
ମୁନିଗଣଠାରୁ ମୁହିଁ ଶୁଣିଛି ଆବର,
ତୁମ୍ଭ ବଧ ଲାଗି ଭୀଷ୍ମ ରଖିଛନ୍ତି ଶର ।
ପାଇଲେ ସେ ଶର କାହୁଁ ମୋତେ ନାହିଁ ଜଣା,
ଭୀଷ୍ମର ପ୍ରତିଜ୍ଞା ଶୁଣି ବୁଦ୍ଧି ହେଲା ବଣା ।
ସେହି ଶର ଯୋଗୁଁ ଭୀଷ୍ମ କରିଅଛି ପଣ,
ସେ ଶରେ ବିହିବ ପଞ୍ଚ ଭ୍ରାତାର ନିଧନ ।
ଅମୋଘ ପ୍ରତିଜ୍ଞା ତା'ର, ତେଣୁ, ହେ ନୃପତି,
ବିଦା କରି ଦିଅ, ମୁହିଁ ଯିବି ଦ୍ୱାରାବତୀ ।
ପଞ୍ଚ ପାଣ୍ଡବର କାଲି ମରଣ ନିଶ୍ଚିତ,
ନୟନେ ଦେଖିବା ମୋର ନୁହଇ ଉଚିତ ।
ତୁମ୍ଭଙ୍କୁ ରଖିବି, ମୋର ଶକତି ତ ନାହିଁ,
ବୃଥା ଏ ଶିବିରେ ଆଉ ରହିବି କିପାଇଁ ?''
ଏହା ଶୁଣି ସବିନୟେ ବୋଲେ ରାଜା ଧର୍ମ,
''ତୁମ୍ଭର ଅସାଧ ଯାହା ଅଦ୍ଭୁତ ସେ କର୍ମ ।
ତୁମ୍ଭ ଯୋଗୁଁ ଯେ ବିପଦ ନୋହିବ ବାରଣ,
ତହିଁ ବ୍ରହ୍ମା ଶିବ ଇନ୍ଦ୍ରେ ନ କରେ ଗଣନ ।
ତେଣୁ ଏ ପ୍ରାର୍ଥନା ମୋର, ହେ ବ୍ରହ୍ମାଣ୍ଡସାଇଁ,
କାଳପ୍ରାପ୍ତ ନିଶ୍ଚେ ଯେବେ ଆମ୍ଭେ ପଞ୍ଚଭାଇ,
ଜନ୍ମିଲେ ମରଣ ଧ୍ରୁବ ନୁହେଁ ଖଣ୍ଡିବାର,
ସେ ଭୟ ଆମ୍ଭର ନାହିଁ କୃପା-ପାରାବାର ।
ଭୀଷ୍ମଶରେ ଆମ୍ଭେ ଯେବେ ମରିବୁଁ ଗୋସାଇଁ,
ତୁମ୍ଭେ କିପାଁ ଦ୍ୱାରାବତୀ ଯିବ ସେଥିପାଇଁ ?
କାଲି ଆମ୍ଭ ଆଗେ ଉଭା ହେବ ରଣସ୍ଥଳେ,
ଶ୍ରୀମୁଖ ନିରେଖି ପ୍ରାଣ ତେଜିବୁଁ ସକଳେ ।
ମୃତ୍ୟୁକାଳେ ତୁମ୍ଭଙ୍କୁ ଦେଖିବୁ ପଞ୍ଚଭାଇ,
ଲଭିବୁଁ ପରମଗତି, ଆହେ ଭାବଗ୍ରାହୀ ।
ଶ୍ରୀମୁଖପଙ୍କଜ ଦେଖି ଏ ପାପନୟନେ
ତେଜିବୁଁ ପରାଣ ସର୍ବେ ଭୀଷ୍ମପ୍ରହରଣେ ।
ଏ ସୁଖୁଁ ଆମ୍ଭଙ୍କୁ କିପାଁ କରିବ ବଞ୍ଚିତ,
କୃପାନିଧି, ଏହା ଟିକି ତୁମ୍ଭର ଉଚିତ ?
ମାତ୍ର ହରି, ପାଣ୍ଡବର ଆଶା ନ ପୂରିଲା,
କୌରବର ଅହଙ୍କାର ଅଧିକେ ବଢ଼ିଲା ।
ଯା କଲା କୌରବ ସବୁ [illegible]ଟି ସମ୍ଭବ,
ଧନ୍ୟ ଭାଗ୍ୟବନ୍ତ ଧନ୍ୟ ଧନ୍ୟ ସେ କୌରବ ।
ଧର୍ମ ତେଜି ଅଧର୍ମ ଆଚରି ପଦେ ପଦେ
ବିରାଜଇ ଧରାଧାମେ ଅଶିବ ସମ୍ପଦେ ।
ତୁମ୍ଭ ଯୋଗୁଁ ହେଉଅଛି ଏପରି ଭିଆଣ,
ତୁମ୍ଭେଟି ସବୁରି ହେତୁ, ନାହିଁ ହେତୁ ଆନ ।
ଦୁଷ୍ଟର [illegible]ନକାରୀ ଧର୍ମର ପାଳନ,
ଆତୁର ଜନଙ୍କୁ ତୁମ୍ଭେ କରଟି ତାରଣ ।
ଦୁଷ୍ଟ ଜନ କେହି ଯେବେ ଅଧର୍ମ ଆଚରେ,
ନ୍ୟାୟମାର୍ଗ ଲଙ୍ଘି ସାଧୁଠାରେ ହିଂସା କରେ,
କାହାରିକି କିଛି କହେ ନାହିଁ ସାଧୁ ନର,
ସାକ୍ଷୀ କରି କହେ 'ମୋର ଅଛନ୍ତି ଈଶ୍ୱର' ।
ନୀରବେ ସେ ସହିନିଏ ସମସ୍ତ ପୀଡ଼ନ,
ମାତ୍ର ସବୁବେଳେ ଭାବେ ତୁମ୍ଭର ଚରଣ ।
ପଦେ ପଦେ ଧର୍ମ ଧରେ ତୁମ୍ଭ ପାଦ ଧ୍ୟାୟି,
ତୁମ୍ଭର ଭକତି ସ୍ତୁତି ନିତି କରୁଥାଇ ।
ଏହି କି ତୁମ୍ଭର, ନାଥ, ଈଶ୍ୱରଲକ୍ଷଣ ?
ଅଧର୍ମୀ ଜନର କର ସମ୍ପଦ-ବର୍ଦ୍ଧନ !
ଅଧର୍ମୀର ସାହା ତୁମ୍ଭେ ଅଟ ଯେବେ, ହରି,
ଆଗୁ ଜଣା ଥିଲେ କିପାଁ ହୁଅନ୍ତା ଏପରି ?
ତୁମ୍ଭର ମହିମା କେବା ବୁଝିବାକୁ କ୍ଷମ ?
ଅନନ୍ତ ଭୁବନେ ତୁମ୍ଭ କର୍ମ ଅନୁପମ !
ଯାହା ଇଚ୍ଛା ତାହା ତୁମ୍ଭେ କରୁଛ ସାଧନ,
ତ୍ରିଭୁବନେ ହର୍ତ୍ତା କର୍ତ୍ତା ଆତୁର-ରକ୍ଷଣ ।
ଅଗ୍ନିକୁଣ୍ଡୁଁ ପ୍ରହ୍ଲାଦକୁ ରଖିଲ ଶ୍ରୀହରି,
କୃଷ୍ଣାଲଜ୍ଜା ନିବାରିଲ ବସ୍ତ୍ର ଦାନ କରି ।
ତୁମ୍ଭ ଯୋଗୁଁ ଜତୁଗୃହୁଁ ବଞ୍ଚିଲୁଁ ସରବେ,
ବନବାସ କଟାଇଲୁଁ ଅତୁଳ ବିଭବେ ।
ଦୁର୍ବାସାଙ୍କ ଅଭିଶାପୁଁ ରଖିଲ କେଶବ,
ରଖିଲ ଭୀମକୁ ବିଷ ଦେଲାରୁ କୌରବ ।
ଏକଚକ୍ରା ଗ୍ରାମେ ରକ୍ଷଃ ମୁଖୁଁ କଲ ପାରି,
ପାଣ୍ଡବର ସଖା ମନ୍ତ୍ରୀ ତୁମ୍ଭେ, ଦଇତାରି ।
ଅସାଧ ତୁମ୍ଭର ପୁଣି କି ଅଛି ଜଗତେ,
ତେଣୁ ରକ୍ଷାକର, ନାଥ, ଡାକୁଛି ଆରତେ ।
ଭୀଷ୍ମଶରୁଁ ଉଦ୍ଧାର ହେ ବ୍ରହ୍ମାଣ୍ଡଠାକୁର,
କୃପା-ଅକୂପାର ନାମ ଘୋଷୁ ତିନିପୁର ।''
ଭୀମ କହେ, ''ଆହେ ହରି, ତୁମ୍ଭର ଭିଆଣ
ଦେଖି ବିସ୍ମୟରେ ମୁହିଁ ହେଲି ହତଜ୍ଞାନ ।
ଆମ୍ଭେ ପାଞ୍ଚଭାଇ, ପ୍ରଭୁ ତ୍ରିଭୁବନଜେତା,
ଧର୍ମବନ୍ତ ଧର୍ମପୁତ୍ର ଯାହାଙ୍କର ନେତା ।
ଯାର ଧର୍ମବଳଯୋଗୁଁ ସର୍ବତ୍ର କୁଶଳ,
ତୋତେ ବାଞ୍ଛା କରି ଦେଲା ଯେଉଁ ଧର୍ମବଳ ।

ଯାଅ ଛାଡ଼ି ଯହିଁ ଇଚ୍ଛା କର ତୁ ଗମନ,
ଧର୍ମ ତ ଆମ୍ଭର ଯିବ ନାହିଁ, ନାରାୟଣ ?
କରିଅଛି ଟାଣପଣ ଗଙ୍ଗାର କୁମାର,
କାଲି ରଣେ ପାଣ୍ଡବଙ୍କୁ କରିବ ସଂହାର ।
କୋଟି ଭୀଷ୍ମ ଆସେ ଯେବେ, କୋଟି ଦୁର୍ଯ୍ୟୋଧନ,
କୋଟି କର୍ଣ୍ଣ, କୋଟି ଶଲ୍ୟ, କୋଟି ଗୁରୁ ଦ୍ରୋଣ,
ମିଶନ୍ତି ସେ ପକ୍ଷେ ଯେବେ ଅମର ସକଳେ,
ତୁମ୍ଭେ ନିଜେ ଯାଇ ଯେବେ ମିଶ ସେହି ଦଳେ,
ଧର୍ମଙ୍କୁ ଅଗ୍ରତେ ଥୋଇ ଆମ୍ଭେ ପାଞ୍ଚଭାଇ
ତୁମ୍ଭ ନାମ ସ୍ମରି ଯିବୁଁ ସମରେ, ଗୋସାଇଁ ।
ତୁମ୍ଭ ନାମ ଧର୍ମବଳେ ନିଶ୍ଚେ ହେବୁଁ ଜୟୀ,
ସ୍ୱନେତ୍ରେ ଦେଖିବ ସବୁ ରଣସ୍ଥଳେ ରହି ।
ଲାଜ ମାତ୍ର ନାହିଁ, ବସିଅଛ ପୋତି ମଥା,
ତୁମ୍ଭର ଏ ରୀତି, ତୁମ୍ଭେ ବ୍ରହ୍ମାଣ୍ଡ-କରତା ।
ଯେ ଭଜେ ତୁମ୍ଭଙ୍କୁ ତାକୁ ଦୁଃଖ ଦେଲେ ଆଣି
ଜଗତପାବନ ନାମ କିପାଁ ନେବେ ପ୍ରାଣୀ ?''
କହନ୍ତି ଅର୍ଜୁନ, ''ଶୁଣ, ଆହେ ନାରାୟଣ,
ବୃଥା ବାକ୍ୟବ୍ୟୟେ ପ୍ରଭୁ କେଉଁ ପ୍ରୟୋଜନ ?
ଯାଲାଗି ହୋଇଛି ତୁମ୍ଭ ଅବତାର ଭବେ,
ତୁମ୍ଭ ଆଜ୍ଞାବର୍ତ୍ତୀ ହୋଇ ଆସିଛୁଁ ସରବେ ।
ତୁମ୍ଭେ ଜାଣ, ଆମ୍ଭେ ପୁଣି ଜାଣୁଁ ସେହି କଥା,
ବିଧାତାଭିଆଣ କେବେ ନୋହିବ ଅନ୍ୟଥା ।
ବୃଥାରେ ହେଉଛ କିପାଁ ଏପରି ଅଥୟ,
ଭୀଷ୍ମ ପଣ କହି କିପାଁ ଦେଖାଉଛ ଭୟ ?
ଭୀଷ୍ମ ପଣ ଶୁଣି, ପ୍ରଭୁ, ହେଲ ଏତେ ସରି ।
ତୋ କୃପାରେ ଦାସ ତୋର ସବୁ ପାରେ କରି ।
ପିତାମହଠାରେ, ନାଥ, ଅଛି ଯେଉଁ ଶର
ହେଳେ ମୁଁ ଛେଦିବି କାଲି ତୁମ୍ଭରି ଆଗର ।
ଏହି ଭୟେ କରି ଯିବ ଆମ୍ଭଙ୍କୁ ବର୍ଜନ,
ବାଳକର କ୍ରୀଡ଼ା ପ୍ରାୟେ ତୁମ୍ଭ ଆଚରଣ ।
କାଲି ଯାର ପ୍ରଥମ ସଂଗ୍ରାମ ଉପସ୍ଥିତ,
ତା ପ୍ରତି ଏ ବାକ୍ୟ ତୋର ଅଟେ କି ଉଚିତ ?
କିପାଁ କରାଇଲ ତେବେ ଯୁଦ୍ଧ ଆୟୋଜନ ?
କିପାଁ କରାଇଲ ତେବେ ସୈନ୍ୟର ବଣ୍ଟନ ?
ନାରାୟଣୀ ସେନା କିପାଁ ଦେଲ ଦୁର୍ଯ୍ୟୋଧନେ ?
ମୋର ହସ୍ତେ ନାଶ ହେବ କହିଲ ଆପଣେ ।
ଆଦ୍ୟ ଭେଟକାଳେ ଯାହା କହିଥିଲ, ହରି,
ଭୀଷ୍ମ ପଣ ଶୁଣି ସବୁ ଗଲ କି ପାସୋରି ?
ଈଶ୍ୱରଙ୍କ କଥା କିବା ଏହିପରି ଟଳେ ?
ତୁମ୍ଭ ଲୀଳା ଦେଖି ଆଜ ବିସ୍ମିତ ସକଳେ ।''
ତଦନ୍ତରେ ସହଦେବ କହନ୍ତି ବଚନ,

''ଅବଧାନ ହେଉ ପ୍ରଭୁ ଶ୍ରୀମଧୁସୂଦନ ।
ବିଷବୃକ୍ଷ ହୁଏ ଯେବେ ସ୍ୱହସ୍ତରୋପିତ,
ଛେଦନର ଯୋଗ୍ୟ ତାହା ନୁହେଁ କଦାଚିତ ।''
ଅଶ୍ରୁସିକ୍ତ ମୁଖେ ତହୁଁ କହନ୍ତି ନକୁଳ,
''ଏ ଘୋର ସଂକଟେ, ନାଥ, ହୁଅ ଅନୁକୂଳ ।''
କହନ୍ତି ଦ୍ରୌପଦୀ, ''କୃଷ୍ଣ, ଚାହିଁ ଟେକି ମଥା,
କେଉଁ ଦିନୁ ଶିଖିଲ ହେ ଏଡ଼େ ନିଷ୍ଠୁରତା ?
ତ୍ରିଭୁବନେ ଖ୍ୟାତ ତୁମ୍ଭେ ପାଣ୍ଡବର ସାହା,
ଧର୍ମ କର୍ମ ବଳ ବୁଦ୍ଧି ତୁମ୍ଭେ ମାତ୍ର ନାହା ।
କେତେ କେତେ ସଙ୍କଟରୁ କଲ ପ୍ରଭୁ ପାରି,
ଦୁର୍ବାସାଙ୍କ ଭୟେ ରକ୍ଷା କଲ, ଦାନବାରି ।
ଉଦ୍ଧରିଲ ଜୟଦ୍ରଥ ହସ୍ତୁଁ ମୋତେ ହେଳେ,
ବଞ୍ଚାଇଲ କୀଚକର ଆକ୍ରମଣବେଳେ ।
ଶାନ୍ତିପନ ଋଷିଙ୍କର ଆଶ୍ରମେ ମୋ ପ୍ରାଣ
ବଞ୍ଚାଇଲ ଦୟା ବହି, ଆହେ ଭଗବାନ ।
ଖାଣ୍ଡବଦାହନ ପରେ ପାର୍ଥ ସଙ୍ଗେ ଆସି
କହିଥିଲ ଯାହା, ମନେ ରଖିଛି ଏ ଦାସୀ ।
କହିଥିଲ ଏ ଯୁଦ୍ଧର ତୁମ୍ଭେ ଏକା ମୂଳ,
ତୁମ୍ଭ ଯୋଗୁଁ ଦର୍ପିଦର୍ପ ହୋଇବ ନିର୍ମୂଳ ।
ତୁମ୍ଭ ଯୋଗେ ହେବ ଏହି କୁରୁକୁଳ ଧ୍ୱଂସ,
ତୁମ୍ଭ ଯୋଗେ କ୍ଷତ୍ରକୁଳ ହୋଇବେ ନିର୍ବଂଶ ।
ଭୂଭାର ହରଣ ଲାଗି ତୁମ୍ଭେ ଭବତଳେ
ଅବତୀର୍ଣ୍ଣ, ଏହା ମୁହିଁ ଜାଣଇଟି ଭଲେ ।
ତୁମ୍ଭ ସଙ୍ଗେ ଅବତୀର୍ଣ୍ଣ ପରିଚାର ରୂପେ
ପାଞ୍ଚ ଭାଇ, ମୁହିଁ, ଏହା କହିଲ ସ୍ୱରୂପେ ।
ବିପରୀତ କଥା ଏବେ କହ କେଉଁ ହେତୁ ?
ଧର୍ମର ପାଳକ ପରା ତୁମ୍ଭେ ଧର୍ମସେତୁ ।
ଅନନ୍ତ ତୁମ୍ଭର ଲୀଳା ଅଗାଧ ସମୁଦ୍ର,
ତହିଁ କେ ପଶିବ କହ ହୋଇ ଜୀବ କ୍ଷୁଦ୍ର ।
ଦେଲ ତ ଡରାଇ ଥରେ, ମେଣ୍ଟିଲା ବାସନା,
ଏବେ ବସି କର, ପ୍ରଭୁ, ଉପାୟ ସର୍ଜନା ।
ଅସ୍ତ ଗଲେ ରବି, ମୁହିଁ କରିବି ରନ୍ଧନ,
ଉପାୟ ସରଜି ଆସ କରିବ ଭୋଜନ ।
ଅଶେଷ ଚାତୁରୀ ଜାଣ, ଆହେ ନନ୍ଦବାଳ,
ବିଶେଷରେ ନାମ ପୁଣି ତୁମ୍ଭର ଗୋପାଳ ।''
ହରିଙ୍କି ଏରୂପେ ଭାଷି ପରିହାସବାଣୀ
ହସନ୍ତି ବଦନେ ବସ୍ତ୍ର ଦେଇ ପାଟରାଣୀ ।
ତଦନ୍ତେ କହନ୍ତି ବାଣୀ ପାଣ୍ଡୁକୁଳରାଣ,
''ଯେ ଇଚ୍ଛା ତୁମ୍ଭର ତାହା ହେଉ ଭଗବାନ ।
ନିଶ୍ଚେ ମୁହିଁ ଜାଣିଲି, ଏବେ, ଆହେ ଭାବଗ୍ରାହି,
ଭୀଷ୍ମଶରେ ପାଣ୍ଡବର କାଲି ରକ୍ଷା ନାହିଁ ।

ସତେ କି ଆମ୍ଭଙ୍କୁ ତେବେ ତେଜିଲ ହେ ନାଥ ?
ତୁମ୍ଭେ ନାଥ ଥାଉଁ ଆମ୍ଭେ ହେଲୁଁ କି ଅନାଥ ?
ସ୍ୱପନେ ନ ଭାବିଥିଲି କରିବ ଏସନ,
ଏ ତୁମ୍ଭର ନୁହେଁ, ହରି, ଈଶ୍ୱରଲକ୍ଷଣ।
କୃପା-ଅକୂପାରୁଁ ବିନ୍ଦୁମାତ୍ର କୃପା ପାଇଁ
ଝୁରି କି ନିରାଶ ହେଲୁଁ ବ୍ରହ୍ମାଣ୍ଡଗୋସାଇଁ ?
ପାଣ୍ଡବଙ୍କୁ ସତେ ପ୍ରଭୁ , କଲ କି ନିରାଶ ?
ଚିରଭକ୍ତ ଆଶା କଲ ସମୂଳେ ବିନାଶ।
କୁନ୍ତୀଙ୍କ ମାଗୁଣି ପ୍ରଭୁ, ନ ସ୍ମରିଲ ତିଳେ,
ପାଞ୍ଚ ଭାଇ ତୁମ୍ଭ ହାତେ ସମର୍ପି ଯେ ଥିଲେ।
ଗୁରୁଜନ ବାକ୍ୟ ପ୍ରଭୁ ନ ଘେନିଲ ମନେ,
ନିଶ୍ଚିନ୍ତ ଯେ ଥିଲେ ତୁମ୍ଭ ଆଶ୍ୱାସବଚ୍ନେ।
ଜନନୀ କୁନ୍ତୀଙ୍କ ବାଣୀ ଶିରୋଧାର୍ଯ୍ୟ କରି
ଅଭୟ ତ ଦେଇଥିଲ ପାଣ୍ଡବଙ୍କୁ , ହରି।
କେଉଁ ବେଳପାଇଁ ଦେଇଥିଲ ସେ ଅଭୟ,
ଏ ଆତଙ୍କେ ଛାଡ଼ି ଯେବେ ଯିବ କୃପାମୟ ?
ତୁମ୍ଭେ ଛାଡ଼ି ଗଲେ ସର୍ବେ ଭାସିଲୁଁ ଅକୂଳେ,
ସକଳ ଭରସା ତୁଟି ଗଲାଟି ସମୂଳେ।''
କୃଷ୍ଣେ ଚାହିଁ ନରପତି ଭାଷିଲେ ଏସନ,
ଲୋତକେ ପୂରିତ ହେଲା ଯୁଗଳ ନୟନ।
କହେ ଭୀମ, ''ମହାରାଜ, ଶୁଣ ମୋର ବାଣୀ,
ଯେତେକ ଅନର୍ଥ ତୁମ୍ଭେ ଘଟାଇଲ ଆଣି।
ତୁମ୍ଭେ କହ, କରେଁ ମୁହିଁ ଧର୍ମ ଆଚ୍ରଣ,
ଧର୍ମତେଜେ ଭିଆଇବି ଶତ୍ରୁଙ୍କ ନିଧନ।
ଧର୍ମଯୋଗୁଁ ଚିରସଖା ମୋହର କେଶବ,
ରଣେ ଭିଆଇବେ ସେହି ଶତ୍ରୁ ପରାଭବ।
ବୃଥା ହେଲା ସବୁ ଆଶା, ଧର୍ମ ଆଚ୍ରଣେ
ଯେ ଫଳ ଫଳିଲା ତାହା ଦେଖିଲ ଆପଣେ।
କୃଷ୍ଣଙ୍କୁ ନିଜର ଭାବି ସମୁଚିତ ଫଳ
ଲଭିଲ, ଅମୃତୁଁ ଜାତ ହେଲାଟି ଗରଳ।
ପ୍ରତି ପଦେ ପଦେ ତୁମ୍ଭ ଆଶା ପୂର୍ଣ୍ଣ କରି
ବୁଡ଼ାଇଲେ ଭେଳା ଏବେ ସିନ୍ଧୁ ମଧ୍ୟେ ହରି।
ସବୁବେଳେ ଥିଲା, ରାଜା, ଧର୍ମ ତୁମ୍ଭ ଲକ୍ଷ୍ୟ,
ଧର୍ମର ଯେ ଫଳ ତାହା ହେଲାଟି ପ୍ରତ୍ୟକ୍ଷ।
ଆଉ କି କହିବି ମୁହିଁ, ଶୁଣ ନରପତି,
ଯେତେ ଆଶା ବାନ୍ଧିଥିଲ ହୃଦେ ହରି ପ୍ରତି,
ଏବେ ତ ଜାଣିଲ ସେହି ପ୍ରିୟ ବନ୍ଧୁ କର୍ମ,
ବନ୍ଧୁତ ଭରସା କରିଥିଲ, ଆହେ ଧର୍ମ।
ହେ କିରୀଟି, କର ଆଉ ଭରସା କାହାର ?
ନିଜ ବାହୁବଳେ କର କୌରବ ସଂହାର।
ଲକ୍ଷ ରାଜା ପରାଜିଲ କୃଷ୍ଣା ସ୍ୱୟମ୍ବରେ,
ଭଦ୍ରା ଲାଗି ଯଦୁସେନା ଦଳିଲ ସମରେ।
ଦେବଗଣ ଜିଣି କଲ ଖାଣ୍ଡବ ଦହନ,
ବାହୁଯୁଦ୍ଧେ ତୁଷ୍ଟ କଲ ଦେବ ତ୍ରିଲୋଚ୍ନ।
ନିବାତକବଚ୍ ନାଶି ତୋଷିଲ ବାସବେ,
ଗୋଗୃହେ ଜିଣିଲ କୁରୁବାହିନୀ ଆହବେ।
ଗନ୍ଧର୍ବର ହସ୍ତୁଁ ମୁକ୍ତ କଲ ଦୁର୍ଯ୍ୟୋଧନ,
ଏବେ ସେ ସମରେ କରି ସସୈନ୍ୟ ନିଧନ
ଯୁଧିଷ୍ଠିରେ ରାଜଛତ୍ର ଦିଅ ଏବେ, ଭାଇ,
ବନ୍ଧୁ ବାନ୍ଧବର ଆଉ ଆଶା ରଖ ନାହିଁ।
ଭୀଷ୍ମର ପ୍ରତିଜ୍ଞା ମହୀ ହେବ ଅପାଣ୍ଡବା,
ତୁମ୍ଭେ, ଭାଇ, କାଲି ମହୀ କର ଅକୌରବା।
ଆସିଛନ୍ତି ଦୂରୁଁ ଯେତେ ଯେତେ ରାଜଗଣ,
ସମସ୍ତଙ୍କୁ ବିଦା କରି ଦିଅ ଏହିକ୍ଷଣ।
ପର କେଉଁ କାଳେ, ଭାଇ, ହୁଏ କି ନିଜର ?
ସବୁ କାଳେ ଜଣା ଏହା – ଯେ ପର ସେ ପର।
ଗାଣ୍ଡୀବ କୋଦଣ୍ଡ ତୋର, ଅକ୍ଷୟ ଯେ ତୂଣ,
କାଲି ରଣେ କର, ଭାଇ, ଭୀଷ୍ମପଣ ଚୂର୍ଣ୍ଣ।''
କହୁଁ କହୁଁ ଭୀମ ରୋଷେ ହେଲେକ ଅସ୍ଥିର,
ଚକ୍ଷୁ ଠାରି ନିବାରିଲେ ତାଙ୍କୁ ଯୁଧିଷ୍ଠିର,
''ଧୈର୍ଯ୍ୟଧର, ବୀର, ଏହା ନୋହେ କ୍ରୋଧକାଳ
ସାଧୁ ଯେ ସେ କ୍ରୋଧବଶେ ହୁଅଇ ଚଣ୍ଡାଳ।
ଏହିପରି ଆମ୍ଭେ ଯେବେ ହେବୁଟି ନିଧନ,
ଅକାରଣ ହେବ ସିନା ଧର୍ମ ଆଚ୍ରଣ।
ଦେଖ କରୁଛନ୍ତି ହରି ଏଥି କି ମନ୍ତ୍ରଣା,
ଆମ୍ଭର ଧର୍ମର ତେଜ ଏହୁଁ ଯିବ ଜଣା।
ନିତାନ୍ତ ଆମ୍ଭଙ୍କୁ ଯେବେ ଛାଡ଼ନ୍ତି ଶ୍ରୀପତି,
ଧର୍ମବଳେ ଅକୌରବା କର ବସୁମତୀ।
ଶ୍ରୀହରିଙ୍କ ମହିମା ନ ଜାଣ, ବୃକୋଦର,
କର୍ମାର୍ଜିତ ଫଳ ପ୍ରଭୁ ଦିଅନ୍ତି ନିକର।''
ଏହା କହି ନରପତି କୃଷ୍ଣେ କଲେ ସ୍ତବ,
''ଆରତଭଞ୍ଜନ ପ୍ରଭୁ ରଖ ହେ ମାଧବ।
ତୁମ୍ଭର ସୃଜନ, ଦେବ, ଏ ତିନି ଭୁବନ,
ସତ୍ତ୍ୱ ରଜଃ ତମଃ ଗୁଣ ଧର୍ତ୍ତୃ, ନାରାୟଣ।
ତୁମ୍ଭେ ବ୍ରହ୍ମା, ତୁମ୍ଭେ ଶିବ, ତୁମ୍ଭେ ଆଖଣ୍ଡଳ,
ତୁମ୍ଭେ ରବି, ତୁମ୍ଭେ ଶଶୀ, ବୃନ୍ଦାରକଦଳ।
ଅନନ୍ତ ଶକତିଧର, ବ୍ୟାପଇ ନିରତେ
ଶକତି ତୁମ୍ଭର ଭୂତେ, ଭବ୍ୟେ, ଭବିଷ୍ୟତେ।
ତୁମ୍ଭେ ଆଦିମୂଳ, ନାଥ, ଜଗତ-କରତା,
ବେଦ ଶାସ୍ତ୍ର ତୁମ୍ଭେ, ନାଥ, ସଭିଙ୍କ ଭରତା।
ମୋହପରି ଭାଗ୍ୟଧର କେବା ତ୍ରିଜଗତେ,
ସାହା ହୋଇ ସଙ୍ଗେ ଯାଉ ଫେର ଅବିରତେ ?

ଯାହାଙ୍କୁ ଭଜନ୍ତି ଯୋଗୀ ଋଷି ଅବିରାମ,
ପଞ୍ଚାନନେ ପଞ୍ଚାନନ ରଟନ୍ତି ଯା ନାମ।
ଚତୁର୍ମୁଖେ ବିରଞ୍ଚି, ସହସ୍ର ମୁଖେ ଶେଷ
ଗାଇ ନ ପାରନ୍ତି ଯାର ମହିମାର ଲେଶ।
ପାଣ୍ଡବର ପତି ତୁମ୍ଭେ ତ୍ରିଭୁବନେ ଖ୍ୟାତ,
ସଂକଟୁ ତାରିଲ କେତେଥର ଜଗନ୍ନାଥ।
ଭୀଷ୍ମର ବାରଣ କଥା ଶୁଣି ଦେହ ଥରେ,
ଅରକ୍ଷରକ୍ଷଣ ଚାହଁ କୃପାକଟାକ୍ଷରେ।
ଭୀଷ୍ମ ଶରେ ପାଞ୍ଚ ଭାଇ ହେବୁଁ ଯେବେ ନାଶ,
ତୁମ୍ଭ ଅପଯଶ ହେବ ଭୁବନେ ପ୍ରକାଶ।
ତୁମ୍ଭର ଆଶ୍ରିତ, ନାଥ, ଏହି ପଞ୍ଚ ପ୍ରାଣୀ,
ଶରଣ ସମ୍ଭାଳ, ଆହେ ପ୍ରଭୁ ଚକ୍ରପାଣି।''
ଏହିରୂପେ ସ୍ତବ ଯହୁଁ କଲେ ଯୁଧିଷ୍ଠିର,
ବୋଇଲେ ପ୍ରସନ୍ନ ମୁଖେ ପ୍ରଭୁ ଯଦୁବୀର,
''ବୃଥା ଚିନ୍ତା କି କାରଣେ କର ହେ ରାଜନ
ଯଥା ମୁହିଁ, ସେହିପରି ତୁମ୍ଭେ ପାଞ୍ଚ ଜଣ।
ତୁମ୍ଭଙ୍କୁ ବଧିବ ଏଡ଼େ ଶକତି କାହାର ?
ଥାଉ ଆନ, ବ୍ରହ୍ମା ଶିବେ ନାହିଁ ଅଧିକାର;
ଏଥି କେଉଁ ତୁଚ୍ଛ ପୁଣି ଗଙ୍ଗାର ନନ୍ଦନ।
କେଉଁ ତୁଚ୍ଛ ବାଣେ ପୁଣି କରିବ ନିଧନ।
ତ୍ରିଲୋକବିଜୟୀ ଅଟ ତୁମ୍ଭେ ପାଞ୍ଚ ଭାଇ,
ତୁମ୍ଭମାନଙ୍କର ମୃତ୍ୟୁ ଧରଣୀରେ ନାହିଁ।
ଯାବତ ତୁମ୍ଭର ଶତ୍ରୁ ନୋହିବ ନିଧନ,
ଯାବତ ତୁମ୍ଭର ରାଜ୍ୟ ନ ଲଭ, ରାଜନ,
ଯାବତ ତୁମ୍ଭଙ୍କୁ ଘେନି ବୈକୁଣ୍ଠେ ନ ଯିବି,
ତାବତ ନିଶ୍ଚିନ୍ତ ମୁହିଁ କେବେ ନ ହୋଇବି।
ତୁମ୍ଭେ ପାଞ୍ଚ ଭାଇ ମୋର ରତ୍ନ ଧରଣୀରେ,
ଚିନ୍ତା ଛାଡ଼ି ଦିଅ ମୋର ଏ ଅଭୟ ଗୀରେ।''
ଏହା କହି ମହାଦରେ ଦେବକୀନନ୍ଦନ
ଶ୍ରୀଭୁଜେ ଧର୍ମଙ୍କୁ ଦେଲେ ପ୍ରେମଆଲିଙ୍ଗନ।
ଆଲିଙ୍ଗିଲେ ଭୀମାର୍ଜୁନ ମାଦ୍ରୀ ସୁତଦ୍ୱୟେ,
ବହିଲା ଉଲ୍ଲାସସ୍ରୋତ ପାଣ୍ଡବହୃଦୟେ।
ପୁଲକେ ପୂରିତ ହୋଇ ପ୍ରଫୁଲ୍ଲ ସକଳେ,
ବସନ ଭୂଷଣ ତିନ୍ତି ଗଲା ଚକ୍ଷୁଜଳେ।
ଜଡ଼ହୃଦ ହୋଇଗଲା ହରଷେ ତରଳ,
ସଭାତଳେ ପଡ଼ିଗଲା ଆନନ୍ଦଚହଳ।
କହନ୍ତି ଅର୍ଜୁନେ ଚାହିଁ ବ୍ରହ୍ମାଣ୍ଡଗୋସାଇଁ,
''ମାୟାଦୁର୍ଯ୍ୟୋଧନ ବେଶେ ଭୀଷ୍ମ ପାଶେ ଯାଇ
ଛଳି ତାଙ୍କୁ ଏହି ରାତ୍ରେ ଆଣ ପଞ୍ଚ ବାଣ,
ଏକମାତ୍ର ଏହି ପରିତ୍ରାଣର ବିଧାନ।
ମାୟାଦୁର୍ଯ୍ୟୋଧନ ବେଶ ରଚନା କଠିନ
ନୁହଇଁ ମୁକୁଟ ତା'ର ହେଲେ କରାଧୀନ।
ଅତୁଳ ରତନେ ଗଢ଼ା ସେ ମୁକୁଟ ଭବେ,
ସେ ମୁକୁଟ ମାଗ ଯାଇ ସଭାସ୍ଥ କୌରବେ।
ନାହିଁ କି ସ୍ମରଣ, ବୀର, ଯେବେ କାମ୍ୟବନେ
ସ୍ତ୍ରୀଗଣ ସହିତେ ବାନ୍ଧି ନେଇ ଦୁର୍ଯ୍ୟୋଧନେ
ଯାଉଥିଲା ଚିତ୍ରସେନ, ଧର୍ମ ଆଜ୍ଞା ପାଇ
ନାରୀଗଣସହ ତାଙ୍କୁ ଥିଲ ମୁକୁଳାଇ।
ପ୍ରୀତ ହୋଇ ଦୁର୍ଯ୍ୟୋଧନ ଯାଚିଥିଲା ବର,
'ପ୍ରୟୋଜନ ଦିନେ ନେବି' ବୋଲିଲ ଉତ୍ତର।
ସେହି ବର ଫଳେ ଆଜ କୁରୁପତିଠାରୁ
ସେ ମୁକୁଟ ମାଗି ନେଇ କୌରବ ସଭାରୁ,
ଯାଇ ଦୁର୍ଯ୍ୟୋଧନ ବେଶେ ଭେଟ ଭୀଷ୍ମବୀରେ,
ଯା କରିବ କର, ଭାଇ, ଆଜ ରଜନୀରେ।
ଛଳି ଭୀଷ୍ମେ ଆଣ ସେହି ପଞ୍ଚ ମୃତ୍ୟୁଶର,
ଆନର ଅସାଧ ଯାହା ସାଧ ସେ ତୁମ୍ଭର।
ପଛେ ପଛେ ଯିବି ମୁହିଁ ତୁମ୍ଭର ଗହଣେ,
ସବୁ ବାଧା ବିପତ୍ତିକି ଦଳିବି ଚରଣେ।''
ବେନି ସଖା ମନେ ପାଞ୍ଚି ଏ ମନ୍ତ୍ରଣା ସାର
ଧର୍ମଙ୍କୁ ପ୍ରଣମି ହେଲେ ଶିବିରୁ ବାହାର।

## [ ଦ୍ୱିତୀୟ ସର୍ଗ ]

ହସ୍ତିନାରେ ସଭାତଳେ କୌରବନୃପତି
ବିରାଜନ୍ତି, ସଙ୍ଗେ ସଖା କର୍ଣ୍ଣ ମହାମତି।
ଅନେଶତ ଭ୍ରାତା ସଙ୍ଗେ ଜୟଦ୍ରଥ ବୀର,
ନିମନ୍ତ୍ରିତ ଆଉ ଯେତେ ରାଜନ୍ୟପ୍ରବୀର।
ନାନାରଙ୍ଗେ ଗଳ୍ପାମୋଦେ ପ୍ରମତ୍ତ ସରବେ,
କମ୍ପୁଅଛି ସଭାସ୍ଥଳୀ ହର୍ଷକଳରବେ।
ସମସ୍ତଙ୍କୁ କୁରୁନାଥ ଦିଅନ୍ତି ଅଭୟ–
''ଶକ୍ତିମତେ କର ସର୍ବେ ମୋର ଶତ୍ରୁକ୍ଷୟ।''
ଆଗନ୍ତୁକେ ଲଭିଛନ୍ତି ଯୋଗ୍ୟ ବସାଘର,
ଯୋଗାନ୍ତି ନିରତେ ଭକ୍ଷ୍ୟ ପେୟ ଅନୁଚର।
ଆସନ ବସନ ଶଯ୍ୟା ଆଦି ଉପାୟନ
ଲଭୁଛନ୍ତି ମନୋମତ ସୈନ୍ୟେ ଅନୁକ୍ଷଣ।
ମହାହର୍ଷେ ମତ୍ତ ଆଜି କୌରବଭୂପତି,
ପାତ୍ର ମିତ୍ର ବସିଛନ୍ତି ବେଢ଼ି ଚଉକତି।
ସେନାପତି ହେବେ କାଲି ଗଙ୍ଗାର କୁମାର,
ନିଶ୍ଚେ ରଣେ ଶତ୍ରୁ ହେବ ସମୂଳେ ସଂହାର।

ଥାଏ ଯେବେ ସେହି ଶର ଭୀଷ୍ମର ସଦନେ,
ମାତ୍ର ହରି ପଶି ପାରେ ସମସ୍ତଙ୍କ ମନେ।
କେଜାଣି ସେ ବାଣ ଯେବେ ହରଇ କୌଶଳେ,
ଅସାଧ ସେ ମାୟାବୀର କିବା ଭବତଳେ ?
ଭାବନ୍ତି ଏସନ ମନେ ରାଜା ଦୁର୍ଯ୍ୟୋଧନ,
ତାଙ୍କୁ ଚିନ୍ତାମଗ୍ନ ଦେଖି ରବିଙ୍କ ନନ୍ଦନ
ବୋଇଲେ, "ହେ ରାଏ, କିପାଁ ଅଛ ମୂକବତ ?
ଏକାଳେ ଏ ଭାବ ଏହା ନୁହଇ ଯୁକତ।
ବିଧାତା ବିଧାନ କେବେ ନୋହିବଟି ଆନ,
ଏହା ଜାଣି ବୃଥା ଚିନ୍ତା ଛାଡ଼, ନରରାଣ।
ତ୍ରିଭୁବନଜୟୀ ତୁମେ ବଳେ ମହାବଳୀ,
ନିଜ ତେଜେ ଶତ୍ରୁକୁଳ ଦେଇଅଛ ଦଳି।
ଶକ୍ତିମତେ ତୁମ୍ଭଲାଗି ଯୁଝିବି ମୁଁ ରଣେ।"
ଉତରିଲେ ଦୁର୍ଯ୍ୟୋଧନ କର୍ଣ୍ଣର ବଚନେ,
"ଶୁଣ ମିତ୍ର କର୍ଣ୍ଣବୀର ଅଙ୍ଗଦେଶପତି,
କିଲାଗି ଚିନ୍ତାରେ ମୁହିଁ ମଗନ ସମ୍ପ୍ରତି।"
କର୍ଣ୍ଣ କର୍ଣ୍ଣେ ମୁଖ ଦେଇ ଭୀଷ୍ମଙ୍କର ପଣ
କହି ଜଣାଇଲେ ସବୁ ଗାନ୍ଧାରୀନନ୍ଦନ।
ହସି କହେ କର୍ଣ୍ଣ, "କିପାଁ ଆଉ, ନରବର,
ଚିନ୍ତାକୁ ବୃଥାରେ ସ୍ଥାନ ଦେଉଛ ମନର ?
ଖଣ୍ଡିଲା ଅରିଷ୍ଟ ଯେତେ, ଯାବତ ଜଞ୍ଜାଳ,
ନିର୍ବିରୋଧେ ମହୀ ଭୋଗ କର, ମହୀପାଳ।"
ବୋଲନ୍ତି ନୃପତି, "ସଖା, କର ଅବଧାନ,
ଭୀଷ୍ମର ପ୍ରତିଜ୍ଞାବାଣୀ ନୋହିବଟି ଆନ।
ମାତ୍ର ପଞ୍ଚ ପାଣ୍ଡବ ଯେ ପୃଥିବୀର ରତ୍ନ,
ରତ୍ନଲାଭ ଲାଗି ଲୋକେ କରନ୍ତିଟି ଯତ୍ନ।
ମୁହିଁ ସେ ତାଙ୍କର ବୈରୀ ହେଲି ଏ ଜଗତେ,
ମୁହିଁ ହେଲି ବ୍ରତୀ ସେହି ରତ୍ନଧ୍ୱଂସ ବ୍ରତେ।
ତେଣୁ କହୁଅଛି, ଆହେ ଆଦିତ୍ୟ-କୁମାର,
କାଲି ନିଶ୍ଚେ ରଣେ ହେବ ପାଣ୍ଡବସଂହାର।
ମୁଁ କିସ କରିବି ଆଉ ଏ ସଂସାରେ ଥାଇ,
ତୁମ୍ଭ ସଙ୍ଗେ ମନ୍ତ୍ରଣା ବିହିବି କାହାପାଇଁ ?
ଭାବିଥିଲି କେତେଦିନ ମିଳ ଏହିମତେ,
ଲାଗିଥିବ ନାନା ରଙ୍ଗ ପାଣ୍ଡବ ସଙ୍ଗତେ।
ନୋହିଲା ସେ ଆଶା ପୂର୍ଣ୍ଣ, ଆହେ ବୈକର୍ତ୍ତନ,
ଅକସ୍ମାତ ଭିଆଇଲା ବିହି ଏ ଘଟନ।
ତେଣୁ ଏ ପ୍ରାର୍ଥନା ମୋର ପ୍ରଭୁଙ୍କ ପୟର,
ପାଣ୍ଡବେ ରହନ୍ତୁ, ମୁହିଁ ଯାଏଁ ଲୋକାନ୍ତର।"
ବୋଇଲେ ରାଧେୟ, "ଆହେ ଧରା-ଆଖଣ୍ଡଳ,
ତୁମ୍ଭର ବାସନା ହେବ ସର୍ବଥା ସଫଳ।
ରହିଯିବ ମହାକୀର୍ତ୍ତି ଏ ମହୀମଣ୍ଡଳେ,
ଯାବତ ଚନ୍ଦ୍ରାର୍କ ତାହା ଗାଇବେ ସକଳେ।"
ଏହା ଶୁଣି ଦୁର୍ଯ୍ୟୋଧନ ହେଲେ ହୃଷ୍ଟମନ,
ଏକାଳେ ପ୍ରବେଶ ହେଲେ ଇନ୍ଦ୍ରଙ୍କ ନନ୍ଦନ।
ପୂର୍ବଦ୍ୱାରେ ପ୍ରବେଶିଲେ ବୀର ଧନଞ୍ଜୟ,
ଦ୍ୱାରୀ ଥିଲେ ଯେଉଁ ଦ୍ୱାରେ ସଞ୍ଜୟତନୟ।
ଥିଲେ ତାଙ୍କ ସଙ୍ଗେ ନାନା ଅନୁଚର ଲୋକେ,
ଭାସ୍ୱର ଥିଲା ଯେ ଦ୍ୱାର ଦିହୁଡ଼ି-ଆଲୋକେ।
ଭେଟନ୍ତେ ଅର୍ଜୁନ, ଦ୍ୱାରୀ ପୁଛୁଁ ପରିଚୟ,
ଦେଲେ ପରିଚୟ ତାଙ୍କୁ ବୀର ଧନଞ୍ଜୟ।
ବୋଇଲେ ଆବର, "ଶୁଣ, ଆହେ ଦ୍ୱାରିଗଣ,
ରାଜାଙ୍କ ଛାମୁରେ ଅଛି ମୋର ପ୍ରୟୋଜନ।
ଜଣାଅ ଛାମୁରେ ମୋର ଆଗମନବାଣୀ,
ଦ୍ୱାର ଛାଡ଼ିଦିଅ ମୋତେ ରାଜଆଜ୍ଞା ଆଣି "।
ସଞ୍ଜୟତନୟ ତହୁଁ ପାର୍ଥେ କରି ନତି
ଭେଟିଲେ ସତ୍ୱରେ ଯାଇଁ କୁରୁନରପତି।
ଯୁଗ୍ମକରେ ନିବେଦିଲେ, "ଆହେ ନରରାଣ,
ମୋର ଏ ବଚନେ ହେଉ ଦିବ୍ୟ ଅବଧାନ।
ଇନ୍ଦ୍ରର ଅଙ୍ଗଜ ଯେହୁ, ମଧ୍ୟମ ପାଣ୍ଡବ,
ସ୍ୱର୍ଗେ ଯାଙ୍କୁ ନେଇଥିଲେ ଦେବତା ବାସବ,
ଶିବଙ୍କୁ ଯେ ତୁଷ୍ଟ କଲେ ବାହୁ ଯୁଦ୍ଧ କରି,
ଖାଣ୍ଡବ ଦହିଲେ ଯେହୁ ସଙ୍ଗ କରି ହରି,
ଜିଣିଲେ ଯେ ଲକ୍ଷେ ରାଜା କୃଷ୍ଣା ସ୍ୱୟମ୍ବରେ,
ବାସବ-ଅରାତି ଦୈତ୍ୟେ ନାଶିଲେ ସମରେ,
ବିରାଟ-ଗୋଧନ ମୁକ୍ତ କଲେ ଯେଉଁ ଜନ,
ଯାଦବୀଙ୍କି ବିଭା ହେଲେ ଜିଣି ଯଦୁଗଣ,
ତୁମ୍ଭଙ୍କୁ ଯେ ମୁକ୍ତ କଲେ ଗନ୍ଧର୍ବର ସ୍ଥାନେ,
ସେ ଅର୍ଜୁନ ଦ୍ୱାରେ ଉଭା, ଆସୁ ଅବଧାନେ।"
ଅର୍ଜୁନର ନାମ ଶୁଣି ରାଜା ଦୁର୍ଯ୍ୟୋଧନ
କର୍ଣ୍ଣ ସହ ବାହାରିଲେ ହୋଇ ହୃଷ୍ଟମନ।
ଆଉ ଯେତେ ସଭାସଦ ସେ ସଭାରେ ଥିଲେ,
ନୃପତି ଉଠିଲେ ଦେଖି ସମସ୍ତେ ଉଠିଲେ।
ଆଗଭର ହୋଇ ବ୍ୟସ୍ତେ ଗଲେକ ରାଜନ,
ବସିଥିଲେ ଦ୍ୱାରେ ଯହିଁ କୁନ୍ତୀଙ୍କ ନନ୍ଦନ।
"ଆସ ଆସ ଅର୍ଜୁନ" ବୋଲନ୍ତି କୁରୁସାଇଁ,
"କହ କେଉଁ କାର୍ଯ୍ୟଲାଗି ଆସିଲ, ହେ ଭାଇ ?"
ବିନୟେ ଅର୍ଜୁନ ବନ୍ଦୁ ରାଜାଙ୍କ ଚରଣ,
ବେନି ଭୁଜେ ଧରି ରାଜା ଦେଲେ ଆଲିଙ୍ଗନ।
ମହାଦରେ ନେଇ ରାଜା ଇନ୍ଦ୍ରର ନନ୍ଦନେ
ନିଜ ହସ୍ତେ ବସାଇଲେ ରତ୍ନ-ସିଂହାସନେ।
ଆଉ ଯେତେ ପାତ୍ର ମନ୍ତ୍ରୀ ସଭା ମଧ୍ୟେ ଥିଲେ,
ସମସ୍ତଙ୍କୁ ପାର୍ଥ ମିଷ୍ଟ ବଚନେ ତୋଷିଲେ।

ଶ୍ରମଯୁକ୍ତ ପାର୍ଥେ ଦେଖି ଆଦରେ ରାଜନ
ସ୍ୱହସ୍ତେ ବ୍ୟଜନ ଧରି କରନ୍ତି ବ୍ୟଜନ ।
ବୋଇଲନ୍ତି ଅର୍ଜୁନେ ଚାହିଁ, "କହ ଆହେ ଭାଇ,
ଆସିଲ ସଦନେ ମୋର କେଉଁ କାର୍ଯ୍ୟପାଇଁ ?
ନିଶାକାଳେ ଆଗମନ ଆଶ୍ଚର୍ଯ୍ୟ ଏ କଥା,
କହ, ଭାଇ, ଆଗେ ଗୃହକୁଶଳ ବାରତା ।
ଅଛନ୍ତି ତ ସର୍ବଶୁଭେ ରାଜା ଯୁଧିଷ୍ଠିର,
ଭୀମ, ବେନି ମାଦ୍ରୀସୁତ, ଆଉ ଯେତେ ବୀର ?
ଅଛନ୍ତି ତ ସର୍ବଶୁଭେ କୁମାର ସକଳ ?
ଦ୍ରୁପଦଦୁଲଣୀଙ୍କର ସବୁ ତ କୁଶଳ ?"
ନିବେଦନ୍ତେ ଧନଞ୍ଜୟ ଗୃହ-ଅନାମୟ
ପ୍ରୀତି ପ୍ରକାଶିଲେ ଶୁଣି ଗାନ୍ଧାରୀତନୟ ।
ବୋଇଲେ, "ବଚନ ମୋର ଶୁଣ, ପାର୍ଥଭାଇ,
ବିଧିର ନିର୍ବନ୍ଧ କେବେ ଖଣ୍ଡି ହେବ ନାହିଁ ।
ତୁମ୍ଭେ କି କାରଣେ ଆଜ ଆସିଲ ଏଠାବେ,
ମୋହ ପାଶେ ମନ ବଳାଇଲ କେଉଁ ଲାଭେ ?
ଅର୍ଜୁନ ବୋଇଲେ, "ଯାହା କହିଲ ପ୍ରମାଣ,
ବିଧିର ବିଧାନ କେବେ ହେବ ନାହିଁ ଆନ ।
ମାତ୍ର ପୂର୍ବ କଥା ରାଜା ଅଛଇ କି ମନେ,
ଚିତ୍ରସେନ ହସ୍ତୁ ଯେବେ ଉଦ୍ଧରିଲି ରଣେ
ତୁମ୍ଭଙ୍କୁ ମହିଷୀ ସହ, ଯାଚିଥିଲ ବର,
ପଡ଼ଇ କି ମନେ ସେହି କଥା ନୃପବର ?
ସେହି ବର ପ୍ରାପ୍ୟ ମୋର ଅଛି ଆଜଯାଏ,
ସେଥିଲାଗି ଶ୍ରୀଛାମୁକୁ ଆସିଲି ମୁଁ, ରାଏ ।"
ଅର୍ଜୁନର ବାକ୍ୟ ଶୁଣି ରାଜା ଦୁର୍ଯ୍ୟୋଧନ
ଦୀର୍ଘଶ୍ୱାସ ତେଜି ମନେ ଭାବିଲେ ତକ୍ଷଣ ।
ବୃଥା ହେଲା ସିନା ମୋର ସମସ୍ତ ଉଦ୍ୟମ,
ବୃଥା ହେଲା ନାନା ଦେଶୁଁ ସୈନ୍ୟ-ସମାଗମ ।
ଆମନ୍ତି ଆଣିଲି ସିନା ବୃଥା ରାଜଦଳ,
ଭୀଷ୍ମର ପ୍ରତିଜ୍ଞା ହେଲା ସମସ୍ତ ବିଫଳ ।
ଯୁଦ୍ଧକାଳେ ପାଣ୍ଡବର ଉପୁଜିଲା ଭୟ ,
ଆସିଅଛି ସେଥିପାଇଁ ବୀର ଧନଞ୍ଜୟ ।
ଭୀତ ତ୍ରସ୍ତ ପାଣ୍ଡବନାଥର ଆଜ୍ଞାମତେ,
ମାଗି ନେବ ରାଜ୍ୟ ପରା ହେଉଛି ପରତେ ।
ପଡୁଅଛି ମନେ ମୋର ପୂର୍ବର ସେ କଥା,
କ୍ଷତ୍ର ମୁହିଁ, କ୍ଷତ୍ର ବାକ୍ୟ ନୁହଇ ଅନ୍ୟଥା ।
ଏହା ଭାବି ଅଧୋମୁଖ ହୋଇ କୁରୁସାଇଁ
କହିଲେ, "ସେ ବରକଥା ମନେଅଛି, ଭାଇ ।"
ବୋଇଲେ ଅର୍ଜୁନ, "ଏବେ ଦିଅ ସେହି ବର,"
"ଯା ମାଗିବ ମାଗ" ରାଜା ଦିହିଲେ ଉତ୍ତର ।
ବୋଇଲେ ଅର୍ଜୁନ, "ଆହେ କୌରବପ୍ରଧାନ,
ମୁକୁଟ ତୁମ୍ଭର ମୋତେ କର ଏବେ ଦାନ ।"
ଉଚ୍ଚହାସ୍ୟେ କୁରୁପତି କହିଲେ ବିସ୍ମିତେ,
"ଆଶ୍ଚର୍ଯ୍ୟ ଲାଗିଲା ଶୁଣି ବରକଥା ଚିତେ ।
ବଡ଼ ଭାଗ୍ୟହୀନ ତୁମ୍ଭେ, ହେ ବୀର ଫାଲ୍‌ଗୁନି,
ଆସିଲ ଯା ଏଥି ଏହି ବର ଲାଗି ପୁଣି ।
ରାଜ୍ୟ ଧନ ଅଶ୍ୱ ହସ୍ତୀ ବସ୍ତ୍ର ଆଭରଣ
ଜନପଦ ବରାଙ୍ଗନା ଅଛି ଅଗଣନ,
ତୁମ୍ଭ ସଙ୍ଗେ ଶତ୍ରୁଭାବ ଛାଡ଼ି ଏ ସକଳ,
ବଳାଇଲ ମନ ଛାର ମୁକୁଟେ କେବଳ !
ଭାଳିଥିଲି ରାଜ୍ୟ ମାଗି ନେବ, ଧନଞ୍ଜୟ,
ଦେଇଥାନ୍ତି ରାଜ୍ୟ ମୁହିଁ ନାହିଁଟି ସଂଶୟ ।
କି ଧନ ମାଗିଲ, ଭାଇ, ମୋର କେଉଁ ଦୋଷ ?
ତୁମ୍ଭଠାରେ ମୋର ବଡ଼ ହେଲାଟି ଆକ୍ରୋଶ ।
ଆହା କେଉଁ ତୁଚ୍ଛ ଦ୍ରବ୍ୟ ମାଗିଲ, ହେ ଭାଇ ।"
ଏହା କହି ଝୁରିହେଲେ କୌରବଗୋସାଇଁ ।
ପାର୍ଥ ବୋଲେ, "ଏଥି କିବା ଦୁଃଖ କୁରୁନାହା,
ଘଟିଲା ମୋ ଭାଗ୍ୟେ ବିହି ଲେଖିଥିଲେ ଯାହା ।
ମୁକୁଟ ତୁମ୍ଭର ମୋତେ ଦିଅ ହେ ରାଜନ,
ମୁକୁଟ ବିହୁନେ ନାହିଁ ଆନ ପ୍ରୟୋଜନ ।
ମୁକୁଟ ପାଇଲେ ମୁହିଁ ପାଇଲି ସମସ୍ତ,
ନ ହୁଅ, ହେ ନରନାଥ, ମୋହୋପାଇଁ ବ୍ୟସ୍ତ ।"
"ନିଅ ତେବେ" ଏହା କହି ରାଜା ଦୁର୍ଯ୍ୟୋଧନ
ମୁକୁଟ ଉତାରି ପାର୍ଥେ କଲେକ ଅର୍ପଣ ।
ମୁକୁଟ ଲଭିଣ ପାର୍ଥ ପ୍ରଫୁଲ୍ଲ ଅନ୍ତରେ
ମେଲାଣି ମାଗିଲେ ରାଜା ପାଶେ ଯୋଡ଼କରେ ।
"କିପାଁ ଯିବ ନିଶାଯୋଗେ ରହିଯାଅ, ଭାଇ",
ଏହା କହି ଅଳି କଲେ କୌରବଗୋସାଇଁ ।
ପାର୍ଥ ବୋଲେ, "କାଲି, ରାଏ, ପ୍ରଥମ ସଂଗ୍ରାମ,
କିପରି କରିବି ମୁହିଁ ଏଠାରେ ବିଶ୍ରାମ ?
ଯାଇ କରିବାକୁ ହେବ ସୈନ୍ୟ-ସମାବେଶ"
ଉତ୍ତରିଲେ "ସତ ସତ" ବୋଲି କୌରବେଶ ।
"ଧର୍ମରାଜେ ଜଣାଇବ ମୋହର ପ୍ରଣାମ,
କହିବ ନିଶ୍ଚୟ କାଲି ପ୍ରଥମ ସଂଗ୍ରାମ ।"
ଉଠିଲେ ମୁକୁଟ ଘେନି ଇନ୍ଦ୍ରର ନନ୍ଦନ,
ଆଶିଷ ପ୍ରଣାମ ପାର୍ଥେ କଲେ ସଭାଜନ ।
ସମାଦରେ ସବାନ୍ଧବେ ତହୁଁ କୁରୁରାଏ
ପାର୍ଥ ସଙ୍ଗେ ସଙ୍ଗେ ଗଲେ ସିଂହଦ୍ୱାରଯାଏ ।
ଘୋର ଅନ୍ଧକାରେ ପାର୍ଥ ଯାଇ କିଛି ଦୂର,
ଭେଟିଲେ ସହସା ପଥେ ବ୍ରହ୍ମାଣ୍ଡଠାକୁର ।
ନତି କଲେ କୃଷ୍ଣେ ବୀର ମୁକୁଟ ଦେଖାଇ,
ସଭାର ସକଳ କଥା ଶ୍ରୀପଦେ ଜଣାଇ ।

ବୋଇଲେ, ''ହେ ମହାପ୍ରଭୁ, ମୋହ ପ୍ରତୀକ୍ଷାରେ
ଏ ନିର୍ଜନେ ଥିଲ କିପାଁ ଏ ଘୋର ଅନ୍ଧାରେ ?''
କହନ୍ତି ଶ୍ରୀପତି, ''ଶୁଣ, ଆହେ ଧନଞ୍ଜୟ,
ଏକା ଯେଣୁ ଥିଲ, ଚିତ୍ତେ ହେଲା ମହାଭୟ।
କାଳେ ଖଳ ଦୁର୍ଯ୍ୟୋଧନ ସାଧିବ ଅହିତ,
ତୁମ୍ଭ ପ୍ରତୀକ୍ଷାରେ ତେଣୁ ଥିଲି ମୁଁ ଚିନ୍ତିତ।''
ବୋଇଲେ ଅର୍ଜୁନ, ''ତୁମ୍ଭ କୃପା ଯାହାଠାରେ,
ଭୀତ କିପାଁ ହେବ ସେହି ଖଳର ବେଭାରେ ?
ତୁମ୍ଭ କୃପାଫଳେ ମୁହିଁ ତ୍ରିଭୁବନଜେତା,
କିସ କରି ପାରେ ମୋର କୁରୁ କ୍ଷୁଦ୍ରଚେତା ?
ତୋ କରୁଣାକଣା, ନାଥ ବାଞ୍ଛାକଳ୍ପତରୁ,
ତାରି ପାରେ ହେଳେ ମୋତେ ସବୁ ବିପଦରୁ।
ଯାହାର ଅଭୟ-ଦୁର୍ଗ ତୋର ପଦ୍ମପାଦ,
ଛୁଇଁବ ତାହାକୁ କିପାଁ କେବେ ପରମାଦ ?''
ବୋଇଲେ ଅର୍ଜୁନେ ତହୁଁ କୃଷ୍ଣ ମହାଶୟ,
''ଶୀଘ୍ରଗତି ଭୀଷ୍ମପାଶେ ଯାଅ, ଧନଞ୍ଜୟ।
ଯାବତ ନ ଆସ ଫେରି ସେ ବାଣ ସହିତ,
ତୁମ୍ଭ ପ୍ରତୀକ୍ଷାରେ ଏଥି ରହିବି, ଭୋ ମିତ।''
''ଯେ ଆଜ୍ଞା'' ବୋଲିଣ ତହୁଁ କୁନ୍ତୀର ନନ୍ଦନ
ନିଜ ଶିରେ ସେ ମୁକୁଟ ଦେଲେ ସେହିକ୍ଷଣ।
ମାୟାଦୁର୍ଯ୍ୟୋଧନବେଶ ବିରଚି କୌଶଳେ
କୃଷ୍ଣେ କରି ନତି ଭୀଷ୍ମ-ଶିବିରକୁ ଗଲେ।
ଏଣେ ଗଙ୍ଗାପୁତ୍ର ବସି ଶିବିର ମଧ୍ୟରେ
ଅସ୍ତ୍ରେ ଭରା ଦେଇ ବୀର ଭାବନ୍ତି ଅନ୍ତରେ,
''ପ୍ରତିଜ୍ଞା ତ କଲି ମୁହିଁ ବଧିବି ପାଣ୍ଡବ,
କି ଅନର୍ଥ ଭିଆଇଲା ଦୁର୍ମତି କୌରବ !
ଅବିଚାରେ ସିନା ମୁହିଁ କଲି ସେହି ପଣ,
ବିନାଶିବି ଧର୍ମବନ୍ତ ପାଣ୍ଡୁପୁତ୍ରଗଣ।
ପୂର୍ବେ ବାଣ ଦେଇ ମୋତେ ବ୍ରହ୍ମାଣ୍ଡର ସାଇଁ,
କହିଥିଲେ ନେବି ମୁହିଁ ଏ ବାଣ ଫେରାଇ।
ଉପସ୍ଥିତ ହେଲା ଏବେ ଏ ବିଷମ କାଳ !
କିପାଁ ନ ନିଅନ୍ତି ବାଣ ଫେରାଇ ଗୋପାଳ ?''
ଏହିରୂପେ ଭାଳୁଁ ଭାଳୁଁ ଗଙ୍ଗାର କୁମର
ଭେଟିଲେ ଶିବିରେ ତାଙ୍କୁ ପାର୍ଥ ଧନୁର୍ଦ୍ଧର।
ମାୟାଦୁର୍ଯ୍ୟୋଧନବେଶେ ଭେଟିଲେ ସେ ଯାଇଁ,
ନତି କଲେ ପାଦେ ଶିର ଭୂମିରେ ନୁଆଇଁ।
ଶୁଭାଶିଷ କରି ଭୀଷ୍ମ ପୁଚ୍ଛିଲେ ବିସ୍ମୟେ,
''ଆସିଲ ଶିବିରେ, ବୀର, ପୁଣି କି ବିଷୟେ ?
କାଲି ଯୁଦ୍ଧେ ଅପାଣ୍ଡବା କରିବି ଧରଣୀ,
କରିଛି ଏ ପଣ ତୁମ୍ଭ ଆଗେ, ନରମଣି।
ପୁଣି ବାହୁଡ଼ିଲ କିପାଁ, ଲାଗଇ ବିସ୍ମୟ,
କି ମନ୍ତ୍ରଣା ଦେଲେ ପୁଣି କର୍ଣ୍ଣ ମହାଶୟ ?
କି ମନ୍ତ୍ରଣା ଦେଲା ପୁଣି ଶକୁନି ଦୁର୍ମତି ?
ସବୁ ଫେଡ଼ି କହ ମୋତେ, ଆହେ କୁରୁପତି।''
ମାୟାଦୁର୍ଯ୍ୟୋଧନରୂପୀ କହନ୍ତି ଅର୍ଜୁନ,
''ନିବେଦିବି ପାଦେ କିପାଁ ଆସିଲି ମୁଁ ପୁଣ।
ତୁମ୍ଭଠାରୁ ବିଦା ହୋଇ ବାହୁଡ଼ି ନବରେ
ବସିଲି ସଭାରେ ଯାଇ ମହାହର୍ଷଭରେ।
କର୍ଣ୍ଣ ଦୁଃଶାସନ ଆଦି ଯେତେ ମନ୍ତ୍ରିଗଣ
ତୁମ୍ଭେ ସେନାପତି ଶୁଣି ସର୍ବେ ହୃଷ୍ଟମନ।
ଆସିଲେ ଏସନକାଳେ ରାଜା ଯୁଧିଷ୍ଠିର
ସଙ୍ଗେ ଘେନି ଚାରି ଭାଇ ପୁଣି ଯଦୁବୀର,
ପୁତ୍ର ସହ ବିରାଟ ଦ୍ରୁପଦ ନୃପବର,
ମହାମୁନି ବ୍ୟାସ ସତ୍ୟବତୀର କୁମର।
ଆସିଲେ ସକଳେ ଯୁଦ୍ଧହେତୁ ଭୟ କରି,
ବୁଝାଇ କହିଲେ ମୋତେ ଦ୍ୱୈପାୟନ ହରି,
''ନ ବଳାଅ ଏ ସମରେ ମତି, ନରପତି,
ତୁମ୍ଭର ମହିମା ଯେତେ ଖ୍ୟାତ ବସୁମତୀ।
ତୁମ୍ଭଙ୍କୁ ପାରିବ ଜିଣି ବଳେ କି କୌଶଳେ
ନାହିଁଟି ଏସନ ବୀର ଏ ମହୀମଣ୍ଡଳେ।
କେଉଁ ତୁଚ୍ଛ ଏଥି ପୁଣି ପଞ୍ଚ ପାଣ୍ଡୁସୁତ,
ବନେ ଭ୍ରମି ଭ୍ରମି ନାନା କଷ୍ଟେ ଅଭିଭୂତ !
ଶରୀରପଞ୍ଜରେ କ୍ଷୀଣ ପ୍ରାଣ ମାତ୍ର ଧରି
ଏମାନେ କି ତୁମ୍ଭ ସଙ୍ଗେ ଯୁଦ୍ଧେ ହେବେ ସରି ?
ସହାୟ ତୁମ୍ଭର ମହାମହା ଯୋଦ୍ଧାଗଣ,
କୋଦଣ୍ଡଟଙ୍କାରେ ଯାଙ୍କ କମ୍ପେ ତ୍ରିଭୁବନ।
ମହାବଳବନ୍ତ ତୁମ୍ଭେ, ପାଣ୍ଡବେ ଦୁର୍ବଳ,
ଶକ୍ତିହୀନ ସଙ୍ଗେ ଯୁଦ୍ଧ ଅଯଶ କେବଳ।
ଶରଣ ତୁମ୍ଭର ଏବେ ନେଲେ ପଞ୍ଚଭାଇ,
ଶରଣ ସମ୍ଭାଳି ରଖ ସୁଯଶ ଗୋସାଇଁ।
ପଞ୍ଚଗ୍ରାମ ଦେଇ କର ଏହାଙ୍କୁ ପାଳନ,
କୀର୍ତ୍ତି ରଖ ନରପତି କୀର୍ତ୍ତି ବଡ଼ ଧନ।''
ନାରାୟଣ ଦ୍ୱୈପାୟନ ଏସନ ବୁଝାଇ
ସମର୍ପିଣ ଦେଲେ ମୋର ହସ୍ତେ ପଞ୍ଚ ଭାଇ।
ଅଶ୍ରୁମୁଖେ ଯୁଧିଷ୍ଠିର କଲେ ପରିହାର,
''ଲାଗିଲା ତୁମ୍ଭଙ୍କୁ ଆମ୍ଭ ପାଳନର ଭାର।''
ଲଙ୍ଘି ନ ପାରିଲି ବ୍ୟାସ ଗୋବିନ୍ଦର କଥା,
ପାଣ୍ଡବେ ଦୁଃଖେ ଦୁଃଖୀ ହେଲି ମୁଁ ସର୍ବଥା।
ତାଙ୍କ ଦୁଃଖେ ଉପୁଜିଲା କରୁଣା ମୋହର,
ସେହିକ୍ଷଣି ତେଜିଲି ମୁଁ ବାସନା ଯୁଦ୍ଧର।
ପାଣ୍ଡବଙ୍କୁ ପଞ୍ଚଗ୍ରାମ ଦେଲି ପିତାମହ,
ବାହୁଡ଼ିଲେ ସେହୁ ବ୍ୟାସ ଶ୍ରୀନିବାସ ସହ।

ତେଣୁ ମୁଁ ଆସିଲି ଦେବ ତୁମ୍ଭର ସଦନ,
କିପାଁ ଯୁଦ୍ଧେ ଯିବ କାଲି ? କେଉଁ ପ୍ରୟୋଜନ ?
ନୋହିଲା ମରଣ ଦେବ ପଞ୍ଚପାଣ୍ଡବର,
ପଣ୍ଡ ହେଲା ଯୁଦ୍ଧର ଯେ ପ୍ରୟାସ ମୋହର ।''
ଅସ୍ତ୍ରେ ଭରା ଦେଇ ଶୋଇଥିଲେ ଗଙ୍ଗାସୁତ,
ମାୟାଦୁର୍ଯ୍ୟୋଧନ ବାକ୍ୟେ ହରଷେ ଆପ୍ଲୁତ
ହୋଇ ଉଠି ବସିଲେ ସେ ଶୟନେ ତକ୍ଷଣ,
ପୁଲକେ ପ୍ରଫୁଲ୍ଲ ହେଲା ତାଙ୍କ ଅପଘନ ।
ବୋଇଲେ, ''ଯେ କଥା ବୀର କହିଲ ଏକ୍ଷଣି,
କଥା ନୁହେଁ, ସୁଧାବୃଷ୍ଟି କଲ, ନରମଣି ।
ମୃତକୁ ଅମୃତ ଦେଲ, ଶରୀରେ ଇନ୍ଦ୍ରିୟ,
ଏଥୁଁ ବଳି ଆଉ ମୋର କିବା ଅଛି ପ୍ରିୟ ?
ଏ କର୍ମ ତୁମ୍ଭର ଯୋଗ୍ୟ, ଶୁଣ ହେ ରାଜନ,
ପାଣ୍ଡବ ସଙ୍ଗତେ କଲ ପ୍ରୀତିରେ ମିଳନ ।
ରଖିଲ ଅତୁଳ କୀର୍ତ୍ତି ଅଖିଳ ଜଗତେ,
ଘୋଷିବେ ଯା କାଳକାଳ ଲୋକେ ନାନାମତେ ।''
ଏହିରୂପେ ପ୍ରଶଂସିଲେ ଗଙ୍ଗାର ନନ୍ଦନ,
ହର୍ଷେ ମାୟାଦୁର୍ଯ୍ୟୋଧନେ ଦେଲେ ଆଲିଙ୍ଗନ ।
ବୋଇଲେ, ''ହେ ବତ୍ସ, ନୋହି ପାଣ୍ଡବେ ବିମୁଖ
ତାଙ୍କ ସଙ୍ଗେ ମିଳି ଏବେ ଭୁଞ୍ଜ ରାଜ୍ୟସୁଖ ।
ବୟୋଜ୍ୟେଷ୍ଠ ଗୁଣଜ୍ୟେଷ୍ଠ ପାଣ୍ଡୁକୁଳରାଣ,
ଜ୍ୟେଷ୍ଠ ବୋଲି ତାଙ୍କୁ ସଦା କରିବ ସମ୍ମାନ ।
ପାଣ୍ଡବଙ୍କୁ ରଖ ଏବେ ନେଇ ସ୍ୱନବରେ,
ବିଦୁରଙ୍କ ଘରୁ ଆଣି କୁନ୍ତୀଙ୍କୁ ସତ୍ୱରେ ।
ମାତୃବତ ପୂଜା ତାଙ୍କୁ ଦିଅ ପୂର୍ବପରି,
ବାସନା ତୁମ୍ଭର ପୂର୍ଣ୍ଣ କରନ୍ତୁ ଶ୍ରୀହରି ।''
ବୋଇଲେ ଅର୍ଜୁନ, ''ଆଜ୍ଞା ପାଳିବି ତୁମ୍ଭର,
ତଥାପି ହୃଦୟେ ଭୀତି ଅଛି ନିରନ୍ତର ।
ଭ୍ରାତୃଗଣ ମଧ୍ୟେ ଦ୍ୱନ୍ଦ୍ୱ ଲାଗେ ସବୁକାଳେ,
ଭ୍ରାତାକୁ ପକାଏ ଭ୍ରାତା ବିପଦର ଜାଳେ ।
ଅକସ୍ମାତ ଘଟି ପାରେ ହିତେ ବିପରୀତ,
ସତର୍କେ ରହିବା ତେଣୁ ନିରତେ ଉଚିତ ।
ତେଣୁ ଏ ମାଗୁଣି ମୋର, ଆହେ ମତିମାନ,
ପାଣ୍ଡବେ ବଧିବ ବୋଲି ଯେଉଁ ପଞ୍ଚ ବାଣ
ଦେଖାଇଣ ଥିଲ ମୋତେ, ସେହି ପଞ୍ଚ ଶର
ଅଭିରୁଚି ଯେବେ ମୋତେ ସମର୍ପଣ କର ।''
ଉତରିଲେ ଭୀଷ୍ମ, ''ଆହେ ସାଧୁ ଦୁର୍ଯ୍ୟୋଧନ,
ସେ ବାଣେ ମୋହର ଆଉ କେଉଁ ପ୍ରୟୋଜନ ?
ନେଇ ସେହି ବାଣ ରଖ ଯହିଁ ଇଚ୍ଛା ତବ,
ତୁମ୍ଭର ମଙ୍ଗଳ ସଦା କରନ୍ତୁ କେଶବ ।''
ଏହା କହି ଅସ୍ତ୍ରାଗାରେ ପଶି ବୀରମଣି
ବାଣ ଆଣି ସମର୍ପିଲେ ଅର୍ଜୁନେ ସେକ୍ଷଣି ।
ବାଣ ଦେଖି ପାର୍ଥ ହେଲେ ମନେ ମନେ ଭୀତ,
ପଞ୍ଚପାଣ୍ଡବର ଶିର ସେ ବାଣେ ଅଙ୍କିତ ।
ଦେଖି ହେଲେ ଧନଞ୍ଜୟ ବିସ୍ମୟେ ଆପ୍ଲୁତ,
ବାଣ ଧରି ସବିନୟେ ନମି ଗଙ୍ଗାସୁତ,
ବାହାରିଲେ ହୃଷ୍ଟମନେ ଶିବିରମଧ୍ୟରୁ,
ଭେଟିଲେ ନିର୍ଜ୍ଜନେ ଯାଇ ବାଞ୍ଛାକଳ୍ପତରୁ ।
ବାଣ ଦେଖି ନାରାୟଣ ହେଲେ ବଡ଼ ପ୍ରୀତ,
ବୋଇଲେ, ''ଅସାଧ୍ୟ ଆଜ ସାଧିଲ, ହେ ମିତ !''
ବେନି ସଖା ତହୁଁ ଯାଇ ପାଣ୍ଡବ ଶିବିରେ
ଦେଖାଇଲେ ସେହି ବାଣ ରାଜା ଯୁଧିଷ୍ଠିରେ ।
ମୁଖର ଶିବିର ହେଲା ଆନନ୍ଦ ଉତ୍ସବେ,
ଆନନ୍ଦେ ଗଦ୍‌ଗଦ ସର୍ବେ ସ୍ତବିଲେ କେଶବେ ।

□□□

## ଶ୍ମଶାନ-ଦୃଶ୍ୟ *

ଚଣ୍ଡାଳ ପ୍ରଭୁର ଆଜ୍ଞା ଶିରୋଧାର୍ଯ୍ୟ କରି
କ୍ରୀତଦାସରୂପେ ତା'ର ଭ୍ରମନ୍ତି ମଶାଣେ,
ଧୂଳିରେ ଧୂସର, ଜୀର୍ଣ୍ଣ ଶୀର୍ଣ୍ଣ କନ୍ଥାଧାରୀ
ମହାମତି ହରିଶ୍ଚନ୍ଦ୍ର, ଏ ମଶାଣେ ଯେତେ
ଦାହଲାଗି ଆସେ ଶବ, ପ୍ରତି ଶବଠାରୁ
ଶୁଳ୍କ ସଂଗ୍ରହର କାର୍ଯ୍ୟେ ନିଯୋଜିତ ହୋଇ ;
କି ଘୋର ବୀଭତ୍ସ, ଆହା, ଏ ମଶାଣ-ଭୂମି ?
ପରିକୀର୍ଣ୍ଣ କେଶଜାଳେ ଅଙ୍ଗାରେ ଖର୍ପରେ ,
ନୀରବେ ଆସୀନ ହୋଇ ଯହିଁ ଭସ୍ମାସନେ
ଭବର ଭଙ୍ଗୁର ଲୀଳା ଦେଖଇ କୌତୁକେ,
କ୍ରୂର ବିକଟାଳ କାଳ ଅସ୍ଥି-ମାଳା-ଧାରୀ ।
ସାମ୍ୟଦୀକ୍ଷା ପ୍ରଚାରଇ ଏହି ପୀଠସ୍ଥଳୀ,
ସମାନ ସରବେ ଏଥି, କି ରାଜା କି ପ୍ରଜା,
କିବା ଅଟ୍ଟାଳିକାବାସୀ, କି କୁଟୀରବାସୀ,
କି ରତ୍ନପର୍ଯ୍ୟଙ୍କଶାୟୀ, କିବା ଭୂମିଶାୟୀ,
କୌଷେୟ ବସନଧାରୀ, କିବା ଚୀରଧାରୀ,
କି ସୁନ୍ଦର କି କୁତ୍ସିତ, କି ଜ୍ଞାନୀ ଅଜ୍ଞାନ,
ସମ ଦଶା ସଭିଙ୍କର, ସମ ପରିଣତି ।
ଜୀବନର ସ୍ରୋତ ବହେ ସଦା ଏ ସାଗରେ,
ତରୁକୁଞ୍ଜୁ ପର୍ଣ୍ଣପୁଞ୍ଜ ତଡ଼ାଇ ଯେସନେ

* ସଂସ୍କୃତ ଚଣ୍ଡକୌଶିକ ନାଟକର ଛାୟା ଅବଲମ୍ବନପୂର୍ବକ ଏହା ଲିଖିତ ହୋଇଥିଲା ।

ଆଣେ ବାତ୍ୟା, ସେହିମତି ନିର୍ମମ ନିୟତି
ଘଉଡ଼ାଇ ଆଣେ ଜୀବେ ଏ ମଶାଣ ଭୂମେ।
କାଳର ଲାଗିଛି ନାଟ ଏଥି ସବୁକାଳେ,
ମୂରତି ଏହାର କିବା ବିଭୀଷିକାମୟୀ!
ଆକାଶେ ମଣ୍ଡଳାକାରେ ମୁହୁର୍ମୁହୁ ଘୂରି
ପଡୁଛନ୍ତି ଗୃଧ୍ରେ ଆସି କିଳିକିଳାରବେ,
ରକ୍ତ, ଲାଳା, କ୍ଲେଦ ତାଙ୍କ ଚଞ୍ଚୁପୁଟୁ ଝରି
ଝରଇ ଆକାଶ ଘୋଟି ବୃଷ୍ଟିଧାରା ପ୍ରାୟେ।
ଅଶିବ ପଟହ ପ୍ରାୟେ କର୍ଣ୍ଣକଟୁ ରବେ
ଉପୁଜାଇ ପ୍ରତିରାବ ଭୈରବେ ସଘନେ
ରାବନ୍ତି ଶୃଗାଳକୁଳ ଭ୍ରମି ଚଉଦିଗେ।
ଜଟିଳାଗ୍ର ଚିତାବହ୍ନି ଜଳେ ଠାବେ ଠାବେ
ପ୍ରଦୀପ୍ତ ମସ୍ତିଷ୍କମେଦେ, ଫୁଟାଇ ବିକଟେ
ନୃକରୋଟି, ତୀବ୍ରଗନ୍ଧ ପ୍ରସାରି ପବନେ।
ରୁଣ୍ଡ ହୋଇ କାହିଁ ଅବା କାନ୍ଦନ୍ତି ବିକଳେ
ପରେତର ପରିଜନେ, ଭାଲେ କର ମାରି,
ତିନ୍ତାଇ ଲୋତକଧାରେ ଶ୍ମଶାନ-ଅବନୀ।
ପଡ଼ିଛନ୍ତି ଠାବେ ଠାବେ ଶବ ରାଶି ରାଶି
ବେଷ୍ଟିତ ଶ୍ୱାପଦକୁଳେ, ସଦ୍ୟୋମୃତ କେହୁ,
ତୋଳ ହୋଇ ଫୁଲି କେହୁ ସଢ଼ଇ ମାଟିରେ,
ପ୍ରକଟାଇ ପୂତି-ଗନ୍ଧ ନାସାରନ୍ଧ୍ରରୋଧୀ,
ବୀଭତ୍ସ, ବିରୂପ ଘୋର ବିକୃତ ମୂରତି;
ଅଦୂରେ ପତିତ ଏକ ଶବପାଶେ ଯାଇ,
ସମ୍ବୋଧି ସେ ଶବେ ରାଜା ଭାଷିଲେ ଏସନ—
"ଆରେ ଶବ, ଧନ୍ୟ ତୁହି, ପ୍ରଚୁର ଅଶନେ
କେତେ ପ୍ରାଣୀ ଲଭୁଛନ୍ତି ତୃପ୍ତି ତୋହଠାରେ,
ଶିରେ ବସି କାକ ତୋର ଚକ୍ଷୁପତା ଟାଣି
ଭାଙ୍ଗଇ ସେ ଚକ୍ଷୁମୁଦ୍ରା, ଲୁଣ୍ଠିତ ବାହାରେ
ଚୋବାଉଛି ଜିହ୍ୱା ତୋର ଶିବା ମହାସୁଖେ,
ପୁରୁଷାଙ୍ଗ ତୋର ଶ୍ୱାନ ଝିଙ୍କଇ କାମୋଡ଼ି
କମ୍ପାଇ ସମଗ୍ର ଧଡ଼, ମାଂସ ସେହି ଧଡ଼େ
ସଢ଼ି ମୃଦୁ ହେବାଯାଏ ଅଛନ୍ତି ଅନାଇ
ଡେଣା ମେଲି ଗୃଧ୍ରକୁଳ ତୋର ଚଉକତି,
ରାବି ମୁହୁଃ ଭାବି-ଭୋଗ-ଆଶାରେ ଉଲ୍ଲାସେ।
ସାର୍ଥକ ଏ ପିଣ୍ଡ ତୋର, ଭିଆଉ ତୁ ଯେଣୁ
ଶବ, ଏହି ମହୋତ୍ସବ ଏହି ପିଣ୍ଡ ଯୋଗେ।
ଆହା, ଏହି ପରିଣାମ ଏ ପିଣ୍ଡର ସିନା!
ଏହି ସେହି ସ୍ୱଷ୍ଟ କଟୀ, ଏହି ସେହି ଉରଃ,
ତୋରା ସୁବିଶାଳ ସ୍ୱର୍ଣ୍ଣକପାଟ ପରାୟେ,
ଏହି ସେ ସୁନ୍ଦର ମୁଖ, ଚନ୍ଦ୍ରେ ଶତଦଳେ
ଘଟୁଥିଲା ପଟାନ୍ତର ଯାର ଚାରୁପଣେ।
ଏହି ସେ ଅଧର ଯାର ଚାରୁ ଅରୁଣିମା
ଗଞ୍ଜୁଥାଇ ପକ୍ୱ ବିମ୍ବେ, ଫୁଲ୍ଲ ବନ୍ଧୁଜୀବେ,
ଲୀଳାବିଳାସର ଥିଲେ ଉପାଦାନ ଯେତେ,
ଏହିମାନେ ଭଜିଛନ୍ତି, ଆହା କି ବିକୃତି!
ରକ୍ତ ମେଦ ମାଂସ ଅସ୍ଥି ଲାଳାକାରେ ଏବେ
ଉପୁଜାନ୍ତି ଏ ସରବେ ତ୍ରାସ ଭୀରୁ ଜନେ,
ବୈରାଗ୍ୟେ କରନ୍ତି ଦୃଢ଼ ଜ୍ଞାନୀଙ୍କର ମନଃ।
ଆହା, ଏହା ଦେଖି ଲୋକେ ହୁଅନ୍ତି କେସନେ
ମତ୍ତ ବିଷୟର ମଦେ ଏହି ଦେହ ବହି?
ଏ ବୀଭତ୍ସ, ଏ ଭଙ୍ଗୁର ଦେହ ବହି ପ୍ରାଣୀ
ହୁଅନ୍ତି କେସନେ ମତ୍ତ ଆତ୍ମବଡ଼ିମାରେ?
ଅବସାନ ହୋଇ ଏବେ ଆସିଲାଣି ଦିବା,
ଦିଗଦିଗନ୍ତରୁ ଉଡ଼ି ଆସି ବିହଙ୍ଗମେ
ମୁଖର କଲେଣି ରାବେ ନୀଡ଼ଦ୍ରୁମାବଳୀ।
ଦିନ ଯାଇ ଆସେ ରାତି ନିୟତିଶାସନେ,
ନିୟତି ଶାସନେ ସିନା ପ୍ରଭାହୀନ ହୋଇ
ଗଗନପ୍ରାଙ୍ଗଣଦୀପ, ଅବିରାମଗାମି—
କାଳ-ଭୁଜଙ୍ଗର ଶିଖାମଣି ଦିନମଣି
ବୁଡ଼ନ୍ତି ସାଗରଜଳେ ଲୋହିତବିଗ୍ରହେ,
କାହିଁ ସେ ପ୍ରତାପ, କାହିଁ ସେହି ଚଣ୍ଡଦ୍ୟୁତି?
ଅସ୍ତମିତ ଏବେ ସବୁ ନିୟତି ଶାସନେ,
ନିୟତିର ରଙ୍ଗଭୂମି ଏ ମଶାଣସ୍ଥଳୀ।
ଖାଲି ଏ ମଶାଣ କିଆଁ? ସେହି ସେ ନିୟତି
କାପାଳିକରୂପେ ଖେଳେ ଅଖିଳ ଜଗତେ,
ବିଶ୍ୱଯାକ ତାର ଲୀଳା-ମଶାଣ-ଅଗଣା,
ରକ୍ତରାଶି ତହିଁ ସିନା ଏ ସନ୍ଧ୍ୟା ଲୋହିତା,
ଚିତାବହ୍ନି ତା'ର ଏହି ଅସ୍ତଗାମୀ ରବି,
ନରାସ୍ଥି ଏ ତାରାମାଳା, ନୃକପାଳ ଶଶୀ,
ଏ ନୈଶ ଅନ୍ଧାର ତାର ଧୂମର ପଟଳୀ,
ଅହୋ, କିବା ଭୟଙ୍କରୀ ଶ୍ମଶାନଶର୍ବରୀ!
ଗମ୍ଭୀର ଭୀଷଣ କେଡ଼େ ଦିଶନ୍ତି ଚୌଦିଗେ
ଶ୍ମଶାନର ଦ୍ରୁମରାଜି, ରଟନ୍ତି ବିକଟେ
କୋଟରର ଦ୍ୱାରେ ଯହିଁ ଉଲୂକେ ସଘନେ,
ମୁହୁଃ ଡେଣା ଝାଡ଼ି, ଛାଡ଼ି କିଳକିଳା ରଡ଼ି,
ପଡୁଛନ୍ତି ଗୃଧ୍ରକୁଳ ଆସି ତରୁତୂଳେ,
ମତ୍ତ ହୋଇ ଶାଖାଲମ୍ବି-ଶବମେଦଘ୍ରାଣେ,*
'ଫେଏ' 'ଫେଏ' ରାବ ଦେଇ ଫେରୁ ଉଲ୍କାମୁଖୀ
ଫୁତ୍କାରେ ବିକାଶେ ମୁଖୁ ଦୀପ୍ତ ଉଲ୍କାଶିଖା,
ଭୈରବୀ ମଶାଣଚଣ୍ଡୀ ଅଧିଷ୍ଠାତ୍ରୀ ଏଥି,

* ବଧଦଣ୍ଡାର୍ହ ବ୍ୟକ୍ତିମାନଙ୍କୁ ଶ୍ମଶାନରେ ବଧ କରିବାର ପ୍ରଥା ପ୍ରାଚୀନ ଭାରତରେ ପ୍ରଚଳିତ ଥିଲା।

କପାଳମାଳିନୀ ଦେବୀ କପାଳକୁଣ୍ଡଳା,
ଭୀମା, ପ୍ରେତାଶିନୀ, ପ୍ରେତବିମାନଚାରିଣୀ।
ଚନ୍ଦ୍ର ଅସ୍ତ ଯାଇ ଏବେ ନିବିଡ଼ ତମସେ
ଆବୃତ ମଶାଣଭୂମି, ଦିଶୁ ନାହିଁ ରାହା,
ଚକ୍ରବାଳ ଦିଶେ ଯେହ୍ନେ ବୋଳା ଭିନାଞ୍ଜନେ,
ସୁଗଭୀର ନିଶୀଥିନୀ ଝାଇଁ ଝାଇଁ ରାବେ
ଉପୁଜେ ଜୀବର ଭୀତି, ବୁଡ଼ିଯାଏ ଚେତା।
କି ଦଶା ମୋହର ଆଜ, କି ଥିଲି କି ହେଲି!
କାହିଁ ଗଲେ ଦାରା ସୁତ ରାଜପାଟ ଆଦି,
ରାଜସିଂହାସନ ଛାଡ଼ି ଚଣ୍ଡାଳ-ଅଧୀନେ
ଶୁଳ୍କଗ୍ରାହୀ ହୋଇ ମୁହିଁ ଭ୍ରମଇ ଏକାକୀ
ଏ ମଶାଣେ, ସୂଚୀଭେଦ୍ୟ ଏ ନିଶା ଅନ୍ଧାରେ।
ଏହି ତ ପ୍ରାଣୀର ଗତି ଏ ମର୍ତ୍ତ୍ୟ-ମଣ୍ଡଳେ।
କରାଳ ନିୟତି କରେ କନ୍ଦୁକ ପରାୟେ
ଉଠନ୍ତି ପଡ଼ନ୍ତି ପ୍ରାଣୀ ଏହିରୂପେ ସିନା।
ଭାଗ୍ୟଚକ୍ର ଆବର୍ତ୍ତନେ ଅଭିନୟ କେତେ
କରନ୍ତି ପ୍ରାଣୀଏ ଏହି ଭବରଙ୍ଗଭୂମେ।''
ଏହିରୂପେ ଭାଳୁ ଭାଳୁ ଶୁଣିଲେ ନୃପତି
ସୁଦୂର ଶ୍ମଶାନ ପ୍ରାନ୍ତେ ବିଳାପର ଧ୍ୱନି,
ଶୁଳ୍କ ଆହରିବା ଆଶେ ତହୁଁ ଦ୍ରୁତପଦେ
ଗଲେ ସେହି ଦିଗେ ସେହି ଧ୍ୱନି ଅନୁସରି।

□ □ □

## ଏକାଗ୍ରତା

ପଶାଖେଳେ ରତ ଆଜି ପ୍ରଭୁ ଯଦୁପତି
ଦ୍ୱାରକାସଦନେ, ସଙ୍ଗେ ରୁକ୍ମିଣୀ ରୂପସୀ
ଭୂତଳେ ରୂପିଣୀ ରମା, ରୂପିଣୀ ବାଗ୍‌ଦେବୀ
ସତ୍ୟଭାମା, ଜାମ୍ବବତୀ ଆଦି ମହିଷୀଏ
ପାର୍ଶ୍ୱେ ବସି ଦେଖୁଛନ୍ତି ଖେଳ କୁତୂହଳେ।
ଏକାଳେ ପ୍ରଭୁଙ୍କୁ ଦେଖି ସହସା ବିମନା
ପଚାରନ୍ତେ ହେତୁ ତାର ପାଟମହାଦେବୀ,
ସସ୍ମିତେ ଭାଷିଲେ ପ୍ରଭୁ, ''କୁରୁସଭାତଳେ
ଦ୍ରୌପଦୀକି ଦୁଃଶାସନ କରେ ବିବସନା
ଦ୍ୟୂତଜୟୀ କ୍ରୂର କୁରୁପତିର ଆଦେଶେ।
ଦ୍ୟୂତେ ହାରି ଯୁଧିଷ୍ଠିର ଚାରି ଭାଇ ସହ,
କ୍ରୀତଦାସରୂପେ କୁରୁସଭାତଳେ ବସି
ଦ୍ରୌପଦୀର ଏ ଲାଞ୍ଛନା ଦେଖନ୍ତି ନୟନେ;
ନୀରବ ସରବେ ମାତ୍ର, ନୀରବ ଯେସନ
ମନ୍ତ୍ରୌଷଧି-ରୁଦ୍ଧବୀର୍ଯ୍ୟ ଫଣାଧର ଫଣୀ।
ଭୀମର ସେ ମହାଗଦା, ଅର୍ଜୁନର ଧନୁ
ପଣ-ପାଶେ ବଦ୍ଧ ହୋଇ ଭଜିଛି କ୍ଲୀବତା।
କୁରୁବୃଦ୍ଧ ପିତାମହ ଆସୀନ ସଭାରେ,
ଆସୀନ ବିଦୁର ପୁଣି ଦ୍ରୋଣ ମହାମତି,
ଆସୀନ ଜଗତପୂଜ୍ୟ ପୁରୋଧାମଣ୍ଡଳୀ,
ଭଜିଛନ୍ତି ମୌନ ସର୍ବେ ଅପମାନଭୟେ।
ଗୁରୁଜନଠାରେ କରି ବିଫଳେ ଗୁହାରି
ଉଚ୍ଚୈଃସ୍ୱରେ କୃଷ୍ଣା ମୋତେ ଡାକଇ ବିକଳେ।''
ଏହା କହି ଖେଳେ ରତ ହେଲାରୁ ମୁରାରି
ଭାଷିଲେ ଶ୍ରୀ ସତ୍ୟଭାମା, ''କି ନିଷ୍ଠୁର ହିଆ
ତୁମ୍ଭର, ହେ ପ୍ରାଣପତି, ତୁମ ପଦ୍ମପାଦେ
ରଖିଥାଇ ଯେ ଅବଳା ଲୟ ଅହର୍ନିଶି,
ଏ ଦଶା ତାହାର ଜାଣି ହେଉ ନାହିଁ କୃପା?
ଦ୍ରୌପଦୀ ତୁମ୍ଭର ଦାସୀ ବିଦିତ ଜଗତେ,
କଟ[illegible] ତ ପାଗ ଫେଡ଼ି ଦୁଃଖୀର ଆରତି।''
ଉତ[illegible] ଚକ୍ରପାଣି, ''ଅୟି ସୁହାସିନି,
ଭକ୍ତ [illegible] ଯାଜ୍ଞସେନୀ ଜାଣଇ ମୁଁ ଭଲେ,
ଜାଣଇ ମୁଁ ଡାକୁଅଛି ଆରତେ ସେ ମୋତେ,
ମାତ୍ର ବେନି ଭୁଜେ ଧରି ବସନ ସେ ଦୃଢ଼େ
ନିବାରଇ ଦୁଃଶାସନେ, ନିର୍ଭର ସେ ତେଣୁ
ନ ରଖି ମୋଠାରେ ରଖିଅଛି ନିଜ ଭୁଜେ।''
ଏହା କହି ରତ ହେଲେ ପୁଣି ଦ୍ୟୂତାମୋଦେ
ଯଦୁମଣି, କିଛି କ୍ଷଣ ପରେ ପୁଣି ତହୁଁ
ବିସ୍ଫାରିତନେତ୍ରେ ଚାହିଁ ହସ୍ତିନାଭିମୁଖେ
କହିଲେ, ''ଆହା ହା, ବଡ଼ ଆର୍ତ୍ତେ ସୁଲୋଚନା
ଯାଜ୍ଞସେନୀ ଡାକେ ମୋତେ ଭାସି ନେତ୍ରନୀରେ,
ଟେକି ଊର୍ଦ୍ଧ୍ୱେ ଏକ ଭୁଜ, ଅନ୍ୟ ଭୁଜେ ଧରି
ସ୍ୱଦେହେ ବସନ ଦୃଢ଼େ।'' ''ରଖ ପ୍ରଭୁ ଯାଇ''
ଉତରିଲେ ସମସ୍ୱରେ ସର୍ବ ମହିଷୀଏ,
''ଉଚିତ କି ମଠ ଆଉ କରିବାର ଏବେ
ଏ ଆତଙ୍କକାଳେ ତା'ର, ହେ କୃପାବାରିଧି?''
ଉତ୍ତରିଲେ ବନମାଳୀ, ''ନେବି ମୁଁ ସମ୍ଭାଳି
ବାଳୀକି, ମାତ୍ର ସେ ବେଳ ଆସି ନାହିଁ ଏବେ।''
ଶୁଣି ଶ୍ରୀମୁଖର ବାଣୀ ରାଣୀଏ ବିସ୍ମୟେ
ଏକ ଆରେକର ମୁଖ ଚାହିଁ ହେଲେ ତୁନି,
ଗଞ୍ଜନାବ୍ୟଞ୍ଜକ ସେହି ନୀରବ ଚାହାଣୀ
ଦେଖି ପ୍ରଭୁ ଶ୍ରୀନିବାସ ହସି ମନେ ମନେ

ଆଗପରି ରତ ପୁଣି ହେଲେ ପଶାଖେଳେ।
ଟଳ ଟଳ ଟଳେ ପୁଣି ଅଳ୍ପକ୍ଷଣ ପରେ
ଟଳିଲାରୁ ସିଂହାସନ, ନୟନ ବିସ୍ତାରି
ହସ୍ତିନା ନଗରୀ ମୁଖେ ଦିବ୍ୟଦୃଷ୍ଟି ଦେଇ
ସ୍ତବ୍ଧ ଭାବେ ମୁହୂର୍ତ୍ତକ ଚିନ୍ତି ଚିନ୍ତାମଣି
କହିଲେ, ''ଚାଲିଲି ଏବେ କୁରୁରାଜପୁରେ,
ରଖିବି କୃଷ୍ଣାର ଲଜ୍ଜା ବସନ ଯୋଗାଇ
ଶୂନ୍ୟରୁ, ଏବେ ସେ ଅନ୍ୟ ଆଶ୍ରା ଛାଡ଼ିଦେଇ
ବେନିବାହୁ ଊର୍ଦ୍ଧ୍ୱେ ତୋଳି ଡାକୁଅଛି ମୋତେ,
ମୋ ବିହୁନେ ଅନ୍ୟ ଆଶ୍ରା ଦେଲାଣି ସେ ଛାଡ଼ି,
ଢାଳିଲାଣି ପାଦେ ମୋର ଯାବତ ଭରସା,
ଟଳିଲାରୁ ସିଂହାସନ ଜାଣିଲି, ସେ ଏବେ
ଏକାଗ୍ରେ ଡାକଇ ମୋତେ ଅବିଭକ୍ତ ହୃଦେ।''
ଏହା କହି ତାର୍କ୍ଷ୍ୟଯାନେ ଆରୋହି ତକ୍ଷଣେ
ହସ୍ତିନା-ଆକାଶ-ଦେଶେ ବିଜେ ହେଲେ ଯାଇ
ଲଜ୍ଜାନିବାରଣବାନା ବ୍ରହ୍ମାଣ୍ଡ-ଗୋସାଇଁ।

## ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ *

ଟଳିଲା ତରଙ୍ଗାୟିତ ଲୋହିତ କର୍କର–
ପୁଞ୍ଜେ ଅରୁଣିତ ଯାର ଉଚ୍ଚାବଚ ଭୂମି,
ବିଶ୍ୱନରମେଧ ବେଦି, ବିଶ୍ୱେ ଭର୍ତ୍ସ୍ୱଜ।
ଆର୍ଯ୍ୟଭାଗ୍ୟ-ଆବର୍ତ୍ତନ-ଅଭିନୟସ୍ଥଳୀ
କୁରୁକ୍ଷେତ୍ରେ, ଭୀଷ୍ମ, ଦ୍ରୋଣ, କର୍ଣ୍ଣଙ୍କ ଉତ୍ତାରେ
ନିରାଶଜର୍ଜର କୁରୁସେନା ଶେଷ ଆଶା,
ଅଦ୍ରିପତି ସମ ରଥୀ ଅଟଳ ସମରେ,
ହତ ମଦ୍ରପତି ଶଲ୍ୟ ଆଜ ରଣାଙ୍ଗନେ,
ପାଣ୍ଡବ ରାଜର ଖରଶାଣ ବାଣାଘାତେ;
ହତ ପୁଣି ଖଳମତି ଦୁରନ୍ତ ଶକୁନି,
ଅଗ୍ରଣୀ କପଟପାଶା-ପ୍ରପଞ୍ଚ ଭିଆଣେ,
ମାଦ୍ରୀସୁତ-ଖରଶାଣ-କୃପାଣର ଚୋଟେ।
ଅବଶିଷ୍ଟ କୁରୁବଳେ ଆଉ ତିନି ରଥୀ
କୃପାଚାର୍ଯ୍ୟ, କୃତବର୍ମା, ବୀର ଅଶ୍ୱତ୍ଥାମା,
ବରତି ନ ପାରି ରଣେ ପାଣ୍ଡବପ୍ରତାପେ
ଆତଙ୍କେ ପଳାଇ ଲୁଚିଅଛନ୍ତି କେ କାହିଁ।
ଧ୍ୱସ୍ତ ଛିନ୍ନଭିନ୍ନ ହୋଇ କୌରବବାହିନୀ
ପଡ଼ନ୍ତି ସମରକ୍ଷେତ୍ରେ, ପଡ଼ଇ ଯେସନେ
ପ୍ରଚଣ୍ଡ ବାତ୍ୟାର ବେଗେ ରମ୍ଭାତରୁରାଜି।
କାହୁଁ କାହୁଁ ଆସିଥିଲେ ପଦାତିକ, ରଥୀ,
ଅଶ୍ୱସାଦୀ, ଗଜସାଦୀ, ଉଡ଼ାଇ କୌତୁକେ
ପତାକା, ବଜାଇ ମହାଦର୍ପେ ବୀରବାଜା,
ମତ୍ତ ହୋଇ ଯଶ ଆଶା ଜାଗ୍ରତ-ସ୍ୱପନେ;
ସେତୁବନ୍ଧଠାରୁ– ଯହିଁ ଶୈଳ ବେନି ପାଶେ
ବନ୍ଦନ୍ତି ଜଳଦେବୀଏ କୃତାଞ୍ଜଳିପୁଟେ
ରାଘବପଦାଙ୍କ, ଭେଦି ସାଗର-ଲହରୀ
ଫେନିଳ, ନୀଳାୟମାନ ଆଶାଚକ୍ରବାଳେ,
ବଦରିକାଶ୍ରମଯାଏ, ହିମଗିରି ଯହିଁ
ଦେବଦାରୁ-ଉପତ୍ୟକା-ମରକତବେଦି–
ପରେ ସ୍ୱଚ୍ଛ ସ୍ଫଟିକର ମେହେରାବି ପରି
ତୋଳିଛି ଗଗନେ ଗଙ୍ଗା-ଶୃଙ୍ଗାରିତ ଶିଖା,
ବିରାଜିତ ପୁର ଗ୍ରାମ ଅବସଥ ଯେତେ,
ସବୁଥିରୁ ଆସିଥିଲେ ଏହି ରଣ-ଯାଗେ,
ଏ ବିରାଟ ନରମେଧେ, ରଣମଦେ ମାତି,
ଯଜ୍ଞ-ପଶୁରୂପେ, ଆହା, କେତେ ମହାପ୍ରାଣୀ!
ଆସିଥିଲେ ମାତ୍ର ସିନା ଲୋଟାଇବାପାଇଁ
ଶତ୍ରୁଖଣ୍ଡାଘାତେ ମୁଣ୍ଡ ରଣଚଣ୍ଡୀପୀଠେ।
ହତ ଗଜ ବାଜି, ଭଗ୍ନ ରଥ, ଛିନ୍ନ ସ୍ୟନ୍ଦନ,
ଛିନ୍ନ ଅସ୍ତ୍ର ଶସ୍ତ୍ର, ତାଳ ସଙ୍ଗେ ରୁଣ୍ଡ ହୋଇ
ପଡ଼ିଛନ୍ତି ରଣାଙ୍ଗନେ ପର୍ବତପ୍ରମାଣେ
ଲକ୍ଷ ଲକ୍ଷ ବୀର, ଆହା, ଜଡ଼ାକ୍ରବିଗ୍ରହେ;
ଧନିକ, ନିର୍ଦ୍ଧନ, ଯୁବା ବୃଦ୍ଧ, ରାଜା ପ୍ରଜା,
କି କୁଳୀନ ଅକୁଳୀନ, ସୁନ୍ଦର କୁତ୍ସିତ,
ଶତ୍ରୁ ମିତ୍ର, ଏକ ତଳ୍ପେ ଗାଢ଼ ଆଲିଙ୍ଗନେ।
ଏକମାତ୍ର ଦୁର୍ଯ୍ୟୋଧନ ଲକ୍ଷ୍ମଣ ସହିତେ
ଯୁଝୁଥିଲେ ଅଳ୍ପ ସୈନ୍ୟେ ମହାଦମ୍ଭଭରେ
ଶତ୍ରୁ ସଙ୍ଗେ, କୁମାରଙ୍କୁ ବଞ୍ଚାଇବା ଆଶେ
ଗୁପ୍ତ ପଥେ ପେଷିଲେ ସେ ତାଙ୍କୁ ସ୍ୱଶିବିରେ,
ମାତ୍ର ସେ ଲକ୍ଷ୍ମଣ ପଡ଼ି ଶତ୍ରୁଙ୍କ ହାବୋଡ଼େ
ଲଭିଲେ ନିଧନ କୁରୁପତିର ଅଜ୍ଞାତେ।

* ମହାକବି ଶୂଦ୍ରମୁନି ଶାରଳା ଦାସଙ୍କ ମହାଭାରତର ଶଲ୍ୟପର୍ବରେ ଦୁର୍ଯ୍ୟୋଧନଙ୍କର ବ୍ୟାସ-ସରୋବର ପ୍ରବେଶ ସମୟରେ କୌରବପକ୍ଷୀୟ [illegible] ଭିନ୍ନ ବୀରମାନଙ୍କ ଶବ ଉପରେ ଏବଂ ସର୍ବଶେଷରେ କୁମାର ଲକ୍ଷ୍ମଣଙ୍କ ଶବ ଉପରେ ରକ୍ତନଦୀ ପାର ହେବାର ଦୃଶ୍ୟ ଅତି କରୁଣ। ସମଗ୍ର ଉତ୍କଳ ସାହିତ୍ୟରେ, କେବଳ ଉତ୍କଳ ସାହିତ୍ୟରେ କାହିଁକି, ଯେ କୌଣସି ସାହିତ୍ୟରେ ଏହା ଅତୁଳନୀୟ ବିବେଚିତ ହେବ। ଶାରଳା ଦାସଙ୍କର ଏହି ଆଖ୍ୟାନ ଅବଲମ୍ବନ କରି ଏହି ପ୍ରସଙ୍ଗ ଲିଖିତ।

ଅବଶିଷ୍ଟ ସୈନ୍ୟକ୍ଷୟ ଦେଖି କୁରୁନାହା
ବେନି ହସ୍ତେ ବେନି ଗଦା ଧରି ଅତି ଦ୍ରୁତେ
ପଳାଇଲେ ତ୍ରସ୍ତେ ବ୍ୟାସ-ସରୋବରମୁଖେ।
ବୁଡ଼ନ୍ତେ ଭାସ୍କର, ପଥେ ଆସିଲା ଶର୍ବରୀ,
ଏ ସମୟେ କାଦମ୍ବିନୀ ଘୋଟି ନଭସ୍ତଳେ
ଭୀମ ପ୍ରଭଞ୍ଜନସହ ଅବିରଳ ଧାରେ
ଢାଳିଲା ସଲିଳପୂର ବହାଇ ସମ୍ମୁଖେ
ସୁଗଭୀର ଖରସ୍ରୋତ ଲୋହିତ ଶୋଣିତେ,
ଭାସିଯାଉଥିଲା ଯହିଁ ଶବ ରାଶି ରାଶି
ନର ଗଜ ବାଜିଙ୍କର ସ୍ୟନ୍ଦନ ସହିତେ।
ଅଗ୍ରେ ରକ୍ତ ନଦୀ ଦେଖି ବିକଳେ ଭୂପତି
ହାହାକାରେ କରଯୁଗ ମାରି ନିଜ ଭାଳେ
କହିଲେ ଆରତେ, "ପଛେ ଗୋଡ଼ାନ୍ତି ପାଣ୍ଡବେ,
ଶସ୍ତ୍ରପାଣି, ଦଣ୍ଡପାଣି ଦଣ୍ଡଧର ଯଥା,
ସମ୍ମୁଖେ ଭୀଷଣ ନଦୀ ତରଙ୍ଗମାଳିନୀ,
କେଉଣ ଉପାୟେ ମୁହିଁ ଯିବି ସରୋବରେ ?
କେ ତାରିବ ମୋତେ, ଆହା, ଏ ଘୋରସଙ୍କଟେ ?
ସହସା ଦେଖିଲେ ସ୍ରୋତେ ଯାଉଅଛି ଭାସି
ଦୁଃଶାସନ ଶବ, ଯାଇ ସେ ଶବ ନିକଟେ
ବୋଇଲେ, "ହେ ବାବୁ, ତୋର କ୍ଷତ୍ରିୟସମାଜେ
ଥିଲା ସବୁ ପରେ ଟେକ ବଇରି-ବିଭ୍ରାଟେ,
ଅଭିମାନ ମୋର, ବାବୁ, ନ ସହୁ ରେ କ୍ଷଣେ,
ମୋର ଏ ଜୀବନେ, ବାବୁ, କିସ କାର୍ଯ୍ୟ ଆଉ ?
ଜିଇଁଛି ନିର୍ଲଜ ମୁଁ ଯା ତୁମ୍ଭଙ୍କୁ ମରାଇ !
ତୁ ତ ପହଁରୁଛୁ ଏବେ ରକତଲହରୀ,
ଏ ପ୍ରବାହେ ପାରି କରି ଦେବୁ କି ତୁ ମୋତେ ?"
ଏହା ବୋଲି ଭେଳା କରି ଦୁଃଶା ପରେ ଯାଇ
ପଡ଼ନ୍ତେ ବୁଡ଼ିଲା ଶବ ଶ୍ରିତାଳ ଗଭୀରେ।
ତାକୁ ଛାଡ଼ି କୁରୁବୀର ଦେଖିଲେ ଅଦୂରେ
କର୍ଣ୍ଣଙ୍କର ଶବ ଭାସି ଆସୁଛି ସେ ସ୍ରୋତେ,
ପ୍ରାଣହୀନ ହୋଇ ସୁଦ୍ଧା ଝଟକଇ ଯହିଁ
ବୀରତେଜ ଆଗ ପରି ବାଳାର୍କ ପରାୟେ,
ପ୍ରାଂଶୁ ସ୍ୱର୍ଣ୍ଣତାଳ ପ୍ରାୟେ ସେହି ଗୌର ତନୁ
ଏବେ ସୁଦ୍ଧା ଦିଶେ ତୋରା ମୃତ୍ୟୁର କବଳେ।
କୋଳ କରି କର୍ଣ୍ଣେ ତହୁଁ କହିଲେ ସମ୍ବୋଧି
କୁରୁମଣି, "ଆହା ମିତ୍ର, ପ୍ରିୟ ପ୍ରାଣୁଁ ବଳି
ତୁ ମୋହର, ଦୁଃଖି-ଦୁଃଖି ଦେଖି ତୋର ହିଆ
ଦ୍ରବୁଥିଲା ସଦା, ତେଣୁ ଥିଲୁ ମହାଦାତା,
ଦାନବୀର ବୋଲି ଥିଲୁ ବିଖ୍ୟାତ ଜଗତେ,
ଦ୍ୱିଜବେଶେ ଦାନ ତୋତେ ମାଗନ୍ତେ ମଘବା,
କବଚ୍ କୁଣ୍ଡଳ ତାଙ୍କୁ ଦେଲୁ ଅକାତରେ।
ନିରାଶ ନୋହିଲେ ଅର୍ଥୀ ତୋହଠାରେ କେବେ,
ମେଣ୍ଟି ତୁହି, ମିତ୍ରମଣି, ମାତାଙ୍କର ବାଣୀ
ସୋଦରଗଣଙ୍କୁ ଛାଡ଼ି ଆଶ କଲୁ ମୋତେ।
ବହୁକାଳ ମୁହିଁ ତୋତେ ସମ୍ଭାଳିଣ ଥିଲି,
ପାରି କରି ନେବୁକିରେ ମୋତେ ଏ ପ୍ରବାହେ ?"
ଏହା କହି କର୍ଣ୍ଣ ଦେହେ ପଡ଼ିଲା ମାତ୍ରକେ
ବୁଡ଼ିଗଲା ସେହି ଦେହ ଅତଳ ସଲିଳେ।
ଦ୍ରୋଣଙ୍କର ପିଣ୍ଡ ଭାସି ଆସନ୍ତେ ତା ପରେ,
"ହାହା ଗୁରୁ" ବୋଲି ରାଜା ଧଇଲେ ତା ଯାଇ।
"ମୂର୍ତ୍ତିମନ୍ତ ଧନୁର୍ବେଦ ଥିଲୁ ତୁ ଜଗତେ,
ଶିଖିଥିଲି କ୍ଷତ୍ର ବିଦ୍ୟା ତୋହରି ପୟରେ।
ନ ଥିଲେ ଅରହ ତୋତେ ସମରେ ମଘବା,
ବାତ୍ସଲ୍ୟ ତୋହର ଥିଲା ଅଧିକ ଅର୍ଜୁନେ,
ପରାଭବ ସେହି ତୋତେ ଦେଲା ଅବଶେଷେ !
ବେଦ ଶାସ୍ତ୍ରେ ଥିଲୁ ତୁହି ମର୍ତ୍ତ୍ୟେ ବୃହସ୍ପତି,
ଏପରି ବ୍ରାହ୍ମଣ ଗୁରୁ ମରାଇ ପାଣ୍ଡବେ
ଲଭିଲେ ସାମ୍ରାଜ୍ୟ-ଶିରୀ କେଉଁ ଧର୍ମବଳେ !
ତୋର ଗୁଣ କହିବାକୁ ନାହିଁ ବେଳ ଆଉ,
ବରତିବି ନାହିଁ ମୁହିଁ ଜାଣିଲେ ପାଣ୍ଡବେ।"
ଗୁରୁଙ୍କୁ ଏମନ୍ତ ସ୍ତବି, ତାଙ୍କ ଶବ ପରେ
କୋଳ କରି କୁରୁପତି ପଡ଼ିଲାରୁ ମାଡ଼ି,
ବୁଡ଼ିଗଲା ସେହି ପିଣ୍ଡ ଜଳେ ସେହିକ୍ଷଣି।
ଏଅନ୍ତେ ଶକୁନି ଶବ ଆସିଲାକ ଭାସି,
ଶକୁନିବିକ୍ଷତମୁଖ, ବିକୃତ ଆକୃତି।
ତହିଁ ନେତ୍ର ପଡ଼ିଲାରୁ ଖେଦେ କୁରୁନାହା
କହିଲେ ଏସନ ବାଷ୍ପଗଦଗଦ ସ୍ୱରେ,
"ହା ହା, ମୋ ମାତୁଳ, ତୁହି ପାଣ୍ଡବବିନାଶେ
ଭିଆଇଲୁ ଯେତେ କୂଟ ସବୁ ହେଲା ବୃଥା !
ବିଷଲଡୁ ଖୁଆଇଲୁ ଭୀମକୁ କୌଶଳେ,
ଜଉ, ଝୋଟ, ଛଣପଟ, ଗୁଆଘୃତ ଯୋଗେ
ଭିଆଇ ତୁ ଜତୁଗୃହ; ବରଗିଲୁ ତହିଁ
ପୁରୋଚନେ ପାଣ୍ଡବର ଦାହନ ଉଦ୍ଦେଶ୍ୟେ,
ଉବୁରିଲେ ତହୁଁ ସେହି କେଉଁ ବୁଦ୍ଧିବଳେ ?
କପଟପାଶାର ଥିଲୁ ସୂତ୍ରଧାର ତୁହି,
ଜିତିଲୁ ତୁ ରାଜ୍ୟ ଆଦି ସବୁ-ବୁଦ୍ଧି କରି,
ମାତ୍ର ବୃଥା ହେଲା ସବୁ ଦଇବ-ଅବଳେ।
ତୋର ଗୁଣ, ମାତୁଳ, ମୁଁ କହିବଇଁ କେତେ ?
କହ, ମାମୁ, କି ବୁଦ୍ଧି ମୁଁ କରିବି ଏ କାଳେ ?
କେମନ୍ତେ ହୋଇବି ପାରି ଏ ରୁଧିରନଦୀ ?"
ଶକୁନି ଉପରେ ରାଜା ପଡ଼ିଲାରୁ ମାଡ଼ି
ବୁଡ଼ିଗଲା ସେହି ପିଣ୍ଡ ଅଗାଧ ପ୍ରବାହେ।
ସେ ଉଦ୍ୟମ ବୃଥା ଦେଖି ତହୁଁ ସେ ଆରତେ
କାନ୍ଦିଲେ ସୁମରି ଦେବେ, ହାହାକାର କରି।

ଦେଖିଲେ ଏକାଳେ ଅଗ୍ରେ ଆସୁଅଛି ଭାସି
ପରମ ସୁନ୍ଦର ଯୁବା ସେହି ଖର-ସ୍ରୋତେ,
କଙ୍କଣ କୁଣ୍ଡଳ ନାନା ଅଳଙ୍କାର ଦେହେ,
ଶତ ଚନ୍ଦ୍ର ଭାସି କି ସେ ଯାଉଛି ସଲିଳେ।
ଜଳଦେବତା କି ଯାଏ ନିଦ୍ରାଯୋଗେ ଭାସି
ସେ ଜଳେ, ବିଳାସେ ଆଶ୍ରି ଲହରୀପ୍ରେଙ୍ଖୋଳା।
ଏହି ମୋତେ ନେବ ପରା ସ୍ରୋତ ପାର କରି,
ଏହା ପାଞ୍ଚି କୁରୁନାଥ କୋଳ କରି ତାକୁ
ଉପରେ ଥୋଇଲେ ଦୁଇ ଗଦା ଯେ ତଡ଼ତି,
ଆପେ କୁରୁନାଥ ପରେ ବସିଲେକ ମାଡ଼ି,
ଶୋଳ ଜିଣି ଭାସେ ଶବ ସେ ରୁଧିରସ୍ରୋତେ।
ପିଠିରେ ବସିଣ ରାଜା ବେନି ହାତେ ବାହି
ଦ୍ୱିଘଡ଼ିରେ ଉପନୀତ ହେଲେ ପରପାରେ।
ପାରି ହୋଇ ମୃତପିଣ୍ଡ ଓହ୍ଲାଇ ତ୍ୱରିତେ
ବୋଇଲେ ସେ ଶବ ପ୍ରତି, "ଦୁଃଶା କର୍ଣ୍ଣ ଆଦି
ଯୋଗେ ଯା ନୋହିଲା, ସାଧହେଲା ତୋହଯୋଗେ,
କିଏ ତୁ ମହାତ୍ମା ? ମୃତ ହୋଇ ଉପକାରୀ
ହେଲୁ ଏଡ଼େ ତୁହି ମୋର ଏ ଆତଙ୍କବେଳେ ?"
ବୁଲାଇ ସେ ଶବ ମୁଖ ନିରେଖନ୍ତେ ପୁଣି
ଚିହ୍ନିଲେ ସଖେଦେ ରାଜା କୁମାର ଲକ୍ଷ୍ମଣେ।
ଶୋକେ ଅସମ୍ଭାଳ ହୋଇ ବାହୁନି ବାହୁନି
ଶବକୁ ନିରେଖି ତହୁଁ କହିଲେ ଆରତେ,
"ଏକମାତ୍ର କୁଳାଙ୍କୁର ଏହି କୁରୁକୁଳେ,
କୁମାର ଲକ୍ଷ୍ମଣ, ତୁହି ଥିଲୁ ଯେଣୁକରି,
ତୋର ରକ୍ଷା ଲାଗି ତୋତେ ରଣସ୍ଥଳୁଁ ମୁହିଁ
ପେଷିଲଇଁ ଗୁପ୍ତପଥେ କୌରବ ଶିବିରେ।
ଆହା, ତୋହଠାରେ କିଏ କଲା ଏ ଅନୀତି !
ସ୍ଫୁଟୋନ୍ମୁଖ ଏ କୋରକ ଛିଣ୍ଡାଇ ଅକାଳେ
କିଏ ଦଳିଦେଲା, ଆହା, କୁରୁ-ଆଶାଲତା !
ବାଳୁତ ହୋଇ ତୁ ମୋର ଆଗେ ଗଲୁ ଚାଲି
ଛାଡ଼ି ମୋତେ ଏ ଜଗତେ, ମୋର ଯୋଗ୍ୟସୁତ,
ସୁଯୋଗ୍ୟ ଦାୟାଦ କୁରୁରାଜସିଂହାସନେ
ଥିଲୁ ତୁହି; ଆରେ ବାବୁ, କି ଗୁଣେ କି ରୂପେ
ସୁମରି ତୋ ଗୁଣରାଶି, ଦୟାପୂର୍ଣ୍ଣ ହିଆ
ଝୁରିହେଉଥାନ୍ତି ପ୍ରଜା ଦେଶଦେଶାନ୍ତରେ !
ଦାନଦେବାପାଇଁ ଦିନ ରାତ୍ର ତୁ ନ ଜାଣୁ,
ଅହର୍ନିଶ ଭକ୍ତି ତୋର ଦେବତା ବ୍ରାହ୍ମଣେ,
ଧର୍ମ କାର୍ଯ୍ୟ ସଦା ଲାଗିଥାଇ ତୋର ଚିତ୍ତେ,
କେମନ୍ତେ ଛାଡ଼ିଲେ ତୋତେ ସେ ଧର୍ମଦେବତା !
ସଦା ସଦାଳାପୀ, ଦୁଃଖୀଜନର ଭରସା,
ସଦା ସତ୍ୟବାଦୀ, ସଦା ରତ ପରହିତେ,
ତୋତେ ଦେଖି 'ସାଧୁ ସାଧୁ' କହୁଥିଲେ ଲୋକେ।
ପୂତସ୍ମିତଶାଳୀ ତୋର ବଦନଚନ୍ଦ୍ରମା
ଦେଖି ହେଉଥିଲେ ଲୋକେ ଆପ୍ଳୁତ ହରଷେ,
ଚହଟୁଣ ଥିଲା ଦେଶ ତୋ ଯଶଃସୌରଭେ;
ସାଧୁ ଯଥା, ଦୁର୍ଜ୍ଜୟ ତୁ ଥିଲୁ ରଣସ୍ଥଳେ,
କମ୍ପୁଥିଲେ ଶତ୍ରୁକୁଳ ତୋର ଧନୁର୍ଘୋଷେ।
ଅଛଇ ତୋହର, ବାବୁ, ସଦଗୁଣ ଯେତେ,
ମୁଖେ ନ ପାରିବେ କହି ସବୁ ଗଣପତି !
ବାବୁ ଲକ୍ଷ୍ମଣ ରେ, କଲୁ ଅନାଥ ତୁ ମୋତେ !
ବୁଡ଼ାଇଲୁ ଭେଳା ମୋର ଅତଳ ସାଗରେ !
ଅନ୍ଧାର ଏ ସୃଷ୍ଟି ମୋତେ ଦିଶେ ତୋ ବିହୁନେ,
ବିକଳ ହେଉଛି ମୁହିଁ, ନ ନିରେଖୁ କିପାଁ ?
ଉଠ ଉଠ, ବାବୁ ଯିବା ନବରେ ବାହୁଡ଼ି,
ଚାହିଁଥିବେ ତୋର ବାଟ ଭାନୁମତୀ ମାଏ।
ମାଏ ପୋଏ କଲ ମୋତେ ଅନେକ ଦଇନି,
ବାହୁଡ଼ି ନ ଯାନ୍ତି ଯଥା କୃଷ୍ଣ ଅପମାନେ,
ପଢ଼ା ପାଞ୍ଚଖଣ୍ଡି ମାଗିଥିଲେ ଯଦୁପତି,
ବେନି ପଢ଼ା ଦେବା ଲାଗି ତୁମ୍ଭେ କଲ ଅଳି।
ବିନା ଯୁଦ୍ଧେ ସୂଚିମୁନେ ଦେବି ନାହିଁ କ୍ଷିତି,
କର୍ଣ୍ଣ ଶକୁନିଙ୍କ ସଙ୍ଗେ ପାଞ୍ଚି ଏ ମନ୍ତ୍ରଣା,
ପ୍ରତିଫଳ ତାର, ବାବୁ, ପାଇଲି ମୁଁ ଏବେ।
ଏଡ଼େ ବଡ଼ ସମ୍ପଦ ମୁଁ ହେଳେ ବୁଡ଼ାଇଲି !
ଆରେ ପୁତ୍ର, ବୋଲ ତୋର ମାନୁଛି ଏକ୍ଷଣି,
ଅଧେ ରାଜ୍ୟ ଦେବି, ଏବେ ଆସ ମୋର ତୁଳେ;
ଦେଖି ତୋର ସେହି କାନ୍ତି, ସେହି ମୁଖଶଶୀ
ଧରିବି ପରାଣ କେହ୍ନେ ଏ ବେଶେ ନିରେଖି ?
ମୃତ ପିଣ୍ଡ, ବାବୁ, ତୋର ଚଢ଼ାଇ ହୃଦୟେ,
ଏ ମୋହର ଦେହ କିପାଁ ଯାଉ ନାହିଁ ଫାଟି ?
କର୍ପୂର ଚନ୍ଦନ ବୋଳି ହେଉ ଯେଉଁ ଦେହେ,
ସେହି ଦେହ ଏବେ, ଆହା, ଆପ୍ଳୁତ ଶୋଣିତେ !
ଲୁଳୁଥିଲା ଯେଉଁ ହୃଦେ ମଣି ଗଜମୋତି,
ମେଦମାଂସ ଏବେ ବୋଳାହୋଇଚି ସେ ସ୍ଥଳେ !
ଜନ୍ମଠାରୁ ମୁଖ ତୋର ଚାହିଁ ଆଜଯାଏ
ନିରେଖ ହେଲିଟି ଏବେ ମୁହିଁ ଭବତଳେ !
କେବେହେଁ ନ ହେଉ ତୋର ମୋହପରି ପିତା
ତୋହୋପରି ପୁତ୍ର ହେଉ ଜନମେ ଜନମେ।"
ଏହା କହି ସେହି ଘୋର ରଜନୀ ଅନ୍ଧାରେ
ନିବିଡ଼ ପଳାଶକୁଞ୍ଜେ ଏକ ଖାତ ଖୋଳି
କୁରୁପତି ଲକ୍ଷ୍ମଣକୁ ଶୁଆଇ ସେ ଖାତେ,
ସାଶ୍ରୁନେତ୍ରେ ତା ଉପରେ ପକାଇଲେ ମାଟି।
ଖରଗତି ତଦନ୍ତରେ ପଳାଇ ଗୁପତେ
ସେ ପଳାଶ କୁଞ୍ଜେ କୁଞ୍ଜେ ମହିଷ ଡଗରେ
ଭଜିଲେ ଆଶ୍ରୟ ବ୍ୟାସ-ସରୋବରେ ଯାଇଁ। ▢▢▢

# ସତୀ ପ୍ରତି ସତୀଦ୍ରୋହୀ ପତିର ଉକ୍ତି

କି କହିବି ଆଉ ଦେବି, କହିଅଛି ଫେଡ଼ି,
ଫାଟିଯାଏ ହୃଦ ମୋର କି ତୀବ୍ର କଷଣେ,
ଭାଷାର ଶକତି ନାହିଁ ପ୍ରକାଶିବାପାଇଁ
ଏ କଷଣ, ଏ ଦାରୁଣ, ଏ ତୀବ୍ର ବେଦନା,
ଜଳୁଛି କି ଦାବାନଳ ହୃଦୟକାନନେ
ଏ ଦୁଃଖୀର, ହେ ଦୁଃଖିନି, ପାରିବୁ କି ଜାଣି ?
ଅନୁତାପ-ତୁଷାନଳେ ଜଳେ ଅହର୍ନିଶି
ଅନ୍ତରାତ୍ମା, ପୋଡ଼େ ହିଆ ତିଳ ତିଳ ହୋଇ।
ଅୟି ପୁଣ୍ୟଶୀଳେ, ଦେବି, ଚାରିତ୍ର୍ୟଦେବତେ,
ସଦାଶୟା, ସହୃଦୟା, ଗରୁବିଶ୍ୱାସିନି,
କେଉଁ ପାପଫଳେ ତୁହି ହୋଇଥିଲୁ ଭବେ
ଏ ମହାପାପୀର ପତ୍ନୀ, କେ କହିବ ମୋତେ ?
କେ କହିବ ପୁଣି, ଆହା, ଏ ଘୋର ନାରକୀ
ହୋଇଥିଲା ପତି ତୋର କେଉଁ ପୁଣ୍ୟ ଫଳେ।
ମୁଁ ଛାର ପାମର, ଆହା, ବୁଝିବି କେସନେ
ମହିମା ତୋହର, ତୁହି ସାଧ୍ୱୀଶିରୋମଣି।
ଚରିତ୍ରକୁ ଲକ୍ଷ୍ୟ ମୋର ଥିଲା ସବୁ କାଳେ,
କି ଯୁବା, କି ପ୍ରୌଢ଼ କାଳେ, କି ବୃଦ୍ଧବୟସେ,
ରହିବି ଜୀବନେ ଏକପତ୍ନୀବ୍ରତୀ ହୋଇ,
ଏହାହିଁ ମୋହର ଲକ୍ଷ୍ୟ ଥିଲା ସବୁଦିନେ।
ଆଦରଶ ସୁଚରିତ୍ରେ ହେବାକୁ ସମାଜେ
ପୋଷିଥିଲି ଆଶା, ଦେବି, ହୃଦୟେ ନିରତେ,
ଲକ୍ଷ୍ୟ ଅନୁରୂପେ ଥିଲି ରତ ଅନୁଷ୍ଠାନେ,
କୁକ୍ଷଣେ ବିଦେଶେ ଯାଇ, ତୋ ସଙ୍ଗ ହରାଇ,
ପଡ଼ିଲି କୁଭାଗ୍ୟ-ଚକ୍ରେ ରାକ୍ଷସୀ ହାବୋଡ଼େ,
ଖସରିଗଲା ଏ ପାଦ ଅନୀତିର ପଥେ,
କୁଟିଳ ପିଚ୍ଛିଳ ପୁଣି ପାପର କର୍ଦମେ।
ଖସିଆସିବାକୁ ଚେଷ୍ଟା କରିଥିଲି କେତେ,
ବିଫଳ ପ୍ରୟାସ ହେଲା ସେ ରାକ୍ଷସୀକୂଟେ,
ହୃଦୟଦୌର୍ବଲ୍ୟ ମୋର ଯୋଗଦେଲା ତହିଁ,
ସ୍ୱାର୍ଥସିଦ୍ଧି ଲାଗି ମୋତେ ସେହି ପାପୀୟସୀ
ଦେଖାଇଣ ବିଭୀଷିକା ରଖିଲା ଆକଟେ।
ଦୁର୍ବଳ ମୁଁ ଯେଣୁ ସଦା କି ମନେ, ଶରୀରେ,
ମାୟାବିନୀ ମାୟାଜାଲ ନ ପାରିଲି ଛେଦି।
ଊର୍ଣ୍ଣନାଭ ଶୋଷେ, ଆହା, ମକ୍ଷିକି ଯେସନେ,
ସେହିପରି ରକ୍ତ ମୋର ଶୋଷି ମାୟାବିନୀ
କଙ୍କାଳମାତର କରିଦେଲା ଶେଷେ ଛାଡ଼ି।
ନାହିଁଟି ସାହସ ମୋର ନିରେଖିବାପାଇଁ
ହିମବିନ୍ଦୁ ସ୍ତବକିନୀ କମଳିନୀ ପ୍ରାୟେ
ଏ ମୁଖ ତୋହର, ସତି, ସିକ୍ତ ନେତ୍ରନୀରେ,
ଏ ସୁନ୍ଦର ମୁଖ କାଳେ ପଡ଼ିବ ଝାଉଁଳି,
ସୁକୁମାରି, ଏ ପାପୀର ବିଷଦୃଷ୍ଟିପାତେ,
ନ ହୁଏ ଭରସା, ଆହା କହିବାକୁ କଥା
ତୋର ଆଗେ, କଳୁଷିତ ହୋଇଯିବ କାଳେ
ପବିତ୍ର ଶ୍ରବଣ ତୋର ସେହି ବାଣୀ ଶୁଣି।
ନ ପାରେ ଭରସି ପାପୀ ପରଶିବାପାଇଁ
ତୋର ପୁଣ୍ୟ ଅଙ୍ଗ ଏହି ଅପବିତ୍ର କରେ,
ଏ ପାପ ଶରୀର ବହି ଅର୍ଦ୍ଧାଙ୍ଗିନୀ ବୋଲି
କହିବାକୁ ନାହିଁ ମୋର ଅଧିକାର ତୋତେ।
କେତେ କ୍ଳେଶ ଦେଇଅଛି ତୋତେ ମୁଁ ଜୀବନେ;
ଅବହେଳା ଔଦାସୀନ୍ୟ ଦେଖାଇଛି କେତେ,
କହିଛି ଦାରୁଣ କେତେ ଉପହାସବାଣୀ,
ମୂର୍ତ୍ତିମତୀ ସହିଷ୍ଣୁତା ତୁହି ଭବତଳେ,
ନ ଥିଲା ଜୀବନେ ତୋର ବିଳାସବାସନା,
ତପଃକ୍ଳିଷ୍ଟା ତୁହି ସଦା, ଥିଲୁ ତପସ୍ୱିନୀ,
ସଦା ଶ୍ରମଶୀଳା, ପରସେବାବ୍ରତେ ରତା,
ନ ଘେନି ମୋହର ଦୋଷ, ଦେଇଥିଲୁ ଢାଳି
ସ୍ନେହର ଭଣ୍ଡାର ତୋର ଏହି ଅଭାଜନେ;
କେତେ ବ୍ରତ ଉପବାସ, ନିୟମାଦି କେତେ
କରିଥିଲୁ ମୋହପାଇଁ କି କଷଣ ସହି,
ଶୁଝିବି କେସନ ମୁହିଁ ସେହି ଋଣରାଶି।
ଏକମାତ୍ର ତୋର ପ୍ରାପ୍ୟ ଯାହା ମୋହଠାରୁ,
ମାୟାବିନୀ ରାକ୍ଷସୀକି ସେ ସ୍ନେହ ଅଜାଡ଼ି
ଦେଲି ମୁହିଁ, ପଡ଼ି ପାପ-ପିଶାଚ-କୁହକେ,
ପବିତ୍ର ଯଜ୍ଞର ହବିଃ ଅରପିଲି ଶ୍ୱାନେ,
ପୁଷ୍ପମାଳ ଭ୍ରମେ ମୁହିଁ ଜଡ଼ାଇଲି ଦେହେ
ଗରଳସ୍ରାବିଣୀ କ୍ରୂର ଦୁରନ୍ତ ନାଗୁଣୀ,
ହୁଡ଼ିଲି ସାରକୁ ଦେଖି ବାହାରର ଛଳି,
ଆୟୁଷ୍ୟ ପଥ୍ୟାନ୍ନ ତେଜି ବିଷଲଡ଼ୁକାରେ
ବଳାଇଲି ମତି, ଆହା, ବୟଃପରିଣାମେ,
ଆସନ୍ନ ନିର୍ବାଣ ମୋର ପ୍ରାଣଦୀପ ଯେବେ,
ଧନ ମାନ ପ୍ରାଣ ମୁହିଁ ମୋହର ଏକାଳେ
ଅରପିଲି ବଳିରୂପେ ସେହି ପାପପୀଠେ,
ତୋହୋ ପରି ସୁଖୋଚିତା ପବିତ୍ରହୃଦୟା
ରୁଗ୍ଣଭଗ୍ନଦେହା, ପୁଣି ଚିନ୍ତାଜର୍ଜରିତା
ଅବଳାକୁ କଲି, ଆହା, ଦାଣ୍ଡଭିକାରୁଣୀ,
ବିନାଦୋଷେ ଲୋକଠାରେ ଧିକ୍‌କୃତା ଲାଞ୍ଛିତା,
ଅନାର୍ଥୀ ଅତିଥିଙ୍କୁ ଯେ ସଶ୍ରଦ୍ଧେ ସଦୟେ
ଦେଉଥିଲା ଅନ୍ନ ସଦା ଅନ୍ନପୂର୍ଣ୍ଣା ରୂପେ,
ଆହା, ସେହି ଦୟାବତୀ ରମଣୀକି ମୁହିଁ

ଅନ୍ନାର୍ଥିନୀ ପରଦ୍ୱାରେ କଲି ନିଜ ପାପେ ।
ତୋର ମୋର ବେନିଙ୍କର ସ୍ନେହର ପିତୁଳା
ଦାଣ୍ଡର ଭିକାରୀ କଲି ସେ ବେନି କ୍ରମରେ,
ମଣ୍ଡିତ ଯେ ପିତୃ-ମାତୃ-ବତ୍ସଳତା ଗୁଣେ,
ତୋର ଆଦରଣେ ଯେହୁ ଯତ୍ନେ ଗଢ଼ିଥିଲେ
ନିଜର ଚରିତ୍ର ତୋର ପୁଣ୍ୟଛାଞ୍ଚେ ଢାଳି ।
କ୍ଷମାଶୀଳା, ଲଭିବି କି କ୍ଷମା ତୋର ମୁହିଁ
ଏହି କ୍ଷମାତୀତ ପାପେ, ଏ ବୟସେ ପୁଣି ?
ଏ ପଳିତକେଶେ, ଜୀର୍ଣ୍ଣ ଶୀର୍ଣ୍ଣ ରୁଗ୍ଣ ଦେହେ ?
ଏ ବିଶ୍ୱାସଦ୍ରୋହୀଠାରେ, ଗଳୁବିଶ୍ୱାସିନି,
ଗଳୁ ବିଶ୍ୱାସର ଫଳ ଲଭିଲୁ ଯେସନେ,
କେଉଁ ନ୍ୟାୟେ ତୋ ବିଶ୍ୱାସ ଲଭିବାର ଆଶା –
ଏଡ଼େ ବଡ଼ ଦୁରାଶା – ମୁଁ ପୋଷିବି ହୃଦୟେ ?
ଭାଙ୍ଗିପଡ଼ୁଅଛି ମନ ଦୁଷ୍କୃତ ସୁମରି
ମୋହର, ଭରସା ବାନ୍ଧି ପାରୁ ନାହିଁ ଆଉ,
କି କରିବି, କି କହିବି, ବୁଦ୍ଧି ଦିଶୁ ନାହିଁ,
ଜୀବନ ବହି ମୁଁ ହୀନ କଳପିତୁଳାରୁ ।
କି କରୁଛି, କି କହୁଛି, ନ ଜାଣଇ ନିଜେ,
ଏ ସଂସାରେ ଏ ଗହଳ ଲୋକକୋଳାହଳେ
ନିଜକୁ ମୁଁ ଜଣେ ବୋଲି ମଣୁ ନାହିଁ ଆଉ,
କେହି କି ଜଗତେ ନାହିଁ ସକ୍ଷମ ଦେବାକୁ
ଫେରାଇ ମୋହର ସେହି ପୂର୍ଣ୍ଣ ନିରୀହତା,
ସେ ଚାରିତ୍ର୍ୟରତ୍ନ ମୋର – ରତ୍ନୋତ୍ତମ ଭବେ ?
ସକ୍ଷମ କି ଏ ଜଗତେ ଜଣେ କେହି ନାହିଁ
ଧୋଇବାକୁ ମୋର ଏହି ହୃଦୟର କାଳି ?
କିଏ ଦୟା ବହି ମୋତେ ଡାକି ଶାନ୍ତିବାରି
ସରସ ପ୍ରଫୁଲ୍ଲ କରିଦେବ ପୂର୍ବ ପରି ?
ଏକମାତ୍ର ଆଶା ମୋର ଅଛି ପ୍ରଭୁପାଦେ,
ଆଶା ଅଛି ପୁଣି ତୋର ବତ୍ସଳ ହୃଦୟେ,
ମୋର ଦୋଷଯାକ ମୁହିଁ ସବୁ ଅକପଟେ
ଫେଡ଼ି କହିଅଛି, ଦେବି, ତୋହରି ଅଗ୍ରତେ,
ନାହିଁ ଦାବି ତୋ ବିଶ୍ୱାସେ ତିଳେ ମୋର ଏବେ,
ତଥାଚ କହୁଛି ମୁହିଁ ତୁହି ମୋର ଗତି;
ଏକମାତ୍ର ଗତି ଇହଲୋକେ ପରଲୋକେ,
ପରାଣସଙ୍ଗିନୀ ମୋର ପ୍ରେମର ପ୍ରତିମା,
ଉଦ୍ଧାରର ଏକମାତ୍ର ନାବ ଭବଜଳେ ।
ଏ ନୁହେ ମୋହର ମନଭୁଲାଇବା କଥା,
ଯା କହିଲି, କହିଲି ମୁଁ ହୃଦଅନ୍ତସ୍ତଳୁଁ ।
ଦୁଃଖ ତୋର ଯେତେ ମୁହିଁ ବୁଝିଅଛି ସବୁ,
ବୁଝିଛି ଆବର ତାର ହେତୁ ଏକା ମୁହିଁ,
ସେହି ହେତୁ ହୃଦ ମୋର ଜଳୁଛି ନିରତେ
ତୀବ୍ର ଆତ୍ମ-ଗ୍ଲାନିରୂପି-ଅନଳଶିଖାରେ ।

ଅଲାଜୁକପଣେ ମୁହିଁ ମାଗୁଛି ତୋଠାରେ
କ୍ଷମା ଦୟା ଭିକ୍ଷା, ଦେବି, ହୃଦୟବିକଳେ ।
ତୋତେ ବଳି କେହି ନାହିଁ ଦୁଃଖିନୀ ଜଗତେ,
ମାତ୍ର [illegible]ଠାରୁ ମୁହିଁ ଦୁଃଖୀ ଅତିରେକେ,
ଦାୟୀ ନୋହୁ ତୁହି, ସତି, ତୋର ଦୁଃଖଲାଗି,
ମୋହରି ପାପର ଫଳ ପଡ଼ି ତୋ ଉପରେ
କଲା ବିଷାଦିନୀ ସିନା ତୋତେ ଏତେସରି !
ନିଜେ ଶୁଦ୍ଧ ପବିତ୍ର ତୁ – ଏ ତୋର ସାନ୍ତ୍ୱନା;
ଏ ସାନ୍ତ୍ୱନା ନାହିଁ ମୋର, ପାପୀ ଯେଣୁ ମୁହିଁ,
ପାପୀଠାରୁ ଦୁଃଖୀ ଆଉ ନାହିଁଟି ଜଗତେ,
ନିଜ ପାପଫଳ ମୁହିଁ ଭୋଗିଥାନ୍ତି ଯେବେ
ଏକାକୀ, ନୁହନ୍ତା ମୋର ଏ ତୀବ୍ର ଯାତନା,
ଏ ମୋର ଦୁଷ୍କୃତିଯୋଗୁଁ ତୋହ ପରି ନାରୀ –
ଶାନ୍ତଶୀଳା, ପତିବ୍ରତା, ପତିପରାୟଣା
ନାରୀ ପ୍ରତି ଉପୁଜିଲା ଏ କଷଣରାଶି,
ସାନ୍ତ୍ୱନା ଲଭିବି କାହିଁ ଏହା ମୁଁ ସୁମରି ?
ନିଜକୃତ ଖାତେ ମୁହିଁ ନିଜେ ପଡ଼ି ପୁଣି
ପକାଇଲି ସଙ୍ଗେ ମୋର ନିରୀହ ସ୍ୱଜନେ !
ଆଉ କି କହିବି, ତୁହି ଚାରିତ୍ର୍ୟଦେବତା,
ସତୀଦ୍ରୋହୀ ମୁହିଁ ବୋଲି ପତିଦ୍ରୋହୀ ତୁହି
ହେବୁ ନାହିଁ କେବେ ଏହା ଜାଣଇ ମୁଁ ଭଲେ ।
ନରାଧମ ପାଷଣ୍ଡ ମୁଁ ପାମର ନାରକୀ
ହେଲେହେଁ ତୋହରି ସ୍ୱାମୀ, ଅର୍ଦ୍ଧାଙ୍ଗ ତୋହରି,
ପାରିବୁ ତ ନାହିଁ ତୁହି ବିସୋରି ଏ କଥା,
ଜାଣଇ ମୁଁ ଭଲେ, ତୁହି ତୋର ଅନ୍ତର୍ଗତେ
କ୍ଷମିଅଛୁ, କ୍ଷମାଶୀଳା, ମୋର ଦୋଷରାଶି ।
ଅଶୁଭ କାମନା ମୋର ତୋର ଧାରଣାରେ
ନ ପାରିବ ଆସି, ଏହା ଜାଣଇ ମୁଁ ଭଲେ,
ମୁକୁଳାଇ ମୁହିଁ ମୋର ନରକର ଗାହା
ଯାଇଥିଲି ବହୁଦୂର, ଆଣିଲୁ ଓଟାରି,
ପୂର୍ବ ପରି ମୋତେ ତୋର ଆଜ୍ଞାକାରିପଣେ
ରଖ, ସତି, ଏ ବିନତି କରୁଛି ପୟରେ,
ମୋତେ ତାରିବାକୁ ଅଳି କର ପ୍ରଭୁପାଦେ ।
ମୋର ଏ ଆରତି ନାଥ ନ ଶୁଣିବେ ଯେବେ,
ଶୁଣିବେ ସେ ନିଶ୍ଚେ ପତିବ୍ରତାର ଗୁହାରି ।
ତୋର ଡାକେ କୃପାଦ୍ୱାର ଫିଟିବ ସହଜେ,
କୃପାସିଂହାସନ ନିଶ୍ଚେ ଟଳିବ ମୋପାଇଁ ।
ପତିତପାବନ, ପୁଣି କୃପାବାରାନିଧି,
ଏ ନାମ ବହନ୍ତି ଯେଣୁ ବ୍ରହ୍ମାଣ୍ଡର ସାଇଁ,
ତୋହପରି ସତୀ କଲେ ମୋଲାଗି ଗୁହାରି
ବିଫଳ ନୋହିବ ମୋର କୃପାଲାଭ-ଆଶା,
ଫେଡ଼ିବେ ଆରତି ମୋର ଆର୍ତ୍ତତ୍ରାଣ ହରି । ୦୦୦

# ନିବେଦନ

ରକ୍ଷିଥିଲ ପ୍ରଭୁ ନାନା ପ୍ରଲୋଭନେ
ପାପର କବଳୁ ଏ ଛାର ଜୀବନେ।
କେତେ କେତେ ମହାବିଭୀଷିକାମୟୀ
ପରୀକ୍ଷାରେ ମୋତେ କରିଥିଲ ଜୟୀ।
ଜୀବନତରୀର ଦୃଢ଼େ କର୍ଣ୍ଣ ଧରି
ପାପସ୍ରୋତେ ପାରି କରିଥିଲ ହରି।
ବିସୋରି ତୁମର କର୍ତ୍ତୃପଣ ତହିଁ
ମଣିଲି ନିଜକୁ ନିଜ ବଳେ ଜୟୀ।
ବିଚରି ପିଚ୍ଛିଳ ଜୀବନର ପଥେ
ପଡ଼ିଲି ପାପର ଗଭୀର ଗରତେ।
ବିସୋରି ଥିବାରୁ ତୁମ ନେତୃପଣ
ଘଟିଲା ମୋର ଏ ଦାରୁଣ ସ୍ଖଳନ।
ଚଳି ଉଡ଼ି ଉଡ଼ି ନାନାରଙ୍ଗେ ନଭେ
ଡୋରିକି ମଣିଲା ଶୃଙ୍ଖଳ ଗରବେ।
ଆଶ୍ରୟକୁ ମଣି ଗତିରେ ଅର୍ଗଳ
ସ୍ୱତନ୍ତ୍ର ହେବାକୁ ହେଲା ଉଚ୍ଛୃଙ୍ଖଳ।
ଦଇବେ ଦଉଡ଼ି ଗଲା ଯହୁଁ କାଟି,
ଚଳି ନଭୁଁ ଖସି ଭଜିଲାକ ମାଟି।
ଅହଂଭାବେ ହୋଇ ତଥା ଅଭିଭୂତ
ହେଲି ମୁଁ ପବିତ୍ର ଜୀବନୁ ବିଚ୍ୟୁତ।
ଗୁପ୍ତେ ଗୁପ୍ତ-ପାପସ୍ମୃତି-ତୁଷାନଳେ
ମନ ଅପଘନ ଯୁଗପତ ଜଳେ।
କି ବିଭୀଷିକା ମୁଁ ଦେଖୁଅଛି ଏବେ,
ନାଚନ୍ତି ଚୌଦିଗେ ପାପ-ଉପଦେବେ।
ପାପର ତାଣ୍ଡବ ଦେଖି ପ୍ରାଣ ଥରେ,
ଯେଣେ ଚାହେଁ କିବା ବାହାରେ ଭିତରେ।
ଦୋହଲାଏ ହୃଦ ସେହି ଅନୁକ୍ଷଣେ,
ମହାବେଗେ କିବା ଜାଗ୍ରତେ ସ୍ୱପନେ।
ଅନୁକ୍ଷଣ ହୃଦେ ପାପବହ୍ନି ଜଳେ,
ବାଡ଼ବ ଯେସନ ମହାସିନ୍ଧୁ-ଜଳେ।
ବିଦାରି ହୃଦକୁ କରେ ଧୁନା ଧୁନା
ବିଷଦିଗ୍ଧ ପାପସ୍ମୃତି-ଏକମୁନା।
ଯହିଁ ଯାଏଁ ଯାଏ ସଙ୍ଗେ ସେ ଗୋଡ଼ାଇ,
ନିଜଠାରୁ ପଳାଇବା ରାହା କାହିଁ ?
ଯେତେବେଳେ କରେ ଯା ସଙ୍ଗେ ଆଳାପ,
ଚିରସଙ୍ଗୀ ପ୍ରାୟେ ସଙ୍ଗେ ରହେ ପାପ।
ଅଲକ୍ଷିତେ ମତେ ଦିଅଇ ଚିହ୍ନାଇ,
ଲଜ୍ଜାରେ ଶିରକୁ ଦିଅଇ ନୁଆଁଇ।
ଦମ୍ଭେ ଭର ଦେଇ ଆବରି ଯତନେ,
ନିଜ ବପୁ ଆଧିଗୁପ୍ତି-ଆବରଣେ।
ଚାହେଁ ମୁହିଁ ଯେବେ ଟେକିବାକୁ ମଥା,
ବିବେକ ପଛରୁ ଲଗାଏ ଗଳଥା।
ଲୋକ ଆଗେ ମୁହିଁ ହୁଏ ଯେବେ ଠିଆ,
ବିବେକ ପଛରୁ ଲଗାଏ ତଣ୍ଡିଆ।
ଶବ୍ଦ ମାତ୍ର ପାପ କହୁଛନ୍ତି ଥୋକେ,
ଛାୟା ପୁଣି କେହି, ଛବି ଆନ ଲୋକେ।
ମୁଁ ଦେଖୁଛି ତାକୁ ନିଦା ବିଗ୍ରହରେ
ବିରାଟ, ବିକଟ, ବ୍ୟାପ୍ତ ଚରାଚରେ।
ମୁଦିଲେ କି ଚକ୍ଷୁ ରଖିଲେ ଫିଟାଇ,
ସେ ବିଭୀଷିକାରୁ ଅବ୍ୟାହତି ନାହିଁ।
ଜଳ ସ୍ଥଳ ନଭ ଜ୍ୟୋତିଷମଣ୍ଡଳୀ
ଶୈଳ ନଦୀ ବନ ତରୁ ଲତାବଳୀ,
ନର ପଶୁ ପକ୍ଷୀ କୀଟ ପତଙ୍ଗାଦି,
ସର୍ବେ ହୋଇଛନ୍ତି ଏବେ ମୋର ବାଦୀ।
ଚରାଚରେ ଯହିଁ ପଡ଼େ ଯେବେ ଆଖି,
ସବୁ ମୁଁ ମଣଇ ମୋର ପାପସାକ୍ଷୀ।
ଇନ୍ଦ୍ରିୟବୃନ୍ଦକୁ କେମନ୍ତେ ବିକଳ,
ଜୀବନଯନ୍ତ୍ରକୁ କେଡ଼େ ବିଶୃଙ୍ଖଳ
କରେ ପାପସ୍ମୃତି, କେବଳ କଳ୍ପନା –
ଯୋଗେ କିଏ ତାହା କରିବ କଳନା ?
ଚକ୍ଷୁ ଯେବେ ଯାହା ଦେଖଇ ସୁନ୍ଦର,
ନିଜକୁ ଧିକ୍କାରେ କରଇ ଜର୍ଜର।
କର୍ଣ୍ଣ ଯେବେ ଶୁଣେ ସୁସ୍ୱରଲହରୀ,
ଘାରିହୁଏ ନିଜ ଅଯୋଗ୍ୟତା ସ୍ମରି।
ନାସା କରେ ଯେବେ ସୁବାସ ଗ୍ରହଣ,
ନିଜକୁ ମଣଇ ତାର ଅଭାଜନ।
କଳୁଷିତ ଦେହ ମନ ସେବାବ୍ରତ
ତେଜିବାକୁ କିବା ଇନ୍ଦ୍ରିୟେ ଉଦ୍ୟତ।
ପାପସ୍ମୃତି-ବିଷ ଶିରା ପ୍ରଶିରାରେ
ପ୍ରବାହିତ ହୋଇ ଦେହଯାକ ଘାରେ।
ଶ୍ୟାମଳ ହୃଦୟ-କେଦାର ମୋହର
ଦଗ୍‌ଧ, ଦଗ୍‌ଧ ଯଥା ହିଙ୍ଗୁଳା ପ୍ରାନ୍ତର।

□ □ □

## ପ୍ରତାପରୁଦ୍ର ଦେବ

ଶ୍ରୀ ପ୍ରତାପରୁଦ୍ର ଉତ୍କଳ ଯୁବରାଜ
ଶାୟିତ ଦାରୁଣ ରୋଗଶେଯେ ଆଜ।
ମଣନ୍ତି ନିଜକୁ ସେ ରୋଗକବଳେ
ଇହଲୋକ ପରଲୋକ ସନ୍ଧିସ୍ଥଳେ।
ରାଜବୈଦ୍ୟ ଯତ୍ନ ହୋଇଛି ନିଷ୍ଫଳ,
ଯୁବରାଜଙ୍କର ମନାସି କୁଶଳ
ଅଧା ପଡ଼ିଥିଲେ ଯାଇ ମହାକୁଳେ
ମହାଶମ୍ଭୁ ଲୋକନାଥଙ୍କ ଦେଉଳେ।
ରାଜପୂଜ୍ୟ କାଶୀ ମିଶ୍ର ରାଜଗୁରୁ
ଲଭିଛନ୍ତି ଏହି ଆଦେଶ ଶମ୍ଭୁରୁ,
"ପ୍ରତାପଙ୍କ କେହି ହୋଇ ନିଜ ଜନ
ପ୍ରତାପ ସକାଶେ ସ୍ୱପ୍ରାଣ ଅର୍ପଣ
କରିବାକୁ ଯେବେ ହୁଅଇ ସମ୍ମତ,
ଯୁବରାଜ ହେବେ ମନ୍ଦରୁ ମୁକତ।
ସର୍ବପ୍ରଥମେ ଯେ ଆତ୍ମସମର୍ପଣ
କରିବ, ତା' ବାଣୀ ହେବଟି ଗ୍ରହଣ।"
ଶେଷ ଦିନ ଆଜ ଥିଲା ପ୍ରତାପର,
ତା' ପ୍ରତିଭୂ ତେଣୁ ଆଜି କଳେବର
ତେଜିବ, ଏ ଆଜ୍ଞା ପାଇ ବିପ୍ରମଣି
ପ୍ରବେଶିଲେ ଆସି ନବରେ ଏକ୍ଷଣି।
ପ୍ରବେଶି ସର୍ବାଗ୍ରେ ପ୍ରିୟ ଶିଷ୍ୟା ନିଜ
ତାରିଣୀକୁ ସବୁ କହିଲେକ ଦ୍ୱିଜ।
ତାରିଣୀ ପ୍ରତାପରୁଦ୍ର ସଧର୍ମିଣୀ,
ଧର୍ମପ୍ରାଣା ସଦା ସ୍ୱଧର୍ମଚାରିଣୀ।
ପତିବ୍ରତା ବୋଲି ପୁଣ୍ୟ ନାମ ଯାର
ହୋଇଥିଲା ଉତ୍କଳମଣ୍ଡଳେ ପ୍ରଚାର।
ତାରିଣୀ ଶୁଣିଲେ ଗୁରୁଙ୍କ ଭାରତୀ,
ଭକ୍ତିଭରେ ତାଙ୍କୁ ବିହିଣ ପ୍ରଣତି
ବୋଇଲେ, "ଭୋ ଦେବ ତୁମ୍ଭ କୃପାବଳେ
ଧନ୍ୟା ମୁହିଁ ହେଲି ଧରଣୀମଣ୍ଡଳେ।"
କହିବା ମାତ୍ର ଏ କଥା ଧାଡିକାରେ
ଘୋଟିଗଲା ଜ୍ୱର ଅଙ୍ଗଲତିକାରେ।
ବହିଲା ନିଶ୍ୱାସ ନାସାରୁ ପ୍ରଖର,
ଶୀତ୍କାର ସହିତେ ଉପୁଜିଲା ଥର।
ଥିଲା ଯେଉଁ ତନୁ ସୌନ୍ଦର୍ଯ୍ୟର ସୀମା,
ତାହିଁ ତାହିଁ ତାହା ଉଭିଲା କାଳିମା।
ମଉଳିପଡ଼ିଲା ନିମେଷେ ସେ ବାଳା,
ଖରରଶ୍ମି କରେ ଯେସନ ଶେଫାଳୀ।
ବ୍ୟଗ୍ରେ ଆସି ତହିଁ ସଜନୀନିକର,
ବାଳା-ଶୁଶ୍ରୂଷାରେ ହେଲେ-ତତପର।

## ଯୁଧିଷ୍ଠିରଙ୍କ ପ୍ରତି ବ୍ୟାସ

ଚକ୍ରବ୍ୟୂହେ ସପ୍ତମହାରଥୀ-ଆକ୍ରମଣେ
ତେଜିଲେ ପରାଣ ଯେବେ ବୀରେନ୍ଦ୍ର ଆର୍ଜୁନି,
ସେ ଶୋକେ ଆକୁଳ ହୋଇ ପାଣ୍ଡବନୃପତି
ଝୁରିଲେ ଅଥୟେ ବାଷ୍ପଗଦଗଦସ୍ୱରେ।
ତାଙ୍କ ଦୁଃଖେ ସମଦୁଃଖୀ ଦ୍ୱୈପାୟନ ଋଷି
ବୋଇଲେ ଏସନ ତାଙ୍କ ସାନ୍ତ୍ୱନା ସକାଶେ,
ଜ୍ଞାନିକୁଳେ ମହାଜ୍ଞାନୀ ବୋଲାଇ ହେ ରାଏ,
ଅଭିଭୂତ ଶୋକେ ତୁମ୍ଭେ ହେଲ ଏହିମତି?
ସଂହାରି ଅସଂଖ୍ୟ ଶତ୍ରୁ ଭୀଷଣ ସଂଗ୍ରାମେ,
ଅର୍ଜି ଅନଶ୍ୱର ଯଶ ନଶ୍ୱର ଶରୀରେ
ଚାଲିଗଲା ଅଭିମନ୍ୟୁ ବୀର ଦିବ୍ୟଧାମେ,
ଅଶୋଚ୍ୟ ତୁମ୍ଭର ସେହୁ, ଶୋକ ତାହା ଲାଗି
ନୁହଇ ଉଚିତ ତବ ପୋଷିବାର ହୃଦେ।
ଯେ ଗଲା ସେ ଗଲା, ଆଉ ବାହୁଡ଼ିବ ନାହିଁ,
ଖଣ୍ଡିବାର ନୁହେ ଏହି ନୟତିର ଲିପି।

## କେତୋଟି ଉପଦେଶ ବାକ୍ୟ

ଦିଅ ହେ ସରବେ ଉତ୍କଳୀ, ଦେଶହିତରେ ଆତ୍ମବଳି।
ଅସାଧ୍ୟ ମଣେ ଯା ଅଳସ, କର୍ମବୀର ତା କରେ ବଶ।
ଅଳସ ଯା ଅସାଧ ମଣେ, କର୍ମବୀର ତା ସାଧେ କ୍ଷଣେ।
ଦେଶର ଲୋଡ଼ ହେ କଲ୍ୟାଣ, ତୃଣ ମଣିଣ ନିଜ ପ୍ରାଣ।
ଆପଣା ହିତ ଦେଶ ହିତେ, ଲୋଡ଼ ସରବେ ଏକଚିତ୍ତେ।
ଉତ୍କଳ ହିତେ ନିଜ ହିତ, ଲୋଡ଼ ହୋଇଣ ଏକଚିତ୍ତ।
ଉଦ୍‌ଯୋଗୀ ବାଧା ଭ୍ରୂକୁଟୀକି, ନଗଣି ସିଦ୍ଧି ଆଣେ ଝିଙ୍କି।
ସାହସେ ଯେହୁ ବାନ୍ଧେ ବକ୍ଷ, କାର୍ଯ୍ୟକ୍ଷେତ୍ରରେ ସେ ହର୍ଯ୍ୟକ୍ଷ।
ଜୟ ଜୟ ମା ମାତୃଧରା, ସର୍ବସୁଖଦା ଦୁଃଖହରା।
ସଭିଙ୍କ ମନ ଏକ ହେଲେ, ଅସାଧ ସାଧ ହୁଏ ହେଳେ।
ସ୍ୱଦେଶଦ୍ରୋହୀ ସ୍ୱାର୍ଥରଙ୍କ, ଉତ୍କଳ-ଦେଶେ ସେ କଳଙ୍କ।
ମାତୃଭୂମି ଯେ ଋଦ୍ଧିମୂଳ, ତା ପାଦେ ସର୍ବସିଦ୍ଧି ଠୁଳ।

□□□

## ବନ୍ଦନା

ହେ ପରାତ୍ପର ସର୍ବଶଙ୍କର ବିଶ୍ୱପା ଭଗବନ୍ ବିଭୋ !
ତବକମଳପାଦପଙ୍କଜସେବକାନ୍ ନଃ ପାହି ଭୋ।
ଭୂତଭାବନ ଭକ୍ତିମଜ୍ଜନପୂରିତାଖିଳକାମ ହେ !
ପୁଣ୍ୟକର୍ମଣି ବିଶ୍ୱବନ୍ଦନ ତ୍ୱାଂ ବୟଂ ବନ୍ଦାମହେ।
ଦୀୟତାଂ ଶୁଭଦୃଷ୍ଟିରତ୍ର ନୁ ଚିତ୍ରଶୋଭାମାଳିନୀ।
ଭାତୁ ଚୋତ୍କଳଭୂରିୟଂ ଭୁବି ସର୍ବସମ୍ପତ୍ତିଶାଳିନୀ।

## ସତ୍ୟବାଦୀ

ସୁରପୁନ୍ନାଗତମାଳବିଟପିକୁଳ, ବେଲ୍ଲନଜନିତନିକୁଞ୍ଜେ,
ନିର୍ମଳରତ୍ନଚିରାଚଳଶୀକର, ମେଦୁରକିଶଳୟପୁଞ୍ଜେ।
ସୌଗନ୍ଧିକସୁରଭୀକୃତମାରୁତ, ଚଳଦବଳାଚିକୁରାନ୍ତେ,
ଗୁଞ୍ଜନ୍ମଧୁକରନିକରକରମ୍ବିତ, ଫୁଲ୍ଲକୁସୁମଚୟକାନ୍ତେ।
ବଲ୍ଲବଲଳନାବଲ୍ଲଭ ମାଧବ ବିହରସି ମଞ୍ଜୁଳଦେଶେ।

□ □ □

## ହଂସଦୂତ *

### [ ଅନୁବାଦ ]

ଦଳାହରିତାଳଦ୍ୟୁତି ଦୁକୂଳଧାରୀ,
ପାଦତଳ ଯାର ଜବାରୁଚି ଧିକ୍‌କାରୀ,
ତମାଳ-ଶ୍ୟାମଳ-ଅଙ୍ଗ ଦରହସିତ
ଛଟାରେ ଯା ମୁଖଛବି ସଦା ଛୁରିତ,
ପରମ ଆନନ୍ଦ ଧାମ ସେହି ପୁରୁଷ
କରନ୍ତୁ ହୃଦୟୁ ମୋର ଦୂର କଳୁଷ।
ଗଲେ ଯେବେ କାହ୍ନୁ ଗୋପୀହୃଦ-ମଦନ
ଅକ୍ରୁର ସଙ୍ଗତେ ତେଜି ନନ୍ଦ ସଦନ
ମଥୁରା ପୁରୀକି, ତାଙ୍କ ବିରହେ ଦୀନା
ହୋଇ ଦିନୁଁ ଦିନୁଁ ହେଲେ ଶ୍ରୀମତୀ କ୍ଷୀଣା।
ଭାବନାରେ ହେଲେ ଧନୀ ନିରତେ ରତା,
ମଉଳିଗଲା ତାଙ୍କର ଶ୍ରୀଅଙ୍ଗଲତା,
ଚିନ୍ତାସ୍ରୋତ ଭଉଁରୀରେ ନିରତେ ମନ
ଭ୍ରମି ଭ୍ରମି ହେଲା ଜଳା ଶ୍ରୀଅପଘନ।

× × × ×

ଲଳିତା କୋଳରେ ତହୁଁ ନେଇ ବସିଲେ,
କମଳ ପରାଗ ଅଙ୍ଗେ କେହି ଘସିଲେ,
ବିଞ୍ଚିଲେ ବାଳୀକି ଆଳୀ ବସି ଚୌପାଶେ
କାଳିନ୍ଦୀ ସଲିଳସିକ୍ତ ପଦ୍ମ ପଳାଶେ।
ବହୁବେଳ ଏହିରୂପେ ସେବି ପ୍ରଚୁର
କମ୍ବୁକଣ୍ଠୀ କଣ୍ଠୁ ଧୀରେ ଶ୍ୱାସ ଅଙ୍କୁର
ନିଃସରିଲା ଯହୁଁ ବ୍ରଜଯୁବତୀ ଦଳ
ମଧ୍ୟେ ପଡ଼ିଗଲା ମହାହର୍ଷ ଚହଳ।
ରାଧାଙ୍କୁ କମଳଦଳ ଶେଯେ ଶୁଆଇ
ଲଳିତା ନଦୀକି ଗଲେ ସଲିଳ ପାଇଁ।

ଭେଟିଲେ ସୈକତେ ତହିଁ ବରଯୁବତୀ
ମରାଳ ମଞ୍ଜୁଳରାବୀ ମଞ୍ଜୁଳଗତି,
ହଂସେ ଦେଖି ମହାନନ୍ଦେ ମହାଆଦରେ
ଓଳଗି ତା ପାଶେ ଯାଇଁ ହେଲା ସେ ଖରେ।
ସନ୍ଦେଶ ପେଷିବାଲାଗି ହରିଙ୍କ ଜତି
ଦୌତ୍ୟେ ବରିବାକୁ ତାକୁ ହେଲା ତା ମତି।
ହରିପ୍ରେମେ ମତ୍ତ ସେହି ବ୍ରଜମହିଳା
ହଂସଠାରେ ହୃଦ କଥା ଫେଡ଼ି କହିଲା।
ମଣିଲା ଆବର ତାକୁ ପରମ ମିତ୍ର,
ନୁହଇ ତ ଏହା ତାହାପକ୍ଷେ ବିଚିତ୍ର।
ମତ୍ତ ଯେହ୍ନୁ ହରିପ୍ରେମ ରସ ଆବେଶେ ,
ସମସ୍ତଙ୍କୁ ନିଜ ଜନ ପ୍ରାୟେ ମଣେ ସେ।

× × × ×

ଆମ୍ଭଙ୍କୁ ବିରହାନଳ ତାପେ ଜଳାଇ
ମଥୁରାରେ ବିହରନ୍ତି ସୁଖେ କହ୍ନାଇ।
ପାସୋରି ଆମ୍ଭଙ୍କୁ ନିଜ ଭୋଗେ ସେ ରତ,
ତାଙ୍କ ଶ୍ରୀଛାମୁରେ ଏହି ବାର୍ତ୍ତା ଆଗତ
କର ଆହେ କଳହଂସ ଏହି ମାଗୁଣି,
କହିବି ଯା ନିଅ ତାହା ସଦୟେ ଶୁଣି।

× × × ×

ଦେଖିବ ମରାଳ ତହିଁ ରାସସ୍ଥଳିକା,
ହଲ୍ଲୀଷକମାଳାଦଳା ମଲ୍ଲି ଲତିକା,
ବେଷ୍ଟିତ ଯା ପରିସର ସଦା ସୁରଭି,
ବିହରନ୍ତି କେଳିଲୋଳା ଯହିଁ ବଲ୍ଲବୀ,

* କବିବରଙ୍କ ଟିପାଖାତାରେ ହଂସଦୂତର ଏହି କେତୋଟି ଶ୍ଲୋକର ଅନୁବାଦ ଲେଖାଥିଲା। ଏହା କ୍ରମିକ ନହେଲେହେଁ ମେଘଦୂତର ଅନୁବାଦ ପରି ଅତି ସୁନ୍ଦର ଓ ସରସ। ତେଣୁ ଗ୍ରନ୍ଥାବଳୀରେ ସନ୍ନିବିଷ୍ଟ ହେଲା।

ତାଙ୍କ ଅଙ୍ଗଲତାଚ୍ୟୁତ କସ୍ତୁରୀକଣା
ଯୋଗୁଁ ଶ୍ୟାମଳିତ ଯାର ଚାରୁ ଅଗଣା ।
× × × ×
ପୁରବିଳାସିନୀ ସଙ୍ଗେ କେଳି ରଭସେ
ଦେଖିବ ହରିଙ୍କି ଯେବେ ମଗ୍ନ ହରଷେ,
ସେକାଳେ ଏ ଗ୍ରାମ୍ୟାଗୋପୀ କଥା ଛାମୁରେ
ପକାଇଲେ ସବୁ ଭାସି ଯିବଟି ଦୂରେ ।
ସୁଧାଆସ୍ୱାଦନତୃପ୍ତ ଯେ ହୋଇଥାଏ,
ଘୋଳଦହି ପ୍ରତି ସେ କି ମତି ବଳାଏ !

କହିବି ଏ କଥା ଆଉ କେତେ ତୁହାଇ,
ଧୈର୍ଯ୍ୟ ଧରି ଥିବ ଅବସର ଅନାଇ ।
ସୁଲଳିତ କଳକଣ୍ଠ ଗୀତିକା ତାନ
ଝଙ୍କାରିବ ଯେବେ ପୁର ଉଦ୍ୟାନମାନ,
ଫୁଲ୍ଲ ଗିରିମଲ୍ଲି ଚାରୁ ସୌରଭ ବହି
ବହିବ ଯେ କାଳେ ବାତତରଙ୍ଗ ତହିଁ,
ବୃନ୍ଦାବନ ସ୍ମରଣର ସେ ଅନୁକୂଳ
କାଳ ଜାଣି ଆମ୍ଭ କଥା ସେ ଆଦିମୂଳ,
ଶ୍ରବଣଗୋଚର ତହିଁ କରିବ ଭାଇ,
ଚତୁରକୁ କି କହିବି ଆଉ ଚେତାଇ !

□ □ □

# ଫୁଲରାଣୀ

ଭାରତପାବନ ପୂତ ନୀଳାଚଳ ପଦେ
ଦିଗନ୍ତେ ନୀଳାୟମାନ ଅର୍ଦ୍ଧଚନ୍ଦ୍ରାକାରେ
ନିରତେ ଫେନାୟମାନ ତରଙ୍ଗାୟମାନ
ଚିର କୋଳାହଳମୟ ମହାସିନ୍ଧୁତୀରେ
ବିରାଜେ ଶ୍ରୀ ଚୈତନ୍ୟର ଆଶ୍ରମ ପାବନ,
ପ୍ରଥିତ ଭଜନକୋଠି ନାମେ ଉଡ୍ରଦେଶେ,
ଚୈତନ୍ୟର ସଂକୀର୍ତନେ ଉର୍ମିବାହୁ ଟେକି
ଦେଉଥିଲେ ଯୋଗ ଯହିଁ ସୁରମ୍ୟର ଧ୍ୱାନେ
ପ୍ରେମୋଲ୍ଲାସେ ନାଚି ନାଚି ନିଜେ ଅମ୍ବୁସ୍ୱାମୀ ।
ସେ କୋଠି ମହନ୍ତ ଥିଲେ ପ୍ରେମାନନ୍ଦ ସାଧୁ,
ଜରାଜୀର୍ଣ୍ଣ କୃଷ୍ଣପ୍ରେମୀ ଶିଷ୍ଟ ଶାନ୍ତମତି,
ଧୂରୀଣ ଗୋସ୍ୱାମୀ ଗ୍ରନ୍ଥେ କିବା ଅଳଙ୍କାରେ;
ପିତୃମାତୃହୀନା ଶୁଦ୍ର କନ୍ୟାଟିଏ ସାଧୁ
ପିଲାକାଳୁଁ ପାଳିଥିଲେ ପରମ ଯତନେ,
ରାଜର୍ଷି ଭରତ ଯଥା ବିଶ୍ୱମାୟା ତେଜି
ଜଡ଼ିହେଲେ ଶେଷେ ମୃଗଶିଶୁମାୟାପାଶେ,
ସେହିମତି ସାଧୁ ଗୃହ-ମମତା ମୁରୁଛି
ବନ୍ଧ ହୋଇଥିଲେ ସେହି କନ୍ୟାସ୍ନେହଗୁଣେ;
'ରାଣୀ' ନାମ ରଖି ତାର ସଦା ସ୍ନେହଭୋଳେ
ଡାକୁଥିଲେ ତାକୁ ଖେଳବୟସରେ ସେ ନାମେ ।
ଫୁଲେ ଶ୍ରଦ୍ଧା ଦେଖି ତାର 'ଫୁଲରାଣୀ' ବୋଲି
ଡାକୁଥିଲେ ପଡ଼ିଶାଏ ମହାଶ୍ରଦ୍ଧା ବହି ।
ବଢ଼ ଅଲିଅଳ କନ୍ୟା, ପିତୃସ୍ନେହ ଲଭି
ଶିଶୁକାଳୁଁ ବଢ଼ିଥିଲା ସୁଖେ ସୁକୁମାରୀ ;
ଶାରଦ-ଶିଶିର-ସେକେ ବଢ଼ଇ ଯେସନେ
ଲଳିତା ଅପରାଜିତା ଲତା ପଲ୍ଲବିନୀ,

ଅତି ରୂପବତୀ ବାଳା, ଲାବଣ୍ୟପସରା,
ଭବତଳେ କିଅବା ସେ ରୂପିଣୀ କମଳା ।
ଫୁଲତୋଳା ବେଳେ ବାଳା ଫୁଲ-ଉପବନେ
ମଞ୍ଜୁବେଶେ ଦିଶୁଥାଇ ମଞ୍ଜୁଘନକେଶୀ
ପ୍ରଚେତା ପ୍ରବାଳ କୁଞ୍ଜେ ସେ କମଳା ପ୍ରାୟେ ,
କିଅବା ସେ ପାରିଜାତକୁଞ୍ଜେ ପୁଣ୍ୟାଙ୍ଗନା ।
ପ୍ରତ୍ୟୁଷେ ଶେଯରୁ ଉଠି ନିତି ଚାରୁଶୀଳା
ବାଳିକୁଦପରେ ଯାଇ ଭକ୍ତିଭାବେ ନମି
ନୀଳଚକ୍ରେ, ତୋଳୁଥାଇ ଦେବାର୍ଚ୍ଚନ ଲାଗି
ନାନା ପୁଷ୍ପ – ଛୁରିଅନା, ଚମ୍ପକ, ବନ୍ଧୁଳୀ,
କୁନ୍ଦ, ଯୁଈ, ଯାଈ, ହାଇମରିଚା ମଲ୍ଲିକା,
ସରାଗେ ସେ ପୁଷ୍ପେ ରଚି ତାଡ଼, ଚୂଡ଼ା, ଝରା,
ପଦକ, ପାହୁଡ଼ ଆଦି ନାନା ପୁଷ୍ପଭୂଷା
ଅର୍ପୁଥାଇ ଦେବପାଦେ ପୁଷ୍ପ-ସୁକୁମାରୀ ।
ଦେବସେବା ପିତୃସେବା ବିନୁ ଆନ କାହିଁ
ନ ଥିଲା ବାଳାର ମତି, ସଂସାରର ଭୋଗେ
ନ ଥିଲା ଲାଳସା ଲେଶେ, ବେଶବିରଚନେ
ସଦା ଉଦାସୀନା ବାଳା, ରୂପର ମାଧୁରୀ
ନିଜର ସେ ନିଜେ ଜାଣୁ ନ ଥିଲା ରୂପସୀ,
ନ ବୁଝନ୍ତି ଆହା, ଯଥା ଶିଶୁଏ ନିଜର
ସୁଧାସ୍ୟନ୍ଦୀ ଦରସ୍ଫୁଟ ବଦନମାଧୁରୀ ।
ଜାଣଇ କି ନିଜେ କେବେ ସ୍ୱରୂପମାଧୁରୀ
ଅରୁଣଅଧରୀ ଦରସ୍ଫୁଟପଙ୍କଜିନୀ
ସରସୀ-ଆସନେ ବସି ପିଅଇ ସେ ଯେବେ
ବାଳାତପ, ମନ୍ଦେ ଦୋଳି ପ୍ରଭାତସମୀରେ,
ନିଜେ ସେ ନ ଜାଣି ମୋହି ନେଉଥାଇ ହେଳେ

ପ୍ରକୃତି-ମଧୁର ରୂପେ ଜଗଜ୍ଜନ ମନ,
ଅନାସ୍ଥା ଆକର୍ଷେ ବହି ରୂପକଳ୍ପଲତା
ଅନାସ୍ଥା-ମଧୁର ବେଶେ ଭ୍ରମି ବେଳାଦେଶେ
ଗଣୁଥାଇ କେବେ ବାଳା ଅଙ୍ଗୁଳି ନିର୍ଦ୍ଦେଶି
କେରଳୀ-ଚିକୁର-ଭଙ୍ଗି ଭଙ୍ଗୁର ଲହରୀ
ବାରିଧିର, କେବେ ଅବା ବସି ବାଳିକୂଦେ
ଦେଖୁଥାଇ ଏକଧ୍ୟାନେ ନୀଳଚକ୍ର ଛବି,
କସ୍ତୁରୀତିଳକରୂପୀ ବାରୁଣୀ ଲଲାଟେ।
କେବେ ପିତୃପାଦେ ବସି ଭକ୍ତିତଦଗତେ
ଶୁଣୁଥାଇ ସୁଧାମୟୀ ଗାଥା ଭାଗବତୀ,
ଅଶ୍ରୁମୋତିଝରେ ଝସନୟନୁ ଝରଇ,
ବାଳିକାସୁଲଭ କ୍ରୀଡ଼ା କୌତୁକ ଆମୋଦେ
ତରଙ୍ଗବୁଦ୍‌ବୁଦ ସମ ଭଙ୍ଗୁର ବିଳାସେ
ବିମୁଖ ସ୍ୱଭାବେ ଥିଲା ଆବାଲ୍ୟ ସୁମୁଖୀ,
ବହି ସୁପବିତ୍ର ମନ ସେ ପବିତ୍ର ଦେହେ
ପ୍ରତେ ହେଉଥାଇ ହେରି ଅମର୍ତ୍ତ୍ୟ ସୁଷମା
କୁମାରୀର, ଗଢ଼ି ନାହିଁ ବିହି କଦାଚିତେ
ସେ ମାଧୁରୀ ମାରୁ ହେବାଲାଗି ମର୍ତ୍ତ୍ୟଭୋଗେ,
ସୂକ୍ଷ୍ମ ଅପ୍ରଗଲ୍‌ଭ ବଡ଼ ଥିଲା ସେ ମାଧୁରୀ
ଆଶ୍ୱିନେ ଯେସନ ସୋମସୁମନବାସନା।
ଗୌରାଙ୍ଗୀର ରୂପପୁଷ୍ପ ଫୁଟି ହେଲା କେଡ଼େ
ତୋରା ଜୀବନର ଚୋରାବସନ୍ତ କୈଶୋରେ !
ଏକାଳେ ଯୁବତୀଧୃତିଭଞ୍ଜନ ମୂରତି
ଆସିଲା ରଞ୍ଜନନାମା ଏକ ଦ୍ୱିଜବଟୁ
ଅଳଙ୍କାର ଅଧ୍ୟୟନଲାଗି ସାଧୁ ପାଶେ,
ମଧୁରମୂରତି ଯୁବା, ରୂପ ଅନୁରୂପେ
ଭୂଷିତ ସେ ଥିଲା ନାନା ସୁଗୁଣ ଭୂଷଣେ,
ଦୃଷ୍ଟିମାତ୍ରେ ଜନନେତ୍ର, ନେତ୍ର ସଙ୍ଗେ ମନ
(ଗୁଣେ ଯଥା) ନେଉଥିଲା ଆକର୍ଷି ସେ ବଳେ,
ହୃଦୟ-ଗବାକ୍ଷରୂପୀ ବେନି ନେତ୍ରପଥେ
ଦ୍ୱିଜର ଭାବର ଜ୍ୟୋତି-ସ୍ରୋତ ଖରେ ବହି
ପ୍ରସଭେ ପଶୁଣଥିଲା ଦର୍ଶକ ହୃଦୟେ।
ତୀକ୍ଷ୍ଣ ମେଧା ଦେଖି ତାର ଶ୍ରଦ୍ଧା ବହି ଅତି
ଶିକ୍ଷା ଦେଲେ ସାଧୁ ତାକୁ ପରମ ଆଦରେ।
ଶାସନୁଁ ସେ ପ୍ରତିଦିନ ପ୍ରାତେ ମଠେ ଆସି
ପାଠାନ୍ତେ ବାହୁଡ଼ି ଯାଉଥିଲା ସନ୍ଧ୍ୟାକାଳେ।
ଆଦ୍ୟ ସମ୍ଭାଷଣ ଦିନୁ ଫୁଲରାଣୀଠାରେ
ରସିଲା ଯୁବାର ମତି, ମହୋଦଧି ଯଥା
ନବୋଦିତ ଶଶିକଳା ହେରି ପ୍ରାଚୀ ମୂଳେ
ଆଲିଙ୍ଗନ ଆଶେ ବାହୁ ତୋଳେ ନୀଳାକାଶେ।
ଫୁଲେ ଶ୍ରଦ୍ଧା ଦେଖି ତାର ଶାସନୁଁ ସେ ଯୁବା
ଦେଉଥାଇ ଆଣି ନାନା ଫୁଲ ଅନୁରାଗେ,
କିଶୋରୀର କାର୍ଯ୍ୟମାନ ଆଗଭରି ଯାଇ
ନ କହୁଣୁ ଦେଉଥାଇ ଆଦରେ ସମ୍ପାଦି,
ପ୍ରତିଫଳୁଥିଲା, ହୃଦେ ଉପୁଜିଲାକ୍ଷଣି,
ଯୁବାର ସହାନୁଭୂତି-ମୁକୁର-ଫଳକେ
କିଶୋରୀର ବ୍ୟକ୍ତ କିବା ଅବ୍ୟକ୍ତ ବାସନା।

□ □ □

## ବିବେକୀ

ମନୁଷ୍ୟକୁ କେତେ କଷ୍ଟ, ଶୋକ, ଅଭାବ ସହ୍ୟ କରିବାକୁ ହୁଏ, ତାହାର କଳନା କିଏ କରିବ? ମନୁଷ୍ୟକୁ କେତେ ଦୁର୍ଦ୍ଦୈବର ଅଧୀନ ହେବାକୁ ହୁଏ, କିଏ କଳିବ? ଏଣୁ ଯେ ପ୍ରବନ୍ଧ ତାହାର ମନର ଆର୍ତ୍ତି ଫେଡ଼ିପାରେ, ଏପରି ପ୍ରବନ୍ଧରେ ସମସ୍ତଙ୍କର ଆସ୍ଥା ହେବାର ଦିଶୁଅଛି। ଘୋର ବର୍ଷା, ଘରକାନ୍ଥ ପାଣି ଛାଟରେ ଖସିପଡୁଅଛି, ବାୟୁ ବେଗରେ ବହୁଅଛି। ସେପରି ପ୍ରବନ୍ଧ ଲେଖିବାପାଇଁ ଏ ଅନୁକୂଳ ଦିନ ଅଟେ; କେତେଗୁଡ଼ିଏ ଗୃହସୁଲଭ ସୁଖ ଥିଲେ ଏପରି ଝଟିକା କଷ୍ଟଦାୟକ ବୋଲି ପ୍ରତୀୟମାନ ହୁଏନାହିଁ, ବରଂ ସୁଖକର ବୋଧହୁଏ।

ଆମ୍ଭକୁ ମଧ୍ୟ ଅନେକ ଝଟିକା ସହିବାକୁ ହୁଏ। ଝଟିକା କେବଳ ଭୌତିକ ସଂସାରରେ ଅଛି, ଏମନ୍ତ ନୁହେ। ଆଧ୍ୟାତ୍ମିକ ସଂସାରରେ ଏପରି ଝଟିକା, ଏପରି ପ୍ରବଳ ଝଟିକା ଥରକୁ ଥର ଘଟିଅଛି ଓ ଘଟୁଅଛି। କେତେଗୁଡ଼ିଏ ପୋଥି ଆମ୍ଭ ପାଖରେ ସହଚର ପ୍ରାୟ ଥା'ନ୍ତି। ଏମାନଙ୍କ ପ୍ରାୟ ବିପଦ୍‌ବନ୍ଧୁ ମିଳିବାର ଦୁଷ୍କର ଅଟେ। ଏମାନେ ଭୌତିକ ଝଟିକାର କଷ୍ଟ ନିବାରଣ କରନ୍ତି; ଆଧ୍ୟାତ୍ମିକ ଝଟିକାର କଷ୍ଟ ନିବାରଣ କରନ୍ତି। ଝଡ଼ି ବର୍ଷା ବେଳେ ବାହାରିନପାରିଲେ ଏମାନଙ୍କ ସଙ୍ଗେ ଆଳାପ କରି ଚିତ୍ତର ସୁଖ ଉପୁଜେ। ଅଶ୍ରୁବର୍ଷା ବେଳେ ମଧ୍ୟ ଊଣା ସାନ୍ତ୍ୱନା ମିଳେ ନାହିଁ। ପାଠକ! ମୁଁ ଯେଉଁ ସୁଖ ଲଭୁଅଛି, ତୁମ୍ଭେ ସେଥିରେ ଅଂଶୀ ହେବ? ଏହାକୁ ଯେବେ ସୁଖ ମଣ, ଅଂଶୀ ହେଲେ ମୋ ସୁଖ ବଢ଼ିବ।

ପୋଥିଗୁଡ଼ିକ ଉପରେ ଆଖି ପଡ଼ିଲାକ୍ଷଣି କେତେ ଇଷ୍ଟ ବ୍ୟକ୍ତି ଏକାବେଳକେ ସ୍ମୃତିଅଗଣାରେ ଆବିର୍ଭୂତ ହୁଅନ୍ତି। ଏମାନେ ମନୁଷ୍ୟର ପରମ ମିତ୍ର ଅଟନ୍ତି। ବିପନ୍ନ ବ୍ୟକ୍ତିର ନିର୍ବେଦ ଊଣା କରିବାପାଇଁ ଏମାନେ କେମନ୍ତ ତେଜସ୍କର, କେମନ୍ତ ସାରବାନ୍ କଥାଗୁଡ଼ିଏ କହିଅଛନ୍ତି! ପଢ଼ିଲାକ୍ଷଣି ତୁମ୍ଭେ ଭାବିବ, ଏମାନେ କିଛି ଛାଡ଼ି ନାହାନ୍ତି। ମାତ୍ର ତାହା ନୁହେ, ଯେତେ ଚେଷ୍ଟା ହେଉ ପଛକେ, ମନୁଷ୍ୟ ହୃଦୟରେ ପଡ଼ିଆ ଜମିର କେବେହେଁ ଅଭାବ ନାହିଁ।

କେତେକ ଲୋକ ଅଛନ୍ତି, ସେମାନେ ମଣନ୍ତି ଯେ ସହସ୍ର କଷ୍ଟ, ସହସ୍ର ଦୁର୍ଦ୍ଦୈବ ଘଟିଲେ ସୁଦ୍ଧା ସେମାନେ କାତର ହେବେ ନାହିଁ, ସେମାନଙ୍କର ଧୈର୍ଯ୍ୟ ସେମାନଙ୍କୁ ସମ୍ଭାଳିନେବ। କେତେକ ଲୋକ ଅଛନ୍ତି, ସେମାନେ ମଣନ୍ତି ଯେଡ଼େ ପ୍ରଲୋଭନ ହେଉ ପଛକେ କାହିଁରେ ହିଁ ସେମାନଙ୍କର ମନ ବିଚଳିତ ହେବ ନାହିଁ। ପରୀକ୍ଷା ଆଗେ ଏପରି ଦମ୍ଭ, ଏପରି ଆତ୍ମପ୍ରତ୍ୟୟ ଭଲ ନୁହେଁ। ଏହି ଦମ୍ଭ ଏହି ଆତ୍ମପ୍ରତ୍ୟୟର ହେତୁ କ'ଣ? ସମସ୍ତେ ମନେକରନ୍ତି, "ମୋର କ'ଣ ବୁଦ୍ଧି ନାହିଁ? ସେମାନଙ୍କର କ'ଣ ବୁଦ୍ଧି ନାହିଁ? ବୁଦ୍ଧି ଘେନି କାର୍ଯ୍ୟ କଲେ ଏପରି କିପାଇଁ ଘଟିବ, ସେମାନେ କାହିଁକି ବିରକ୍ତ ହେବେ?" ନୂଆ ଲୋକେ କୌଣସି କାର୍ଯ୍ୟରେ ହସ୍ତ ଦେଲାମାତ୍ରେ ଭାବନ୍ତି, "ଏହା କରିବା ଅବଶ୍ୟ ଉଚିତ, ମୁଁ ଏହା ଅବଶ୍ୟ କରିବି, ଯେ ଯାହା କହୁ ପଛକେ ପ୍ରକୃତ ମାର୍ଗ ଅନୁସରି ଅବଶ୍ୟ ଚଳିବି।" କେତେଦିନ କାର୍ଯ୍ୟ କଲା ଉତ୍ତାରେ ମନରେ ଆନ ଭାବର ସଞ୍ଚାର ହୁଏ। କୌଣସି ନୂଆ ଲୋକକୁ କୌଣସି କାର୍ଯ୍ୟର ଔଚିତ୍ୟ ହୃଦୟଙ୍ଗମ କରାଇଦିଅ, ସେ ସେକ୍ଷଣି ଉତ୍ତର ଦେବ "ହଁ ପ୍ରମାଣ, ମୁଁ ଏପରି କରିବି।" ମହାନ୍ ଲୋକମାନେ ଯେବେ କୌଣସି ଅଭ୍ୟାସ ଛାଡ଼ିନପାରନ୍ତି, ନୂଆ ଲୋକ ତାହା ଦେଖିଲାକ୍ଷଣି ଅଧୀର ହୁଅନ୍ତି। "ଏହି ସମାନ୍ୟ ବିଷୟ ଏହାଙ୍କ ଦେହି ହେଉନାହିଁ!" କଳ୍ପନା-ସଂସାରରେ ବିପତ୍ ମୂର୍ତ୍ତି ଅବଲୋକନ କରି ନୂଆ ଲୋକେ ପାଞ୍ଚନ୍ତି, "ଏହି ସିନା, ଏହା କ'ଣ ମୋ ଦେହି ହେବ ନାହିଁ? ଏ ଅନର୍ଥ କାହିଁକି ଘଟିବ? ଘଟିଲେ ସୁଦ୍ଧା ଏହାକୁ ଅତିକ୍ରମ କରିବା କଠିନ ନୁହେ।" ନୂଆ ଲୋକେ ପିଲା ପରି, ବସ୍ତୁତଃ କାର୍ଯ୍ୟରେ ପିଲା ସିନା। ପିଲାମାନେ ଯେପରି ପାଞ୍ଚନ୍ତି, ନୂଆ ଲୋକେ ସେହିପରି ପାଞ୍ଚନ୍ତି। କାଦୁଅରେ ଆଠ ଦଶ ଥର କଚାଡ଼ି ନ ପଡ଼ିଲେ ସେମାନେ ଚେତନ୍ତି ନାହିଁ। ଚେତିଲା ଉତ୍ତାରୁ ଦେଖନ୍ତି, ବିଷୟ, ପରିବାର, ସଂସାର ସମ୍ଭାଳିବାଠାରୁ ଆପଣା ଚିତ୍ତକୁ ସମ୍ଭାଳିବା ଦୁଷ୍କର ଅଟେ।

ମନୁଷ୍ୟର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ସ୍ୱାସ୍ଥ୍ୟରକ୍ଷାର ନିୟମ ଶିକ୍ଷା ମଧ୍ୟ ହେଉଥାଏ।

ଏଣୁ କୌଣସି କୌଣସି ଦେଶରେ ଏହି ପ୍ରବାଦ ପ୍ରଚଳିତ ଅଛି, "ଚାଳିଶ ବର୍ଷରେ କେହି ବୈଦ୍ୟ ହୁଅନ୍ତି, ଚାଳିଶ ବର୍ଷରେ କାହାକୁ ଅବା ବୈଦ୍ୟ ଛାଡ଼େ।" ଶରୀର ସମ୍ବନ୍ଧରେ ଯେଉଁ ନିୟମ, ମନ ସମ୍ବନ୍ଧରେ ମଧ ସେହି ନିୟମ ଚଳୁଅଛି। ମନ ମଧ ଅନେକ ନୂଆ ଅବସ୍ଥାରେ ପଡ଼ି ଆପଣାର ଗତି, ପ୍ରବୃତ୍ତି ଓ ନିୟମମାନ ବୁଝିପାରେ। ଏହି ବିବେକ ଅମୂଲ୍ୟ ବିବେକ ଅଟେ। "ଏ ଅନିଷ୍ଟ ମୁଁ ନିରାକରଣ କରି ପାରିବି ନାହିଁ। ଏହାକୁ ପାସୋରିବା ଭଲ। ମୁଁ ଏକା ଥିଲେ ସେହି ଚିନ୍ତା ପୁଣି ଆସି ମୋତେ ଆଗୁଳିବ। ବିଷୟାନ୍ତରେ ମନ ଲଗାଇବି। ଏ ସୁଖ ମୋହ ଭୋଗରେ ଆସିବ ନାହିଁ, ଆସିଲେ ସୁଦ୍ଧା ଦୂରରୁ ଯେପରି ମନୋହର ଦିଶୁଅଛି, ସେପରି ମନୋହର ଦିଶିବ ନାହିଁ। ପୂର୍ବରେ ମୋହର ଯେଉଁ ସୁଖ ଜଣାନଥିଲା, ଜଣାନଥିବା ଯୋଗୁଁ ଏଡ଼େ ଭଲ ଦିଶୁଥିଲା, ସେହି ସୁଖ ତ ବର୍ତ୍ତମାନ ଅନୁଭବ କରୁଅଛି। ମାତ୍ର ସେ ମୋହିନୀ ଶକ୍ତି କାହିଁ? ଏ ସୁଖ ମଧ ସେହିପରି। ଏହାର ଓଜନ ମଧ ସେହିପରି। ଏମନ୍ତ ସୁଖ ମିଳିଲେ କେତେ ନମିଳିଲେ ଅବା କେତେ।" ଏହିପରି ପ୍ରବୋଧ ଦେଇ ନିତାନ୍ତ କୋମଳମନସ୍କ ବ୍ୟକ୍ତି ମଧ ମନର ଉଦ୍‌ବେଗ ଶାନ୍ତିକରେ। ମାନସିକ ବୃତ୍ତିମାନ ବୁଢ଼ିଯାନ୍ତି, ଏମନ୍ତ ନମଣ। ବହୁଦର୍ଶିତା ବଢ଼ିଲେ ଲୋକେ ଚିତ୍ତକୁ ସମ୍ଭାଳିପାରନ୍ତି।

ଅନର୍ଥର ପ୍ରକୃତ ପରିଣାମ ଜଣାଥିଲେ ମନରେ ଯଥେଷ୍ଟ ସାନ୍ତ୍ୱନା ହୁଏ, ହେତୁ କି ଏମନ୍ତ ସ୍ଥଳରେ କଷ୍ଟ ସହିତ ବିସ୍ମୟ ମିଶେ ନାହିଁ। ଅନେକ ଉପନ୍ୟାସପ୍ରିୟ ଅଭୂଯୋଦର୍ଶୀ ଯୁବକ ମହାନ୍ ମହାନ୍ କଷ୍ଟକୁ କ୍ଷୁଦ୍ର ମଣନ୍ତି। ମାତ୍ର ପ୍ରକୃତି ସବୁଦିନେ ଅଟଳ ଥାଏ। ଉପନ୍ୟାସର ଶିକ୍ଷା ଭିନେ, ପ୍ରକୃତିର ଶିକ୍ଷା ଭିନେ। କେହି କେହି କହନ୍ତି, ଦୁର୍ବିପାକ କେବେ ବହୁକାଳ ବ୍ୟାପେ ନାହିଁ, ଆସେ, ଯାଏ, ଚଞ୍ଚଳ ଚାଲିଯାଏ। ମାତ୍ର ଅନୁଭବୀ ଲୋକେ ଆନପ୍ରକାର କହିବେ। କୌଣସି କୌଣସି ଦୁର୍ବିପାକ ଅନେକ କାଳ ସ୍ଥାୟୀ ହୁଏ, ଅନେକ ଦିନ କଷ୍ଟ ଦିଏ। ମନୁଷ୍ୟ ଗିରିଶୃଙ୍ଗରୁ ଏକାବେଳେ ତଳକୁ ଖସିପଡ଼େ ଏମନ୍ତ ନୁହେଁ। ଧୀରେ ଧୀରେ ପଡ଼େ, ଏ ପଥରରୁ ସେ ପଥରକୁ ଆସେ, ଇତସ୍ତତଃ ଲତା ଗଛ ପତୁଁ ପତୁଁ ଯାହା ପାଏ ତାହାକୁ ଧରେ। ହାତ ଖସରିଯାଏ। କୌଣସି କୌଣସି ସ୍ଥାନରେ ଛିଡ଼ା ହୋଇ ପାଞ୍ଚେ, ଆଉ ପଡ଼ିବି ନାହିଁ। ସେଠାରୁ ମଧ ଗୋଡ଼ ଖସରିଯାଏ। ଏହିପରି ପଡୁଁ ପଡୁଁ ପର୍ବତର ପାଦଦେଶକୁ ଲାଗେ। ଏ ଉପମାନ କିଞ୍ଚିତ୍ କର୍କଶ ଅଟେ, ମାତ୍ର ଉପମେୟର ଯୋଗ୍ୟ ଉପମାନ।

ଲକ୍ଷ ଭିତରେ ଦୁଇ ଚାରି ଜଣ ସ୍ଥାୟୀ ସୁଖ ଲଭନ୍ତି, ଅବଶିଷ୍ଟ ଲୋକମାନଙ୍କ ମଧରୁ ସମସ୍ତେ ଦୁଇଟା ଗୋଟାଏ ସ୍ଥାୟୀ ଅନର୍ଥ ଭୋଗିଅଛନ୍ତି, ଭୋଗୁଅଛନ୍ତି। ଦୀର୍ଘକାଳବ୍ୟାପୀ ମକଦ୍ଦମା କାହାର ଅର୍ଥ ଶୋଷଣ କରୁଅଛି। କେହି ଅବା କୌଣସି ଅଧବସାୟରେ ଭଗ୍ନମନୋରଥ ହୋଇଅଛନ୍ତି, ସେହି ଅଧବସାୟ-ବିଫଳତା ତାହାଙ୍କୁ ଦାରୁଣ ଯାତନା ଦେଉଅଛି। କେହି ଦୁଷ୍ଟ ସନ୍ତାନର ଅବାଧତାଯୋଗୁଁ ଦିନ ରାତି ଦୀର୍ଘନିଶ୍ୱାସ ପକାଉଅଛନ୍ତି। ଦୁଷ୍ଟ ଖଳ କୁଟୁମ୍ବର ଉପଦ୍ରବରେ କାହାରି ଅବା ଧୈର୍ଯ୍ୟ ଲୋପ ହେଉଅଛି। କେହି ଅବା ଅପରିଣାମଦର୍ଶୀ ଇନ୍ଦ୍ରିୟର ପରତନ୍ତ୍ର ହୋଇ କୌଣସି ଲଜ୍ଜାକର ବ୍ୟାପାରରେ ଲିପ୍ତ ଥିଲେ, ଏବେ ସେହି ଲଜ୍ଜାକର ବ୍ୟାପାର ସବୁବେଳେ ସ୍ମୃତିମାର୍ଗରେ ଆବିର୍ଭୂତ ହୋଇ ଥରକୁଥର ମୁଖ ବିବର୍ଣ୍ଣ କରୁଅଛି। ଏହିପରି କେତେ ଲୋକ ଦିନ ମଧରେ ଶହେ ଥର ଆତ୍ମଧିକ୍‌କାର ଦେଇ ଦୈବର ଅପରିହାର୍ଯ୍ୟ ବିଡ଼ମ୍ୱନା ସ୍ମରଣ କରି, ମହୀରେ ଯେଉଁ ସମୟରେ ପ୍ରଥମେ ପଦାର୍ପଣ କରିଥିଲେ, ସେହି ସମୟକୁ କୁସମୟ ମଣୁଅଛନ୍ତି।

ଜଣେ ଓକିଲ, ଆଉ ଜଣେ ମନ୍ତ୍ରୀ, ଦୁହିଁଙ୍କୁ ପ୍ରାୟ ସମାନ ପରିଶ୍ରମ କରିବାକୁ ହୁଏ। ମାତ୍ର ମନ୍ତ୍ରୀକୁ ଯେପରି ପ୍ରଗାଢ଼ ଚିନ୍ତା କରିବାକୁ ହୁଏ, ଓକିଲର ସେପରି ନୁହେ। ଓକିଲର ଚିନ୍ତା ସୂର୍ଯ୍ୟଙ୍କ ସଙ୍ଗେ ଉଦିତ ହୁଏ, ସୂର୍ଯ୍ୟଙ୍କ ସଙ୍ଗେ ଅସ୍ତ ହୁଏ। ମନ ଦେଇ ଦେଖ, ଦାୟୀ ମନ୍ତ୍ରୀର ମାନସିକ କଷ୍ଟ କେଡ଼େ କଷ୍ଟ। ଗୋଟିଏ ପ୍ରଣାଳୀ ଘେନି କାର୍ଯ୍ୟ କରିବାକୁ ହେଲା। ପ୍ରଣାଳୀ ପ୍ରଶସ୍ତ ଅଥବା ଅପ୍ରଶସ୍ତ, ଦିନେଓଳିକରେ ଜଣା ଯିବ ନାହିଁ। ପ୍ରଣାଳୀଗତ ଦୋଷମାନ ଧୀରେ ଧୀରେ ଅତର୍କିତ ରୂପରେ ଉପଲବ୍ଧ ହୁଏ। ଏମନ୍ତ ଅବସ୍ଥାରେ ଏହିପରି ସାନ୍ତ୍ୱନା ଅବଲମ୍ବନ କରିବାର ବିହିତ ଅଟେ। ତୁମ୍ଭର ଅବଲମ୍ବିତ ପ୍ରଣାଳୀରୁ ମନ୍ଦ ଫଳ ଜାତ ହେଲା ଜାଣି ଜ୍ଞାନୀ, ହୃଦୟଜ୍ଞ ଲୋକଙ୍କର ଏମନ୍ତ ସ୍ଥଳରେ କ'ଣ କରିବାର ଉଚିତ? ଅନେକ ଗଞ୍ଜନା ତ ସହିଲଣି। ଏଥିରୁ ଯାହା ଶିଖିବାର ଶିଖିଲଣି। ଥରକୁଥର ଆଉ ସେହି ବିଷୟର ମାର୍ଜନା କର ନାହିଁ, ପାସୋରିପକାଅ। ମନକୁ ଆନ

ବିଷୟରେ ଆମୋଦରେ ନିବିଷ୍ଟ କର। ନେପୋଲିୟନ୍ ବୋନାପାର୍ଟ କେଡ଼େ ଲୋକ ଥିଲେ। ଯୁଷ୍ଟପରାଭବ ମନେପଡ଼ିଲାକ୍ଷଣି ତାସ ଓ ନ୍ୟାୟବଳର ଶରଣ ପଶୁଥିଲେ। ମନଃ ଶାନ୍ତିର ଆହୁରି ଏକ ଉପାୟ ଏହି; ଆମ୍ଭର ବିପଦ୍‌କାଳ ଆମ୍ଭଙ୍କୁ କଷ୍ଟ ଦେଇଅଛି, ଏହା ପ୍ରମାଣ ଅଟେ। ମାତ୍ର ଅମିଶ୍ର କଷ୍ଟ ଦେଇ ନାହିଁ, କଷ୍ଟ ସଙ୍ଗେ ସଙ୍ଗେ ଅମୂଲ୍ୟ ଜ୍ଞାନ ଦେଇଅଛି। ଯେଉଁ ଅନ୍ଧକାର ସୂର୍ଯ୍ୟ ଗ୍ରାସ କରେ, ସେହି ଅନ୍ଧକାର କେତେ ମଞ୍ଜୁଳ ପଦାର୍ଥମାନ ନୟନଗୋଚ଼ର କରାଏ। ଦିନରେ ଗଗନଯାକ ଉଜ୍ଜ୍ୱଳ ଥିଲା, ଅନ୍ଧକାରରେ ଯାହାର ସ୍ୱତଃ ଔଜ୍ଜ୍ୱଲ୍ୟ ଅଛି, ସେହି ଉଜ୍ଜ୍ୱଳ ଥାଏ। ଯାହାର ସ୍ୱତଃ ଔଜ୍ଜ୍ୱଲ୍ୟ ନାହିଁ, ସେ ଆଲୁଅରେ ଧଳା ଥିଲା, ଅନ୍ଧକାରରେ କଳା ହେଲା।

ଏହି ଦେଖ ପାଠକ, ଉପମା ଅଳଙ୍କାର ଲୋଡ଼ୁଁ ଲୋଡ଼ୁଁ ବାଟ ବଣା ହୋଇଥିଲି। ହଁ! ଆମ୍ଭର ଆପଦ ଆମ୍ଭଙ୍କୁ ବିସ୍ତର ଜ୍ଞାନ ଶିଖାଏ। ଏଣୁ ଆପଦ ଆମ୍ଭର ଉପକାରକ, ଏଡ଼େ ଉପକାରକ, ଏଡ଼େ ସ୍ପଷ୍ଟବାଦୀ ଉପକାରକ ଆଉ ନାହିଁ। ବିପଦରୁ ଯେଉଁ ଜ୍ଞାନ ମିଳେ, ଅନେକ ବ୍ୟୟରେ ମିଳେ। ଏମନ୍ତ ଜ୍ଞାନକୁ ଆମ୍ଭର ବିତ୍ତର ଅଂଶ ମଣିବାର ଉଚିତ।

ଜ୍ଞାନୀ ଲୋକ ସର୍ବଦା ନମ୍ର ହୋଇ ଅବସର ପ୍ରତୀକ୍ଷା କରିବ। ସବୁ ବିଷୟରେ ନମ୍ର ଥିବାର ଭଲ, ଆପଣାର ଲଘିମା ସବୁବେଳେ ସ୍ମରଣ କରିବାର ଭଲ। ପ୍ରବୀଣ ସେନାପତି ପ୍ରାୟ ଉଚ୍ଚ ଭୂମି ଅନ୍ୱେଷଣ କରିବ।

କେବଳ ମନରେ ନୁହେ, କାର୍ଯ୍ୟରେ ମଧ୍ୟ ଏହିପରି ସାବଧାନ ହୋଇ ଚଳିବାର ବିଧେୟ ଅଟେ। ଜଣେ ବିଜ୍ଞ ଲୋକ କହିଅଛନ୍ତି, "ସେ ପ୍ରତିଦିନ କଚେରିକୁ ଯାଉଥିଲେ। ଯେଉଁ ଦିନ ବାଟରେ ଘୋଡ଼ା ଚଞ୍ଚଳ ଓ ଅବାଧ ହେଉଥିଲା, ସେ ଦିନ ସେ ମଧ୍ୟ କଚେରିରେ ବିରକ୍ତ, ରୁଷ୍ଟ ହେଉଥିଲେ। ଯେଉଁ ଦିନ ଭଲରେ ଆସୁଥିଲେ, ସେ ଦିନ କଚେରିରେ ଉଗ୍ର ମୂର୍ତ୍ତି ଧରୁନଥିଲେ। ଏଥିରେ ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ। ଘୋଡ଼ା ଦୁର୍ଦ୍ଦାନ୍ତ ହେଲାରୁ ତାହାକୁ ଆୟତ୍ତ କରିବାକୁ ହେଉଥିଲା, ତେଣୁ କିଞ୍ଚିତ୍ ଦୁର୍ବଳ ଓ ବିରକ୍ତ ହେଉଥିଲେ, ସୁତରାଂ ମନର ଶାନ୍ତି ଭଗ୍ନ ହେବାର ବିଚିତ୍ର ନୁହେ। ଏ ସାନ କଥା, ମାତ୍ର ଏପରି ସାନ କଥାରେ ସୁଦ୍ଧା ନିକ୍ତି ଟଳିଯାଏ। ଯେଉଁ ଲୋକମାନେ ହୃଦୟଜ୍ଞ ନୁହନ୍ତି, ସେମାନେ ଏହି କଥା ଶୁଣି ହସିବେ। ହସିବେ ତ ହସନ୍ତୁ; ମାତ୍ର ବିଢ଼ିଲେ ଜାଣିବେ। ସାନ ବିଷୟ ଅନେକ ଅଛି। ମାତ୍ର ବଡ଼ ସାଙ୍ଗରେ ସେମାନଙ୍କର ସମ୍ପର୍କ ଥିଲେ ସେମାନଙ୍କ ଅଭାବରେ ବଡ଼ କଥା ମଧ୍ୟ ଅଟକିଯାଏ।

ସଂସାରରେ ଗଞ୍ଜନା ସମସ୍ତଙ୍କୁ ଥରେ ଦୁଇ ଥର ସହିବାକୁ ହୁଏ। କୋମଳମନସ୍କ ବ୍ୟକ୍ତିମାନେ ଟିକିଏ ନିନ୍ଦାରେ ଭଗ୍ନମନା ହୁଅନ୍ତି। ଯେତେବେଳେ ତୁମ୍ଭର ଗଞ୍ଜନା ହେବ, ମନ ସମ୍ଭାଳି ଧୈର୍ଯ୍ୟ ଧରି ଏହା ପାଞ୍ଚିବ ଯେ, ସଂସାରର ମତ ଦିନକୁ ଦିନ ସଂଶୋଧିତ ହେଉଅଛି। ଯେଉଁମାନେ ତୁମ୍ଭର ଆତ୍ମୀୟ ଅଟନ୍ତି, ସେମାନେ ତୁମ୍ଭର ଆଚ଼ରଣ ବିଷୟରେ ଯେଉଁ ମତ ସ୍ଥିର କରିଅଛନ୍ତି, ତାହା ସହଜରେ ପରିବର୍ତ୍ତିତ ହେବାର ଦୁଷ୍କର ଅଟେ। ହେତୁ କି ସେମାନେ ଏହା ପାଞ୍ଚନ୍ତି ଯେ, ସେମାନେ ତୁମ୍ଭର ଚରିତ୍ର ଭଲରୂପରେ ଜାଣନ୍ତି; ଏଣୁ ସେମାନଙ୍କର ମତ ଅଭ୍ରାନ୍ତ ଅଟେ। ସାଧାରଣ ଲୋକଙ୍କର ମତ ଭ୍ରାନ୍ତ ଥିଲେ ସମୟରେ ଅବଶ୍ୟ ବିଶୋଧିତ ହେବ।

ମତ ସଂଶୋଧନ କେଉଁ ଯୁଗରେ ହେବ, ସେତେଦିନଯାଏ ଅନାଇଥିବାର ସହଜ ନୁହେଁ, ମାତ୍ର ହେଲେହେଁ ସବୁ ଦିନ ତୁମ୍ଭର କଳଙ୍କ ଥିବ ନାହିଁ। ମଲା ଆଗେ ହେଉ ବା ପଛେ ହେଉ ଅବଶ୍ୟ ଦିନେ ଉପନୀତ ହେବ, ଏହି ଚିନ୍ତା ମନକୁ କଥଞ୍ଚିତ୍ ସୁସ୍ଥ କରିପାରେ।

କୁତ୍ସା ସମ୍ବନ୍ଧରେ ଏହା ଭାବିବାର ଉଚିତ ଯେ, ଲୋକେ କୁତ୍ସାକୁ ଯେଉଁ କାରଣରୁ ଜାତହୋଇଥିବାର ମଣନ୍ତି, କୁତ୍ସା ସେଥିରୁ ଜାତ ହୁଏ ନାହିଁ। ସ୍ଥାୟୀ ହିଂସାର ପ୍ରବର୍ତ୍ତନାରେ କେହି ତୁମ୍ଭର ଅମଙ୍ଗଳ ପାଞ୍ଚୁଅଛନ୍ତି, ତୁମ୍ଭର ଅନିଷ୍ଟ ସାଧନ ଛଡ଼ା ସେମାନଙ୍କର ଅନ୍ୟ ବ୍ୟବସା ନାହିଁ। ତୁମ୍ଭେ ତାହାଙ୍କର କ୍ରୂର କୁତ୍ସାର ଗୋଟିଏ ମାତ୍ର ଲକ୍ଷ୍ୟସ୍ଥଳ ଅଟ, କେଭେ ଏମନ୍ତ ଭାବିବ ନାହିଁ। ନିଶ୍ଚେ ଜାଣିଥିବ, ସ୍ଥାୟୀ ହିଂସା ସବୁବେଳେ କୁତ୍ସାର ପ୍ରସୂତି ନୁହଇ। ସରଳ ଅଜ୍ଞତା, ସଂକୀର୍ଣ୍ଣମନସ୍କତା ଅଥବା ଅପରିହାର୍ଯ୍ୟତା, ଏହି ତିନି କାରଣର ଅନ୍ୟତରରୁ କୁତ୍ସା ଜାତ ହେଉଥିବାର ଜଣାଯାଏ। ଏଣୁ କୁତ୍ସାକୁ ଅନ୍ୟାୟ ଉପଦ୍ରବ ନ ମଣି ଦୁର୍ଭାଗ୍ୟ ମଣିବାର ବିହିତ ଅଟେ।

ଯେଉଁମାନଙ୍କୁ ଅନେକ ଭାର ସମ୍ଭାଳିବାକୁ ହୁଏ, ସେମାନେ ଦୁଇ ଚାରି ଥର ଗଞ୍ଜନା ନ ଭଜି ଯେ ଜୀବନ ଗମିବେ, ଏପରି ଆଶା କରିବାର ଭଲ ନୁହେ। ହେତୁ କି ଏପରି ଆଶା କେବେ

ଫଳିବ ନାହିଁ । ଯେଉଁ ଲୋକମାନଙ୍କ ସଙ୍ଗେ ତୁମ୍ଭର କାରବାର ଚଳୁଅଛି, ସେମାନଙ୍କ ମଧ୍ୟରେ ବିଷ୍ଟମ୍ଭନ୍ୟ ଅଜ୍ଞ ଏବଂ ଈର୍ଷୀ ଲୋକ ଅନେକ ଅଛନ୍ତି । ଏହା ଯେବେ ଜାଣ, ସେମାନଙ୍କ ସଙ୍ଗେ କାରବାର କଲେ ଅବଶ୍ୟ ଥରେ ଦୁଇ ଥର ଦୁର୍ନାମ ଘଟିବ, ଏହା ମଧ୍ୟ ଜାଣିବାର ଉଚିତ । ଗଞ୍ଜନାନଳ ଏକ ସ୍ଥାନରେ ପ୍ରଜ୍ୱଳିତ ହୁଏ । ଏମନ୍ତ କେତେଗୁଡ଼ିଏ ଲୋକ ଅଛନ୍ତି, ପରନିନ୍ଦା ସେମାନଙ୍କୁ ଯେତେ ସୁସ୍ୱାଦୁ ଲାଗେ, କୌଣସି ମିଷ୍ଟାନ୍ନ ସେପରି ଲାଗେ ନାହିଁ । ଏମାନେ ତୁମ୍ଭର ଗଞ୍ଜନାନଳରେ ଫୁତ୍କାର ଦିଅନ୍ତି । ତୁମ୍ଭଠାରେ ସେମାନଙ୍କର କୌଣସି ଶତ୍ରୁତା ଥିବା ଯୋଗୁଁ ଫୁତ୍କାର ଦିଅନ୍ତି ଏମନ୍ତ ନୁହେ । ପରଗଞ୍ଜନା ସେମାନଙ୍କୁ ସ୍ୱାଦୁ ଲାଗେ, ସେଥିପାଇଁ ଫୁତ୍କାର ଦିଅନ୍ତି । ଅଜ୍ଞତା ପୁଣି କଳ୍ପିତକୁ ପ୍ରକୃତ ମଣି ତୁମ୍ଭଠାରେ ଦ୍ୱେଷୀ ହୁଅଇ । ଏଣୁ ତୁମ୍ଭର ମହାନ୍ ଅନିଷ୍ଟ ହେଲା । କ'ଣ କରିବ, ଏଥିରେ ତୁମ୍ଭର ଚାରା ନାହିଁ । ଯେତେ ସାବଧାନ ହୋଇ ଚଳ, ଯେତେ ପରିଣାମଦର୍ଶୀ ହୁଅ ପଛକେ, ବହୁ ବ୍ୟାପାରୀ ହେଲେ ନିଷ୍ଟେ ଥରେ ଦୁଇ ଥର କଳଙ୍କ ରଟିବ । ଏଣୁ ଏପରି ଦୁର୍ଘଟନାକୁ ଦୁର୍ଦୈବକୃତ ମଣିବାର ବିହିତ ଅଟେ । ଯେଉଁ ବିବେକର ସାହାଯ୍ୟ ଘେନି ଆନ ଦୈବବିପାକ ସହୁଅଛ, ଏହି ଦୁର୍ଘଟନାରେ ମଧ୍ୟ ସେହି ବିବେକର ସାହାଯ୍ୟ ନିଅ । ଧୈର୍ଯ୍ୟ ଧରି ପ୍ରତୀକ୍ଷା କର, ଯାହା ସମୟରେ ଜାତ ହୋଇଅଛି ସମୟରେ ତାହାର ଖଣ୍ଡନ ହେବ । କାଦୁଅ ଯେତେବେଳେ ଶୁଷ୍କ ହେବ, ଆପେ ଝଡ଼ିପଡ଼ିବ, ଶୁଷ୍କ ହେବା ଆଗେ ଝଡ଼ିପଡ଼ିବ ନାହିଁ । ପୋଛିବା ତୁମ୍ଭର ସାଧ୍ୟ ନୁହେ, ଶୁଷ୍କ ହେବାଯାଏ ପ୍ରତୀକ୍ଷା କର । ତୁମ୍ଭ ଜୀବନ ଥାଉଁ ଥାଉଁ ଶୁଷ୍କ ହେବ କି ନାହିଁ, ଏହା ଅବା କିଏ କହିବ ? ଯେ ଯାହହେଉ, ଆତ୍ମସମର୍ଥନ ନିମନ୍ତେ ନିତାନ୍ତ ବ୍ୟଗ୍ର ହେବାର ଭଲ ନୁହେ । କର୍ମଠ ଲୋକ ଗଞ୍ଜନାକୁ ଘେନି ଯେବେ ଅହର୍ନିଶ ଟାଳିବ, କର୍ମ କିପରି ଚଳିବ ? କର୍ମିଷ୍ଠ ବ୍ୟକ୍ତିଙ୍କର ଏହା ମନେରଖିବା ଉଚିତ କି, ସେମାନେ ଯାହା କରନ୍ତି, ଅନ୍ୟକୁ ସେଥିର କାରଣମାନ ଜଣାଇବା ସେମାନଙ୍କ କର୍ମର ଅଙ୍ଗ ନୁହଇ । ଏତିକି ମାତ୍ର, ସେ ସଦସତ୍ ବିବେଚ଼ନା ଉପଦେଶ ଅନୁସରି ଚଳିବେ ।

ରାଜକର୍ମଚାରୀମାନଙ୍କୁ ଦେଖ । ଏମାନେ କେତେ ଗଞ୍ଜନା ଲଭନ୍ତି, ମାତ୍ର ତୁନି ହୋଇ ସବୁ ସହନ୍ତି । ସେମାନଙ୍କ ଅବଲମ୍ବିତ କାର୍ଯ୍ୟପ୍ରଣାଳୀ ଘେନି ଅନେକ ଲୋକ ଅନେକ କଥା କହନ୍ତି । ସମସ୍ତଙ୍କୁ ପ୍ରବୋଧ ଦେବାପାଇଁ ସେମାନଙ୍କର ଅବକାଶ ନାହିଁ । କେବଳ ଉଚ୍ଚତର କର୍ମଚାରିଠାରେ ସେମାନେ ଦାୟୀ ଅଟନ୍ତି । ଏଥିପାଇଁ ଉଚ୍ଚତର କର୍ମଚାରିଙ୍କୁ ଅବଲମ୍ବିତ ପ୍ରଣାଳୀର କାରଣମାନ ଜଣାନ୍ତି । ସଂସାରର ଅନ୍ୟାନ୍ୟ କାର୍ଯ୍ୟରେ ସୁଦ୍ଧା ସେହିପରି ନ କଲେ ଚଳି ହେବ ନାହିଁ । ଲୋକର ଆଚ଼ରଣ ଉପରେ କେହି ଯେବେ ଅନ୍ୟାୟ ଟୀକା କରନ୍ତି, ସେହି ଟୀକା ଅଶେଷ ମନସ୍ତାପର ହେତୁ ହୁଏ । ବାସ୍ତବରେ କାହାରି ଆଚ଼ରଣ ଭଲ ଅବା ମନ୍ଦ, ଏ ବିଷୟରେ ମତ ଦେବାକୁ ଲୋକେ କେଡ଼େ ଅନୁପଯୁକ୍ତ ଅଟନ୍ତି, ତାହା ଯେବେ ସମସ୍ତଙ୍କୁ ଜଣାଥାନ୍ତା, ତେବେ କେହି ସହସା କୌଣସି ବିଷୟରେ ମତ ଦିଅନ୍ତେ ନାହିଁ, କାହାକୁ ଅନ୍ୟାୟ ମତଜନିତ କ୍ଳେଶ ସୁଦ୍ଧା ଭୋଗ କରିବାକୁ ହୁଅନ୍ତା ନାହିଁ । ଆଗେ ଭାଳି ଦେଖ, ଅନ୍ୟର ପ୍ରକୃତ ଅବସ୍ଥା ବିଷୟରେ ଆମ୍ଭେମାନେ କେଡ଼େ ଅଜ୍ଞ ଅଟୁ । ଜଣକୁ ତୁମ୍ଭେ ଧନୀ ମଣ । ସେ ନିଃସ୍ୱ ଅଟେ, ଅଥବା ସେ ଧନୀ ଅଟେ; ମାତ୍ର ସେହି ଧନର ସଙ୍ଗେ ସଙ୍ଗେ ତାହାକୁ କେତେ ଆପଦ ସହିବାକୁ ହୁଏ, କେତେ ଲୋକର ମନ ରଖି, କେତେ ଲୋକଙ୍କୁ ଡରି ଚଳିବାକୁ ହୁଏ, ତାହା ତୁମ୍ଭେ ଜାଣ ନାହିଁ । ଜଣକୁ ତୁମ୍ଭେ ସୁସ୍ଥଶରୀର ମଣ, ବାସ୍ତବରେ ସେ ମାନସିକ ରୋଗର ଅଧୀନ ହୋଇ ଅହର୍ନିଶ ଯନ୍ତ୍ରଣା ଭୋଗ କରୁଅଛି । ତୁମ୍ଭେ କହ, "ଅମୁକେଇ ଲୋକ କେଡ଼େ ଅସୁଖୀ, ଏପରି ମୁଖରା ଭାର୍ଯ୍ୟା ଘେନି ମୁଁ ଚଳିପାରନ୍ତି !" ମାତ୍ର ପ୍ରକୃତରେ ତାହାର ଭାର୍ଯ୍ୟା ମୁଖରା ହେଲେହେଁ ସେ ତାହାକୁ ଯଥେଷ୍ଟ ସ୍ନେହ କରେ ଏବଂ ଆପଣାକୁ ସୁଭଗ ମଣେ । ତୁମ୍ଭେ କହ, "ଅମୁକେଇ ଲୋକ ପରି କପାଳିଆ ମହୀରେ ନାହିଁ, ଏଡ଼େ ସ୍ନେହବତୀ ଭାର୍ଯ୍ୟା କାହାରି ନାହିଁ ।" ପ୍ରକୃତରେ ତାହା ଘର କଳିମନ୍ଦିର ଅଟେ । ତୁମ୍ଭେ କହ, "ଅମୁକେଇ ଲୋକକୁ କୌଣସି କାର୍ଯ୍ୟ କରିବାକୁ ହୁଏ ନାହିଁ, ତାହାର ଦିନଯାକ ଅବକାଶ ।" ବାସ୍ତବରେ ତାହାକୁ କେତେ ଚିନ୍ତା, କେତେ ପରିଶ୍ରମ, କେତେ ଉଦ୍‌ଯୋଗ କରିବାକୁ ହୁଅଇ, ସେଥିର ଲବମାତ୍ର ତୁମ୍ଭଙ୍କୁ ଜଣା ନାହିଁ । ଏଥକୁ ଅନ୍ୟର ଆଚ଼ରଣ ଉପରେ ତୁମ୍ଭେ ଯେଉଁ ଟୀକା କର, ସେଥିରେ ଲଭ୍ୟ କ'ଣ ? ଲୋକ ଗୋଟିକୁ ପ୍ରକୃତି ଗୋଟିଏ । ପୁଣି ଅନେକ ଲୋକ ଅଛନ୍ତି, ସେମାନେ ଆପଣା ସମପ୍ରକୃତିକ ଲୋକ ଛାଡ଼ି ଅନ୍ୟ ଲୋକଙ୍କୁ

ଅଧମ ମଣନ୍ତି। ଦେଖ, ଅନ୍ୟର ଆଚରଣ ଉପରେ ଟୀକା କରିବାପାଇଁ କେତେ ଜ୍ଞାନର ପ୍ରୟୋଜନ ରଖେ, ପ୍ରାୟ ସର୍ବଜ୍ଞତାର ପ୍ରୟୋଜନ ରଖେ। ଭିନ୍ନଜାତୀୟ ପ୍ରାଣୀମାନଙ୍କ ପ୍ରକୃତିରେ ଯେତେ ଅନ୍ତର, ଭିନ୍ନ ଭିନ୍ନ ଲୋକମାନଙ୍କର ପ୍ରକୃତିରେ ସେହିପରି ଅନ୍ତର ଥିବାର ଦିଶୁଅଛି। ବଳଦ ଭଲ ଅବା ମନ୍ଦ, ଶିଷ୍ଟ ଅବା ଦୁଷ୍ଟ, ଠେକୁଆ ଏ ବିଷୟର ବିଚାର କରିନପାରେ।

ଗଞ୍ଜନା ତଳେ ଉପେକ୍ଷା। ଉପେକ୍ଷିତ ବ୍ୟକ୍ତି-ମାନଙ୍କର ମଧ ସାନ୍ତ୍ୱନାର ଅନେକ ଉପାୟ ଅଛି। ଯେଉଁ ଲୋକ ଆପଣାକୁ ଉପେକ୍ଷାର ଅନର୍ହ ମଣେ, ତାହାକୁ ଉପେକ୍ଷା ଦୁଃସହ କଷ୍ଟ ଦିଏ। ମାତ୍ର ବାସ୍ତବରେ ବିଜ୍ଞ, ଅବହେଳାର ଅନର୍ହ ବ୍ୟକ୍ତି ସୁଦ୍ଧା ଅବହେଳିତ ହୁଅନ୍ତି। ଏପରି ସ୍ଥଳରେ ଉପେକ୍ଷାର ପ୍ରକୃତ ହେତୁ ସ୍ମରଣ କଲେ ଉପେକ୍ଷାଜନିତ କ୍ଲେଶ ନିଷ୍ଫେ ଊଣା ହେବ। ହେତୁ କି ଉପେକ୍ଷା ସ୍ୱୟଂ କଷ୍ଟକାରୀ ହେଲେ ମଧ ସେଥିର ହେତୁ ସବୁବେଳେ ସେପରି କଷ୍ଟକର ହୁଏନାହିଁ।

ଅମୁକେଇ ଉପାୟରେ ଅମୁକେଇ ବସ୍ତୁ ମିଳେ, ତୁମ୍ଭେ ସେ ଉପାୟ ଅବଲମ୍ବି ପାରିବ ନାହିଁ, ଅଥଚ ସେହି ବସ୍ତୁଲିପ୍ସା ତୁମ୍ଭ ମନରେ ସବୁବେଳେ ଜାଗରୂକ ଅଛି। ଏପରି ଅନ୍ୟାୟ ଲିପ୍ସା ତୁମ୍ଭର ବିଜ୍ଞତାର ସଦୃଶ ନୁହେ। ତୁମ୍ଭଠାରେ ଗୁଣର ଅଭାବ ନାହିଁ। ମାତ୍ର ଯାହା ଲଭିବାପାଇଁ ତୁମ୍ଭର ଏଡ଼େ ଆଗ୍ରହ, ତାହା କେବଳ ଗୁଣଦ୍ୱାରା ଲବ୍ଧ ହୁଅଇ ନାହିଁ। କେତେଗୁଡ଼ିଏ ସୁବିଧାର ପ୍ରୟୋଜନ ରଖେ। ତୁମ୍ଭ ଭାଗ୍ୟରେ ସେପରି ସୁବିଧା ଘଟୁ ନାହିଁ। ଏଥିପାଇଁ ଲୋକେ ଉତ୍ତରସାଧକଙ୍କୁ ବହୁ ମଣନ୍ତି। କେତେଗୁଡ଼ିଏ କଥା ଅଛି, ଆପଣାପାଇଁ କେହି କହି ପାରେ ନାହିଁ। ଯେବେ କେହି କହେ, ଲୋକେ ତାହାକୁ ଅହଙ୍କାରୀ, ଧୃଷ୍ଟ ଏବଂ ନିର୍ଲଜ୍ଜ ମଣନ୍ତି। ଉତ୍ତରସାଧକ ଥିଲେ ଏପରି ଅନର୍ଥ ଜାତ ହୁଏ ନାହିଁ। ସେ ତୁମ୍ଭପାଇଁ ସେହି ସେହି କଥାମାନ ମୁକ୍ତକଣ୍ଠରେ ନିର୍ଭୀକମନରେ କହି ପାରିବେ। ତୁମ୍ଭର ଯେବେ ଏପରି ଉତ୍ତରସାଧକ ନାହାନ୍ତି, ତୁନି-ହୋଇଥାଅ। ତୁମ୍ଭଠାରୁ ଅଧିକ ଅଭାବଗ୍ରସ୍ତ ଲୋକର ଅବସ୍ଥା ସଙ୍ଗେ ଆପଣା ଅବସ୍ଥା ତୁଳନା କରି ମନକୁ ପ୍ରବୋଧ ଦିଅ।

ନ୍ୟାୟ ଅପେକ୍ଷା ଅନ୍ୟାୟର ମୂର୍ତ୍ତି ବିଶେଷ। ଅନ୍ୟାୟ ସହି ହୁଏ ନାହିଁ, ମାତ୍ର ନ ସହି ଗତି ନାହିଁ। ଅନେକ ଲୋକ କହନ୍ତି, "ମୋର ଆଉ କିଛି ମାଗୁଣି ନାହିଁ, ନ୍ୟାୟ ହେଲେ ସବୁ ହେଲା, ମୁଁ କେବଳ ନ୍ୟାୟ ପ୍ରାର୍ଥନା କରୁଅଛି।" କେବଳ ନ୍ୟାୟ ପ୍ରାର୍ଥନା କରୁଅଛ? ନ୍ୟାୟ ଭିତରେ କେତେ ଗଳା ଭାଳି ଦେଖିଛଚିକି? ନ୍ୟାୟ ସମୟସାପେକ୍ଷ, ସୂକ୍ଷ୍ମଦର୍ଶିତାସାପେକ୍ଷ, ଶିକ୍ଷତାସାପେକ୍ଷ। ତୁମ୍ଭେ ଦିନ ଭିତରେ ଶହେ କାରବାର କରୁଅଛ। ଯେବେ ପ୍ରତି କାରବାରରେ ନ୍ୟାୟ ପ୍ରାର୍ଥନା କରିବ, ପ୍ରତି କାରବାରରେ ତିନୋଟି ଲେଖାଏଁ ଦିନ ମଧ୍ୟରେ ତିନିଶ ପଦାର୍ଥ ତୁମ୍ଭର ମାଗୁଣି ହେଲା। ତୁମ୍ଭଠାରେ ଯେବେ କେହି ଏହି ମାଗୁଣି କରିବ, ତୁମ୍ଭେ ଦେଇ ପାରିବ? ଯେତେଦିନଯାଏ ତୁମ୍ଭର ଏହି କ୍ଷମତାର ଅଭାବ ଅଛି, ସେତେଦିନଯାଏ ଆନ ଲୋକଠାରେ ଏପରି ଅସଙ୍ଗତ ପ୍ରାର୍ଥନା କରିବାର ଅନୁଚିତ। ସଂସାର ଭ୍ରମ, ଆଳସ୍ୟ, ଚଞ୍ଚଳଚିତ୍ତତା, ରିପୁପରତନ୍ତ୍ରତା, ସ୍ୱାର୍ଥପରତା ପ୍ରଭୃତି ଅପରିହାର୍ଯ୍ୟ ଅନିଷ୍ଟମାନଙ୍କରେ ବୁଡ଼ି ରହିଅଛି। ଏଥକୁ ଅନ୍ୟାୟ ନ ହେବାର ବିଚିତ୍ର ଅଟେ। ତୁମ୍ଭେ ମହୀରେ ଅଛ, ଲୋକେ ତୁମ୍ଭ ପ୍ରତି ଅନ୍ୟାୟ କରନ୍ତି। ଏମନ୍ତ ଅସଙ୍ଗତ ଗୁହାରି କରିବ ନାହିଁ।

ନ୍ୟାୟଦେବଙ୍କର ପ୍ରକୃତ ମୂର୍ତ୍ତି ଯେପରି, ଲୋକେ ସେପରି ନ ଭାବି ଆନ ପ୍ରକାର ଭାବନ୍ତି। କବିମାନେ ନ୍ୟାୟଦେବଙ୍କ ଏକ ହାତରେ ନିକ୍ତି, ଆନ ହାତରେ ଖଡ଼୍‌ଗ ଥିବାର କହନ୍ତି। ମାତ୍ର ପ୍ରକୃତରେ ସେହି ଆୟୁଧ ଭାଗ୍ୟଦେବଙ୍କଠାରେ ଶୋଭା ପାଏ। ନ୍ୟାୟଦେବଙ୍କ ମୂର୍ତ୍ତି ଏପରି କଳ୍ପନା କରିବାର ଭୁଲ। ନ୍ୟାୟଦେବ ପୃଥିବୀ ଚାରିଆଡ଼େ ଭ୍ରମଣ କରୁଅଛନ୍ତି। ହିଂସା, କୁସଂସ୍କାର, ଆଳସ୍ୟ, ସ୍ୱାର୍ଥପରତା, ଯେଉଁମାନେ ତାହାଙ୍କର ପ୍ରକୃତ ସହଚର ନୁହନ୍ତି, ସେମାନେ ସେହି ଆଲୋକର ବ୍ୟବଧାନ ହୋଇଅଛନ୍ତି। ଭାଗ୍ୟବାନ୍ ଲୋକ ଆଗରେ ଏମାନଙ୍କର ଛିଡ଼ା ହେବାକୁ ବଳ ନାହିଁ। ମାତ୍ର ଅଧିକାଂଶ ଲୋକେ ବୃକ୍ଷଚ୍ଛାୟାରେ ଛିଡ଼ା ହୋଇ ଶାଖାନ୍ତରାଳ ଦେଇ ଆସୁଥିବା ଚନ୍ଦ୍ରକିରଣ ପ୍ରାୟ ନ୍ୟାୟଦେବଙ୍କର କିରଣକଣା ଲଭନ୍ତି। କେହି କେହି ଏପରି ଦୁର୍ଭାଗ୍ୟ ଅଟନ୍ତି ଯେ ଛାୟା ବ୍ୟତୀତ ସେମାନଙ୍କ ଉପରେ ଆଉ କିଛି ପଡ଼େ ନାହିଁ। ଯେଉଁ ସ୍ଥାନରେ ଭୀଷଣ ଛାୟାମାନ ପରସ୍ପର ଭଲରୂପେ ସଂଲଗ୍ନ ହୋଇ ନପାରନ୍ତି, କେବଳ ସେହି ସେହି ମାର୍ଗରେ ଲବମାତ୍ର କିରଣ ଆସୁଥାଏ। ମାତ୍ର ଏହା ମନରେ ରଖିଥିବ, ସେହି ଛାୟାମାନେ ସଂସାରର ଆନ ପଦାର୍ଥ ପ୍ରାୟ ନଶ୍ୱର ଅଟନ୍ତି।

ସାନ ସାନ ଦୁର୍ବିପାକମାନ ସହିବାର ଦୁଷ୍କର ଅଟେ। ହେତୁ କି ବଡ଼ ବଡ଼ ଆପଦମାନଙ୍କ ସଙ୍ଗେ ଅନୁରୂପ ବିବେକ ଆସେ। ମାତ୍ର ସାନ ସାନ କଷ୍ଟ ସଙ୍ଗେ ସେହିପରି ସାନ ସାନ ବିବେକ ଆସେ ନାହିଁ। ଏହି ହେତୁରୁ ଯାହାକୁ ସାନ ସାନ କଷ୍ଟ ସବୁବେଳେ ଭୋଗକରିବାକୁ ହୁଏ, ତାହାର ଚିତ୍ତର ପ୍ରସାଦ ଥାଏ ନାହିଁ। ମୁଁ କିପାଇଁ ଆଗୁଁ ସାବଧାନ ନହେଲି, ଏହି ଅନୁତାପ ମଧ୍ୟ ସେହି କଷ୍ଟମାନଙ୍କୁ ଦ୍ୱିଗୁଣିତକରେ। ଦୁର୍ଭାଗ୍ୟର ରୀତି ଏହି କି ସେ ଅଳ୍ପ ଅନବଧାନ-ଲବ୍ଧ ଛିଦ୍ର ଦେଇ ପୁରୁଷର ସୁଖ-କଳସରେ ପ୍ରବିଷ୍ଟ ହୁଏ, ପ୍ରବିଷ୍ଟ ହୋଇ ଘୋଟିଯାଇ ବିଷାକ୍ତ କରେ। ଏତେ ସାନ ଛିଦ୍ର ଦେଇ ଏପରି ଅନର୍ଥ ଆସିବ, ଏହା ଆଗରୁ ଜଣାନଥାଏ। ଏଣୁ ଦୁର୍ଭାଗ୍ୟଗ୍ରସ୍ତ ଲୋକକୁ କ୍ଷୁବ୍ଧ ଓ ବିସ୍ମିତ ହେବାକୁ ହୁଏ।

କେତେଗୁଡ଼ିଏ ଉଚ୍ଚମନସ୍କ ଲୋକ ଅଛନ୍ତି ଯେ, ସେମାନେ ଯାହା କରନ୍ତି ସେଥିରେ ସେମାନଙ୍କର ସନ୍ତୋଷ ଉପୁଜେ ନାହିଁ। ହିତାହିତଜ୍ଞାନର ଅନନୁମୋଦିତ କାର୍ଯ୍ୟକୁ ପ୍ରଶ୍ରୟ ଦେବା ଆମ୍ଭର ଏ ଉକ୍ତିର ଉଦ୍ଦେଶ୍ୟ ନୁହଇ। ଆମ୍ଭର ଉଦ୍ଦେଶ୍ୟ ଏତିକି, କେତେଗୁଡ଼ିଏ ନିତାନ୍ତ ଧର୍ମଭୀରୁ ସତ୍ୟପ୍ରିୟ ଲୋକ ଅଛନ୍ତି, "ମୋ ମନରେ ଯେପରି ଥିଲା, କାର୍ଯ୍ୟରେ ସେପରି ପାରିଲି ନାହିଁ"– ସବୁବେଳେ ଏହିପରି ଭାବି ଆପଣାକୁ ଧିକ୍କାର ଦିଅନ୍ତି। ସେମାନଙ୍କର ଏହା ଜାଣିବାର ଉଚିତ କି ଆମ୍ଭେମାନେ କଳ୍ପନାକୁ ଯେବେ କାର୍ଯ୍ୟରେ ପରିଣତ କରିପାରନ୍ତୁ, ତେବେ ମର୍ତ୍ତ୍ୟ ସ୍ୱର୍ଗ, ନର ଅମର ହୁଅନ୍ତା। ତୁମ୍ଭେ କେଉଁ ଛାର ଲୋକ, ତୁମ୍ଭ ଆଗେ କେତେ ମହାନ୍ ଲୋକ ଚାଲିଯାଇଅଛନ୍ତି। ସେମାନେ ଯାହା ଯାହା ସମ୍ପାଦିଥିଲେ, ସେଥିରେ ସେମାନଙ୍କୁ ଅପରିସୀମ ପ୍ରତିଷ୍ଠା ମିଳିଥିଲା। ମାତ୍ର ସେମାନେ ସୁଦ୍ଧା ତୁମ୍ଭପରି ବୃଥା ବିଳାପ କରିଥିଲେ; ସେମାନଙ୍କ ମନରେ ଯାହା ଥିଲା, ସେଥିର ପାଦେ ମଧ୍ୟ କାର୍ଯ୍ୟରେ ପରିଣତ କରି ପାରି ନାହାନ୍ତି।

ସଙ୍ଗୀତ ପ୍ରଭୃତି କଳାମାନ ମଧ୍ୟ ସାନ ସାନ କଷ୍ଟ ନିବାରଣର ପ୍ରଧାନ ଉପାୟ ଅଟେ। ଦାରୁଣ ବିପଦରେ ବିବେକ ଆଉ ଧର୍ମ ଏ ଦୁହିଁଙ୍କର ସାହାଯ୍ୟ ବ୍ୟତୀତ ଆଉ କାହିଁରେ କିଛି ଲଭ୍ୟ ହୁଏ ନାହିଁ। ମାତ୍ର ସାନ ସାନ କଷ୍ଟ ଶଂସିତ କଳାମାନଙ୍କରେ ଅଂଶତଃ ନିବାରିତ ହୋଇପାରେ।

ଆଉ ଏକ ବିଷମ ଦୁର୍ବିପାକ ଅଛି, ସେଥିରେ ଚିତ୍ତର ସାନ୍ତ୍ୱନା ହେବାର କଠିନ ଅଟେ। କେହି କେହି କଳ୍ପନାପରତନ୍ତ୍ର ହୋଇ ଭାବନ୍ତି, ଆମ୍ଭର ଏହି ଅଭିଳାଷ ଚରିତାର୍ଥ ହେଲେ ଚିରସୁଖୀ ନୋହିଲେ ଚିରଦୁଃଖୀ ହେବୁଁ। ଦୁର୍ଦ୍ଦୈବ ଯୋଗୁଁ ସେହି ଚିରପୋଷିତ ଆଶା ଫଳବତୀ ହୁଏ ନାହିଁ। ଭଗ୍ନାଶ ବ୍ୟକ୍ତିର ମନ ସେହିଦିନଠାରୁ ଭଗ୍ନ ହୋଇଯାଏ। ସେହି ସେହି ଅଲବ୍ଧ ସୁଖର ଉଜ୍ଜ୍ୱଳ ଓ ମନୋହର ମୂର୍ତ୍ତିକୁ ଉଚ୍ଛୃଙ୍ଖଳ କଳ୍ପନା ଉଜ୍ଜ୍ୱଳତର, ମନୋହରତର କରି ହୃଦୟପ୍ରାଙ୍ଗଣରେ ନର୍ତ୍ତନ କରାଉଥାଏ। ସଂସାର କାରାଗାର ପ୍ରାୟ ଦିଶେ। ଏଥିପରେ ଯେବେ ଅନ୍ୟାନ୍ୟ ବିଷୟରେ ସେହି ବ୍ୟକ୍ତିର ସମୃଦ୍ଧି ଥାଏ, ତେବେ ତାହାକୁ ଆନ୍ତରିକ ନିର୍ବେଦର ପରାକାଷ୍ଠା ଭୋଗ କରିବାକୁ ହୁଏ। ସମୃଦ୍ଧି ବିଡ଼ମ୍ବନାବତ୍ ପ୍ରତିଭାତ ହୁଏ।

ଏପରି ନିର୍ବେଦର ଶାନ୍ତି ସହଜରେ ହୁଏ ନାହିଁ। ତଥାଚ୍ ଏହାର ସୁଦ୍ଧା ପ୍ରତିକାର ଅଛି। ମନେକର, ସେହି ଚିରଅଭିଳଷିତ ପଦାର୍ଥର ଅଧିକାରୀ ହେଲ ଜାଣି ସେଥିରୁ ଯେତେ ସୁଖ ଲଭିବାର ଆଶା ଥିଲା, ଏବେ ଅଧିକାରୀ ହୋଇ ସେହି ସୁଖ ସମ୍ପୂର୍ଣ୍ଣରୂପେ ପାଉଅଛଟିକି ? ଯେବେ ତୁମ୍ଭର କଳ୍ପନା ନିତାନ୍ତ ବିକୃତ ହୋଇନଥାଏ, ଏହି ପ୍ରଶ୍ନର ନିଷେଧମୁଖ ଉତ୍ତର ଦେବ। ଆଉ ତୁମ୍ଭର ଏହା ଭାଳିବାର ଉଚିତ ଅଟେ ଯେ ସେହି ସୁଖ ଲବ୍ଧ ହେଲେ ତୁମ୍ଭଙ୍କୁ ସବୁବେଳେ ଶଙ୍କାଯୁକ୍ତ କରାଉଥିବ। ସ୍ନେହ ଥିଲେ ଅନିଷ୍ଟାଶଙ୍କା ହୁଏ। ଧନଜନ ପରିବାରାଦି ସ୍ୱାତନ୍ତ୍ର୍ୟବିରୋଧୀ ଅଟନ୍ତି।

ପରିଶେଷରେ ଏହା ବକ୍ତବ୍ୟ ଯେ, ଯେତେପ୍ରକାର ଦୁଃଖ ଅଛି, ପ୍ରତ୍ୟେକରୁ ଗୋଟିଏ ଗୋଟିଏ ଅଭ୍ରାନ୍ତ ଉପଦେଶ ଲାଭ ହୁଏ। ବାସ୍ତବରେ ଦୁଃଖ ବହୁଦର୍ଶିତାର ପରିମାପକ ଅଟଇ। ଜଣେ ମହାନ୍ ବ୍ୟକ୍ତି ଇଚ୍ଛାପୂର୍ବକ ଆପଣାକୁ ବିପଦରେ ପକାଉଥିଲେ। ତାହାଙ୍କର ଅବଲମ୍ବିତ ଉପାୟ ଗର୍ହଣୀୟ ହେଲେହେଁ ଉଦ୍ଦେଶ୍ୟ କେଡ଼େ ଉଦାର ଥିଲା, ଭାବୁକ ପାଠକେ ବୁଝିପାରିବେ। ବିପଦ ଲୋଡ଼ି ଜ୍ଞାନ ଲଭିବାର ଚେଷ୍ଟା ସଦ୍‌ଯୁକ୍ତିର ଅନୁମୋଦିତ ନୁହଇ। ଚିକିତ୍ସକ ପ୍ରାୟ ଘରେ ବସିଥାଅ। କେତେ ପ୍ରକାର ନୂଆ ରୋଗୀ ଦେଖି ଦିନକୁ ଦିନ ନୂଆ ରୋଗରୁ ନୂଆ ଜ୍ଞାନ ଲଭୁଥାଅ।

ଆମ୍ଭର ଏହା ସ୍ମରଣ କରିବାର ବିହିତ ଅଟେ କି, କେଡ଼େ କେଡ଼େ ଲୋକ ଚିରଜୀବନ ଯାତନା ଭୋଗ କରିଅଛନ୍ତି। କେତେ ସୁଖାର୍ହ ଲୋକ

ଅବଧି ଏ ରାଜ୍ୟ ପ୍ରାପ୍ତ ହୋଇ ନାହାନ୍ତି। ରାଜ୍ୟରେ ଏହାଙ୍କ କ୍ଷମତା ସୀମାବଦ୍ଧ, ଏହା ସତ୍ତ୍ୱେ ଇହଦ୍ୱାରେ ମୋହ ପ୍ରତି ଯେପରି ସୌଜନ୍ୟ ଏବଂ ସହୃଦୟତା ପ୍ରଦର୍ଶିତ ହୋଇଅଛି, ତାହାର ତୁଳନା ମୁଁ ସମସ୍ତ ଜୀବନରେ ଦେଖି ନାହିଁ। ରାଜା ନିଯୁକ୍ତ ଲୋକଙ୍କ ଉପରେ ସମସ୍ତ ଭାର ପକାଇ ନିଶ୍ଚନ୍ତ ହୋଇନାହାନ୍ତି।

## ମାଲ୍ୟଗିରି

ଶୁଷ୍କଶିଉଳିଶୁଭ୍ର ପ୍ରକାଣ୍ଡ ପାଷାଣସ୍ତୂପ। ଅନେକ ସ୍ଥଳରେ ବିଶାଳ ଶିଳାପଟ ତଳେ ମନୁଷ୍ୟର ବାସୋପଯୋଗୀ ଗହ୍ୱର। ୩-୪ଟା ଭୀଷଣ କୋଟର ଗାଳାଙ୍କ ସଙ୍ଗେ ଦର୍ଶନ। ରାଜାଙ୍କର କସ୍ତୁରିକା କୁରଙ୍ଗର ଲଘୁଗତି। ଲଲଟନ ନେଇ ଏକ ଏକ ଦୁରବରୋହ କନ୍ଦର ଦର୍ଶନ।

ପର୍ବତରେ ଅସଂଖ୍ୟ ଖୋଲ। ବିବିଧ ତରୁ-ଲତା। ଗୁଡ଼ିଆ କୁବ୍ଜତରୁ। ଶଙ୍ଖମଲ-ମସୃଣ ଅଶ୍ୱବର୍ଣ୍ଣ ଲତା, ଅସଂଖ୍ୟ ପ୍ରକାର fern, କଦଳୀ, ଧନ୍ୱନ୍ତରି, ଶିକୁଳା, ଅଠିଳ। ପର୍ବତରେ ଅନେକ ନିର୍ଝର। ଅଭ୍ରଯୁକ୍ତ ପ୍ରସ୍ତର। ନାନାପ୍ରକାର ଅଜାନିତ ସୁଦୃଶ୍ୟ ପୁଷ୍ପ।

ଅନେକ ସ୍ଥାନରେ ବିଶାଳ ପ୍ରସ୍ତର ବଜ୍ର , ଅଥବା ଜଳ ଏବଂ ଉତ୍ତାପର କ୍ରିୟାଦ୍ୱାରା ର୍ଣ୍ଣ ହୋଇ ସୁଡ଼ଙ୍ଗବତ୍ ନିମ୍ନକୁ ଯାଇଅଛି। ଏହି ଦୁରବରୋହ ନୈସର୍ଗିକ ସୁଡ଼ଙ୍ଗମାନଙ୍କରେ ପ୍ରବେଶ କଲେ ସୂର୍ଯ୍ୟାଲୋକ ସହିତ କୌଣସି ସମ୍ପର୍କ ନଥାଏ।

ଉପରେ କେବଳ ଠେକୁଆ, ସମ୍ବରର କଦାଚିତ୍ ସଂଚାର ଦେଖାଯାଏ। ସ୍ଥାନେ ସ୍ଥାନେ ଗିରିନିର୍ଝର ଦରୀ ମଧ୍ୟରେ ଝର୍ଝର ଶବ୍ଦରେ ଶିଳାରୁ ଶିଳାକୁ ଲମ୍ଫ ଦେଇ କ୍ଷୁଦ୍ର କ୍ଷୁଦ୍ର ପ୍ରପାତ ଉପଜାତ କରି ଅଧୋଦେଶକୁ ଯାଇଅଛି। ଏହି ନିର୍ଝରମାନଙ୍କ ପାର୍ଶ୍ୱଦେଶ ବନ୍ୟ ଖର୍ଜ୍ଜୁର, ଧନ୍ୱନ୍ତରି ଓ ଅନ୍ୟାନ୍ୟ ତୃଣ ଦ୍ୱାରା ଶ୍ୟାମଳ।

ଗଙ୍ଗାପ୍ରପାତାନ୍ତବିରୂଢ଼ଶଷ୍ପଂ
ଗୌରୀଗୁରୋର୍ଗହ୍ୱରମାବିବେଶ।
ଧୂମୋଦ୍‌ଗିରାନୁକୃତିନିପୁଣଃ &c. &c. I ।

ଡିମୁରି, ଧର୍ମଦ୍ୱାର, ପ୍ରାକୃତିକ ଗୁମ୍ଫା, ଅଠିଳଗଛ, ମାର୍ଗରେ ପ୍ରପାତ ଏବଂ ଝରଣା, ବିରାଟ ବରାହଘୋଣାକୃତି ବିଶାଳ ପାଷାଣଖଣ୍ଡ, ବଂଶ-ବନ, ଶାଳ, କେନ୍ଦୁ, ପିୟାଳ, ଅଶନାଦି ବୃକ୍ଷ, ଶିଆଳିଲତା, ବନ୍ୟଖର୍ଜ୍ଜୁର, ମୁଚୁକୁନ୍ଦ, ଅଠିଳ, ମହୁଲ, ମାଳତୀ, ମାଧବୀ।

ବାମଣ୍ଡା ରାଜ୍ୟର ଚୁଳିଆ ପ୍ରଭୃତି ପର୍ବତ, ବ୍ରାହ୍ମଣୀ ନଦୀ, କେନ୍ଦୁଝରର ଗନ୍ଧମାଦନ, ଗୋନାସିକା, ତାଳଚେରର ବାରୁଆଁ, ଢେଙ୍କାନାଳର ପଳାଶୁନି ବିଷର ପର୍ବତମାଳା, ଅନୁଗୁଳର ପର୍ବତମାଳା, ବଣେଇ-ପର୍ବତମାଳା, ସିଂହଭୂମି।

ଅଶୋକ, ନାଗେଶ୍ୱର, ଚମ୍ପକନିକୁଞ୍ଜପୂର୍ଣ୍ଣ ପାର୍ବତ୍ୟ ଦେଶର ଶୈଳମାଳା, ରାଜା ଗଣେଶ୍ୱରଙ୍କ ନବାବିଷ୍କୃତ ଗିରିମାର୍ଗ, ରାଜର୍ଷି ମୁନିପାଳଙ୍କର ଯାଗାଦିରେ ପୂତ ସ୍ଥଳୀ।

ଶୀତର ଆଧିକ୍ୟ, ଶୀତଳ ବାୟୁର ନିୟତ ସଂଚାର। ବ୍ୟାଘ୍ର ଭଲ୍ଲୁକାଦିର ଅଭାବ, ସର୍ପାଦିର ଅଭାବ, ପକ୍ଷୀର ବିରଳସଂଚାର। କେବଳ ଟିପିର ଟୁଇ ଟୁଇ ସମୟସମୟରେ ଶ୍ରୁତ ହୁଏ। ଶମ୍ବର, ଶଶକାଦିର କଦାଚିତ୍ ଦର୍ଶନଲାଭ, କୋଟରାର ସ୍ୱର।

ପାହାଡ଼ିଆ ବିଛା। ଶିକୁଳ, ପନସ, ଖର୍ଜ୍ଜୁର, ନିମ୍ନରେ ଆଚକ୍ରବାଳସଜ୍ଜୀକୃତ ମେଘସ୍ତର।

ବାବାଜୀ-ଗୁମ୍ଫା। ସେଥିର ସମ୍ମୁଖସ୍ଥ ବିରାଟ ଦୃଶ୍ୟ ଶିକୁଳ।

ଟିପି, ଶ୍ୟେଣ, ଗୋବରା, ଏଣ୍ଡୁଅ, ଛୁଞ୍ଚୁନ୍ଦରା। ସିଆଡ଼ିଫଳ। ଗୁଣ୍ଡିଚିର ସରା ନାହିଁ।

ବସନ୍ତ-ମାତ୍ର ଏଠାରେ ଅଶୋକ, ଶାଲ୍ମଳୀ, ପଳାଶ, ପାଳଧୂଆ, ଧାତକୀ, କଞ୍ଚନ ପ୍ରଭୃତିର ନାମ ନାହିଁ।

କୋକିଳ, ପାପିଆ, ଚଷାପୁଅ, ନଦୀକୂଳବନ୍ଧୁ, ଶ୍ୟାମା, ଶାରୀ, ଦୟାଳୁର ସ୍ୱର ନାହିଁ।

କାକ, କୁକ୍କୁଟ, କୁମ୍ଭାଟୁଆ ପ୍ରଭୃତି ପ୍ରଭାତ ବୈତାଳିକମାନେ ଏଠାରେ ଅପରିଚିତ।

ନିମ୍ନ ପ୍ରଦେଶରେ ଖରା, ଉପରେ ମେଘ। ବୃଷ୍ଟି ହୋଇ ନିମ୍ନ ପ୍ରଦେଶରେ ବନ୍ଧ ପରିପୂର୍ଣ୍ଣ ହୋଇ ସେଥିରେ ସୂର୍ଯ୍ୟକିରଣ ପ୍ରତିଫଳିତ ହେବାରୁ ନୀଳଗିରି ଏବଂ ବନାଳିରେ ଖଣ୍ଡିଏ ଦର୍ପଣ ପରି ଦିଶୁଅଛି।

ବଜ୍ରଦ୍ୱାରା ଗିରିଚୂଡ଼ାସ୍ଥ ବିଶାଳ ପାଷାଣ ଖଣ୍ଡ ଖଣ୍ଡ ହୋଇ ଇତସ୍ତତଃ ବିକ୍ଷିପ୍ତ।

ରାତ୍ରରେ ଚତୁର୍ଦ୍ଦିଗରେ ଦାବାନଳର ଶୋଭା। ପାଷାଣରୁକ୍ଷ ଏବଂ ଉଦ୍ଭିଦଶ୍ୟାମଳ। ଶୁଷ୍କ ପତ୍ର ଏବଂ ଶୁଷ୍କ ଉଦ୍ଭିଦ। ଦାବାନଳଦଗ୍ଧ।

ଅଧୋଦେଶରେ ସଞ୍ଚିତ ମେଘବୃନ୍ଦ। ଆଚକ୍ରବାଳବ୍ୟାପୀ କ୍ଷୀରାର୍ଣ୍ଣବର ଲହରୀମାଳା ନିସ୍ପନ୍ଦତା ଭଜିରହିଥିବା ପ୍ରାୟ। ଆଚକ୍ରବାଳ-ବ୍ୟାପୀ କୋଟି କୋଟି ପିଞ୍ଜା ତୁଳା ଧାଡ଼ି ଧାଡ଼ି ହୋଇ ରହିଅଛି। ଏହି ମେଘର ଅଧୋବର୍ତ୍ତୀ ଦେଶରେ ବର୍ଷା କିମ୍ବା ଆକାଶ ମେଘାଚ୍ଛନ୍ନ। ଆମ୍ଭେମାନେ ଆତପବାନ୍

ଶୃଙ୍ଗରେ ଆସୀନ।

ଏ ମହାରଣ୍ୟରେ ପ୍ରାଣୀର ସଞ୍ଚାର କିମ୍ବା ଶବ୍ଦ ପ୍ରାୟ ଦେଖା ଶୁଣା ଯାଏନାହିଁ। ଦୂରଦର୍ଶୀ ଗୃଧ୍ର ଥରେ ଗୋଟିଏ ତୁଙ୍ଗ ପାଷାଣସ୍ତୂପରେ କିଛିକ୍ଷଣ ବସି ଚତୁର୍ଦ୍ଦିଗକୁ ଚାହିଁ ପୂର୍ବଦିଗକୁ ଉଡ଼ିଗଲା। ରାମଙ୍କ ବାନରବୀରମାନଙ୍କର କାବେରୀବଳୟ ମଳୟରେ ଆକାଶରୁ ସମ୍ପାତିର ଅବତରଣ ସ୍ମାରକ।

ଗଣେଶ୍ୱର, ତୁମ୍ଭ ରାଜ୍ୟରେ ଜଳଧିଧ୍ୱାନପ୍ରତିନାଦିତ ଜଗନ୍ନାଥ ଦେଉଳ, ସୂର୍ଯ୍ୟ ଦେଉଳ କିମ୍ବା ଭୁବନେଶ୍ୱର ଦେଉଳ ନାହିଁ। ମାତ୍ର ତୁମ୍ଭ ରାଜ୍ୟରେ ଯେଉଁ ମହା ଦେଉଳ ଅଛି, ତାହା ଶିଶୁ ହିମାଳୟ ପରି। ତାହାର ତୁଳନା ସମଗ୍ର ଓଡ଼ିଶାରେ ଅନ୍ୟତ୍ର ନାହିଁ। ଶୀତଳ ସମୀର ଏ ଦେଉଳର ଚାମରବାହକ। ମେଘଦଳ ପରିଚାରକ। କାଂସ ଘଣ୍ଟାଦିର ଶବ୍ଦ ଏଠାରେ ନାହିଁ ସତ୍ୟ, ମାତ୍ର କୋଟି ବିଶ୍ୱବ୍ୟାପୀ ଓଁକାର ଧ୍ୱନି ଏ ମନ୍ଦିରରୁ ସ୍ୱତଃ ଉଚ୍ଚାରିତ ହେଉଅଛି।

ତୁ ମାଲ୍ୟଗିରି ସଙ୍ଗୀତମୟୀ। ତୋହର ପାଦ-ଦେଶରେ ମଧୁରଗାୟକ ବିହଙ୍ଗ ସଙ୍ଗୀତ। ମେଖଳାରେ ପ୍ରପାତ ଏବଂ ନିର୍ଝରର ସଙ୍ଗୀତ ପ୍ରସ୍ତରକୋଟରେ ମଧୁଚକ୍ରରେ ମଧୁକରର ଗୁଞ୍ଜନ। ଶିଖରରେ ଚିର ନିସ୍ତବ୍ଧତାର ଗମ୍ଭୀର ସଙ୍ଗୀତ, ଯାହା କେବେ କେବେ ଝଞ୍ଜା ପବନର ସ୍ୱନ କଦାଚିତ୍ ଝିଲ୍ଲିକାଦ୍ୱାରା ଭଗ୍ନ-ହୋଇଥାଏ।

ଏଠାରେ ଆଧ୍ୟାତ୍ମିକ ବାୟୁମଣ୍ଡଳ ଅତି ନିର୍ମଳ। ସଂସାରର ତାମସ ଏବଂ ରାଜସ ଚିନ୍ତାର ଘାତ-ପ୍ରତିଘାତଦ୍ୱାରା ଅନବରତ ସ୍ପନ୍ଦନଦ୍ୱାରା ଏଠାରେ ବାୟୁମଣ୍ଡଳ କଳୁଷିତ କିମ୍ବା କ୍ଷୁବ୍ଧ ହେଉନାହିଁ। ଏଠାରେ ସ୍ୱଭାବତଃ ହୃଦୟ ସତ୍‌ପ୍ରବଣ ଏବଂ ପରାତ୍‌ପର ସତ୍ୟପ୍ରବଣ ହୁଏ। ପାଷାଣ କାହିଁ ଲମ୍ବ, କାହିଁ ଦଣ୍ଡବତ୍ , କାହିଁ ତେରେଛା। ଶୁଷ୍କ ଶୈବାଳସ୍ତରେ ରୁକ୍ଷ ଶୁକ୍ଳା।

ଶାସ୍ତ୍ରେ ନ ଥିଲେହେଁ ତୋ ନାମକରଣ,
ତୁହି ମାଲ୍ୟଗିରି ତୀର୍ଥ ସନାତନ।

ନରସଂସ୍ଥାପିତ କେତେ ତୀର୍ଥ ଭୂଇଁ କେତେ ଅସ୍ତମିତ କେତେ ଅସ୍ତୋନ୍ମୁଖ। ମାତ୍ର ତୁ ଚିରଦିନ ସମାନ। ମର ନରର ସ୍ଥାପିତ ତୀର୍ଥ ମର ହେବ ଆଶ୍ଚର୍ଯ୍ୟ କି? କାହିଁ ଆଜି କୋଣାର୍କ? ବୈଦେହୀଶବିଳାସର କବିର ଉକ୍ତିର ଉଲ୍ଲେଖ।

ମାଲ୍ୟଗିରି ଅବରୋହଣ।
କି ଭୀଷଣ ବିରାଟ ବିଶୃଙ୍ଖଳ।
ଖଣ୍ଡ ବିଖଣ୍ଡ ପଥର
ବଜ୍ରାଘାତେ ପୁଣି ବିଶୃଙ୍ଖଳତର।

ମହାରାଜ ଶମ୍ବର ହରିଣ ପରି ଲଘୁଗତି। କର୍ଣ୍ଣ ପରି କଷ୍ଟସହ ଏବଂ ଧୈର୍ଯ୍ୟଶୀଳ।

ଖଣ୍ଡଶଃ ବିକ୍ଷିପ୍ତ ଶୁଷ୍କ ଶିଉଳିଆବୃତ ରୁକ୍ଷ ଶ୍ୱେତ ପାଷାଣପୁଞ୍ଜ, ଶୁଷ୍କପତ୍ର, ଶୁଷ୍କ, ଦଗ୍ଧ, କାଷ୍ଠ, ପରସ୍ପର ଛନ୍ଦାଛନ୍ଦି, ମିଶାମିଶି, ବୃକ୍ଷଗୁଳ୍ମଲତାଦି, ଶାଳ, ମହୁଲ, ପିଆଶାଳ, ଧଅ, ଅଶନ, ଶିଂଶପା, ରାଜମହୀ, ବଂଶ, ଭାଣ୍ଡୀର, କୁମ୍ଭି, ପିଆଳ, କୁସୁମ, ଶିଆଳି, ଧନ୍ୱନ୍ତରି, ferns, ଶିମ୍ଳୁଳ, ତମାଳ, ନାଗ-କେଶର, ଶେଫାଳିକା, ଅଠିଳ, କେନ୍ଦୁ। ବଂଶକୁଞ୍ଜ, ପ୍ରପାତ, ବଂଶକୁଞ୍ଜ ବିଶେଷତଃ ମେଖଳରେ।

ବଡ଼ ବଡ଼ ଶୃଙ୍ଗ ତଳେ ଆକାଶରେ ଦୃଷ୍ଟିରେଖାର ସୀମାସ୍ତମ୍ଭରୂପେ ଉଭା, କିଛିଦୂର ଗଲେ ତା ତଳେ ଶୃଙ୍ଗ ତା ତଳେ ଶୃଙ୍ଗ।

ପର୍ବତର ଏକ ଏକ ଖଣ୍ଡ ପାଷାଣ ଅନ୍ୟ ପର୍ବତର ଅବୟବ। ସାନୁ, ଖୋଲ, କନ୍ଦର, ଦରୀ, ଫାଟଳ ଗହ୍ୱର, ବଜ୍ରରେ ବଜ୍ରଧାରଣ, ଏ ପର୍ବତରେ ଅସଂଖ୍ୟ ଗୁହା, ଗହ୍ୱର, ଦରୀ ପ୍ରତିବର୍ଷ ପ୍ରସ୍ତୁତ କରାଉଅଛନ୍ତି। କେଉଁଠାରେ ନିର୍ଝରିଣୀର ମାର୍ଗ ପରିଷ୍କାର, କେଉଁଠାରେ ବାଧାଯୁକ୍ତ କରି ଦେଉଅଛନ୍ତି।

## ଶିଆଳୀ ପାନ୍ଥବାନ୍ଧବୀ

ବିଶାଳ ଦୃଶ୍ୟରାଜି ସମ୍ମୁଖରେ, ପୁଣି ଅବରୋହଣ କଲେ ଅବରୁଦ୍ଧ। ରାଜକଉଚିଆ, ମେଖଳରେ ସୌରକରାଲୋକିତ ଭୟଙ୍କର ଉତ୍ତୁଙ୍ଗ ଭୃଗୁ, ଚାହିଁଲେ ବେକଷଣ୍ଡା ଭାଙ୍ଗିପଡ଼େ, ଭୁଜଗବତ୍‌ଗାମୀ ଗିରିବର୍ତ୍ମ, ଲତାବିଜଡ଼ିତ ବୃହତ୍ ପାଷାଣ, ଖସିପଡ଼ିବାର ଶଙ୍କା ସୃଷ୍ଟିକାଳଜନ୍ମା, ସେହିରୂପ ତିର୍ଯ୍ୟକରେ ଉଭା ହୋଇ ରହିଅଛି।

## କୁହେଳିର ପ୍ରାବଲ୍ୟ

ଗିରିପାଦଦେଶରେ ଅନେକ ଧଅ ବୃକ୍ଷ, ବଂଶକୁଞ୍ଜ, ପୁଷ୍ପିତ ଶାଳାଦି।

୨-୩ ଘଣ୍ଟା ମଧ୍ୟରେ ଶୀତର ନିସ୍ତବ୍ଧତାରୁ ଚାତକ ଆର୍ତ୍ତସ୍ୱନ।

ଗୁଡ଼ୁଣ୍ଡି, ହାମୋଡ଼ି, ବସି, ଖସି, ଗଡ଼ି
କରେଣ ଶିଳାରେ [illegible]ତରଛରେ ଖସି ।

ଏବେ ଶିମୁଳି, ପାଟଳୀ, ପଳାଶ, ଧାତକୀ, ତିଳକ ପ୍ରଭୃତିର ଶୋଭା। କୋକିଳର ରାବ।

ଶିଖରରେ ଏ ରୂପ ଏ ସ୍ୱର ନାହିଁ। ସୁଗନ୍ଧ

ଧବଳ ପୁଷ୍ପଯୁକ୍ତ ଅମୃତଫଳପ୍ରସ ଘୁରୁଡୁ ଉପରେ ନାହିଁ।

ଆମ୍ର ପ୍ରଭୃତି ବୃକ୍ଷ ପର୍ବତଶିଖରରେ ନାହିଁ ।

କେନ୍ଦୁ ଅଛି, ମାତ୍ର ୩ ଘଣ୍ଟା ପରେ ଲାବଣ୍ୟ-ବତୀକରୋପମ ପଲ୍ଲବଧାରୀ କେନ୍ଦୁ ଦେଖିଲି। ମାଲ୍ୟଗିରି ଶୃଙ୍ଗରେ ସେ କେନ୍ଦୁ ଯେ ନିତାନ୍ତ ବିଳାସବାସନାବର୍ଜିତ। ଫଳତଃ ମାଲ୍ୟଗିରି ଦୁର୍ଗା ପ୍ରତିମା ପଞ୍ଜର ପରି।

ଉତ୍ତମଶ୍ଳୋକର ପୁଣ୍ୟ ସଂକୀର୍ତ୍ତନ
କରିବାକୁ ଏହି ଗିରି ସେ ଭାଜନ।

ଏ ସଂକୀର୍ତ୍ତନରେ କେବଳ ପାର୍ଥିବ ଭୂତଗ୍ରାମ ଯୋଗ ଦେବେ ନାହିଁ। ମେଘଦଳ ଏହାର ମାର୍ଦ୍ଦଳିକ, ତାରା ନକ୍ଷତ୍ର ଏହାର ମଶାଲଚି। ଦେବଦଳ ଏବଂ ଅପ୍‌ସରାମାନେ ଏଥିରେ ଯୋଗ ଦିଅନ୍ତି। ସ୍ୱୟଂ ବ୍ୟୋମକେଶ ଏବଂ ଗୌରୀ ଏଥିରେ ତାଣ୍ଡବ ନୃତ୍ୟ କରନ୍ତି।

ପୁଷ୍ପିତ ତିଳକର କି ଅପୂର୍ବ ଶୁଭ୍ର ଶୋଭା। ପ୍ରକୃତିର ଛଟା।

ଶିଖରରେ ପୀତ ପକ୍ୱ ପର୍ଣ୍ଣ, ପାଦରେ ତାମ୍ର କିଶଳୟ, କିମ୍ବା ଶୁଭ୍ର ଶାଳ, ତିଳକ, ରକ୍ତବର୍ଣ୍ଣ ଧାତକୀ।

ଭୁଆଁପୀଢ଼ ପାବୁଡ଼ି ଦେଶ ପ୍ରଭୃତିର ବଡ଼ ବଡ଼ ଶୈଳ ହିଡ଼ପରି ମାଲ୍ୟଗିରି ଶିଖରରୁ ଦିଶେ।

ଗଜପିକାର।
ରୁକ୍ଷ ତୀକ୍ଷ୍ଣ ଗୋଡ଼– crag,
ନାଗକେଶର ବନ

ବସନ୍ତରେ ପୁଷ୍ପିତ ପୁଷ୍ପ – ନାଗକେଶର, ଘୁରୁଡୁ, ଧାତକୀ, ପଳାଶ, ଶାଳ୍ମଳୀ, ତିଳକ।

ମାଲ୍ୟଗିରି – ମହାଭାରତ ପରି। ଯାହା ଭାରତରେ ନାହିଁ, ତାହା ଭାରତରେ ନାହିଁ। ଯାହା ମାଲ୍ୟଗିରିରେ ନାହିଁ, ତାହା ଓଡ଼ିଶାରେ ନାହିଁ।

## ମାଲ୍ୟଗିରିରୁ ଦୃଷ୍ଟ ପର୍ବତମାଳା

ଭୁଆଁପୀଢ଼, ଗୋନାସିକା, ଗନ୍ଧମାଦନ, ଚୂଳିଆ, ବାଉଁଶ, ପାବୁଡ଼ିଦେଶ ପର୍ବତ, କୋଲ୍ହଦନ୍ତା, ଆଉ ସହସ୍ର ସହସ୍ର ପର୍ବତ ମାଲ୍ୟଗିରି ଦେଖେ, ମାତ୍ର ସେମାନଙ୍କୁ ଜାଣେନାହିଁ। ମାତ୍ର ସେମାନେ ଅବଶ୍ୟ ମାଲ୍ୟଗିରିକୁ ଜାଣନ୍ତି।

ଅନ୍ୟାନ୍ୟ ରାଜ୍ୟର ବନ, ଉପବନ, ରକ୍ଷିଣୀବନ ମାଲ୍ୟଗିରି ତୁଳନାରେ ନଗଣ୍ୟ, ଯେମନ୍ତ ଅନ୍ୟାନ୍ୟ କାବ୍ୟନାଟକାଦି ବ୍ୟାସ, ବାଲ୍ମୀକିଙ୍କ କୀର୍ତ୍ତି ତୁଳନାରେ କ୍ଷୁଦ୍ର।

ଅସହ୍ୟ ଅସହ୍ୟ ଯଥା ଖରା ମେଘୁଆ।
ପୋକରା – insect-eaten
ମାଲ୍ୟଗିରୀଶ୍ୱର ଆହେ ଶ୍ରୀଗଣେଶ୍ୱର।

କୁସୁମଗଛର ପତ୍ର ବସନ୍ତରେ ରକ୍ତବର୍ଣ୍ଣ ଦିଶେ। ଯେ ସମୟରେ ପଳାଶ ଫୁଟେ ଏବଂ ଘୁରୁଡୁଡିଙ୍କ ଫୁଟେ ସେହି ସମୟରେ। ଧାତକୀ, ପ୍ରପାତ, ପ୍ରସ୍ରବଣ, ତପ୍ତ ପ୍ରସ୍ରବଣ, ପଲ୍ଲୋଚ, ନାଗେଶ୍ୱର, ବେତ, ଚମ୍ପା, ଅଠିଳ, ମୁଚୁକୁନ୍ଦ, ଅଶୋକ, ଶେଫାଳି, କେତକୀ, ରାଇ।

ମାଲ୍ୟଗିରି ତ ଉତ୍କଳର ସାରସଂଗ୍ରହ। ମାଲ୍ୟଗିରିରେ ଯାହା ନାହିଁ, ଉତ୍କଳରେ ତାହା ନାହିଁ।

ଠେକୁଆ, କୁରଙ୍ଗ, ହରିଣ, ଋଷ୍ୟ, ଗବୟ, ଘଡ଼ିଙ୍ଗ, ବରାହ, ଭଲ୍ଲୁକ, ବୃକ, ଶାର୍ଦ୍ଦୂଳ, ଶମ୍ବର, ହସ୍ତୀ।

ବଂଶକରୀର, କଠା, ଖଜିରକନ୍ଦା, ପ୍ରସନ୍ନସଲିଳା ଯେହ୍ନେ ଅଳକାନନ୍ଦା। ନାହିଁ ଏ ଅଚଳେ ଯାହା ନାହିଁ ଉତ୍କଳେ, ବିଭବ ଏହାର ଯଦାବଚନ ବଳେ।

ବାମଣ୍ଡା ପ୍ରବେଶ। ଭକ୍ତବନ୍ଧୁ ବାବୁଙ୍କ ଆତିଥେୟତା। କୁମୁଦବାବୁଙ୍କ ଯତ୍ନ।

□ □ □

# ଖଣ୍ଡିଏ ପତ୍ର

ମହାଶୟ,

ପୁରାତନ ବଙ୍ଗଳା ପୁସ୍ତକ କିମ୍ବା ମାସିକ ପତ୍ରିକାର ପ୍ରବନ୍ଧ ନେଇ ତାହାକୁ ଅନୁବାଦ ଓ ଈଷତ୍ ରୂପାନ୍ତରିତ କରି ଉତ୍କଳୀୟ ସାଧାରଣ ସମକ୍ଷରେ ମୌଳିକ ପ୍ରବନ୍ଧ ବୋଲି ଉପସ୍ଥାପିତ କରିବାର ସୁକୌଶଳରେ ଅନେକ ତଥାକଥିତ ଓଡ଼ିଆ ଲେଖକ ସିଦ୍ଧହସ୍ତ ଦେଖାଯାନ୍ତି। ଅପେକ୍ଷାକୃତ ପୁରାତନ ଓଡ଼ିଆ ରଚନାକୁ ସେହି ରୀତିରେ ଆତ୍ମସାତ୍ କରିବାର ଉଦାହରଣମାନ ସ୍ଥଳେ ସ୍ଥଳେ ଦେଖାଯାଉଅଛି।

ବିଗତ ସଂଖ୍ୟା ଗୁଣଦର୍ପଣରେ . . . ଙ୍କ ଲିଖିତ ଜାତୀୟସଙ୍ଗୀତ ଶୀର୍ଷକ ପଦ୍ୟଟି ଏହି ଶ୍ରେଣୀର ବୋଧହେଉଅଛି। ପ୍ରାୟ କେତେକ ବର୍ଷ ପୂର୍ବେ

ସୁଲେଖକ ବାବୁ ଗୋପବନ୍ଧୁ ଦାଶ ଗୋଟିଏ ସୁନ୍ଦର ସଙ୍ଗୀତ ଲେଖିଥିଲେ। ପୂର୍ବୋକ୍ତ ପଦ୍ୟଟି ସେହି ସଙ୍ଗୀତର ବିରୂପୀକୃତ ଏବଂ ବିକଳାଙ୍ଗୀକୃତ ସଂସ୍କରଣ ବ୍ୟତୀତ ଆଉ କିଛି ନୁହେଁ।

ଗୁଣଦର୍ପଣର ସମ୍ପାଦକ ଏ ଶ୍ରେଣୀର ପଦ୍ୟକୁ କାହିଁକି ପତ୍ରସ୍ଥ କଲେ? କବିତା ତ ଦୂରର କଥା, ଏ ଭଲ ପଦ୍ୟ ସୁଦ୍ଧା ନୁହେ।...କର ଏପରି ପଦ୍ୟଦ୍ୱାରା କଦାଚ ପ୍ରତିଷ୍ଠା ବଢ଼ିବ ନାହିଁ। ଏପରି ପଦ୍ୟ କେବଳ ଅନ୍ୟୋନ୍ୟଶ୍ଳାଘାସମ୍ପାଦିନୀ ସଭାରେ ପଠିତ ହେବାର ଯୋଗ୍ୟ।

ନବ୍ୟ ଉତ୍କଳୀୟ ସାହିତ୍ୟକ୍ଷେତ୍ରରେ ୩-୪ ଜଣ ପଦ୍ୟଲେଖିକାଙ୍କର ଆବିର୍ଭାବ ଅବଶ୍ୟ ଶୁଭଲକ୍ଷଣ ବୋଲିବାକୁ ହେବ। ଏ ଲେଖିକାମାନେ ସର୍ବଥା ଉତ୍ସାହାର୍ହ। ମାତ୍ର ଯେଉଁମାନେ ପଦ୍ୟ ଓ କବିତା ଏକ ପଦାର୍ଥ ବୋଲି ଭାବନ୍ତି, ସେମାନେ ଏହି ଲେଖିକାମାନଙ୍କୁ କବି ଆଖ୍ୟାରେ ଭୂଷିତ କରି ଏମାନଙ୍କର ପ୍ରକୃତ ଅନିଷ୍ଟ ସାଧନ କରୁଅଛନ୍ତି। ଏହି ଲେଖିକାମାନଙ୍କ ଲେଖାରେ ମୁଁ ଏକ ଏକ ସମୟରେ ଆଶାତୀତ ଉତ୍କର୍ଷ ଦେଖି ପ୍ରୀତ ହୋଇଅଛି। ମାତ୍ର ଏହା ବୋଲି ମୁଁ ଏମାନଙ୍କୁ କବି ଆଖ୍ୟା ଦେବାକୁ ସାହସୀ ହେବି ନାହିଁ। ଉତ୍କଳୀୟ ସାହିତ୍ୟସଂସାରରେ ଯେଉଁମାନଙ୍କ ମତର ପ୍ରକୃତ ମୂଲ୍ୟବତ୍ତା ଅଛି, ସେମାନେ ଏହି ଲେଖିକାମାନଙ୍କୁ କେବେ କବି ଆଖ୍ୟା ଦେଇଅଛନ୍ତି କି?

ଥରେ ମୁଁ ମାନ୍ଦ୍ରାଜର ଖଣ୍ଡିଏ ଇଂରାଜୀ ସମ୍ବାଦପତ୍ରରେ ଗଞ୍ଜାମର କୌଣସି ଉତ୍କଳୀୟ ନାରୀକବିଙ୍କର ପ୍ରଶଂସାଗର୍ଭକ ଗୋଟିଏ ଦୀର୍ଘ ପ୍ରବନ୍ଧ ପଢ଼ିଥିଲି। ପ୍ରବନ୍ଧପାଠଦ୍ୱାରା ମୁଁ କେବଳ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲି ଯେ, ଲେଖକ ତାହାଙ୍କର ଇଂରାଜୀଭାଷାଭିଜ୍ଞତା ସତ୍ତ୍ୱେ ପଦ୍ୟ ଏବଂ କବିତାର ପ୍ରଭେଦ ବୁଝିବାକୁ ସମ୍ପୂର୍ଣ୍ଣ ଅକ୍ଷମ। ମାନ୍ଦ୍ରାଜରୁ ପୁଣି ଇଂରାଜୀ ପତ୍ରରେ ପ୍ରଶଂସା ବାହାରିବା ସହଜ କଥା ନୁହେଁ ସତ୍ୟ; ମାତ୍ର କବିତାର ବଜାରରେ ଏଭଳି ପ୍ରଶଂସାର ଏକ କପର୍ଦ୍ଦକ ମୂଲ୍ୟ ନାହିଁ। ଏଭଳି ପ୍ରଶଂସାଦ୍ୱାରା ବାଲିଗରଡ଼ା କଦାଚ ମଣି ହୋଇ ପାରିବ ନାହିଁ। ସଂସ୍କୃତଜ୍ଞ ପଣ୍ଡିତମାନଙ୍କ ମଧ୍ୟରେ ସୁଦ୍ଧା ଏହି ଶ୍ରେଣୀର ପ୍ରକୃତକବିତାଜ୍ଞାନବର୍ଜିତ ଅନେକ ଲୋକ ଦେଖାଯାନ୍ତି।

ପଦ୍ୟଲେଖିକାମାନଙ୍କୁ ନିରୁତ୍ସାହିତ କରିବା ମୋହୋର ଅଭିପ୍ରେତ ନୁହେ। ସେମାନଙ୍କୁ ମୋହୋର ଉପଦେଶ ଯେ, ଯାହା ନିଜର ନୁହେ, ତାହା ନିଜର ବୋଲି ଦେଖାଇବାକୁ ସେମାନେ ଯେମନ୍ତ ପ୍ରୟାସିନୀ ନହୁଅନ୍ତି। ସେମାନଙ୍କୁ ମୋହୋର ଆଉ ଗୋଟିଏ ଉପଦେଶ ଏହି ଯେ, ସେମାନେ ଯେମନ୍ତ ବଜାରୀ ଲେଖକଦଳର ପ୍ରଶଂସାବାଦରେ ବିଚଳିତ ନହୁଅନ୍ତି। ବଜାରୀ ଲେଖକଙ୍କ ଧାରାବାହିକ ପ୍ରଶଂସା ଅକବିକି କଦାଚ କବି କରି ପାରିବ ନାହିଁ, କିମ୍ବା ସେମାନଙ୍କର ଧାରାବାହିକ ନିନ୍ଦାଦ୍ୱାରା ପ୍ରକୃତ କବିର ଆସନ କଦାଚ ଟଳିବ ନାହିଁ।

□ □ □

# ସାହିତ୍ୟ ସମ୍ବନ୍ଧରେ ଏଣୁ ତେଣୁ ପାଞ୍ଚକଥା

ମିତ୍ରାକ୍ଷର ଓ ଅମିତ୍ରାକ୍ଷର– ଆଜିକାଲି ଅନେକ ଲେଖକ ମିତ୍ରାକ୍ଷର ଲେଖିବାକୁ ପ୍ରୟାସୀ। ଏ ସମ୍ବନ୍ଧରେ ନାନା ଲୋକଙ୍କର ନାନା ମତ ଦେଖାଯାଏ। କେହି କେହି କହନ୍ତି, ମିତ୍ରାକ୍ଷର ଅପେକ୍ଷା ଅମିତ୍ରାକ୍ଷର ଲେଖିବା ସହଜ। କେହି କହନ୍ତି, ମିତ୍ରାକ୍ଷରର ଶୃଙ୍ଖଳା ସ୍ୱାଧୀନ ଭାବବ୍ୟକ୍ତିର ଅନ୍ତରାୟ। କେହି କହନ୍ତି, ମହୀୟାନ୍ (Sublime) ଭାବ ପ୍ରକାଶ ନିମନ୍ତେ ଅମିତ୍ର ଛନ୍ଦ ଯେମନ୍ତ ଉପଯୋଗୀ, ମିତ୍ର ଛନ୍ଦ ସେପରି ନୁହେ। ନିଜ ମତ ସମର୍ଥନ ସକାଶେ ଏମାନେ Milton ଙ୍କ ଉଦାହରଣ ଦିଅନ୍ତି। ଏଭଳି ମତବାଦର ସମୀଚୀନତା ଅବଧି ମୋହର ହୃଦୟଙ୍ଗମ ହୋଇ ନାହିଁ। Milton ଙ୍କ ଅପେକ୍ଷା Dante ଆହୁରି ମହୀୟାନ୍। ମାତ୍ର Dante ତାହାଙ୍କର ମହାକାବ୍ୟ ମିତ୍ର ଛନ୍ଦରେ ଲେଖିଥିଲେ। ମୋହୋ କ୍ଷୁଦ୍ର ମତରେ ଉତ୍କର୍ଷ ଛନ୍ଦସାପେକ୍ଷ ନୁହେଁ, କ୍ଷମତାସାପେକ୍ଷ।

ମିତ୍ରାକ୍ଷର ଅପେକ୍ଷା ଅମିତ୍ରାକ୍ଷର ସହଜ, ଏ ମତ କେତେଦୂର ଠିକ୍, ମୁଁ କହିନପାରେଁ। ନିଜ ଅନୁଭବରୁ ମୁଁ ଜାଣେ, ଅମିତ୍ରାକ୍ଷର ରଚନା ଅଧିକତର କଠିନ।

□□□

# ଆତ୍ମକଥାର କିୟଦଂଶ

''ପରସ୍ତ୍ରୀ ସହସ୍ରଭ୍ରଷ୍ଟା ହେଲେହେଁ ତାହାପ୍ରତି ସାମୟିକ ପ୍ରସକ୍ତିର ଫଳ କି ଦାରୁଣ, କି ଭୟଙ୍କର। ବୋଧହୁଏ ଏ ସମ୍ବନ୍ଧରେ ଯେରୂପ ପୁସ୍ତକ ରଚିତ ହେବା ଉଚିତ, ତାହା ଜଗତରେ ଏପର୍ଯ୍ୟନ୍ତ ହୋଇନାହିଁ। ମୋହର ଯେରୂପ ଯନ୍ତ୍ରଣା ଭୋଗ ହେଉଅଛି, ଏରୂପ ଯନ୍ତ୍ରଣା ଜୀବନରେ ଭୋଗ ହୋଇପାରେ କଳ୍ପନାରେ ତାହା ମନେକରିନାହିଁ। ଯନ୍ତ୍ରଣା ମାନସିକ ଓ ଶାରୀରିକ। ନରକ ଯନ୍ତ୍ରଣା କିରୂପ, ତାହା ମୁଁ ଇହ ଲୋକରେ ଭୋଗ କରୁଅଛି। ଅନ୍ୟର ରଚନାର କଥା ନୁହେଁ, ମୋହର ନିଜର ରଚନା; ଯେତେବେଳେ ମୁଁ ମନେକରେ ଯେ ମୁଁ ତୁଳସୀସ୍ତବକ, ଦରବାର ଓ ମହାଯାତ୍ରା ପ୍ରଭୃତିର ରଚୟିତା, ସେତେବେଳେ ଲଜ୍ଜାରେ ମୁଁ ମ୍ରିୟମାଣ ହୋଇଯାଏଁ। ଭଗବାନ୍‌ଙ୍କର ଅପର ନାମ ବିଧି, ଜଗତରେ ପ୍ରତ୍ୟେକ ଅଣୁ ପରମାଣୁ ବିଧିଦ୍ୱାରା ଚାଳିତ ଓ ନିୟନ୍ତ୍ରିତ; ସେହି ବିଧି ମୁଁ କାହିଁକି ଲଂଘନ କଲି, ଏହାର କେଉଁ ପ୍ରତିକାର କରିବି, ଏହା ଭାବି ଅସ୍ଥିର ହୁଏଁ। ନକ୍ଷତ୍ର, ତରୁ, ଲତା, ଫୁଲ ପ୍ରଭୃତି ଦେଖିଲେ, ପକ୍ଷୀର ରବ ଶୁଣିଲେ ମୋହର ହୃଦୟରେ ଆଘାତ ଲାଗେ; ସିତାର ବଜାଉଁ ବଜାଉଁ ସଂଗୀତବିଧିର ଅଧୀନ ମୁଁ କାହିଁକି ସେ ବିଧି ଲଂଘନ କରିଅଛି, ଏହା ସ୍ମରଣ କରି ଆକୁଳ ହୋଇଥାଏଁ। ମୁହଁ ଟେକି କାହାରି ସହିତ କଥା କହିବାକୁ ମୋହର ପ୍ରବୃତ୍ତି ହୁଏ ନାହିଁ। ଉଲ୍ଲାସ କାହାକୁ କହନ୍ତି, ମୁଁ ଏହି କେତେବର୍ଷ ଜାଣେ ନାହିଁ।

''ମୋହର ଶରୀରରେ କିରୂପ କଷ୍ଟ ଏବଂ ଯାତନା ହୁଏ, ତାହା ଭାଷାରେ ବ୍ୟକ୍ତ ହୋଇନପାରେ। ମଧ୍ୟାହ୍ନରେ ଶୀତଦତାପ ଦ୍ରବ ଭାବାପନ୍ନ ହୋଇ ସମୟସମୟରେ ଶିରା ପ୍ରଶିରାରେ ପ୍ରବାହିତ ହେଉଅଛି; ଏହିପରି ବୋଧହୁଏ। ବାମପଞ୍ଜର ଏବଂ ଜଙ୍ଘାରେ ସର୍ବଦା ଗୋଟିଏ ତୀବ୍ର କଷ୍ଟ ଅନୁଭୂତ ହୁଏ। ପ୍ରତ୍ୟହ ଅନେକ ଥର ଆତ୍ମହତ୍ୟାର କଥା ମନରେ ପଡ଼ିଥାଏ। ପାପର ଦଣ୍ଡ ଏହିରୂପ। ବର୍ତ୍ତମାନ ମୋହର ପ୍ରତ୍ୟେକ ଅଙ୍ଗ ମୋହର ବିଦ୍ରୋହାଚରଣ କରୁଅଛି। ଉଦର, ବକ୍ଷସ୍ଥଳ, ଗୋଡ଼, ହାତ, ଚକ୍ଷୁ ସମସ୍ତେହିଁ ମୋତେ କଷ୍ଟ ଦେଉଅଛନ୍ତି। ସମସ୍ତେହିଁ ନୀରବ ଭାଷାରେ ଯେପରି କହୁଅଛନ୍ତି, 'ତୁମେ ପାପୀ, ତୁମର ଜୀବନରେ ଅଧିକାର ନାହିଁ। ଆମ୍ଭେମାନେ ତୁମର କାର୍ଯ୍ୟ କରିବାକୁ ପ୍ରସ୍ତୁତ ନୋହୁଁ।'

''ପାପର ଏଭଳି ପ୍ରଭାବ ଯେ, ଥରେ ସେଥିରେ ପଶିଗଲେ ପାପୀ ଯେବେ ତାହା ପରିତ୍ୟାଗ କରି ପୁଣ୍ୟ ମାର୍ଗରେ ବିଚରଣ କରିବାକୁ ଇଚ୍ଛାକରେ, ଆଉ ବାଟ ପାଏ ନାହିଁ। ମୋହର ଇଚ୍ଛା, ମୁଁ ମୁକ୍ତ ଜୀବନ ପାଇ ପୁଣ୍ୟମାର୍ଗରେ ବିଚରଣ କରନ୍ତି, ସର୍ବଦା ଠିକ୍ ବାଟରେ ଥାଆନ୍ତି। ଧର୍ମ ଏବଂ ଜନସେବାରେ ଜୀବନ ଉତ୍ସର୍ଗ କରନ୍ତି। ହାୟ! ବର୍ତ୍ତମାନ ସେ ଉପାୟରୁ ମୁଁ ବଞ୍ଚିତ।

''ଘଡ଼ି ବାଜିଲେ ମୋହର କଷ୍ଟ ହୁଏ; ସିତାର ବଜାଇଲେ କଷ୍ଟହୁଏ; ରାମ, ସୀତା, ସାବିତ୍ରୀ ସତ୍ୟବାନ୍ ପ୍ରଭୃତିଙ୍କ ଭଲ ଛବି ଦେଖିଲେ ମୋହର ଯାତନା ହୁଏ। ହାୟ! କଅଣ ଥିଲି, କଅଣ ହୋଇଛି? ଜୀବନର ଶେଷକାଳରେ ମୋହୋର ଏହି ଘଟଣା ଘଟିଗଲା!

ନିଜର ଛବି ଦେଖିଲେ ମୋହୋ ହୃଦୟରେ କଣ୍ଟକ ବିଦ୍ଧ ହୁଏ। ମୋହୋ ଭଳି ଦୁରାତ୍ମାର ଛବି ହୋଇଥିଲା କାହିଁକି? ମୁଁ ଅନେକ ବହି ପଢ଼ିଅଛି, Dante ପଢ଼ିଅଛି, ବାଲ୍ମୀକି ପଢ଼ିଅଛି; କିନ୍ତୁ ପରଦାରାଭିଗମନର ଫଳସ୍ୱରୂପ ଇହଜୀବନରେ କିରୂପ ଅସହ୍ୟ ଯନ୍ତ୍ରଣା ଭୋଗ କରିବାକୁ ହୁଏ, ଏହାର ସମୁଚିତ ବର୍ଣ୍ଣନା କୌଣସି ପୁସ୍ତକରେ ଦେଖିଲି ନାହିଁ ତ। ମୁଁ ଯେଉଁ ଦଣ୍ଡ, ଯେଉଁ କଷ୍ଟ ଭୋଗ କରୁଅଛି, ଏ କଷ୍ଟର ତୁଳନା ଜଗତରେ ନାହିଁ। ବାହାରକୁ କୌଣସି ଦଣ୍ଡ ନ ହେଲେ ହେଁ ଭିତରରୁ ଏ ପାପର ଯେଉଁ ଦଣ୍ଡ, ସେଥିରେ ହୃଦୟ ପ୍ରତି ମୁହୂର୍ତ୍ତ ଶତଧା ବିଦୀର୍ଣ୍ଣ ହେଉଥାଏ, ଶରୀର ଜଳୁଥାଏ, ପଦେ ପଦେ ଆତ୍ମହତ୍ୟାର ପ୍ରବୃତ୍ତି ହୁଏ।

''ହାୟ! ଯେଉଁ ଭୀଷଣ ପାପର ସ୍ମୃତିରେ ମୁଁ ପ୍ରତିମୁହୂର୍ତ୍ତ ଅବଶ ହୋଇପଡୁଅଛି, ପ୍ରତିମୁହୂର୍ତ୍ତ ଶରୀରରେ ଭୀଷଣ ଝଟକା ପ୍ରବାହିତ ହେଉଅଛି, ଶରୀରର ସମସ୍ତ ଯନ୍ତ୍ର ବିଶୃଙ୍ଖଳ ଏବଂ ସମସ୍ତ ଶିରା ପ୍ରଶିରା ଛିନ୍ନପ୍ରାୟ ହୋଇଯାଉଅଛି, ସେ ପାପରେ ମୁଁ କିରୂପେ ପ୍ରବୃତ୍ତ ହେଲି? ହାୟ! ବିରେଚକ ଉଦ୍ଗାମକ ଔଷଧ ରହିଅଛି, ପାପର କଅଣ ସେ ରୂପ ଉଦ୍ଗାମକ ବିରେଚକ ନାହିଁ?

''ଏ ରୂପ ପାପରୁ ଯେ ପାପୀ ମନରେ ସର୍ବଦା ଆତ୍ମହତ୍ୟାର ଦୁଶ୍ଚିନ୍ତା ଉଠିଥାଏ, ତା' ଭୁକ୍ତଭୋଗୀ

ବ୍ୟତୀତ ଅପର ଜାଣିବ କିପରି ? ମୋହୋଭଳି ପାପ ସଂସାରରେ ଅନ୍ୟମାନେ କରନ୍ତି ତାହା ଦେଖୁଅଛି, ମାତ୍ର ସେମାନଙ୍କର ମନର ଗଠନ କିପରି ଏହା ଜାଣେ ନାହିଁ।

"କଳୁଷିତ ବିବେକଭଳି ତୀବ୍ର ଯନ୍ତ୍ରଣାପ୍ରଦ ବିଷୟ ବୋଧହୁଏ ଜଗତରେ ଆଉ କିଛିହିଁ ନାହିଁ। ହୃଦୟ ସର୍ବଦା ଜଳୁଥାଏ ଏବଂ କ୍ରମଶଃ ଶରୀର ମଧ୍ୟରେ ଯନ୍ତ୍ରଣାରେ ଅଭିଭୂତ ହୋଇ ଯେପରି ତୁଷାନଳରେ ଦହ୍ୟମାନ ହେଉଥାଏ। ବର୍ତ୍ତମାନ ମୋହୋର ଶାରୀରିକ ଯନ୍ତ୍ରଣା ଅତି ତୀବ୍ର।

"ହାୟ! ବର୍ତ୍ତମାନ ସୁଦ୍ଧା ଲୋକେ ମୋତେ ଋଷିତୁଲ୍ୟ ବ୍ୟକ୍ତି କହିଥାଆନ୍ତି। ମୁଁ ଯେଉଁଠାକୁ ଯାଇଅଛି, ଅଧିକାଂଶ ସ୍ଥଳରେ ଲୋକେ ମୋତେ ଏହିରୂପ କହନ୍ତି ଓ କହିଅଛନ୍ତି। ବାସ୍ତବିକ ଜୀବନର ଅଧିକାଂଶ ସମୟରେ ମୋହୋର ଆଚରଣ ସେହିପରି ଥିଲା। ବୁଢ଼ାକାଳରେ ଶେଷ ତିନି ବର୍ଷରେ ମଧ୍ୟେ ମଧ୍ୟେ ମୋହୋର ଚରିତ୍ର କଳୁଷିତ ହୋଇଗଲା। ହାୟ, ଜୀବନର ଅନ୍ତିମ ସମୟରେ ଏରୂପ ଦୁର୍ଗତି କେତେ ଜଣଙ୍କର ହୋଇଥାଏ ?

"ମୋହର ଦୃଷ୍ଟାନ୍ତ କୁଦୃଷ୍ଟାନ୍ତ ହେଲେହେଁ ଅତ୍ୟନ୍ତ ଶିକ୍ଷାପ୍ରଦ। ଧର୍ମପ୍ରବଣମନା ହୋଇ କୁସଂସର୍ଗରେ ଲୋକର କିରୂପ ପଦସ୍ଖଳନ ଘଟିଥାଏ, ମୋହୋର ଉଦାହରଣରୁ ତାହା ପରିସ୍ଫୁଟ ହୋଇପାରେ।

"ପ୍ରଥମରୁ ପାପ ସାହିତ୍ୟର ପରିଚ୍ଛଦରେ ମୋତେ ପ୍ରଲୋଭିତ କଲା। ସେତେବେଳେ ତାହାର ମୂର୍ତ୍ତି ଦେଖି ସୁଦ୍ଧା ଭଲରୂପେ ଦେଖିନାହିଁ। ବର୍ତ୍ତମାନ ତାହାର ବିକଟ ମୂର୍ତ୍ତି ପ୍ରତିକ୍ଷଣରେ ଚାରିଆଡ଼େ ଦେଖୁଅଛି। ଯାହା ଦେଖେଁ, ଶୁଣେଁ ଏବଂ ପଢ଼େଁ, ସମସ୍ତହିଁ ଯେପରି ସେହି ପାପର ମୂର୍ତ୍ତିକୁ ଚକ୍ଷୁର ପୁରୋବର୍ତ୍ତୀ କରିଦିଏ। ପାପର କି ଭୟାବହ ଦଣ୍ଡ! ବାହାରେ କିଛି ନାହିଁ, ଅଥଚ ହୃଦୟ ଓ ଶରୀର ମଧ୍ୟରେ ସର୍ବକ୍ଷଣ ଭୟଙ୍କର ଝଟିକା, ଭୟଙ୍କର ଭୂକମ୍ପ ଅନୁଭୂତ ହେଉଅଛି।

"ଅନ୍ତରେ ପାପଭାର ଘେନି ଜୀବନ ଚଳାଇବା କି ବିଡ଼ମ୍ବନା! ମୋହୋ ହୃଦୟରେ ଗୋଟିଏ ଆଗ୍ନେୟଗିରି ଜ୍ବଳୁଅଛି। ବାହାରର ସମସ୍ତଙ୍କ ପ୍ରାୟ ଚଳୁଅଛି; କିନ୍ତୁ ଭିତରରେ ପୁଟପାକ।

"ଉତ୍କଳର ଶତ ଶତ ସ୍ଥାନ ମୋହୋର ମନରେ ପଡ଼ିଥାଏ, ଦୁଃଖରେ ହୃଦୟ ବିଦୀର୍ଣ୍ଣ ହୁଏ, ସେହି ସମସ୍ତ ସ୍ଥାନରେ ମୁଁ ମୁକ୍ତ ଜୀବନରେ ଭ୍ରମଣ କରି ପ୍ରକୃତିର ଶୋଭା ଉପଭୋଗ କରି କିପରି ଆନନ୍ଦ ଲାଭ କରିଥିଲି! ବର୍ତ୍ତମାନ ପୂର୍ବଭଳି ମୋହୋର ରଚନାଶକ୍ତି ନାହିଁ। ପାପପ୍ରାଣ ସର୍ବଦା ଜ୍ବଳୁଅଛି। ଫଳତଃ ବର୍ତ୍ତମାନ ମୋହୋର ଲେଶମାତ୍ର ମନୁଷ୍ୟତା ନାହିଁ। ବିଧାତାଙ୍କର ଶାଶ୍ବତ ବିଧାନ ମୁଁ ଲଙ୍ଘନ କରିଅଛି।

"ଚିତ୍ତଶୁଦ୍ଧି ଭଳି ଅମୂଲ୍ୟ ଦ୍ରବ୍ୟ ଜଗତରେ ଆଉ କିଛି ନାହିଁ। ସହସ୍ର ଅଭାବ, ସହସ୍ର କଷ୍ଟରେ ଚିତ୍ତଶୁଦ୍ଧି ଜନିତ ପ୍ରଫୁଲ୍ଲତାରେ ମନୁଷ୍ୟ ସୁଖୀ ହୋଇପାରେ। ବାହାରର ପରିଷ୍କାର ପରିଚ୍ଛନ୍ନତା ପ୍ରତି ମୋହର ସର୍ବଦା ତୀକ୍ଷ୍ଣ ଦୃଷ୍ଟି ଥିଲା। ଚିତ୍ତଶୁଦ୍ଧିର ମୂଲ୍ୟ ଯେ ମୁଁ ଜାଣିନଥିଲି, ଏହା କିପରି କହିବି ? ଜାଣି ସୁଦ୍ଧା ଏପରି ସ୍ଖଳିତପଦ ହେଲି।

"ଭଗବାନ୍ ସର୍ବଦର୍ଶୀ ଏବଂ ଅନ୍ତର୍ଯ୍ୟାମୀ। ହୃଦୟରେ ପାପକୁ ସ୍ଥାନ ଦେବାର ନୁହେଁ। ହୃଦୟରେ ସେ ବିବେକ-ପ୍ରହରୀ ରଖିଅଛନ୍ତି। ମୁଁ ପ୍ରଥମେ ସେହି ବିବେକ-ପ୍ରହରୀର ବାଣୀ ଶୁଣି ସତର୍କ ହେବାକୁ ଚେଷ୍ଟା କରିଥିଲି; କିନ୍ତୁ ପରେ ଭ୍ରଷ୍ଟ ହେଲି। ପାପ କବିତାର ପରିଚ୍ଛଦରେ ଆସି ମୋତେ ମୁଗ୍ଧ କଲା ଏବଂ ଶେଷରେ ମୋହୋର ଚରିତ୍ର ଭ୍ରଷ୍ଟ ଘଟିଲା।

"ବର୍ତ୍ତମାନ ସୁଦ୍ଧା ଅନେକେ ଖବରକାଗଜରେ ମୋହୋର ପ୍ରଶଂସା କରିଥାଆନ୍ତି; ମୋହୋର ରଚନାର ସୁଖ୍ୟାତି କରନ୍ତି। ଧିକ୍ ମୋତେ, ଧିକ୍ ମୋହୋର ରଚନାକୁ। ପ୍ରଶଂସା ଦେଖି ମୋହ ହୃଦୟରେ ଶତଶେଳ ବିଦ୍ଧ ହୁଏ। 'କହତ କବୀରୋ ଯାତ ବହି, ଯବସେ ବନେ ତବ ସେ ସହି।' କବୀରଙ୍କର ଧର୍ମାଚରଣ ସମ୍ବନ୍ଧରେ ଏହି ମହାବାକ୍ୟ ସମ୍ପୂର୍ଣ୍ଣ ଠିକ୍। କିନ୍ତୁ ପାପ ଏରୂପ ଭୟଙ୍କର ଯେ ପାପୀ ପାପ ପରିତ୍ୟାଗ କରି ଧର୍ମାଚରଣ କରିବାକୁ ପ୍ରବୃତ୍ତ ହେଲେ ପାପ ସେହି ଧର୍ମାଚରଣରେ ବାଧା ଦେଇଥାଏ। ଇଚ୍ଛାନୁସାରେ ଧର୍ମାଚରଣ କରିବାକୁ ଦିଏ ନାହିଁ। ହାୟ! ଯେବେ ମୁଁ ପୁଣି ସୁସ୍ଥ ହୋଇପାରନ୍ତି ଏବଂ ମୋହୋର ଅଭିଜ୍ଞତା ରୀତିମତ ଲିପିବଦ୍ଧ କରିପାରନ୍ତି, ତାହା ଖଣ୍ଡିଏ ବୃହତ୍ ଶିକ୍ଷାପ୍ରଦ ଗ୍ରନ୍ଥ ହୁଅନ୍ତା। ବୈଷ୍ଣବ କବିତାରେ ଏରୂପ ଅନେକ କବିତା ରହିଅଛି, ଯାହା ଦୁର୍ବଳମନା ଲୋକଙ୍କୁ ବିପଥରେ ନେଇଯାଇପାରେ। ଏରୂପ କବିତାର ଉଦାହରଣ ମୁଁ ଅନେକ ଦେଇପାରନ୍ତି; ରୀତିମତ ଲେଖିବାର ଶକ୍ତି ମୋହୋର ନାହିଁ। ଫଳତଃ ମୁଁ ଭବଭୂତିଙ୍କର ଚେଲା, ଜୟଦେବଙ୍କର ଚେଲା ନୁହେଁ।

"ମନେକରିଥିଲି, ପେନ୍‌ସନ୍ ଘେନି ଅବସର ମତେ ମାତୃଭାଷାର (ଓଡ଼ିଆ ଭାଷାର) ସେବା

କରିବି। ଧର୍ମ ଏବଂ ନୀତି ସମ୍ବନ୍ଧରେ ସଂସ୍କୃତରେ କବିତା ଲେଖିବି। ମୋହୋର ଆଶା କେବଳ ଆଶାରେହିଁ ପରିଣତ ହେଲା।

"ହାୟ, ମୋହୋର ପ୍ରାଣର ପ୍ରିୟତମ ଉତ୍କଳ ଭାଷା, ମନେକରିଥିଲି, ପେନ୍‌ସନ୍ ନେଇ ତୁମ୍ଭର ସେବା ଏବଂ ଧର୍ମର ସେବାରେ ମନଃପ୍ରାଣ ଢାଳିଦେବି। କୁହୁକରେ ପଡ଼ି ମୁଁ ଏ ସୁଖରୁ ବଞ୍ଚିତ ହେଲି।

"କୌଣସି ଲୋକକୁ ଫାଶି ଦିଆହୋଇଅଛି। ଫାଶିରଜ୍ଜୁ ଗଳାରେ ଭଳକରି ନବସିବାରୁ ତାହାର ଯେପରି ଯନ୍ତ୍ରଣା ହୁଏ, ଅଥଚ ମୃତ୍ୟୁ ହୁଏନାହିଁ, ମୋହୋର ଦଶା ବର୍ତ୍ତମାନ ସେହିରୂପ; ମୋହୋର ବର୍ତ୍ତମାନ ଏହିପରି ଦଣ୍ଡ।

"ମୋହୋର ମନେହୁଏ, ପ୍ରତ୍ୟେକ ଲୋକର ଘରେ ମୃତ୍ୟୁ ଶଯ୍ୟାର ଗୋଟିଏ ଭଲ ଚିତ୍ର ରହିବା ଉଚିତ। ପ୍ରତ୍ୟହ ମୃତ୍ୟୁର ସ୍ମରଣ ହେଲେ ଲୋକେ ସହଜରେ ପାପୀ ହୋଇପାରନ୍ତି ନାହିଁ। ହାୟ, କି ଦାରୁଣ ଭବିତବ୍ୟ ମୋହୋ ଅଦୃଷ୍ଟରେ ଥିଲା। 'ଦଶରଥ ବିୟୋଗ' ଭଳି ନୀତିପୂର୍ଣ୍ଣ କବିତା ଲେଖିବାର ୫-୬ ମାସ ଉତାରୁ ମୁଁ ଏପରି ପ୍ରଲୋଭନରେ ପଡ଼ିଗଲି। ୪-୫ ବର୍ଷ ପୂର୍ବେ ପୁତ୍ରର ବିବାହୋପଲକ୍ଷରେ ଅନେକ ସମ୍ଭ୍ରାନ୍ତ ଲୋକଙ୍କର ପରାମର୍ଶ, ଉପଦେଶ ଏବଂ ପରିଶେଷରେ ଅନୁନୟ ହେତୁ ଯେଉଁ ଲୋକ ନର୍ତ୍ତକୀର ନୃତ୍ୟରେ ସମ୍ପୂର୍ଣ୍ଣ ଅସମ୍ମତ ହେଲା, ତାହା ଭାଗ୍ୟରେ ପୁଣି ଏହା ଘଟିଗଲା!

"ମୋହୋର ବସାର ଭୃତ୍ୟମାନେ ମୋତେ, ମୋହୋର ସ୍ତ୍ରୀଙ୍କୁ ଏବଂ ସନ୍ତାନମାନଙ୍କୁ ଆଜ୍ଞା, ଆଜ୍ଞା କହିଥାଆନ୍ତି। ହାୟ, ମୋହୋର କୁକର୍ମ ଫଳରେ ଆମ୍ଭମାନଙ୍କର ଯେଉଁ ଦଶା, ଆମ୍ଭମାନଙ୍କର ଭୃତ୍ୟର ସୁଦ୍ଧା ଆମ୍ଭେମାନେ ଭୃତ୍ୟ ହେବାର ଅଯୋଗ୍ୟ।

"ମୋହୋର ଏ କି ଭୟଙ୍କର ଅବସ୍ଥା! ବର୍ତ୍ତମାନ ସୁଦ୍ଧା ବଞ୍ଚିରହିବାକୁ ଇଚ୍ଛା। ଅଥଚ ଜୀବନ ଏଭଳି ଯନ୍ତ୍ରଣାମୟ, ମାନସିକ ଓ ଶାରୀରିକ ଯନ୍ତ୍ରଣାମୟ ଯେ, ମୃତ୍ୟୁହିଁ ମୋହୋ ପକ୍ଷରେ ଶ୍ରେୟସ୍କର। ବଞ୍ଚିବା କଷ୍ଟ, ମରିବା ମଧ୍ୟ କଷ୍ଟ, କି ଭୟଙ୍କର ଅବସ୍ଥା! ଏ ଅବସ୍ଥାରୁ ଅସାଧ୍ୟସାଧକ ଭଗବାନ୍ ବ୍ୟତୀତ ମୋତେ ଆଉ କିଏ ରକ୍ଷା କରିବ?

"ସଂସାର ନିକଟରେ ମୋହୋର ବିନୀତ ନିବେଦନ, କୃତାଞ୍ଜଳିପୁଟରେ ନିବେଦନ, ମୁଁ ନିଜର ସ୍ୱଜନ ସକାଶେ ଆପଣାକୁ ଯେପରି ତିରସ୍କାର, ଯେ ରୂପ ଧିକ୍କାର ଦେଉଅଛି, ସଂସାର ଏହା ଅପେକ୍ଷା ଅଧିକ ଦେଇପାରିବ ନାହିଁ। ସଂସାର ନିକଟରେ ମୋହୋର କରପୁଟରେ ନିବେଦନ, ମୋହୋର ଦୁଷ୍କର୍ମ ସକାଶେ ମୋହୋର ଲେଖାକୁ ଯେପରି କେହି ଦୋଷ ନ ଦିଅନ୍ତି। ମୁଁ ଯାହା ଲେଖିଥିଲି, ସରଳ ମନରେ ଲେଖିଥିଲି। ପ୍ରକୃତ ପକ୍ଷେ ବର୍ତ୍ତମାନ ସେହି ସୁନୀତିର ସହସ୍ରଗୁଣ ଭକ୍ତ, ସହସ୍ରଗୁଣ ପକ୍ଷପାତୀ ମୁଁ ମହାପାପୀ ହେଲେ ହେଁ 'ଧର୍ମ ଏକା ସିନା ମହତ ପଣିଆ' ଏହାହିଁ ମୋହୋର ମନର କଥା। କିପରି ମତିଭ୍ରମ ହେଲା, ପଦସ୍ଖଳନ ହେଲା, ଦାରୁଣ ପ୍ରଲୋଭନରେ ଓ କୁଚକ୍ରରେ ପଡ଼ିଗଲି। ବାସ୍ତବିକ ମୋହର ହୃଦୟ ଧର୍ମପ୍ରବଣ, ଭଗବାନ୍ ମୋହୋର ହୃଦୟ ଦେଖୁଅଛନ୍ତି। ଅନେକ ସମୟରେ ମୁଁ ଭାବେଁ, ଏ ସଂସାର ସହିତ ମୋହର ସମ୍ବନ୍ଧ କ'ଣ? ଏ ସଂସାରରେ ଲୋକର ଯେପରି ଇନ୍ଦ୍ରିୟାଦି ଅଛି, ମୁଁ ଯେଉଁ ଲୋକକୁ ଯିବି ସେଠାରେ କିରୂପ? ଏଠାରେ ଯେପରି ବର୍ଣ୍ଣ, ରସ, ଶବ୍ଦାଦି ଅନୁଭବ କରୁଅଛି, ସେଠାରେ କି ସେହି ରୂପ? ବର୍ତ୍ତମାନ ମୁଁ କି ଭୟଙ୍କର ଅବସ୍ଥାରେ ଅବସ୍ଥିତ! ମୋହୋର ଏହି ପାଞ୍ଚ ଭୌତିକ ଦେହ ସହିତ, ମୋହୋର ଆତ୍ମୀୟଗଣଙ୍କ ସହିତ ମୋହୋର ଆଉ କି ସମ୍ବନ୍ଧ ରହିଅଛି? ମୁଁ ଅତିଶୀଘ୍ର ସମସ୍ତଙ୍କୁ ଛାଡ଼ି ଚାଲିଯିବି।

"ଶାସ୍ତ୍ରରେ କଥିତ ଅଛି, ମୃଣାଳ ସୂତ୍ରର ରନ୍ଧ୍ରରେ ମତ୍ତମାତଙ୍ଗର ଗତି ଯେରୂପ, ମୃତ୍ୟୁ ସେହିରୂପ ଭୟଙ୍କର। ମୁଁ ଦେଖୁଅଛି, ନିଜର ଯନ୍ତ୍ରଣାରୁ ବୁଝୁଅଛି, ମୋହୋର ସେହି ମୃତ୍ୟୁ ଆରମ୍ଭ ହୋଇଅଛି। ମୃତ୍ୟୁଞ୍ଜୟ କି ମୋତେ ରକ୍ଷା କରିବେ?

"ସଂସାରକୁ ମୋହୋର କରପୁଟରେ ନିବେଦନ, ପାପୀ ବୋଲି ମୋହୋପ୍ରତି ଦାରୁଣ ହେବେ ନାହିଁ। ମୋହୋର କ୍ଷୁଦ୍ର ଜୀବନରେ ମୁଁ କ୍ଷମାଶୀଳ ଥିଲି। ସହସ୍ର ଦୋଷ, ଏଭଳି ଦୋଷ ଯାହା ଲୋକେ ସହଜରେ କେବେହେଁ କ୍ଷମା କରନ୍ତି ନାହିଁ, ମୁଁ କ୍ଷମା କରିବାକୁ କେବେହେଁ ପରାଙ୍‌ମୁଖ ହୋଇନାହିଁ। ପ୍ରଲୋଭନ ଏବଂ ପରୀକ୍ଷା ବୁଝି ବିଚାର କରିବା ଉଚିତ। Abbot ପ୍ରଣୀତ Napoleon ଙ୍କର ଜୀବନୀରେ ଲିଖିତ ଅଛି– "Much of which passes for virtue to this world is only absence of temptation"। ମୋହର ଏ ବିନୀତ ସନ୍ତପ୍ତ ନିବେଦନ ପ୍ରତି ସଂସାରର ଲେଶ ମାତ୍ର ଆସ୍ଥା ହେବ କି? ଏ ସଂସାରର

ଉଦ୍ୟାନରେ ପାପଫଳରୁ ମୁଁ ବାଳୁଙ୍କାରେ ପରିଣତ ହୋଇଅଛି । ବାଳୁଙ୍କାକୁ ସମସ୍ତେ ପୋଡ଼ି ପକାଇ-ଥାଆନ୍ତି । ସଂସାରରେ ମୋହୋର ରହିବାର ଆଉ କେଉଁ ଅଧିକାର ଅଛି ? ମୋହୋର ଦାରୁଣ ଯନ୍ତ୍ରଣାହିଁ କହୁଅଛି ଯେ, ମୋହୋର ଜୀବନରେ ଆଉ କୌଣସି ଅଧିକାର ନାହିଁ ।

"ପ୍ରତି ମୁହୂର୍ତ୍ତରେ କେତେ ଚିନ୍ତା ମୋହୋର ମନରେ ଉଠୁଅଛି, ତାହାର ଇୟତ୍ତା ନାହିଁ । ଏଗୁଡ଼ିକ ସଜାଇ ଲେଖିବାର ଶକ୍ତି ନାହିଁ । ଆତ୍ମଗ୍ଲାନି ଏବଂ ଆତଙ୍କରେ ମନର ଏବଂ ଶରୀରର ଯନ୍ତ୍ରଣା ହୋଇ ମନୁଷ୍ୟର ଶନୈଃ ଶନୈଃ କିପରି ପରିବର୍ତ୍ତନ ହେଉଥାଏ, ଏ ସମ୍ବନ୍ଧରେ ଭୁକ୍ତଭୋଗୀ ହିଁ ଲେଖି-ପାରେ । ଏରୂପ ଗ୍ରନ୍ଥ ମୁଁ ଆଜି ପର୍ଯ୍ୟନ୍ତ ପଢ଼ି ନାହିଁ । ହାୟ, ଅନ୍ତତଃ ମୁଁ ଏପରି ଖଣ୍ଡିଏ ଗ୍ରନ୍ଥ ସଂସାରର ହିତ ସକାଶେ ଲେଖିଥାଆନ୍ତି !

"ପାପ କି ଭୟଙ୍କର ପଦାର୍ଥ, ଅନେକ ଲୋକ କେବଳ କଳ୍ପନାରେ ଏହାକୁ ଜାଣନ୍ତି, ମୁଁ ପ୍ରତ୍ୟକ୍ଷ ଅନୁଭବରେ ଜାଣିଲି । ପାପ କି ତୀବ୍ର ହଳାହଳ, ମୁଁ ଭୁକ୍ତଭୋଗୀ ହୋଇ ବୁଝୁଅଛି । ପାପ ମନର ସ୍ୱାସ୍ଥ୍ୟ ଓ ଶାନ୍ତି ଏବଂ ଶରୀରର ସ୍ୱାସ୍ଥ୍ୟ ଛାରଖାର କରିପକାଏ । ମୋହୋର ଭୟଙ୍କର ବାୟୁରୋଗ, ବମନେଚ୍ଛା ପାପଫଳରୁ ଏବଂ ପାପଜନିତ ତୀବ୍ର ଦୁଶ୍ଚିନ୍ତା ଫଳରୁ ସଂଘଟିତ ହୋଇଅଛି । ହାୟ, ମୁଁ ସତ୍ୟ କହିବାକୁ ପ୍ରୟାସୀ, ସତ୍ୟ କହିବାକୁ ସମସ୍ତଙ୍କୁ ଉପଦେଶ ଦେଇଥାଏଁ । ମୋହୋର ଏପରି ଦୁର୍ଦ୍ଦଶା ଯେ, ଲୋକେ ମୋତେ ମିଥ୍ୟା କହିବାକୁ ଉପଦେଶ ଦିଅନ୍ତି ।

"ମଧୁ (ଶଶୀ) ମୋତେ ସର୍ବଦା ପ୍ରକୃତିର ଶୋଭା ଦେଖିବାକୁ କହେ ଏବଂ ତଦ୍ଦ୍ୱାରା ମୋହୋର ବିନୋଦନ ହେବ ବୋଲି ଭାବେ, କିନ୍ତୁ ପ୍ରକୃତିର ଶୋଭାନୁଭାବକତା ଏତେବେଳେ ମୋହୋର କାହିଁ ? ପ୍ରକୃତିର ଶୋଭା ମୋହୋର ଆଜିକାଲି ସ୍ମୃତିର ବିଷୟ ହୋଇଅଛି । ସେ ମୁକ୍ତ ଜୀବନ କି ଆଉ ମୁଁ ପାଇବି ?

"ପରିଚ୍ଛଦ ପ୍ରତି ମୋହୋର ଅନାସ୍ଥା ଦେଖି ମୋହୋର ପରିବାରବର୍ଗ ଓ ବନ୍ଧୁବର୍ଗ ଦୁଃଖିତ ହୁଅନ୍ତି । ହାୟ, ମୋହୋର ଆତ୍ମାର ପରିଚ୍ଛଦ ମୋହୋର କର୍ମ ଦୋଷରେ ଏରୂପ ଛିନ୍ନଭିନ୍ନ ହୋଇ ଯାଉଅଛି ଯେ, ଆତ୍ମା ତାହାକୁ ଅପରିଧେୟ ଭାବେ । ବାହାରର ପରିଚ୍ଛଦ ସକାଶେ ମୋହୋର ଆସ୍ଥା କିପରି ହେବ ?

"ହାୟ, ମହାଯାତ୍ରାର ପଞ୍ଚମ ସର୍ଗରେ ମୟୂରଭଞ୍ଜର ମହାରାଜାଙ୍କୁ ସମ୍ବୋଧନ କରି ମୁଁ କେତେ ଉପଦେଶ ଦେଇଅଛି । ସଂସାର ତାହାପ୍ରତି ଉପହାସ କରି ମୋତେ କହିବ ନାହିଁ କି 'Physician, heal thyself' ! ମୁଁ ଇହକାଳରେ ହିଁ ନରକାଗ୍ନିର ତାପରେ ଜଳୁଅଛି । କି ଭୟଙ୍କର କଷ୍ଟ ! ଅଥଚ କଷ୍ଟ ପ୍ରକୃତ ଭାବରେ କହିବାର ଅଧିକାର ନାହିଁ । ପାପୀର କି କଷ୍ଟ ହୁଏ ପାପୀ ହିଁ ଜାଣେ । ହାୟ, ହାୟ, ମୁଁ କଅଣ କରିଅଛି ? ରଘୁବଂଶର –

"କାତ୍ୱଂ ଶୁଭେ କସ୍ୟ ପରିଗ୍ରହୋବା
କିମ୍ବା ମଦ୍‌ଭ୍ୟାଗମ କାରଣଂ ତେ ।
ଆଚକ୍ଷ୍ୱ ମତ୍ୱା ବଶିନାଂ ରଘୂଣାଂ
ମନଃ ପରସ୍ତ୍ରୀବିମୁଖ ପ୍ରବୃତ୍ତଃ ।"

ଏହି ଶ୍ଳୋକ ଯାହାର ଅତି ପ୍ରିୟ ଶ୍ଳୋକ ଥିଲା ଏବଂ ଜୀବନରେ ଯେ ଏହି ଶ୍ଳୋକାନୁସାରେ ଚଳି ଆସୁଥିଲା, ତାହାର ଇଦୃଶ ସ୍ଖଳନ !"

[ ପରିଶେଷରେ ୧୯୦୭ ସାଲର ଜୁଲାଇ ମାସରେ ରାଧାନାଥ ଅତିମାତ୍ର ବ୍ୟସ୍ତ ହୋଇ ଶଶିଭୂଷଣଙ୍କୁ କହିଲେ, "ପ୍ରାୟଶ୍ଚିତ୍ତ ସ୍ୱରୂପ ଏ ସମସ୍ତ କଥା ସଂସାରକୁ ନ ଜଣାଇଲେ ମୋହର କଷ୍ଟ ଲାଘବ ହେବ ନାହିଁ ।" ଏକଥା ପୁଣି ତାହାଙ୍କର ଅତିପ୍ରିୟବନ୍ଧୁ ଭକ୍ତକବି ମଧୁସୂଦନ ଓ ବାବୁ ବିଶ୍ୱନାଥକରଙ୍କୁ ଶୁଣାଇବାକୁ ହେଲା । 'ଉତ୍କଳ ଦୀପିକା'ର ସମ୍ପାଦକ କର୍ମବୀର ଗୌରୀଶଙ୍କର ଏହା ଶୁଣି କହିଲେ, "ଏପରି ସଂସାରରେ କିଏ କରିଥାଏ ଯେ ଆପଣ ଏହା କରିବେ ? ଏଥିରୁ ନିବୃତ୍ତ ହୁଅନ୍ତୁ ।"

ରାଧାନାଥ କହିଲେ – 'ପାପଂ କୃତ୍ୱା ପ୍ରକାଶୟତେ' ଯେଉଁ ନୀତି ବାକ୍ୟ ଅଛି, ସେଥିରୁ ବିଚ୍ୟୁତ ହେବି କାହିଁକି ?

ବାଲେଶ୍ୱରରୁ ମହାରାଜା ବୈକୁଣ୍ଠନାଥ ସେତେବେଳେ କାର୍ଯ୍ୟୋପଲକ୍ଷରେ କଟକ ଆଗମନ କରି ୩-୪ ଦିନ ଅବସ୍ଥାନ କରୁଥିଲେ । ସେ ଶୁଣି କହିଲେ, "ଏଭଳି ସହସ୍ର ସହସ୍ର ଘଟଣା ସଂସାରରେ ଅନବରତ ଲାଗିଅଛି; ଏହାକୁ ଅଧିକାଂଶ ଲୋକେ ପାପ ବୋଲି ମନେ କରନ୍ତି ନାହିଁ, ଏବଂ ଋଷିବାକ୍ୟ 'ପାପଂ କୃତ୍ୱା ପ୍ରକାଶୟେତ୍' ଏହାର ମୂଲ୍ୟ ଏ ଯୁଗରେ ଆଦୌ ନାହିଁ ।" ତଥାପି ରାଧାନାଥ କହିଲେ, "ମୋହୋର ବିବେକ ଯେତେବେଳେ ତାଡ଼ନା କରୁଅଛି, ସେତେବେଳେ ମୁଁ ଏହା ପ୍ରକାଶ କରିବାକୁ

ବାଧ।'' ଏହି ହେତୁରୁ ସେ ଦୁଇଦିନ ବସି 'ଆତ୍ମ ନିବେଦନ' ଲେଖି ଶଶିଭୂଷଣଙ୍କୁ ଗୌରୀଶଙ୍କର ବାବୁଙ୍କ ନିକଟକୁ ଏହା ମୁଦ୍ରଣ ସକାଶେ ପ୍ରେରଣ କଲେ। ଗୌରୀଶଙ୍କର ନିତାନ୍ତ ବାଧହୋଇ ଏହା ଓଡ଼ିଆରେ ଓ ବଙ୍ଗଳାରେ ଏକ ସହସ୍ର ଲେଖାଏଁ ଛପାଇଦେଲେ। ଛପା ହୋଇ ଆସିବାରୁ ବଙ୍ଗଳାଗୁଡ଼ିକ ବଙ୍ଗର ସମସ୍ତ ପ୍ରସିଦ୍ଧ ସମ୍ବାଦପତ୍ରର ସମ୍ପାଦକମାନଙ୍କ ନିକଟକୁ, ସମସ୍ତ ପରିଚିତ ବନ୍ଧୁମାନଙ୍କ ନିକଟକୁ ଏବଂ ସେହିପରି ଓଡ଼ିଆ ଭାଷାରେ ମୁଦ୍ରିତ 'ଆତ୍ମ ନିବେଦନ' ଗୁଡ଼ିକ ଉତ୍କଳର ସମସ୍ତ ସମ୍ବାଦପତ୍ରର ସମ୍ପାଦକ ଓ ପରିଚିତ ବନ୍ଧୁମାନଙ୍କ ସମୀପକୁ ଡାକରେ ପ୍ରେରିତ ହେଲା। ଏହି 'ଆତ୍ମ ନିବେଦନ' ଯାହା ମୁଦ୍ରିତ ଓ ପ୍ରଚାରିତ ହୋଇଥିଲା, ତାହା କେତେକ ସମ୍ବାଦପତ୍ରରେ ମଧ ଅବିକଳ ବାହାରିଥିଲା। ଏଥିରୁ କେତେଖଣ୍ଡ ନିମ୍ନରେ ପ୍ରଦତ୍ତ ହେଲା। ଏହି 'ଆତ୍ମ ନିବେଦନ' ପ୍ରକାଶ ଉତ୍ତାରୁ ରାଧାନାଥ ବଙ୍ଗୋତ୍କଳର ଲେଫ୍‌ଟେନେଣ୍ଟ ଗଭର୍ଣ୍ଣର ମହୋଦୟଙ୍କ ଛାମୁକୁ ଗୋଟିଏ ପ୍ରାର୍ଥନାପତ୍ର ଲେଖି ପ୍ରେରଣ କରିଥିଲେ। 'ଆତ୍ମ ନିବେଦନ' ପତ୍ରର ପତ୍ରଲିପି ଏଠାରେ ପ୍ରଦର୍ଶିତ ହେଲା। ଏହି ଆତ୍ମବିବୃତି ଯାହାଙ୍କର ହସ୍ତଗତ ହେବ, ତାହାଙ୍କୁ ସବିନୟ ପ୍ରାର୍ଥନା, ସେ ଅନୁଗ୍ରହପୂର୍ବକ ତାହାଙ୍କ ପରିଚିତ ବ୍ୟକ୍ତିଗଣଙ୍କୁ ଏହା ଦେଖାଇବେ। ]

## ସାଧାରଣଙ୍କ ସମୀପରେ ମହାପାପୀର ଅତି ବିନୀତ ଏବଂ କରୁଣ ନିବେଦନ –

ମୁଁ ମହାପାପୀ, କୃତାଞ୍ଜଳି ହୋଇ ଭିକ୍ଷା କରୁଅଛି, ଆପଣମାନେ ମୋହୋର ପାପକୁ ଘୃଣା କରିବା ହେବେ, ମାତ୍ର ପାପୀପ୍ରତି ଯେମନ୍ତ ନିର୍ଦ୍ଦୟ ନହୁଅନ୍ତି। ମୋହୋର ଅନ୍ୟ ଅଭିଯୋକ୍ତା ନାହିଁ। ମୁଁ ଅଭିଯୁକ୍ତ, ଅନ୍ତର୍ଯ୍ୟାମୀ ଆତ୍ମା-ପୁରୁଷ ମୋହୋର ଅଭିଯୋକ୍ତା। ପାପୀ ଯଦି ବିବେକର କଶାଘାତରେ ଜର୍ଜ୍ଜର ହୋଇ ଅନୁତାପର ଦାରୁଣ ଅନ୍ତର୍ଦ୍ଦାହରେ ଦଗ୍ଧହୋଇ କରୁଣା ଭିକ୍ଷା କରେ, ଭଗବାନ୍ ସୁଦ୍ଧା ତାହାକୁ କ୍ଷମା କରନ୍ତି। ମୁଁ ଆଶା କରେଁ, ଆପଣମାନେ ସେହିପରି କରିବା ହେବେ।

ମୋହ ଦୃଷ୍ଟାନ୍ତ ପରି କୁଦୃଷ୍ଟାନ୍ତ ଜଗତରେ ବିରଳ। ପାପ ଠିକ୍ ଅଗ୍ନିପରି ଆଶ୍ରୟାଶ। ପାପ ଶନୈଃ ଶନୈଃ ମୋହୋ ହୃଦୟ ଏବଂ ହୃଦୟ ସହିତ ଶରୀରକୁ ସର୍ବ୍ଦା ଜର୍ଜ୍ଜର ଏବଂ ଯନ୍ତ୍ରଣାମୟ କରୁଅଛି। ଅତି ଭୀଷଣ, ଅତି ତୀବ୍ର, ଅନୁଭବ ଦ୍ୱାରା ମୁଁ ଦେଖୁଅଛି, ପାପୀ ଇହକାଳରେ ତାହାର ନିଜ ହୃଦୟରେ ଯେ ନରକର ସୃଷ୍ଟିକରେ, ସେ ନରକର ଯନ୍ତ୍ରଣା ପରି ଯନ୍ତ୍ରଣା ଆଉ ନାହିଁ। ପାପ ହୃଦୟରେ ବନ୍ଦିଶାଳା ପ୍ରସ୍ତୁତ କରାଇଦିଏ, ସେ ବନ୍ଦିଶାଳାରୁ ପଳାଇବାର ଉପାୟ ନାହିଁ।

ମୁଁ ମହାପାପୀ, କୌଣସି ପ୍ରକାର ରାଜଦଣ୍ଡ୍ୟ ଦୋଷରେ ଦୋଷୀ ନହେଲେହେଁ ମୁଁ ମହାପାପୀ। ଜଗତ ନିୟମରେ ପରିଚାଳିତ, ନିୟମରୂପୀ ଭଗବାନ୍‌ଙ୍କ ନିୟମ ଲଙ୍ଘନ କରି ମୁଁ ମୋହୋର ଆତ୍ମା, ମନ ଏବଂ ଦେହ କଳୁଷିତ କରିଥିଲି। ଯେମନ୍ତ ତୀବ୍ର ଯନ୍ତ୍ରଣାରେ ମୁଁ ନିରନ୍ତର ଘାରି ହେଉଅଛି, ସେଥିରୁ ବୋଧହୁଏ, ପ୍ରାଣ ଏ ଅପବିତ୍ର ଦେହକୋଷରେ ରହିବାକୁ ଅନିଚ୍ଛୁକ।

ମୋହୋର ଜୀବନର ୫୨ ବର୍ଷ ପର୍ଯ୍ୟନ୍ତ ମୋହୋର କୌଣସି ପ୍ରକାର ଗୁରୁତର ସ୍ଖଳନ ଘଟିନଥିଲା। ୫୩ ବର୍ଷ ବୟସରେ ମୁଁ ବିଦେଶରେ କୌଣସି ବିଦୁଷୀ ମହିଳା ସହିତ ପରିଚିତ ହେଲି। ତାହାଙ୍କର ଅସାଧାରଣ ସାହିତ୍ୟିକ ଉତ୍କର୍ଷରେ ଏବଂ ରଚ଼ନାର ପାରିପାଟ୍ୟରେ ଆକୃଷ୍ଟ ହେଲି ଏବଂ ତାହାଙ୍କ ସହିତ ସୌହାର୍ଦ୍ଦ୍ୟ ହେଲା। ଏ ସମସ୍ତ ସଦ୍‌ଗୁଣ ସତ୍ତ୍ୱେ ତାହାଙ୍କ ଚରିତ୍ର ଅତ୍ୟନ୍ତ ବିକୃତ ଥିଲା। ଏହା ମୁଁ ସେ ସମୟରେ ଜାଣିନଥିଲି। ତାହାଙ୍କ ବିକୃତ ଚରିତ୍ର ପ୍ରଭାବରେ ମୋହୋର ଚିରସଂଯମ ବ୍ରତ ନଷ୍ଟ ହେଲା। ସମୟସମୟରେ ବିବେକ ଜାଗରିତ ହେଉଥିଲା ସତ୍ୟ, ମାତ୍ର ସେହି କୁହୁକିନୀଙ୍କର କୁହୁକ ଏବଂ ମାୟାଜାଲ ପ୍ରଭାବରେ ବିବେକବାଣୀ ନିଷ୍ଫଳ ହେଉଥିଲା। ଏଣେ ପ୍ରଲୋଭନ ଏବଂ ବିଭୀଷିକା, ପୁଣି ତେଣେ ସନିର୍ବନ୍ଧ ପ୍ରଣୟ, ଏହିପରି ଉଭୟ ସଙ୍କଟରେ ପଡ଼ି ମୋହୋର ଆତ୍ମ ନିଷ୍କୃତିର ଚେଷ୍ଟା ଅନେକ ସମୟରେ ବିଫଳ ହୋଇଥିଲା। ଏହାବୋଲି ମୁଁ ମୋହୋର ପାପକୁ ଲଘୁ କହୁନାହିଁ। ମୋହୋର ପାପର ଇୟତ୍ତା ନାହିଁ। ପ୍ରଲୋଭନ ଯେତେ କଠିନ ହେଉ, ଜାଲ ଯେତେ ଶକ୍ତ ଏବଂ ଜଟିଳ ହେଉ, ଦୁର୍ବାସନା ମୋହୋ ହୃଦୟରେ ଅନ୍ତର୍ନିହିତ ଥିଲା ବୋଲି ମୁଁ ସେଥିରେ ପଡ଼ି ଚରିତ୍ର ଏବଂ ମନୁଷ୍ୟତା ହରାଇଲି। ଏଥି ସକାଶେ ମୁଁ ସ୍ୱୟଂ ଦାୟୀ। ହୃଦୟ ଦୌର୍ବଲ୍ୟ ଏବଂ ପାପ-ରାଜସପ୍ରକୃତି ମୋହୋର ଅଧଃପତନର ଏକମାତ୍ର କାରଣ ନ ହେଲେହେଁ ଅନ୍ତତଃ ପ୍ରଧାନ କାରଣ ଅଟେ।

ଉଲ୍ଲିଖିତ ମହିଳାଙ୍କର ଦୁଇଖଣ୍ଡି ପୁସ୍ତକର ଭୂମିକା ଅନୁରୋଧରେ ପଡ଼ି ଏବଂ ଅପର ବ୍ୟକ୍ତି ପ୍ରଦତ୍ତ

ନୋଟ୍ ଅବଲମ୍ବନ କରି, ମୁଁ ଲେଖିଥିଲି। ମୋହୋର ଅଜ୍ଞତା, ଆଶୁ ବିଶ୍ୱାସିତା ଏବଂ ଅନ୍ୟାନ୍ୟ କାରଣବଶତଃ ସେହି ଭୂମିକାର କୌଣସି କୌଣସି ସ୍ଥଳରେ ଅଳୀକ କଥା ଲେଖିଅଛି ଏବଂ କୌଣସି କୌଣସି କଥା ଅତିରଞ୍ଜିତ କରି ଲେଖିଅଛି। ସେହି ପୁସ୍ତକଦ୍ୱୟର ଭାବୀ ସଂସ୍କରଣରୁ ସେହି ଭୂମିକା ପରିତ୍ୟାଗ କରିବା ସକାଶେ ପୁନଃ ପୁନଃ ଅନୁରୋଧ କରି କୃତକାର୍ଯ୍ୟ ହୋଇନାହିଁ।

ମୋହୋର ଖଣ୍ଡିଏ ଓଡ଼ିଆ ପୁସ୍ତକର ମୁଖବନ୍ଧରେ ଅନ୍ୟାନ୍ୟ କବିତା ସହିତ ସେହି ମହିଳାଙ୍କର ଗୋଟିଏ କବିତା ସନ୍ନିବିଷ୍ଟ ହୋଇଅଛି। ସେହି କବିତା ସେ ଯେଉଁ ସମୟରେ ଲେଖିଥିଲେ, ସେ ସମୟରେ ମୋହ ସମ୍ବନ୍ଧରେ ତାହାଙ୍କ ମନରେ କୌଣସି ପ୍ରକାର କୁଭାବ ନଥିଲା; ମାତ୍ର ଆମ୍ଭମାନଙ୍କର ପରସ୍ପର ସମ୍ବନ୍ଧ ଯେଉଁ ସମୟରେ ଦୋଷପୁଷ୍ଟ ହୋଇଥିଲା ସେହି ସମୟରେ ତାହା ପୁସ୍ତକରେ ସନ୍ନିବିଷ୍ଟ ହୋଇଥିଲା; ସୁତରାଂ ତାହାଦ୍ୱାରା ମଧ୍ୟ ସେହି ପୁସ୍ତକ କଳୁଷିତ ହୋଇଅଛି। ଚରିତ୍ର ହରାଇ ମୁଁ ମୋହୋର ନିରୀହ ପରିବାରବର୍ଗର କି ଭୟଙ୍କର ଅନିଷ୍ଟ ସାଧନ କଲି ଏବଂ ସେମାନଙ୍କର ମନସ୍ତାପର କାରଣ ହେଲି, ଏହା ସ୍ମରଣ କରି ମୁଁ ନିରନ୍ତର ଆତ୍ମଗ୍ଳାନିରେ ଦହ୍ୟମାନ ହେଉଅଛି। ମୋହୋର ଆତ୍ମଗ୍ଳାନିର ବିଶେଷ କାରଣ ଏହି ଯେ, ମୋହୋର ଚରିତ୍ରବତ୍ସଳା ସହଧର୍ମିଣୀ ଏବଂ ସ୍ନେହଶୀଳ ଆଜ୍ଞାବହ ପୁତ୍ରଦ୍ୱୟ ମୋହୋର ଏହି ଅଧଃପତନରେ ମୋହୋପ୍ରତି ବିରକ୍ତ ନହୋଇ ବରଂ ଅଧିକତର ଆସ୍ଥା ଏବଂ ସହାନୁଭୂତି ପ୍ରଦର୍ଶନ କରି କ୍ଷମାଶୀଳତାର ପରାକାଷ୍ଠା ଦେଖାଉଅଛନ୍ତି।

ଚରିତ୍ର ଭ୍ରଷ୍ଟ ହୋଇ ମୁଁ ଭଦ୍ରସମାଜରେ ଭଦ୍ର-ଲୋକପରି ବିଚରଣ କରୁଅଛି, ଏହା ମୋହୋପକ୍ଷରେ ଅସହ୍ୟ ହୋଇଅଛି। ମୁଁ ବାର୍ଦ୍ଧକ୍ୟରେ କଳଙ୍କ ଦେଲି, ମନୁଷ୍ୟ ନାମରେ କଳଙ୍କ ଦେଲି, ପବିତ୍ର ଶିକ୍ଷା-ବିଭାଗରେ କଳଙ୍କ ଦେଲି, ପାପର ଏପରି କୁଦୃଷ୍ଟାନ୍ତ ଜଗତରେ ବିରଳ। ଯାହାକିଛି ମନ୍ଦ, ସେଥିର ସମଷ୍ଟି ମୋହୋ ଉଦାହରଣରେ ସୁଲଭ। ମନୁଷ୍ୟକୁ କୌଣସି ଅବସ୍ଥାରେ ବିଶ୍ୱାସ କରାଯାଇନପାରେ, ଏହାହିଁ ପ୍ରତିପନ୍ନ କରିବା ସକାଶେ ମୋହୋପରି ପାପାତ୍ମାର ଜନ୍ମ ହୋଇଥିଲା। ମୋହୋର ଜୀବନକାଳ ଅବସାନ-ପ୍ରାୟ। ଚିରଦିନ ଜୀବନ ଯଥାସାଧ୍ୟ ସତ୍‌ପଥରେ ରଖି ଠିକ୍ ପରଲୋକର ଦ୍ୱାରଦେଶରେ ମୋହୋର ଏହି ଦାରୁଣ ସ୍ଖଳନ ଘଟିଲା। କବି କହିଅଛନ୍ତି–

"ସଂଦୀପ୍ତେ ଭବନେତୁ କୂପଖନନ ପ୍ରତ୍ୟୁଦ୍ୟମଃ କୀଦୃଶଂ।" କୂପଖନନ ଉପହସନୀୟ ହେଲେହେଁ ମୋହୋର କାର୍ଯ୍ୟ ତଦପେକ୍ଷା ସହସ୍ରଗୁଣେ ଉପହସନୀୟ ହୋଇଅଛି। ସଂଦୀପ୍ତ ଭବନରେ ମୁଁ ତୈଳପ୍ରବାହ ଢାଳିଅଛି। ମୋହୋର ମନର ଦୃଢ଼ ଧାରଣା ଏହି ଯେ, ମୋହୋର ଏହି ଅତ୍ୟୁତ୍କଟ ଦୋଷ ଜଗତ୍ ସମକ୍ଷରେ ପ୍ରକାଶ କଲେ ଅନ୍ତତଃ ମୋହୋର ପାରଲୌକିକ ଶ୍ରେୟଃ ହୋଇପାରେ। ଭଦ୍ର ବେଶରେ ଏପରି ଯନ୍ତ୍ରଣାମୟ ଜୀବନ ଅପେକ୍ଷା ଭିକ୍ଷୁକର ଅକପଟ ମୁକ୍ତଜୀବନ ମୁଁ ଯେବେ ଏକଦିନ ସକାଶ ପାଏଁ, ତାହାହେଲେ ଆପଣାକୁ ଭାଗ୍ୟବାନ୍ ମଣିବି। ନିଜର ଅପରାଧ ସମାଜ ସମକ୍ଷରେ ଜଣାଇ ସମାଜର ଘୃଣାପାତ୍ର ହେଲେ ସୁଦ୍ଧା ମୋହୋର କିୟତ୍ ପରିମାଣରେ ଶାନ୍ତିଲାଭ ହେବ। ମୁଁ ସର୍ବଦା ମନେ କରେଁ ଯେ, ବନ୍ଧୁ ବାନ୍ଧବମାନଙ୍କଠାରୁ ମୁଁ ଯେଉଁ ଶ୍ରଦ୍ଧା ପାଉଅଛି, ସେଥିରେ ମୋହୋର କୌଣସି ଅଧିକାର ନାହିଁ, ପ୍ରତ୍ୟୁତ ନିଜର ଦୋଷ ଗୋପନ କରି ଭଦ୍ର ସମାଜରେ ଭଦ୍ରପରି ବିଚରଣ କରି ମୁଁ ମୋହୋର ପାପର ମାତ୍ରା ବଢ଼ାଉଅଛି ଏବଂ ସମାଜର ଘୃଣା ବିଦ୍ରୂପ ଉପହାସ ସତ୍ତ୍ୱେ ସତ୍ୟର ମୁକ୍ତ ବାୟୁକୁ ଆସିପାରିଲେ ମୋହୋର ଆରାମ ଲାଭ ହେବ। ପାପ ପ୍ରକାଶ କଲେ ଅନ୍ତତଃ ମୁଁ ପ୍ରକଟ ପାପୀ ବୋଲି ବିବେଚିତ ହେବି। ଗୁପ୍ତ ପାପୀ ଅପେକ୍ଷା ପ୍ରକଟ ପାପୀର ଜୀବନ ଅପେକ୍ଷାକୃତ କମ୍ ଦୁର୍ବହ ବୋଲି ମୋହୋର ଅନୁମାନ ହୁଏ।

ବିଶୋଧନରୂପୀ ଭଗବାନ୍‌ଙ୍କ ଅଲଙ୍ଘନୀୟ ନିୟମ ଫଳରୁ ଜଗତରେ ପାପୀର ଅବ୍ୟାହତି ନାହିଁ। ମୁଁ ପାପୀ, ମୋହୋର ଦଣ୍ଡ ଲଭିବାର ଉଚିତ। ସମାଜ ମୋତେ ନିଶ୍ଚୟ ଦଣ୍ଡ ଦେବ, ତଦ୍ୱାରା ମୋହୋର ଐହିକ ଶ୍ରେୟଃ ନ ହେଉ, ଅନ୍ତତଃ ପାପକ୍ଷୟ ଏବଂ ପାରତ୍ରିକ ଶ୍ରେୟଃ ହେବ। ମିଥ୍ୟାର ଆଉଗୋଟିଏ ନାମ ନରକ। ଯେତେ ଦିନଯାଏ ମୁଁ ଆତ୍ମଗୋପନ କରି ମିଥ୍ୟାକୁ ପ୍ରଶ୍ରୟ ଦେବି, ସେ ପର୍ଯ୍ୟନ୍ତ ମୋହୋର ନରକ ଯାତନା ଅନିବାର୍ଯ୍ୟ। ସତ୍ୟ ପ୍ରକାଶ ଏହି ନରକରୁ ଉଦ୍ଧାରର ପ୍ରକୃତ ଉପାୟ ଅଟେ।

"ପାପଂ କୃତ୍ୱା ପ୍ରକାଶୟେତ୍" ଆମ୍ଭମାନଙ୍କର ପ୍ରାଚୀନ ମହର୍ଷିଗଣ ଏହି ଅନୁଶାସନ ଲିପିବଦ୍ଧ କରିଯାଇଅଛନ୍ତି। ବାସ୍ତବିକ ହୃଦୟରେ ପାପବ୍ରଣ ଜାତ ହେଲେ ତୀବ୍ର ଅନୁତାପ ଏବଂ ଜନସାଧାରଣ ସମୀପରେ ପାପର ନିର୍ବ୍ୟାଜତା ଏବଂ ନିଃସଂକୋଚ

ପ୍ରକାଶ ସେଥିର ସମୁଚିତ କ୍ଷତ ଚିକିତ୍ସା। ଏହି କ୍ଷତ ଚିକିତ୍ସାରେ ବିଳମ୍ବ ହେଲେ ପାପୀକୁ ଆତ୍ମହତ୍ୟା ପଥରେ ଅଗ୍ରସର ହେବାକୁ ହୁଏ। ବହିର୍ମୁଖ ହୋଇ ପାପ ବିଶେଷ ନିଃସାରିତ ନ ହେଲେ ଆତ୍ମପୁରୁଷ କଳୁଷିତ ଶରୀର କୋଷକୁ ବାସଯୋଗ୍ୟ ମଣନ୍ତି ନାହିଁ।

ପ୍ରାୟ ଚାରିବର୍ଷ ହେବାକୁ ଚାଲିଲା ମୋହୋର ଏପରି ମାନସିକ ଏବଂ ତନ୍ନିବନ୍ଧନ ଶାରୀରିକ ଯନ୍ତ୍ରଣା ହୋଇଅଛି ଯେ, ପ୍ରତ୍ୟହ ଆତ୍ମହତ୍ୟା କରିବାକୁ ପ୍ରବୃତ୍ତି ହୁଏ। ଅତି ତୀବ୍ର ସ୍ମୃତି-ଶୂଳ ସଂପ୍ରତି ଦାରୁଣ ବାୟୁଶୂଳ ରୋଗରେ ପରିଣତ ହୋଇଅଛି। ଯନ୍ତ୍ରଣା-ବଶତଃ ଅଧିକାଂଶ ସମୟ ମୁଁ ଶଯ୍ୟାରେ ପଡ଼ି-ରହିଥାଏଁ। ପାପର ଗୋଟିଏ ନାମ ପାତକ। ସେହି ନାମ ମୋହୋ ଦୃଷ୍ଟାନ୍ତରେ କେବଳ ମନରେ ନୁହେଁ; ଶରୀରରେ ସୁଦ୍ଧା ଅନ୍ୱିତ ହୋଇଅଛି।

ମୁଁ ନିଜେ ପାପିଷ୍ଠ ହେଲେ ସୁଦ୍ଧା ପୁଣ୍ୟଭୂମି ଓଡ଼ିଶା ମୋହୋର ଜନ୍ମଭୂମି ଏବଂ ମୋହୋର ଜୀବନର ଅଧିକାଂଶ ସମୟ ଓଡ଼ିଶାରେ ଯାପିତ ହୋଇଅଛି। ମୋହୋର ଅଧିକାଂଶ ପ୍ରାୟ, ସବୁ ବନ୍ଧୁବାନ୍ଧବ ଉତ୍କଳବାସୀ। ଉଲ୍ଲିଖିତ ଘଟନା ପୂର୍ବରୁ ମୋହୋର ଚରିତ୍ର କିପରି ଥିଲା, ତାହା ସେମାନେ ଅବଗତ ଅଛନ୍ତି। ବର୍ତ୍ତମାନ ମୁଁ ସେମାନଙ୍କର ଘୃଣାର୍ହ ଏବଂ ନିନ୍ଦାର୍ହ ହୋଇଅଛି, ମାତ୍ର ମୁଁ ଆଶା କରେଁ, ଘୃଣାର୍ହ ଓ ନିନ୍ଦାର୍ହ ହୋଇ ସୁଦ୍ଧା ମୁଁ ଏକାବେଳକେ ସେମାନଙ୍କର ସହାନୁଭୂତିରୁ ବଞ୍ଚିତ ହେବି ନାହିଁ।

ତିନି ବର୍ଷରୁ ଅଧିକ ହେଲା ଏ ପାପ ସମାଜରେ ପ୍ରଚାର କରିବା ସକାଶେ ମୁଁ ନିରନ୍ତର ବ୍ୟଗ୍ର ଏବଂ ପାରି ନାହିଁ ବୋଲି ମୋହୋର ମନ ଏବଂ ମନ ସହିତ ଶରୀର ବିଧ୍ୱସ୍ତ ହୋଇଅଛି। ବନ୍ଧୁମାନଙ୍କ ଅନୁରୋଧରେ ମୁଁ ପ୍ରତି ମୁହୂର୍ତ୍ତ ଅତି ଦାରୁଣ ଦୁଃସହ ଯନ୍ତ୍ରଣା ସହ୍ୟ କରି ଏତେ ଦିନ ଅଗତ୍ୟା ମୌନାବଲମ୍ବନ କରିଅଛି। ଗୃହରେ ଅଗ୍ନି ଲାଗିଲେ ରଜ୍ଜୁବଦ୍ଧ ଗାଭୀ ଯେପରି ରଜ୍ଜୁ ଛିନ୍ନ କରିବା ସକାଶେ ଅସ୍ଥିର ହୁଏ, ତିନି ବର୍ଷକୁ ଅଧିକ ହେଲା ମୋହୋ ଅବସ୍ଥା ଅବିକଳ ସେହିପରି ହୋଇଅଛି। ଇହକାଳ ତ ହରାଇ ଅଛି, ଅଧିକ ଦିନ ମୌନାବଲମ୍ବନ କଲେ ପରକାଳ ମଧ୍ୟ ହରାଇବି। ଏହି ଭୟରେ ବାଧ୍ୟ ହୋଇ ମୁଁ ମୋହୋର ପାପ ପ୍ରକାଶ କଲି।

ମୁଁ ଯାହା ଲେଖିଅଛି, ସଂପୂର୍ଣ୍ଣ ସତ୍ୟ, ପ୍ରତି ଅକ୍ଷରରେ ସତ୍ୟ। ମିଥ୍ୟା କହିବାର କିମ୍ବା ଲେଖିବାର ମୋହୋର କ୍ଷମତା ନାହିଁ। ମୁଁ ନିଜକୁ ମନୁଷ୍ୟ ଚକ୍ଷୁ ଅପେକ୍ଷା ଉଚ୍ଚତର ଚକ୍ଷୁର ପୁରୋବର୍ତ୍ତୀ ମଣି ଏ ସମସ୍ତ ଲିପିବଦ୍ଧ କଲି। ଦାରୁଣ ପ୍ରଲୋଭନରେ ପଡ଼ି ଅନ୍ତର୍ନିହିତ ଦୁଷ୍ପ୍ରବୃତ୍ତିନିବନ୍ଧନ ମୁଁ ପାପରେ ଲିପ୍ତ ହୋଇଥିଲି। ଭଗବାନ୍‌ଙ୍କ detective (ଗୋଏନ୍ଦା) 'ବିବେକ' ମୋତେ ଏପରି ଚାପି ଧରିଅଛନ୍ତି ଯେ, ମୋହୋର ହଲଚଲ ହେବାର କ୍ଷମତା ନାହିଁ। ସର୍ବୋତମୁଖ, ସର୍ବତ୍ରଷ୍ଟ୍ରା, ସର୍ବାନ୍ତର୍ଯ୍ୟାମୀ ଭଗବାନ୍ ଦେଖୁଅଛନ୍ତି ଯେ, ମୁଁ ଏକବର୍ଣ୍ଣ ମିଥ୍ୟା ଲେଖିନାହିଁ। ଭଗବାନଙ୍କ ସହସ୍ର ନାମ ମଧ୍ୟରେ ''ପରମଃ ସ୍ପଷ୍ଟ'' ଗୋଟିଏ ନାମ। ଏ ଘଟନାରେ ମୁଁ ଏହି ନାମର ସାର୍ଥକତା ପଦେ ପଦେ, ପ୍ରତି ନିଃଶ୍ୱାସରେ ଅନୁଭବ କରୁଅଛି। କେବଳ ମୋହୋର ନିଜ ପାପ ସାଧାରଣଙ୍କ ସମୀପରେ ପ୍ରଚାର କରିବାର ମୋହୋର ଉଦ୍ଦେଶ୍ୟ। ବିଷୟଟି ଯେବେ ଜଟିଳ ହୋଇ ନଥାନ୍ତା, ମୁଁ ଏ ସମ୍ବନ୍ଧରେ ଅନ୍ୟ କୌଣସି ବ୍ୟକ୍ତିର କୌଣସି କଥାର ଉଲ୍ଲେଖ କରି ନଥାନ୍ତି। ସେ ସୁବିଧା ନାହିଁ। ସୁତରାଂ ଅନିଚ୍ଛାସତ୍ତ୍ୱେ ଅତି ଦୁଃଖର ସହିତ ଅପର ବ୍ୟକ୍ତି ସମ୍ବନ୍ଧରେ କେତେକ କଥା ଲେଖିଲି।

ସମସ୍ତଙ୍କୁ ପୁନର୍ବାର କରପୁଟରେ ଭିକ୍ଷା କରୁଅଛି – ଆଶୀର୍ବାଦ କରନ୍ତୁ, ଯେମନ୍ତ ଆପଣଙ୍କର ପଦଧୂଳି ନେବାର ଯୋଗ୍ୟ ହୋଇପାରେ। ସାଧୁ ମହାତ୍ମାଗଣଙ୍କ ଶ୍ରୀଚରଣରେ ମୋହୋର ସବିନୟ ନିବେଦନ, କିପରି ମୁଁ ଏହି ଦାରୁଣ ପାପସ୍ମୃତିର ଦଂଶନରୁ ଅବ୍ୟାହତି ପାଇ ଶାନ୍ତିଲାଭ କରିପାରିବି, ସଦୟ ହୋଇ ଏ ବିଷୟରେ ମୋତେ ସଦୁପଦେଶ ପ୍ରଦାନ କରନ୍ତୁ।

ମୋହୋର ଚିତ୍ତର ସ୍ଥୈର୍ଯ୍ୟ ନାହିଁ, ସୁତରାଂ ସଂଗତ ଭାବରେ ଚିନ୍ତା କରିବାର କିମ୍ବା ସେହି ଚିନ୍ତା ଲିପିବଦ୍ଧ କରିବାର କ୍ଷମତା ନାହିଁ। ମୋହୋର ଏହି ବିନୀତ ନିବେଦନରେ ଯେ ସମସ୍ତ ଦୋଷ ଅଛି, ସେଥି ସକାଶ କରପୁଟରେ କ୍ଷମା ପ୍ରାର୍ଥନା କରୁଅଛି।

ସମ୍ବାଦପତ୍ରର ମାନନୀୟ ସମ୍ପାଦକ ମହୋଦୟ-ଗଣଙ୍କ ନିକଟରେ ମୋହୋର ବିନୀତ ପ୍ରାର୍ଥନା, ସେମାନେ ମୋହୋ ପ୍ରତି କୃପାନ୍ୱିତ ହୋଇ ମୋହୋର ଏହି ଆତ୍ମବିବୃତି ନିଜ ନିଜ ପତ୍ରିକାରେ ପ୍ରକାଶ କରିବେ।

ମୁଁ ମୋହୋର ଏହି ପାପ ସାଧାରଣରେ ପ୍ରକାଶ କଲି ବୋଲି ଲୋକେ ମୋତେ ପାଗଳ ବୋଲି ସମ୍ବୋଧନ କରିବେ। ମାତ୍ର ମୁଁ ମୋହୋର ହୃଦୟର

ଅନ୍ତଃକରଣରୁ ଜାଣିଥିଛି, ଈଶ୍ୱରଙ୍କ ଆଦେଶରୁ ମୁଁ ଏ ବିଷୟରେ ପାଗଳ ହୋଇଯାଇଛି। ଏଥିରେ ମୋହୋର କୌଣସି ଚାରା ନାହିଁ। ସଂସାରରେ ଏହିଭଳି ଘଟନା ଅନେକ ଘଟୁଅଛି। ଏହା ଜାଣି ସୁଦ୍ଧା ମୋହୋର ଆତ୍ମସମ୍ବରଣର ଲେଶ ମାତ୍ର କ୍ଷମତା ନାହିଁ।

କଟକ

୨୫।୦୭।୧୯୦୭ ଶ୍ରୀ ରାଧାନାଥ ରାୟ

## ସାର୍ ବାସୁଦେବ ସୁଢ଼ଳଦେବଙ୍କ ବିୟୋଗରେ ରାଧାନାଥଙ୍କ ଶୋକ

"ବାସୁଦେବ କେବଳ ବିଧିର ନୃପତି ନଥିଲେ, ସେ ନିସର୍ଗର ନୃପତି। ରାଜୋଚିତ ଗୁଣ ଥାଉ ବା ନଥାଉ, କେବଳ ମାତ୍ର ଜନ୍ମଗ୍ରହଣର କଷ୍ଟ ସ୍ୱୀକାର କରିବାର ଦାବୀ ହେତୁ ଅଧିକାଂଶ ରାଜା ରାଜା ବୋଲାଇଥାଆନ୍ତି। ରାଜତନ୍ତ୍ରଦେଶସମୂହରେ ପିତାଙ୍କର ପୁତ୍ର ହେବା ସିଂହାସନ ଲାଭର ଯଥେଷ୍ଟ ଗୁଣବତ୍ତା ବୋଲି ସର୍ବତ୍ର ପରିଗୃହୀତ। ବାସୁଦେବ ମଧ ଏହିପରି ଭାଗ୍ୟଧର ହୋଇ ଜନ୍ମଗ୍ରହଣ କରିଥିଲେ ସତ୍ୟ, କିନ୍ତୁ ସେ ପୂର୍ଣମାତ୍ରାରେ ଏହି ସୌଭାଗ୍ୟର ଉପଯୁକ୍ତ ଥିଲେ। ତାହାଙ୍କର ଅମୂଲ୍ୟ ଜୀବନ ଏହାର ଅଭ୍ରାନ୍ତ ପ୍ରମାଣ ପ୍ରଦାନ କରୁଅଛି। ସିଂହାସନ ଲାଭ ଦ୍ୱାରା ଯେଉଁ ସାଧନ-ନିଚୟ ତାହାଙ୍କର ହସ୍ତଗତ ହୋଇଥିଲା ତାହାଙ୍କର ସାଧନା ମଧ ସେହିରୂପ ଥିଲା ଏବଂ ସିଦ୍ଧି ମଧ ସାଧନାର ଅନୁରୂପ ହୋଇଥିଲା।

ସୁଢ଼ଳଦେବଙ୍କୁ ଯେଉଁମାନେ ଉତ୍ତମରୂପେ ଜାଣନ୍ତି, ସେମାନେ ଏକ ବାକ୍ୟରେ ସ୍ୱୀକାର କରିବେ ଯେ, ରାଜା ସୁଢ଼ଳଦେବ ନିଜର ଅସାମାନ୍ୟ ପ୍ରତିଭାର ଅନୁରୂପ କ୍ଷେତ୍ର ଏବଂ ମନର ଅନୁରୂପ ଧନ ପାଇନାହାନ୍ତି। ଉପଯୁକ୍ତ କ୍ଷେତ୍ର ପାଇଥିଲେ ତାହାଙ୍କର ପ୍ରତିଷ୍ଠା ଜଗଦ୍‌ବ୍ୟାପିନୀ ହୋଇଥାଆନ୍ତା ସନ୍ଦେହ ନାହିଁ।

ବିଦାୟ ହୋଇ ରାଜଧାନୀ ତ୍ୟାଗ କରିବା ଉତ୍ତାରୁ ମାର୍ଗରେ ବାମଣ୍ଡା ସୀମା ମଧରେ ଯେତେଦୂର ଯିବାକୁ ହୋଇଅଛି, ସର୍ବତ୍ର ତାହାଙ୍କର ସୌଜନ୍ୟର ପ୍ରଭାବ ସମଗ୍ର ରାଜ୍ୟବ୍ୟାପୀ ବୋଲି ବୋଧ ହେଲା ଏବଂ ସମଗ୍ର ଜନପଦବାସୀ ସେହି ସୌଜନ୍ୟଦ୍ୱାରା ସଂକ୍ରମିତ ପ୍ରାୟ ବୋଧହୋଇଥିଲା।

ବାମଣ୍ଡାର ଆସ୍ଥାପୂର୍ଣ୍ଣ, ଆଡ଼ମ୍ବରଶୂନ୍ୟ, ସୁରୁଚି-ସମ୍ମତ ଆତିଥେୟତା ବାମଣ୍ଡାର ପଟାନ୍ତର ମାତ୍ର। ଏହିଥର ମୋହୋର ବାମଣ୍ଡାରେ ଅବସ୍ଥିତି ଆଶାତୀତ ଦୀର୍ଘ ହୋଇଥିଲା। ତିନିଦିନ ଅବସ୍ଥାନର ସଂକଳ୍ପ ଥିଲା, କିନ୍ତୁ ମହାରାଜାଙ୍କ ଇଚ୍ଛାର ବଶମ୍ବଦ ହୋଇ ସାତ ଦିନ ରହିଲି। ଏ ରୂପ ଆଉ ସାତୋଟି ଦିନ ସମସ୍ତ ବର୍ଷ ମଧରେ ମୋ ଭାଗ୍ୟରେ ଘଟିବା ଦୁଷ୍କର।

ଦେଶର ବଡ଼ଲୋକମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରେ, ନୀତିଜଡ଼ିତ ଏବଂ ଆଚାରାଧିଷ୍ଠିତ। ଗୋଟିଏ ଦେଶୀୟ ଭାବ, ଅପରଟି ଇୟୁରୋପୀୟ ଭାବ। ଗୋଟିକର ଛତା ଯୋତାର ବିଭ୍ରାଟ, ଅପରଟିରେ ପତ୍ର ଲେଖିବା ଓ କାର୍ଡ଼ ପଠାଇବା। ମହାରାଜା ସୁଢ଼ଳଦେବ ଏହି ଦୁଇ ଶ୍ରେଣୀରୁ ବହିର୍ଭୂତ; ସକଳ ସମୟରେ ସବୁ ଅବସ୍ଥାରେ ସୁଲଭ ଦର୍ଶନ।

ଜଣେ ସଙ୍ଗୀବନ୍ଧୁ କହିଲେ, କୃଷକମାନେ କେଉଁ ସମୟରେ କେଉଁ ଶସ୍ୟର ଚାଷ ଆରମ୍ଭ କରିବେ, ରାଜା ସୁଢ଼ଳଦେବଙ୍କ ନିକଟରୁ ତହିଁର ତତ୍ତ୍ୱ ଜାଣିବାକୁ ଆସନ୍ତି। ମୁଁ ଏହା ଶୁଣି ପଚାରିଲି, ଚଷା ରାଜାଙ୍କ ନିକଟକୁ ପୁଣି ଚାଷର ସମୟ ଜାଣିବାକୁ ଆସେ ? ବନ୍ଧୁ କହିଲେ, ବହୁଲୋକଙ୍କର ପ୍ରତିପାଳନ ଭାର ଯାହାଙ୍କ ଉପରେ, ସେ ଚଷାର ଚଷା ମହାଚଷା। ଉପଯୁକ୍ତ ଘଟଣାଦ୍ୱାରା ବୁଝାଯିବ ଯେ, ଦେଶ ଭ୍ରମଣ ଓ ଲୋକପାଳନ ସୂତ୍ରରେ ବିଷୟ ଜ୍ଞାନ ବିଷୟରେ ରାଜା ଯେପରି ପଣ୍ଡିତ, ଶାସ୍ତ୍ର ବିଷୟରେ ରାଜା ସେହିପରି ପଣ୍ଡିତ।

ପ୍ରତ୍ୟେକ ବିଭାଗର କାର୍ଯ୍ୟ ପୁଙ୍ଖାନୁପୁଙ୍ଖ ପର୍ଯ୍ୟବେକ୍ଷଣ କରି ଏକାକୀ ପଦବ୍ରଜରେ ସାଧାରଣ କାର୍ଯ୍ୟାଳୟ, ଅଶ୍ୱଶାଳା, ହସ୍ତିଶାଳା, ସଦାବ୍ରତ ଏବଂ ଉଦ୍ୟାନାଦି ପରିଭ୍ରମଣ କରି ସୁଦ୍ଧା ମହାରାଜା ପ୍ରତ୍ୟହ ୬-୭ ଘଣ୍ଟାକାଳ ସଂସ୍କୃତ, ଓଡ଼ିଆ ଓ ବଙ୍ଗଳା ପୁସ୍ତକର ଆଲୋଚନା ଏବଂ ପଣ୍ଡିତମାନଙ୍କ ସହିତ ଶାସ୍ତ୍ର ଚର୍ଚ୍ଚାରେ ଅତିବାହିତ କରିଥାଆନ୍ତି।

ମହାରାଜାଙ୍କର ଅଧିକାଂଶ କାର୍ଯ୍ୟ ବିଚ଼କ୍ଷଣତା ଏବଂ ଶ୍ରମଶୀଳତାର ପରିଚାୟକ। ବ୍ୟସନ ଏହାଙ୍କୁ ସ୍ପର୍ଶ କରିନାହିଁ। ଅଧିକାଂଶ ରାଜାମାନଙ୍କ ଭଳି ନିଷ୍କର୍ମା ଭାଗ୍ୟବାନ୍ ହୋଇ ସନ୍ତୁଷ୍ଟ ରହିବା ଏହାଙ୍କର ପ୍ରକୃତିବିରୁଦ୍ଧ। ଦୁର୍ଭାଗ୍ୟକ୍ରମେ ଅଧିକାଂଶ ରାଜା ରାଜତ୍ୱ ଲାଭରେ ମନୁଷ୍ୟତ୍ୱ ହରାଇଥାଆନ୍ତି। ଏହି ସମସ୍ତ ମନୁଷ୍ୟମାନଙ୍କଠାରୁ ଦୈବାଧୀନ ରାଜତ୍ୱ ବାଦ୍ ଦେଲେ କ'ଣ ବାକୀ ଥାଏ ? ବାକି କେବଳ ଗୋଟିଏ ଅକର୍ମନ୍ୟ ବ୍ୟସନୀ ବ୍ୟକ୍ତି। ସୁଢ଼ଳଦେବଙ୍କର କାର୍ଯ୍ୟାବଳୀ ଦେଖିଲେ ସ୍ୱୟଂ ଈର୍ଷା ସୁଦ୍ଧା ଏହା କହି ପାରିବ ନାହିଁ। ରାଜତ୍ୱ ବାଦ୍‌ଦେଇ ସୁଦ୍ଧା ମହାରାଜା ବାସୁଦେବ ସୁଢ଼ଳଦେବ ନରରାଜ। ନରରାଜଙ୍କ ହସ୍ତରେ ଦୈବାଧୀନ ରାଜତ୍ୱ ନ୍ୟସ୍ତ ହେଲେ ଯେପରି ହେବାର ଉଚିତ, ବାସୁଦେବ ଯେପରି ସମ୍ପୂର୍ଣ୍ଣରୂପେ ନହେଲେହେଁ ଅନ୍ତତଃ ବହୁ ପରିମାଣରେ ହୋଇଅଛନ୍ତି ଏବଂ ଏହିରୂପ ରାଜତ୍ୱ ସମୟରେ ରାଜ୍ୟରେ ଯେ ରୂପ ଉନ୍ନତି ହେବାର ଉଚିତ; ବାମଣ୍ଡା ସେହି ରୂପ ଉନ୍ନତିରୁ ବଞ୍ଚିତ ହୋଇନାହିଁ।

□ □ □

**[ ରାଧାନାଥଙ୍କର 'ରାୟ ବାହାଦୁର' ଉପାଧି ପ୍ରାପ୍ତିରେ ଆନନ୍ଦ ପ୍ରକାଶ କରିବାପାଇଁ ୨୬।୬।୧୮୯୭ ତାରିଖରେ ଦେବଗଡ଼ରେ ଏକ ସଭା ହୋଇଥିଲା। ଏଥିରେ ଶ୍ରୀ ସଚ୍ଚିଦାନନ୍ଦ ଦେବ ସଭାପତି ହୋଇଥିଲେ। ସଭାର ପ୍ରସ୍ତାବମାନ ପାଇ ରାଧାନାଥ ଏହି ଉତ୍ତର ପଠାଇଥିଲେ। ଏହା ସମ୍ବଲପୁର ହିତୈଷିଣୀ ପତ୍ରିକାର ୨୧।୭।୧୮୯୭ ତାରିଖ ସଂଖ୍ୟାରୁ ଗୃହୀତ। ]**

"ବାମଣ୍ଡା ଆଲୋଚ଼ନା ସଭାର ସଭାପତି ପରମ ମାନନୀୟ ଶ୍ରୀଳ ଶ୍ରୀଯୁକ୍ତ ଯୁବରାଜ ଶ୍ରୀ ସଚ୍ଚିଦାନନ୍ଦ-ଦେବ ମହୋଦୟ ଶ୍ରୀକରକମଳେଷୁ ସବିନୟ ନିବେଦନମିଦଂ –

ମହାଶୟ,

ବିଗତ ଜୁନ୍‌ମାସ ୨୬ ତାରିଖରେ ଦେବଗଡ଼ ରାଜଧାନୀରେ ବାମଣ୍ଡା ଆଲୋଚ଼ନା ସଭାର ଯେଉଁ ଅଧିବେଶନ ହୋଇଥିଲା, ଆପଣଙ୍କ ସ୍ୱାକ୍ଷର ସମ୍ବଳିତ ନିର୍ଦ୍ଧାରଣର ଖଣ୍ଡିଏ ପତ୍ରଲିପି ପ୍ରାପ୍ତ ହୋଇ ଆପ୍ୟାୟିତ ହେଲି ଏବଂ ସେଥି ସକାଶେ ସଭାକୁ ମୋହୋର ବିନୀତ କୃତଜ୍ଞତା ଆବେଦନ କରୁଅଛି।

(୨) ସଭା ମୋହୋ ପ୍ରତି ଯେଉଁ ସମ୍ମାନ ପ୍ରଦର୍ଶନ କରିଅଛନ୍ତି, ତାହା ମୋହୋର ଯୋଗ୍ୟତାକୁ ବହୁଦୂର ଅତିକ୍ରମ କରିଅଛି। ରାଜଦତ୍ତ ଉପାଧି ପରି ଏ ସମ୍ମାନ ମଧ ମୋହୋର ଆଶାତୀତ ବରଂ କଳ୍ପନାତୀତ ଅଟେ। ରାଜଦତ୍ତ ଉପାଧି ମୋହ ଚକ୍ଷୁରେ ଯେପରି ମୂଲ୍ୟବାନ, ବାମଣ୍ଡା ସଭାର ଏହି ଅଭିନନ୍ଦନ ମଧ ସେହିପରି ମୂଲ୍ୟବାନ ଏବଂ ସେହିପରି ଶିରୋଧାର୍ଯ୍ୟ।

(୩) ସଭାରେ ଯେଉଁ ମହୋଦୟମାନେ ଉପସ୍ଥିତ ଥିଲେ ସେମାନଙ୍କ ମଧରେ ଶ୍ରୀଯୁକ୍ତ ବାବୁ କୁମାର ବଳଭଦ୍ରଦେବ ପଟ୍ଟାୟତ ସାହେବ, ଶ୍ରୀଯୁକ୍ତ ବାବୁ ଜଳନ୍ଧର ଦେବ, ଶ୍ରୀଯୁକ୍ତ ବାବୁ ନୀଳମଣି ବିଦ୍ୟାରତ୍ନ, ଶ୍ରୀଯୁକ୍ତ ବାବୁ ଜଗଦାନନ୍ଦ ଦାସ, ଶ୍ରୀଯୁକ୍ତ ବାବୁ ମଧୁସୂଦନ ମିଶ୍ର, ଶ୍ରୀଯୁକ୍ତ ବାବୁ ଯାଗେଶ ଚନ୍ଦ୍ର ଦାସ, ଶ୍ରୀଯୁକ୍ତ ବାବୁ କାଳୀଚ଼ରଣ ବିଦ୍ୟାଭୂଷଣ, ଶ୍ରୀଯୁକ୍ତ ବାବୁ ଜଗନ୍ନାଥ ପଟ୍ଟନାୟକ, ଶ୍ରୀଯୁକ୍ତ ବାବୁ ଶରତ୍‌କୁମାର ଦାସ ମୋହୋ ସହିତ ବହୁଦିନରୁ ଘନିଷ୍ଠରୂପେ ପରିଚିତ ଏବଂ ସମସ୍ତେ ମୋହୋର ଶ୍ରଦ୍ଧା ଏବଂ ଭକ୍ତିଭାଜନ ଅଟନ୍ତି। ଏହି ବଂଧୁମାନଙ୍କୁ ଏବଂ ସଭାସ୍ଥ ପରିଚିତ ଏବଂ ଅପରିଚିତ ଅନ୍ୟାନ୍ୟ ଅନୁଗ୍ରାହକ ସଭ୍ୟମାନଙ୍କୁ ଅନୁଗ୍ରହପୂର୍ବକ ମୋହୋର ଆନ୍ତରିକ କୃତଜ୍ଞତାପୂର୍ଣ୍ଣ ସମ୍ଭାଷଣ ଜଣାଇବାହେବେ।

(୪) ବାମଣ୍ଡାର ରାଜପଣ୍ଡିତ ଶ୍ରୀଯୁକ୍ତ ବାବୁ ମଧୁସୂଦନ ମିଶ୍ର ମହୋଦୟ ସଂସ୍କୃତଜ୍ଞ ବ୍ୟକ୍ତିମାନଙ୍କ ପ୍ରତି ମୋହୋର ସହାନୁଭୂତି ଥିବା ସମ୍ବନ୍ଧରେ ଯେଉଁ ମନ୍ତବ୍ୟ ବ୍ୟକ୍ତ କରିଅଛନ୍ତି, ସେଥିରେ ଲେଶମାତ୍ର ଅତିରଞ୍ଜନ ନାହିଁ; ମାତ୍ର ଏଥିସକାଶେ ମୁଁ ଶ୍ଳାଘାର୍ହ ନୁହେଁ। ପ୍ରତ୍ୟୁତ ଏ ସମ୍ବନ୍ଧରେ ମୋହୋର ଯାହା କର୍ତ୍ତବ୍ୟ ସାମର୍ଥ୍ୟାଭାବବଶତଃ ତାହାର ଶତାଂଶ ମୁଁ କରିପାରିନାହିଁ। ଏହା ସ୍ମରଣ କରି ନରତିଶୟ ଲଜ୍ଜିତ ହୋଇଥାଏ। ସଂସ୍କୃତଜ୍ଞ ପଣ୍ଡିତମାନେ ପ୍ରତ୍ୟେକ ଆର୍ଯ୍ୟ ଧର୍ମାବଲମ୍ବୀଙ୍କର ପୂଜନୀୟ ଏବଂ ଯେଉଁମାନଙ୍କ ଦେହରେ ଆର୍ଯ୍ୟ ଶୋଣିତ ପ୍ରବାହିତ ହେଉଅଛି, ସଂସ୍କୃତଜ୍ଞ ପଣ୍ଡିତମାନଙ୍କ ପ୍ରତି ଶ୍ରଦ୍ଧାଳୁ . ହେବା ସେମାନଙ୍କ ପକ୍ଷରେ ସ୍ୱଭାବସିଦ୍ଧ ଅଟେ। ଅଦୃଷ୍ଟଖୋଚ଼ିତ ଅଥଚ଼ ଦୁଃଖୀ ପଣ୍ଡିତମାନଙ୍କର ଅବସ୍ଥା ବର୍ତ୍ତମାନ କିପରି ଶୋଚ଼ନୀୟ ହୋଇଅଛି, ତାହା ବୋଲିବା ବାହୁଲ୍ୟ। କେବଳ ନିବୃତ୍ତିମୁଖ ସହାନୁଭୂତି ଦ୍ୱାରା ଦୁଃଖର କୌଣସି ପ୍ରତିକାର ହୁଏ ନାହିଁ। ପଣ୍ଡିତମାନଙ୍କ ପ୍ରତି ଆସ୍ଥା ପ୍ରଦର୍ଶନ ଏବଂ ସାହାଯ୍ୟଦାନ ବିଷୟରେ

ସଂପ୍ରତି ବାମଣ୍ଡା ଓଡ଼ିଶାରେ ଆଦର୍ଶସ୍ଥାନୀୟ ହୋଇଅଛି। ଶ୍ରୀ ସୁଢ଼ଳଦେବାଧିଷ୍ଠିତ ଦେବଗଡ଼ ପଣ୍ଡିତମାନଙ୍କର ପ୍ରଧାନ ଆଶ୍ରୟସ୍ଥଳୀରୂପେ ଉତ୍କଳରେ ଦେଦୀପ୍ୟମାନ। ଏହି ଖ୍ରୀଷ୍ଟୀୟ ଶତାବ୍ଦୀରେ "ଆନନ୍ଦ ଦାମୋଦର ଚମ୍ପୂ" ଏବଂ "କୃଷ୍ଣ ପ୍ରେମ ତରଙ୍ଗିଣୀ" ପ୍ରଭୃତି ଯେଉଁ ଉତ୍କୃଷ୍ଟ ଏବଂ ସ୍ମରଣୀୟ ସଂସ୍କୃତ ଗ୍ରନ୍ଥ ଉତ୍କଳରେ ରଚିତ ହୋଇଅଛି, ସେମାନଙ୍କର ମୁଦ୍ରଣ ଏବଂ ପ୍ରଚାର ସକାଶେ ଉତ୍କଳୀୟ ବରଂ ଭାରତୀୟ ସାହିତ୍ୟିକ ଜଗତ୍ କେବଳ ବାମଣ୍ଡାଠାରେ ଋଣୀ। ଏ ବିଷୟରେ ବାମଣ୍ଡାର ପ୍ରତିଷ୍ଠା ଉତ୍କଳର ସଂକୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ ନୁହେଁ। ସୁବିସ୍ତୃତ ବଙ୍ଗ ଦେଶର ପଣ୍ଡିତମାନେ ମଧ୍ୟ ବାମଣ୍ଡାର ଯଶୋଗାନରେ ମୁକ୍ତକଣ୍ଠ। ଏହି ବାମଣ୍ଡାର ମାଦୃଶ ସାମାନ୍ୟ ବ୍ୟକ୍ତି ସମ୍ବନ୍ଧରେ ଏପରି ଅନୁକୂଳ ମତବାଦ ମୋହୋ ପକ୍ଷରେ ଯେପରି ଗୌରବାବହ, ମୁଁ କୌଣସି ଅଂଶରେ ନିଜକୁ ସେହି ଗୌରବର ଉପଯୁକ୍ତ ମଣିଥିଲେ ବାସ୍ତବ ଆହ୍ଲାଦିତ ହୁଅନ୍ତି।

(୫) ସଭାର କୌଣସି କୌଣସି ସଭ୍ୟ ଉତ୍କଳ ସାହିତ୍ୟ ଉନ୍ନତି କଳ୍ପରେ ମୋହୋର ଯସାମାନ୍ୟ ଉଦ୍ୟମକୁ ସମ୍ୟକ୍ ଅନୁକୂଳ ଦୃଷ୍ଟିରେ ଦେଖି ସେଥି ସମ୍ବନ୍ଧରେ ପ୍ରୀତିବ୍ୟଞ୍ଜକ ମନ୍ତବ୍ୟ ବ୍ୟକ୍ତ କରିଅଛନ୍ତି। ମୁଁ ଏ ମନ୍ତବ୍ୟର କେତେଦୂର ଉପଯୁକ୍ତ ଏ ସମ୍ବନ୍ଧରେ ମୋହୋର ଗଭୀର ସନ୍ଦେହ ଅଛି। ମାତ୍ର ମୋହୋ ଦ୍ୱାରା ଯେବେ ଉତ୍କଳସାହିତ୍ୟର କଣା ମାତ୍ର ଉନ୍ନତି ହୋଇଥାଏ, ସେଥିର ମୂଳୀଭୂତ କାରଣ ବାମଣ୍ଡା, ଅଥବା ବାମଣ୍ଡାର ପରମ ମାନନୀୟ ଅଧୀଶ୍ୱର ମହାରାଜ ସୁଢ଼ଳଦେବ ଅଟନ୍ତି। ଓଡ଼ିଶା ସାହିତ୍ୟ ପ୍ରତି ଆବାଲ୍ୟ ମୋହୋର ପ୍ରଗାଢ଼ ଅନୁରାଗ ଥିଲା। ଅତି ଅଳ୍ପ ବୟସରୁ ମୁଁ ସେହି ସାହିତ୍ୟର ଅନୁଶୀଳନରେ ବ୍ରତୀ ହୋଇଥିଲି। ୨-୩ ବର୍ଷ ପରେ ନାନା କାରଣରୁ ବିଶେଷତଃ ସାହିତ୍ୟିକ ସହାନୁଭୂତିର ଅଭାବ ହେତୁରୁ ଉତ୍କଳ ସାହିତ୍ୟର ଚର୍ଚ୍ଚା ମୁଁ ପ୍ରାୟ ପରିତ୍ୟାଗ କରିଥିଲି ଏବଂ ପ୍ରାୟ ୮-୧୦ ବର୍ଷ କାଳ ସେ ବିଷୟରେ ସଂପୂର୍ଣ୍ଣ ଉଦାସୀନ ଥିଲି। ବିଦ୍ୟୋତ୍ସାହୀପ୍ରବର ଶ୍ରୀଯୁକ୍ତ ସୁଢ଼ଳଦେବଙ୍କ ସହିତ ମୋହୋର ପୂର୍ବରୁ ପରିଚୟ ହୋଇଥିଲେ ମୋହୋର ଜୀବନର ଉତ୍କୃଷ୍ଟତମ ଅଂଶ ଏପରି ବନ୍ଧ୍ୟ ହୋଇନଥାନ୍ତା। ପୂର୍ବୋକ୍ତ ୮-୧୦ ବର୍ଷ ପରେ ମହାରାଜା ସୁଢ଼ଳଦେବ ସ୍ୱତଃପ୍ରବୃତ୍ତ ହୋଇ ପତ୍ରଦ୍ୱାରା ମୋତେ ପ୍ରୋତ୍ସାହିତ ଏବଂ ମୋହୋର ନିର୍ବାଣପ୍ରାୟ ଉତ୍କଳ ସାହିତ୍ୟାନୁରାଗ ସନ୍ଧୁକ୍ଷିତ କରାଇଦେଲେ ଏବଂ ଅଳ୍ପ ଦିନରେ ଦେବଗଡ଼ ଯିବା ସକାଶେ ମୋତେ ଆମନ୍ତ୍ରଣ ପତ୍ର ପ୍ରେରଣ କଲେ। ସେହି ଆଦେଶାନୁଯାୟୀ ମୁଁ ଦେବଗଡ଼ରେ ଉପସ୍ଥିତ ହୋଇ ମହାରାଜାଙ୍କର ସାକ୍ଷାତ୍କାର ଲାଭ କଲି ଏବଂ ତଦ୍ୱାରା ମୋହୋର ସାହିତ୍ୟିକ ଜୀବନରେ ଯୁଗାନ୍ତର ପ୍ରବର୍ତ୍ତିତ ହେଲା। ବିବିଧ ଦାୟିତ୍ୱପୂର୍ଣ୍ଣ ରାଜପଦ, ସେଥିସଙ୍ଗେ ସଂସ୍କୃତ ବିଦ୍ୟାରେ ଅସାଧାରଣ ପାଣ୍ଡିତ୍ୟ ଏବଂ ସେଥିସଙ୍ଗେ ପୁଣି ଉତ୍କଳ ସାହିତ୍ୟ ଚର୍ଚ୍ଚା ପରସ୍ପର ବିରୋଧୀବତ୍ ପ୍ରତୀୟମାନ ଏହି ଗୁଣ ଏବଂ କାର୍ଯ୍ୟମାନଙ୍କର ଅଦୃଷ୍ଟପୂର୍ବ ସମବାୟ ମୁଁ ସର୍ବପ୍ରଥମେ ଦେବଗଡ଼ରେ ଦେଖିଲି। ଏହି ସମୟରୁ ବାମଣ୍ଡା ସହିତ ମୋହୋର ସଂପର୍କ କ୍ରମଶଃ ଘନିଷ୍ଠ ହେବାକୁ ଲାଗିଲା ଏବଂ ମାନନୀୟ ମହାରାଜାଙ୍କର ଆମନ୍ତ୍ରଣମତେ ମୁଁ ଆହୁରି ଦୁଇଥର ବାମଣ୍ଡା ଯାଇ ବାମଣ୍ଡାର କେତେଗୁଡ଼ିଏ ଲବ୍ଧପ୍ରତିଷ୍ଠ ବ୍ୟକ୍ତିଙ୍କ ସହିତ ପରିଚିତ ଏବଂ ବଂଧୁତା ସୂତ୍ରରେ ଆବଦ୍ଧ ହେଲି। ବୋଲିବା ବାହୁଲ୍ୟ ଯେ, ବାମଣ୍ଡାର ଔଦାର୍ଯ୍ୟ ମୁଦ୍ରା ଆଜୀବନ ମୋହୋର ହୃଦୟରେ ମୁଦ୍ରିତ ରହିବ ଏବଂ ମୋହର ଓ ଆତ୍ମୀୟ-ବର୍ଗଙ୍କ ସମ୍ବନ୍ଧରେ ବାମଣ୍ଡା ଶବ୍ଦ ସର୍ବଦା ପ୍ରୀତିକର ଅନୁସ୍ମୃତିର ଉଦ୍‌ବୋଧକ ହେବ।

ଉପସଂହାରରେ ମୋହୋର ନିବେଦନ ଏହି ଯେ; ଯଦିଚ ସଭାରେ ଶ୍ରୀ ମହାରାଜ ସୁଢ଼ଳଦେବ ସମ୍ୟକ୍ ପ୍ରତିନିହିତ ହୋଇଥିଲେ ତଥାଚ୍ ତାହାଙ୍କର ଶୁଭାଧିଷ୍ଠାନ ବିରହିତ ହୋଇଥିବାରୁ ସଭାର ଏହି ଅଭିନନ୍ଦନ ଆଦରଣୀୟ ହୋଇ ସୁଦ୍ଧା ମୋହୋ ପ୍ରତି ସମଧିକ ଆହ୍ଲାଦପ୍ରଦ ହୋଇନାହିଁ। ବରଂ ମହାରାଜାଙ୍କର ଦାରୁଣ ପୀଡ଼ାର ସ୍ମୃତିକୁ ଉଦ୍ଦୀପ୍ତ କରାଇ ବିଷାଦ କାଳିମାରେ ହୃଦୟକୁ ଅଧିକତର ମ୍ଳାନ କରାଇଅଛି। ଦୟାମୟ ଜଗଦୀଶ୍ୱରଙ୍କଠାରେ ମୋହୋର ସତତ ପ୍ରାର୍ଥନା ଏହି ଯେ ମହାରାଜ ଶୀଘ୍ର ରୋଗମୁକ୍ତ ହେଉନ୍ତୁ ଏବଂ ତାହାଙ୍କର ଆରୋଗ୍ୟର ଅମୃତାୟମାନ ସମ୍ବାଦ ବିଷଣ୍ଣ ଉତ୍କଳବାସୀଙ୍କୁ ହର୍ଷୋତ୍‌ଫୁଲ୍ଲ କରୁ।"

କଟକ ବଶମ୍ବଦ

ଶ୍ରୀ ରାଧାନାଥ ରାୟ

## ସାହିତ୍ୟ-ସେବା ଓ ଗଣସେବା . . .

### [ ପୁତ୍ର ଶଶିଭୂଷଣଙ୍କ ପ୍ରତି ଉପଦେଶ ]

"ସାହିତ୍ୟ-ସେବା ଓ ଗଣସେବା ଏ ଉଭୟ ମଧ୍ୟରେ ଗଣସେବା ହିଁ ସର୍ବଶ୍ରେଷ୍ଠ। ସାହିତ୍ୟ ସେବା କେବଳ ଶିକ୍ଷିତମାନଙ୍କ ସକାଶେ। ଗଣସେବା ଓ ଜୀବ ମାତ୍ରର ସେବାଦ୍ୱାରା ହୃଦୟ ପ୍ରଶସ୍ତ ହେଉଥାଏ। ବିଧାତା ଆମ୍ଭମାନଙ୍କୁ ସଂସାରରେ କାହିଁକି ଜନ୍ମ ଦେଇଅଛନ୍ତି, ଏତିକି ଭଲଭାବରେ ବୁଝିବାକୁ ହେବ। କେବଳ ପରିବାର ପ୍ରତିପାଳନ ଏବଂ ସ୍ୱ-ସୁଖ ବିଧାନ ଜନ୍ମଗ୍ରହଣର ଉଦ୍ଦେଶ୍ୟ ନୁହେଁ। ଇଂରାଜୀ କଥା "To live for others, not to live for self" ଏହା ଜୀବନର ସର୍ବବିଧ ଅବସ୍ଥାରେ ସ୍ମରଣ ରଖି କାର୍ଯ୍ୟ କରିବାକୁ ହେବ।

ମିତବ୍ୟୟିତା ପ୍ରକୃତିପ୍ରିୟତାର ନାମାନ୍ତର ମାତ୍ର। ମାତ୍ର ସାଂସାରିକ ମିତବ୍ୟୟିତା ଭିନ୍ନ ପ୍ରକାର। ସାଂସାରିକ ମିତବ୍ୟୟିତା ଭଲ, ମାତ୍ର ତହିଁରେ ହୃଦୟବତ୍ତା ନଥାଏ ଏବଂ ଅନେକ ସମୟରେ ଏହି ମିତବ୍ୟୟିତା ସ୍ୱାର୍ଥପରତାର ନାମାନ୍ତର ପ୍ରତୀୟମାନ ହୋଇଥାଏ।

ପୁଲିସ୍, ମୁସଲ୍‌ମାନ୍ ଓ ଖ୍ରୀଷ୍ଟିୟାନ୍ ଏମାନଙ୍କ ସହିତ ଘନିଷ୍ଠତା ନଥାଉ ପଛକେ ସର୍ବଦା ସଦ୍ଭାବ ରଖିଥିବ। ମୁସଲମାନ୍ ଓ ଖ୍ରୀଷ୍ଟିୟାନ୍‌ଙ୍କୁ ଅନେକ ହିନ୍ଦୁ ଘୃଣା ଚକ୍ଷୁରେ ଦେଖିଥାଆନ୍ତି। ମାତ୍ର ସଂସାରରେ ସମସ୍ତ ବିନିମୟପ୍ରସୂତ। ସ୍ନେହ ଓ ଶ୍ରଦ୍ଧା ଦାନ କଲେ ବିନିମୟରେ ସ୍ନେହ ଓ ଶ୍ରଦ୍ଧା ଲାଭ ଏବଂ ହିଂସା ଓ ଘୃଣା ଦାନକଲେ ବିନିମୟରେ ତାହା ଲାଭ ଅବଶ୍ୟମ୍ଭାବୀ। ଏତିକି ବିଶେଷ ଭାବରେ ସ୍ମରଣ ରଖିବା ଅବଶ୍ୟ କର୍ତ୍ତବ୍ୟ।

କଟକର ପାନ ଦୋକାନ, ତାଜିଆ, ଦୁର୍ଗାପୂଜା, ଗଣେଶ ପୂଜା ପ୍ରଭୃତିର ଶୋଭାଯାତ୍ରାଗୁଡ଼ିକ ଆପଦପୂର୍ଣ୍ଣ ସ୍ଥାନ। ଯେତେଦୂର ସମ୍ଭବ ଏ ସମସ୍ତରୁ ଦୂରରେ ରହିବା ଉଚିତ।

ଦୁଇଶହ ଟଙ୍କାରୁ କମ୍ ମୂଲ୍ୟର ଦ୍ରବ୍ୟ କିମ୍ବା ଟଙ୍କା ଚୋରି ହେଲେ ହଠାତ୍ ପୁଲିସ୍‌ରେ ସମ୍ବାଦ ଦେବ ନାହିଁ।

ମୃତ୍ୟୁ ଉତ୍ତାରୁ ଶ୍ରାଦ୍ଧାଦିରେ ଅତିରିକ୍ତ ଅର୍ଥବ୍ୟୟ କଦାଚ୍ କରିବ ନାହିଁ। ଅନେକ ଲୋକ ଉପଦେଶ ଦିଅନ୍ତି, ଶ୍ରାଦ୍ଧାଦିରେ ବେଶି ବ୍ୟୟ କଲେ ପାରଲୌକିକ ସଦ୍‌ଗତି ସୁନିଶ୍ଚିତ; ମାତ୍ର ଏହା ଅଳୀକ। ସଂସ୍କୃତରେ ଗୋଟିଏ କଥା ଅଛି– 'ଏକ ଏବ ସୁହୃଦ୍‌ଧର୍ମୋ ନିଧନେଽପ୍ୟ ନୁଯାତି ଯଃ।' ମରଣ ଉତ୍ତାରୁ କେବଳ ଧର୍ମ ହିଁ ସଙ୍ଗରେ ଯାଇଥାଏ; ଏଣୁ ଧର୍ମ ହିଁ ପ୍ରକୃତ ସୁହୃତ୍। ଏହି ଧର୍ମ ହିଁ ପାରଲୌକିକ ସଦ୍‌ଗତି ବିଧାନରେ କ୍ଷମ। ମରିବା ଉତ୍ତାରୁ କେବଳ ସ୍ୱଜାତି ସ୍କନ୍ଧରେ ଶ୍ମଶାନକୁ ଯିବାରେ ଗୌରବ ନାହିଁ। ଅନ୍ତ୍ୟଜ ଜାତି ଶବ ବହନ କଲେ ମଧ୍ୟ ନିଜ ଧର୍ମ ଫଳରୁ ପାରଲୌକିକ ସଦ୍‌ଗତି ଲାଭ ହୋଇଥାଏ। ସମସ୍ତେ ବିଧାତାଙ୍କର ପୁତ୍ର, ଏଣୁ କୌଣସି ଅନ୍ତ୍ୟଜ ଜାତିକୁ ଘୃଣା କରିବା ମୂର୍ଖତାର କାର୍ଯ୍ୟ।

ଆଜି ଯାହା କରିପାରିବ, କାଲି ସକାଶେ ପକାଇ ରଖିବ ନାହିଁ। ଯାହା ନିଜେ କରିପାରିବ, ତାହା ସକାଶେ ଅନ୍ୟକୁ ପରିଶ୍ରମ କରାଇ କ୍ଲେଶ ଦେବ ନାହିଁ। ଯେଉଁ ବସ୍ତୁର ପ୍ରୟୋଜନ ନାହିଁ, ତାହା ଶସ୍ତା ବୋଲି କିଣିବ ନାହିଁ। କିଣିଲେ ତୁମ୍ଭ ପକ୍ଷରେ ତାହା ମହାର୍ଘ ହେବ।

କ୍ଷୁଧା, ତୃଷା ଓ ଶୀତ ଆମ୍ଭମାନଙ୍କୁ ଯେଉଁ କଷ୍ଟ ଦେଇଥାଏ, ଅହଙ୍କାର ତଦପେକ୍ଷା ଅଧିକ। କମ୍ ଆହାର କଲି ବୋଲି କେବେହେଁ ଅନୁତାପ କରିବ ନାହିଁ।

କ୍ରୋଧ ହେଲେ ପୁନଶ୍ଚ କଥା କହିବାବେଳେ ୧୦ ଗଣନା କରି କଥା କହିବ– ଅଧିକ କ୍ରୋଧ ହେଲେ ୧୦୦ ଗଣନା କରି କଥା କହିବ।

□ □ □

### ୨୪।୩।୦୮ ରେ ପାଲଲହଡାରେ ଅନୁଷ୍ଠିତ ଅଭ୍ୟର୍ଥନା ସଭାରେ ରାଧାନାଥଙ୍କ ଉତ୍ତର –

"ମାନନୀୟ ଶ୍ରୀ ମହାରାଜ ଏବଂ ସଭ୍ୟବୃନ୍ଦ!

ଲହଡ଼ାରେ ମୋହୋର ଅଭ୍ୟର୍ଥନା ସମ୍ବନ୍ଧରେ ଯେପରି ଅନୁଷ୍ଠାନ ହୋଇଅଛି, ମୁଁ ତାହାର ସମ୍ପୂର୍ଣ୍ଣ ଅଯୋଗ୍ୟ। ମୁଁ ଅନ୍ତରର ସହିତ କହୁଅଛି, ଏହି ଅଭ୍ୟର୍ଥନା ଦ୍ୱାରା ମୁଁ ନିଜର ଅକିଞ୍ଚିତ୍-କରଣ ତୀବ୍ରରୂପେ ଅନୁଭବ କରି ନିତାନ୍ତ ସଙ୍କୁଚିତ ହେଉଅଛି। ସେ ଯାହା ହେଉ, ଲହଡ଼ାର ଏହି ଅସାଧାରଣ ସହୃଦୟତା ଏବଂ ଉଦାରତା ସକାଶେ ମୁଁ ଲହଡ଼ାଠାରେ ଚିରଋଣୀ ଏବଂ ଚିରକୃତଜ୍ଞ ହୋଇ ରହିଲି। ଏ ଯାତ୍ରାରେ ଲହଡ଼ା ଆଗମନ ମୋହୋର ସଙ୍କଳ୍ପର ଅଂଶୀଭୂତ ନଥିଲା। ମାତ୍ର ମହାରାଜା ମହୋଦୟ

ସ୍ୱତଃପ୍ରବୃତ୍ତ ହୋଇ ମୋତେ ପୁନଃ ପୁନଃ ନିମନ୍ତ୍ରଣ କରିଥିଲେ ଏବଂ ମୋତେ ଆସିବା ପାଇଁ ନିଜ ଗଡ଼ରୁ ସ୍ୱୟଂ ଅନେକ ଦୂର ଅଗ୍ରସର ହୋଇଥିଲେ। ମୋହୋର ଭଗ୍ନସ୍ୱାସ୍ଥ୍ୟ ପ୍ରତି ସେ ଯେପରି ଆଶାତୀତ ଆସ୍ଥା ଦେଖାଇଅଛନ୍ତି, ତାହା ପ୍ରାୟ ଅତୁଳନୀୟ। ମାଲ୍ୟଗିରି ଶିଖରରେ ମୁଁ ବାର ଦିନ ଅବସ୍ଥାନ କରି ଯେପରି ସ୍ୱଚ୍ଛନ୍ଦରେ ଥିଲି, ତାହା ଆଜୀବନ ବିସ୍ମୃତ ହେବିନାହିଁ। ମାଲ୍ୟଗିରି ଓଡ଼ିଶାରେ ସର୍ବୋଚ୍ଚ ପର୍ବତ, ମାତ୍ର ଯେପରି ଦେଖିଲି, ଲହଡ଼ା ଅଧୀଶ୍ୱରଙ୍କ ହୃଦୟର ଉଚ୍ଚତା ମାଲ୍ୟଗିରିର ଉଚ୍ଚତା ଅପେକ୍ଷା କୌଣସି ଅଂଶରେ ହୀନକଳ୍ପ ନୁହେଁ। ପୂର୍ବେ ମୁଁ ଲହଡ଼ାର ସ୍ୱର୍ଗୀୟ ମହାରାଜା ମୁନିପାଳ ମହୋଦୟଙ୍କ ସହିତ ପରିଚିତ ହୋଇ ଯେପରି ପ୍ରୀତ ହୋଇଥିଲି ଏ ଆଗମନରେ ସେହି ପ୍ରୀତି ବହୁଗୁଣରେ ବର୍ଦ୍ଧିତ ହୋଇଅଛି। ଭଗବାନ୍‌ଙ୍କଠାରେ ମୁଁ ପ୍ରାର୍ଥନା କରୁଅଛି, ଲହଡ଼ା ମହାରାଜା ଗଣେଶ୍ୱର ପାଳ ମହୋଦୟଙ୍କ ପରି ମହାନୁଭବ ରାଜାଙ୍କ ଶାସନାଧୀନରେ ଥାଇ ଉତ୍ତରୋତ୍ତର ସର୍ବାଙ୍ଗୀନ ଉନ୍ନତି ଭାଜନ ହେଉ।''

□ □ □

ଶ୍ରୀ ଶରଚ୍ଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟଙ୍କ ଦ୍ୱାରା ବିରଚିତ କୃଷ୍ଣପ୍ରେମ ତରଙ୍ଗିଣୀ ରାୟ ପ୍ରେସ୍ (କଟକ)ରୁ ୧୮୯୬ ମସିହାରେ ପ୍ରକାଶିତ ଓ ବାମଣ୍ଡାର ମହାରାଜା ଶ୍ରୀ ବାସୁଦେବ ସୁଢ଼ଳଦେବଙ୍କୁ ଉତ୍ସର୍ଗୀକୃତ। ଏହା ସମ୍ବନ୍ଧରେ ରାଧାନାଥଙ୍କ ମନ୍ତବ୍ୟ।

## ପରିଚାୟିକା

'କୃଷ୍ଣପ୍ରେମ ତରଙ୍ଗିଣୀ' ଭକ୍ତକବି ଶ୍ରୀ ଜୟଦେବ ଗୋସ୍ୱାମୀଙ୍କର ଶ୍ରୀଗୀତଗୋବିନ୍ଦର ଅନୁକରଣରେ ରଚିତ ହୋଇଅଛି। ଗ୍ରନ୍ଥକାର ଶ୍ରୀ ଶରଚ୍ଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ ମହାଶୟ ମୋହୋର ଜଣେ ଘନିଷ୍ଠ ବନ୍ଧୁ ଥିବାରୁ ଏବଂ ତାହାଙ୍କ ସହିତ ସମୟସମୟରେ ସାକ୍ଷାତ୍‌କାର ଲାଭର ସୁବିଧା ଘଟିବାରୁ ରଚନାର ଆରମ୍ଭରୁ ସମାପ୍ତି ପର୍ଯ୍ୟନ୍ତ ମୁଁ ଏହି ପୁସ୍ତିକା ଅଂଶତଃ ଏବଂ ସମଷ୍ଟିରେ ଅନେକ ଥର ଶୁଣିଅଛି ଏବଂ ପୁନଃ ପୁନଃ ଆଲୋଚନା ମଧ୍ୟ କରିଅଛି। ମୋହ ବିବେଚନାରେ ଏହା ଅପେକ୍ଷା ଗୀତଗୋବିନ୍ଦର ଉତ୍କୃଷ୍ଟତର ଅନୁକୃତି ହେବାର ପ୍ରାୟ ଅସମ୍ଭବ। ବିଶେଷତଃ ଗୀତାଂଶରେ ଅନୁକୃତିର ରଚନା ଏମନ୍ତ ମଧୁର ଏବଂ ଲଳିତ ହୋଇଅଛି ଯେ ମୂଳ ସହିତ ତାହାର ପ୍ରଭେଦ ବାରିବାର ସହଜ କଥା ନୁହେ। ଏହି ସାଧୁ ଉଦ୍ୟମ ସକାଶ ବନ୍ଦ୍ୟୋପାଧ୍ୟାୟ ମହୋଦୟ ସାଧାରଣର ଅଭିନନ୍ଦନାର୍ହ ଏବଂ ଉତ୍ସାହାର୍ହ ହୋଇ ଅଛନ୍ତି। ତାହାଙ୍କ ଅପେକ୍ଷା ସଂସ୍କୃତରେ ଅଧିକତର ବ୍ୟୁତ୍ପନ୍ନ ଲୋକ ଓଡ଼ିଶାରେ ଅନେକ ଅଛନ୍ତି ସତ୍ୟ, ମାତ୍ର ପାଣ୍ଡିତ୍ୟ ଏବଂ ଶକ୍ତି ଏ ଦୁହେଁ ସ୍ୱତନ୍ତ୍ର ପଦାର୍ଥ। ଶରଚ୍ଚନ୍ଦ୍ରଙ୍କର ଅସାଧାରଣ ପ୍ରତିଭା ଥିବାରୁ ସେ ଏପରି ଦୁରୂହ ଉଦ୍ୟମରେ ପ୍ରବୃତ୍ତ ହୋଇ ଉଦ୍ୟମାନୁରୂପ ସଫଳତା ଲାଭ କରିଅଛନ୍ତି।

'କୃଷ୍ଣପ୍ରେମ ତରଙ୍ଗିଣୀ' ସଂସ୍କୃତରେ ରଚିତ। ମୋହୋର ଏହା ଦୃଢ଼ବିଶ୍ୱାସ, ଏହାର ସୁଖ୍ୟାତି କେବଳ ଓଡ଼ିଶାର ସଂକୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ ରହିବ ନାହିଁ। ମାତ୍ର ଜଣେ ଉତ୍କଳବାସୀଙ୍କ କର୍ତ୍ତୃକ ଏହା ରଚିତ ହୋଇଥିବାରୁ ଏହାଦ୍ୱାରା ଓଡ଼ିଶ୍ୟା ଭାରତବର୍ଷର ଅନ୍ୟାନ୍ୟ ପ୍ରଦେଶମାନଙ୍କରେ ପ୍ରତିଷ୍ଠା ଲାଭ କରିବ।

ମୋହୋର କ୍ଷୁଦ୍ର ମତରେ 'କୃଷ୍ଣପ୍ରେମ ତରଙ୍ଗିଣୀ' କି ବୈଷ୍ଣବ କି ସାହିତ୍ୟ-ରସିକ ଉଭୟଙ୍କ କଣ୍ଠାଭରଣ ହେବାର ଯୋଗ୍ୟ। ସହୃଦୟ ପାଠକଙ୍କଠାରେ ମୋହୋର ବିନୀତ ଅନୁରୋଧ ଏହି ଯେ 'କୃଷ୍ଣପ୍ରେମ ତରଙ୍ଗିଣୀ' ଆଦ୍ୟୋପାନ୍ତ ପାଠକରି ସେଥିର ଉତ୍କର୍ଷ ସମ୍ବନ୍ଧରେ ନିଜ ମତ ସ୍ଥିର କରିବେ।

'କୃଷ୍ଣପ୍ରେମ ତରଙ୍ଗିଣୀ' ଦୋଷ-ବିବର୍ଜିତ ନୁହେ ଏବଂ ମର୍ତ୍ତ୍ୟଲୋକରେ ଅବଧି କୌଣସି ପୁସ୍ତକ ଦୋଷ-ବିବର୍ଜିତ ହୋଇ ରଚିତ ହୋଇନାହିଁ– ଏହା ବୋଲିବାର ବାହୁଲ୍ୟମାତ୍ର। ଅପକର୍ଷ ଅପେକ୍ଷା ଉତ୍କର୍ଷର ଭାଗ ଅଧିକ ହେଲେ ରଚନା ଉପାଦେୟ ବୋଲି ଗୃହୀତ ହୁଏ। ମୁଁ ସାହସପୂର୍ବକ କହିପାରେଁ ଯେ ପ୍ରତ୍ୟେକ ନିରପେକ୍ଷ ପରୀକ୍ଷକଙ୍କ ନିକଟରେ 'କୃଷ୍ଣପ୍ରେମ ତରଙ୍ଗିଣୀ' ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିବ।

ଗ୍ରନ୍ଥକାର କଟକଜିଲ୍ଲା ଅନ୍ତର୍ଗତ ମହାଗ୍ରାମ ନିବାସୀ ଅଟନ୍ତି। ଏହାଙ୍କର ପତ୍ନୀଙ୍କ ନାମ ଶ୍ରୀମତୀ ଅନ୍ନପୂର୍ଣ୍ଣା ଦେବୀ। ଗ୍ରନ୍ଥର କୌଣସି କୌଣସି ସ୍ଥାନରେ ଅନ୍ନପୂର୍ଣ୍ଣାଙ୍କର ଉଲ୍ଲେଖ ଥିବାରୁ ଆବଶ୍ୟକବୋଧରେ ଏଠାରେ ତାହାଙ୍କର ପରିଚୟ ଦିଆଗଲା। ନାନାଦେଶୀୟ କବିମାନେ ସ୍ୱରଚିତ କାବ୍ୟରେ ପ୍ରସଙ୍ଗତଃ ଅଥବା ଅନୁସଙ୍ଗତଃ ନିଜ ନିଜ ପତ୍ନୀଙ୍କର ଉଲ୍ଲେଖ କରିଥିବାର ଦେଖାଯାଏ। ଓଡ଼ିଶାରେ ମଧ୍ୟ ଏପରି ଦୃଷ୍ଟାନ୍ତର ଅଭାବ ନାହିଁ। ବିଶେଷତଃ ଗ୍ରନ୍ଥକାର

ଯେଉଁ ମହାତ୍ମାଙ୍କର ପଦାଙ୍କ ଅନୁସରଣ କରିଅଛନ୍ତି ସେ ସ୍ୱୟଂ ଶଂସିତ ଦୃଷ୍ଟାନ୍ତାବଳୀର ଅନ୍ତର୍ଗତ।

ଶ୍ରୀ ରାଧାନାଥ ରାୟ

□ □ □

**[ ୧୮୮୬ ମସିହାରେ ରାଧାନାଥ ଏକ ସପ୍ତାହ କାଳ ବାମଣ୍ଡାରେ ଅବସ୍ଥାନ କରୁଥିବା-ବେଳେ ରାଜସଭାରେ ଏହି କବିତାଟି ଲେଖି-ଦେଇଥିଲେ। ରାଜା ସାର୍ ବାସୁଦେବ ସୁଢ଼ଳ ଦେବ ଏହି କବିତାରେ ପ୍ରୀତ ହୋଇ ରାଧାନାଥଙ୍କୁ 'କବିବର' ଉପାଧି ଓ ପାଞ୍ଚଶତ ଟଙ୍କା ପୁରସ୍କାର ଦେଇଥିଲେ। ]**

ଧିକ୍ ତୋଷାମୋଦୀ ଧିକ ଧିକ ତୋର
ଘୃଣିତ ହୀନ ଜୀବନ,
ଧିକ୍ ତୋ ଜୀବିକା ଧିକ ଧିକ ସେହି
ଜୀବିକା-ଜନିତ ଧନ। ୧।
ସତ୍ୟବାଦୀ ହୋଇ କ୍ଷଣେ ବଞ୍ଚିଥିଲେ
ଯୁଗେ ବଞ୍ଚିଥିବାପରି,
ତୋଷାମୋଦୀ ହୋଇ ଅମର ହେ‌
ମରିଯିବା ସଙ୍ଗେ ସରି। ୨।
ଲାଗୁଅଛି ସ୍ୱାଦୁ ଖୋସାମୋଦୀ ବାଣୀ
ସତ ସରପୁଳି ପରା,
ସାବଧାନ ସେହି ପୁଳିରେ ହୋଇଛି
କପଟ-ଜହର ଭରା। ୩।
କହୁଅଛ ସ୍ତବେ ଛାମୁ କାର୍ଯ୍ୟ ଲାଗି
ସମର୍ପି ପାରଇ ପ୍ରାଣ,
ନିଜ କାର୍ଯ୍ୟ ହେତୁ ସମୟ ଆସିଲେ
ନାଶିପାରେଁ ତୁମ୍ଭ ପ୍ରାଣ। ୪।
ତୁମ୍ଭ ବିପକ୍ଷଙ୍କ ନିନ୍ଦାକଥା କହି
ମୋଦ ଜନ୍ମାଏ ଯେ ମନେ,
ଜାଣିଥାଅ ସେହି ନିଶ୍ଚୟଟି ସେହି
ନିନ୍ଦୁକବୃନ୍ଦରୁ ଜଣେ। ୫।

□ □ □

**[ ବଙ୍ଗଳା କବିତାବଳୀର ପ୍ରଥମ ଭାଗରେ ରାଧାନାଥ ଉତ୍କଳୀୟ କବି ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ପ୍ରଭୃତିଙ୍କ ସମ୍ବନ୍ଧରେ କବିତାମାନ ଲେଖିଥିଲେ। ଉତ୍କଳୀୟ କବି ଓ ସେମାନଙ୍କ ରଚ୍ନାକୁ ବଙ୍ଗଦେଶରେ ପରିଚିତ କରାଇବା କବିଙ୍କର ଲକ୍ଷ୍ୟ ଥିଲା। ]**

**ବଙ୍ଗଳା-କବିତାବଳୀର ପ୍ରଥମଭାଗରେ ପ୍ରକାଶିତ।**

**( କୋଟିବ୍ରହ୍ମାଣ୍ଡସୁନ୍ଦରୀ )**

କୋଟିବ୍ରହ୍ମାଣ୍ଡସୁନ୍ଦରୀ ସତୀ-କୁଳମଣି!
ପତିପ୍ରାଣା ଧନ୍ୟ ତୁମି ଉତ୍କଳ-ଭୁବନେ,
ଏ ଖଣ୍ଡେ ତୋମାର ତୁଲ୍ୟ କେ ଆଛେ ରମଣୀ!
ସାଧ୍ୱୀ ପୁଣ୍ୟବତୀ ରାମା କହ ବରାଙ୍ଗନେ!
ପତିବ୍ରତା ଧର୍ମ କି ଗୋ ମୂର୍ତ୍ତିମାନ୍ ହୟେ
ଅବତରି ତବ ରୂପେ ଉଦାରଚରିତେ!
ଅପ୍ରତ୍ୟୟୀ ମାନବେରେ ଆସି ଦିଲା କୟେ
ନାଇ ତାହା ସତୀ ଯାହା ନା ପାରେ କରିତେ।
ତାରେ କି ବଲେ ଗୋ ସତୀ ପ୍ରିୟେର ମରଣେ
ହୁତାଶନେ ଅଙ୍ଗ ଦିୟେ ତ୍ୟଜେ ଯେ ଜୀବନ
ମମ ମତେ ଆତ୍ମଘାତୀ କହି ହେନ ଜନେ
କୃତ୍ରିମ ସତୀତ୍ୱ ତାରେ କହେ ମୋର ମନ।
ସୁନ୍ଦରି! ଯେ ଧନ ଛିଲ ତୋମାର ଶରୀରେ
କି ଛାର ତୁଲନେ ତାର୍ ମଣି, ମୁକ୍ତା ହୀରେ।

**( କବିବର ଉପେନ୍ଦ୍ରଭଞ୍ଜ )**

ନୀଳକଣ୍ଠାତ୍ମଜ ଜମକାୟ ଶକ୍ତିଧର,
ତ୍ରିଦଶ ଦଲେର ଶୂର ସେନାନୀ ହଇୟେ,
ବହୁ କଷ୍ଟ ସହିକରି ରଣ ଘୋରତର,
ପାଇଲା ଅକ୍ଷୟ ଯଶଃ ତାରକେ ବଧିୟେ।
ହେ ନୀଳକଣ୍ଠନନ୍ଦନ ନୃପକୁଳଧନ!
ତୁମି ଓ ତେମତି ଶୂର! ସୁକବିମଣ୍ଡଳେ
ହୟେ ଅଗ୍ରଗଣ୍ୟ କବି ନିଜ ବାହୁବଳେ
ନାଶିଲା ଉତ୍କଳନିନ୍ଦା ଉତ୍କଳଭୂଷଣ।
ଧନ୍ୟ ରାଜକବି ତୁମି! ଜନମ ସୁକ୍ଷଣେ
ଗ୍ରହନିଲା ଏ ପ୍ରଦେଶେ ହେ କବିନ୍ଦ୍ରମଣି!
ସୁଯଶସ୍ୱୀ ସୁସମୟେ ସରସ ଲେଖନୀ
ଧରିଲା ଉପେନ୍ଦ୍ର! ମରି ଯେ ଚାରୁ ଭୂଷଣେ
ସାଜାୟେଛ ବୈଦେହୀଶେ ହେ କବିରତନ
ତୋମା ବିନା ସାଧ୍ୟ କାର ସାଜାୟ ଏମନ!

**( ଦୀନକୃଷ୍ଣ ଦାସ )**

ଉତ୍କଳୀୟ ଜୟଦେବ ଦୀନକୃଷ୍ଣ କବି
ସୁଧନ୍ୟ ଭକତ-ଜନ-ଗଣ-ଚୂଡ଼ାମଣି,
ଚିତ୍ରକର! ଚିତ୍ରିୟାଛ ଯେ ସୁଚାରୁ ଛବି
ସ୍ମରିବେ ଏ ଦାସ ତାହା ଦିବସରଜନୀ।
ଦୀନ ତୁମି? ବଲ ତବେ ସୁବର୍ଣ୍ଣବରଣ
କେ ତୋମା ଯୋଗାଲ କାର ନିକଟ ହଇତେ
(ସାମାନ୍ୟ ଶିକ୍ଷକ ନାହି ହବେ ସେଇ ଜନ!)

ଶିଖିଲେ ହେ ଭାଗ୍ୟବାନ୍ ତୁଳିକା ଧରିତେ ।
ଧନହୀନ ତୁମି ଯଦି ହେ କବିକେଶରୀ
କୋଥା ହତେ ଯେଲେ ହେନ ମନୋଜ୍ଞ ଭୂଷଣ ?
କେ ତୋମାରେ ଦିଲେ, ବଲ, ହେନ ସୁରସନ
ହେନ ବୀଣା –ମିଷ୍ଟ ଯେନ ମୁରାରି ବାଂଶରି ?
ପ୍ରସବେ ଯେମତି ପଙ୍କ ଚାରୁ ଶତଦଳ
ତୋମାର ଜନନୀ କବି ! ତେମତି ଉତ୍କଳ ।

( ଅଭିମନ୍ୟୁ କବି )

ବିରାଜେ ଅଗଣ୍ୟ ରତ୍ନ ଧରଣୀ ଉପରେ
କିନ୍ତୁ କେ ଉଜ୍ଜ୍ୱଳ ଯଥା କୋହିନୂର ମଣି ?
ବିକଶେ ଅନେକ ଫୁଲ୍ ସ୍ୱଚ୍ଛ ସରୋବରେ
କେ ଦେୟ ସୁଗନ୍ଧ ଯଥା ସରୋଜିନୀ ଧନୀ ?
ହେ ସୁକବି ଅଭିମନ୍ୟୁ ! ଉତ୍କଳ ଭବନେ
କବିକୁଳଚନ୍ଦ୍ର ତୁମି ଗାଇଲା ସୁସ୍ୱରେ
ସୁକ୍ଷଣେ ବାଜାଯେ ବୀଣା-ପ୍ରେମାନନ୍ଦ ମନେ
ଗାଇଲା ହେ ମହାଗୀତ, ବାଗ୍ଦେବୀର ବରେ
ସୁକଳ ମରାଳ ତୁମି କବିତା ସୁଜଲେ
ସୁକଣ୍ଠ କୋକିଳ ସାଧୁ କାବ୍ୟ-ଉପବନେ,
ରସିକ ମାନସ-ଭୃଙ୍ଗ ମତ୍ତ ଓ କମଲେ
ଉତ୍କଳ ସରସେ ଯାହା ରୋପିଲା ଯତନେ ।
ଆପନ ସୁରସମୟୀ ଲେଖନୀର ବଳେ
କୃତାନ୍ତ-ବିଜୟୀ କବି ! ତୁମି ଏ ଅଞ୍ଚଳେ ।

( ଗୌରୀଶଙ୍କର )

ମାହେନ୍ଦ୍ର ଯୋଗେତେ ଜନ୍ମ ଗ୍ରହିଲ ଉତ୍କଳେ
ହେ ଗୌରୀଶଙ୍କର ! ତୁମି ଧନ୍ୟ ଏ ସଦନେ
ଦେଶହିତୈଷିତାରୂପ କାଞ୍ଚନ-ଶୃଙ୍ଗଳେ
ବଦ୍ଧ ଭ୍ରାତୃଗଣ ଏବେ ତୋମାର ଯତନେ ।
ତ୍ରିଲୋକ ବିଜୟୀ ଯଥା ପାର୍ଥ ଧନୁର୍ଦ୍ଧର
ତୁଷି ଗଙ୍ଗାଧରେ ନିଜ ଉଗ୍ର ତପୋବଳେ
ଲଭିଯେ ଅମୋଘ ଅସ୍ତ୍ର ପାଶୁପତ ଶର
ବିନାଶିଲା ମହାହବେ କାଳକେୟ ଦଳେ
ତୁମି ଓ ତେମତି ଭଦ୍ର ! ଅର୍ଜି ବିଦ୍ୟାଧନ
ପ୍ରବାସେ ବଙ୍ଗ ଭବନେ ବହୁ ଶ୍ରମ କରି
ଉତ୍କଳ ତିମିର ସହ କରିତେଛ ରଣ
ଉତ୍କଳଦୀପିକା-ରୂପ ପାଶୁପତ ଧରି ।
ବିରାଜେ ବାଳେନ୍ଦୁ ଯଥା ଚନ୍ଦ୍ରଚୂଡ଼ ଶିରେ
ତବ ଭାଲେ ଯଶଶ୍ଚନ୍ଦ୍ର ଭାତିବେ ଅଚିରେ ।

□ □ □

## ଗ୍ରାମ୍ୟ ଶ୍ମଶାନ ଦର୍ଶନେ ବିଦେଶ ପ୍ରତ୍ୟାଗତ ମାତୃହୀନର ଉକ୍ତି

[ ବଙ୍ଗଳା କବିତାବଳୀ ଦ୍ୱିତୀୟଭାଗରେ ପ୍ରକାଶିତ । ମହାରାଜ ୰ ବୈକୁଣ୍ଠନାଥ ଦେବଙ୍କ ଆନୁକୂଲ୍ୟରେ କଲିକତାର ଷ୍ଟାନ୍‌ହୋପ୍ (Stanhope) ପ୍ରେସ୍‌ରେ ଏହା ମୁଦ୍ରିତ ହୋଇଥିଲା । ]

ପଡ଼େ ମନେ ଆଜି ମା'ଗୋ ସେଦିନେର କଥା
ଯେଦିନ ଛଡ଼ାଯେ ଖଇ ବାଜାଯେ ବାଜନା
'ରାମ ନାମ ସତ୍ୟ' ବଲି ପ୍ରତିବାସୀ ଦଲେ
ଆନିଲ ଏ ଘୋର ସ୍ଥଲେ ତୋମାୟ ଜନନି !
ଅବୋଧ ଅଜ୍ଞାନ ଆମି ନା ଜାନି କାରଣ,
ସବାର ରୋଦନ ଶୁନି କାଁଦିନୁ ବିକଲେ ।
ଶୁନି ମମ ଆର୍ତ୍ତନାଦ ତାତେର ଜନନୀ
ବଲିଲା ଆମାୟ, ''କେନ କାଁଦିସ୍ ଅବୋଧ ।
ମାସାନ୍ତେ ଜନନୀ ତୋର ଆସିବେ ରେ ଫିରେ ।''
ଶୁନି ସେ ଆଶ୍ୱାସବାଣୀ ଆନନ୍ଦେ ଆମନି
ଚଲିନୁ ତୁଲିତେ ଭୂମି ବଦରୀର ଫଲ
ଆସନ୍ନ ନିବିଡ଼ ଝୋଁପେ, ସହସା ଆକାଶେ
ଉଠିଲ ଧୂମେର ଶିଖା, ଯେ ହୃଦୟ ତବ
ଶମିତ ଦାସେର କ୍ଷୁଧା, ଯେ ଚାରୁ ଆନନେ
ଚୁମ୍ବିତେ ଦାସେରେ, ମାତଃ ! ଆଧ ବୋଲ ଶୁନି
ଅଭାଗାର ମୁହୂର୍ତ୍ତେ ତା ହଲୋ ଭସ୍ମରାଶି !
ଝୋଁପେର ଆଡ଼ାଲେ ଥାକି ହେରିନୁ ସଭଯେ
କରାଳ ଅନଲଶିଖା ବାଲାର୍କ ଲୋହିତ –
ଶତଫଣି ଫଣାମତ ହେଲି ସମୀରଣେ
ବେଡ଼ିଆଛେ ତବକାଯେ, ସେ ଅନଲମାଝେ
ଜନ୍ମେର ମତନ ନିରଖିନୁ ମୁଖ ତବ ।
ଶେଷ ଦୃଷ୍ଟିପାତ ହାୟ ! ଦିଯେ ଏ ସେବକେ
ଭୂତରୂପ ସିନ୍ଧୁ-ନୀରେ ଡୁବିଲେ ଜନନି !
ଫୁରାଲ ଭବେର ଖେଲା, ସ୍ନେହମୟି ! ତବ,
ଫୁରାଲ ଏ ଅଭାଗାର ସୁଖେର ସ୍ୱପନ,
କିନ୍ତୁ ମା ! ତଖନ ଏତ ନା ଭାବିନୁ ମନେ,
ଆସିବେ ମାସାନ୍ତେ ପୁନଃ, ଏଇ ପ୍ରତୀକ୍ଷାୟ
ଖେଲିନୁ ମନେର ସାଧେ ସଙ୍ଗ-ଶିଶୁ-ଦଲେ ।
ଗେଲ ମାସ ତବୁ ମା ! ଆସିଲେ ନା ଫିରେ
ନିରାଶ ହଇଯେ କତ କାଁଦିନୁ ବିଜନେ ।
ମାଝେ ମାଝେ ଏକା ଏସେ ଏ ବିଜନ ସ୍ଥଲେ
ଓଇ ବଟମୂଲେ ବସି ଭସ୍ମରାଶି ହେରି,
ବିଫଲ ନୟନଜଲେ ପ୍ଲାବିତାମ ହୃଦି ।
ଦୀନ ଅନାଥେର ଖେଦ ଦୀନନାଥ ବିନେ

କେହ ନା ଜାନିତ, ଆଉ ନିଜ ନିଜ କାଜେ
ବ୍ୟସ୍ତ ସବେ ଜାନିତ ନା ଅଭାଗାର ଖେଦ।
ତୁମି ଗେଲେ ଆମିଇ ତ ମରିନୁ ଜନନି!
କାର ବା କି ଗେଲ ବୟେ? କେନ କାଁଦି ଆର?
ଧରେଛେ ବିକଟ ରୋଗ, ଅଳ୍ପ ଦିନ ପରେ
ତବ ବସ ତବ କୋଳେ ସଁପିବେ ଶମନ।
କ୍ରୂର କୁଟୁମ୍ବେର ହିଂସା, ରୋଗ ଚିନ୍ତା ଆଦି,
ଭବ ଧାମେ ଜୀବସ୍ରୋତେ କରେ ଯା ପଙ୍କିଲ,
ଏଡ଼ାଇୟେ ଏ ସବାରେ ତବ ସ୍ନେହ କ୍ରୋଡ଼େ
ଲଭିବ ଆଶ୍ରୟ ଆଶୁ ରୋଗେର ପ୍ରସାଦେ।
ପରେର ଅନିଷ୍ଟ ମାତଃ! ନା ଚିନ୍ତି ସ୍ୱପନେ,
ତବୁ ଓ ଦୁର୍ଜନ ନିଜ ପ୍ରକୃତିର ବଶେ
ସାଧେ ବାଦ ମମ ସନେ, ଜ୍ୱାଲାୟେ ମରଣ।
ପୋଡ଼ା ସଂସାରେର ଛବି ଏତ ଭୟଙ୍କର
ଆଗେ ଯଦି ଏ ସୁତତ୍ତ୍ୱ ଜାନିତାମ ମାତଃ!
ଭ୍ରମିତାମ ପରବାସେ ବିରାଗୀ ହଇୟେ।
କରିଆଛି ବହୁ ପାପ, ପଡ଼ିଲେ ତା ମନେ
ସୁଖଧାମେ ତବ ସହ ମିଲନେର ଆଶ
ଯାୟ ଦୂରେ, କିନ୍ତୁ ମାତଃ! ଏ ଭବେର ମାୟା
ଥାକେ ଯଦି, ତବେ ବିଭୁପଦେ ନିବେଦିବେ
ପରାଧୀନ ଅପରାଧ କ୍ଷମିବେନ ତିନି।
ତୁମି ମା! ଥାକିଲେ ହେଥା ନିଷ୍ପାପ ଜୀବନ
ହଇତ ଦାସେର, ଚିନ୍ତା କ୍ରୂର କୀଟରୂପେ
କାଟିତନା ହୃଦଫୁଲ, ଜନ୍ମିନା ରୋଗ।
ଶିଶୁର ଅଭାବ ବୁଝେ ମାୟେର ମତନ
କେ ଆଛେ ସଂସାରେ ହେନ?
ସେ ଜନନୀ ଯାର ନାଇ,
ହାୟ ସେ ଜନେର ଜୀବନମରଣ,
ସମ୍ପଦ ବିପଦ ତାର ଭବ କାରାଗାର।

## ଜନ୍ମଭୂମି

(ବଙ୍ଗଳା କବିତାବଳୀ ପ୍ରଥମଭାଗ – ୪୧ଶ କବିତା)

[ପ୍ରକାଶସମୟ – ୧୮୬୮, ୧୮ବର୍ଷ ବୟସରେ ଲିଖିତ]

ସୁଧାର କୃପାଣ ଯଥା (ବିମଲ ଦର୍ପଣେ
ତିରସ୍କାରେ ଯାହା ନିଜ ଚାରୁ ଦୀପ୍ତି ବଲେ)
ବ୍ୟବହାରହୀନ ହୟେ, ରହି ଆବରଣେ,
ସମ୍ମାର୍ଜନ ବିନା କ୍ରମେ ପ୍ରାପ୍ତ ହୟ ମଲେ,
ଶୋଚନୀୟ ଦଶା ମାତଃ! ତୋମାର ତେମତି
ହଇୟାଛେ ଏବେ, ତବ ସେ ସୌଭାଗ୍ୟ ସ୍ମରି,
ଶୋକେ ଅଭିଭୂତ ହୟେ, ଆକୁଳ ଏମନି,
ତୋମାର ଏ ଦଶା ହେରି ଇଛା ହୟ ମରି!
କି ନା ଛିଲ ତବ? ସ୍ମରେ କହ ଲୋ ଜନନି!
କି ନା ଛିଲ? ହାୟ ମାତଃ! କୋଥାସେ ସକଲ?
କୋଥା ଏବେ ସେଇ ମୁକ୍ତା, ସ୍ୱର୍ଣ୍ଣ, ହୀରା, ମଣି?
ନନ୍ଦନକାନନ ଯଥା ଲୁଠି ରକ୍ଷଦଲ
ବିନାଶେ ତାହାର ଶୋଭା, ଦୁରନ୍ତ ଯବନ
କରେଛେ ଜନନି! ତବ ସର୍ବସ୍ୱ ହରଣ।

□ □ □

# କବିବର ରାଧାନାଥଙ୍କ ଚିଠିପତ୍ର

ନବ-ଯୁଗର ପ୍ରବର୍ତ୍ତକ କବି ରାଧାନାଥ ଓ କବି ଗଙ୍ଗାଧରଙ୍କ ମଧ୍ୟରେ ଚିଠି-ପତ୍ରର ଆଦାନ ପ୍ରଦାନ ବହୁବର୍ଷଧରି ଚାଲିଥିଲା। ବାଣୀ ଆରାଧନା ଉଭୟଙ୍କୁ କରିଥିଲା ନିକଟତର। ବୟସଗତ ତାରତମ୍ୟ ଦୁଇ ମହାକବିଙ୍କ ମଧ୍ୟରେ ଭାବ-ସଂପର୍କ ପ୍ରତିଷ୍ଠା କ୍ଷେତ୍ରରେ ଆଦୌ ଅନ୍ତରାୟ ସୃଷ୍ଟି କରିପାରି ନଥିଲା। ପ୍ରସ୍ତୁତ ଗ୍ରନ୍ଥାବଳୀରେ ସେହି ଚିଠିଗୁଡ଼ିକ ସ୍ଥାନିତ ହେବା ଏକାନ୍ତ ଯୁକ୍ତିଯୁକ୍ତ।

ପୂର୍ବରୁ କଟକର ଶ୍ରୀଯୁକ୍ତ କୈଳାସ ଚନ୍ଦ୍ର ରାଓଙ୍କ ନିକଟରୁ ଚିଠିଗୁଡ଼ିକୁ ସଂଗ୍ରହ କରିଥିଲେ ବିଶ୍ୱଭାରତୀ ଓଡ଼ିଆ ବିଭାଗର ପୂର୍ବତନ ଅଧ୍ୟାପକ, ବିଶିଷ୍ଟ ଭାଷା-ବିଜ୍ଞାନୀ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ। ସଂପାଦିତ ଚିଠିଗୁଡ଼ିକୁ ସେ ତାଙ୍କର ଗବେଷଣା ପୁସ୍ତକ– 'କବିଲିପି'ରେ ସ୍ଥାନିତ କରିଥିଲେ, ଯାହା ବିଶ୍ୱଭାରତୀଙ୍କ ଦ୍ୱାରା ୧୯୫୭ରେ ପ୍ରକାଶ ପାଇଥିଲା। ସଂଯୋଜିତ ରାଧାନାଥଙ୍କ ଚିଠିଗୁଡ଼ିକ ଡକ୍ଟର ପଟ୍ଟନାୟକ ଓ ତାହାଙ୍କ ଗ୍ରନ୍ଥ 'କବିଲିପି'ର ସୌଜନ୍ୟରୁ ପ୍ରାପ୍ତ।

ଚିଠିଗୁଡ଼ିକର ରଚନା ସମୟ ୧୮୯୨ରୁ ୧୯୦୫ ଓଡ଼ିଶାର ବିଭିନ୍ନ ସ୍ଥାନରୁ ଏସବୁ ଗଙ୍ଗାଧରଙ୍କ ନିକଟକୁ ପ୍ରେରିତ ହୋଇଥିଲା।

ରାଧାନାଥଙ୍କ ଚିଠିଗୁଡିକର ସାହିତ୍ୟିକ ମୂଲ୍ୟ ଅନସ୍ୱୀକାର୍ଯ୍ୟ। ଏଥିରେ କେବଳ ଯେ କବିଙ୍କ ବ୍ୟକ୍ତିଗତ ଜୀବନର ସୁଖ-ଦୁଃଖ, ରୁଚି, ବିଶ୍ୱାସ ଓ ଦର୍ଶନ ପ୍ରତିଫଳିତ ତା ନୁହେଁ, ତତ୍କାଳୀନ ସାହିତ୍ୟିକ ବାତାବରଣର ପରିଚୟ ମଧ୍ୟ ନିହିତ ଅଛି।

ଆଧୁନିକ ଓଡ଼ିଆ ଚିଠି-ସାହିତ୍ୟର ଆଦ୍ୟ-ନିଦର୍ଶନ ରୂପେ ରାଧାନାଥଙ୍କ ଚିଠିଗୁଡ଼ିକୁ ଗ୍ରହଣ କରାଯାଇପାରିବ।

**ପ୍ରକାଶକ**

( ୧ )

ଶ୍ରୀ ହରିଃ ଶରଣମ୍

କଟକ

ତା ୨୫।୪।୧୮୯୨

ସବିନୟ ନିବେଦନମିଦଂ,

ମହାଶୟ, ଅଦ୍ୟ ନିମ୍ନାଙ୍କିତ ପୁସ୍ତକମାନ ଆପଣଙ୍କଠାକୁ ପଠାଇଲି

୧ – ନନ୍ଦିକେଶ୍ୱରୀ – ୧

୨ – ଉଷା – ୧

୩ – ଚନ୍ଦ୍ରଭାଗା -- ୧

୪ – କେଦାରଗୌରୀ -- ୨

ମୋହୋର ଅନୁବାଦିତ ମେଘଦୂତ ଏବଂ ରଚିତ ଅନ୍ୟାନ୍ୟ ପୁସ୍ତକ ବର୍ତ୍ତମାନ ସୁଲଭ ନୁହେଁ। ପୁନର୍ମୁଦ୍ରିତ ହେଲେ ତାହା ପଠାଇବାରେ। ଅନୁଗ୍ରହପୂର୍ବକ ଶ୍ରୀ ବାବୁ ମଦନମୋହନ ପ୍ରଧାନ ମହାଶୟଙ୍କୁ ପୂର୍ବୋକ୍ତ ପୁସ୍ତକମାନ ଦେଖାଇବାହେବେ ଏବଂ ପ୍ରାପ୍ତିର ସମ୍ବାଦ ଲେଖିବା ହେବେ।

ବଶମ୍ବଦ

ଶ୍ରୀ ରାଧାନାଥ ରାୟ

( ୨ )

ଶ୍ରୀ ହରିଃ ଶରଣମ୍

କଟକ

ସବିନୟ ନିବେଦନମିଦଂ, ତା ୩୧।୧।୧୮୯୩

ମହାଶୟ, ଆପଣଙ୍କ ଅନୁଗ୍ରହ ଉପହାର "ଅହଲ୍ୟାସ୍ତବ" ପ୍ରାପ୍ତ ହୋଇ ଆମୂଳଚୂଳ ପାଠକରି ଅତ୍ୟନ୍ତ ପ୍ରୀତ ହେଲି। ଆପଣଙ୍କ ରଚନାଶକ୍ତି ବାସ୍ତବ ପ୍ରଶଂସନୀୟ। ଶାର୍ଦ୍ଦୂଳବିକ୍ରୀଡ଼ିତ ଛନ୍ଦ ଉତ୍କଳ ଭାଷାର ଉପଯୋଗୀ କି ନା ଏ ବିଷୟରେ ମତଭେଦ ହୋଇପାରେ। ମାତ୍ର ସେହି କଠିନ ଛନ୍ଦ ଅବଲମ୍ବନ କରି ସୁଦ୍ଧା ଆପଣ ଆଶାତୀତ କୃତକାର୍ଯ୍ୟତା ଲାଭ କରିଅଛନ୍ତି; ଏହା ମୁଁ ମୁକ୍ତ କଣ୍ଠରେ ବୋଲିବାକୁ ପ୍ରସ୍ତୁତ। ଏକ ଏକ ସ୍ଥାନରେ ଛନ୍ଦ ପତନ ହୋଇଅଛି ସତ୍ୟ, ମାତ୍ର ସେଥି ସକାଶେ ଆପଣଙ୍କୁ ଦାୟୀ କରିବାର ଉଚିତ ନୁହେଁ। ଏପରି ତ୍ରୁଟିମାନ ଏପରି ଆୟାସସାପେକ୍ଷ ଉଦ୍ୟମର ଅବଶ୍ୟମ୍ଭାବୀ ସହଚର।

ଆପଣ ବରପାଲିରେ କି କାର୍ଯ୍ୟ କରନ୍ତି? ଆପଣଙ୍କ ନିବାସ କେଉଁଠାରେ?

ବଶମ୍ବଦ

ଶ୍ରୀ ରାଧାନାଥ ରାୟ

( ୩ )

ଶ୍ରୀ ହରିଃ ଶରଣମ୍

କଟକ

ତା ୧୬।୨।୧୮୯୩

ସବିନୟ ନିବେଦନମିଦଂ,

ମହାଶୟ, ଆପଣଙ୍କ ଅନୁଗ୍ରହ ଲିପି ପାଠକରି ଅତ୍ୟନ୍ତ ଆନନ୍ଦିତ ହେଲି। ଆପଣଙ୍କ ପରି କଷ୍ଟଦଶାଗ୍ରସ୍ତ ହୋଇ ଏପରି ସାହିତ୍ୟରସିକ ହେବାର ସୁଦୃଷ୍ଟାନ୍ତ ସମଗ୍ର ଉତ୍କଳରେ ବୋଧହୁଏ ଦ୍ୱିତୀୟ ନାହିଁ। ଭଗବାନ୍‌ଙ୍କର ଲୀଳା କିଏ ବୁଝିପାରିବ? ସେ ଆପଣଙ୍କୁ ପ୍ରତିଭା ଦେଇ ଏପରି ଅବସ୍ଥାରେ ପକାଇ ଅଛନ୍ତି ଯେ ସେହି ପ୍ରତିଭା ଚରିତାର୍ଥତା ଲାଭ କରିପାରୁନାହିଁ। ମୋହୋର ମଧ୍ୟ ସାହିତ୍ୟ ପ୍ରତି ବହୁଦିନରୁ ଅନୁରାଗ ଥିଲା – ଆର୍ଥିକ ଅବସ୍ଥା ଈଶ୍ୱର ପ୍ରସାଦରୁ ଚଳନୋପଯୋଗୀ ଅଟେ। ମାତ୍ର ଦୁରଦୃଷ୍ଟ ଏପରି ଗୋଟିଏ ପାରିବାରିକ ପୀଡ଼ା ଆଣିଦେଇଅଛି ଯେ ଜୀବନ ବିଡ଼ମ୍ବନାରେ ପରିଣତ ହୋଇଅଛି।

ବଡ଼ପାଲି ରାଜମହୋଦୟ ଆପଣଙ୍କ ପରି ସଦ୍‌ଗୁଣଶାଳୀ ବ୍ୟକ୍ତିଙ୍କୁ ଆଶ୍ରୟ ଦେଇଥିବାର ଜାଣି ତାହାଙ୍କର ଗୁଣଗ୍ରାହକତାକୁ ଶତ ଶତ ଧନ୍ୟବାଦ ଦେଲି।

ବଶମ୍ବଦ

ଶ୍ରୀ ରାଧାନାଥ ରାୟ

( ୪ )

ଶ୍ରୀ ହରିଃ ଶରଣମ୍

କଟକ

ତା ୧୬।୧୦।୧୮୯୩

ସବିନୟ ନିବେଦନମିଦଂ,

ମହାଶୟ, ଆପଣଙ୍କ ପ୍ରେରିତ 'ଇନ୍ଦୁମତୀ' ହସ୍ତଗତ ହୋଇଅଛି। ସେଥିର କେତେକାଂଶ ପାଠ କରି ମୁଁ ଯତ୍ପରୋନାସ୍ତି ପ୍ରୀତି ଲାଭ କରିଅଛି। ଉତ୍କଳଭାରତୀ ବାସ୍ତବିକ ଆପଣଙ୍କ ପ୍ରତି ସୁପ୍ରସନ୍ନା ହୋଇଅଛନ୍ତି। କବିତା ପଢ଼ୁଁ ପଢ଼ୁଁ ଅନେକ ସ୍ଥଳରେ ଆପଣଙ୍କୁ ଧନ୍ୟବାଦ ଦେଇଅଛି।

"ଇନ୍ଦୁମତୀ" ପ୍ରେରଣର ଉଦ୍ଦେଶ୍ୟ ମୁଁ ଅବଧି ଜାଣି ପାରିଲି ନାହିଁ। ସେ ବିଷୟରେ ଆପଣଙ୍କ ପତ୍ର ପାଇଲେ ମୋହୋର ଅଭିମତ ଜଣାଇବି।

ବଶମ୍ବଦ

ଶ୍ରୀ ରାଧାନାଥ ରାୟ

( ୫ )

ଶ୍ରୀ ହରିଃ ଶରଣମ୍

କଟକ

ତା ୮।୧୨।୧୮୯୩

ସବିନୟ ନିବେଦନମିଦଂ,

ପ୍ରିୟତମ ଗଙ୍ଗାଧରବାବୁ, ମୁଁ ୩-୪ ଦିନ ହେଲା ଏଠାରେ ପହଞ୍ଚିଲି। ବକେୟା କାର୍ଯ୍ୟ ଅନେକ ପଡ଼ିଥିବାରୁ ଆପଣଙ୍କ ପାଣ୍ଡୁଲେଖ୍ୟ ସମଗ୍ର ଦେଖିପାରି ନାହିଁ। ଯେତେ ଶୀଘ୍ର ସମ୍ଭବ ତାହା ପ୍ରତିପ୍ରେରଣ କରିବି।

ଅକ୍ଷୟ ବାବୁଙ୍କର ଜଣେ ଆତ୍ମୀୟ ବ୍ୟକ୍ତି ତାହାଙ୍କୁ ସପରିବାର କଟକ ଅଣାଇବା ସକାଶ ନିତାନ୍ତ ଇଚ୍ଛୁକ। ବଡ଼ପାଲିରୁ ବିନିକା ଏବଂ ବିନିକାରୁ କଟକ ପର୍ଯ୍ୟନ୍ତ ଯେତେ ଗାଡ଼ି ଓ ନୌକା ଭଡ଼ା ଲାଗିବ ସେ ସମସ୍ତ ଦେବାକୁ ପ୍ରସ୍ତୁତ। ମାତ୍ର ସେ କହନ୍ତି ଯେ ଅକ୍ଷୟବାବୁ ପ୍ରକୃତିସ୍ଥ ନୁହନ୍ତି, ତାହାଙ୍କ ନିକଟକୁ ଟଙ୍କା ପଠାଇଲେ ତାହା ମାଦକ ସେବନରେ ଅପବ୍ୟୟିତ ହେବ। ତାହାଙ୍କୁ କଟକ ପର୍ଯ୍ୟନ୍ତ ପଠାଇବାରେ ଅନ୍ଦାଜ କେତେଟଙ୍କା ଖରଚ୍ ଲାଗିବ, ଆପଣଙ୍କ ନିକଟକୁ ଟଙ୍କା ପଠାଇଲେ ଆପଣ ସେ ଭାର ଗ୍ରହଣ କରିବାକୁ ସମ୍ମତ କି ନା ଅନୁଗ୍ରହପୂର୍ବକ ଲେଖିବା ହେବେ।

ଅକ୍ଷୟ ବାବୁ ଯେବେ ଆସିବାକୁ ଅସମ୍ମତ ନହୁଅନ୍ତି ତାହାଙ୍କ ସମଭିବ୍ୟାହାରରେ ଜଣେ ବିଶ୍ୱାସୀ ଲୋକ ପଠାଇବାର ଆବଶ୍ୟକ ହେବ; ଏବଂ ପାଥେୟ ସମସ୍ତ ଟଙ୍କା ସେହି ବ୍ୟକ୍ତି ହାତରେ ଗଚ୍ଛିତ କରିବାକୁ ହେବ। ଏ କାର୍ଯ୍ୟ ଆପଣଙ୍କ ସାଧ୍ୟାୟତ୍ତ କି ନା ଅନୁଗ୍ରହପୂର୍ବକ ଲେଖିବାହେବେ। ପୁନର୍ବାର କହୁଅଛି ଯେ ଅକ୍ଷୟବାବୁଙ୍କ ପୂର୍ବୋକ୍ତ ବନ୍ଧୁ ସମସ୍ତ ବ୍ୟୟ ଦେବାକୁ ପ୍ରସ୍ତୁତ। ତାହାଙ୍କ ସହିତ ଯେଉଁ ବିଶ୍ୱାସୀଲୋକ ଦେବାର ଆବଶ୍ୟକ ବୋଧକରିବେ ତାହାର ଖରଚ୍ ମଧ୍ୟ ସେହି ବଂଧୁ ଦେବେ। ଆପଣ ଯେବେ ଏ ଭାର ନେଇପାରନ୍ତି ମୋଟ କେତେ ଟଙ୍କା ଆବଶ୍ୟକ ହେବ ଅନୁଗ୍ରହପୂର୍ବକ ଲେଖିଲେ ଉପକୃତ ହେବି।

ବଶମ୍ବଦ

ଶ୍ରୀ ରାଧାନାଥ ରାୟ

( ୬ )

କଟକ

ତା ୨୨ । । ୧୮୯୪

ମନ୍ତବ୍ୟ

'ଇନ୍ଦୁମତୀ' କାବ୍ୟ ମୁଁ ଆଦ୍ୟୋପାନ୍ତ ପାଠ କରି ଆଶାତୀତ ପ୍ରୀତି ଲାଭ କରିଅଛି । ଏ କାବ୍ୟର କବି ସାମାନ୍ୟ ଶକ୍ତିଶାଳୀ ଲେଖକ ନୁହନ୍ତି । ମୂଳଚରିତ ରଘୁବଂଶରୁ ସଂଗୃହୀତ ହୋଇଥିଲେହେଁ, ଏହାର ଭାବ ଏବଂ ଭାଷା ଦୃଷ୍ଟିରେ ମୁଁ ଏହାକୁ ଅଭିନବ ଏବଂ ଉତ୍କୃଷ୍ଟ କାବ୍ୟ ରୂପେ ଗ୍ରହଣ କରିବାକୁ ଲେଶ ମାତ୍ର କୁଣ୍ଠିତ ହେବି ନାହିଁ । ଗ୍ରନ୍ଥକାର ଏଥିରେ ଅନେକ ନୂତନ ଏବଂ ସୁନ୍ଦର ଭାବ ସନ୍ନିବେଶିତ କରିଅଛନ୍ତି । ଏହାର ଭାଷା ସରଳ, ଅକ୍ଲିଷ୍ଟ ଏବଂ ଶ୍ରୁତିମଧୁର ହୋଇଅଛି । ମୋହୋ ମତରେ 'ଇନ୍ଦୁମତୀ' ସ୍ୱଭାବସୁନ୍ଦରୀ ଉତ୍କଳଭାରତୀଙ୍କର ଅନୁପଯୁକ୍ତ ଭୂଷଣ ନୁହେଁ ।

ଶ୍ରୀ ରାଧାନାଥ ରାୟ

( ୭ )

ଶ୍ରୀ ହରିଃ ଶରଣମ୍

କଟକ

ତା ୨୩ । ୨ । ୧୮୯୪

ସବିନୟ ନିବେଦନମିଦଂ,

ଶ୍ରଦ୍ଧେୟ ମହୋଦୟ, ଅଦ୍ୟ 'ଇନ୍ଦୁମତୀ' ଡାକ ଦ୍ୱାରା ପ୍ରତିପ୍ରେରଣ କଲି । କାବ୍ୟର ଶେଷ ପୃଷ୍ଠାରେ ମୋହୋର ମନ୍ତବ୍ୟ ବ୍ୟକ୍ତ ହୋଇଅଛି ।

ସମ୍ବଲପୁରରୁ ଆସିଲାଦିନୁ ୨-୩ ମାସ ଅବସରର ମୁଖ ଦେଖି ନଥିଲି । ଅପାର୍ଯ୍ୟମାଣରେ ଯେଉଁ ବିଳମ୍ବ ଦୋଷ ଘଟି ଅଛି ତାହା କ୍ଷମା କରିବା ହେବେ ।

ମୋହୋ ବିବେଚ୍ନାରେ 'ଇନ୍ଦୁମତୀ' ପରି ଉତ୍କୃଷ୍ଟ ରଚ୍ନା ମାସିକ ପତ୍ରରେ ପ୍ରକାଶିତ ହେବା ବାଞ୍ଛନୀୟ । ଆପଣ ମୋହୋର ମନ୍ତବ୍ୟର ନକଲ ସହିତ କାବ୍ୟର ପାଣ୍ଡୁଲେଖ୍ୟ ପ୍ରଭା ଅଫିସ୍‌କୁ ପଠାଇପାରନ୍ତି ।

ଅକ୍ଷୟବାବୁ ଏଠାରେ ନିରାପଦରେ ପହୁଞ୍ଚିଅଛନ୍ତି । ତାହାଙ୍କର ବନ୍ଧୁମାନେ ଆପଣଙ୍କର ସୌଜନ୍ୟର ସୁଖ୍ୟାତି ପ୍ରଚାରରେ ମୁକ୍ତକଣ୍ଠ । ପୂଜ୍ୟପାଦ ଶ୍ରୀ ପଣ୍ଡିତ ଲକ୍ଷ୍ମଣ ମିଶ୍ର ମହାଶୟଙ୍କୁ ମୋହୋର ପ୍ରଣାମ ଜଣାଇବା ହେବେ ।

ଆପଣଙ୍କର ସର୍ବାଙ୍ଗୀନ ଶୁଭାକାଙ୍କ୍ଷୀ

ଶ୍ରୀ ରାଧାନାଥ ରାୟ

( ୮ )

ଶ୍ରୀ ହରିଃ ଶରଣମ୍

କଟକ

ତା ୯ । ୬ । ୧୮୯୪

ସବିନୟ ନିବେଦନମିଦଂ,

ମହାଶୟ, ଆପଣଙ୍କ ଅନୁଗ୍ରହ କାର୍ଡ଼ ପାଇ ଆପ୍ୟାୟିତ ହେଲି । ଉତ୍କଳପ୍ରଭାରେ 'ଇନ୍ଦୁମତୀ' ପ୍ରକାଶ ହେବାରୁ ଏ ଅଞ୍ଚଳରେ ଆପଣଙ୍କର ଆଶାନୁରୂପ ପ୍ରତିଷ୍ଠା ହୋଇଅଛି । ଅନେକ ଶିକ୍ଷିତ ଲୋକ ସେହି ରଚ୍ନାର ପ୍ରଶଂସା କରିଅଛନ୍ତି । କେହି କେହି ଆପଣଙ୍କ ଜୀବନ ବୃତ୍ତାନ୍ତ ଜାଣିବା ସକାଶ ଆଗ୍ରହାନ୍ୱିତ ହୋଇ ମୋହୋଠାକୁ ଆସି ଆପଣଙ୍କ ସମ୍ବନ୍ଧରେ ନାନା ପ୍ରଶ୍ନ କରୁଅଛନ୍ତି । ଏଥିରେ ମୁଁ ଯତ୍‌ପରୋନାସ୍ତି ପ୍ରୀତ ହୋଇଅଛି ।

ନୀଳମଣିବାବୁଙ୍କୁ ଆପଣଙ୍କ ସଂକ୍ଷିପ୍ତ ଜୀବନ ବୃତ୍ତାନ୍ତ ପ୍ରକାଶ କରିବା ସକାଶ ଅନୁରୋଧ କରିଅଛି । ସେ ସ୍ୱତଃ ଆପଣଙ୍କ ରଚ୍ନାର ପକ୍ଷପାତୀ । ମୁଁ ଆଶାକରେ ସେ ଶୀଘ୍ର ମୋହୋ ଅନୁରୋଧ ପାଳନ କରିବେ ।

'ଇନ୍ଦୁମତୀ' ସମ୍ବନ୍ଧରେ ମୁଁ ଯେଉଁ ମତ ଦେଇଥିଲି ତାହା ଆପଣ 'ହିତୈଷିଣୀ'ରେ ପ୍ରକାଶ କଲେ ଭଲହୁଅନ୍ତା ।

ପ୍ରଭା ଆପଣଙ୍କ ରଚ୍ନାକୁ ପ୍ରଥମ ସ୍ଥାନ ଦେଇ ଉଚିତ କାର୍ଯ୍ୟ କରିଅଛି । ଦୁଃଖର ବିଷୟ ଏହି ଯେ ପ୍ରଭାରେ ସମୟସମୟରେ ଏପରି କଦର୍ଯ୍ୟ ରଚ୍ନା ପ୍ରକାଶ ହୁଏ ଯେ ତାହା ପାଠ ମାତ୍ରେ ଅଶ୍ରଦ୍ଧା ଏବଂ ବିରକ୍ତି ଜାତ ହୁଏ । ଉତ୍ତର ଲେଖିବା ହେବେ ।

ବଶମ୍ୱଦ

ଶ୍ରୀ ରାଧାନାଥ ରାୟ

( ୯ )

ଶ୍ରୀ ହରିଃ ଶରଣମ୍

କଟକ

ତା ୧୦ । ୬ । ୧୮୯୪

ସବିନୟ ନିବେଦନମିଦଂ,

ଶ୍ରଦ୍ଧାସ୍ପଦ ମହାଶୟ,

ଆପଣଙ୍କୁ ପତ୍ର ଲେଖିବାକୁ ଯାଉଥିଲି ଏମନ୍ତ ସମୟରେ ଆପଣଙ୍କର ଖଣ୍ଡିଏ ଅନୁଗ୍ରହ ପତ୍ର ପାଇଲି ।

ପ୍ରଭା ଅଫିସ୍‌ର ପାରିତୋଷିକ ବିବରଣ ଦେଖି ଅବାକ୍ ହୋଇଅଛି । ହୀରା ଜିରାର ସମାନ ଦର; ଆମ୍ଭମାନଙ୍କ ପରି ଅକ୍ଷମ ଲୋକଙ୍କଠ ଭଲ ମନ୍ଦ ଜ୍ଞାନ ବାସ୍ତବିକ ମନସ୍ତାପର କାରଣ । ଇନ୍ଦୁମତୀ

ପୁସ୍ତକାକାରରେ ପ୍ରକାଶ ହେବାର ବାସ୍ତବିକ ବାଞ୍ଛନୀୟ। ଓଡ଼ିଶାରେ ମୋହୋ ମତରେ 'ଇନ୍ଦୁମତୀ' ଗୋଟିଏ ସ୍ଥାୟୀ ରଚ଼ନା। ପ୍ରଭା ସମ୍ପାଦକ ଖରଚ଼ କିପରି ଏଷ୍ଟିମେଟ୍ ଦେବେ ତାହା ଅନୁଗ୍ରହପୂର୍ବକ ଲେଖିବାହେବେ। ସମ୍ଭବତଃ ୩୦-୪୦ ଟଙ୍କାରୁ ଅଧିକ ହେବ ନାହିଁ। ବର୍ତ୍ତମାନ ବ୍ୟସ୍ତ ଅଛି। ସମୟାନୁସାରେ ଅନ୍ୟ ପତ୍ର ଲେଖିବି। ବଶମ୍ବଦ

ଶ୍ରୀ ରାଧାନାଥ ରାୟ

( ୧୦ )

ଶ୍ରୀ ହରିଃ ଶରଣମ୍

କଟକ

ସବିନୟ ନିବେଦନମିଦଂ, ତା ୧୦।୮।୧୮୯୪

ଶ୍ରଦ୍ଧେୟ ମହୋଦୟ, ସୀତାନାଥ ବାବୁଙ୍କ ପ୍ରେସ୍‌ର ମେନେଜର ଅଭିନ୍ନବାବୁଙ୍କର ମନ୍ତବ୍ୟ ପରପୃଷ୍ଠାରେ ଲିଖିତ ହୋଇଅଛି। ରଚ଼ନାରେ ଯେବେ କୌଣସି ପରିବର୍ତ୍ତନ କିମ୍ବା ନବ ସନ୍ନିବେଶ ଆବଶ୍ୟକ ଥାଏ ତାହା ଆପଣ ଅଭିନ୍ନବାବୁଙ୍କୁ ଜଣାଇଲେ ସେ ତାହା ଯଥାସ୍ଥାନରେ ଯୋଜନା କରିଦେବେ। ଅଭିନ୍ନବାବୁ ଓଡ଼ିଆ ଭାଷାରେ ସୁବ୍ୟୁତ୍ପନ୍ନ। ପ୍ରୁଫ୍ ସଂଶୋଧନ ଆଦି କାର୍ଯ୍ୟ ତାହାଙ୍କ ଦ୍ୱାରା ସୁଚାରୁ ରୂପେ ସଂପନ୍ନ ହେବାର ସମ୍ଭାବନା।

ମୟୂରଭଞ୍ଜ ପ୍ରେସ୍ ଯେତେବେଳେ ଅଧିକ ଶସ୍ତା ଦରରେ କାର୍ଯ୍ୟ ଦେବାକୁ ପ୍ରସ୍ତୁତ ମୋହୋ ମତରେ ସେହି ପ୍ରେସ୍‌ରେ କାର୍ଯ୍ୟ କରାଇନେବାର ବାଞ୍ଛନୀୟ। ଲେଖକଙ୍କ ମନ୍ତବ୍ୟ ମୋହୋର ମନ୍ତବ୍ୟାଦି ସମସ୍ତ ଏକ ପୃଷ୍ଠାରେ ସନ୍ନିବିଷ୍ଟ କରାଯାଇପାରେ। ଦୁଇ ପୃଷ୍ଠା କରିବାର ଆବଶ୍ୟକ ନାହିଁ। କେବଳ ଉତ୍ସର୍ଗପତ୍ର ସକାଶ ଗୋଟିଏ ସ୍ୱତନ୍ତ୍ର ପୃଷ୍ଠା ଆବଶ୍ୟକ। ଅବଶ୍ୟ ମୟୂରଭଞ୍ଜ ପ୍ରେସ୍‌ର ଛାପା ଉତ୍କୃଷ୍ଟ ନୁହେଁ; ମାତ୍ର କାର୍ଯ୍ୟୋପଯୋଗୀ ହେଲେ ଯଥେଷ୍ଟ ହେବ।

ଆପଣଙ୍କ ଅଭିପ୍ରାୟ ଜାଣିଲେ ମୁଁ ତଦନୁଯାୟୀ କାର୍ଯ୍ୟ କରିବି। ବଶମ୍ବଦ

ଶ୍ରୀ ରାଧାନାଥ ରାୟ

( ୧୧ )

ଶ୍ରୀ ହରିଃ ଶରଣମ୍

କଟକ

ତା ୨୪।୮।୧୮୯୪

ସବିନୟ ନିବେଦନମିଦଂ,

ମହାଶୟ, ଆପଣଙ୍କ ପାଣ୍ଡୁଲେଖ୍ୟ ଅଦ୍ୟ ଡାକରେ ପ୍ରତିପ୍ରେରଣ କଲି। ମୋହୋର ମନ୍ତବ୍ୟ ଏବଂ ସଂଶୋଧନର ପ୍ରସ୍ତାବ ପାଣ୍ଡୁଲେଖ୍ୟରେ ଦେଖିବା ହେବେ। ବିଶେଷତଃ ପାଣ୍ଡୁଲେଖ୍ୟର ୨ୟ ପୃଷ୍ଠାରେ ମୋହୋର ମନ୍ତବ୍ୟ ବିସ୍ତୃତ ରୂପେ ଲିଖିତ ହୋଇଅଛି।

ଅସମୟ ହେତୁରୁ ଯେପରି ଦେଖିବାର ଉଚିତ ତାହା ହେଲା ନାହିଁ। ମାତ୍ର ଦେଖିବାର ଆବଶ୍ୟକ ନାହିଁ। ରଚ଼ନା ଅତିସୁନ୍ଦର ହୋଇଅଛି।

ପଣ୍ଡିତବର ଶ୍ରୀ ଲକ୍ଷ୍ମଣ ମିଶ୍ର ମହୋଦୟଙ୍କୁ ମୋହୋର ପ୍ରଣାମ ଜଣାଇଦେବେ।

ବଶମ୍ବଦ

ଶ୍ରୀ ରାଧାନାଥ ରାୟ

( ୧୨ )

ଶ୍ରୀ ହରିଃ ଶରଣମ୍

କଟକ

ତା ୨୪।୮।୧୮୯୪

ସବିନୟ ନିବେଦନମିଦଂ,

ମହାଶୟ, 'ଉତ୍କଳଲକ୍ଷ୍ମୀ' କାବ୍ୟ ଆଦ୍ୟୋପାନ୍ତ ପାଠ କରି ମୋହୋର ଯାହା ଯାହା ମନ୍ତବ୍ୟ ଥିଲା ଯଥା ସ୍ଥାନରେ ଲେଖିଅଛି। ସ୍ଥୂଳରେ ରଚ଼ନା ଅତି ସୁନ୍ଦର ହୋଇଅଛି। ସ୍ଥାନେ ସ୍ଥାନେ ରଚ଼ନା ଏପରି ସୁନ୍ଦର ହୋଇଅଛି ଯେ ତାହା ମହାକବିମାନଙ୍କର ଲେଖନୀର ଯୋଗ୍ୟ ବୋଲି ବିବେଚ଼ିତ ହୋଇପାରେ।

ମୁଁ ଯେଉଁ ସ୍ଥାନମାନ ଆପରିଯୋଗ୍ୟ ବୋଲି ନିର୍ଦ୍ଦେଶ କରିଅଛି, ମୋହୋର ଆପତ୍ତି ସଂଗତ ବିବେଚିତ ହେଲେ ସେହି ସ୍ଥାନମାନ ସଂଶୋଧନ କରିବା ହେବେ।

ନାନା କାରଣରୁ ମୋହୋର ଶରୀର ଅସୁସ୍ଥ ଏବଂ ମନ ବିଷଣ୍ଣ ଅଛି। ବର୍ତ୍ତମାନ ଅଧିକ କିଛି ଲେଖି ପାରିବି ନାହିଁ। କ୍ଷମା କରିବା ହେବେ।

ଆପଣ ନିଶ୍ଚୟ ଜାଣିବା ହେବେ ଯେ ଆପଣଙ୍କ ପରି ଗୁଣୀ ଏବଂ ପ୍ରକୃତ ଶକ୍ତିଶାଳୀ ବ୍ୟକ୍ତି ସର୍ବଦା ମୋହୋର ପୂଜନୀୟ। ଆପଣଙ୍କର

ଶ୍ରୀ ରାଧାନାଥ ରାୟ

( ୧୩ )

ଶ୍ରୀ ହରିଃ ଶରଣମ୍

କଟକ

ତା ୨୭।୮।୧୮୯୪

ସବିନୟ ନିବେଦନମିଦଂ,

ମହାଶୟ, ରାଏ ପ୍ରେସ୍‌ର ଅଧ୍ୟକ୍ଷ ଏବଂ ସମ୍ପାଦକଙ୍କ ପ୍ରଦତ୍ତ ରସିଦ ଏଥି ସଙ୍ଗେ ପଠାଇଲି। ଅନୁଗ୍ରହପୂର୍ବକ ପ୍ରାପ୍ତି ସ୍ୱୀକାର କରିବା ହେବେ।

'ଉତ୍କଳଲକ୍ଷ୍ମୀ'ର ପାଣ୍ଡୁଲେଖ୍ୟ ମୋହୋର ମନ୍ତବ୍ୟ ସହିତ ଏଥି ପୂର୍ବେ ପ୍ରେରିତ ହୋଇଅଛି। ସମ୍ଭବତଃ ତାହା ଆପଣଙ୍କର ହସ୍ତଗତ ହୋଇଥିବ।

ବଶମ୍ବଦ

ଶ୍ରୀ ରାଧାନାଥ ରାୟ

( ୧୪ )

କଟକ

ତା ୬।୧୨।୧୮୯୪

ପ୍ରିୟତମ ଗଙ୍ଗାଧର ବାବୁ,

ଆପଣଙ୍କର ପ୍ରେରିତ ଅନୁଗ୍ରହ ଉପହାର ସକୃତଜ୍ଞ ଚିତ୍ତରେ ଗ୍ରହଣକଲି। ମୋହୋର ମତ ପୁସ୍ତକର ଅଙ୍ଗୀଭୂତ ହୋଇଥିବା ସ୍ଥଳେ ପୁନର୍ବାର ମତ ପ୍ରଦାନ ଅନାବଶ୍ୟକ। ତଥାଚ୍ ଅବକାଶମତେ ମୁଁ ଗୋଟିଏ ସଂକ୍ଷିପ୍ତ ସମାଲୋଚନା 'ହିତୈଷିଣୀ' ଅଫିସ୍‌କୁ ପଠାଇବି।

ସମସ୍ତ ସମ୍ପାଦକ ଏବଂ ଲବ୍‌ଧପ୍ରତିଷ୍ଠ ସାହିତ୍ୟବିତ୍ ବ୍ୟକ୍ତିଙ୍କଠାକୁ ଅତି ଶୀଘ୍ର ଖଣ୍ଡିଏ ଖଣ୍ଡିଏ ପୁସ୍ତକ ଉପହାର ସ୍ୱରୂପ ପଠାଇବା ହେବେ। ହିତୈଷିଣୀ ବ୍ୟତୀତ ଅନ୍ୟାନ୍ୟ ସମ୍ବାଦପତ୍ରର ସମ୍ପାଦକଙ୍କଠାରୁ ସାହିତ୍ୟ ସମ୍ବନ୍ଧରେ କୌଣସି ନିର୍ଭରଯୋଗ୍ୟ ମତ ଅଥବା ଉପଦେଶ ପାଇବାର ଆଶା ଦୁରାଶା ମାତ୍ର। କେବଳ ଶିଷ୍ଟାଚାର ରକ୍ଷା ନିମନ୍ତେ ପୁସ୍ତକ ପଠାଇବାର ବାଞ୍ଛନୀୟ।

କେହି ପ୍ରତିକୂଳ ମତ ଦେଲେ ସେଥିରେ ଭ୍ରୂକ୍ଷେପ କରିବାର ଅନୁଚିତ। ପ୍ରତିଷ୍ଠା ବୃଦ୍ଧି ସଙ୍ଗେ ସଙ୍ଗେ ଆପଣଙ୍କର ଅନେକ ଅନିବନ୍ଧନ ବାନ୍ଧବ ଏବଂ ଅନିବନ୍ଧନ ଶତ୍ରୁ ବାହାରିବେ। ଏଥିପାଇଁ ଆପଣ ପୂର୍ବରୁ ପ୍ରସ୍ତୁତ ଥିବାର ଭଲ।

'ଇନ୍ଦୁମତୀ' ଓ 'ଉତ୍କଳଲକ୍ଷ୍ମୀ' ଏ ଉଭୟ ହିଁ ଉତ୍କଳ ଭାଷାର ସ୍ଥାୟୀ ସମ୍ପତ୍ତି। ଏହା ମୁଁ ମୁକ୍ତ କଣ୍ଠରେ ଅନେକ ଲୋକଙ୍କ ସମ୍ମୁଖରେ କହିଅଛି ଏବଂ ଆଜୀବନ କହିବି।

ଉତ୍କଳଲକ୍ଷ୍ମୀ ପ୍ରଭାରେ କେବେ ବାହାରିବ? ବରପାଲି ମହାରାଜ ଇନ୍ଦୁମତୀ ପ୍ରଣେତାଙ୍କର କି ସତ୍‌କାର କଲେ, ତାହାଙ୍କର ସାହିତ୍ୟ ଜ୍ଞାନ କିପରି?

ଅଧିକାଂଶ ତଥାକଥିତ ରାଜାଙ୍କ ସମ୍ବନ୍ଧରେ ଆପଣଙ୍କର 'ଥାଇ ସେ ନଥିଲା ପରି' ଉକ୍ତି ସମ୍ପୂର୍ଣ୍ଣ ସତ୍ୟ ଅଟେ।

ଆପଣଙ୍କର

ଶ୍ରୀ ରାଧାନାଥ ରାୟ

( ୧୫ )

ମନ୍ତବ୍ୟ

ଇନ୍ଦୁମତୀର ପାଣ୍ଡୁଲେଖ୍ୟ ଅବସ୍ଥାରେ ମୁଁ ତାହା ଆଦ୍ୟୋପାନ୍ତ ପାଠକରି ଗ୍ରନ୍ଥକାର ମହାଶୟଙ୍କୁ ମୋହୋର ମତ ଜଣାଇଥିଲି। ଗ୍ରନ୍ଥକାର ସେହି ମତ ପୁସ୍ତକର ମୁଖବନ୍ଧରେ ସଂଯୋଜିତ କରିଅଛନ୍ତି।

ପୁସ୍ତକର ଉତ୍କର୍ଷ ସମ୍ବନ୍ଧରେ ମୋହୋର ଅଧିକ କହିବାର ଅନାବଶ୍ୟକ। ମୁଁ ଆଶାକରେଁ ଉତ୍କଳର ସାହିତ୍ୟ-ରସିକମାନେ କାବ୍ୟ ଖଣ୍ଡିକ ସମଗ୍ର ପାଠକରି ନିଜ ନିଜ ମତ ସ୍ଥିର କରିବେ। ଉତ୍କଳୀୟ ପାଠକଙ୍କର ତ କଥା ନାହିଁ। ଯେଉଁମାନେ ସଂସ୍କୃତ ରଘୁବଂଶରେ ଇନ୍ଦୁମତୀର ଚରିତ ପାଠ କରିଅଛନ୍ତି ସେମାନେ ସୁଦ୍ଧା ଏହି କାବ୍ୟ ପାଠ କରି ପଠନ ଶ୍ରମକୁ ପଣ୍ଡଶ୍ରମ ମଣିବେ ନାହିଁ।

ଗ୍ରନ୍ଥକାର ଉଚ୍ଚଶିକ୍ଷାର ସୁବିଧା ପାଇ ନଥିଲେ। ମାତ୍ର ତାହାଙ୍କର ନୈସର୍ଗିକ ପ୍ରତିଭା ସେହି ଅଭାବ ପୂରଣ କରିଦେଇଅଛି। ସେହି ପ୍ରତିଭା ବଳରେ ସେ ପ୍ରକୃତିର ସୌନ୍ଦର୍ଯ୍ୟ ପରୋକ୍ଷ ଭାବରେ ପୁସ୍ତକରେ ନ ଦେଖି ସେଥିର ଚାକ୍ଷୁଷ ପ୍ରତ୍ୟକ୍ଷ କରିଅଛନ୍ତି ଏବଂ ଯାହା ଦେଖିଅଛନ୍ତି ତାହା ଯଥାଯଥ ବର୍ଣ୍ଣନା। ୪୨ ପୃଷ୍ଠାରେ ଉଦ୍ୟାନ ବର୍ଣ୍ଣନା ମୋହୋର ଏହି କଥାର ଏକତର ପ୍ରମାଣ ରୂପେ ଗୃହୀତ ହୋଇପାରେ।

'ଇନ୍ଦୁମତୀ'ର ଆଉ ଗୋଟିଏ ପ୍ରଧାନ ଗୁଣ ଏହି ଯେ ଏଥିରେ ଏପରି କୌଣସି ଭାବ ବା ଶବ୍ଦ ନାହିଁ ଯାହା ଆଧୁନିକ ରୁଚି ଅନୁସାରେ ବର୍ଜନୀୟ ବୋଲି ବିବେଚିତ ହେବ। ମୋ ମତରେ ଏହା ଉତ୍କଳ ବିଦ୍ୟାଳୟମାନଙ୍କରେ ପାଠ୍ୟପୁସ୍ତକ ରୂପେ ପ୍ରବର୍ତ୍ତିତ ହେବାର ସମ୍ପୂର୍ଣ୍ଣ ଉପଯୁକ୍ତ ଅଟେ।

ପୁସ୍ତକର ସ୍ଥାନେ ସ୍ଥାନେ ଯେଉଁ ଦୋଷ ଅଛି ଗୁଣ ସହିତ ତୁଳିତ ହେଲେ ତାହା ନିତାନ୍ତ ସାମାନ୍ୟ ଅଟେ।

ଇତି

୬।୧୨।୧୮୯୪ ଶ୍ରୀ ରାଧାନାଥ ରାୟ

( ୧୬ )

ଶ୍ରୀ ହରିଃ ଶରଣମ୍

କଟକ

ସବିନୟ ନିବେଦନମିଦଂ, ତା ୧।୧।୧୮୯୫

ପ୍ରିୟତମ ଗଙ୍ଗାଧରବାବୁ, ୨'୧ ଦିନ ପୂର୍ବେ ଅଜୟବାବୁଙ୍କ ସହିତ ସାକ୍ଷାତ ହୋଇଥିଲା। ତାହାଙ୍କଠାରୁ ଆପଣଙ୍କ ସମ୍ବନ୍ଧରେ ଅନେକ ବିଷୟ

ଅବଗତ ହେଲି। ସେ ଯେପରି ମୁକ୍ତ କଣ୍ଠରେ ଆପଣଙ୍କର ସୁଖ୍ୟାତି କୀର୍ତ୍ତନ କଲେ ତାହା ବାସ୍ତବିକ ଅତି ପ୍ରୀତିକର। ଆପଣଙ୍କର ସମ୍ବଲପୁର ସାକ୍ଷାତ୍‌କାରରୁ ମୁଁ ଆପଣଙ୍କୁ ମୋହୋର ଜଣେ ଅନିବନ୍ଧନ ବାନ୍ଧବ ମଣିଥିଲି। ଅକ୍ଷୟବାବୁଙ୍କ ପ୍ରମୁଖାତ୍ ଯାହା ଶୁଣିଲି ତାହା ଦ୍ୱାରା ସେହି ବିଶ୍ୱାସ ଦୃଢ଼ୀଭୂତ ହେଲା। ଓଡ଼ିଶ୍ୟାକୁ ସ୍ନେହ କରିବାର ମୋହୋର ଯେବେ ଅନ୍ୟ କୌଣସି କାରଣ ନଥାନ୍ତା ଏକମାତ୍ର ଆପଣଙ୍କ ହେତୁରୁ ମୁଁ ଓଡ଼ିଶ୍ୟାକୁ ସ୍ନେହ କରନ୍ତି।

ଆପଣଙ୍କର 'ଉତ୍କଳଲକ୍ଷ୍ମୀ' ଆଜି ପର୍ଯ୍ୟନ୍ତ ପ୍ରଭାରେ ପ୍ରକାଶ ନହେବାର ଦେଖି ଦୁଃଖିତ ହେଲି। 'ଉତ୍କଳଲକ୍ଷ୍ମୀ' 'ଇନ୍ଦୁମତୀ' ପ୍ରଣେତାଙ୍କ ଲେଖନୀର ସମ୍ପୂର୍ଣ୍ଣ ଉପଯୁକ୍ତ ହୋଇଅଛି। ପ୍ରଭା ଅଫିସ୍‌ରୁ ସେ ସମ୍ବନ୍ଧରେ ଆପଣ କୌଣସି ସମ୍ବାଦ ପାଉଅଛନ୍ତି କି? 'ପ୍ରଭା' ମଧ୍ୟ ଦୁର୍ଲଭଦର୍ଶନା ହୋଇଅଛି। ଏ ଅଗ୍ରାହକ ଦେଶରେ ଆପଣଙ୍କ ପରି ପ୍ରକୃତ ପ୍ରତିଭାଶାଳୀ ବ୍ୟକ୍ତିଙ୍କର ସମୁଚିତ ସତ୍‌କାରର ଆଶା ସୁଦୂରପରାହତ ଅଟେ। ମୁଁ ସ୍ୱୟଂ ସାହିତ୍ୟ ଚର୍ଚ୍ଚା ପରିତ୍ୟାଗ କରିଥିଲେ ହେଁ ଆପଣଙ୍କ ପରି ପ୍ରକୃତ ଶକ୍ତିଶାଳୀ ବ୍ୟକ୍ତିଙ୍କର ରଚନା ସମୟସମୟରେ ଦେଖି ପ୍ରୀତିଲାଭ କରିବାର ଆଶା ରଖିଥିଲି। ସେ ଆଶା ମଧ୍ୟ ଆକାଶ-କୁସୁମରେ ପରିଣତ ହେବା ପରି ବୋଧହେଉଅଛି।

ବରପାଲି ରାଜ-ସଂସାରରୁ କି ଆପଣ ସାହିତ୍ୟ ଚର୍ଚ୍ଚା ବିଷୟରେ କୌଣସି ପ୍ରକାର ଉତ୍ସାହ ପାଆନ୍ତି ନାହିଁ?

'ଇନ୍ଦୁମତୀ' ସମ୍ବନ୍ଧରେ ମୁଁ ମୋହୋର ସଂକ୍ଷିପ୍ତ ମନ୍ତବ୍ୟ ହିତୈଷିଣୀକୁ ପଠାଇଅଛି। କାବ୍ୟର ଯେପରି ପ୍ରଶଂସା କରିବାର ଉଚିତ ତାହା ମୁଁ କରିପାରିନାହିଁ।

ମୋହୋର ମାନସିକ ଅଶାନ୍ତି ଏବଂ ଶାରୀରିକ ଅପଟୁତା ମୋହୋର ନିତ୍ୟ ନୈମିତ୍ତିକ ଅବଶ୍ୟ କରଣୀୟ କାର୍ଯ୍ୟରେ ସୁଦ୍ଧା ବ୍ୟାଘାତ ଘଟାଉଅଛି— ରଚନା କିମ୍ବା ସାହିତ୍ୟାନୁଶୀଳନ ତ ଅଧିକ କଥା!

ଆପଣଙ୍କର ସର୍ବାଙ୍ଗୀନ କୁଶଳ ସର୍ବଦା ମନାସୁଅଛି।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

( ୧୭ )

ଶ୍ରୀ ହରିଃ ଶରଣମ୍

ବିନ୍ଦୁକ

ସବିନୟ ନିବେଦନମିଦଂ. ତା ୧୮।୩।୧୮୯୫

ପରମ ଶ୍ରଦ୍ଧାସ୍ପଦ ମହୋଦୟ, ଅନବକାଶ ନିବନ୍ଧନ ଆପଣଙ୍କର ୨ ତାରିଖର ପତ୍ରର ଉତ୍ତର ଦେବାରେ ବିଳମ୍ବ ହୋଇଅଛି। କ୍ଷମା କରିବାହେବେ।

'ପ୍ରଭା' ପୁଣି ଦେଖା ଦେଇଅଛି ସତ୍ୟ, ମାତ୍ର ସମ୍ପ୍ରତି ତାହା ଗୋବିନ୍ଦବାବୁଙ୍କର ଏକଜାତିଆ ସମ୍ପତ୍ତି ପରି ପ୍ରତିଭାତ ହେଉଅଛି। ମୟୂରଭଞ୍ଜ ମହାରାଜଙ୍କ ଅନେକ ସଦ୍‌ଗୁଣ ଅଛି, ମାତ୍ର ଉତ୍କଳ ସାହିତ୍ୟାନୁରାଗ ସେଥିର ଅନ୍ତର୍ଗତ ବୋଧ ହେଉନାହିଁ। ଆପଣଙ୍କ ପରି ମୁଁ ମଧ୍ୟ ଭ୍ରାନ୍ତ ଆଶାରେ ମୁଗ୍ଧ ହୋଇ ମୟୂରଭଞ୍ଜ ମହାରାଜଙ୍କୁ ଉତ୍କଳର ଭାବୀ ବିକ୍ରମାର୍କ ମଣିଥିଲି। କାର୍ଯ୍ୟତଃ ଦେଖିଲି ଯେ ସେ ମାତୃଭାଷା ସମ୍ବନ୍ଧରେ ସମ୍ପୂର୍ଣ୍ଣ ଉଦାସୀନ। 'ପ୍ରଭା'ର ଖରଚ ସେ ଦିଅନ୍ତି ସତ୍ୟ, ମାତ୍ର ସେଥିର ପ୍ରବର୍ତ୍ତକ ସେ ନୁହନ୍ତି। ବାରିପଦାର ଭୂତପୂର୍ବ ହେଡ୍‌ମାଷ୍ଟର ଚୈତନ୍ୟବାବୁ ପ୍ରକୃତ 'ପ୍ରଭା'ର ଜନ୍ମଦାତା। ସମ୍ପ୍ରତି ସେ କେନ୍ଦୁଝରରେ ଅବସ୍ଥାନ କରୁଅଛନ୍ତି। ଗୋବିନ୍ଦବାବୁ ସଂସ୍କୃତଜ୍ଞ, ଉତ୍କଳ ଭାଷାରେ ମଧ୍ୟ ତାହାଙ୍କର ସୁନ୍ଦର ବ୍ୟୁତ୍ପତ୍ତି ଅଛି; ମାତ୍ର ଚୈତନ୍ୟବାବୁଙ୍କ ପରି ସେ ଭାଷାନୁରାଗୀ ପରାର୍ଥପରାୟଣ ନୁହନ୍ତି। ମହାରାଜ ଇଂରେଜୀ ଭାଷାରେ ପ୍ରାୟ ସର୍ବଦା କଥୋପକଥନ କରନ୍ତି। ସମ୍ଭବତଃ ସେ ଇଂରେଜୀରେ ଚିନ୍ତା କରନ୍ତି. ଇଂରେଜୀରେ ସ୍ୱପ୍ନ ମଧ୍ୟ ଦେଖନ୍ତି। ସାହେବ ଉପାସନା ଏବଂ ମୃଗୟା ତାହାଙ୍କର ପ୍ରଧାନ ବିନୋଦନ ଅଟେ।

ଇଉରୋପର ରାଜା ଏବଂ ଧନବନ୍ତ ବ୍ୟକ୍ତିମାନେ ଯେପରି ବିଦ୍ୟୋତ୍ସାହୀ ଏବଂ ସାହିତ୍ୟରସିକ ଓଡ଼ିଶ୍ୟାରେ ଯେବେ ସେହିପରି ୨/୪ଟି ରାଜାଥାନ୍ତେ ତାହାହେଲେ ୫୦/୬୦ ବର୍ଷ ମଧ୍ୟରେ ଏହି ଦରିଦ୍ର ଉତ୍କଳଭାଷା ମଧ୍ୟ ପୃଥିବୀରେ ଗୋଟିଏ ଗଣନୀୟ ଭାଷା ହୋଇପାରନ୍ତା। ଦୁଃଖର ବିଷୟ ସେପରି ରାଜା ଓଡ଼ିଶ୍ୟାରେ ଜଣେ ସୁଦ୍ଧା ପାଇବାର ସହଜ ନୁହେଁ। ବାମଣ୍ଡା ମହାରାଜ ସାପେକ୍ଷ ଭାବରେ ଅବଶ୍ୟ ପ୍ରଶଂସାର୍ହ। ମାତ୍ର ନିରପେକ୍ଷ ଭାବରେ ବିଚାରିଲେ ସେ ଯାହା କରିଅଛନ୍ତି ତାହା ଅତି ସାମାନ୍ୟ ଅଟେ।

ଆପଣଙ୍କ ପରି ବ୍ୟକ୍ତି ଯଦି ଇଉରୋପରେ ଜନ୍ମିଥାନ୍ତେ ତାହାହେଲେ କେବଳ ସାହିତ୍ୟ ଚର୍ଚ୍ଚା ସହାଣେ ମାସିକ ଟ୨୦୦ଙ୍କାର ଅନ୍ୟୂନ ବେତନଭୋଗୀ ହୋଇଥାନ୍ତେ।

ପାରିବାରିକ ପୀଡ଼ା, କାର୍ଯ୍ୟର ଝଂଝଟ ଏବଂ ଦେଶର ଅଗ୍ରାହକତା ନିବନ୍ଧନ ମୁଁ ସାହିତ୍ୟ ଚର୍ଚ୍ଚା ପରିତ୍ୟାଗ କରିଅଛି। ପ୍ରକୃତ ସାହିତ୍ୟଜ୍ଞାନ ସମୟସାପେକ୍ଷ ଅଟେ, ବିଶେଷତଃ ଓଡ଼ିଶ୍ୟାରେ।

ଓଡ଼ିଶ୍ୟାରେ କାଳିଦାସଙ୍କ ସହିତ ଭଞ୍ଜଙ୍କ ପରି କବି ସମାନ ଆସନ ପାଆନ୍ତି। ହିମାଳୟ ସହିତ କପିଳାସ ତୁଳିତ ହୁଏ। ଏପରି ଦେଶରେ ସାହିତ୍ୟ ଛାନ ଲାଭ ସହଜ କଥା ନୁହେଁ। ସାହିତ୍ୟାନୁରାଗ ମୋହୋର ବହୁ ଦିନରୁ ଥିଲା। ମାତ୍ର ଉଚ୍ଚ ସାହିତ୍ୟ କଅଣ ସେ ଛାନ ବହୁ ବିଳମ୍ବରେ ଲାଭ ହେଲା। ସେହି ଛାନ ଲାଭ ସଙ୍ଗେ ସଙ୍ଗେ ସାହିତ୍ୟ ଚର୍ଚ୍ଚା ପରିତ୍ୟାଗ କରିବାକୁ ହେଲା। ବର୍ତ୍ତମାନ ମୋହୋର ବୟଃକ୍ରମ ୪୬ ବର୍ଷ। କ୍ରମଶଃ ଜରାର ନିକଟବର୍ତ୍ତୀ ହେଉଅଛି। ମୁଁ ନିଜେ କିଛି କରି ପାରିବି ଏପରି ଆଶା ସ୍ୱପ୍ନରେ ସୁଦ୍ଧା ହୃଦୟରେ ସ୍ଥାନ ଦେବାକୁ ପ୍ରବୃତ୍ତି ହେଉନାହିଁ। ସେ ଯାହାହେଉ ଆପଣଙ୍କ ପରି ମାତୃଭୂମିର ସୁଯୋଗ୍ୟ ସନ୍ତାନମାନଙ୍କର ଉନ୍ନତି ଦେଖିବାକୁ ମୁଁ ସର୍ବଦା ଉଦ୍‌ଗ୍ରୀବ।

ଲାଉମୁଣ୍ଡା ସ୍କୁଲ୍ କେଉଁଠାରେ ଜଣାଥିଲେ ଅନୁଗ୍ରହପୂର୍ବକ ଲେଖିବା ହେବେ। ସେହି ସ୍କୁଲର ଶିକ୍ଷକ ମହାଶୟ ସଂଶୋଧନ ନିମନ୍ତେ ମୋହୋଠାକୁ କବିତା ପ୍ରେରଣ କରିଅଛନ୍ତି। ମାତ୍ର ଠିକଣା ଜଣାନଥିବାରୁ ମୁଁ ତାହାଙ୍କର ପତ୍ରର ଉତ୍ତର ଦେଇନପାରି ଦୁଃଖିତ ଏବଂ ଲଜ୍ଜିତ ଅଛି।

ବରପାଲି ଅଧୀଶ୍ୱର ମହୋଦୟଙ୍କର ରଚ଼ନା ପାଠକରି ଅତ୍ୟନ୍ତ ପ୍ରୀତ ହେଲି। ବିଶେଷତଃ ସମଲାଇ ଦେବୀଙ୍କ ବର୍ଣ୍ଣନା ଉଚ୍ଚକଳ୍ପନାର ପରିଚାୟକ ଅଟେ। ଆପଣଙ୍କ ଲେଖା ସହିତ ମହାରାଜଙ୍କର ରଚ଼ନାର ଅନେକ ସାଦୃଶ୍ୟ ଦେଖିଲି। ଅବକାଶମତେ ଏ ସମ୍ବନ୍ଧରେ ମୁଁ ମୋହୋର ମତ ପ୍ରେରଣ କରିବି। ବରପାଲି ଅଧୀଶ୍ୱର ମହୋଦୟ ଏପରି ସାହିତ୍ୟରସିକ ଏହା ମୋତେ ଜଣାଥିଲେ ମୁଁ ଗତ ବର୍ଷ ବରପାଲି ମାର୍ଗରେ ବୋଦ ପ୍ରତ୍ୟାଗମନ କରିଥାନ୍ତି।

ବରପାଲି ମହାରାଜଙ୍କର ଆୟ କେତେ ଏବଂ ଆର୍ଥିକ ଅବସ୍ଥା କିପରି ଲେଖିବା ହେବେ।

ଯେବେ ଈଶ୍ୱର ସେପରି ଦିନ ଦିଅନ୍ତି ମୁଁ କଲିକତା ଏବଂ ସମ୍ବଲପୁର ମାର୍ଗ ଦେଇ ବରପାଲି ଯାଇପାରେ। ଆପଣଙ୍କ ସହିତ ମୋହୋର ୨-୪ ମାସ ଏକତ୍ରାବସ୍ଥାନ ଘଟିଲେ ପରସ୍ପରର ଅନେକ ଶ୍ରେୟଃ ଲାଭ ହୋଇପାରନ୍ତା।

'ଇନ୍ଦୁମତୀ' ପୁସ୍ତକ ୩ ଖଣ୍ଡ ଏବଂ ଖଣ୍ଡିଏ ଆବେଦନ ପତ୍ର ପଠାଇଲେ ମୁଁ ତାହା ସ୍କୁଲ୍ ବୁକ୍ କମିଟିର ମୋହୋର ଅନୁରୋଧ ସହିତ ଅର୍ପଣ କରିବି। ଦୁଃଖର ବିଷୟ ଏହି ଯେ, ସ୍କୁଲ୍ ବୁକ୍ କମିଟିର ଅଧିକାଂଶ ମେମ୍ବର ସାହିତ୍ୟଜ୍ଞାନ-ବର୍ଜିତ ଅଟନ୍ତି। ମେମ୍ବର ନିର୍ବାଚ଼ନ ଗୁଣ ଦେଖି ହୁଏ ନାହିଁ, କେବଳ ପଦ ଦେଖି ହୁଏ। ଏହି ହେତୁରୁ ସମୟ ସମୟରେ ନିତାନ୍ତ ବିଚାରବିଭ୍ରାଟ ଘଟିଥାଏ।

ଉତ୍କଳଲକ୍ଷ୍ମୀ ପ୍ରଭା ଅଫିସ୍‌ରେ ମନୋନୀତ ହେବାର ସମ୍ବାଦ ମୁଁ ପାଇଥିଲି। ଆଜି ପର୍ଯ୍ୟନ୍ତ ତାହା ପ୍ରକାଶ ନହେବାର ଆଶ୍ଚର୍ଯ୍ୟର ବିଷୟ ଅଟେ। 'ପ୍ରଭା'ରେ ପ୍ରକାଶ ନହେଲେ ହିତୈଷିଣୀରେ ପ୍ରକାଶ କରିବାହେବେ।

ଗତଥର ମୁଁ ବାରିପଦା ଅବସ୍ଥାନ ସମୟରେ 'ପ୍ରଭା' ଅଫିସ୍‌ରେ ଅନ୍ୟାନ୍ୟ କାଗଜ ସହିତ ଆପଣଙ୍କର 'ଉତ୍କଳଲକ୍ଷ୍ମୀ' ମଧ୍ୟ ଦେଖିଥିଲି। ସେଥିରେ ମୋହୋର ନାମର ଉଲ୍ଲେଖ ଦେଖି ମୁଁ ଲଜ୍ଜିତ ହୋଇଥିଲି। ମୋହୋ ସମ୍ବନ୍ଧରେ ସେଥିରେ ଯାହା ଲେଖାହୋଇଅଛି, ମୁଁ ସେଥିର ସମ୍ପୂର୍ଣ୍ଣ ଅନୁପଯୁକ୍ତ। ସ୍ନେହଚ଼କ୍ଷୁରେ ଦେଖିଲେ କାଚ ମଣି ହୋଇଯାଏ। ହିତୈଷିଣୀରେ 'ଉତ୍କଳଲକ୍ଷ୍ମୀ' ବାହାରିବା ସମୟରେ ଆପଣ ଅନୁଗ୍ରହପୂର୍ବକ ସେହି କେତେକ ପଙ୍‌କ୍ତି ପରିତ୍ୟାଗ କିମ୍ବା ପରିବର୍ତ୍ତନ କରିଦେଲେ ଭଲ ହେବ। ମୁଁ ଅବଶ୍ୟ ରଚ଼ନାର ଦୋଷ ଦେଉନାହିଁ। ଆପଣଙ୍କ ପ୍ରତ୍ୟେକ ରଚ଼ନାର ପ୍ରାୟ ପ୍ରତ୍ୟେକ ପଙ୍‌କ୍ତିରୁ ମୁଁ ପ୍ରତିଭାର ଅଭ୍ରାନ୍ତ ପରିଚ଼ୟ ପାଇଅଛି। ମୋହୋର ତାତ୍‌ପର୍ଯ୍ୟ ଏହି ଯେ ପ୍ରଶଂସା ଅପାତ୍ରଗତ ହେଲେ ପ୍ରତିଭାର ଅପବ୍ୟବହାର ହୁଏ।

ଆପଣଙ୍କ ସ୍ନେହକ୍ରୀତ
ଶ୍ରୀ ରାଧାନାଥ ରାୟ

## ( ୧୮ )

ଶ୍ରୀ ହରିଃ ଶରଣମ୍

ଢେଙ୍କାପୁର
ତା ୨୭।୩।୧୮୯୫

ସବିନୟ ନିବେଦନମିଦଂ,

ଶ୍ରଦ୍ଧେୟ ମହୋଦୟ, ଆପଣଙ୍କର ୧୮ ତାରିଖର ଅନୁଗ୍ରହ ଲିପି ଗତକଲ୍ୟ ହସ୍ତଗତ ହେଲା। ଲାଉମୁଣ୍ଡା ଶିକ୍ଷକ ମହାଶୟଙ୍କଠାକୁ ତାହାଙ୍କର ରଚ଼ନା ପ୍ରତିପ୍ରେରଣ କରି ଆପଣଙ୍କୁ ଦେଖାଇ ସଂଶୋଧନ କରିନେବା ସକାଶ ଉପଦେଶ ଦେଇଅଛି। ତାହାଙ୍କ ଲେଖାରୁ ରୀତିମତ ସାହିତ୍ୟଚ଼ର୍ଚ୍ଚାର ପରିଚ଼ୟ ମିଳିନାହିଁ। କିଛିଦିନ ବ୍ୟାକରଣ ଏବଂ ସାହିତ୍ୟଚ଼ର୍ଚ୍ଚା କରି ରଚ଼ନାରେ ହସ୍ତାର୍ପଣ କଲେ ସେ ସିଦ୍ଧକାମ ହୋଇପାରିବେ।

ରୁକ୍ମିଣୀ କାବ୍ୟ ମୁଁ ପ୍ରତିପ୍ରେରଣ କରିଅଛି। ପାଠ ମାତ୍ର ମୁଁ ପ୍ରକୃତ କଥା ତର୍କଣା କରିନେଇଅଛି। ତ୍ୟାଗ ସ୍ୱୀକାରର ଅନୁରୂପ ସତ୍‌କାର ଦେଖିଲେ ପ୍ରୀତ ହେବି। ଆପଣଙ୍କର ପାରିବାରିକ ପୀଡ଼ା ସମ୍ବାଦରେ ଦୁଃଖିତ ହେଲି। ସଂସାର ବିଷବୃକ୍ଷରୁ ସୁଫଳର ଆଶା ନାହିଁ। ଏହା ମୁଁ ବହୁଦିନରୁ ଅନୁଭବ କରି ସାହିତ୍ୟଚର୍ଚ୍ଚା ପ୍ରଭୃତି ପରିତ୍ୟାଗ କରିଅଛି। ଜୀବନ-ପ୍ରଦୀପ ପ୍ରାୟ ନିର୍ବାଣୋନ୍ମୁଖ। ଏହି ବହୁମୂଲ୍ୟ ସମୟକୁ ଅକିଞ୍ଚିତ୍‌କର ସାହିତ୍ୟଚର୍ଚ୍ଚାରେ ଦେବାର ନିର୍ବୋଧର କାର୍ଯ୍ୟ ଅଟେ। ଅବଶ୍ୟ ବ୍ୟସନ ଅପେକ୍ଷା ସାହିତ୍ୟଚର୍ଚ୍ଚା ଶ୍ରେୟସ୍କର। ମାତ୍ର ତାହା ଅପେକ୍ଷା ଉତ୍‌କୃଷ୍ଟତର ଏବଂ ଶାଶ୍ୱତିକ ବିଷୟ ଥାଉଁ ଥାଉଁ ସେଥିରେ ସମୟ ଯାପନ କରିବାର ଅନୁଚିତ। ଇଉରୋପରେ କିମ୍ବା ପ୍ରାଚୀନ ଭାରତରେ ସାହିତ୍ୟ ଚର୍ଚ୍ଚାରୁ ପ୍ରଚୁର ଆର୍ଥିକ ଲାଭ ହୁଅଇ ଏବଂ ହେଉଥିଲା। ପରାଧୀନ ଓ ଅଧଃପତିତ ଭାରତବର୍ଷରେ ମାତୃଭାଷା ପ୍ରତି ଲୋକଙ୍କର ପ୍ରାୟ ଆସ୍ଥା ନାହିଁ। କବିତାକୁ ଅବା କିଏ ପଚାରେ? ଯେଉଁ କାର୍ଯ୍ୟରେ ଐହିକ ପାରତ୍ରିକ ଲାଭ ନାହିଁ ସେଥିରେ ସମୟଯାପନ ନକରି ଧର୍ମାଲୋଚ଼ନାରେ ସେହି ସମୟ ଦେବାର କର୍ତ୍ତବ୍ୟ। ରଚ଼ନା ପ୍ରବୃତ୍ତି ପ୍ରାୟଶଃ ରାଜସ-ଭାବ-ଦୂଷିତ। ଅକିଞ୍ଚିତ୍‌କର ଯଶୋଲିପ୍‌ସା ତାହାର ପ୍ରାୟ ଅବଶ୍ୟମ୍ଭାବୀ ସହଚ଼ର। ସେଥି ନିମନ୍ତେ ଉଚିତ ଦଣ୍ଡ ମଧ୍ୟ ପାଇବାକୁ ହୁଏ। ଯଶଃପ୍ରସାର ଦେଖିଲାକ୍ଷଣି ଈର୍ଷ୍ୟାରାକ୍ଷସୀ ମୁଖ ବ୍ୟାଦାନ କରି ଗ୍ରାସ କରିବାକୁ ଉଦ୍ୟତ ହୁଏ। ଲେଶ ମାତ୍ର ଆର୍ଥିକ ଲାଭ ନାହିଁ, ଅଥଚ଼ ଈର୍ଷାଜନିତ ଅଶାନ୍ତି ସମୟ ସମୟରେ ମନ କ୍ଷୁଭିତ କରେ। ଏପରି ସାହିତ୍ୟଚ଼ର୍ଚ୍ଚାରୁ ଦୂରେ ଥିବା ଭଲ। ଯେମାନେ ବୃତ୍ତାଶ୍ୱର ଯେମାନଙ୍କର ପାରିବାରିକ ଚିନ୍ତା, ଗ୍ରାସାଚ୍ଛାଦନର ଚିନ୍ତା ନାହିଁ କେବଳ ସେହି-ମାନଙ୍କ ପକ୍ଷରେ ସାହିତ୍ୟଚ଼ର୍ଚ୍ଚା ଶୋଭନୀୟ।

ମୁଁ ଦେଖିଲି କବି ଜୀବନ ଆଦୌ ସ୍ପୃହଣୀୟ ଜୀବନ ନୁହେ। କଳନା ଶକ୍ତି ପ୍ରବଳ ଥିବାରୁ କବିମାନେ ଅପେକ୍ଷାକୃତ ଅଧିକ ସହାନୁଭୂତିଶୀଳ ହୁଅନ୍ତି। ସଂସାରରେ ସୁଖ ଅପେକ୍ଷା ଦୁଃଖର ମାତ୍ରା ଅଧିକ। ସେ ଦୁଃଖର ପୁଣି ପ୍ରତିକାର ନାହିଁ। ସୁତରାଂ ସହାନୁଭୂତି କେବଳ ଦାରୁଣ ଦୁଃଖର ହେତୁ ହୁଏ।

ଆପଣଙ୍କର ପରିବାରବର୍ଗରେ କାହାର କି ପୀଡ଼ା ହୋଇଅଛି? ମୋହୋର ଘର ଗୋଟିଏ ହାସପାତାଳ କହିଲେ ଅତ୍ୟୁକ୍ତି ହେବ ନାହିଁ।

ଅଳ୍ପଦିନ ପୂର୍ବେ ମୁଁ ଆପଣଙ୍କୁ ଖଣ୍ଡିଏ ପତ୍ର ଲେଖିଥିଲି। ସମ୍ଭବତଃ ତାହା ଆପଣଙ୍କର ହସ୍ତଗତ ହୋଇଅଛି। ଅବସରମତେ ଉତ୍ତର ଦେବାହେବେ।

ଆପଣଙ୍କର ସ୍ନେହକ୍ରୀତ
ଶ୍ରୀ ରାଧାନାଥ ରାୟ

( ୧୯ )

ଶ୍ରୀ ହରିଃ ଶରଣମ୍

କେନ୍ଦ୍ରପଡ଼ା
ତା ୧।୮।୧୮୯୫

ସବିନୟ ନିବେଦନମିଦଂ,

ପ୍ରିୟତମ ମହାଶୟ, ଆପଣଙ୍କର ଅନୁଗ୍ରହ ଲିପି ପାଇ କୃତାର୍ଥମ୍ମନ୍ୟ ହେଲି। ଆପଣଙ୍କର ନିଃସ୍ୱାର୍ଥ ସ୍ନେହ ଏବଂ ଉଦାରତା ଓଡ଼ିଶ୍ୟାରେ ଅତୁଳନୀୟ। ଭବାଦୃଶ ବ୍ୟକ୍ତିଙ୍କର ସ୍ନେହ ସ୍ମରଣ କରି ମୁଁ ଜୀବନକୁ ନିତାନ୍ତ ବନ୍ଧ୍ୟ ବିବେଚ଼ନା କରେ ନାହିଁ।

ମୋହୋର ପୀଡ଼ା ସମ୍ବନ୍ଧରେ ଆପଣ ଯେଉଁ ସମ୍ବାଦ ପାଇ ଅଛନ୍ତି ତାହା ଅମୂଳକ ନୁହେ। ମୋହୋର ଶରୀର ପ୍ରାୟ ସର୍ବଦା ରୁଗ୍‌ଣ। ବର୍ତ୍ତମାନ ଅଧିକତର ରୁଗ୍‌ଣ ହୋଇଅଛି। ବୟସ ୪୭ ବର୍ଷ ହେଲା। ୫୦ ର ଦ୍ୱାର ଦେଶରେ ଉପସ୍ଥିତ ହୋଇଅଛି। ମୋହୋର ପରି ଲୋକର ପୀଡ଼ିତ ହେବାର ଆଶ୍ଚର୍ଯ୍ୟର ବିଷୟ ନୁହେଁ। ମୁଁ ଯେ ଏତେଦିନ ଜୀବିତ ଅଛି ଏହାହିଁ ଆଶ୍ଚର୍ଯ୍ୟ। ବର୍ତ୍ତମାନ ମୋହୋର ଯେଉଁ ପୀଡ଼ା ଜାତ ହୋଇଅଛି ଏହା ବୃଦ୍ଧି ପ୍ରାପ୍ତ ହେଲେ ମାରାତ୍ମକ ହେବାର ସମ୍ଭାବନା। ମୁଁ ୩-୪ ମାସ ପୂର୍ବେ ଛୁଟି ନେଇ ବାୟୁ ପରିବର୍ତ୍ତନର ସଂକଳ୍ପ କରିଥିଲି। ଗୋଟିଏ ଅନିବାର୍ଯ୍ୟ କାରଣରୁ ବିଳମ୍ବ ହୋଇଅଛି। ଶୀଘ୍ର ଛୁଟି ସକାଶେ ଦରଖାସ୍ତ କରିବି। ସମ୍ଭବତଃ ଦଶହରାଠାରୁ ଛୁଟି ଆରମ୍ଭ ହୋଇପାରେ।

ଆପଣ କଟକ ଆସିବେ ବୋଲି ଆମ୍ଭମାନଙ୍କୁ ଆଶା ଦେଇଥିଲେ। ପୂଜା ପୂର୍ବରୁ ଯଦି ଆସି ପାରନ୍ତେ ଆମ୍ଭେମାନେ ଅତ୍ୟନ୍ତ ଆହ୍ଲାଦିତ ହୁଅନ୍ତୁ। ମୁଁ ଯଥା ସମୟରେ ଜାଣିପାରିଲେ ଆପଣଙ୍କୁ ସଙ୍ଗେ ନେଇ ପୁରୀ ଭୁବନେଶ୍ୱର ପ୍ରଭୃତି ଦେଖାଇପାରନ୍ତି। ଆପଣଙ୍କର ଅଭିପ୍ରାୟ ଶୀଘ୍ର ଅନୁଗ୍ରହପୂର୍ବକ ଲେଖିବା ହେବେ।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

## ( ୨୦ )

### ଶ୍ରୀ ହରିଃ ଶରଣମ୍

ଢେଙ୍କାନାଳ

ତା ୧୭।୯।୧୮୯୫

ସବିନୟ ନିବେଦନମିଦଂ,

ପରମ ଶ୍ରଦ୍ଧାସ୍ପଦ ମହୋଦୟ, ବହୁଦିନ ହେଲା ଆପଣଙ୍କଠାରୁ କୌଣସି ପତ୍ର ନପାଇ ଚିନ୍ତିତ ଥିଲି, ମାତ୍ର ଗତକଲ୍ୟ ଆପଣଙ୍କ 'ଉତ୍କଳଲକ୍ଷ୍ମୀ' ପାଇ କିୟତ୍ ପରିମାଣରେ ଆଶ୍ୱସ୍ତ ହେଲି।

'ଉତ୍କଳଲକ୍ଷ୍ମୀ' ମୁଁ ପାଣ୍ଡୁଲେଖ୍ୟାବସ୍ଥାରେ ଦେଖି ସେଥି ସମ୍ବନ୍ଧରେ ମୋହୋର ସ୍ଥୂଳମନ୍ତବ୍ୟ ନିବେଦନ କରିଥିଲି। ବର୍ତ୍ତମାନ ମଧ୍ୟ 'ହିତୈଷିଣୀ'ରେ ସେଥି ସମ୍ବନ୍ଧରେ ପଦେ ଅଧେ ଲେଖିବାର ଇଚ୍ଛା ହେଉଅଛି। ମାତ୍ର ସେହି ଇଚ୍ଛା ଚରିତାର୍ଥ ହେବା ମାର୍ଗରେ ଆପଣ ପ୍ରବଳ ପ୍ରତିବନ୍ଧକ ଉପସ୍ଥିତ କରାଇଛନ୍ତି। ମୋହୋ ସମ୍ବନ୍ଧରେ କାବ୍ୟରେ କୌଣସି କଥା ନଥିଲେ ଭଲହୋଇଥାନ୍ତା। ଆପଣ ମୋହୋର ଯତ୍‌ସାମାନ୍ୟ ରଚନାକୁ ବନ୍ଧୁ-ସୁଲଭ-ସ୍ନେହ ଅଣୁବୀକ୍ଷଣରେ ଦେଖି ତାହାର ଯୋଗ୍ୟତାର ଅତିରିକ୍ତ ପ୍ରଶଂସା କରିଅଛନ୍ତି।

'ଉତ୍କଳଲକ୍ଷ୍ମୀ' କ୍ଷୁଦ୍ର ଏବଂ ଅସମ୍ପୂର୍ଣ୍ଣ ହୋଇ ସୁଦ୍ଧା ଉତ୍କଳ ଭାଷାର ଗୋଟିଏ ସ୍ଥାୟୀ ସମ୍ପତ୍ତି ଏହା ମୁଁ ମୁକ୍ତ କଣ୍ଠରେ କହିପାରେ। 'ଉତ୍କଳଲକ୍ଷ୍ମୀ' କେଉଁଠାରେ ସୁଗଚ୍ଛିତ ହୋଇଥିଲା? ଛାପାରେ ଏକ ଏକ ସ୍ଥାନରେ ଭୁଲ ହୋଇଅଛି।

ଆପଣଙ୍କର ପାରିବାରିକ ସ୍ୱାସ୍ଥ୍ୟର ଅବସ୍ଥା ବର୍ତ୍ତମାନ କିପରି? ସୂର୍ଯ୍ୟକୁମାର ବାବୁ କିଏ? ବରପାଲିରେ ସେ କି କାର୍ଯ୍ୟ କରନ୍ତି? ପାଟଣାର ବର୍ତ୍ତମାନ ଅଧୀଶ୍ୱର ଶ୍ରୀଦଳଗଞ୍ଜନ ସିଂହଦେବ ମହୋଦୟଙ୍କ ସହିତ ଆପଣଙ୍କର ପରିଚୟ ହୋଇ ଅଛିକି? ତାହାଙ୍କ ପ୍ରକୃତି କିପରି? ଉତ୍କଳଭାଷା ତାହାଙ୍କଠାରୁ କିଛି ଆଶାକରିପାରେ କି?

ମାନନୀୟ ଶ୍ରୀ ବରପାଲି ଯୁବରାଜ ମୋହୋଠାକୁ ଯେଉଁ ପାଣ୍ଡୁଲେଖ୍ୟ ପଠାଇଥିଲେ ଅବଧି ତାହା ପ୍ରକାଶ ନହେବାର ହେତୁ କି?

'ତୁଳସୀ ସ୍ତବକ'ର ଦ୍ୱିତୀୟ ସଂସ୍କରଣ ଆପଣଙ୍କଠାକୁ ପଠାଇଥିଲି। ତାହା ଆପଣଙ୍କ ହସ୍ତଗତ ହୋଇଅଛି କି? ଆପଣଙ୍କର ସର୍ବାଙ୍ଗୀନ ମଙ୍ଗଳ ସର୍ବଦା ମନାସୁ ଅଛି।

ଆପଣଙ୍କର

ଶ୍ରୀ ରାଧାନାଥ ରାୟ

## ( ୨୧ )

### ଶ୍ରୀ ହରିଃ ଶରଣମ୍

କଟକ

ତା ୨୮।୯।୧୮୯୫

ସବିନୟ ନିବେଦନମିଦଂ,

ପରମ ସ୍ନେହାସ୍ପଦ ମହାଶୟ, ଆପଣଙ୍କର ଅନୁଗ୍ରହଲିପି ପାଇ ଆପ୍ୟାୟିତ ହେଲି। ଆପଣ ପୂର୍ବେ ଯେଉଁ ପତ୍ର ପଠାଇ ଥିବାର ଲେଖିଅଛନ୍ତି ତାହା ମୋହୋର ହସ୍ତଗତ ହୋଇନାହିଁ। ଆପଣଙ୍କ ପତ୍ର ହସ୍ତଗତ ହେଲେ ଅନୁତ୍ତରିତ ହୋଇ ରହିବାର ନୁହେଁ।

'ତୁଳସୀ ସ୍ତବକ'ର ଦ୍ୱିତୀୟ ସଂସ୍କରଣ ଆପଣଙ୍କର ହସ୍ତଗତ ହୋଇନଥିବାର ସମ୍ବାଦରେ ଆଶ୍ଚର୍ଯ୍ୟାନ୍ୱିତ ହେଲି। ୨ୟ ସଂସ୍କରଣ ନୀଳମଣି ବାବୁ ପ୍ରକାଶ କରିଅଛନ୍ତି। ମୋହୋ ନିକଟରେ ଅତିରିକ୍ତ ପୁସ୍ତକ ଥିଲେ ଏହିକ୍ଷଣି ଆଉ ଖଣ୍ଡିକ ପଠାଇଦିଅନ୍ତି।

ହିତୈଷିଣୀରେ 'ପଠାଣିସାମନ୍ତ' ସମ୍ବନ୍ଧୀୟ କବିତା ସମ୍ବନ୍ଧରେ ଆପଣଙ୍କର ଅନୁମାନ ଠିକ୍ ଅଟେ। ମୋହୋର ଖଣ୍ଡିଏ ଅପ୍ରକାଶିତ କାବ୍ୟରୁ ତାହା ଉଦ୍ଧାର କରି ଦେଇଥିଲି।

ଶ୍ରୀ ମଲ୍ଲଗଞ୍ଜନ ସିଂହଙ୍କ ସମ୍ବନ୍ଧରେ ଆପଣଙ୍କ ମନ୍ତବ୍ୟ ଅବିକଳ ମୋହୋର ଅନୁମାନର ସମାନ।

ମୋହୋର ଗ୍ରନ୍ଥାବଳୀ ପ୍ରକାଶ ସମ୍ବନ୍ଧରେ ଆପଣଙ୍କର ସଦିଚ୍ଛା ନିମନ୍ତେ ଆପଣଙ୍କୁ ଧନ୍ୟବାଦ ପ୍ରଦାନ କରୁଅଛି। ପୁସ୍ତକ କଷ୍ଟ ସୃଷ୍ଟରେ ବିକ୍ରୟ ହୋଇପାରେ, ମାତ୍ର ତାହା ଛପାଇବାରେ ପ୍ରାୟ ୧୦୦୦ଟଙ୍କା ବ୍ୟୟ ହେବ। 'ମହାଯାତ୍ରା' ମୋହୋର ଶେଷ କରିବାର ଇଚ୍ଛାଥିଲା, ମାତ୍ର ସରକାରୀ କାର୍ଯ୍ୟ ହେତୁରୁ ଲେଶମାତ୍ର ଅବକାଶ ପାଇବାର କଠିନ। ସେଥିରେ ପୁଣି ଶରୀର ପ୍ରାୟ ସର୍ବଦା ଅସୁସ୍ଥ। ଏହି ହେତୁରୁ ସେ ସଂକଳ୍ପ ପରିତ୍ୟାଗ କରିଅଛି। ଆମ୍ଭମାନଙ୍କ ପରି ଶ୍ରମଜୀବିମାନଙ୍କର କବିତା ରଚନା ପ୍ରବୃତ୍ତି ବିଡ଼ମ୍ବନା ମାତ୍ର।

ସୂର୍ଯ୍ୟ କୁମାର ବାବୁଙ୍କୁ ମୋହୋର ବିନୀତ ସମ୍ଭାଷଣ ଜଣାଇବାହେବେ। ତାହାଙ୍କର ହୃଦୟବତ୍ତା ବାସ୍ତବିକ ପ୍ରଶଂସନୀୟ।

କଟକରେ ମୋହୋର ଅବସ୍ଥାନର ସ୍ଥିରତା ନାହିଁ, ମାତ୍ର ଆପଣ କେବେ ଆସିବାର ସଂକଳ୍ପ କରିଅଛନ୍ତି ଯଥା ସମୟରେ ତାହା ଜାଣିପାରିଲେ ମୁଁ ଉପସ୍ଥିତ ରହିବାକୁ ଯତ୍ନଶୀଳ ହେବି। ଆପଣଙ୍କୁ ଆଉଥରେ

ଏ ଜୀବନରେ ଦେଖିବି ଏ ଆଶାକୁ ମୁଁ ମନ ମଧ୍ୟରେ ସ୍ଥାନ ଦିଏ ନାହିଁ। ଆପଣ ମହାନଦୀ ମାର୍ଗରେ ଆସି କଲିକତା ମାର୍ଗରେ ପ୍ରତିଗମନ କଲେ ଭଲହେବ।

'ମହାଯାତ୍ରା'ର ୭ ସର୍ଗ କନିକାରାଣୀ ଛପାଇବାର ସଂକଳ୍ପ କରିଅଛନ୍ତି। ଆଜିକି ପ୍ରାୟ ଏକ ବର୍ଷ ହେଲା 'ଯଯାତିକେଶରୀ' ବାମଣ୍ଡାରେ ଛପା ହେଉଅଛି। ପ୍ରକାଶ ହେବାକୁ ସମ୍ଭବତଃ ଆଉ ୪-୬ ମାସ ଯିବ। ଘନଶ୍ୟାମ ମିଶ୍ର ମହାଶୟଙ୍କ ଗୃହ ଏବଂ କାର୍ଯ୍ୟସ୍ଥାନ କଟକର ଅଦୂରବର୍ତ୍ତୀ। ତାହାଙ୍କ ସହିତ ସାକ୍ଷାତକାର ଲାଭ ସହଜରେ ହୋଇପାରିବ।

ଆପଣ କଟକ ଆସିଲେ ମୋହୋର କଚେରୀ ଗୃହରେ ବସା କରିବା ହେବେ। ସେଠାରେ ପ୍ରାୟ କୌଣସି ବିଷୟରେ ଅସୁବିଧା ହେବନାହିଁ।

ଆପଣ ଆଉ ଦୁଇଖଣ୍ଡି କାବ୍ୟରଚ୍ନାର ସଂକଳ୍ପ କରିଥିଲେ। କାର୍ଯ୍ୟରେ ତାହା ପରିଣତ ହୋଇଅଛି କି?

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

( ୨୨ )

ଶ୍ରୀ ହରିଃ ଶରଣମ୍

କଟକ
ତା ୫।୧୨।୧୮୯୫

ସବିନୟ ନିବେଦନମିଦଂ,

ଶ୍ରଦ୍ଧେୟ ମହାଶୟ, ଆପଣଙ୍କର ପତ୍ର ପାଇ ଯୁଗପତ୍ ହର୍ଷ ବିଷାଦ ଜାତ ହେଲା। କମିଶନର ସାହେବ ମହୋଦୟଙ୍କ ଇଚ୍ଛାରେ ବଶମ୍ବଦ ହୋଇ ବର୍ତ୍ତମାନ ମୁଁ ଗଡ଼ଜାତ ଗସ୍ତରେ ବହିର୍ଗତ ହେଉଅଛି। ମୋହୋର ନିଜର ସ୍ୱାଧୀନତା ଥିଲେ ସମସ୍ତ କାର୍ଯ୍ୟ ପରିତ୍ୟାଗ କରି ବାଲେଶ୍ୱର କିମ୍ବା ବାରିପଦାରେ ଆପଣଙ୍କ ସହିତ ସାକ୍ଷାତକାର ଲାଭ କରିପାରନ୍ତି।

ଆପଣଙ୍କ ସହିତ ସାକ୍ଷାତକାର ଲାଭ ମୋହୋର ଜୀବନର ଉତ୍ସବ ବିଶେଷ। ମାନନୀୟ ଶ୍ରୀ ରାଜକୁମାର ଏବଂ ଶ୍ରଦ୍ଧାସ୍ପଦ ଶ୍ରୀ ସୂର୍ଯ୍ୟକୁମାର ବାବୁଙ୍କ ସହିତ ସାକ୍ଷାତ କରିବାର ମଧ୍ୟ ମୋହୋର ଆନ୍ତରିକ ଇଚ୍ଛା ଥିଲା। ଦୁର୍ଦ୍ଦୈବବଶତଃ ସେହି ଇଚ୍ଛା କାର୍ଯ୍ୟରେ ପରିଣତ ହୋଇନାହିଁ।

ବର୍ତ୍ତମାନ ମୁଁ ଢେଙ୍କାନାଳ ଏବଂ ଅନୁଗୁଳ ପର୍ଯ୍ୟନ୍ତ ଯିବାର ସଂକଳ୍ପ କରିଅଛି। ଯେବେ ସୁବିଧା ହୁଏ ସେଠାରୁ ତାଳଚେର ଏବଂ ଲହଡ଼ା ମାର୍ଗରେ ବାମଣ୍ଡା ମଧ୍ୟ ଯାଇପାରେ। ଶରୀର ଅସୁସ୍ଥ, ଏହି ହେତୁରୁ ଏ ସଂକଳ୍ପ ଯେ କାର୍ଯ୍ୟରେ ପରିଣତ ହେବ ସେ ସମ୍ବନ୍ଧରେ ମୁଁ ସନ୍ଦିହାନ।

ଆପଣମାନେ ବାରିପଦାରୁ କେଉଁ ମାର୍ଗରେ ବରପାଲି ଯିବା ହେବେ? ସୂର୍ଯ୍ୟକୁମାର ବାବୁ ମହୋଦୟଙ୍କୁ ମୋହୋର ପ୍ରୀତିପୂର୍ଣ୍ଣ ସମ୍ଭାଷଣ ଜଣାଇବା-ହେବେ।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

( ୨୩ )

ଶ୍ରୀ ହରିଃ ଶରଣମ୍

କଟକ
ତା ୧।୨।୧୮୯୬

ସବିନୟ ନିବେଦନମିଦଂ,

ଶ୍ରଦ୍ଧାସ୍ପଦ ମହୋଦୟ, ଗତକଲ୍ୟ କନିକା ନଵରରୁ ଆପଣଙ୍କ ନାମରେ ଖଣ୍ଡିଏ 'ମହାଯାତ୍ରା' ପ୍ରେରିତ ହୋଇଅଛି। ଅନୁଗ୍ରହପୂର୍ବକ ଯଥା ସମୟରେ ପ୍ରାପ୍ତିସ୍ୱୀକାର କରିବେ। ଓଡ଼ିଆରେ ଅନେକ ଲୋକେ ଅମିତ୍ରାକ୍ଷର ଲେଖିଅଛନ୍ତି, ମଧ୍ୟ ଲେଖୁଅଛନ୍ତି। ଏହି ସାହସରେ ମୁଁ ସେଥିରେ ପ୍ରବୃତ୍ତ ହୋଇଥିଲି, ଅନ୍ୟଥା ଏପରି ଦୁରୂହ ବିଷୟରେ ମୁଁ କଦାଚ୍ ହସ୍ତାର୍ପଣ କରିବାକୁ ସାହସୀ ହୋଇନଥାନ୍ତି।

ଆପଣଙ୍କର 'ଇନ୍ଦୁମତୀ'କୁ ଆମ୍ଭେମାନେ ଟ୍ରେନିଂସ୍କୁଲର ପାଠ୍ୟପୁସ୍ତକ କରିଅଛୁ। ସେଥିରେ ବର୍ଷ ମଧ୍ୟରେ କେବଳ ୪୦-୫୦ ଖଣ୍ଡ ବିକ୍ରୟ ହେବାର ସମ୍ଭାବନା। ଟେକ୍ସ୍‌ଟବୁକ୍ କମିଟିରୁ କବିତା ସମ୍ବନ୍ଧରେ ସୁବିଚାର ଆଶା ଦୁରାଶା ମାତ୍ର। ମଧ୍ୟ ଶ୍ରେଣୀ ସ୍କୁଲ ସକାଶ ତାହା ପାଠ୍ୟପୁସ୍ତକ ରୂପେ ଗୃହୀତ ହୋଇନାହିଁ।

ନୀଳମଣି ବାବୁଙ୍କ ପତ୍ରରୁ ଜାଣିଲି ଯେ ଆପଣ ଦେଶାଟନରୁ ପ୍ରତ୍ୟାଗତ ହୋଇଅଛନ୍ତି।

ଆପଣଙ୍କର କୁଶଳାଦି ଲେଖିଲେ ଆପ୍ୟାୟିତ ହେବି।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

( ୨୪ )

ଶ୍ରୀ ହରିଃ ଶରଣମ

କଟକ
ତା ୧୭।୮।୧୮୯୬

ପରମ ସ୍ନେହାସ୍ପଦ ମହୋଦୟ,

ଆପଣଙ୍କର ୧୧ ତାରିଖର ଚିଠି ବର୍ତ୍ତମାନ ହସ୍ତଗତ ହେଲା। ପ୍ରାୟ ୨ ମାସ [illegible]

ଦକ୍ଷିଣ ହସ୍ତ ବ୍ୟବହାର କରି ପାରୁ ନଥିଲି। ଅତି କଷ୍ଟରେ ପତ୍ର ସ୍ୱାକ୍ଷର ମାତ୍ର କରୁଥିଲି। ଈଶ୍ୱରକୃପାରେ ବହୁ ପରିମାଣରେ ରୋଗମୁକ୍ତ ହୋଇଅଛି। ମାତ୍ର ରୋଗର ଅବଧି ଅବସାନ ହୋଇନାହିଁ। ଅଳ୍ପ ଲେଖିଲେ ସୂକ୍ଷ୍ମ ବେଦନା ଅନୁଭବ କରୁଅଛି।

ଜଗଦୀଶ୍ୱର ଆପଣଙ୍କର ସର୍ବାଙ୍ଗୀନ କୁଶଳ ବିଧାନ କରନ୍ତୁ। ଆପଣଙ୍କର

ଶ୍ରୀ ରାଧାନାଥ ରାୟ

( ୨୫ )

ଶ୍ରୀ ହରିଃ ଶରଣମ୍

କଟକ

ତା ୩୦।୧।୧୮୯୭

ସବିନୟ ନିବେଦନମିଦଂ,

ଶ୍ରଦ୍ଧେୟ ମହୋଦୟ, ଅପାର୍ଯ୍ୟମାଣରେ ଆପଣଙ୍କର ପତ୍ରର ଉତ୍ତର ଦେବାରେ ବିଳମ୍ବ ହୋଇ-ଅଛି। କ୍ଷମା କରିବା ହେବେ।

'ଇନ୍ଦୁମତୀ'ରେ ମୁଁ କି ଲେଖିଥିଲି ସ୍ମରଣ ନାହିଁ। ଗର୍ହିତ ସାର୍ଟିଫିକେଟ୍ ପଢ଼ିବାହେବେ। ଆଉ ଯେବେ କିଛି ଲେଖିବାର ଆବଶ୍ୟକ ମନେକରନ୍ତି ଅସଂକୁଚିତ ଭାବରେ ମୋତେ ଲେଖିବା ହେବେ– ମୁଁ ଆଉ ଖଣ୍ଡିଏ [illegible] ପଠାଇଦେବି।

ବଡ଼ ଦୁଃଖର ବିଷୟ ଯେ ଆପଣଙ୍କ ପରି ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କର ଏପରି ଦଶା। ବରପାଲି ରାଜବାଟିରେ କି ଆପଣଙ୍କର ରହିବାର ଇଚ୍ଛା ନାହିଁ? ଆପଣଙ୍କର ଗୁଣ ଗ୍ରହଣ କରିବାର ଲୋକ କି ରାଜବଂଶରେ କେହି ନାହାନ୍ତି? ନଥିବାର ସମ୍ଭବପର ହେତୁ କି ରାଜବଂଶରେ ସଦ୍‌ଗୁଣ ଗ୍ରାହକ ବ୍ୟକ୍ତି ବିରଳ ଦେଖାଯାନ୍ତି।

ଆପଣଙ୍କର ସମସ୍ତ ବିଷୟ ମୋତେ ଲେଖିବା ହେବେ। ଆପଣଙ୍କର

ଶ୍ରୀ ରାଧାନାଥ ରାୟ

( ୨୬ )

ଶ୍ରୀ ହରିଃ ଶରଣମ୍

ଭଦ୍ରକ

ତା ୨୧।୨।୧୮୯୭

ସବିନୟ ନିବେଦନମିଦଂ,

ଶ୍ରଦ୍ଧେୟ ମହୋଦୟ, ଆପଣଙ୍କର ପତ୍ର ପାଇ ସମସ୍ତ ଅବଗତ ହେଲି। ବରପାଲି ରାଜନବରର ଆପଣ ଯେଉଁ ଚିତ୍ର ଦେଇଅଛନ୍ତି ତାହା ପ୍ରାୟ ଅଧିକାଂଶ ଉତ୍କଳୀୟ ରାଜନବର ପ୍ରତି ସାମାନ୍ୟ ଅଟେ। ମୁଁ ମଧ ପୂର୍ବରୁ ଏହା ଅନୁମାନ କରିଥିଲି।

ସମ୍ବଲପୁର ଜେଲର ଡେ. ଇନ୍‌ସପେକ୍ଟର ଆପଣଙ୍କ ପ୍ରତି ଅନୁକୂଳ ହୋଇଅଛନ୍ତି; ଏହି ସମ୍ବାଦରେ ମୁଁ ଅତ୍ୟନ୍ତ ପ୍ରୀତ ଏବଂ ଆଶାନ୍ୱିତ ହେଲି। ଶିକ୍ଷା ବିଭାଗରେ ପ୍ରବେଶ କଲେ ଆର୍ଥିକ ଉନ୍ନତି ଅଧିକ ହେବାର ସମ୍ଭାବନା ନାହିଁ। ମାତ୍ର ଆର୍ଥିକ ଉନ୍ନତି ଅପେକ୍ଷା ମାନସିକ ଶାନ୍ତି ଅବଶ୍ୟ ଶ୍ରେୟସ୍କର। ଆପଣ ଜଗଦୀଶ୍ୱର ପ୍ରସାଦରୁ କୃତକାର୍ଯ୍ୟ ହେଲେ ସର୍ବାଗ୍ରେ ସେଥିର ସମ୍ବାଦ ମୋତେ ଦେବାହେବେ।

'ଦରବାର' ପଦ୍ୟରେ କବିତାଂଶ ଅତ୍ୟଳ୍ପ ମାତ୍ର ଅଛି। ପ୍ରକୃତ ପକ୍ଷରେ ତାହା କବିତା ନୁହେଁ, ଉପଦେଶ ଅଟେ। 'ଚନ୍ଦ୍ରଶେଖର ସାମନ୍ତ'ଙ୍କ ସମ୍ବନ୍ଧରେ ପୂର୍ବେ ଯାହା ହିତୈଷିଣୀରେ ଦେଖିଥିଲେ ତାହା 'ଦରବାର'ର ଶେଷାଂଶ। ସମସ୍ତ କାବ୍ୟ ପାଠ ପରେ ଆପଣ ନିଜର ମନ୍ତବ୍ୟ ଲେଖି ଅନୁଗୃହୀତ କରାଇବା ହେବେ। ଇଦାନୀନ୍ତନ ବଡ଼ଲୋକମାନଙ୍କର ଅଳୀକ ଏବଂ କ୍ଷଣିକ ଯଶଃ ଲୋଲୁପତାର ଚିତ୍ର ଦରବାରରେ କିୟତ୍ ପରିମାଣରେ ଦେଖିବାହେବେ। ଲେଖକଙ୍କ ସହିତ ଆପଣ ଏକମତ କି ନା ଲେଖିବା ହେବେ।

ଆପଣଙ୍କର

ଶ୍ରୀ ରାଧାନାଥ ରାୟ

( ୨୭ )

ଶ୍ରୀ ହରିଃ ଶରଣମ୍

"ଗୋପନୀୟ"

କଟକ

ତା ୨୯।୭।୧୮୯୭

ପରମ ଶ୍ରଦ୍ଧେୟ ମହାଶୟ,

ବହୁକାଳ ଆପଣଙ୍କଠାରୁ କୌଣସି ପତ୍ର ନପାଇ ହୃଦୟ ସ୍ୱଭାବତଃ ଆଶଙ୍କିତ ହେଉଥିଲା। ମାତ୍ର ହିତୈଷିଣୀରେ ବରପାଲିର ଲୁବିଲି ଉତ୍ସବ ବିବରଣରେ ଆପଣଙ୍କ ନାମର ଉଲ୍ଲେଖ ଦେଖି ଆଶ୍ୱସ୍ତ ହୋଇଥିଲି। ଅଦ୍ୟ ନୀଳମଣିବାବୁଙ୍କ ପତ୍ରରେ ଯାହା ପାଠକଲି ତଦ୍ୱାରା ହୃଦୟ ଅବସନ୍ନ ହେଲା ଏବଂ ପୂର୍ବ ଆଶଙ୍କା ଅମୂଳକ ନଥିବାର ବୁଝିଲି। ଆପଣଙ୍କର ପତ୍ନୀଙ୍କର ଅକାଳ ବିୟୋଗର ସମ୍ବାଦ ଏବଂ ପାରିବାରିକ ଅନ୍ୟାନ୍ୟ ଦୁଃସମ୍ବାଦ ପାଇ ନିରତିଶୟ ଦୁଃଖିତ ହେଲି। ଆପଣଙ୍କ ପରି ବ୍ୟକ୍ତିଙ୍କୁ ସାନ୍ତ୍ୱନା ଦେବାର ନିଷ୍ପ୍ରୟୋଜନ। ସାନ୍ତ୍ୱନାର ଅତୀତ ଅନେକ ଦୁଃଖ ଏ ସଂସାରରେ ଅଛି। ଏଭଳି ଦୁଃଖର ସ୍ମୃତିକୁ

କେବଳ ଏକମାତ୍ର କାଳ ଶନୈଃ ଶନୈଃ ମଳିନ କରାଇଦିଏ। ଏହାର ଅନ୍ୟ ପ୍ରତିକାର ନାହିଁ।

କେଉଁ ପୀଡ଼ାରେ ଆପଣଙ୍କର ପତ୍ନୀଙ୍କର ବିୟୋଗ ହେଲା, ସେ କେତେଦିନ ପୀଡ଼ା ଭୋଗ କଲେ, ଅନ୍ତିମ ସମୟରେ କଅଣ କହିଗଲେ, ଆପଣଙ୍କଗ ସନ୍ତାନ କେତୋଟି, ସେମାନଙ୍କର ଲାଳନ ପାଳନ ଏବଂ ଶିକ୍ଷା କିପରି ହେଉଅଛି ଲେଖିବା ହେବେ। ଆପଣଙ୍କ ହୃଦୟ କିପରି ଏବଂ ଉଲ୍ଲିଖିତ ଘଟନାରେ ସେ ହୃଦୟ କିପରି ଆହତ ହୋଇଥିବ ତାହା ମୁଁ ଉତ୍ତମରୂପେ ବୁଝିପାରୁଅଛି। ଅଳ୍ପଦିନ ପୂର୍ବେ ରାମ ସୀତାଙ୍କର ଅରଣ୍ୟ ବିହାର ସମ୍ବନ୍ଧୀୟ କବିତା 'ଉତ୍କଳସାହିତ୍ୟ'ରେ ପଢ଼ୁ ପଢ଼ୁ ମୁଁ ଉଲ୍ଲସିତ ହୋଇ ଆପଣଙ୍କୁ ପୁନଃ ପୁନଃ ସ୍ମରଣ କରିଥିଲି ଏବଂ ସେ ସମ୍ବନ୍ଧରେ ଆପଣଙ୍କୁ ଖଣ୍ଡିଏ ପତ୍ର ଲେଖି ମୋହୋର ଆହ୍ଲାଦ ଜଣାଇବି ବୋଲି ସଂକଳ୍ପ କରିଥିଲି। ନାନା କାର୍ଯ୍ୟରେ ବ୍ୟସ୍ତଥିବାରୁ ସେ ସଂକଳ୍ପ ସ୍ଥଗିତ ରଖିଥିଲି। ସେତେବେଳେ ମୁଁ ସ୍ୱପ୍ନରେ ସୁଦ୍ଧା ଜାଣିନଥିଲି ଯେ ଏତେ ଅଳ୍ପ ସମୟ ମଧ୍ୟରେ ମୋତେ ଏହିପରି ପତ୍ର ଲେଖିବାକୁ ହେବ।

ପଣ୍ଡିତ ଲକ୍ଷ୍ମଣ ମିଶ୍ର 'ସାହିତ୍ୟ-ସୁନ୍ଦରୀ' ଙ୍କ ଗୋଟିଏ କବିତା ମୋହୋଠାକୁ ପଠାଇଥିଲେ। ତାହା ପ୍ରାୟ ଆପାଦମସ୍ତକ ସଂଶୋଧନଯୋଗ୍ୟ ବୋଧ ହେଲା। ଆପଣଙ୍କ ସହିତ ପରାମର୍ଶ କରି ସମସ୍ତ କବିତା ସଂଶୋଧନ କରିବାକୁ ମୁଁ ତାହାଙ୍କୁ ଉପଦେଶ ଦେଇଥିଲି। ଅବଶ୍ୟ ତାହାଙ୍କର ଉତ୍ସାହ ବୃଦ୍ଧି ନିମନ୍ତେ ୨-୪ଟା ଅନୁକୂଳ କଥା ମଧ୍ୟ ଉତ୍ତରରେ ଥିଲା। ଶୁଣି ଆଶ୍ଚର୍ଯ୍ୟାନ୍ୱିତ ହେଲି ଯେ ସେ କେବଳ ପ୍ରଶଂସାଂଶ ଉଦ୍ଧୃତ କରି ତାହାଙ୍କର ମୁଦ୍ରିତ ପୁସ୍ତକର ମୁଖବନ୍ଧରେ ସନ୍ନିବିଷ୍ଟ କରିଅଛନ୍ତି।

ବର୍ତ୍ତମାନ ବ୍ୟସ୍ତ ଅଛି। ଅବକାଶମତେ ପୁନର୍ବାର ପତ୍ର ଲେଖିବି।

ଆପଣଙ୍କର

ଶ୍ରୀ ରାଧାନାଥ ରାୟ

( ୨୮ )

ଶ୍ରୀ ହରିଃ ଶରଣମ୍

କଟକ

ତା ୫।୯।୧୮୯୭

ସବିନୟ ନିବେଦନମିଦଂ,

ପ୍ରିୟତମ ମହାଶୟ, ଆପଣଙ୍କର ଅଗଷ୍ଟ ୩୧ ତାରିଖର ପତ୍ର ବର୍ତ୍ତମାନ ହସ୍ତଗତ ହେଲା। ଆପଣଙ୍କ ପୂର୍ବ ପତ୍ର ଯଥା ସମୟରେ ପାଇ ପୁନଃ ପୁନଃ ପାଠ କରି ସୁଦ୍ଧା ତୃପ୍ତି ହେଉନଥିଲା। ମୋହୋର 'ରାୟବାହାଦୁର' ଉପାଧି ସମ୍ବନ୍ଧରେ ଆପଣ ଯେଉଁ ମନ୍ତବ୍ୟ ବ୍ୟକ୍ତ କରିଥିଲେ ସେଥି ସକାଶ ପୁଣି କ୍ଷମା ପ୍ରାର୍ଥନା କରିଅଛନ୍ତି। ମୁଁ କି ଏପରି ବାତୁଳ ଯେ ଆପଣଙ୍କର ମନ୍ତବ୍ୟର ଉଦାର ମର୍ମ ବୁଝିପାରି ନାହିଁ? ତେବେ ସେ ମନ୍ତବ୍ୟ ମୋହୋର ସାମାନ୍ୟ ଯୋଗ୍ୟତାକୁ ବହୁଦୂର ଅତିକ୍ରମ କରିଥିଲା।

'ହିତୈଷିଣୀ'ରେ 'ଅକବିର କବିତା' ପ୍ରବନ୍ଧରେ ଉଦ୍ଧୃତାଂଶ ମୋହୋ ପୂର୍ବରୁ ଉଦ୍ଧୃତ ହୋଇଥିଲା। ଗୋପନୀୟ ଘରୁଆପତ୍ରରେ ନୀଳମଣିବାବୁଙ୍କୁ ସପ୍ରସଙ୍ଗତଃ ସେ କଥାଗୁଡ଼ିକ ଲେଖିଥିଲି। 'ସାହିତ୍ୟ-ସୁନ୍ଦରୀ' ଏବଂ ଅନ୍ୟ କୌଣସି ରଚନା ସମ୍ବନ୍ଧରେ ନୀଳମଣିବାବୁ ମୋତେ ମିଷ୍ଟ ଭର୍ତ୍ସନାଗର୍ଭକ ଖଣ୍ଡିଏ ପତ୍ର ଲେଖିଥିଲେ। ମୁଁ ଆତ୍ମସମର୍ଥନରେ ମୋହୋର ମନର କଥା ତାହାଙ୍କୁ ଜଣାଇଥିଲି। ମୋହୋ ମନ୍ତବ୍ୟ ଆପଣଙ୍କର ମନୋମତ ହୋଇଥିବାର ଜାଣି ଅତ୍ୟନ୍ତ ପ୍ରୀତ ହେଲି। ବୋଲିବାର ବାହୁଲ୍ୟ ଯେ ଏକଥା ଅନ୍ୟଠାରେ ପ୍ରକାଶ୍ୟ ନୁହେଁ। ଏଠାରେ କେହି କେହି ଅନୁମାନରେ ତାହାକୁ ମୋହୋ ଲେଖା ବୋଲି ସ୍ଥିରକରିଅଛନ୍ତି। ଅନୁମାନର ମୁଖବନ୍ଧନ ଅସମ୍ଭବ; ନିଜ କଥା ନିଜେ ପ୍ରକାଶ ନ କଲେ ଯଥେଷ୍ଟ।

ଆପଣଙ୍କ ଦ୍ୱିତୀୟ ସଂସାର ପରିଗ୍ରହ ସମ୍ବନ୍ଧରେ ପତ୍ରଦ୍ୱାରା ଉପଦେଶ ଦେବାର ସହଜ କଥା ନୁହେ। ଏ ବିଷୟ ପୁନଃ ପୁନଃ ଉକ୍ତି-ପ୍ରତ୍ୟୁକ୍ତି ବାଦ-ପ୍ରତିବାଦ-ସାପେକ୍ଷ। ସ୍ଥୂଳରେ ମୁଁ କେବଳ ଏତିକି ମାତ୍ର କହିବି ଯେ ମୋହୋ ମତରେ ପାର୍ଯ୍ୟମାଣରେ ୨ୟ ସଂସାର କର୍ତ୍ତବ୍ୟ ନୁହେ। ବିଶେଷତଃ ଯାହାଙ୍କର ପୁତ୍ର କନ୍ୟା ଅଛନ୍ତି ତାହାଙ୍କ ପକ୍ଷରେ କଦାଚ୍ ନୁହେଁ। ମୋହୋ ମତରେ ଯେଉଁ ପିତା ସନ୍ତାନମାନଙ୍କୁ ବିମାତା ଯୋଗାଇଦିଅନ୍ତି, ସେ ପିତୃ-ସିଂହାସନରୁ ଅବରୋହଣ କରନ୍ତି। ପକ୍ଷାନ୍ତରରେ ମୁଁ ମୃତଦାର ବଡ଼-ବଡ଼ ଲୋକଙ୍କ ମୁଖରୁ ଶୁଣିଅଛି ଯେ ମୃତପତ୍ନୀକର ହୃଦୟ ଅତି ଶୋଚନୀୟ। ଏମାନଙ୍କ ମଧ୍ୟରେ ଦୁର୍ବଳମନା ଲୋକଙ୍କର ୨ୟ ସଂସାର ଅବଶ୍ୟ କର୍ତ୍ତବ୍ୟ। ବର୍ତ୍ତମାନ ଆପଣଙ୍କର ମାନସିକ ଅବସ୍ଥା କିପରି? ତାହା ଦୂରରୁ ଜାଣିବାର ମୋହୋ ପକ୍ଷରେ ସହଜ ନୁହେ। ଆପଣଙ୍କର ଯେବେ ପ୍ରବୃତ୍ତି ଥାଏ ଏବଂ ସୁଶୀଳା ଅଧିକ ବୟସ୍କା କନ୍ୟା ଯେବେ ସୁଲଭ ହୁଏ ତାହାହେଲେ ଆପଣ ପୁନର୍ବାର ବିବାହ

କରିପାରନ୍ତି । ଏ ବିଷୟରେ ଆପଣଙ୍କର ସ୍ୱର୍ଗୀୟ ପତ୍ନୀଙ୍କର ଅନୁରୋଧ ମଧ୍ୟ ଅଛି । କନ୍ୟା ଅଳ୍ପ-ବୟସ୍କା ହେଲେ ମୁଁ ବିବାହ କରିବାକୁ ଉପଦେଶ ଦେବିନାହିଁ।

ବର୍ତ୍ତମାନ ନିତାନ୍ତ ବ୍ୟସ୍ତ ଅଛି । ଅବସରମତେ ପୁଣି ପତ୍ର ଲେଖିବି । ଆପଣଙ୍କର

ଶ୍ରୀ ରାଧାନାଥ ରାୟ

( ୨୯ )

ଶ୍ରୀ ହରିଃ ଶରଣମ୍

କେନ୍ଦ୍ରାପଡ଼ା

ତା ୧୬ । ୧୧ । ୧୮୯୭

ସବିନୟ ନିବେଦନମିଦଂ

ଶ୍ରଦ୍ଧେୟ ମହୋଦୟ, ଆପଣଙ୍କର ଅନୁଗ୍ରହ ପତ୍ର ପାଇଅଛି ଏବଂ ସେଥି ସହିତ ପ୍ରେରିତ ପୁସ୍ତିକା ସକାଶ ଆପଣଙ୍କୁ ସାଧୁବାଦ ଦେଉଅଛି । ଆପଣଙ୍କ ରଚନା ସମ୍ବନ୍ଧରେ ମୁଁ ପୁନଃ ପୁନଃ ମତ ଦେଇଅଛି । ଏଣିକି କିଛି ଲେଖିଲେ ପୁନରୁକ୍ତି ମାତ୍ର ହେବ । 'ମହିମା' କ୍ଷୁଦ୍ର ପୁସ୍ତିକା ସତ୍ୟ; ମାତ୍ର ଉତ୍କଳ ଭାଷାରେ ଏପରି ଅଳଙ୍କାର ଅଧିକ ନାହିଁ; ସୁତରାଂ ଅନାଦରର ପଦାର୍ଥ ନୁହେଁ।

ଆପଣ ମୋହୋର ସାମାନ୍ୟ ଲେଖା ସମ୍ବନ୍ଧରେ ଯାହା ଲେଖିଅଛନ୍ତି ମୁଁ ସେଥିର ଶତାଂଶର ଭାଜନ ନୁହେଁ। ଅବକାଶ ପାଇଲେ ଖଣ୍ଡିଏ ଅଧେ ଭଲ ପୁସ୍ତକ ଲେଖିବାର ଇଚ୍ଛା ଥିଲା । ମନର ଇଚ୍ଛା ମନରେ ଲୀନ ହେଲା ।

୨ୟ ଦାର ପରିଗ୍ରହ ପଶସ୍ତ ନହେଲେହେଁ ବିଧବା ବିବାହ ସେପରି ଦୂଷଣୀୟ ନୁହେ । ଅଧିକ ବୟସ୍କା ବିଧବା କନ୍ୟା ସୁଲଭ ହେଲେ ମୁଁ ଅସଂକୁଚିତ ଚିତ୍ତରେ ଆପଣଙ୍କୁ ବିବାହ କରିବାକୁ ଉପଦେଶ ଦେବି । ଏପରି ବିବାହରେ ଆପଣଙ୍କର ଅଶାନ୍ତିର ଆଶଙ୍କା ନାହିଁ।

ଅବକାଶମତେ ପରେ ପତ୍ର ଲେଖିବି ।

ଆପଣଙ୍କର

ଶ୍ରୀ ରାଧାନାଥ ରାୟ

( ୩୦ )

ଶ୍ରୀ ହରିଃ ଶରଣମ୍

କଟକ

ତା ୨୩ । ୨ । ୧୮୯୮

ସବିନୟ ନିବେଦନମିଦଂ,

ପରମ ଶ୍ରଦ୍ଧାସ୍ପଦ ମହୋଦୟ, ଆପଣଙ୍କର ଅନୁଗ୍ରହ ଲିପି ପାଇଅଛି । ବର୍ତ୍ତମାନ ମୁଁ ଛୁଟିରେ ଅଛି । ଶରୀର ଅସୁସ୍ଥ ସତ୍ତ୍ୱେ ବାମଣ୍ଡା ମହାରାଜଙ୍କ ଅନୁରୋଧାନୁସାରେ ଅନେକ ଆୟାସ ସ୍ୱୀକାର କରି ଦେବଗଡ଼ ଯାଇଥିଲି । ଦେବଗଡ଼ରୁ ସମ୍ବଲପୁର ମାର୍ଗରେ ଆପଣମାନଙ୍କ ସହିତ ସାକ୍ଷାତ କରି ଆସିବାର ସଂକଳ୍ପ ମଧ୍ୟ ଥିଲା । ଦୁର୍ଯୋଗବଶତଃ ଅନିବାର୍ଯ୍ୟ କାରଣରୁ ମହାରାଜାଙ୍କ ସହିତ ମୋହୋର ସାକ୍ଷାତର ଆଦୌ ସୁବିଧା ହେଲା ନାହିଁ। ସେ ଦେବଗଡ଼ରେ ମୋହୋ ଅପେକ୍ଷାରେ ଥିଲେ । ହଠାତ୍ ଏପରି ଘଟନା ଘଟିଲା ଯେ ତାହାଙ୍କୁ ଅଗତ୍ୟା କଲିକତା ଯିବାକୁ ହେଲା । ଦେବଗଡ଼ରୁ ସମ୍ବଲପୁର ମାର୍ଗ ଦୁର୍ଗମ ଏବଂ ମୋହ ସଙ୍ଗେ ଖଣ୍ଡିଏ ଗାଡ଼ି ମଧ୍ୟ ଥିଲା । ଏହି ହେତୁରୁ ମୁଁ ତାଳଚେର ମାର୍ଗରେ ପ୍ରତ୍ୟାଗମନ କଲି ।

ଦେବଗଡ଼ରେ ନୀଳମଣିବାବୁ ଏବଂ ଅନ୍ୟାନ୍ୟ ବ୍ୟକ୍ତିଙ୍କ ସହିତ ଆପଣଙ୍କ ସମ୍ବନ୍ଧରେ କଥୋପକଥନ ହୋଇଥିଲା । ମୋହୋର ଧାରଣା ଥିଲା ଯେ ଆପଣଙ୍କର ମାସିକ ଆୟ ୭୦ରୁ ଊଣା ନୁହେଁ। ନୀଳମଣିବାବୁ ଏହି ଭ୍ରମ ଭାଙ୍ଗିଦେଇଅଛନ୍ତି । ଶିକ୍ଷା ବିଭାଗରେ ଆପଣଙ୍କର ପ୍ରବେଶ ନକରିବାର ହେତୁ କି ?

ଆପଣଙ୍କର ପୁତ୍ରମାନଙ୍କର ଶିକ୍ଷା କିପରି ହେଉଅଛି ? ସେମାନେ କେଉଁ ସ୍କୁଲରେ ପଢ଼ନ୍ତି ?

ଆପଣଙ୍କର

ଶ୍ରୀ ରାଧାନାଥ ରାୟ

( ୩୧ )

ଶ୍ରୀ ହରିଃ ଶରଣମ୍

ଫୁଲନଖରା

ତା ୬ । ୯ । ୧୮୯୮

ସବିନୟ ନିବେଦନମିଦଂ

ପରମ ଶ୍ରଦ୍ଧାସ୍ପଦ ଗଙ୍ଗାଧରବାବୁ, ଆପଣଙ୍କ ରେଜେଷ୍ଟରୀ ହୋଇଥିବା ପତ୍ର ବର୍ତ୍ତମାନ ହସ୍ତଗତ ହେଲା । ପତ୍ର ପାଠ କରି ମୁଁ ନିରତିଶୟ ଦୁଃଖିତ ହେଲି । ଏପରି ଅଯଥା ସନ୍ଦେହକୁ ମନରେ ସ୍ଥାନ ଦେବା, ଅକାରଣ ଦୁଃଖିତ ହେବା ଏବଂ ଅକାରଣ ବ୍ୟୟବାହୁଲ୍ୟ ସ୍ୱୀକାର କରି ରେଜେଷ୍ଟରୀ ଯୋଗେ ପତ୍ର ପଠାଇବାର ଆପଣଙ୍କ ପକ୍ଷରେ ଶୋଭନୀୟ ହୋଇନାହିଁ। ମୋହୋର ଯେତେଦୂର ସ୍ମରଣ ହେଉଅଛି ମୁଁ ଆପଣଙ୍କର କୌଣସି ପତ୍ର ଅନୁତ୍ତରିତ ରଖି ନାହିଁ। ମୁଁ ପ୍ରାୟ ନିରନ୍ତର ଭ୍ରମଣଶୀଳ, ଏହି ହେତୁରୁ ସମ୍ଭବତଃ ଆପଣଙ୍କର କୌଣସି ପତ୍ର ମୋହୋର ହସ୍ତଗତ ହୋଇ ନଥିବ, ସୁତରାଂ ମୁଁ ଉତ୍ତର ଦେଇ

ନଥିବି। ଆପଣଙ୍କଠାକୁ ପତ୍ର ଲେଖିବାର ମୋହୋର ଜୀବନର ଉପଭୋଗ ବିଶେଷ— ଏହା ଆପଣ ନିଶ୍ଚୟ ଜାଣିଥିବେ। ଆପଣ ସୁକବି ଏବଂ ସୁଲେଖକ, କେବଳ ଏହି କଥା ମନେକରି ମୁଁ ଯେ ଆପଣଙ୍କୁ ଶ୍ରଦ୍ଧା କରେ ତା ନୁହେ, ମୁଁ ଜାଣେ ଆପଣ ଜଣେ ଅତି ପବିତ୍ରହୃଦୟ ସାଧୁ ପୁରୁଷ। ଆପଣ କେବଳ ମୋହୋର ଶ୍ରଦ୍ଧା ଆକର୍ଷଣ କରିଅଛନ୍ତି, ତାହା ନୁହେଁ, ସେହି ଶ୍ରଦ୍ଧା ସଙ୍ଗେ ସଙ୍ଗେ ଆନ୍ତରିକ ଭକ୍ତି ମଧ୍ୟ ଆକର୍ଷଣ କରିଅଛନ୍ତି। ଅର୍ଥୈକ ଦୃକ୍ ପଥୈକ ଦୃକ୍ ସ୍ୱାର୍ଥପର ସଂସାରର ଚକ୍ଷୁରେ ଆପଣ ଯତ୍‌ସାମାନ୍ୟ ହେଲେହେଁ ମୋହୋ ଚକ୍ଷୁରେ ଆପଣଙ୍କର ମୂଲ୍ୟ କୋହିନୂର ଅପେକ୍ଷା ଅଧିକ।

ବର୍ତ୍ତମାନ ଆପଣଙ୍କର ଆର୍ଥିକ ଏବଂ ପାରିବାରିକ ଅବସ୍ଥା କିପରି, ଲେଖିବାହେବେ।

ବର୍ତ୍ତମାନ ମୋହୋର ବୟସ ୫୦ ବସ୍ତର। ଶାରୀରିକ ଅବସ୍ଥା ସର୍ବଦା ଶୋଚନୀୟ। ୫୫ ବର୍ଷ ପୂର୍ବରେ ପ୍ରାୟ କେହି ପେନ୍‌ସନ୍ ନିଅନ୍ତି ନାହିଁ। ମାତ୍ର ଯେତେ ଶୀଘ୍ର ସମ୍ଭବ ମୋହୋର ପେନ୍‌ସନ୍ ନେବାର ଇଚ୍ଛା ଅଛି।

ସାହିତ୍ୟ ଚର୍ଚ୍ଚାରେ ମୁଁ ଯେତେ ସମୟ [illegible]ଷ୍ଟ କରିଅଛି ସେହି ସମୟ ପାଠ୍ୟପୁସ୍ତକ ର[illegible]ରେ ଦେଇଥିଲେ ଆଜ ସରିକି ମୋହୋର ଆର୍ଥିକ ଅବସ୍ଥା ଅନେକ ଗୁଣରେ ଭଲ ହୋଇଥାନ୍ତା। ଏତେଦିନେ ଚୈତନ୍ୟ ଲାଭ ହେଲା ମାତ୍ର ଶରୀରରେ ପୂର୍ବର ପରାକ୍ରମ ନାହିଁ। ଖଣ୍ଡିଏ ଓଡ଼ିଆ ବ୍ୟାକରଣ ଲେଖୁଅଛି। ଅବସର ଅଭାବରେ ଇଚ୍ଛାନୁରୂପ ଅଗ୍ରସର ହୋଇପାରୁନାହିଁ। ମୋହୋ ପକ୍ଷରେ ଓଡ଼ିଆ ଏବଂ ବଙ୍ଗଳା ଉଭୟ ଭାଷା ସମାନ। ବଙ୍ଗଳାରେ ମୋହୋର ରଚନା ବଙ୍କିମ, ଭୂଦେବ, ନବୀନଚନ୍ଦ୍ର, ରାଜକୃଷ୍ଣ ପ୍ରଭୃତି ମହାତ୍ମାଙ୍କର ପ୍ରଶଂସା ଏବଂ ଆଶୀର୍ବାଦ ଆକର୍ଷଣ କରିଥିଲା। ବଙ୍ଗରେ ମୁଁ ପାଠ୍ୟପୁସ୍ତକ ଲେଖିଥିଲେ ମୋହୋର ଆର୍ଥିକ ଅବସ୍ଥା ଭିନ୍ନ ପ୍ରକାର ହୋଇଥାନ୍ତା।

ଓଡ଼ିଶ୍ୟାରେ ସାହିତ୍ୟର ଗ୍ରାହକ ଜଣେ ସୁଦ୍ଧା ସୁଲଭ ନୁହେ, ଏହା ଉପରେ ପୁଣି ଯେଉଁମାନେ ଉଚ୍ଚ ସାହିତ୍ୟର ଚର୍ଚ୍ଚା ଆଦୌ କରିନାହାନ୍ତି ଏବଂ ଆଦୌ ଲେଖି ଜାଣନ୍ତି ନାହିଁ, ଏପରି ଲୋକେ କବି ଏବଂ ସମାଲୋଚକ ବେଶରେ ସାହିତ୍ୟର ରଙ୍ଗଭୂମିରେ ଅଭିନୟ ଆରମ୍ଭ କରିଅଛନ୍ତି। ଅଧିକାଂଶ ଲୋକେ ମୂର୍ଖ, ସୁତରାଂ ଏଭଳି ସାହିତ୍ୟ-ଧ୍ୱଜିଙ୍କର ପ୍ରସାର ବଢୁଅଛି। ଏପରି ଦେଶ ଏବଂ ଏପରି ସମୟରେ ମୌନାବଲମ୍ବନ ଶ୍ରେୟଃ। ଆପଣଙ୍କର ଏ ବିଷୟରେ ମତ କଅଣ ?

ଆପଣଙ୍କର ଉତ୍ତର ଅପେକ୍ଷାରେ ରହିଲି। ୧୦ ଦିନ ମଧ୍ୟରେ ଉତ୍ତର ନ ଆସିଲେ ରେଜେଷ୍ଟରୀ ଯୋଗେ ପତ୍ର ପଠାଇବି।

ଆପଣଙ୍କର

ଶ୍ରୀ ରାଧାନାଥ ରାୟ

( ୩୨ )

ଶ୍ରୀ ହରିଃ ଶରଣମ୍

କଟକ

ତା ୧୫।୯।୧୮୯୮

ସବିନୟ ନିବେଦନମିଦଂ,

ପରମ ଶ୍ରଦ୍ଧେୟ ମହୋଦୟ, ଆପଣଙ୍କର ଅନୁଗ୍ରହ ଲିପି ଗତକଲ୍ୟ ହସ୍ତଗତ ହୋଇଅଛି।

ମୋହୋର ସମସ୍ତ ବଙ୍ଗଳା ରଚନା ସ୍ୱତନ୍ତ୍ର ପୁସ୍ତକାକାରରେ ପ୍ରକାଶିତ ହୋଇନାହିଁ। କେବଳ ୨ ଖଣ୍ଡି କବିତାବଳୀ ପ୍ରକାଶିତ ହୋଇଥିଲା। ଭୂଦେବବାବୁ ଏଡୁକେଶନ ଗେଜେଟରେ କେତେଗୁଡ଼ିଏ କବିତା ଛପାଇଥିଲେ। 'ନବ୍ୟଭାରତ'ରେ ମଧ୍ୟ କେତେକ ପ୍ରକାଶିତ ହୋଇଥିଲା। ସମୟାନୁସାରେ ତାହା ସଂଗ୍ରହ କରିପାରିଲେ ମୁଁ ଆପଣଙ୍କ ନିକଟକୁ ପଠାଇଦେବି।

ମୁଁ ଯେଉଁ ଓଡ଼ିଆ ବ୍ୟାକରଣ ଲେଖିଥିଲି ତାହା ଶେଷ ହୋଇଅଛି। ସମ୍ଭବତଃ ଶୀଘ୍ର ଛାପା ହେବ। ପୂର୍ଣ୍ଣ ବୃହଦବୟବ ବ୍ୟାକରଣ ଲେଖିବାର ମୋହୋର ଉଦ୍ଦେଶ୍ୟ ନଥିଲା। ସେପରି ବ୍ୟାକରଣ ଲେଖିଲେ କେବଳ କ୍ଷତିଗ୍ରସ୍ତ ହେବାର କଥା। ବ୍ୟାକରଣ ଶିକ୍ଷାକୁ ଅପେକ୍ଷାକୃତ ସହଜ ଏବଂ ସରଳ କରାଇବା ଅଭିପ୍ରାୟରେ ମୁଁ ଏ ବିଷୟରେ ପ୍ରବୃତ୍ତ ହୋଇଥିଲି। ସର୍ବ୍ବସାର ଅପେକ୍ଷା ମୋହୋର ପୁସ୍ତକ ବରଂ କ୍ଷୁଦ୍ରତର ହେବ। ପୁସ୍ତକ ଛାପା ହେଲେ ଆପଣ ସର୍ବ୍ବାଗ୍ରେ ପାଇବେ। ବର୍ତ୍ତମାନ ମୋହୋର ଶରୀରର ଅବସ୍ଥା ଆଦୌ ଭଲ ନୁହେଁ। ବିଶ୍ରାମପ୍ରିୟତା କ୍ରମଶଃ ବଢୁଅଛି। ମୁଁ ନିତାନ୍ତ କୃଶକାୟ। ବୟସ ମଧ୍ୟ ୫୦ ବର୍ଷ ହେଲା। ମୋହୋପରି ଲୋକର ଏତେଦିନ ଜୀବିତ ରହିବାହିଁ ଆଶ୍ଚର୍ଯ୍ୟ।

ଆପଣଙ୍କର ପୁତ୍ରମାନଙ୍କର ଶିକ୍ଷା କିପରି ହେଉଅଛି ଲେଖିବାହେବେ।

ଅନ୍ୟାନ୍ୟ ବିଷୟ ଅବସରମତେ ଲେଖିବି।

ଆପଣଙ୍କର

ଶ୍ରୀ ରାଧାନାଥ ରାୟ

( ୩୩ )

ଶ୍ରୀ ହରିଃ ଶରଣମ୍

ଫକୀରପଡ଼ା, କଟକ ଜିଲ୍ଲା

ତା ୨୯ । ୧୧ । ୧୮୯୮

( ଗୋପନୀୟ )

ସବିନୟ ନିବେଦନମିଦଂ,

ପରମ ଶ୍ରଦ୍ଧାସ୍ପଦ ମହୋଦୟ, ଆପଣଙ୍କର ଅନୁଗ୍ରହପତ୍ର ପାଇଅଛି । ବିଜ୍ଞାନ ସମ୍ବନ୍ଧରେ ମୋହୋର ଜ୍ଞାନ ଯେପରି ସୀମାବଦ୍ଧ, ଆପଣଙ୍କ ପ୍ରଶ୍ନରେ କୌଣସି ପ୍ରକାର ମତ ବ୍ୟକ୍ତ କରିବାର ମୋହୋ ପକ୍ଷରେ ଅନଧିକାର ଚର୍ଚ୍ଚା ହେବ । ଆପଣଙ୍କ ପ୍ରଶ୍ନର ଉତ୍ତର ଦେବାକୁ ସକ୍ଷମ ସମସ୍ତ ଓଡ଼ିଶ୍ୟାରେ କେହି ଅଛନ୍ତି କି ନାହିଁ ସନ୍ଦେହ । ପୃଥିବୀର ଶବ୍ଦ ସମ୍ବନ୍ଧରେ ଆପଣ ଯେଉଁ ଅନୁମାନ କରିଅଛନ୍ତି; ଅନ୍ୟ କୌଣସି ବ୍ୟକ୍ତି ମଧ୍ୟ ସେହିପରି ଅନୁମାନ କରିଥିବାର ମୁଁ ପୁସ୍ତକାଦିରେ ପଢ଼ିଅଛି । ମାତ୍ର ତାହା ମୀମାଂସା ନୁହେ, ଅନୁମାନ ମାତ୍ର । କଲିକତାରେ ଶବ୍ଦବିଜ୍ଞାନବିତ୍ ପଣ୍ଡିତ ସମ୍ଭବତଃ ୨-୪ ଜଣ ଅଛନ୍ତି, ସେମାନେ ଆପଣଙ୍କର ପ୍ରଶ୍ନର ସଦୁତ୍ତର ଦେଇପାରନ୍ତି ।

ମୋହୋର ବ୍ୟାକରଣ ପ୍ରାୟ ଶେଷ ହୋଇଅଛି । ଶୀଘ୍ର ଯନ୍ତ୍ରସ୍ଥ ହେବାର ସମ୍ଭାବନା । ପୁସ୍ତକର ଆକାର ସମ୍ଭବତଃ 'ସର୍ବ୍ବସାର' ପରି କିମ୍ବା ତାହାଠାରୁ କ୍ଷୁଦ୍ରତର ହୋଇପାରେ । ପୂର୍ଣ୍ଣାବୟବ ବୃହତ୍ ବ୍ୟାକରଣ ଲେଖିବାର ମୋହୋର ଅଭିପ୍ରେତ ନଥିଲା । କେବଳ ବଜାରକୁ ଦୃଷ୍ଟି କରି ମୁଁ ପୁସ୍ତକ ଲେଖିଅଛି । ଓଡ଼ିଆ ବ୍ୟାକରଣର ଯେଉଁ ଅଂଶ ସଂସ୍କୃତ-ମୂଳକ ସେହି ଅଂଶରେ ଛାତ୍ରମାନଙ୍କୁ ବ୍ୟୁତ୍ପନ୍ନ କରାଇବାର ମୋହୋର ପ୍ରଧାନ ଲକ୍ଷ୍ୟ ଅଟେ । ସ୍କୁଲ୍ ବୁକ୍ ସୋସାଇଟିର ଯେଉଁ ବ୍ୟାକରଣ ମୋହୋ ନାମରେ ଚଳୁଅଛି ମୁଁ ତାହାର ପ୍ରକୃତ ଲେଖକ ନୁହେଁ । ମୋହୋର ଅଫିସ୍‌ର ଭୂତପୂର୍ବ ହେଡ୍‌କ୍ଲାର୍କ ଭୁବନବାବୁ ତାହା ଲେଖିଥିଲେ । ତାହାଙ୍କ ଅନୁରୋଧରେ ତାହାଙ୍କର ଆର୍ଥିକ ଉପକାର ସକାଶ ମୁଁ ମୋହୋର ନାମ ଦେବାକୁ ସମ୍ମତ ହୋଇ ପୁସ୍ତକର ପାଣ୍ଡୁଲେଖ୍ୟ ଅଂଶତଃ ଦେଖିଥିଲି ।

ମୁଁ ସାହିତ୍ୟ ପ୍ରତି ପ୍ରଥମେ ମନୋଯୋଗୀ ହୋଇ ନିଜର ଭୟଙ୍କର କ୍ଷତି କରିଅଛି । ପାଠ୍ୟପୁସ୍ତକ ରଚନା ପ୍ରତି ପୂର୍ବରୁ ମନୋଯୋଗୀ ହୋଇଥିଲେ ଆଜି ସରିକି ମୋହୋର ଆର୍ଥିକ ଅବସ୍ଥା ଏପରି ଉନ୍ନତ ହୋଇଥାନ୍ତା ଯେ ମୁଁ ମୋହୋର ସମସ୍ତ ଅବକାଶ ସାହିତ୍ୟ ପ୍ରତି ଅର୍ପଣ କରି ପାରନ୍ତି । ଓଡ଼ିଶ୍ୟାରେ ସାହିତ୍ୟାନୁରାଗୀ ରାଜା ଥିଲେ ମୁଁ ବହୁଦିନ ପୂର୍ବେ ପେନ୍‌ସନ୍ ନେଇ ତାହାଙ୍କର ଆଶ୍ରୟରେ ରହି ଉତ୍କଳ ସାହିତ୍ୟୋନ୍ନତିରେ ସମସ୍ତ ସମୟ ଯାପନ କରିଥାନ୍ତି । ଉତ୍କଳ ସାହିତ୍ୟ ସମ୍ବନ୍ଧରେ ମୋହୋର ଯାହା କରିବାର ଇଚ୍ଛା ଥିଲା, ତାହାର ଶତାଂଶ କରିବାର ମଧ୍ୟ ମୁଁ ସୁବିଧା ପାଇଲି ନାହିଁ । ପ୍ରକୃତ ସାହିତ୍ୟାନୁରାଗୀ ରାଜା ଓଡ଼ିଶାରେ ଜଣେ ସୁଦ୍ଧା ନାହାନ୍ତି । ବାମଣ୍ଡା ଅବଶ୍ୟ ପ୍ରଶଂସ୍ୟ; ମାତ୍ର ଅମାରାତିରେ ଏକମାତ୍ର ଜ୍ୟୋତିରିଙ୍ଗଣବତ୍ ପ୍ରଶଂସ୍ୟ; ସେଥିରୁ ଅଧିକ କିଛି ନୁହନ୍ତି । ବାମଣ୍ଡା ରାଜାଙ୍କ ସହିତ ବନ୍ଧୁତାଦ୍ୱାରା ମୋହୋର ଲାଭ ନ ହୋଇ ବରଂ କ୍ଷତି ହୋଇଅଛି । ଆପଣ ମୋହୋର ଅତି ବିଶ୍ୱସ୍ତ ବନ୍ଧୁ ବୋଲି ହୃଦୟର କଥା ଆପଣଙ୍କୁ ଲେଖିଲି ।

ମୋହୋର ଯେଉଁ ଦଶା, ଆପଣଙ୍କର ମଧ୍ୟ ସେହି ଦଶା । ଫଳତଃ ଓଡ଼ିଶ୍ୟାରେ ସାହିତ୍ୟଚର୍ଚ୍ଚା ବିଡ଼ମ୍ବନା ମାତ୍ର । ଓଡ଼ିଶ୍ୟାରେ ଯେଉଁ ୨-୪ ଖଣ୍ଡି ସମ୍ବାଦପତ୍ର ଅଛି, ଏକ 'ହିତୈଷିଣୀ' ବ୍ୟତୀତ ଆଉ ସମସ୍ତେ ସାହିତ୍ୟ ସମ୍ପର୍କ ଶୂନ୍ୟ । ସାହିତ୍ୟରେ ଏମାନଙ୍କର ଆଦୌ ଅଭିନିବେଶ ନାହିଁ । ଅଭିନିବେଶ ହେବାର ମଧ୍ୟ ସମ୍ଭାବନା ନାହିଁ । ସାହିତ୍ୟ ଚର୍ଚ୍ଚା ଗୋଟିଏ ଜୀବନବ୍ୟାପୀ ବ୍ରତ । ପୁଣି ସାହିତ୍ୟାନୁରାଗ ଗୋଟିଏ ଈଶ୍ୱରଦତ୍ତ ପଦାର୍ଥ । ଲକ୍ଷ ମଧ୍ୟରେ ଜଣେ ଦୁଇଜଣ ସାହିତ୍ୟାନୁରାଗୀ ହୁଅନ୍ତି । ସମ୍ପାଦକମାନେ ସେପରି ହୃଦୟ ପାଇ ନାହାନ୍ତି, ପୁଣି ଏମାନଙ୍କର ଶିକ୍ଷା ନିତାନ୍ତ ସୀମାବଦ୍ଧ । ଏମାନେ ସାହିତ୍ୟୋନ୍ନତି ବିଷୟରେ ସାଧାରଣକୁ ଉପଦେଶ ଦେବାକୁ କିପରି ସକ୍ଷମ, ତାହା ଆପଣଙ୍କର ଅବିଦିତ ନାହିଁ ।

ବ୍ୟାକରଣ କଥା ଲେଖୁଁ ଲେଖୁଁ ମୁଁ ପତ୍ରକୁ ଅଯଥା ଦୀର୍ଘ କରିପକାଇଲି – କ୍ଷମାକରିବେ ।

ଆପଣଙ୍କର

ଶ୍ରୀ ରାଧାନାଥ ରାୟ

( ୩୪ )

ଶ୍ରୀ ହରିଃ ଶରଣମ୍

ଖଣ୍ଡଗିରି

ତା ୧୩ । ୪ । ୧୮୯୯

ସବିନୟ ନିବେଦନମିଦଂ,

ପରମ ଶ୍ରଦ୍ଧେୟ ମହୋଦୟ, ଆପଣଙ୍କର ବେତନ ବୃଦ୍ଧି ସମ୍ବାଦରେ ଯତ୍‌ପରୋନାସ୍ତି ପ୍ରୀତ ହେଲି ।

ଆପଣଙ୍କ ପରି ବ୍ୟକ୍ତିଙ୍କର ପ୍ରକୃତ ମୂଲ୍ୟ ଏ ସଂସାରରେ ସୁଲଭ ନୁହେ। ବିଶେଷତଃ ବର୍ତ୍ତମାନ ସମୟରେ ଇଂରେଜିଜ୍ଞାନ ଯୋଗ୍ୟତାର ଏକମାତ୍ର ମାନଦଣ୍ଡ। ଅନ୍ୟଥା ଆପଣଙ୍କ ପରି ବ୍ୟକ୍ତିଙ୍କର ୫୦୦ ଟଙ୍କା ବେତନ ହେବାର ଉଚିତ ଥିଲା।

ମାନନୀୟ ଶ୍ରୀ ବରପାଲି ଅଧୀଶ୍ୱର ମହୋଦୟଙ୍କର ପତ୍ର ମୁଁ ପାଇଅଛି। ବର୍ତ୍ତମାନ ସାଲତମାମିର ସମୟ। ଆମ୍ଭମାନଙ୍କୁ ଦଣ୍ଡ ମାତ୍ର ଅବସର ନାହିଁ। ଅବସର ମତେ ଉତ୍ତର ଦେବି। ତାହାଙ୍କୁ ମୋହୋର ବିନୀତ ସମ୍ଭାଷଣ ଜଣାଇବା ହେବେ।

ମୋହୋର ବ୍ୟାକରଣ ଛାପା ଅବଧି ଶେଷ ହୋଇନାହିଁ। ସମ୍ଭବତଃ ଆହୁରି ଏକ ମାସ ଲାଗିବ। ସମୟାଭାବରୁ ପୁସ୍ତକ ଆଶାନୁରୂପ ଶୁଦ୍ଧ କରିପାରି ନାହିଁ। ଛାପା ହେଲା ଉତ୍ତାରୁ ଆପଣଙ୍କର ଅଭିମତ ଏବଂ ଉପଦେଶ ଅନୁସାରେ ଭାବୀ ସଂସ୍କରଣକୁ ଅପେକ୍ଷାକୃତ ଉତ୍କୃଷ୍ଟ କରିବାକୁ ସଚେଷ୍ଟ ହେବି।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

( ୩୫ )

ଶ୍ରୀ ହରିଃ ଶରଣମ୍

କଟକ
ତା ୨୪।୪।୧୮୯୯

ଶ୍ରଦ୍ଧେୟ ମହୋଦୟ, ସମ୍ବଲପୁରରେ ପ୍ରଚଳିତ ଓଡ଼ିଆ ଦେଶି କସରତ୍ ଏବଂ କିଣ୍ଡର୍ ଗାର୍ଟେନ ସମ୍ବନ୍ଧୀୟ କୌଣସି ପୁସ୍ତକ ଥିଲେ ଅନୁଗ୍ରହପୂର୍ବକ ଉଭୟ ପୁସ୍ତକରୁ ଏକ ଏକ ଖଣ୍ଡ ଭେଲ୍ୟୁ ପେବଲ୍ ପାର୍ଶଲ୍ ଯୋଗେ ମୋହୋଠାକୁ ପଠାଇଲେ ଉପକୃତ ହେବି। ପୁସ୍ତକର ମୂଲ୍ୟ ଅଫିସରୁ ଦେବାକୁ ହେବ।

ଓଡ଼ିଆ ସାହିତ୍ୟ ସମ୍ବନ୍ଧୀୟ ଯେଉଁ ପୁସ୍ତକମାନ ପ୍ରାଇମେରି ଏବଂ ମଧ୍ୟମ ଶ୍ରେଣୀ ସ୍କୁଲ୍‌ରେ ପଠିତ ହୁଏ ସେଥିରୁ ମଧ ଏକ ଏକ ଖଣ୍ଡ ସେହି ପାର୍ଶଲ୍‌ରେ ପଠାଇବାହେବେ।

ବଶମ୍ବଦ
ଶ୍ରୀ ରାଧାନାଥ ରାୟ

( ୩୬ )

ଶ୍ରୀ ହରିଃ ଶରଣମ୍

କଟକ

ସବିନୟ ନିବେଦନମିଦଂ, ତା ୬।୬।୧୮୯୯

ଶ୍ରଦ୍ଧେୟ ମହୋଦୟ, ଅଦ୍ୟ ମତ୍‌ପ୍ରଣୀତ 'ବ୍ୟାକରଣ ପ୍ରବେଶ' ଉପହାର ସ୍ୱରୂପ ଆପଣଙ୍କଠାକୁ ପଠାଇଲି। 'ବ୍ୟାକରଣ ପରିଚୟ' 'ବ୍ୟାକରଣ ପ୍ରବେଶ'ର କ୍ଷୁଦ୍ର ସଂସ୍କରଣ ମାତ୍ର। ତାହା ମଧ ଅତି ଶୀଘ୍ର ପଠାଇବି।

ସମୟର ଅଳ୍ପତା ଏବଂ ପ୍ରେସ୍ କର୍ମଚାରୀଙ୍କର ଅନବଧାନତା ନିବନ୍ଧନ ପୁସ୍ତକର ଅନେକ ସ୍ଥଳେ ଭ୍ରମ ଲକ୍ଷିତ ହୋଇପାରେ। ଖଣ୍ଡିଏ ଶୁଦ୍ଧିପତ୍ର ଦେଇଅଛି। ମାତ୍ର ଶୁଦ୍ଧିପତ୍ରରେ ସମ୍ଭବତଃ ସମସ୍ତ ଭ୍ରମ ପ୍ରଦର୍ଶିତ ହୋଇନାହିଁ।

ଆପଣଙ୍କଠାରୁ ମୁଁ ପୁସ୍ତକ ସମ୍ବନ୍ଧରେ ମୂଲ୍ୟବାନ୍ ଉପଦେଶ ପ୍ରତ୍ୟାଶା କରେ। ବ୍ୟାକରଣ ଶାସ୍ତ୍ରରେ ଆପଣ ସବ୍ୟୁତ୍ପନ୍ନ। ମୁଁ ଯେଉଁ ପ୍ରଣାଳୀ ଅବଲମ୍ବନ କରି ପୁସ୍ତକ ଲେଖିଅଛି ସେ ସମ୍ବନ୍ଧରେ ଆପଣଙ୍କର ମତ ବିସ୍ତୃତ ଭାବରେ ଲେଖିଲେ ଉପକୃତ ହେବି। ମୋହୋର ନିତାନ୍ତ ପ୍ରାର୍ଥନା; ଆପଣ ନିଃସଙ୍କୋଚରେ ସମସ୍ତ ଦୋଷ ଦେଖାଇବା ହେବେ। ତାହା ହେଲେ ମୁଁ ଆଗାମୀ ସଂସ୍କରଣରେ ସତର୍କ ହୋଇପାରିବି।

ଉଦାହରଣ ଅଧିକ ଦେଲେ ସୂତ୍ର ଜୀର୍ଣ୍ଣ ହୁଏ ଏହା ମୁଁ କାର୍ଯ୍ୟତଃ ଦେଖିଅଛି। ସେହି ହେତୁରୁ ପ୍ରତ୍ୟେକ ସୂତ୍ରରେ ଅତିରିକ୍ତ ପରିମାଣରେ ଉଦାହରଣ ଦେଇଅଛି। ଉଦାହରଣ ଛାତ୍ରମାନଙ୍କୁ କଣ୍ଠସ୍ଥ କରିବାକୁ ହେବ ନାହିଁ– କେବଳ ବୁଝିଲେ ଯଥେଷ୍ଟ ହେଲା।

ପ୍ରଶ୍ନଗୁଡ଼ିକ ମଧ ମନୋଯୋଗପୂର୍ବକ ଦେଖିବା ହେବେ। ଫଳତଃ ଯେଉଁଠାରେ ଯେଉଁ ତ୍ରୁଟି କିମ୍ବା ଅଭାବ ଲକ୍ଷିତ ହେବ ସେ ସମସ୍ତ ବିବୃତ ଭାବରେ ମୋତେ ଲେଖିବା ହେବେ।

ମୋହୋର ଉପଯୁକ୍ତ ଏବଂ ଅର୍ଜନକ୍ଷମ ଅନୁଜଙ୍କର ଅକାଳ ମୃତ୍ୟୁ ଏବଂ ଅନ୍ୟାନ୍ୟ ଦୁର୍ଘଟଣା ହେତୁରୁ ମୁଁ ଏକପ୍ରକାର ମ୍ରିୟମାଣ ଅବସ୍ଥାରେ ସମୟ ଯାପନ କରୁଅଛି।

ଯେତେ ଶୀଘ୍ର ସମ୍ଭବ ବ୍ୟାକରଣ ସମ୍ବନ୍ଧରେ ଆପଣଙ୍କର ମନ୍ତବ୍ୟ ପଠାଇଲେ ଉପକୃତ ହେବି।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

( ୩୭ )

ଶ୍ରୀ ହରିଃ ଶରଣମ୍

କଟକ
ତା ୧୪।୬।୧୮୯୯

ସବିନୟ ନିବେଦନମିଦଂ,

ଶ୍ରଦ୍ଧେୟ ମହୋଦୟ, ଆପଣଙ୍କର ଅନୁଗ୍ରହଲିପି ବର୍ତ୍ତମାନ ହସ୍ତଗତ ହେଲା। ସଂପ୍ରତି ମୁଁ ନିତାନ୍ତ

ଦୁସ୍ଥ ଅବସ୍ଥାରେ ଅଭିଭୂତ। ଅବକାଶ ଅଭାବରୁ ବରପାଲି ଅଧୀଶ୍ୱରଙ୍କର ପତ୍ରର ଉତ୍ତର ଦେଇପାରି ନାହିଁ ବୋଲି ଅତ୍ୟନ୍ତ ଦୁଃଖିତ ଏବଂ ଲଜ୍ଜିତ ଅଛି। ଭଗବାନ୍ ସୁଦିନ ଦେଲେ ଅବକାଶମତେ ତାହାଙ୍କୁ ପତ୍ର ଲେଖିବି। ତାହାଙ୍କୁ ମୋହୋର ଅଭିବାଦନ ଜଣାଇବା ହେବେ।

ଆଜି ପର୍ଯ୍ୟନ୍ତ ମୁଁ ନୀଳମଣିବାବୁଙ୍କ ଠାକୁ ମୋହୋର ବ୍ୟାକରଣ ପଠାଇ ପାରିଲି ନାହିଁ। ପ୍ରଶଂସା କିମ୍ବା ସମାଲୋଚନା ମୋହୋର ଉଦ୍ଦେଶ୍ୟ ନୁହେ। କେବଳ ସଦୁପଦେଶ ମୋହୋର ଏକମାତ୍ର ଲକ୍ଷ। ଆପଣଙ୍କଠାରୁ ଏବଂ କିୟତ୍ ପରିମାଣରେ ନୀଳମଣି-ବାବୁଙ୍କ ଠାରୁ ମୁଁ ସଦୁପଦେଶ ଆଶାକରେ।

ବ୍ୟାକରଣରେ ଅନେକ ଭୁଲ ହୋଇଅଛି। କେତେକ ମୋହୋର ନିଜର, ମାତ୍ର ଅଧିକାଂଶ ଛାପାର ଭୁଲ। ଶୁଦ୍ଧିପତ୍ରରେ ସବୁ ଭୁଲ ପ୍ରଦର୍ଶିତ ହୋଇନାହିଁ।

ଓଡ଼ିଆରେ ପ୍ରଚଳିତ 'ସର୍ବ୍ବସାର' ପ୍ରଭୃତି ବ୍ୟାକରଣ ତୁଳନାରେ କଳେବରରେ ବ୍ୟାକରଣ ପ୍ରବେଶ ଅନେକ କ୍ଷୁଦ୍ର। ଉଦାହରଣ ଏବଂ ପ୍ରଶ୍ନର ବାହୁଲ୍ୟ ହୋଇ-ନଥିଲେ ପୁସ୍ତକ ଆହୁରି କ୍ଷୁଦ୍ର ହୋଇଥାନ୍ତା।

ଓଡ଼ିଆ ଛାତ୍ରମାନଙ୍କ ପକ୍ଷରେ ପ୍ରଥମ ଭାଗ ପ୍ରକଟିତ ବିଷୟ ଅପେକ୍ଷାକୃତ ସହଜ। ଏହି କାରଣରୁ ମୁଁ ପ୍ରଥମ ଭାଗକୁ ସଂକ୍ଷେପରେ ଶେଷକରିଅଛି।

ଶିକ୍ଷା ଦେବା ସକାଶେ ବ୍ୟୁତ୍ପନ୍ନ ଶିକ୍ଷକ ଆବଶ୍ୟକ, ଆପଣଙ୍କର ଏହି ଉକ୍ତି ଅମୂଳକ ନୁହେଁ। ବି. ଏବଂ ସଂ. ଏ ଉପସର୍ଗ ଯୋଡ଼ିକ ପରସ୍ପର ବିପରୀତାର୍ଥବୋଧକ; ଯଥା ବିବାଦ, ସଂବାଦ। ଏଠାରେ ସଂବାଦ ଅର୍ଥ କଥୋପକଥନ; ଯଥା– ନାରଦ ଯୁଧିଷ୍ଠିର ସଂବାଦ। ଏପରି ସ୍ଥଳେ ଶିକ୍ଷକ ଯଦି ସଂବାଦ ଅର୍ଥ ଖବର ବୁଝାଇଦିଅନ୍ତି ତାହାହେଲେ ଛାତ୍ରମାନେ ସୂତ୍ରର ଉଦ୍ଦେଶ୍ୟ ବୁଝି ପାରିବେ ନାହିଁ। ବ୍ୟାକରଣର ଖଣ୍ଡିଏ ଟିକା ପ୍ରସ୍ତୁତ ହେଉଅଛି। ଟୀକା ବାହାରିଲେ ଶିକ୍ଷକମାନଙ୍କର ବିଶେଷ ସୁବିଧା ହେବାର ସମ୍ଭାବନା।

ଆପଣଙ୍କୁ ପ୍ରାର୍ଥନା ଆପଣ ମନୋଯୋଗପୂର୍ବକ ଆମୂଳଚୂଳ ଅଧ୍ୟୟନ କରି ଭୁଲଗୁଡ଼ିକ ମୋତେ ଲେଖିବାହେବେ। ସର୍ବୋପରି ବିଷୟ ଯୋଜନା ପ୍ରଣାଳୀ ପର୍ଯ୍ୟାଲୋଚନା କରି ଦେଖିବା ହେବେ। ମୋହୋର ଅବଲମ୍ବିତ ପ୍ରଣାଳୀ ଠିକ୍ ହୋଇଅଛି କି ନା ଏସମ୍ବନ୍ଧରେ ଆପଣଙ୍କର ମନ୍ତବ୍ୟ ଲେଖି ଉପକୃତ କରାଇବାହେବେ।

ଶିକ୍ଷାଭିମାନୀ ବ୍ୟକ୍ତିଙ୍କୁ ସନ୍ତୁଷ୍ଟ କରିବା ମୋହୋର ଉଦ୍ଦେଶ୍ୟ ନୁହେଁ। ସହଜ ପ୍ରଣାଳୀରେ ଛାତ୍ରମାନଙ୍କୁ ବ୍ୟୁତ୍ପନ୍ନ କରାଇବା ମୋହୋର ଏକମାତ୍ର ଲକ୍ଷ୍ୟ।

ଆପଣଙ୍କର

ଶ୍ରୀ ରାଧାନାଥ ରାୟ

(୩୮)

ଶ୍ରୀ ହରିଃ ଶରଣମ୍

କଟକ

ତା ୧୮।୬।୧୮୯୯

(ଗୋପନୀୟ)

ସବିନୟ ନିବେଦନମିଦଂ,

ପରମ ଶ୍ରଦ୍ଧେୟ ମହୋଦୟ, ମାନନୀୟ ଶ୍ରୀଯୁକ୍ତ ବରପାଲି ଅଧୀଶ୍ୱର ମହୋଦୟ ସମ୍ବଲପୁର ପ୍ରଚଳିତ ଶିକ୍ଷାର ଖଣ୍ଡିଏ ମୁଦ୍ରିତ ନିୟମାବଳୀ ମୋହୋଠାକୁ ପଠାଇ ମୋହୋର ମତ ଜିଜ୍ଞାସୁ ହୋଇଥିଲେ। ମୁଁ କି ଉତ୍ତର ଦେବି ଅବଧି ତାହା ଅବଧାରଣ କରି ପାରି ନାହିଁ। ସମ୍ବଲପୁର ପ୍ରଣାଳୀ ଏବଂ ଓଡ଼ିଶ୍ୟା ପ୍ରଣାଳୀ ଉଭୟ ପ୍ରଣାଳୀରେ ଉତ୍କର୍ଷ, ଅପକର୍ଷ ବିଦ୍ୟମାନ ରହିଅଛି। ବଙ୍ଗୀୟ ଡିରେକ୍‌ଟର୍ ସାହେବ ମହୋଦୟ ଅଳ୍ପଦିନ ପୂର୍ବେ ମଧ୍ୟପ୍ରଦେଶୀୟ ଶିକ୍ଷା ପ୍ରଣାଳୀ ସ୍ୱୟଂ ପର୍ଯ୍ୟବେକ୍ଷଣ କରି ସେଥି ସମ୍ବନ୍ଧରେ ଅନୁକୂଳ ମତ ପ୍ରକାଶ କରିଅଛନ୍ତି। ଡିରେକ୍‌ଟର୍ ସାହେବ ଏ ସମ୍ବନ୍ଧରେ ମୋହୋର ମତ ଜିଜ୍ଞାସୁ ହୋଇଥିଲେ। ମୁଁ ମୋହୋ ରିପୋର୍ଟରେ ଉଭୟ ମତର ଦୋଷ ଗୁଣ ଦେଖାଇଅଛି। ବର୍ତ୍ତମାନ ସେ ବିଷୟ ବିଚାରାଧୀନ।

ସାହିତ୍ୟାଂଶରେ ଓଡ଼ିଶ୍ୟା ପ୍ରଣାଳୀ ଅପେକ୍ଷାକୃତ ଉତ୍କୃଷ୍ଟ ବୋଧହୁଏ, ମାତ୍ର ସାହିତ୍ୟ ସମ୍ବନ୍ଧୀୟ ଉତ୍କର୍ଷାପକର୍ଷ ଇଉରୋପୀୟମାନଙ୍କୁ ବୁଝାଇବା ସହଜ କଥା ନୁହେ।

ସେମାନଙ୍କ ମତରେ ପାଦରି ସାହେବମାନେ ଓଡ଼ିଆ ଭାଷାରେ ସର୍ବ୍ବପ୍ରଧାନ ପଣ୍ଡିତ। ଏପରି ସ୍ଥଳେ ମୋହୋ ମତରେ ମୌନ ହିଁ ଶ୍ରେୟସ୍କର।

ସମ୍ବାଦପତ୍ରମାନଙ୍କରୁ ଏହା ମଧ୍ୟ ଜାଣିଥିବେ ଯେ ରାଜନୈତିକ କାରଣରୁ ରାଜପୁରୁଷମାନେ ଦେଶୀୟ ସାହିତ୍ୟୋନ୍ନତିର ଅନୁକୂଳ ନୁହନ୍ତି। ସାହିତ୍ୟୋନ୍ନତି ଜାତୀୟତା ଏବଂ ଦେଶ-ହିତୈଷିତାର ପରିପୋଷକ। ସୁତରାଂ ରାଜପୁରୁଷମାନଙ୍କ ଚକ୍ଷୁରେ ତାହା ନିରାପଦ ନୁହେଁ। ସମ୍ବାଦପତ୍ରମାନଙ୍କର ଏହି ମତ ଯେବେ ସମୂଳକ ହୋଇଥାଏ ତାହାହେଲେ ସାହିତ୍ୟୋନ୍ନତିର

ଆଶା ବିଡ଼ମ୍ବନା ମାତ୍ର।

ଅବସରମତେ 'ବ୍ୟାକରଣ ପ୍ରବେଶ'ର ଦୋଷ ଏବଂ ଭୁଲଗୁଡ଼ିକ ବିବୃତ ଭାବରେ ଜଣାଇବା ହେବେ।

ଓଡ଼ିଆରେ ବୃହତ୍ ପୂର୍ଣ୍ଣାବୟବ ବ୍ୟାକରଣ ଲେଖିବାର ସମୟ ବହୁ ଦୂରବର୍ତ୍ତୀ। ବର୍ତ୍ତମାନ କେହି ସେପରି ପୁସ୍ତକ ଲେଖିଲେ ତାହା ବିକ୍ରୟ ହେବ କି ନାହିଁ ସନ୍ଦେହ। ଏହି ହେତୁରୁ କେବଳ ସ୍କୁଲ୍ ପାଠ୍ୟ ହେବା ଅଭିପ୍ରାୟରେ ମୁଁ ବ୍ୟାକରଣ ଲେଖିଅଛି।

ସର୍ବ୍ବସାର ବ୍ୟାକରଣ ଆପଣ ସମ୍ଭବତଃ ଦେଖିଅଛନ୍ତି। ତାହାର ମୂଲ୍ୟ ବହୁକାଳ ଟ ୧୯ ଥିଲା। କ୍ରମଶଂ ଟ ୧।, ଟ ୧ , ଟ ୦୳କୁ ଓହ୍ଲାଇ ବର୍ତ୍ତମାନ ଟ ୦୳୵ ହୋଇଅଛି। ଓଡ଼ିଶାର ପୁସ୍ତକ ନିର୍ବାଚ଼ନୀ କମିଟିର ପୁସ୍ତକ ବିଚାରର ରୀତି ଅଦ୍ଭୁତ ପ୍ରକାର। ପୁସ୍ତକ କେତେ ପୃଷ୍ଠା, ତାହାର ଛାପା ଖରଚ଼ କେତେ ଏବଂ ଛାପା ଖରଚ଼ ଦୃଷ୍ଟିରେ ମୂଲ୍ୟ ଅଧିକ କି ଅଳ୍ପ ହୋଇଅଛି ଏହାହିଁ କମିଟିର ବିଚାର୍ଯ୍ୟ ବିଷୟ। ପୁସ୍ତକ ରଚ଼ନାରେ କେଉଁ ଗ୍ରନ୍ଥକାର କିପରି ମୌଳିକ ଚିନ୍ତା ଏବଂ କୌଶଳ ପ୍ରଦର୍ଶନ କରିଅଛନ୍ତି; ସେଥିପ୍ରତି କମିଟିର ଆଦୌ ଦୃଷ୍ଟି ପଡ଼େ ନାହିଁ।

'ବ୍ୟାକରଣ ପ୍ରବେଶ'ର ମୂଲ୍ୟ ମୁଁ ଯଥାସମ୍ଭବ କମ୍ କରି 'ସର୍ବ୍ବସାର'ର ସମାନ କରିଅଛି। ତଥାପି ପୁସ୍ତକ କମିଟିରେ ମଞ୍ଜୁର ହେବ କି ନାହିଁ ସେ ବିଷୟରେ ମୋହୋର ସନ୍ଦେହ ଅଛି। ସମ୍ଭବତଃ ବିଷୟ ଯୋଜନାର ନୂତନତା ଦେଖି କମିଟି ପୁସ୍ତକ ଅଗ୍ରାହ୍ୟ କରିପାରନ୍ତି। ଦୀପିକା ପ୍ରେସ୍‌ର ଛାପା ନିତାନ୍ତ କଦର୍ଯ୍ୟ ଏବଂ ଭ୍ରମପୂର୍ଣ୍ଣ। ସେହି ହେତୁରୁ ପୁସ୍ତକରେ ଅନେକ ଅଶୁଦ୍ଧି ରହିଯାଇଅଛି। ଖଣ୍ଡିଏ ଶୁଦ୍ଧିପତ୍ର ଦେଇଅଛି, ମାତ୍ର ଶୁଦ୍ଧିପତ୍ରର ପୁଣି ଖଣ୍ଡିଏ ଶୁଦ୍ଧିପତ୍ର ଆବଶ୍ୟକ ବୋଧ ହେଉଅଛି। କମିଟି ମଞ୍ଜୁର କରିବେ କି ନାହିଁ ସନ୍ଦେହ, କଲେ ସୁଦ୍ଧା 'ବା' 'ଅଥବା' ଲଗାଇଦେଇ 'ବ୍ୟାକରଣ ପ୍ରବେଶ'କୁ ଅନ୍ୟତମ ପାଠ୍ୟ ପୁସ୍ତକ ଶ୍ରେଣୀର ଅନ୍ତର୍ଭୁକ୍ତ କରିବେ। ଏହି ସବୁ କାରଣରୁ ଓଡ଼ିଆ ପାଠ୍ୟପୁସ୍ତକର ଉନ୍ନତି ସୁଦୂର ପରାହତ ହୋଇଅଛି। ତରାଜୁ ଦ୍ୱାରା ଯେଉଁ ସ୍ଥଳେ ବିଚାର ହୁଏ ସେପରି ସ୍ଥଳମାନଙ୍କରେ ମୌଳିକ ଚିନ୍ତାର କୌଣସି ମୂଲ୍ୟ କିମ୍ବା ଆଦରର ସମ୍ଭାବନା ନାହିଁ।

କମିଟି ମଞ୍ଜୁର କରନ୍ତୁ ଅବା ନକରନ୍ତୁ ଅନେକ ଲୋକେ କୌତୂହଳବଶତଃ ପୁସ୍ତକ କ୍ରୟ କରୁଅଛନ୍ତି। ପୁସ୍ତକର ଦ୍ୱିତୀୟ ସଂସ୍କରଣ ଯେବେ ଆବଶ୍ୟକ ହୁଏ ପୂର୍ବରୁ ଭୁଲଗୁଡ଼ିକ ସଂଶୋଧନ କରି ରଖିବାର ଉଚିତ। ଏହି କାରଣରୁ ଆପଣଙ୍କର ମନ୍ତବ୍ୟର ପ୍ରତୀକ୍ଷାରେ ଆପଣଙ୍କୁ ପୁନଃ ପୁନଃ ବିରକ୍ତ କରୁଅଛି। କୌଣସି ସମ୍ବାଦପତ୍ରର ସମ୍ପାଦକଙ୍କୁ ମୁଁ ଅବଧି ପୁସ୍ତକ ଉପହାର ଦେଇନାହିଁ। ଏକ ନୀଳମଣିବାବୁ ବ୍ୟତୀତ ଓଡ଼ିଶ୍ୟାରେ ସମ୍ପାଦକମାନେ ଓଡ଼ିଆ ସାହିତ୍ୟ ଏବଂ ବ୍ୟାକରଣରେ କିପରି ଧୂରନ୍ଧର ତାହା ସମ୍ଭବତଃ ଆପଣଙ୍କର ଅବିଦିତ ନୁହେ।

ଆପଣଙ୍କର ପାରିବାରିକ ମଙ୍ଗଳାଦି ଲେଖି ଅନୁଗୃହୀତ କରାଇବାହେବେ।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

( ୩୯ )

ଶ୍ରୀ ହରିଃ ଶରଣମ୍

କଟକ
ତା ୨୧।୬।୧୮୯୯

ଶ୍ରଦ୍ଧେୟ ମହୋଦୟ,

ଆପଣଙ୍କର ପତ୍ର ପାଇ ଆପ୍ୟାୟିତ ହେଲି। ପତ୍ରୋକ୍ତ ସଂଶୋଧନ ଏବଂ ସଂଯୋଗ ପୁସ୍ତକର ଅନ୍ତର୍ନିବିଷ୍ଟ କରିଦେଇଅଛି। ଏବଂ ସେଥି ନିମନ୍ତେ ଆପଣଙ୍କଠାରେ କୃତଜ୍ଞତା ନିବେଦନ କରୁଅଛି।

ବଙ୍ଗଳାଗ୍ରନ୍ଥ ପ୍ରସାଦରୁ ଓଡ଼ିଆରେ ଗ୍ରନ୍ଥକାର ହେବା ଅନେକଙ୍କ ପକ୍ଷରେ ଅତି ସହଜ। ଓଡ଼ିଆର ଅଧିକାଂଶ ପ୍ରାୟ ସମସ୍ତ ବ୍ୟାକରଣ ବଙ୍ଗଳାର ଅନୁବାଦ କହିଲେ ଅତ୍ୟୁକ୍ତି ହେବ ନାହିଁ। ମୌଳିକ ଚିନ୍ତାର ଆବଶ୍ୟକତା ନାହିଁ, ଆଦର ମଧ ନାହିଁ। ମୋହୋର ପୁସ୍ତକ ନିର୍ବାଚିତ ହେଲେ ସେହି ଶ୍ରେଣୀର ଅନ୍ତର୍ନିବିଷ୍ଟ ହେବ ଏହି କଥା ପ୍ରତି ଦୃଷ୍ଟି ରଖି କେବଳ ବ୍ୟାବସାୟିକ ବୁଦ୍ଧିରେ ମୁଁ ପୁସ୍ତକ ଲେଖିଅଛି। ପୁସ୍ତକର ଉତ୍କର୍ଷ ପ୍ରତି ଅଧିକ ଦୃଷ୍ଟି ନ ଦେଇ ଆକୃତି ଏବଂ ମୂଲ୍ୟ ବିଷୟରେ ଅଧିକତର ସତର୍କ ହୋଇ କାର୍ଯ୍ୟ କରିଅଛି। ଏହି କାରଣରୁ ପୁସ୍ତକରେ ଅନେକ ଦୋଷ ରହିଯାଇଅଛି।

ବ୍ୟାକରଣର ଖଣ୍ଡିଏ ଟୀକା ପୁସ୍ତକ ନିତାନ୍ତ ଆବଶ୍ୟକ ହୋଇଅଛି। ସେଦିନ ମୁଁ ଜଣେ ଶିଷ୍ୟକଙ୍କୁ 'ବ୍ୟାକରଣ ପ୍ରବେଶ'ର ସମାସ ପରିଚ୍ଛେଦର ପ୍ରଶ୍ନ ଦେଖାଉଁ ଦେଖାଉଁ ପଚାରିଲି – 'ନନ୍ଦପ୍ରିୟ' କି ସମାସ ? ଉତ୍ତର – ଷଷ୍ଠୀ ତତ୍ପୁରୁଷ। ପୁଣି ପ୍ରଶ୍ନ – 'ଭକ୍ତପ୍ରିୟ ଭଗବାନ' ଏଠାରେ 'ଭକ୍ତପ୍ରିୟ' କି ସମାସ ? ଉତ୍ତର – ଷଷ୍ଠୀ ତତ୍ପୁରୁଷ।

ଏପରି ସ୍ଥଳେ ଭକ୍ତ ଅଟେ ପ୍ରିୟ ଯାହାଙ୍କର ଏହି ଅର୍ଥରେ ବହୁବ୍ରୀହି ସମାସ କରିବାକୁ ହେବ ତାହା ଶିକ୍ଷକଙ୍କୁ ସ୍ଫୁରିଲା ନାହିଁ। ସୂତ୍ର ଦେଇ ଏହିପରି ଉଦାହରଣ ମୁଁ ସମାସ ପରିଚ୍ଛେଦରେ ଦେଇଅଛି। ମାତ୍ର ଶିକ୍ଷକଙ୍କୁ ଏପରି ସୂତ୍ର ଜଣାନଥିଲା।

ପୁସ୍ତକର ବିଷୟ ଯୋଜନା ସମ୍ବନ୍ଧରେ ଆପଣ କିଛି ଲେଖି ନାହାନ୍ତି। 'ବ୍ୟାକରଣ ପ୍ରବେଶ' ବିଷୟ ଯୋଜନାକ୍ରମ ସଂପୂର୍ଣ୍ଣ ନୂତନ। ସମ୍ଭବତଃ ସେହି କାରଣରୁ ଅନେକ ଲୋକେ ବିରୋଧୀ ହୋଇପାରନ୍ତି। ପ୍ରଚଳିତର ବିରୋଧରେ କାର୍ଯ୍ୟ କଲେ ଅନେକଙ୍କ ବିଦ୍ୱେଷଭାଗୀ ହେବାକୁ ହୁଏ। ସେହି ହେତୁରୁ ଆପଣଙ୍କ ପରି ଜ୍ଞାତସାର ବ୍ୟକ୍ତିଙ୍କ ମତ ଜାଣିବାକୁ ମୁଁ ନିତାନ୍ତ ଇଚ୍ଛୁକ। ପରିବର୍ତ୍ତନ ଆବଶ୍ୟକ ବିବେଚିତ ହେଲେ ମୁଁ ତଦନୁଯାୟୀ କାର୍ଯ୍ୟ କରିବି।

ଛନ୍ଦ ଅଳଙ୍କାର ପ୍ରଭୃତି ଅତି ସଂକ୍ଷେପରେ ସାରିଅଛି। ପୁସ୍ତକର କଳେବର ବୃଦ୍ଧି ସୁତରାଂ ମୂଲ୍ୟ ବୃଦ୍ଧି ଭୟରେ ମୁଁ ଜାଣିଶୁଣି ସେପରି କରିଅଛି। ଭଲକରି ଲେଖିବାକୁ ଗଲେ କେବଳ ଏହି ବିଷୟରେ 'ବ୍ୟାକରଣ ପ୍ରବେଶ' ପରି ଆଉ ଖଣ୍ଡିଏ ପୁସ୍ତକ ଲେଖିବାକୁ ହେବ। ମାତ୍ର ତାହା ବିକ୍ରୟ ହେବ କି ନାହିଁ ସନ୍ଦେହ। ନାନା କାରଣରୁ ମୁଁ ମାନସିକ ଅଶାନ୍ତିରେ ସମୟ ଯାପନ କରୁଅଛି। ଆପଣଙ୍କ ଉତ୍ତର ପାଇଲେ ପୁଣି ପତ୍ର ଲେଖିବି।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

( ୪୦ )

ଶ୍ରୀ ହରିଃ ଶରଣମ୍

ହୁଗୁଳୀ
ତା ୨୯।୪।୧୯୦୦

ସବିନୟ ନିବେଦନମିଦଂ,

ଶ୍ରଦ୍ଧେୟ ମହୋଦୟ, ଆପଣଙ୍କର ଅନୁଗ୍ରହଲିପି ପାଇଅଛି। ଏ ବିଭାଗର କାର୍ଯ୍ୟର ଭାର ଗ୍ରହଣ କଲାଦିନୁ ମୁଁ ପ୍ରାୟ ନିରନ୍ତର ଗସ୍ତ କାର୍ଯ୍ୟରେ ବ୍ୟାପୃତ ଥିଲି। ସର୍ବାଦୌ ବିଭାଗର ଭୌଗୋଳିକ ଜ୍ଞାନ ଆବଶ୍ୟକ। ଭ୍ରମଣ ବ୍ୟତୀତ ସେ ଜ୍ଞାନ ଲାଭ ହେବାର ସହଜ ନୁହେଁ। ବିଦ୍ୟା ବୁଦ୍ଧି, ଐଶ୍ୱର୍ଯ୍ୟରୂପ ପ୍ରଭୃତି ସମସ୍ତ ବିଷୟରେ ଏ ବିଭାଗର ମାନଦଣ୍ଡ ବୃହତ୍ତର। ୮-୧୦ ବର୍ଷ ପୂର୍ବେ ମୁଁ ଏ ବିଭାଗକୁ ଆସିଥିଲେ [illegible]ମାହୋର ଅନେକ ଉପକାର ହୋଇ-ଥାନ୍ତା। ବ[illegible]ମାନ ସ୍ୱାସ୍ଥ୍ୟ ଭଙ୍ଗ ହୋଇଥିବାରୁ ଅଧିକ ଦିନ କାର୍ଯ୍ୟ କରିବାର ଇଚ୍ଛା ନାହିଁ। ଯେତେ ଶୀଘ୍ର ସମ୍ଭବ ପେନ୍‌ସନ୍ ନେଇପାରିଲେ ନିଶ୍ଚିନ୍ତ ହେବି।

ଓଡ଼ିଆ ଭାଷା ଏ ଅଞ୍ଚଳରେ ସ୍ୱପ୍ନ। ମୋହୋ ପକ୍ଷରେ ବଙ୍ଗଳା ଏବଂ ଓଡ଼ିଆ ଉଭୟ ସମାନ। ତଥାଚ୍ ଓଡ଼ିଆ ପ୍ରତି ପକ୍ଷପାତିତା ମୋହୋ ପକ୍ଷରେ ସ୍ୱାଭାବିକ। ଓଡ଼ିଶ୍ୟାକୁ ସ୍ମରଣ କଲେ ମୋହୋର ନିମ୍ନଲିଖିତ ପଂକ୍ତି ଦ୍ୱୟ ସ୍ୱଭାବତଃ ସ୍ମୃତିପଥରେ ଉଦିତ ହୁଏ –

ଯେଖାନେ ଯଖନ ଯାଇ ଯେଖାନେ ଯା ଘଟେ
ପ୍ରନୟ ପ୍ରତିମା ତୁମି ସ୍ମୃତି ସୃଷ୍ଟ (ମାଠେ) ?

ଆପଣଙ୍କ ପାରିବାରିକ କୁଶଳର ସମ୍ବାଦ ପାଇ ଆହ୍ଲାଦିତ ହେଲି। ବର୍ତ୍ତମାନ ବ୍ୟସ୍ତ ଅଛି। ଅବସର-ମତେ ପୁନର୍ବାର ପତ୍ର ଲେଖିବି।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

( ୪୧ )

ଶ୍ରୀ ହରିଃ ଶରଣମ୍

କଟକ
ତା ୨୩।୧୨।୧୯୦୦

ସବିନୟ ନିବେଦନମିଦଂ,

ପରମ ଶ୍ରଦ୍ଧେୟ ମହୋଦୟ, ଅନବକାଶବଶତଃ ଆପଣଙ୍କ ଅନୁଗ୍ରହପତ୍ରର ଉତ୍ତର ଦେବାରେ ବିଳମ୍ବ ଘଟିଅଛି– କ୍ଷମା କରିବା ହେବେ। ମାତ୍ର ଅଧିକ ଦିନ କାର୍ଯ୍ୟ କରିବାକୁ ଇଚ୍ଛା ନାହିଁ। ମୋହୋ ପରି ଦୁର୍ବଳ ଏବଂ ଚିରରୁଗ୍ଣ ଲୋକର ଅଧିକ ଦିନ କାର୍ଯ୍ୟ କରିବାର ଶୋଭନୀୟ ନୁହେଁ।

ବାମଣ୍ଡା ମହାରାଜାଙ୍କ ସହିତ ବହୁଦିନ ସାକ୍ଷାତ ହୋଇ ନଥିବାରୁ ଦୁଃଖିତ ଅଛି। ସୋନପୁର ମହାରାଜାଙ୍କ ସହିତ ମୋହୋର ଆଳାପ ନାହିଁ। ମାତ୍ର ସୋନପୁର ଯୁବରାଜଙ୍କ ରଚିତ ପଦ୍ୟ ସମୟ ସମୟରେ ହିତୈଷିଣୀରେ ଦେଖି ତାହାଙ୍କ ପ୍ରତି ସ୍ୱଭାବତଃ ପ୍ରୀତି ଆକୃଷ୍ଟ ହୋଇଅଛି। ପରିଚୟ ନଥିବାରୁ ମନର ଭାବ ତାହାଙ୍କୁ ଜଣାଇବାକୁ ସାହସ କରିନାହିଁ।

ମୋହୋର ବଙ୍ଗଳା ପଦ୍ୟ ପ୍ରାୟ ୨୫ ବର୍ଷ ପୂର୍ବରେ ରଚିତ ହୋଇଥିଲା। ୨-୩ ମାସ ମଧ୍ୟରେ ସମ୍ଭବତଃ ତାହା ପ୍ରକାଶ ହେବ। ପ୍ରକାଶ ହେଲେ ଆପଣ ସର୍ବାଗ୍ରରେ ପାଇବେ।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

( ୪୨ )

ଶ୍ରୀ ଶ୍ରୀ ପ୍ରଜାପତୟେ ନମଃ

ଶ୍ରୀଜ ଶ୍ରୀଯୁକ୍ତ ବାବୁ ଗଙ୍ଗାଧର ମେହେର
କର କମଳେଷୁ

ମହାଶୟ, ମୋହୋର ଜ୍ୟେଷ୍ଠାତ୍ମଜ ଶ୍ରୀମାନ୍ ଶଶିଭୂଷଣ ରାୟଙ୍କର ଶୁଭ ପରିଣୟ ଆଗାମୀ ମାର୍ଚ୍ଚ ମାସ ତା ୬ରିଖ ସନ ୧୩୦୮ ସାଲ ଫାଲ୍‌ଗୁନ ଦି ୨୪ନ ବୁଧବାର ଚନ୍ଦ୍ରକୁନ୍ଦ ନିବାସୀ ଶ୍ରୀଯୁକ୍ତ ରାଧାନାଥ ସେନ୍‌ଙ୍କ ଜ୍ୟେଷ୍ଠା କନ୍ୟା ସହିତ ସଂପନ୍ନ ହେବ। ତେଣୁ ଆପଣଙ୍କୁ ସାନୁନୟ ପ୍ରାର୍ଥନା କରୁଅଛି ଯେ ଆପଣ ଅନୁକମ୍ପା ପୁରଃସର ଉକ୍ତ ବିବାହୋ-ତ୍ସବରେ ଯୋଗଦାନ କଲେ ନିଜକୁ ଚରିତାର୍ଥ ମଣିବି।

ଇତି
ବିନୟାବତ
ଶ୍ରୀ ରାଧାନାଥ ରାୟ

କାଳିଗଳି, କଟକ
ତା ୨୦।୨।୧୯୦୧

( ୪୩ )

ଶ୍ରୀ ହରିଃ ଶରଣମ୍

ମେଦିନୀପୁର
ତା ୧।୮।୧୯୦୨

ପରମ ଶ୍ରଦ୍ଧେୟ ମହାଶୟ,

ଆପଣଙ୍କର ଦାରୁଣ ପାରିବାରିକ ଶୋକର ସଂବାଦରେ ନିରତିଶୟ ବ୍ୟଥିତ ହେଲି।

ଭାବପ୍ରଧାନ ପ୍ରକୃତି ସୁଖ ଏବଂ ଦୁଃଖର ଅନୁଭବ ଅତି ତୀବ୍ର। ସଂସାରରେ ସୁଖ ଅପେକ୍ଷା ଦୁଃଖର ପରିମାଣ ଅନେକ ଅଧିକ। ସୁତରାଂ ଯେମାନଙ୍କର ପ୍ରକୃତି ଭାବପ୍ରଧାନ ସେମାନେ ପ୍ରାୟଶଃ ଦୁଃଖୀ। ଆପଣଙ୍କର ବର୍ତ୍ତମାନ ଅବସ୍ଥା ମୁଁ ନିଜ ହୃଦୟର ଅବସ୍ଥା ଦୃଷ୍ଟିରେ କଥଞ୍ଚିତ୍ ବୁଝିପାରୁଅଛି।

ଦାର୍ଶନିକତାର ଆଶ୍ରୟ ଗ୍ରହଣ ବ୍ୟତୀତ ଶାନ୍ତି ଲାଭର କୌଣସି ଆଶା ନାହିଁ। ଦାର୍ଶନିକତାର ଆଶ୍ରୟ ଏବଂ କାଳର ପ୍ରଭାବ ଦ୍ୱାରା ଆପଣଙ୍କର ଶୋକାବେଶ କ୍ରମଶଃ ମନ୍ଦୀଭୂତ ହୋଇପାରେ। ଏପରି ଶୋକରେ ଉପଦେଶ ଦେବାର ବୃଥା। ବଙ୍ଗୀୟ ନାରୀକବି ଶିରୋମଣି ମୋହୋର ପ୍ରିୟ ଶିଷ୍ୟା ଶ୍ରୀମତୀ ନଗେନ୍ଦ୍ରବାଳା ଲେଖିଅଛନ୍ତି।

ସଂସାର ଗୁରୁର ଦେଶ ଶୁଧୁ ଦେୟ ଉପଦେଶ
ଜାନେନା କାହାର ମନ (ନେ ?)
କି ବ୍ୟଥା ଭାସେ।

ଏ ଅତି ସମୀଚୀନ ଉକ୍ତି। ଉପଦେଶ ଦେବାକୁ ସମସ୍ତେ ତତ୍‌ପର। ଅନ୍ୟର ଦୁଃଖ ଶୁଣିଲେ ସେଥିରେ ତୀବ୍ରତା ଯଥାଯଥ ହୃଦୟଙ୍ଗମ କରିବାକୁ ଜଗତରେ କେତେ ଜଣ ସମର୍ଥ ? ଏଥିପାଇଁ କାଳିଦାସ କହିଅଛନ୍ତି – "ମହଦପି ପରଦୁଃଖଂ ଶୀତଳଂ ସମ୍ୟଗାହୁଃ"। ମୁଁ ଆପଣଙ୍କର ଦୁଃଖ କିୟତ୍ ପରିମାଣରେ ଉପଲବ୍ଧି କରିପାରୁଅଛି। ମାତ୍ର ମୁଁ ଉପଦେଷ୍ଟାର ଆସନ ଗ୍ରହଣ କରିବାକୁ ଏକାନ୍ତ ଅନିଚ୍ଛୁକ। 'ମେଘନାଦ ବଧ' କାବ୍ୟରେ ମହାଦେବ ପୁତ୍ରଶୋକର ତୀବ୍ରତା ବର୍ଣ୍ଣନ ପ୍ରସଙ୍ଗରେ ପାର୍ବତୀଙ୍କୁ କହୁଅଛନ୍ତି –

ଏଇ ଯେ ତ୍ରିଶୂଳ ସତି ହେରିଛ ଏକରେ
ଇହାର ଆଘାତ ହତେ ଗୁରୁତର ବାଜେ
ପୁତ୍ରଶୋକ ଚିରସ୍ଥାୟୀ ହାୟସେ ବେଦନା।

ଏପରି ଦାରୁଣ ବ୍ୟସନ ପାତରେ ଉପଦେଶ ଦେବାର ଅର୍ବାଚୀନର କାର୍ଯ୍ୟ ନୁହେ କି ? କେବଳ ଏକମାତ୍ର ଅଶ୍ରୁ ବିସର୍ଜନ ଦ୍ୱାରା ଆପଣଙ୍କର ଶୋକ କ୍ରମଶଃ ମନ୍ଦୀଭୂତ ହୋଇପାରେ।

ମଦନମୋହନ ବାବୁଙ୍କ ପତ୍ରରୁ ପୀଡ଼ା ବିସୂଚିକା ବୋଲି ଅନୁମାନ ହେଉଅଛି। ଆପଣ ପୀଡ଼ା ସମୟରେ ସ୍ୱୟଂ ଉପସ୍ଥିତ ଥିଲେଟିକି ? ରୀତିମତ ଚିକିତ୍ସାର ଅନୁଷ୍ଠାନ କରିବାର ସୁବିଧା ପାଇଥିଲେକି ?

ଯେତେଦୂର ସମ୍ଭବ କାର୍ଯ୍ୟରେ ବ୍ୟସ୍ତ ରହିବାକୁ ସଚେଷ୍ଟ ହେବେ।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

ପୁନଶ୍ଚ – ଆପଣ ବରପାଲି କାର୍ଯ୍ୟ ପରିତ୍ୟାଗ କରି ଅନ୍ୟ ସ୍ଥାନରେ କାର୍ଯ୍ୟ କରୁଥିଲେ। ବର୍ତ୍ତମାନ କି ବରପାଲିରେ କାର୍ଯ୍ୟ କରୁଅଛନ୍ତି ?

ଶ୍ରୀ : ରା

( ୪୪ )

ଶ୍ରୀ ହରିଃ ଶରଣମ୍

ହୁଗଳୀ
ତା ୨୬।୭।୧୯୦୩

ସବିନୟ ନିବେଦନମିଦଂ,
ପରମ ଶ୍ରଦ୍ଧେୟ ମହାଶୟ

ଆପଣଙ୍କର ପାଣ୍ଡୁଲେଖ୍ୟ ଏବଂ ୨ ଖଣ୍ଡି ପତ୍ର ପାଇ ଆପ୍ୟାୟିତ ହେଲି। ମୋହୋ ମତରେ ମୁଁ

ସ୍ୱଭାବତଃ ଅସରଳ ନୁହେଁ, ମାତ୍ର ସଂସାରକୁ ଚାହିଁ ସମୟ ସମୟରେ ପ୍ରକୃତ ମନର କଥା ଗୋପନ କରିବାକୁ ହୁଏ । ପ୍ରକୃତ ଗୁଣବତ୍ତା ନଥିଲେ ଲୋକେ ସତ୍ୟସହ ହୋଇ ପାରନ୍ତି ନାହିଁ । ଏ ଶ୍ରେଣୀର ଲୋକଙ୍କ ନିକଟରେ ମନର କଥା ଫିଟାଇ କହିଲେ କେବଳ ପ୍ରତ୍ୟବାୟ ଭାଗୀ ହେବାକୁ ହୁଏ । ଆପଣଙ୍କ ସମ୍ବନ୍ଧରେ ମୋହୋର ସେ ଭୟ ନାହିଁ । ଆପଣଙ୍କ ରଚନାରେ ଗୁଣବତ୍ତାର – ଉଚ୍ଚ ଶ୍ରେଣୀର ଗୁଣବତ୍ତାର ଅଭାବ ନାହିଁ ।

ମୋହୋ ହସ୍ତରେ ଆପଣଙ୍କର ପାଣ୍ଡୁଲେଖ୍ୟ ଦେଖି ବଙ୍ଗୀୟ ପ୍ରସିଦ୍ଧ ନାରୀକବି ଶ୍ରୀମତୀ ନଗେନ୍ଦ୍ରବାଳା ସରସ୍ୱତୀ ତାହା ମୋହୋଠାରୁ ନେଇ ପାଠ କରି ଯତ୍‌ପରୋନାସ୍ତି ପ୍ରୀତି ପ୍ରକାଶ କରିଅଛନ୍ତି । ଆପଣଙ୍କର 'ଇନ୍ଦୁମତୀ' ପଢ଼ି ପୂର୍ବରୁ ସେ ଆପଣଙ୍କ ରଚନାର ପକ୍ଷପାତିନୀ ହୋଇଥିଲେ ।

କାବ୍ୟ ଖଣ୍ଡିକ ସ୍ଥଳରେ ଅତି ସୁନ୍ଦର ହୋଇଅଛି । ଆରମ୍ଭରେ ବିରାଟ ନଗରର ବର୍ଣ୍ଣନା ସୁନ୍ଦର ସତ୍ୟ, ମାତ୍ର ମୋହୋ ମତରେ ଅଯଥା ଦୀର୍ଘ ହୋଇଅଛି । ବର୍ଣ୍ଣନା ଯେତେ ସୁନ୍ଦର ହେଉ ତାହା ବହିରଙ୍ଗ ମାତ୍ର । ମୂଳ ବିଷୟକୁ ବର୍ଣ୍ଣନା ଦ୍ୱାରା ଘୋଡ଼ାଇ ପକାଇବାର ଉଚିତ ନୁହେଁ ଏବଂ କବି ନିଜର ବର୍ଣ୍ଣନାପାଟବ ଦେଖାଉଅଛନ୍ତି ପାଠକ ମନରେ ଏ ଭାବ ଉଦିତ ହେବାର ଉଚିତ ନୁହେଁ ।

ଏ ବିଭାଗକୁ ଆସିଲାଦିନୁ ମୋହୋର ଅବକାଶ ସମୟ ନିତାନ୍ତ ହ୍ରାସ ହୋଇଯାଇଅଛି । ଏ ବିଭାଗର ସରକାରୀ କାର୍ଯ୍ୟ ପ୍ରାୟ ୧୦ ଗୁଣ ଅଧିକ । ବଙ୍ଗୀୟ ସାହିତ୍ୟ-ସେବକମାନଙ୍କର ଉତ୍ପୀଡ଼ନ ମଧ୍ୟ କମ୍ ନୁହେଁ । ୨ୟ କଷ୍ଟ ଅବଶ୍ୟ ବ୍ୟକ୍ତିଗତ, ପଦଗତ ନୁହେଁ ।

ଅବସରକ୍ରମେ ଆପଣଙ୍କର ପୁସ୍ତକ ପ୍ରଣିଧାନପୂର୍ବକ ଦେଖି ମୋହୋର ମନ୍ତବ୍ୟ ଲେଖିବି । ମୋତେ ଟିକିଏ ସମୟ ଦେବା ହେଉନ୍ତୁ ।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

( ୪୫ )

ହୁଗଳୀ
ତା ୮ । ୮ । ୧୯୦୩

ସବିନୟ ନିବେଦନମିଦଂ,
ପରମ ଶ୍ରଦ୍ଧେୟ ମହାଶୟ,

ଆପଣଙ୍କର ୫ ତାରିଖର ପତ୍ର ଆଜି ପାଇଲି । 'କୀଚ଼କବଧ' ପାଠ କରି ସ୍ଥଳରେ ମୁଁ ଅତ୍ୟନ୍ତ ପ୍ରୀତ ହୋଇଅଛି । ପୁସ୍ତକ ସାଧାରଣରେ ପ୍ରଚାର ହେଲେ ଆପଣଙ୍କର କବି-ପ୍ରତିଷ୍ଠା ବହୁ ପରିମାଣରେ ବର୍ଦ୍ଧିତ ହେବ । ଆପଣ ଯେବେ ଆଉ କିଛି ନଲେଖନ୍ତି କେବଳ 'ଇନ୍ଦୁମତୀ' ଏବଂ 'କୀଚ଼କବଧ' ଦ୍ୱାରା ଓଡ଼ିଆ ସାହିତ୍ୟ ଜଗତରେ ଆପଣ ଅମର ହୋଇ ରହିବେ ।

ମୋହୋର ପ୍ରାୟ ସର୍ବଦା ଅବକାଶାଭାବ । କେବେ ଟିକିଏ ଅବକାଶ ସୁଲଭ ହେଲେ ବଙ୍ଗୀୟ ସାହିତ୍ୟ ସେବକମାନେ ତାହା ମଧ୍ୟ ଆତ୍ମସାତ୍ କରନ୍ତି । ଏଥି ସକାଶ 'କୀଚ଼କବଧ' ଦେଖିବାର ମୋହୋର ଏପରି ବିଳମ୍ବ ହେଉଅଛି ।

'କୀଚ଼କବଧ'ର ଯେଉଁ ଅଂଶ ପରିତ୍ୟଜ୍ୟ ଏବଂ ପରିବର୍ତ୍ତନୀୟ ତାହା ସ୍ଥାନେ ସ୍ଥାନେ ଚିହ୍ନିତ କରିଅଛି । ପାଣ୍ଡୁଲେଖ୍ୟ ପ୍ରତିପ୍ରେରିତ ହେଲେ ଆପଣ ବୁଝି-ପାରିବେ ।

ଆପଣ ଲେଖିଅଛନ୍ତି, 'କୀଚ଼କବଧ' ଭଲ ବିବେଚିତ ନହେଲେ ଅନ୍ୟ ପୁସ୍ତକ ରଚନାରେ ପ୍ରବୃତ୍ତ ହେବେ । ମାତ୍ର ଆପଣଙ୍କର ଏ ଆଶଙ୍କା ଅମୂଳକ । ତେବେ ପୁସ୍ତକକୁ ଅପେକ୍ଷାକୃତ ନିର୍ଦ୍ଦୋଷ କରିବା ସକାଶ ସାମାନ୍ୟ କିଛି ଆୟାସ ସ୍ୱୀକାର କରିବାକୁ ହେବ ।

ବିଜେପୁରରେ ଆପଣଙ୍କର ବେତନ କେତେ ? ଅମିତ୍ରାକ୍ଷର ରଚ଼ନା ପ୍ରୟାସ ମନ୍ଦ ନୁହେଁ । ମାତ୍ର ଓଡ଼ିଶ୍ୟାରେ ଅମିତ୍ରାକ୍ଷରର ସୌନ୍ଦର୍ଯ୍ୟ କେତେ ଜଣ ବୁଝନ୍ତି ? ମୁଁ ସାହିତ୍ୟଚର୍ଚ୍ଚା ଏବଂ ସାହିତ୍ୟସେବା ପରିତ୍ୟାଗ କରିଅଛି । ଅବକାଶ ସୁଲଭ ହେଲେ ମୁଁ ମଧ୍ୟ ଅମିତ୍ରାକ୍ଷର ରଚ଼ନାରେ ପ୍ରବୃତ୍ତ ହୋଇଥାଆନ୍ତି ।

'କୀଚ଼କବଧ' ଦେଖି ମନ୍ତବ୍ୟ ସହିତ ଯେତେଶୀଘ୍ର ସମ୍ଭବ ମୁଁ ପ୍ରତିପ୍ରେରଣ କରିବି । ମୋହୋର ଅବକାଶ ଅଳ୍ପ, ପୁଣି ସାହିତ୍ୟଚର୍ଚ୍ଚାର ପ୍ରସଙ୍ଗ ପରିତ୍ୟାଗ କରିଅଛି । ଆପଣଙ୍କ ପ୍ରତି ମୋହୋର ବିଶେଷ ଶ୍ରଦ୍ଧା ଏବଂ ଭକ୍ତି ଥିବାରୁ ଆପଣଙ୍କ ପ୍ରେରିତ ପାଣ୍ଡୁଲେଖ୍ୟ ଦେଖିଅଛି । ମାତ୍ର ମୁଁ ଅଗତ୍ୟା ଅନେକ

ବନ୍ଧୁଙ୍କ ପାଣ୍ଡୁଲେଖ୍ୟ ଫେରାଇଦେଇଅଛି। ମଧୁସୂଦନ ରାଓ, ଫକୀର ମୋହନ ସେନାପତି, ନନ୍ଦକିଶୋର ବଳ ପ୍ରଭୃତିଙ୍କ ସହିତ ସମ୍ଭବତଃ ଆପଣ ପରିଚିତ। ମୋହୋର ପ୍ରାର୍ଥନା ଭବିଷ୍ୟତରେ ଆପଣ ନିଜର ରଚ୍ନା ସମ୍ବନ୍ଧରେ ସେହିମାନଙ୍କର ମତ ଏବଂ ଉପଦେଶ ଜିଜ୍ଞାସୁ ହେବେ। ମୋହୋର ଅବକାଶ ଏବଂ ପ୍ରବୃତ୍ତି ଥିଲେ ଆପଣଙ୍କୁ ମୁଁ କଦାଚ୍ ଏକଥା ଲେଖିନଥାନ୍ତି। ମୋହୋର ଶରୀର ମଧ୍ୟ ଅସୁସ୍ଥ।

ଆଗାମୀ ସେପ୍‌ଟେମ୍ବର ଶେଷରେ ମୁଁ କାର୍ଯ୍ୟରୁ ଅବସର ଗ୍ରହଣ କରିବି।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

( ୪୬ )

ଶ୍ରୀ ହରିଃ ଶରଣମ୍

ହୁଗଲୀ
ତା ୧୩।୮।୧୯୦୩

ସବିନୟ ନିବେଦନମିଦଂ,

ମହାଶୟ, ମୋହୋର ମନ୍ତବ୍ୟ ସହିତ 'କୀଚ୍ଚକ ବଧ'ର ପାଣ୍ଡୁଲେଖ୍ୟ ପ୍ରତିପ୍ରେରଣ କଲି। ପ୍ରାପ୍ତି ସ୍ୱୀକାର କଲେ ବାଧିତ ହେବି।

ଗ୍ରନ୍ଥ ସମ୍ବନ୍ଧରେ ମୋହୋର ସ୍ଥୂଳମତ ମନ୍ତବ୍ୟରୁ ବୁଝି ପାରିବେ। ଆବଶ୍ୟକ ବିବେଚିତ ହେଲେ ସେହି ମନ୍ତବ୍ୟ ପୁସ୍ତକର ମୁଖବନ୍ଧ ସ୍ୱରୂପ ଛପାଇ ପାରନ୍ତି।

ପୁସ୍ତକ ପଠନ ସମୟରେ ଯେଉଁ ଯେଉଁ ସ୍ଥାନ ମୋତେ ଆପତ୍ତିଯୋଗ୍ୟ ବୋଧହୋଇଥିଲା ତାହା ପେନ୍‌ସିଲ୍‌ରେ ଚିହ୍ନିତ ହୋଇଅଛି। ଆପଣ ସ୍ୱାଧୀନତା ଦେଇଥିବାରୁ ମୁଁ ନିଶଙ୍କ ଭାବରେ ମୋହୋର ମତ ଲେଖିଅଛି। ମୋହୋର ମତ ଅଭ୍ରାନ୍ତ ଏପରି ଦାବି ମୁଁ କରିବି ନାହିଁ କିମ୍ବା କରିବାର ଲୋକ ନୁହେ। ପ୍ରକୃତ କବିର କବିତାରେ ଅନ୍ୟର ହସ୍ତକ୍ଷେପ କରିବା ଉଚିତ ନୁହେଁ। ଯେଉଁଠାରେ ପରିବର୍ତ୍ତନ ଭଲ ବିବେଚିତ ହେବ ଆପଣ ସ୍ୱୟଂ ତାହା କରିବା ହେବେ।

ମୋହୋର କାର୍ଯ୍ୟ ଏତେ ଅଧିକ ଯେ ସମୟ ସମୟରେ ନିଶ୍ୱାସ ନେବାର ଅବସର ନଥାଏ। ଏହି ହେତୁରୁ ପାଣ୍ଡୁଲେଖ୍ୟ ଦେଖିବାରେ ଅଯଥା ବିଳମ୍ବ ହୋଇଅଛି। ମୋହୋର ଅପରାଧ କ୍ଷମା କରିବା ହେବେ। ଶ୍ରୀମତୀ ନଗେନ୍ଦ୍ରବାଳା ସରସ୍ୱତୀ ପ୍ରଣୀତ 'ଧବଳେଶ୍ୱର' କାବ୍ୟ ଉପହାର ସ୍ୱରୂପ 'କୀଚ୍ଚକବଧ'ର ପାଣ୍ଡୁଲେଖ୍ୟ ସହିତ ପ୍ରେରିତ ହେଲା।

ବଶମ୍ବଦ
ଶ୍ରୀ ରାଧାନାଥ ରାୟ

( ୪୭ )

ଶ୍ରୀ ହରିଃ ଶରଣମ୍

ହୁଗଲୀ
ତା ୨୧।୮।୧୯୦୩

ସବିନୟ ନିବେଦନମିଦଂ,

ପ୍ରିୟତମ ଗଙ୍ଗାଧରବାବୁ, ଆପଣଙ୍କର ଅନୁଗ୍ରହ-ପତ୍ର ପାଇଅଛି। ମୁଁ ଏଥି ପୂର୍ବେ ମୋହୋର ମନ୍ତବ୍ୟ ସହିତ ଆପଣଙ୍କର ପାଣ୍ଡୁଲେଖ୍ୟ ପ୍ରତିପ୍ରେରଣ କରିଅଛି। ମୋହୋ ମତରେ ଆପତ୍ତିଯୋଗ୍ୟ ସ୍ଥଳମାନ ପେନ୍‌ସିଲ୍‌ରେ ଚିହ୍ନିତ କରି ଦେଇଅଛି।

ମୋହୋର ମନ୍ତବ୍ୟରେ ଏକ ସ୍ଥାନରେ ଲେଖିଅଛି– ''ପୁରାତନକୁ ନୂତନ କରି ଗଢ଼ିବାର ଏବଂ ଆହୃତରେ ମୌଳିକତା ପ୍ରତିଫଳିତ କରିବାର ପ୍ରତିଭାର ବିଧି ପ୍ରତିପାଦିତ ଅଧିକାର ଅଟେ।''

ଏହି ଅଂଶକୁ ନିମ୍ନରୂପେ ପରିବର୍ତ୍ତନ କରିଦେବା ହେବେ– ''ପୁରାତନରେ ନୂତନତା ଏବଂ ଆହୃତରେ ମୌଳିକତା ପ୍ରତିଫଳିତ କରିବାର ପ୍ରତିଭା ବିଧି-ପ୍ରତିପାଦିତ ଅଧିକାର ଅଟେ।''

ମୋହୋର ମନ୍ତବ୍ୟରେ ଆହୁରି ଯେବେ କିଛି ଯୋଗ କରିବାର ବାଞ୍ଛନୀୟ ମନେକରନ୍ତି, ମୋତେ ଲେଖିବା ହେବେ।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ

( ୪୮ )

ମନ୍ତବ୍ୟ

ହୁଗଲୀ
ତା ୧୨।୮।୧୯୦୩

କୀଚ୍ଚକବଧ ମହାଭାରତରେ ଗୋଟିଏ କୌତୁକାବହ ଏବଂ ଶିକ୍ଷାପ୍ରଦ ଆଖ୍ୟାନ। ହିନ୍ଦୁ ସଂସାରରେ କି ଶିକ୍ଷିତ, କି ଅଶିକ୍ଷିତ, କି ପୁରୁଷ, କି ସ୍ତ୍ରୀ ପୁସ୍ତକ ଦ୍ୱାରା ଏବଂ ଯାତ୍ରାଦି ଦ୍ୱାରା ଏ ଆଖ୍ୟାୟିକାର ବିବରଣ ପ୍ରାୟ ସମସ୍ତେ ବିଦିତ ଅଛନ୍ତି। ଏହି ପ୍ରାଚୀନ କାହାଣୀକୁ କବି ଗଙ୍ଗାଧରଙ୍କର ଉପମୟୀ ଲେଖନୀ ସମ୍ପୂର୍ଣ୍ଣ ନୂତନ ମୂର୍ତ୍ତିରେ ସାଧାରଣଙ୍କ ସମ୍ମୁଖରେ ଉପସ୍ଥାପିତ କରିଅଛି। ପୁରାତନରେ

ନୂତନତା ଏବଂ ଆହୃତରେ ମୌଳିକତା ପ୍ରତିଫଳିତ କରିବାର ପ୍ରତିଭାର ବିଧି-ପ୍ରତିପାଦିତ ଅଧିକାର ଅଟେ। ଏ ସମ୍ବନ୍ଧରେ କବି ଗଙ୍ଗାଧର ଯେପରି ଶକ୍ତିମତା ଦେଖାଇଅଛନ୍ତି ତାହା କି ପ୍ରାଚୀନ କି ଆଧୁନିକ ଯେ କୌଣସି ଉତ୍କଳୀୟ କବିଙ୍କ ପକ୍ଷରେ ଗୌରବାବହ ହୁଅନ୍ତା।

ଗଙ୍ଗାଧର ଉଚ୍ଚଶ୍ରେଣୀର କବି। କି ବହିଃପ୍ରକୃତି କି ଅନ୍ତଃ ପ୍ରକୃତି ଉଭୟ ଯଥାଯଥ ଚିତ୍ରାଙ୍କନରେ ଗଙ୍ଗାଧର ସିଦ୍ଧହସ୍ତ। ଗ୍ରନ୍ଥାଧ୍ୟୟନ କରି ଲୋକେ ପଣ୍ଡିତ ହୋଇପାରନ୍ତି, ମାତ୍ର କବି ହେବାକୁ ହେଲେ କେବଳ ଗ୍ରନ୍ଥାଧ୍ୟୟନ ପର୍ଯ୍ୟାପ୍ତ ନୁହେଁ। ପ୍ରକୃତି ଗ୍ରନ୍ଥାଧ୍ୟୟନ ମଧ୍ୟ ଅପରିହାର୍ଯ୍ୟ ରୂପେ ଆବଶ୍ୟକ। ଗଙ୍ଗାଧର ଯେତେବେଳେ ଯାହା ଲେଖନ୍ତି ପ୍ରକୃତିକୁ ସ୍ୱଚକ୍ଷୁରେ ଦେଖି ଲେଖନ୍ତି। ଏହି ହେତୁରୁ ତାହାଙ୍କର ଉକ୍ତିଗୁଡ଼ିକ ରବପ୍ରଧାନ ନ ହୋଇ ରସପ୍ରଧାନ ହୁଏ। ଏହାର ଭୂରି ଭୂରି ପ୍ରମାଣ ତାହାଙ୍କ ରଚନାରେ ସୁଲଭ। ତାହାଙ୍କର ପ୍ରଭାତ ବର୍ଣ୍ଣନା, ସନ୍ଧ୍ୟା ବର୍ଣ୍ଣନା, ଋତୁ ବର୍ଣ୍ଣନା ପ୍ରଭୃତି ବହି-ପ୍ରକୃତିର ଆଲେଖ୍ୟଗୁଡ଼ିକ ଯେମନ୍ତ ଉଜ୍ଜ୍ୱଳ ଏବଂ ମନୋହର ତାହାଙ୍କର ମନୁଷ୍ୟ ଚରିତ୍ର ଚିତ୍ର ମଧ୍ୟ ତଦପେକ୍ଷା କୌଣସି ଅଂଶରେ ହୀନକଳ୍ପ ନୁହେଁ। 'କୀଚକବଧ'ରେ କୀଚକର ବୀର୍ଯ୍ୟୋନ୍ମାଦ ସୁଲଭ ଦାମ୍ଭିକତା ଏବଂ ଲମ୍ପଟତା, କୀଚକ ଦୂତୀର ଶମ୍ଭଳୀ ସୁଲଭ ନାରକୀୟ ଚାତୁରୀ, ଦ୍ରୌପଦୀଙ୍କର ସେବାଧର୍ମର କର୍ତ୍ତବ୍ୟଜ୍ଞାନ ସହିତ ସାଧ୍ୱୀସୁଲଭ ଜାଗରୂକତା; ବିରାଟର ଅରାଜୋଚିତ ସ୍ୱାର୍ଥୈକଦର୍ଶିତା; ସୁଦେଷ୍ଣାଙ୍କର ରମଣୀସୁଲଭ କୋମଳତା ଏବଂ ଧର୍ମଭୀରୁତା ସହିତ ଅଯଥା ଭ୍ରାତୃବତ୍ସଳତା କିପରି ନୈପୁଣ୍ୟ ସହକାରେ ଚିତ୍ରିତ ହୋଇଅଛି; ସହୃଦୟ ପାଠକ ପାଠମାତ୍ର ତାହା ବୁଝିପାରିବେ।

'ଇନ୍ଦୁମତୀ' ଦ୍ୱାରା ଯେଉଁ ସ୍ଫୁଟୋନ୍ମୁଖ ପ୍ରତିଭାର ଆଦ୍ୟ ସୌରଭ ବିକୀର୍ଣ୍ଣ ହୋଇ ଉତ୍କଳୀୟ ସାହିତ୍ୟସଂସାରକୁ ଆମୋଦିତ କରିଥିଲା 'କୀଚକବଧ'ରେ ସେହି ପ୍ରତିଭା ପୂର୍ଣ୍ଣ ବିକାଶ ପାଇଥିବାର ପ୍ରତୀୟମାନ ହୁଏ।

ଗଙ୍ଗାଧରଙ୍କର ଦୁର୍ଭାଗ୍ୟ ସେ ଓଡ଼ିଶ୍ୟାରେ ଜନ୍ମ ଗ୍ରହଣ କରିଅଛନ୍ତି। ଅନନ୍ତ ସୌନ୍ଦର୍ଯ୍ୟୋଦ୍‌ଭାସିନୀ ପ୍ରକୃତିଦେବୀ ଏବଂ ପ୍ରକୃତିଦେବୀଙ୍କର ପଟ୍ଟ ପୁରୋହିତ ବ୍ୟାସ ବାଲ୍ମିକୀ ଯାହାଙ୍କର କଳ୍ପନାର ଚିର ସହଚର, ଦୁଷ୍ପୂରଉଦର ପୂର୍ତ୍ତି ସକାଶ କୁଏଆଳ, ଏକପଦିଆ, ଭେଆଣ, ଓଆରିଜା ପ୍ରଭୃତିରେ ଜଟିଳ ସମସ୍ୟା ସମାଧାନ ତାହାଙ୍କର ବାସ୍ତବ ଜୀବନର ପ୍ରଧାନ ବ୍ୟବସାୟ ହୋଇଅଛି।

ଶ୍ରୀ ରାଧାନାଥ ରାୟ

( ୪୯ )

କଟକ

ତା ୧୬।୧।୧୯୦୫

ସବିନୟ ନିବେଦନମିଦଂ,

ପରମ ଶ୍ରଦ୍ଧାସ୍ପଦ ଗଙ୍ଗାଧର ବାବୁ,

ଆପଣଙ୍କ ପ୍ରେରିତ ଅନୁଗ୍ରହୋପହାର 'କୀଚକବଧ' ପାଇ ସକୃତଜ୍ଞ ଚିତ୍ତରେ ଗ୍ରହଣକଲି।

'କୀଚକବଧ' କାବ୍ୟ ନିଜ ଗୌରବରେ ଗୌରବାନ୍ୱିତ। ମୁଁ ଯେଉଁ ମନ୍ତବ୍ୟ ଦେଇଥିଲି ତାହା ତାହାର ଉପଯୁକ୍ତ ହୋଇନାହିଁ। ଆପଣ ସେହି ମନ୍ତବ୍ୟକୁ କାବ୍ୟର ମୁଖବନ୍ଧରେ ସନ୍ନିବିଷ୍ଟ କରି ତାହାକୁ ତାହାର ଯୋଗ୍ୟତାତୀତ ସମ୍ମାନ ପ୍ରଦର୍ଶନ କରିଅଛନ୍ତି।

ମୋହୋର ଶରୀର ବହୁଦିନରୁ ଅସୁସ୍ଥ। ଅନ୍ୟଥା ମୁଁ ''କୀଚକବଧ''ର ସମାଲୋଚନାରେ ପ୍ରବୃତ୍ତ ହୋଇଥାନ୍ତି।

ବିଗତ ସଭା ଉପଲକ୍ଷ୍ୟରେ ଆପଣଙ୍କ କଟକ ଆଗମନ ପ୍ରତୀକ୍ଷାରେ ଥିଲି। ମାତ୍ର ମୋହୋର ଆଶା ସଫଳ ହେଲା ନାହିଁ। ଆଶା କରେଁ ଏ ପତ୍ର ଆପଣଙ୍କୁ ସର୍ବ୍ୱଶୁଭରେ ଭେଟିବ।

ଆପଣଙ୍କର

ଶ୍ରୀ ରାଧାନାଥ ରାୟ

□ □ □

# ସଂଯୋଜନ

ଆମ ପ୍ରକାଶନସଂସ୍ଥା 'ଗ୍ରନ୍ଥମନ୍ଦିର'ଦ୍ୱାରା ପ୍ରକାଶିତ 'କବିବର ରାଧାନାଥ ଗ୍ରନ୍ଥାବଳୀ'ର ପୁନର୍ମୁଦ୍ରଣ ଅବସରରେ ବନ୍ଧୁ ଦେବେନ୍ଦ୍ର କୁମାର ଦାଶଙ୍କ (ଅଧ୍ୟାପକ, ରାଉରକେଲା ମ୍ୟୁନିସିପାଲିଟି କଲେଜ) ସହ ଗ୍ରନ୍ଥଟିର ପରିମାର୍ଜନ ଓ ପରିବର୍ଦ୍ଧନ ବିଷୟରେ ଆଲୋଚନା କରିଥିଲି। ସେ ଜଣାଇଲେ ଯେ କବିଙ୍କର ଆଉ କେତେକ ରଚନା ରହିଛି ଯାହା ଗ୍ରନ୍ଥାବଳୀରେ ଅଦ୍ୟାବଧି ସ୍ଥାନିତ ହୋଇନାହିଁ କିମ୍ବା ରାଧାନାଥ ଗ୍ରନ୍ଥାବଳୀର ଅନ୍ୟ ସଂସ୍କରଣମାନଙ୍କରେ ବି ସ୍ଥାନିତ ହୋଇନାହିଁ। ତେଣୁ ଦେବେନ୍ଦ୍ରବାବୁଙ୍କୁ ଅନୁରୋଧ କଲି ସ୍ଥାନିତ ନହୋଇଥିବା ସେହି ଦୁଷ୍ପ୍ରାପ୍ୟ ରଚନାଗୁଡ଼ିକର ସଂକଳନ କରିଦେବାକୁ। ଦେବେନ୍ଦ୍ରବାବୁ ବହୁ ଶ୍ରମସ୍ୱୀକାର କରି କବିବରଙ୍କର ସେହି ସମସ୍ତ ରଚନା ପ୍ରକାଶ ପାଇଥିବା ପୁରାତନ ପତ୍ର-ପତ୍ରିକାମାନଙ୍କରୁ ସ୍ୱହସ୍ତରେ ଲେଖିଆଣି ଯୋଗାଇଦେଲେ। ଏହାଦ୍ୱାରା ଗ୍ରନ୍ଥାବଳୀର ଏହି ନୂତନ ସଂସ୍କରଣଟିକୁ ପରିବର୍ଦ୍ଧିତ କରି ଅଧିକତର ପୂର୍ଣ୍ଣାଙ୍ଗ କରିବାରେ ସେ ସହାୟକ ହୋଇଛନ୍ତି। ଦେବେନ୍ଦ୍ରବାବୁଙ୍କଦ୍ୱାରା ସଂଗୃହୀତ ଓ ପୂର୍ବର ଗ୍ରନ୍ଥାବଳୀମାନଙ୍କରେ ଅନ୍ତର୍ଭୁକ୍ତ ହୋଇନଥିବା ସମସ୍ତ ବିଷୟ ଏହି ''ସଂଯୋଜନ'' ଶୀର୍ଷକରେ ଗ୍ରନ୍ଥାବଳୀରେ ସ୍ଥାନିତ ହେବାଯୋଗୁଁ ଗ୍ରନ୍ଥାବଳୀଟି ଅଧିକତର ପୂର୍ଣ୍ଣାଙ୍ଗ ହୋଇପାରିଛି। ଗବେଷକ ଦେବେନ୍ଦ୍ର କୁମାର ଦାଶଙ୍କର ଏହି ଆନ୍ତରିକ ସହଯୋଗ ପାଇଁ ଗଭୀର କୃତଜ୍ଞତା ଜଣାଉଛି।

– ପ୍ରକାଶକ

## ସଂଯୋଜନର ପ୍ରାକ୍-ସୂଚନା

୧୯୦୨ ମସିହାରେ ଗ୍ରନ୍ଥକାରଙ୍କ ଅନୁମତିକ୍ରମେ ଖଡ଼ିଆଳଯ ମହାରାଜ କୁମାର ଶ୍ରୀ ଶିବନାରାୟଣ ଦେବ ଲାଲ ସାହେବଙ୍କ ଦ୍ୱାରା 'ରାଧାନାଥ ଗ୍ରନ୍ଥାବଳୀ' ପ୍ରକାଶିତ ହୁଏ। କଟକସ୍ଥିତ ଅରୁଣୋଦୟ ଯନ୍ତ୍ରାଳୟରେ ମୁଦ୍ରିତ ଏହି ପୁସ୍ତକ ଓଡ଼ିଆ ଭାଷାର ପ୍ରଥମ 'ଗ୍ରନ୍ଥାବଳୀ'। ଏହି ଗ୍ରନ୍ଥାବଳୀରେ ପ୍ରକାଶଙ୍କ ଦ୍ୱାରା ଲିଖିତ ଏକ ଭୂମିକା ଓ ଆର୍ତ୍ତତ୍ରାଣ ଶତପଥୀଙ୍କ ଦ୍ୱାରା ଲିଖିତ 'ରାୟ ରାଧାନାଥ ରାୟ ବାହାଦୁରଙ୍କ ସଂକ୍ଷିପ୍ତ ଜୀବନଚରିତ' ବ୍ୟତୀତ ରାଧାନାଥଙ୍କର ସାନବଡ଼ ସତରଟି ରଚନା ନିମ୍ନ କ୍ରମରେ ସ୍ଥାନ ପାଇଥିଲା – (୧) ଭାରତ-ଈଶ୍ୱରୀ (ଭିକ୍ଟୋରିୟା), (୨) ପଞ୍ଚାଶତ ବର୍ଷ ଜୁବିଲି ସଂଗୀତ, (୩) ତିନିବନ୍ଧୁ, (୪) ଉର୍ବଶୀ, (୫) ବେଣୀସଂହାର, (୬) କେଦାରଗୌରୀ, (୭) ଚନ୍ଦ୍ରଭାଗା, (୮) ତୁଳସୀସ୍ତବକ, (୯) ନନ୍ଦିକେଶ୍ୱରୀ, (୧୦) ଉଷା, (୧୧) ଦରବାର, (୧୨) ମେଘଦୂତ, (୧୩) ଚିଲିକା, (୧୪) ପାର୍ବତୀ, (୧୫) ଯଯାତିକେଶରୀ, (୧୬) ଦଶରଥ-ବିୟୋଗ, (୧୭) ମହାଯାତ୍ରା।

'ଗ୍ରନ୍ଥାବଳୀ' କହିଲେ ଯଦି ବୁଝାଯାଏ, ଜଣେ କବି/ଲେଖକଙ୍କର ସମସ୍ତ ରଚନାର ଏକ ସଂଗ୍ରହ, ତେବେ ସେହି ଦୃଷ୍ଟିରୁ 'ରାଧାନାଥ ଗ୍ରନ୍ଥାବଳୀ'ର ପ୍ରଥମ ସଂସ୍କରଣ ଏକ ଗ୍ରନ୍ଥାବଳୀ ନଥିଲା। କାରଣ ଏହି 'ରାଧାନାଥ ଗ୍ରନ୍ଥାବଳୀ'ରେ ୧୯୦୨ ମସିହା ମଧ୍ୟରେ ରାଧାନାଥଙ୍କ ଦ୍ୱାରା ଲିଖିତ ସମସ୍ତ ରଚନା ସ୍ଥାନିତ ହୋଇନଥିଲା। ପ୍ରଥମ ସଂସ୍କରଣ 'ରାଧାନାଥ ଗ୍ରନ୍ଥାବଳୀ'ରେ ଅନ୍ତର୍ଭୁକ୍ତ ହୋଇନଥିବା ରଚନା/ରଚନା-ସଂକଳନଗୁଡ଼ିକ ହେଲା : କବିତାବଳୀ [ପ୍ରଥମ ଭାଗ – ବଙ୍ଗଳା], କବିତାବଳୀ – ଦ୍ୱିତୀୟ ଭାଗ [ବଙ୍ଗଳା], ଶିବାଜୀଙ୍କ ଉତ୍ସାହବାକ୍ୟ, ପବନ, ଲେଖାବଳୀ [ବଙ୍ଗଳା] ଭଳି କବିତା ବା କାବ୍ୟସଂଗ୍ରହ, ବିବେକୀ, ଇତାଲୀୟ ଯୁବା, ପ୍ରବନ୍ଧମାଳା, ସମାଲୋଚନା, ଦାଶରଥି କବିଚନ୍ଦ୍ର, ଭ୍ରମଣକାରୀର ପତ୍ର, ବାମଣ୍ଡା ଭଳି ଗଦ୍ୟରଚନା। ଏତଦ୍‌ବ୍ୟତୀତ ଅନେକ ପାଠ୍ୟପୁସ୍ତକ ମଧ୍ୟ ଥିଲା। ପୁଣି ପୁସ୍ତକାକାରରେ ପ୍ରକାଶିତ କେତେକ ରଚନାକୁ 'ଗ୍ରନ୍ଥାବଳୀ'ର ଅନ୍ତର୍ଭୁକ୍ତ କଲାବେଳେ ସେଥିରେ ଥିବା ଭୂମିକା ଓ ସୂଚନା ଆଦିକୁ ମଧ୍ୟ ବାଦ୍ ଦିଆହୋଇଥିଲା। ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଲା, 'ଗ୍ରନ୍ଥାବଳୀ'ର ଅନ୍ତର୍ଭୁକ୍ତ କଲାବେଳେ ରାଧାନାଥ କେତେକ ପଙ୍‌କ୍ତିରେ ପାଠଗତ ପରିବର୍ତ୍ତନ ଆଣିଥିଲେ। ମୋଟ ଉପରେ, 'ରାଧାନାଥ ଗ୍ରନ୍ଥାବଳୀ'ର ପ୍ରଥମ ସଂସ୍କରଣ ଥିଲା ରାଧାନାଥଙ୍କ ଦ୍ୱାରା ନିଜର ଶ୍ରେଷ୍ଠ ରଚନାଭାବରେ ବିବେଚିତ 'ରଚନାବଳୀ'ର ଏକ ସର୍ବଶେଷ ନିର୍ବାଚିତ ରଚନାସଂଗ୍ରହ।

'ରାଧାନାଥ ଗ୍ରନ୍ଥାବଳୀ' ପ୍ରକାଶିତ ହେଲା ପରେ ରାଧାନାଥଙ୍କ ଲେଖନୀରୁ ଅନ୍ୟ କେତେକ ରଚନା ସମ୍ଭବ ହୋଇଥିଲା। ସେଗୁଡ଼ିକ ହେଲା : କାଳିଦାସ ସୂକ୍ତୟଃ (କାଳିଦାସଙ୍କ ରଚନାବଳୀରୁ କେତେକ ପଦ ନିର୍ବାଚନ କରି ରାଧାନାଥ ସେଗୁଡ଼ିକର ଇଂରାଜୀ ଓ ବଙ୍ଗଳା ଅନୁବାଦ ପ୍ରସ୍ତୁତ କରିଥିଲେ), ଧବଳେଶ୍ୱର ସ୍ତୋତ୍ରମ୍, ସାର୍ ବାସୁଦେବ ସୁଢ଼ଳଦେବ କେ.ସି.-ଆଇ.ଇ., ଉତ୍କଳ-ସାହିତ୍ୟର ଉନ୍ନତି, ଭାରତଗୀତିକା, ବାଣହରଣ, ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ, ଏକାଗ୍ରତା, ଶ୍ମଶାନଦୃଶ୍ୟ, ସାବିତ୍ରୀଚରିତ, ରାଧାନାଥଙ୍କ ସ୍ୱୀକାରୋକ୍ତି। ୧୯୦୮ ମସିହା ଏପ୍ରିଲ ୧୭ ତାରିଖରେ ରାଧାନାଥଙ୍କ ଦେହାନ୍ତ ପରେ ତାଙ୍କର ପିତୃଭକ୍ତ ପୁତ୍ର ଶଶିଭୂଷଣ ତାଙ୍କର କେତେକ କ୍ଷୁଦ୍ର ଓ ଅପ୍ରକାଶିତ ରଚନାକୁ ଉତ୍କଳ-ସାହିତ୍ୟ ପତ୍ରିକାର ବିଭିନ୍ନ ସଂଖ୍ୟାରେ 'କବିବରଙ୍କ ଅପ୍ରକାଶିତ ରଚନା' ଶୀର୍ଷକରେ ପ୍ରକାଶ କରିଥିଲେ। ଏହା ବାହାରେ କବି ଗଙ୍ଗାଧର ରାଧାନାଥଙ୍କ ଏଗାରଟି ଚିଠିରୁ କେତେକ ଅଂଶ ନିର୍ବାଚନ କରି 'ସମ୍ବଲପୁର-ହିତୈଷିଣୀ' (୧୮।୬।୧୯୧୨) ସମ୍ବାଦପତ୍ରରେ ପ୍ରକାଶ କରିଥିଲେ।

୧୯୧୩ ମସିହାରେ ଶଶିଭୂଷଣଙ୍କ ଦ୍ୱାରା ସଂପାଦିତ 'ରାଧାନାଥ ଗ୍ରନ୍ଥାବଳୀ' 'ଉତ୍କଳ ସାହିତ୍ୟ

ପ୍ରେସ୍’ରୁ ପ୍ରକାଶିତ ହେଲା । ‘ରାଧାନାଥ ଗ୍ରନ୍ଥାବଳୀ’ ଶୀର୍ଷକଟି ବ୍ୟବହାର କରିଥିଲେ ବି ଏହି ‘ରାଧାନାଥ ଗ୍ରନ୍ଥାବଳୀ’ ଥିଲା ସ୍ୱତନ୍ତ୍ର ଧରଣର ସଂଗ୍ରହ । ଓଡ଼ିଶାର ପ୍ରକାଶକମାନେ ଗ୍ରନ୍ଥାବଳୀ-ସମ୍ପାଦନାରେ ଉପଭୋଗ କରୁଥିବା ସ୍ୱାଧୀନତା ଦ୍ୱିତୀୟ ସଂସ୍କରଣରେ ପରିଦୃଷ୍ଟ । ‘ରାଧାନାଥ ଗ୍ରନ୍ଥାବଳୀ’ର ପ୍ରଥମ ସଂସ୍କରଣ ଅନ୍ତର୍ଭୁକ୍ତ କୌଣସି ଲେଖାକୁ ଅବଶ୍ୟ ଶଶିଭୂଷଣ ବାଦ୍ ଦେଇନାହାନ୍ତି । ‘ରାଧାନାଥ ଗ୍ରନ୍ଥାବଳୀ’ ଦ୍ୱିତୀୟ ସଂସ୍କରଣରେ ଶଶିଭୂଷଣ – (କ) ରଚନାର କ୍ରମକୁ ପରିବର୍ତ୍ତନ କରିଦେଇଛନ୍ତି; (ଖ) ରାଧାନାଥ ବାଦ୍-ଦେଇଥିବା ଅନେକ ରଚନାକୁ ସଂଯୋଜିତ କରିଛନ୍ତି । (ଗ) ଅନେକ ସାଧାରଣ ରଚନା ଓ ଚିଠିପତ୍ରକୁ ଗ୍ରନ୍ଥାବଳୀର ଅନ୍ତର୍ଭୁକ୍ତ କରିଚ଼ନ୍ତି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଅତି କ୍ଷୁଦ୍ର ଓ ସାଧାରଣ ରଚନାକୁ ‘ଗ୍ରନ୍ଥାବଳୀ’ର ଅନ୍ତର୍ଭୁକ୍ତ କଲାବେଳେ ରାଧାନାଥଙ୍କର ବହୁ ଗୁରୁତ୍ୱପୂର୍ଣ୍ଣ ରଚନାକୁ ବାଦ୍ ଦେଇଛନ୍ତି ବା ସେ ସମ୍ପର୍କରେ ନୀରବତା ଅବଲମ୍ବନ କରିଛନ୍ତି । ଏହି ସଂକଳନରେ ନିମ୍ନଲିଖିତ ରଚନାଗୁଡ଼ିକୁ ନୂତନଭାବେ ସଂଯୋଜିତ – (୧) ଭାରତ-ଗୀତିକା, (୨) ପବନ, (୩) ସାବିତ୍ରୀ ଚରିତ, (୪) ମହେନ୍ଦ୍ର-ଗିରି, (୫) ଧବଳେଶ୍ୱର ସ୍ତୋତ୍ରମ୍, (୬) ଶ୍ରୀ କାଳିକା ସ୍ତୁତିଃ, (୭) ମହାରାଣୀ ଭିକ୍ଟୋରିୟାଙ୍କ ଷଷ୍ଟିତମବର୍ଷର ଜୁବିଲୀସଙ୍ଗୀତ, (୮) ବାଣହରଣ, (୯) ଶ୍ମଶାନ-ଦୃଶ୍ୟ, (୧୦) ଏକାଗ୍ରତା, (୧୧) ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ, (୧୨) ସତୀ ପ୍ରତି ସତୀଦ୍ରୋହୀ ପତିର ଉକ୍ତି, (୧୩) ନିବେଦନ, (୧୪) ପ୍ରତାପ-ରୁଦ୍ରଦେବ, (୧୫) ଯୁଧିଷ୍ଠିରଙ୍କ ପ୍ରତି ବ୍ୟାସ, (୧୬) କେତୋଟି ଉପଦେଶ ବାକ୍ୟ, (୧୭) ବନ୍ଦନା, (୧୮) ସତ୍ୟବାଦୀ, (୧୯) ହଂସଦୂତ, (୨୦) ଫୁଲରାଣୀ, (୨୧) ବିବେକୀ, (୨୨) ଇଟାଲୀୟ ଯୁବା, (୨୩) ‘ପାର୍ବତୀ’ କାବ୍ୟର ଉପସଂହାର, (୨୪)‘ଉର୍ବଶୀ’କାବ୍ୟର ଉପସଂହାର (୨୫)ଭ୍ରମଣ-କାରୀର ପତ୍ର, (୨୬) ବାମଣ୍ଡା, (୨୭) ସାର୍ ରାଜା ବାସୁଦେବ ସୁଢ଼ଳଦେବ K.C.I.E., (୨୮) ଉତ୍କଳ ସାହିତ୍ୟର ଉନ୍ନତି, (୨୯) ଟିପାଖାତା, (୩୦) ଖଣ୍ଡିଏ ପତ୍ର, (୩୧) ସାହିତ୍ୟ ସମ୍ବନ୍ଧରେ ଏଣୁ ତେଣୁ ପାଞ୍ଚକଥା ।

ଏହି ସଂସ୍କରଣର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଲା ‘ଗ୍ରନ୍ଥାବଳୀ’ରେ ଗଦ୍ୟରଚନାର ସଂକଳନ ଓ ରଚନାଗୁଡ଼ିକର କାଳାନୁକ୍ରମିକ ସଜ୍ଜୀକରଣ । କେବଳ ‘ଭାରତ-ଗୀତିକା’କୁ ଛାଡ଼ିଦେଲେ ‘ମେଘଦୂତ’ ଓ ତା’ର ପରବର୍ତ୍ତୀ ରଚନାବଳୀ ପ୍ରକାଶନ/ରଚନାର ସମୟ ଅନୁସାରେ ସଜ୍ଜୀକୃତ । ‘ରାଧାନାଥ ଗ୍ରନ୍ଥାବଳୀ’ର ତୃତୀୟ ସଂସ୍କରଣରେ ପୂର୍ବରୁ ବାଦ୍ ଦିଆଯାଇଥିବା ‘ଶିବାଜୀଙ୍କ ଉତ୍ସାହବାକ୍ୟ’ ଓ ‘ମହାଯାତ୍ରା’ ପଞ୍ଚମ ସର୍ଗର ପଂକ୍ତିଦ୍ୱୟକୁ ପୁନଃ-ସଂଯୋଜିତ କରାଯାଇଛି । ‘ରାଧାନାଥ ଗ୍ରନ୍ଥା-ବଳୀ’ର ଯେଉଁ ପାଠ ଓ ରୂପ ଓଡ଼ିଶାର ପାଠକ-ମଣ୍ଡଳୀରେ ପରିଚିତ, ତାହା ଏହି ତୃତୀୟ ସଂସ୍କରଣର ପୁନଃମୁଦ୍ରଣ ମାତ୍ର ।

ଏଠାରେ ସୂଚନାଯୋଗ୍ୟ ଯେ ରାଧାନାଥଙ୍କ ମୃତ୍ୟୁ ପରେ ପରେ ତାଙ୍କର ଅପ୍ରଧାନ ରଚନାର ପ୍ରକାଶ କାର୍ଯ୍ୟ ଆରମ୍ଭ ହୋଇଥିଲା । ରାଧାନାଥ ନିଜ ଜୀବଦ୍ଦଶାରେ ବହୁ ଅନୁଗତ ସୃଷ୍ଟି କରିଥିଲେ ଯେଉଁମାନଙ୍କର ରାଧାନାଥ-ଭକ୍ତି ଥିଲା ସଂକୋଚ୍-ହୀନ । ସେମାନଙ୍କ ମଧ୍ୟରୁ ‘ଉତ୍କଳସାହିତ୍ୟ’ର ସମ୍ପାଦକ ବିଶ୍ୱନାଥ କର ଥିଲେ ଅନ୍ୟତମ । ତେଣୁ କବିଙ୍କ ପ୍ରତି ସମ୍ମାନ ଜଣାଇବାକୁ ଯାଇ ସେ ‘ରାଧାନାଥଙ୍କ ଅପ୍ରକାଶିତ ରଚନା’ ଶିରୋନାମାରେ ଅନେକ ଛୋଟ ଛୋଟ ରଚନା ପ୍ରକାଶ କରିଥିଲେ । ଉତ୍କଳ ସାହିତ୍ୟରେ ପ୍ରକାଶିତ ସେହି ରଚନାଗୁଡ଼ିକ ହେଲା : (କ) ‘ସତୀ ପ୍ରତି ସତୀଦ୍ରୋହୀ ପତିର ଉକ୍ତି’ (୧୨/୧୦, ଜାନୁଆରୀ, ୧୯୦୯), (ଖ) ବନ୍ଦନା, ସତ୍ୟବାଦୀ ସାହିତ୍ୟ ସମ୍ବନ୍ଧରେ ଏଣୁତେଣୁ ପାଞ୍ଚକଥା, ଖଣ୍ଡିଏ ପତ୍ର (୧୪/୧୧; ଫେବୃଆରୀ, ୧୯୧୧), (ଗ) କେତୋଟି ଉପଦେଶ ବାକ୍ୟ, ନିବେଦନ, ପ୍ରତାପରୁଦ୍ରଦେବ (୧୪/୧୨; ମାର୍ଚ୍ଚ, ୧୯୧୧), (ଘ) ପାର୍ବତୀ କାବ୍ୟର ଉପସଂହାର (୧୫/୪; ଜୁଲାଇ, ୧୯୧୧), ବାମଣ୍ଡା ରାଜସଭାରେ ପଠିତ କବିତା (୩୭/୪, ଜୁଲାଇ, ୧୯୨୮) ଇତ୍ୟାଦି । ଏ ପ୍ରସଙ୍ଗରେ ‘ଉତ୍କଳସାହିତ୍ୟ’ର ସଂପାଦକ ବିଶ୍ୱନାଥ କର ଲେଖିଥିଲେ – “କିଛିକାଳ ପୂର୍ବେ କବି ରାଧାନାଥଙ୍କର କେତୋଟି ଅସଂପୂର୍ଣ୍ଣ ରଚନା ତାଙ୍କ ଟୀପାଖାତାମାନଙ୍କରୁ ସଂଗ୍ରହ କରି ‘ଉତ୍କଳସାହିତ୍ୟ’ର ପାଠକମାନଙ୍କୁ ଉପହାର ଦେଇଥିଲୁଁ । ଉକ୍ତ ଖାତାମାନଙ୍କରେ ସେହିପରି ଅନେକ ଗଦ୍ୟ ରଚନା ଓ ପଦ୍ୟାଦି ରହିଅଛି । ସେଗୁଡ଼ିକ କବିବରଙ୍କ ସୁଯୋଗ୍ୟ ପୁତ୍ର ଶ୍ରୀମାନ୍ ଶଶିଭୂଷଣଙ୍କ ସାହାଯ୍ୟରେ ସଂଗ୍ରହ

କରି ପ୍ରକାଶ କରିବାର ଅଭିଳାଷ କରିଅଛୁଁ।'' (ଉତ୍କଳସାହିତ୍ୟ ୧୪/୧୧, ପୃ.୨୯୬) ସମକାଳରେ ରାଧାନାଥଙ୍କ ଘନିଷ୍ଠ ଥିବା 'ସମ୍ବଲପୁର ହିତୈଷିଣୀ'ରେ ଗଙ୍ଗାଧରଙ୍କ ଦ୍ୱାରା ରାଧାନାଥଙ୍କ ପତ୍ରରୁ ନିର୍ବାଚିତ ଅଂଶ 'ରାଧାନାଥଙ୍କ ଉକ୍ତି' (୨୩/୨୪; ୮।୬। ୧୯୧୨) ଓ ଉତ୍କଳ-ସମ୍ମିଳନୀରେ ଉଦ୍‌ଘାଟନୀ ଶ୍ଳୋକରୂପେ ଗୀତ ହୋଇଥିବା 'ଭାରତଗୀତିକା' (୨୪/୮; ୮।୬।୧୯୧୨) ପ୍ରକାଶିତ ହୋଇଥିଲା। ଏଗୁଡ଼ିକ ମଧ୍ୟରୁ ଉପଯୁକ୍ତ ମନେହୋଇଥିବା ରଚନାଗୁଡ଼ିକୁ ଶଶିଭୂଷଣ 'ରାଧାନାଥ ଗ୍ରନ୍ଥାବଳୀ' ଦ୍ୱିତୀୟ ସଂସ୍କରଣରେ ଅନ୍ତର୍ଭୁକ୍ତ କରିଥିଲେ। ବିବାଦ ଘେରକୁ ନ ଯିବା ପାଇଁ ସେ ରାଧାନାଥଙ୍କ ଉକ୍ତିକୁ ଯେଉଁଭଳି ଗ୍ରହଣ କରିନଥିଲେ, ଦ୍ୱିତୀୟ ସଂସ୍କରଣ ପରେ ପ୍ରକାଶ କରିଥିବା ରଚନାଗୁଡ଼ିକ ମଧ୍ୟ ପରବର୍ତ୍ତୀ ସଂସ୍କରଣଗୁଡ଼ିକରେ ସ୍ଥାନିତ କରିନଥିଲେ।

ଗଙ୍ଗାଧରଙ୍କ ନିକଟକୁ ରାଧାନାଥ ଲେଖିଥିବା ଅନେକ ପତ୍ରାବଳୀରୁ କେତେକ ନିର୍ବାଚିତ ପତ୍ରକୁ ଗଙ୍ଗାଧର ପ୍ରକାଶ କରିବାକୁ ଇଚ୍ଛୁକ ଥିଲେ ଓ ସେଥିପାଇଁ ସେଗୁଡ଼ିକର ପ୍ରତିଲିପି ସେ ତାଂ [illegible] ଅନ୍ୟତମ ଅନ୍ତରଙ୍ଗ ବ୍ରଜମୋହନ ପଣ୍ଡାଙ୍କୁ ଦେଇ [illegible]। ବ୍ରଜମୋହନ 'ରାଧାନାଥଙ୍କ ପତ୍ରାବଳୀ' ପ୍ରକାଶ କରିବାର ଯୋଜନା କରୁଥିବାର ଏକ ବିଜ୍ଞାପନ ମଧ୍ୟ 'ଉତ୍କଳସାହିତ୍ୟ'ର ବିବିଧ ସଂଖ୍ୟାରେ ଦେଇଥିଲେ। କିନ୍ତୁ କୌଣସି କାରଣରୁ ତାହା କାର୍ଯ୍ୟ-କାରୀ ହୋଇ ନଥିଲା। ବ୍ରଜମୋହନ ପଣ୍ଡାଙ୍କ ନିକଟରେ ଥିବା ପତ୍ରଗୁଡ଼ିକର ପ୍ରତିଲିପି କୌଣସି ସୂତ୍ରରୁ ପାଇ ସେଥିରୁ କେତୋଟି 'କବିଲିପି' ଶିରୋନାମାରେ ଡାକ୍ତର କୈଳାଶଚନ୍ଦ୍ର ରାଓ 'ସହକାର' (୨୧/୪, ମେ ୧୯୪୦) ରେ ପ୍ରକାଶ କରିଥିଲେ।

୧୯୪୧ ମସିହାରେ ରାଧାନାଥଙ୍କ ପୁତ୍ର ଶଶିଭୂଷଣଙ୍କ ଜାମାତା ଦୁର୍ଗାଚରଣ ରାୟ 'ରାଧାନାଥ ଜୀବନୀ' ରଚନା ଓ ପ୍ରକାଶ କରନ୍ତି। ଦୁର୍ଗାଚରଣ ଏହି ବିରାଟ ପୁସ୍ତକକୁ ଏକ ସାଧାରଣ ଜୀବନୀ ପୁସ୍ତକ ନ କରି ଏକ କୋଷଗ୍ରନ୍ଥ ରୂପେ ଛିଡ଼ା କରେଇଛନ୍ତି। ରାଧାନାଥଙ୍କର ଚିଠିପତ୍ର ଓ ପୂର୍ବରୁ ପ୍ରକାଶିତ ଅଥଚ ଗ୍ରନ୍ଥାବଳୀରେ ଅସଂଗୃହୀତ ବହୁ ରଚନା ଏଥିରେ ସ୍ଥାନିତ। ରାଧାନାଥ-ଗୌରବ ପ୍ରଚାର ଆଭିମୁଖ୍ୟ ନେଇ ବହୁ ତଥ୍ୟ ଓ ରଚନାକୁ ଏହା ବିକୃତ କରିଥିଲେ ବି ରାଧାନାଥ-ରଚନାବଳୀ ଓ ତାଙ୍କ ସମ୍ପର୍କିତ ତଥ୍ୟ ଉପସ୍ଥାପନ ନେଇ ଏହା ଏବେ ବି ଏକ ମାନକଗ୍ରନ୍ଥର ମର୍ଯ୍ୟାଦା ଦାବୀ କରେ। ଗ୍ରନ୍ଥାବଳୀରେ ସଂଗୃହୀତ ହୋଇ ନ ଥିବା ପନ୍ଦରଟି ରଚନା, ପଚିଶିଟି ଓଡ଼ିଆ ଚିଠି ଓ ଅର୍ଦ୍ଧଶତାଧିକ ଇଂରାଜୀ ପତ୍ର ଏଥିରେ ସଂଯୋଜିତ। କିନ୍ତୁ କୌଣସି କାରଣରୁ କେଜାଣି ଶଶିଭୂଷଣ ଏଥିରେ ଥିବା ରଚନା ଓ ପତ୍ରଗୁଡ଼ିକୁ 'ଗ୍ରନ୍ଥାବଳୀ'ରେ ଅନ୍ତର୍ଭୁକ୍ତ କରିବାକୁ ଚାହିଁ ନାହାନ୍ତି। ଫଳରେ ରାଧାନାଥ ଗ୍ରନ୍ଥାବଳୀ ଅସଂପୂର୍ଣ୍ଣ ହୋଇ ରହିଯାଇଛି।

୧୯୫୦ ମସିହା ପରେ ଓଡ଼ିଆ ଭାଷା ଓ ସାହିତ୍ୟର ଗବେଷଣାରେ ନୂଆ ଉତ୍ସାହ ଦେଖାଦେଲା ଓ ଏ କ୍ଷେତ୍ରରେ ନେତୃତ୍ୱ ନେଲେ ଓଡ଼ିଆ ବିଭାଗର ଅଧ୍ୟାପକଗଣ। ଫଳରେ ରାଧାନାଥଙ୍କ ରଚନାବଳୀର ସଂଗ୍ରହ ଓ ସମାଲୋଚନା କ୍ଷେତ୍ରରେ ନୂଆ ଉଦ୍ୟମ ଦେଖାଦେଲା। ଡକ୍ଟର ନଟବର ସାମନ୍ତରାୟ ବହୁ-ପରିଚିତ ରାଧାନାଥ ଗ୍ରନ୍ଥାବଳୀ ତଥା 'ରାଧାନାଥ ଜୀବନୀ'କୁ ଏକମାତ୍ର ସହାୟକ ଗ୍ରନ୍ଥ ଭାବରେ ଗ୍ରହଣ କରି ରାଧାନାଥ-ସାହିତ୍ୟର ଅଧ୍ୟୟନ କଲେ ନାହିଁ। ଊନବିଂଶ ଶତକ ଓ ବିଂଶ ଶତକର ଆଦ୍ୟ ଦୁଇ ଦଶକର ପତ୍ରପତ୍ରିକା, ସରକାରୀ କାଗଜପତ୍ର ତଥା ରାଧାନାଥଙ୍କ କାବ୍ୟଗୁଡ଼ିକର ପ୍ରାଥମିକ ସଂସ୍କରଣ ଭିତ୍ତିରେ ରାଧାନାଥ ଜୀବନ ଓ ସାହିତ୍ୟର ପୁନଃ-ମୂଲ୍ୟାୟନକଲେ। ଆଧୁନିକ ଓଡ଼ିଆ ସାହିତ୍ୟର ଏହି ବିଶିଷ୍ଟତମ ଗବେଷକଙ୍କ ପ୍ରଚେଷ୍ଟା ହେତୁ ରାଧାନାଥଙ୍କ ବହୁ ଅଜ୍ଞାତ ରଚନାବଳୀ ଓ ଚିଠିପତ୍ର ଜ୍ଞାତ ଓ ତାଙ୍କ ଜୀବନର ବହୁ ଅନାଲୋକିତ ଦିଗ ଆଲୋକିତ ହେଲା। ଡକ୍ଟର ନଟବର ସାମନ୍ତରାୟ ରାଧାନାଥଙ୍କର ଗୋଟିଏ ପ୍ରବନ୍ଧ, ଦୁଇଟି ଗୁରୁତ୍ୱପୂର୍ଣ୍ଣ ପତ୍ର ପ୍ରକାଶ କରି ଓ ବହୁ ତଥ୍ୟର ସୂଚନା ଦେଇ ରାଧାନାଥ ସାହିତ୍ୟର ପଠନ-ପାଠନ, ସଂଗ୍ରହ ଓ ସମ୍ପାଦନା କ୍ଷେତ୍ରରେ ନୂତନ ଦିଗ୍‌ଦର୍ଶନ ଦେଇଛନ୍ତି। ସମକାଳରେ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ଡାକ୍ତର କୈଳାଶ ଚନ୍ଦ୍ର ରାଓଙ୍କ ନିକଟରୁ ସଂଗ୍ରହ କରିଥିବା ରାଧାନାଥ ପତ୍ରାବଳୀକୁ ସଂପାଦନା କରି ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିଛନ୍ତି। ରାଧାନାଥ ନିଜ 'ମେଘଦୂତ'ରେ ଲେଖିଥିବା ଏକ ଦୁର୍ଲଭ ଭୂମିକାକୁ ଆଧୁନିକ ଗବେଷକମାନଙ୍କ ଦୃଷ୍ଟିକୁ ପ୍ରଥମେ ଆଣିଛନ୍ତି ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)। ଏହି 'ସୂଚନା'ର ଲେଖକ ମଧ୍ୟ ରାଧାନାଥଙ୍କର କେତୋଟି ଦୁର୍ଲଭ ବଂଗଳା ରଚନାକୁ ପୁନଃ-ମୁଦ୍ରିତ କରିଛି। ତେଣୁ ବିଗତ ଚାଳିଶ ବର୍ଷ ମଧ୍ୟରେ ଡକ୍ଟର ସାମନ୍ତରାୟ

ଓ ଅନ୍ୟମାନଙ୍କ ସହଯୋଗରେ 'ଗ୍ରନ୍ଥାବଳୀ'ରେ ନଥିବା ଓ ପ୍ରାୟତଃ ବିସ୍ମୃତ ରାଧାନାଥଙ୍କ ବହୁ ଛୋଟ ବଡ଼ ରଚନା ପାଠକ-ସାଧାରଣଙ୍କ ଦୃଷ୍ଟିକୁ ଅଣାଯାଇପାରିଛି।

ରାଧାନାଥଙ୍କ ରଚନାବଳୀର ଏଭଳି ସଂଗ୍ରହ ଓ ପୁନଃପ୍ରକାଶନ ଚାଲିଥିଲେହେଁ 'ରାଧାନାଥ ଗ୍ରନ୍ଥାବଳୀ'ରେ ନୂତନ ଆବିଷ୍କୃତ ରଚନାଗୁଡ଼ିକ ସ୍ଥାନିତ ହେଉ ନଥିଲା। ବିଭିନ୍ନ ପ୍ରକାଶକ ଶଶିଭୂଷଣ ରାୟ ସଂପାଦିତ ଗ୍ରନ୍ଥାବଳୀର କେବଳ ପୁନଃମୁଦ୍ରଣ କରି ଚାଲିଥିଲେ। ୧୯୭୫ ମସିହାରେ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ଦ୍ୱାରା ସଂପାଦିତ (?) ହୋଇ ପୁସ୍ତକ ଭଣ୍ଡାର (ବ୍ରହ୍ମପୁର) ସଂସ୍ଥାଦ୍ୱାରା 'ରାଧାନାଥ ଗ୍ରନ୍ଥାବଳୀ' ପ୍ରକାଶ ପାଏ। ସଂପୃକ୍ତ ସଂସ୍କରଣରେ ଦୁଇଟି କଥା ପ୍ରବର୍ତ୍ତିତ ହେଲା। ପ୍ରତ୍ୟେକ ରଚନାର ଶେଷରେ ତାହାର ପ୍ରଥମ ପ୍ରକାଶନର ସମୟ ନିର୍ଦ୍ଦେଶ କରାଗଲା ଓ 'ରାଧାନାଥ ଜୀବନୀ'ରେ ସଂଯୋଜିତ 'ଆତ୍ମକଥାର କିୟଦଂଶ' ଓ 'ସାଧାରଣଙ୍କ ସମୀପରେ ମହାପାପୀର ଅତି କରୁଣ ଓ ବିନୀତ ନିବେଦନ', ସହ ଦୁଇଟି ପାଠ୍ୟପୁସ୍ତକ– 'ଉତ୍କଳ ରଚନା' ଓ 'ବ୍ୟାକରଣ ପରିଚୟ' ସ୍ଥାନିତ ହେଲା। କିନ୍ତୁ କ'ଣ ପାଇଁ ଅନ୍ୟ ସମସ୍ତ ପାଠ୍ୟପୁସ୍ତକ, ବଙ୍ଗଳା ରଚନାବଳୀ ତଥା ଅନ୍ୟାନ୍ୟ ଆବିଷ୍କୃତ ରଚନା ଏହି ସଂସ୍କରଣରେ ସ୍ଥାନିତ ହେଲା ନାହିଁ, ସେ ସମ୍ପର୍କରେ ସଂପାଦକ ସ୍ୱର୍ଗତ ନାୟକ କୌଣସି ସୂଚନା ଦେଇନଥିଲେ। ୧୯୯୪ ମସିହାରେ ଓଡ଼ିଶାର ଅନ୍ୟ ଏକ ବିଶିଷ୍ଟ ପ୍ରକାଶନ ସଂସ୍ଥା 'ଗ୍ରନ୍ଥମନ୍ଦିର' 'ରାଧାନାଥ ଗ୍ରନ୍ଥାବଳୀ'ର ଅନ୍ୟ ଏକ ସଂସ୍କରଣ ପ୍ରସ୍ତୁତ କରନ୍ତି। ସେଥିରେ ରାଧାନାଥ 'ଜୀବନୀ'ରୁ ଆହୃତ ହୋଇ ଛୋଟବଡ଼ ତେରଟି ରଚନା ଓ 'କବିଲିପି'ରେ ପ୍ରକାଶିତ ପତ୍ର ଓ ମନ୍ତବ୍ୟାବଳୀ ସଂଯୋଜିତ ହୋଇ 'ରାଧାନାଥ ଗ୍ରନ୍ଥାବଳୀ'କୁ ଅପେକ୍ଷାକୃତ ବୃହଦାକାର କରେ।

## (ଦୁଇ)

ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ପ୍ରତ୍ୟକ୍ଷତଃ ସମକାଳୀନ ବଙ୍ଗଳା ସାହିତ୍ୟର ସମ୍ପର୍କରେ ଆସି ଓ ପରୋକ୍ଷତଃ ଇଂରାଜୀ ସାହିତ୍ୟର ପ୍ରଭାବ ଫଳରେ ଓଡ଼ିଆ ସାହିତ୍ୟରେ ଯେଉଁ ତଥାକଥିତ ନୂତନତା ଦେଖାଦେଇଥିଲା, ତାହାକୁ ଆମ ସାହିତ୍ୟ– ଐତିହାସିକ ଓ ସମାଲୋଚକମାନେ 'ଆଧୁନିକ ଚେତନାର ଅଭ୍ୟାଗମ' ବୋଲି କହିଥାନ୍ତି। ସେହି ଆଧୁନିକ ଚେତନାର ବାର୍ତ୍ତାବହ ରୂପରେ ରାଧାନାଥ ରାୟ ବହୁକୀର୍ତ୍ତିତ। ଆମର ଐତିହାସିକ-ଆଲୋଚନା ବିଭିନ୍ନ କାରଣରୁ 'ସାହିତ୍ୟ'-କୈନ୍ଦ୍ରିକ ହୋଇଥିବାରୁ ରାଧାନାଥ କେବଳ ତୁଚ୍ଛା କବିତା-ଲେଖକ ନୁହନ୍ତି, ଓଡ଼ିଆ ଜାତିର ମାନସପଟରେ ଏକ ମହାପୁରୁଷର ମହିମା ନେଇ ପ୍ରତିଷ୍ଠିତ।

ଗତ ଶତାବ୍ଦୀରେ ନିଜ ଅନୁଗତ ଶିକ୍ଷକ/ ଆଲୋଚକମାନଙ୍କ ସାହାଯ୍ୟରେ ଏହିଭଳି ଏକ ପ୍ରତ୍ୟୟ ରାଧାନାଥ ନିଜେ ଛିଡ଼ା କରାଇବାକୁ ସମର୍ଥ ହୋଇଥିଲେ। ଗୋଟିଏ ଦୃଷ୍ଟାନ୍ତ ଦେଲେ ରାଧାନାଥଙ୍କୁ କାରଣ-ଅକାରଣରେ କିଭଳି ମହତ୍ତ୍ୱ ଦିଆଯାଇଥିଲା, ତାହା ସ୍ପଷ୍ଟ ହୋଇପାରିବ। ରାଧାନାଥ ଓ ମଧୁସୂଦନଙ୍କ ମିଳିତ ଉଦ୍ୟମରେ 'କବିତାବଳୀ' ନାମରେ ଖଣ୍ଡିଏ କବିତା ପୁସ୍ତକ ୧୮୭୬ ମସିହାରେ ପ୍ରକାଶିତ ହୁଏ। ଏହି କବିତାବଳୀ ମାଧ୍ୟମରେ ଓଡ଼ିଆ ସାହିତ୍ୟରେ 'ଆଧୁନିକ ଯୁଗ'ର ସୂତ୍ରପାତ ହେଲାବୋଲି କୁହାଯାଇଥାଏ। ଏହି ସଂକଳନରେ ରାଧାନାଥଙ୍କର ତିନୋଟି କବିତା– 'ପବନ', 'ବେଣୀସଂହାର' ଓ 'ନିଜ ସୈନ୍ୟ ପ୍ରତି ଶିବାଜୀ' (ପରବର୍ତ୍ତୀ ସଂସ୍କରଣରେ କବିତାଟି 'ଶିବାଜୀଙ୍କ ଉତ୍ସାହବାଣୀ' ରୂପରେ ପରିଚିତ) ତଥା ମଧୁସୂଦନଙ୍କର ସ୍ତୋତ୍ର, ସୀତା-ବନବାସ, ଅଯୋଧ୍ୟା ପ୍ରତ୍ୟାଗମନ, 'ଶ୍ମଶାନ', 'ନିଶୀଥଚିନ୍ତା', ଭାରତି-ବନ୍ଦନା, ନିର୍ବାସିତର ବିଳାପ ଓ ଶରତ-ପ୍ରଭାତ– ଏହି ଆଠଟି କବିତା ଉକ୍ତ ସଂକଳନରେ ସ୍ଥାନ ପାଇଥିଲା। କବିତାର ସଂଖ୍ୟା, ମୌଳିକତା, ବୈଚିତ୍ର୍ୟ ଓ ଗୁଣବତ୍ତା ଦୃଷ୍ଟିରୁ ମଧୁସୂଦନ ଏହି ସଂକଳନ ପାଇଁ ଅଧିକ ସମ୍ମାନ ଦାବୀ କରନ୍ତି। କିନ୍ତୁ ଏହାର ଗୌରବ ପାଇଛନ୍ତି ରାଧାନାଥ। ବହୁଦିନ ପର୍ଯ୍ୟନ୍ତ ଏହି ସଂକଳନଟି ବିଦ୍ୟାଳୟର ପାଠ୍ୟପୁସ୍ତକ ଥିଲା। ଛାତ୍ର-ଶୁଶ୍ରୂଷା ଉପଲକ୍ଷରେ ପଣ୍ଡିତ ଆର୍ତ୍ତତ୍ରାଣ ଶତପଥୀ ଏହା ଉପରେ ଯେଉଁ ବ୍ୟାଖ୍ୟା ପୁସ୍ତକଟି ଲେଖିଥିଲେ, ସେଥିରେ ଆରମ୍ଭରେ ରାଧାନାଥଙ୍କ ସମ୍ପର୍କରେ କୁହାଯାଇଥିଲା – "ରାଧାନାଥବାବୁଙ୍କ ପରି ପ୍ରତିଭାଶାଳୀ ବ୍ୟକ୍ତି ଓଡ଼ିଶାରେ ଆଧୁନିକ ସମୟରେ କେହି ଜନ୍ମଗ୍ରହଣ କରିନାହାନ୍ତି ବୋଲିଲେ ଅତ୍ୟୁକ୍ତି ହେବନାହିଁ। ଏହାଙ୍କଠାରେ ଯେଉଁ ଅନନ୍ୟ ସାଧାରଣ ଗୁଣ ସମୂହ ଏକାଧାରରେ ରହିଅଛି, ତାହା ଉତ୍କଳ କାହିଁକି ସମସ୍ତ ବଙ୍ଗଦେଶରେ ମଧ୍ୟ ସୁଦୁର୍ଲ୍ଲଭ। ଦୟା, ଦାକ୍ଷିଣ୍ୟ, ସ୍ୱଦେଶବତ୍ସଳତା, ଅସାଧାରଣ ପାଣ୍ଡିତ୍ୟ,

ବସ୍ତୁଦର୍ଶନ, ଧାର୍ମିକତା, ଚରିତ୍ରବତ୍ତା ଏବଂ କବିତ୍ୱ ପ୍ରଭୃତିର ଏକତ୍ର ସମାବେଶ ଏହାଙ୍କ ବ୍ୟତୀତ ଉତ୍କଳର ଅନ୍ୟ କୌଣସି ବ୍ୟକ୍ତିଙ୍କ ନିକଟରେ ଦୃଷ୍ଟ ହୁଏ ନାହିଁ। ଏ ମହାତ୍ମା ସ୍ୱୀୟ ଅଧ୍ୟବସାୟ ଗୁଣରୁ ଆଜିକାଲି ଓଡ଼ିଶାର ଅଦ୍ୱିତୀୟ କବି ଏବଂ ଓଡ଼ିଶା ଶିକ୍ଷାବିଭାଗର ସର୍ବପ୍ରଧାନ କର୍ତ୍ତା ହୋଇଅଛନ୍ତି। କେଦାରଗୌରୀ, ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, ଉଷା, ପାର୍ବତୀ, ଚିଲିକା, ଯଯାତିକେଶରୀ, ତୁଳସୀ ସ୍ତବକ ଏବଂ ମହାଯାତ୍ରା ପ୍ରଭୃତି ଅମୃତମୟ କବିତା ପୁସ୍ତକସମୂହ ଏହାଙ୍କ ଅବିରାମ-ପ୍ରସବିନୀ, ଚିରସଙ୍ଗିନୀ କଳ୍ପନାରୁ ବାହାରି ଏହାଙ୍କୁ ଶୁଚିତମା ଲିପିକାର୍ଗିରେ ଅମର କରାଇଅଛି। ଏହାଙ୍କ କବିତାମାନ ବୀର, ଶୃଙ୍ଗାର ଓ କରୁଣ-ରସାଶ୍ରିତ। ବିଶେଷତଃ ପ୍ରାକୃତିକ ଦୃଶ୍ୟ ଅଙ୍କନରେ ଏଭଳି ସିଦ୍ଧହସ୍ତ ବ୍ୟକ୍ତି ବଙ୍ଗୀୟ କବିସମାଜରେ ଏକାନ୍ତ ଦୁର୍ଲ୍ଲଭ। (କବିତାବଳୀର ବିଶଦବ୍ୟାଖ୍ୟା, ପୃ.୧-୨; ଅରୁଣୋଦୟ ପ୍ରେସ୍, କଟକ, ୧୮୯୮) ରାଧାନାଥଙ୍କର ଏହିଭଳି ପ୍ରଶସ୍ତି କୋମଳମତି ଛାତ୍ରମାନେ କିଭଳି ଗ୍ରହଣ କରିଥିବେ, ତାହା ସହଜରେ ଅନୁମେୟ।

ରାଧାନାଥଙ୍କୁ ମହାକବି, ଓଡ଼ିଆ ସାହିତ୍ୟ [illegible] (ସେତେବେଳେ ସାହିତ୍ୟ କହିଲେ କବିତାକୁହିଁ ବୁଝାଉଥିଲା) ଅଦ୍ୱିତୀୟ ସ୍ରଷ୍ଟା ଓ ମହାତ୍ମା କହି ତାଙ୍କ ସମ୍ପର୍କରେ ଯେଉଁ ଧାରଣା ପଣ୍ଡିତ ଆର୍ତ୍ତତ୍ରାଣ ଶତପଥୀ ପ୍ରମୁଖ ବିଦ୍ୟାଳୟର ଛାତ୍ରମାନଙ୍କ ମନରେ ପ୍ରତିଷ୍ଠା କରିଥିଲେ, ତାହାକୁ ଚିରସ୍ଥାୟୀ କରିବା ଥିଲା ୧୯୦୨ ମସିହାରେ ପ୍ରକାଶିତ 'ରାଧାନାଥ ଗ୍ରନ୍ଥାବଳୀ'ର ଉଦ୍ଦେଶ୍ୟ ଓ ଆଭିମୁଖ୍ୟ। ପଣ୍ଡିତ ଆର୍ତ୍ତତ୍ରାଣ ଶତପଥୀ 'ରାଧାନାଥ ଗ୍ରନ୍ଥାବଳୀ'ରେ ସଂଯୋଜିତ 'ରାୟ ରାଧାନାଥ ରାୟ ବାହାଦୁରଙ୍କର ସଂକ୍ଷିପ୍ତ ଜୀବନଚରିତ'ର ଲେଖକ। ରାଧାନାଥଙ୍କ କବିଯଶକୁ ଚିରଞ୍ଜୀବୀ କରିବା ଓ ରାଧାନାଥଙ୍କୁ ଓଡ଼ିଶାର ସର୍ବଶ୍ରେଷ୍ଠ ସାରସ୍ୱତ-ସାଧକ ରୂପେ ପ୍ରତିଷ୍ଠିତ କରାଇ ତାଙ୍କୁ ଦେବତାର ଆସନରେ ବସାଇବା ଥିଲା 'ଗ୍ରନ୍ଥାବଳୀ'ର ଲକ୍ଷ୍ୟ। ପରବର୍ତ୍ତୀ ସମୟରେ ପିତୃଭକ୍ତ ଶଶିଭୂଷଣ ଏହି ଧାରଣାକୁ ଆହୁରି ଦୃଢ଼ମୂଳ କରିବାକୁ ଚେଷ୍ଟା କରିଛନ୍ତି। ତେଣୁ 'ରାଧାନାଥ ଗ୍ରନ୍ଥାବଳୀ'ର ଆଭିମୁଖ୍ୟ ହେଉଛି– (କ) ଏହା ରାଧାନାଥଙ୍କର ସାହିତ୍ୟଧର୍ମୀ ରଚନାର ସଙ୍କଳନ, (ଖ) ସେଇ ରଚନାଗୁଡ଼ିକ କେବଳ ସଂସ୍କୃତ ବା ଓଡ଼ିଆରେ ଲିଖିତ, (ଗ) ସେଇ ରଚନାଗୁଡ଼ିକ ମଧ୍ୟଦେଇ ପ୍ରତ୍ୟକ୍ଷ ବା ପରୋକ୍ଷରେ ରାଧାନାଥଙ୍କ ବ୍ୟକ୍ତି ଓ କବିଯଶଃ ପ୍ରତିଷ୍ଠିତ। ଏଭଳି ଆଭିମୁଖ୍ୟରୁ ତାଙ୍କଦ୍ୱାରା ଓଡ଼ିଆରେ ଲିଖିତ ପାଠ୍ୟପୁସ୍ତକ, ଅନ୍ୟାନ୍ୟ ଗଦ୍ୟ ରଚନା ତଥା ବଙ୍ଗଳା ରଚନାଗୁଡ଼ିକ 'ଗ୍ରନ୍ଥାବଳୀ'ରେ ସ୍ଥାନିତ ହୋଇନଥିଲା। ସେଥିପାଇଁ 'ପାର୍ବତୀ କାବ୍ୟର ଉପସଂହାର' ଓ 'ଉର୍ବଶୀ'ର ଅବଶିଷ୍ଟାଂଶ ଯାହା ବଙ୍ଗଳା ଗଦ୍ୟରେ ରାଧାନାଥ ଲେଖିଥିଲେ, ତାହାକୁ ଓଡ଼ିଆରେ ଅନୁବାଦ କରି ଶଶିଭୂଷଣ ଗ୍ରନ୍ଥାବଳୀରେ ପତ୍ରସ୍ଥ କରିଥିଲେ।

ବିଂଶ ଶତକର ଏଇ ଶେଷଦଶକରେ ରାଧାନାଥଙ୍କୁ ନେଇ ଆର୍ତ୍ତତ୍ରାଣ ଓ ଶଶିଭୂଷଣ ପ୍ରମୁଖ ସୃଷ୍ଟି କରିଥିବା ପ୍ରତ୍ୟୟକୁ ନିର୍ବିରୋଧ ଭାବରେ ଗ୍ରହଣ କରିବା ସମ୍ଭବପର ନୁହେଁ। ଠିକ୍ ସେହିଭଳି ରାଧାନାଥ ଜଣେ କବି କେବଳ ନ ଥିଲେ। କବିତା ଭାବରେ ନିଜ ରଚନାକୁ ଗ୍ରାହ୍ୟ କରାଇବା ପାଇଁ ୧୮୭୭ ମସିହାରେ ଜଏଣ୍ଟ ଇନ୍ସପେକ୍ଟର ହେବା ପରଠାରୁ ସେ ସଚେତନ ଭାବରେ ଓଡ଼ିଆ ଗଦ୍ୟଭାଷାର ପୁନର୍ବିନ୍ୟାସ କରାଇଛନ୍ତି। କବିତା ସମ୍ପର୍କରେ ନୂତନ ମୂଲ୍ୟମାନ ତିଆରି କରାଇଛନ୍ତି, ଓଡ଼ିଶାର ଶିକ୍ଷା ବିଭାଗକୁ ସଂଗଠିତ କରିଛନ୍ତି ଓ ବିଭିନ୍ନ ବିଷୟରେ ନୂଆ ଆଭିମୁଖ୍ୟ ସୃଷ୍ଟି କରିଛନ୍ତି। ଫଳରେ ଆଜି ପର୍ଯ୍ୟନ୍ତ ସେ ଏକ ଚଳମାନ ସାମାଜିକ-ଶକ୍ତି ଓ ସକ୍ରିୟ-ଭାବାଦର୍ଶ ହୋଇ ରହିଅଛନ୍ତି– ଓଡ଼ିଶାର ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଅଛନ୍ତି। ତେଣୁ ରାଧାନାଥଙ୍କୁ ନୂଆକରି ଚିହ୍ନିବା ଓ ମୂଲ୍ୟାୟନ କରିବା ଅତ୍ୟନ୍ତ ଜରୋରୀ ହୋଇପଡ଼ିଛି। ଏହି ଚିହ୍ନିବା ଓ ଜାଣିବା ପାଇଁ ଆବଶ୍ୟକ ରାଧାନାଥଙ୍କ ସମସ୍ତ ରଚନାର ସଂଗ୍ରହ ଓ ସମ୍ପାଦନା।

ଆଜି 'ରଚନା-ସମଗ୍ର'ର ସଂକଳନ ଓ ସଂପାଦନା ବିଶ୍ୱର ସବୁଆଡ଼େ ଏକ ବିଶେଷଜ୍ଞ-ସୁଲଭ କାର୍ଯ୍ୟ। ସେଥିପାଇଁ ସ୍ୱତନ୍ତ୍ର ପ୍ରଶିକ୍ଷଣ, ଦୃଷ୍ଟିକୋଣ, ଅଧ୍ୟବସାୟ ଓ ଭିତ୍ତିଭୂମି ଲୋଡ଼ା। ରାଧାନାଥଙ୍କର ଏହିଭଳି ଏକ 'ରଚନାସମଗ୍ର' ବହୁ ସହସ୍ର ପୃଷ୍ଠା ବ୍ୟାପୀ ହେବା ସମ୍ଭବ– ଯାହା ସମ୍ପାଦନା କରିବା ଏତେ ସହଜ କାର୍ଯ୍ୟ ନୁହେଁ।

## (ତିନି)

'ରାଧାନାଥ ଗ୍ରନ୍ଥାବଳୀ' ଯେଉଁ ଆଭିମୁଖ୍ୟ ନେଇ ରାଧାନାଥ ଓ ତାଙ୍କର ଅନୁଗାମୀମାନେ ସଂପାଦନା

କରିଥିଲେ 'ରଚନାସମଗ୍ର'ର ଆଭିମୁଖ୍ୟ ତାହାଠାରୁ ସମ୍ପୂର୍ଣ୍ଣ ଅଲଗା। ତେଣୁ 'ରାଧାନାଥ ଗ୍ରନ୍ଥାବଳୀ' ଶୀର୍ଷକରେ ସେଭଳି ଏକ ଚେଷ୍ଟା ଅନେକାଂଶରେ ଅନ୍ୟାୟ– ତାହା ପ୍ରଚଳିତ ସଂପାଦନା ରୀତିର ମଧ୍ୟ ଅନେକାଂଶରେ ବିରୋଧୀ। ତେଣୁ ରାଧାନାଥ-ଶଶିଭୂଷଣଙ୍କ ଆଭିମୁଖ୍ୟକୁ ଆଖି ଆଗରେ ରଖି ଗ୍ରନ୍ଥାବଳୀର ଏହି 'ସଂଯୋଜନ' ଅଂଶ ପ୍ରସ୍ତୁତ।

ଆଜି ପତ୍ର ଓ ପ୍ରବନ୍ଧ 'ସାହିତ୍ୟ'ର ଅନ୍ତର୍ଗତ। ଶଶିଭୂଷଣ ମଧ୍ୟ ଖଣ୍ଡିଏ ପତ୍ର ଓ କେତେଗୁଡ଼ିଏ ପ୍ରବନ୍ଧ ଗ୍ରନ୍ଥାବଳୀର ଅନ୍ତର୍ଭୁକ୍ତ କରିଥିଲେ। ସେହିଭଳି ରାଧାନାଥଙ୍କ ସାହିତ୍ୟ-ସଂପର୍କିତ ସାଧାରଣ ମନ୍ତବ୍ୟ ମଧ୍ୟ ଗ୍ରନ୍ଥାବଳୀର ଅଂଶବିଶେଷ ରୂପେ ଗୃହୀତ ହୋଇଥିଲା। ସେହି ଧାରଣା ଭିତ୍ତିରେ ରାଧାନାଥଙ୍କର ଲିଖିତ ପ୍ରବନ୍ଧ, ପତ୍ର ତଥା ବିଚ୍ଛିନ୍ନ ରଚନା ବା ରଚୟିତାଙ୍କ ସମ୍ପର୍କରେ ଦେଇଥିବା ମତାମତକୁ ନେଇ 'ସଂଯୋଜନ' ଅଂଶ ଗଢ଼ି ଉଠିଛି। ଏଥିରେ ସଂଗୃହୀତ 'ସମାଲୋଚନା-ପ୍ରବନ୍ଧମାଳା' ପ୍ରଥମେ ବାଲେଶ୍ୱର ସମ୍ବାଦବାହିକା ସମ୍ବାଦପତ୍ର (୧୩/୪୧, ୭.୧୦. ୧୮୮୦)ରେ ପ୍ରକାଶିତ ହୋଇଥିଲା। ଡକ୍ଟର ନଟବର ସାମନ୍ତରାୟ ଏଇଟିକୁ ଆବିଷ୍କାର କରି ପୁନଃ ପ୍ରକାଶ କରିଥିଲେ। 'ଦାଶରଥି କବିଚନ୍ଦ୍ର' ପ୍ରବନ୍ଧଟି ପ୍ରକାଶିତ ହୋଇଥିଲା 'ସଂସ୍କାରକ' ସମ୍ବାଦପତ୍ରର ତୃତୀୟ ଭାଗ ପଞ୍ଚମ ସଂଖ୍ୟାରେ (୩୦।୧।୧୮୮୬)। ଏହାର ଆରମ୍ଭ ପତ୍ରାକାରରେ ହୋଇ ଲେଖାଥିଲା – "ଶ୍ରୀଯୁତ ସଂସ୍କାରକର ସଂପାଦକ ମହାଶୟ ସମୀପେଷୁ ମହାଶୟ।" ପ୍ରବନ୍ଧଭାଗର ତୃତୀୟ ରଚନାଟି ଭୂଦେବ ମୁଖୋପାଧ୍ୟାୟଙ୍କ ଦେହାନ୍ତ ପରେ ୨୩. ୬. ୧୮୯୪ରେ ବଙ୍ଗଳାର 'ବଙ୍ଗବାସୀ' ସାପ୍ତାହିକ ପତ୍ରରେ ପ୍ରକାଶିତ ହୋଇଥିଲା। ଏହି ରଚନାଟି ମଧ୍ୟ ପତ୍ରାକାରରେ ଲିଖିତ। ଏହାର ଆଲୋଚନା ଉତ୍କଳ ଦୀପିକା (୨୯/୨୭; ୭।୭।୧୮୯୪) ତଥା ସମକାଳୀନ ଅନ୍ୟାନ୍ୟ ଓଡ଼ିଆ ସମ୍ବାଦ-ପତ୍ରଗୁଡ଼ିକରେ ପ୍ରକାଶିତ। ଚିଠିର ତାରିଖ ଥିଲା ୧୨।୬।୧୮୯୪ (ରାଧାନାଥ ଜୀବନୀରେ ଏହା ଭୁଲକ୍ରମେ ୮।୬।୧୮୬୪ ବୋଲି ଲିଖିତ)। 'ବଙ୍ଗବାସୀ'ର ଉପଲବ୍ଧ ସଂଖ୍ୟା ଏଭଳି ଜୀର୍ଣ୍ଣ ଓ ବିପର୍ଯ୍ୟସ୍ତ ଯେ ସମଗ୍ର ରଚନାକୁ ଉଦ୍ଧାର କରିବା ଏହି ସଂକଳକ ପକ୍ଷରେ ସମ୍ଭବପର ହୋଇନାହିଁ। ତେଣୁ ରାଧାନାଥ ଜୀବନୀରେ ସଂକଳିତ ଅନୂଦିତ ରଚନା ଏଠାରେ ମୁଖ୍ୟତଃ ପୁନଃମୁଦ୍ରିତ – କେତେକ ସ୍ଥଳରେ ମୂଳ ରଚନା ଆଧାରରେ ସଂଶୋଧନ କରାଯାଇଛି କେବଳ। ଚତୁର୍ଥ ପ୍ରବନ୍ଧଟି ନଗେନ୍ଦ୍ରବାଳା ସରସ୍ୱତୀଙ୍କ 'ଅମିୟଗାଥା'ରେ ସଂଯୋଜିତ ହୋଇ-ଥିଲା। ସେଠାରେ ତାହାର ଶୀର୍ଷକ ଥିଲା 'ଗ୍ରନ୍ଥକର୍ତ୍ତ୍ରୀଙ୍କର ସଂକ୍ଷିପ୍ତ ଜୀବନୀ'।

'ସମ୍ପାଦକଙ୍କୁ ପତ୍ର' ବିଭାଗରେ ଚାରିଟି ରଚନା ସ୍ଥାନିତ। ପ୍ରଥମ ଦୁଇଟି ପତ୍ର ଡକ୍ଟର ନଟବର ସାମନ୍ତରାୟ ଆବିଷ୍କାର କରି ସେଗୁଡ଼ିକର ସବିଶେଷ ଆଲୋଚନା କରିଥିଲେ। ପ୍ରଥମଟି ଓ ଦ୍ୱିତୀୟଟି 'ଓଡ଼ିଆ ଓ ନବସମ୍ବାଦ'ରୁ ତଥା ଶେଷ ଦୁଇଟି ପତ୍ର 'ସମ୍ବଲପୁର ହିତୈଷିଣୀ'ରୁ ସଂଗୃହୀତ।

ଛାତ୍ରମାନଙ୍କ ପାଇଁ ରାଧାନାଥଙ୍କ ଦ୍ୱାରା ଲିଖିତ ଖଣ୍ଡିଏ ପୁସ୍ତକ ଏଠାରେ ପୁନଃମୁଦ୍ରିତ। ପୁସ୍ତକର ଶୀର୍ଷକ 'ସାହିତ୍ୟ ବିଷୟକ ଆଦର୍ଶ ପ୍ରଶ୍ନାବଳୀ' ବା Model Questions on Literature'। ଏହି ପୁସ୍ତକଟି ୧୮୭୯ ମସିହାରେ କଟକ ପ୍ରିଣ୍ଟିଂ କମ୍ପାନୀରେ ମୁଦ୍ରିତ ଓ ଲେଖକ ପ୍ରସଙ୍ଗରେ ଲେଖାଥିଲା – 'ଭୁବନେଶ୍ୱର ଦତ୍ତଙ୍କ ଦ୍ୱାରା ପ୍ରଣୀତ'। ଏହାର 'ଭୂମିକା' (୨୧।୬।୧୮୭୯)ରେ ଲେଖାହୋଇଛି – "ଏ ପୁସ୍ତକର ପ୍ରଣେତା ବହୁ ମାନ୍ୟାସ୍ପଦ ବାବୁ ରାଧାନାଥ ରାୟ ଅଟନ୍ତି... କେବଳ ଆମ୍ଭ ପ୍ରତି ସ୍ନେହବଶରୁ ଆମ୍ଭର ଉପକାର ନିମିତ୍ତ ପୁସ୍ତକ ଖଣ୍ଡିକ ସମାପ୍ତ ନ ହେଉଣୁ ଆମ୍ଭକୁ ପ୍ରଦାନ କରିଅଛନ୍ତି।" ଯଦିଓ ଏହା ଏକ ଛାତ୍ର-ଶୁଶ୍ରୂଷାମୂଳକ ପୁସ୍ତକ, ତେଣୁ ଯେକୌଣସି ବିଷୟରେ ଏହାର ସ୍ଥାୟୀ ମୂଲ୍ୟ ଅକିଞ୍ଚିତ୍କର ହେବା ସ୍ୱାଭାବିକ, ତଥାପି ଏହି ପୁସ୍ତକ ମାଧ୍ୟମରେ ସାହିତ୍ୟ ସମ୍ପର୍କିତ ଆପଣାର ପ୍ରତ୍ୟୟକୁ ରାଧାନାଥ କେବଳ ଅଭିବ୍ୟକ୍ତ କରିନାହାନ୍ତି – ଓଡ଼ିଆ ଜାତିର ମାନସଭୂମିରେ ତାହାକୁ ପ୍ରତିଷ୍ଠା ଦେଇଛନ୍ତି। ଏ ସମ୍ପର୍କରେ ଡକ୍ଟର ସାମନ୍ତରାୟ କହନ୍ତି – "ସାହିତ୍ୟ ପାଠ୍ୟପୁସ୍ତକ, ପ୍ରଶ୍ନାବଳୀ, ପରୀକ୍ଷାର ପ୍ରଶ୍ନ, ପରୀକ୍ଷାର ଫଳାଫଳ ଓ ଆର୍ଥିକ ସାହାଯ୍ୟ ପାଇଁ ଉପଯୁକ୍ତ ଅନୁମୋଦନ, ଏ ସମସ୍ତଙ୍କ ଭିତରେ ଥିବା ମଧୁର ଯୋଗସୂତ୍ର ସ୍ମରଣ କଲେ 'ଆଦର୍ଶ ପ୍ରଶ୍ନାବଳୀ' ଗଭୀର ଓ ବ୍ୟାପକଭାବେ ଏ ଦେଶର ଶିକ୍ଷକ ଓ ଛାତ୍ରମାନଙ୍କ ଉପରେ ପ୍ରଭାବ ପକାଇଥିବାର ଆମ୍ଭେ ଅନୁଭବ କରିପାରିବୁ... ସାହିତ୍ୟ ସମ୍ପର୍କରେ ତାଙ୍କର ଯାହା ଧାରଣା ଏବଂ ଯାହା କେତେକାଂଶରେ 'ପ୍ରଶ୍ନାବଳୀ'ରେ ରୂପ ପାଇଥିବାର ଦେଖିବାକୁ ମିଳେ, ସେ ବିଷୟରେ

ଯଦି କାହାରି ସନ୍ଦେହ ଥାଏ, ତା'ହେଲେ ତାଙ୍କର ରାଧାନାଥଙ୍କଠାରେ ଆଶ୍ରୟ ନେବାରେ କିଛି ବୈଚିତ୍ର୍ୟ ନଥିଲା'' (ଓଡ଼ିଆ ସାହିତ୍ୟର ଇତିହାସ, ପୃ.୧୪୧) ଏହି ଗୁରୁତ୍ୱ ଓ ଐତିହାସିକ ଭୂମିକା ପାଇଁ 'ଆଦର୍ଶ ପ୍ରଶ୍ନାବଳୀ' 'ରାଧାନାଥ ଗ୍ରନ୍ଥାବଳୀ'ରେ ଅବଶ୍ୟ ସ୍ଥାନ ପାଇବାର ଯୋଗ୍ୟ।

ରାଧାନାଥ ସମକାଳୀନ ଓଡ଼ିଶାର ଶିକ୍ଷା ବିଭାଗର ଥିଲେ ସର୍ବୋଚ୍ଚ କର୍ତ୍ତା, ପୁଣି ଅଦ୍ୱିତୀୟ କବି। ତେଣୁ ନିଜ ପୁସ୍ତକ ସମ୍ପର୍କରେ ତାଙ୍କଠାରୁ ଏକ ଅଭିମତ ପାଇବାକୁ ଅନେକ ସୌଭାଗ୍ୟର ବିଷୟ ବୋଲି ମଣୁଥିଲେ। ଫଳସ୍ୱରୂପ ବହୁ ପୁସ୍ତକ ଉପରେ ସେ ଓଡ଼ିଆ ଓ ଇଂରାଜୀରେ ମନ୍ତବ୍ୟ ଲେଖିଛନ୍ତି। ତା' ବାହାରେ କେତୋଟି ପୁସ୍ତକ ସମ୍ପର୍କରେ ସମ୍ବାଦପତ୍ର ପୃଷ୍ଠାରେ ଆପଣା ଅଭିମତ ପ୍ରକାଶ କରିଛନ୍ତି ବା ସେହି ବିଷୟର ସଂକ୍ଷିପ୍ତ ସମାଲୋଚନା ଲେଖିଛନ୍ତି। ତା' ସହିତ ନିଜ ପୁସ୍ତକର ମଧ୍ୟ ସେ ମୁଖବନ୍ଧ ବା ବିଜ୍ଞାପନ ଲେଖିଛନ୍ତି। ଗଙ୍ଗାଧରଙ୍କ କାବ୍ୟାବଳୀ (ଇନ୍ଦୁମତୀ ଓ କୀଚକବଧ) ସମ୍ପର୍କରେ ତାଙ୍କ ମନ୍ତବ୍ୟ/ସଂକ୍ଷିପ୍ତ ସମାଲୋଚନା ବହୁଚର୍ଚ୍ଚିତ। କିନ୍ତୁ ସେଭଳି ମନ୍ତବ୍ୟ ରାଧାନାଥ ଆଜି ବିସ୍ମୃତ ବହୁ ପୁସ୍ତକ ସମ୍ପର୍କରେ ଯେ ଦେଇଛନ୍ତି ତାହା ସଂଯୋଜନର 'ମନ୍ତବ୍ୟ, ଭୂମିକା ଓ ସଂକ୍ଷିପ୍ତ ସମାଲୋଚନା' ବିଭାଗରେ ସ୍ଥାନିତ ରଚନାଗୁଡ଼ିକ ସ୍ପଷ୍ଟକରେ। ଏହି ବିଭାଗରେ ସ୍ଥାନିତ ଆପଣା 'ମେଘଦୂତ'ର ଭୂମିକା ପ୍ରଥମେ ଲୋକଲୋଚନକୁ ଆଣିଥିଲେ ବରିଷ୍ଠ ସମାଲୋଚକ ଡକ୍ଟର ଜାନକୀବଲ୍ଲଭ ମହାନ୍ତି।

ଗ୍ରନ୍ଥାବଳୀ ସମ୍ପାଦନାବେଳେ ସ୍ୱୟଂ ରାଧାନାଥ ସେଇଟି ବାଦ୍‌ଦେଇଥିଲେ। ଅବଶିଷ୍ଟଗୁଡ଼ିକ ସେଇ ପୁସ୍ତକରୁ ବା ସମ୍ବାଦପତ୍ର ପୃଷ୍ଠାରୁ ସଂଗୃହୀତ।

'ରାଧାନାଥ ଜୀବନୀ'ରେ ଥିବା ଓଡ଼ିଆ ଓ ବଂଗଳାରେ ଲିଖିତ ପତ୍ରଗୁଡ଼ିକ 'ପତ୍ରାବଳୀ' ଅଂଶରେ ସ୍ଥାନିତ। ବଂଗଳା ପତ୍ରଗୁଡ଼ିକର ଓଡ଼ିଆ ଅନୁବାଦ ଦିଆଯାଇଛି। 'ପରିଶିଷ୍ଟ' ଅଂଶରେ ରାଧାନାଥଙ୍କ ବିଭିନ୍ନ କାବ୍ୟରେ ଅନ୍ୟମାନଙ୍କଦ୍ୱାରା ଲିଖିତ 'ଭୂମିକା'ଗୁଡ଼ିକ ସଂଯୋଜିତ। କାହିଁକି କେଜାଣି 'ରାଧାନାଥ ଗ୍ରନ୍ଥାବଳୀ' ପ୍ରଥମ ସଂସ୍କରଣରୁ ସେଗୁଡ଼ିକ ବାଦ୍‌ଯାଇଥିଲା। ଠିକ୍ ସେହିଭଳି ପ୍ରଥମ ସଂସ୍କରଣ 'ରାଧାନାଥ ଗ୍ରନ୍ଥାବଳୀ'ରେ ଥିବା ନାରୀକବି ନଗେନ୍ଦ୍ରବାଳାଙ୍କ ରାଧାନାଥ-ପ୍ରଶସ୍ତି-ସୂଚକ 'ଭୂତଳେ ସ୍ୱର୍ଗ' କବିତାଟିକୁ ତାଙ୍କ ପୁତ୍ର ପରବର୍ତ୍ତୀ ସଂସ୍କରଣରୁ ବାଦ୍ ଦେଇଥିଲେ। ସେଇଟି ମଧ୍ୟ 'ପରିଶିଷ୍ଟ' ଅଂଶରେ ଦିଆଯାଇଛି।

ଏହି ସମସ୍ତ ରଚନା ବାହାରେ ଆହୁରି ଅନେକ ରଚନା ରହିଛି। ବଂଗଳାରେ ପ୍ରକାଶିତ ତାଙ୍କର ତିନିଖଣ୍ଡ 'କବିତା-ସଂଗ୍ରହ' ଏ ଦୃଷ୍ଟିରୁ ଉଲ୍ଲେଖଯୋଗ୍ୟ। ମାତ୍ର ତାହା ସ୍ୱତନ୍ତ୍ର ପ୍ରକାର ସମ୍ପାଦନା ଓ ଉଦ୍ୟମର ଅପେକ୍ଷା ରଖେ। ଭବିଷ୍ୟତରେ କୌଣସି ପ୍ରକାଶକ ସେଗୁଡ଼ିକୁ ପ୍ରକାଶ କରି 'ରାଧାନାଥ-ରଚନାସମଗ୍ର' ପ୍ରକାଶ ପାଇଁ ପଥ ପରିଷ୍କାର କରିବେ ବୋଲି ଆଶା।

□ □ □

# ସମାଲୋଚନା – 'ପ୍ରବନ୍ଧମାଳା'

ଶୀର୍ଷାଙ୍କିତ ପୁସ୍ତକଖଣ୍ଡିକ ଆମ୍ଭେମାନେ ଆଦ୍ୟୋପାନ୍ତ ପାଠ କରିଅଛୁଁ। ମଧୁସୂଦନବାବୁ ଉତ୍କଳସାହିତ୍ୟ ସଂସାରରେ ଅପରିଚିତ ନୁହନ୍ତି। ଆମ୍ଭେମାନେ ତାଙ୍କଠାରୁ ଯେଉଁଭଳି ପୁସ୍ତକ ପାଇବାର ଆଶାକରୁଁ, ଶୀର୍ଷାଙ୍କିତ ଗ୍ରନ୍ଥ ସେଥିରୁ ଉତ୍କୃଷ୍ଟ ନୋହିଲେ ସୁଦ୍ଧା ତାହା ତାଙ୍କର ପ୍ରତିଷ୍ଠାର ଅନୁପଯୁକ୍ତ ନୋହେ ଏବଂ ଯେଉଁ ଉଦ୍ଦେଶ୍ୟରେ ଏହା ସଙ୍କଳିତ ହୋଇଅଛି ସେହି ଉଦ୍ଦେଶ୍ୟ ଯେ, ଏଥିଦ୍ୱାରା ସୁଚାରୁରୂପେ ସାଧିତ ହେବ ଏହା ନିରପେକ୍ଷ ପାଠକେ ସ୍ୱୀକାର କରିବେ।

ପ୍ରବନ୍ଧମାଳାରେ କେତେଗୁଡ଼ିକ ସାରଗର୍ଭ ପ୍ରବନ୍ଧ ସନ୍ନିବେଶିତ ହୋଇଅଛି। ଏଥିମଧ୍ୟରୁ କେତେଗୁଡ଼ିଏ ଗ୍ରନ୍ଥକାରଙ୍କ ସ୍ୱରଚିତ ଏବଂ ଅବଶିଷ୍ଟ କେତେଗୁଡ଼ିଏ ଅନ୍ୟ ଗ୍ରନ୍ଥରୁ ସଂକଳିତ ହେଲେ ହେଁ ସେମାନଙ୍କୁ ସହଜସାଧ ଅନୁବାଦ ଶ୍ରେଣୀରେ ପରିଗଣିତ କରିବା ଅନୁଚିତ। ଫଳତଃ ସେମାନ ସଂକଳନରେ ଗ୍ରନ୍ଥକାର ଯେଉଁ ପରିଶ୍ରମ ସ୍ୱୀକାର କରିଅଛନ୍ତି ସେହି ପରିଶ୍ରମ ମୂଳପ୍ରବନ୍ଧ ରଚନା ନିମନ୍ତେ ପ୍ରାୟ ପର୍ଯ୍ୟାପ୍ତ ହୋଇଥାନ୍ତା। କେବଳ ପ୍ରକୃତି ଓ ଉପଯୋଗିତା ଭେଦରେ କେତେ ପ୍ରବନ୍ଧ ନୂଆ ରଚିତ ଏବଂ କେତେ ପ୍ରବନ୍ଧ ଅନ୍ୟ ଗ୍ରନ୍ଥରୁ ସଙ୍କଳିତ ହୋଇଅଛି। ରାମାୟଣ – ଶୀର୍ଷକ ପ୍ରବନ୍ଧ ପ୍ରଥମ ଶ୍ରେଣୀର ଏବଂ ବୁଦ୍ଧଦେବ ଶୀର୍ଷକ ପ୍ରବନ୍ଧ ଦ୍ୱିତୀୟ ଶ୍ରେଣୀର ଅନ୍ତର୍ଗତ ଅଟେ।

ସଂପ୍ରତି ଉତ୍କଳସାହିତ୍ୟ ସମାଜରେ ଅତିରିକ୍ତ ଅନୁବାଦର ଜୀବନ୍ତ ପ୍ରତିଘାତ ସ୍ୱରୂପ ଅନୁବାଦ-ବିଦ୍ୱେଷୀ ଗୋଟିଏ ଦଳର ଆବିର୍ଭାବ ହୋଇଅଛି। ଏହି ଦଳର ଉଦ୍ଦେଶ୍ୟ ଉତ୍ତମ ହେଲେ ହେଁ, ସେହି ଉଦ୍ଦେଶ୍ୟକୁ ଯେତେଦୂର କାର୍ଯ୍ୟରେ ପରିଣତ କଲେ ତଦ୍ୱାରା ପ୍ରକୃତ ହିତ ସାଧନ ହେବ, ସାମ୍ପ୍ରଦାୟିକମାନେ କେବେ କେବେ ସେହି ସୀମାକୁ ଅତିକ୍ରମ କରି କେବଳ ଅନୁବାଦ ବୋଲି ଅନୁବାଦ ପ୍ରତି ଉପେକ୍ଷା ପ୍ରଦର୍ଶନ କରନ୍ତି। ଏହି ସମ୍ପ୍ରଦାୟର ସାନ୍ତ୍ୱନା ନିମନ୍ତେ ବକ୍ତବ୍ୟ ଏହି ଯେ, ସେମାନଙ୍କର ଅନୁବାଦବିମୁଖତା ନ୍ୟାଯ୍ୟ ସୀମା ମଧ୍ୟରେ ପରିଚାଳିତ ହେଲେ ଆମ୍ଭେମାନେ ସେଥିପ୍ରତି ସଂପୂର୍ଣ୍ଣ ସହାନୁଭୂତି ପ୍ରଦର୍ଶନ କରିବାକୁ ପ୍ରସ୍ତୁତ ଅଛୁ ଏବଂ ସଚରାଚର ଯେପରି ଅଳ୍ପାୟାସସାଧ ବଙ୍ଗାନୁବାଦଦ୍ୱାରା ଓଡ଼ିଆଭାଷା ବିକୃତ ହେଉଅଛି, ଆମ୍ଭେମାନେ ସେଭଳି ଅନୁବାଦର ନିତାନ୍ତ ପକ୍ଷପାତୀ ନୋହୁ; କିନ୍ତୁ ଅନୁବାଦ ଆଦୌ ପ୍ରୟୋଜନୀୟ ନୋହେ, ଏହା ଆମ୍ଭେମାନେ କଦାଚ ସ୍ୱୀକାର କରିନପାରୁଁ। ଭାଷାର କଳେବର ପୁଷ୍ଟି ବିଷୟରେ ଅନୁବାଦ ଅନ୍ୟତର ସାଧନ। ଆଜି ପର୍ଯ୍ୟନ୍ତ ବଙ୍ଗଳାରେ ଯେତେ ପାଠ୍ୟପୁସ୍ତକ ପ୍ରଚାରିତ ହୋଇଅଛି, ପୁଙ୍ଖାନୁପୁଙ୍ଖ ରୂପେ ଅନୁସନ୍ଧାନ କଲେ ସ୍ପଷ୍ଟ ପ୍ରମାଣ ହେବ ଯେ, ସେମାନ ଅନୁବାଦ ଅଥବା ଅନୁବାଦର ଆଭାଷ ବ୍ୟତୀତ ଆଉ କିଛି ନୋହେ। ଏତିକି ପ୍ରଭେଦ ଯେ, ଅଧିକାଂଶ ପ୍ରଚ୍ଛନ୍ନ ଅନୁବାଦରୂପୀ ଗ୍ରନ୍ଥକାର ମୂଳଗ୍ରନ୍ଥ ନିର୍ଦ୍ଦେଶ ଦ୍ୱାରା ସ୍ୱକୀୟ ଅଧମର୍ଣ୍ଣତା ସାଧାରଣରେ ବ୍ୟକ୍ତ କରିବାକୁ କୁଣ୍ଠିତ ହୁଅନ୍ତି; କିନ୍ତୁ ମଧୁବାବୁ ସେପରି ରୀତିର ଅନୁସରଣ ନ କରି ସେ ଯେଉଁ ଗ୍ରନ୍ଥର ସାହାଯ୍ୟରେ ଯେଉଁ ପ୍ରବନ୍ଧ ଲେଖିଅଛନ୍ତି ସେହି ସେହି ସ୍ଥଳରେ ସେହି ପୁସ୍ତକର ନାମ ସ୍ପଷ୍ଟାକ୍ଷରରେ ଉଲ୍ଲେଖ କରିଅଛନ୍ତି। ଏହି ପ୍ରଭେଦ ତାଙ୍କର ଅନୁକୂଳ କି ପ୍ରତିକୂଳ, ତାହା ସୂକ୍ଷ୍ମଦର୍ଶୀ-ପାଠକଙ୍କଠାରେ ଅବିଦିତ ରହିବ ନାହିଁ।

କେହି କେହି ବୋଲିପାରନ୍ତି ଯେ, ଓଡ଼ିଆ ଭାଷାରେ ପାଠୋପଯୋଗୀ ଗଦ୍ୟଗ୍ରନ୍ଥର ଏମନ୍ତ କି ଅଭାବ ଅଛି ଯେ, ତଦ୍ୱାରା ଆଲୋଚ୍ୟମାନ ଗ୍ରନ୍ଥର ଅସ୍ତିତ୍ୱ ସମର୍ଥିତ ହୋଇପାରେ? ଶକୁନ୍ତଳା, କାଦମ୍ବରୀ, ସୀତାବନବାସ ପ୍ରଭୃତି ଗ୍ରନ୍ଥ ଥାଉଁ ଥାଉଁ 'ପ୍ରବନ୍ଧମାଳା' ଦ୍ୱାରା କେଉଁ ଅଭାବ ଦୂର ହେଲା? ଏପରି ପ୍ରଶ୍ନ ଉତ୍ତରର ଯୋଗ୍ୟ ନୋହେ, ତାହା ବୋଲିବା ବାହୁଲ୍ୟ; ତଥାଚ ସରଳ ସଂଶୟ ଛେଦନ ନିମନ୍ତେ ଏହା ବୋଲିବାର ଉଚିତ ଯେ, ଉଲ୍ଲିଖିତ ଗ୍ରନ୍ଥମାନ କାବ୍ୟାଂଶରେ ଉତ୍କୃଷ୍ଟ ହେଲେହେଁ ସେମାନ ପିଲାମାନଙ୍କ ପକ୍ଷରେ ଉତ୍ତମ ପାଠ୍ୟପୁସ୍ତକ ନୋହେ; କଳ୍ପନା ଓ କାବ୍ୟଭାବ ଉତ୍ତେଜିତ କରିବାର ଯେଉଁ ରଚନାର ଏକମାତ୍ର ଉଦ୍ଦେଶ୍ୟ, ତାହା ସାହିତ୍ୟର

ଶାଖା ବିଶେଷ; ତେଣୁ ତାହା ସାହିତ୍ୟ ସମାଜରେ, ସମ୍ପ୍ରଦାୟ ବିଷୟରେ ଆଦରଣୀୟ ହୋଇପାରେ। ବିଦ୍ୟାଳୟର ଛାତ୍ରମାନଙ୍କ ରୁଚି ଏବଂ ପ୍ରବୃତ୍ତି ଭେଦରେ ପାଠ୍ୟପୁସ୍ତକର ରଚନା ଭିନ୍ନ ଭିନ୍ନ ବିଷୟାଶ୍ରିତ ନୋହିଲେ ପ୍ରକୃତ ପକ୍ଷରେ ତାହା ପାଠୋପଯୋଗୀ ହୁଏ ନାହିଁ। ଶୈଶବାବସ୍ଥାରେ ସାହିତ୍ୟ, କାବ୍ୟରୁ ପ୍ରାୟ ଅଭିନ୍ନ ଥାଏ। କ୍ରମଶଃ ହରିତିମା ବିଲୁପ୍ତ ଏବଂ ଅଙ୍ଗ ପରିପୁଷ୍ଟ ହୋଇ ସେଥିର ଶାଖା ପ୍ରଶାଖା ଅସଂଖ୍ୟ ବିଷୟ-ବ୍ୟାପିନୀ ହୁଏ। ଏଥିଯୋଗୁଁ ପ୍ରତ୍ୟେକ ସଭ୍ୟ ଦେଶର ବିଦ୍ୟାଳୟମାନଙ୍କରେ ଯେଉଁ ସାହିତ୍ୟ ଗ୍ରନ୍ଥମାନ ଅଧୀତ ହୁଏ, ସେମାନ ନାନା ବିଷୟାଶ୍ରିତ ଏବଂ ବିବିଧ ଗ୍ରନ୍ଥରୁ ସଂକଳିତ ହୋଇଥାଏ। ପରନ୍ତୁ ବ୍ୟବସାୟିକ ଗ୍ରନ୍ଥ ଏବଂ ସାଧାରଣ ଶିକ୍ଷୋପଯୋଗୀ ବିଦ୍ୟାଳୟର ପାଠ୍ୟପୁସ୍ତକ ଏ ଉଭୟର ପ୍ରକୃତି ଭିନ୍ନ ପ୍ରକାର। ଶେଷୋକ୍ତ ଶ୍ରେଣୀସ୍ଥ ଗ୍ରନ୍ଥର ମୁଖ୍ୟ ଉଦ୍ଦେଶ୍ୟ ଏହି ଯେ, ସେମାନ ଭିନ୍ନ ଭିନ୍ନ ଶିକ୍ଷଣୀୟ ବିଷୟର ପ୍ରାଣାସ୍ୱାଦ ପ୍ରଦାନ ଦ୍ୱାରା ବିଦ୍ୟାର୍ଥୀମାନଙ୍କୁ ସେହି ସେହି ବିଷୟ ସହିତ କେବଳ ପରିଚୟ କରାଇ ଦେବ; ଫଳତଃ ପାଠ୍ୟପୁସ୍ତକମାନଙ୍କୁ ପ୍ରକୃତ ପକ୍ଷରେ ପ୍ରସ୍ତାବନା ସମୁଚ୍ଚୟ ବୋଲା ଯାଇପାରେ; ଯେହେତୁ ସେମାନ ବ୍ୟବସାୟ ସମ୍ବନ୍ଧୀୟ ପୁସ୍ତକ-ନିହିତ ଜ୍ଞାନରାଶିର ଦ୍ୱାର ସ୍ୱରୂପ। ଏହି ଦୃଷ୍ଟିରେ 'ପ୍ରବନ୍ଧମାଳା' ପ୍ରକୃତ ପାଠ୍ୟପୁସ୍ତକ ପଦବାଚ୍ୟ ହୋଇଅଛି। ଶଂସିତ ପୁସ୍ତକରେ ଇତିହାସ, ନବନ୍ୟାସ, ଜୀବନୀ, ରାଜନୀତି, ମନୋବିଜ୍ଞାନ, ଜଡ଼ବିଜ୍ଞାନ, ପ୍ରାକୃତିକ ଭୂଗୋଳ, ଅଳଙ୍କାର ଏବଂ ଅନ୍ୟାନ୍ୟ ବିଷୟ ସମ୍ବଳିତ ପ୍ରବନ୍ଧମାନ ସନ୍ନିବିଷ୍ଟ ହୋଇଅଛି। ଏ ଦେଶରେ ଅନେକ ଶିକ୍ଷିତ ଲୋକଙ୍କର ସୁଦ୍ଧା ଏପରି ସଂସ୍କାର ଅଛି ଯେ, ସାହିତ୍ୟ ପୂର୍ବୋକ୍ତ ଅଧିକାଂଶ ବିଷୟରୁ ଏକ ସ୍ୱତନ୍ତ୍ର ବିଷୟ ଅଟେ। ଦେଶୀୟ ସାହିତ୍ୟର ଅପରିପୁଷ୍ଟ ଅବସ୍ଥା ଏହି ସଂକୀର୍ଣ୍ଣ ସଂସ୍କାରର ମୂଳ କାରଣ ଅଟେ। ଉତ୍କଳଭାଷାର ଉନ୍ନତି ସଙ୍ଗେ ସଙ୍ଗେ ଏହି ସଂସ୍କାର ଅବଶ୍ୟ ଦୂରହୋଇଯିବ ଏବଂ ଉତ୍କଳସାହିତ୍ୟ କଳ୍ପନାର ସୀମା ଅତିକ୍ରମ କରି କ୍ରମଶଃ ତତ୍ତ୍ୱୋନ୍ମୁଖ ହେଉଥିବ। ଆମ୍ଭେମାନେ ସାହିତ୍ୟ ପାଠ୍ୟପୁସ୍ତକର ଯେଉଁ ଲକ୍ଷଣ ନିର୍ଦ୍ଦେଶ କଲୁଁ, କେବଳ 'ଚାରୁପାଠ' ଭିନ୍ନ ଓଡ଼ିଆ ଭାଷାରେ ଉକ୍ତ ଲକ୍ଷଣାକ୍ରାନ୍ତ ପାଠ୍ୟପୁସ୍ତକ ଆଉ ନାହିଁ। 'ଚାରୁପାଠ'ର ସମସ୍ତ ଭାଗ ସମ୍ପ୍ରତି ଦୁଷ୍ପ୍ରାପ୍ୟ ହୋଇଅଛି; ପୁଣି ସେଥିର ଭାଷା ସର୍ବତ୍ର ବିଶୁଦ୍ଧ ଓଡ଼ିଆ ନୋହେ। ବିଷୟର ବିଚିତ୍ରତା ବିଚାରିଲେ 'ଚାରୁପାଠ'ର କୌଣସି ଏକ ଭାଗ ଅପେକ୍ଷା 'ପ୍ରବନ୍ଧମାଳା' ଅନେକାଂଶରେ ଉତ୍କୃଷ୍ଟ ହୋଇଅଛି। 'ପ୍ରବନ୍ଧମାଳା'ରେ ଯେଉଁ ବିଷୟମାନ ସଂକଳିତ ହୋଇଅଛି, ସେମାନଙ୍କର ସାର୍ବଭୌମିକତା ଅନ୍ୟ କୌଣସି ଉତ୍କଳ ପାଠ୍ୟପୁସ୍ତକରେ ସୁଲଭ ନୋହେ। କି ସ୍ୱଦେଶ, କି ବିଦେଶ, କି ପ୍ରାଚୀନ, କି ନବ୍ୟସମୟ, ପ୍ରାୟ ପ୍ରତ୍ୟେକ ବିଷୟ ବର୍ଣ୍ଣିତ ପ୍ରସଙ୍ଗମାନଙ୍କରେ ଉପାଦାନୀଭୂତ ହୋଇଅଛି। ଏଥିରେ ଯେଉଁ ଧର୍ମବୀର, ଜ୍ଞାନବୀର ଏବଂ ଯୁଦ୍ଧବୀରମାନଙ୍କର ଜୀବନୀ ବର୍ଣ୍ଣିତ ହୋଇଅଛି, ସେମାନେ ଦେଶ ବିଶେଷର ଅଥବା ସମୟ ବିଶେଷର ନାୟକ ନୁହନ୍ତି; ପୃଥିବୀ ସେମାନଙ୍କର ରଙ୍ଗଭୂମି ଏବଂ ସମୟ ସେମାନଙ୍କର ଇତିହାସ ଗ୍ରନ୍ଥ ଅଟେ। 'ରାମାୟଣ' ଏବଂ 'ସୌନ୍ଦର୍ଯ୍ୟ ଓ ରୁଚି' ଶୀର୍ଷାଙ୍କିତ ପ୍ରବନ୍ଧ ଦ୍ୱୟରେ ଯେଉଁ ପ୍ରଶସ୍ତ ଆଳଙ୍କାରିକ ତତ୍ତ୍ୱମାନ ନିହିତ ହୋଇଅଛି, ସେମାନ ଉତ୍କଳ ସାହିତ୍ୟର' ବର୍ତ୍ତମାନ ଅବସ୍ଥାକୁ ବହୁଦୂର ଅତିକ୍ରମ କରି ଭାବୀ ଉନ୍ନତ ସାହିତ୍ୟର ପତନଭୂମି ନିର୍ଦ୍ଦେଶ କରୁଅଛି। ବାଳାଜୀ ପଣ୍ଡିତଙ୍କର ସ୍ୱରଚିତ ଆତ୍ମବୃତ୍ତାନ୍ତ ତତ୍କାଳିକ ଜାତୀୟ ସୈନିକ ଜୀବନର ଚିତ୍ର ଏବଂ ଜାତୀୟ ରାଜନୈତିକ ସଜୀବତାର ଅନୁସ୍ମାରକ ରୂପେ ପରିଗୃହୀତ ହୋଇପାରେ। 'ଶାସନପ୍ରଣାଳୀ' ଏବଂ 'ମାନବଜାତିର ଉନ୍ନତି' ମନୁଷ୍ୟ ଇତିହାସର ଯୋଡ଼ିଏ ପ୍ରଧାନ ଉପାଦାନୀଭୂତ ବିଷୟ। ଏହାଛଡ଼ା ଶଂସିତ ଗ୍ରନ୍ଥରେ ନୀତିମୂଳକ, ଐତିହାସିକ ଏବଂ ବୈଜ୍ଞାନିକ ତତ୍ତ୍ୱମୂଳକ ଆହୁରି ଅନେକ ଗୁଡ଼ିଏ ପ୍ରବନ୍ଧ ସନ୍ନିବିଷ୍ଟ ହୋଇଅଛି, ଫଳତଃ ସଂକ୍ଷେପରେ ଏହା କହିଲେ ଯଥେଷ୍ଟ ହେବ ଯେ, ପ୍ରାୟ ପ୍ରତ୍ୟେକ ପ୍ରବନ୍ଧ ଛାତ୍ରମାନଙ୍କର ଅନୁସନ୍ଧିତ୍ସାଉଦ୍ଦୀପକ ଏବଂ ଦୃଷ୍ଟିପ୍ରସାରଣୋପଯୋଗୀ ହୋଇଅଛି ଏବଂ ଆମ୍ଭମାନଙ୍କ ମାତୃଭାଷାରେ ଏ ପର୍ଯ୍ୟନ୍ତ ଯେତେ ଖଣ୍ଡ ଗଦ୍ୟମୟ ପାଠ୍ୟପୁସ୍ତକ ପ୍ରକାଶିତ ହୋଇଅଛି, ପ୍ରବନ୍ଧମାଳା ସେଥିମଧ୍ୟରେ ଉଚ୍ଚତମସ୍ଥାନ ପାଇବାର ଯୋଗ୍ୟ। ସୁଶିକ୍ଷକ ହସ୍ତରେ ଏହି ପୁସ୍ତକଦ୍ୱାରା ପାଠାର୍ଥୀମାନଙ୍କର ପ୍ରକୃତ ସାରବାନ୍ ଶିକ୍ଷାଲାଭ ହୋଇପାରିବ।

ଏ ପର୍ଯ୍ୟନ୍ତ ଆଲୋଚ୍ୟମାନ ଗ୍ରନ୍ଥର ଗୁଣଭାଗ ବର୍ଣ୍ଣନ କଲୁଁ, ସେଥିରୁ ଦୋଷଭାଗ ଅନୁସନ୍ଧାନ କରିବା ପଦ୍ମବନରେ ଗଡ଼ା ନ ଖୋଜି ଗେଣ୍ଡା ଖୋଜିବା ସମାନ କଥା ହେଲେ ହେଁ କିଛି ବୋଲିବୁଁ। ପୁସ୍ତକର ଭାଷା ଅନେକ ସ୍ଥାନରେ ଦୁରୂହ ହୋଇଅଛି ଏବଂ ମାଂସଳ ସାଧୁଶବ୍ଦ ମାନଙ୍କର ଅତିପ୍ରାଚୁର୍ଯ୍ୟଦ୍ୱାରା

କୌଣସି କୌଣସି ପ୍ରବନ୍ଧର ବାକ୍ୟମାନ ଅତ୍ୟନ୍ତ ଭାରାକ୍ରାନ୍ତ ହୋଇଅଛି। ଏଣିକି କ୍ରମଶଃ ପ୍ରୟୋଜନ-ବଶରୁ ଅନେକ ନୂତନ ଭାବବ୍ୟଞ୍ଜକ ସାଧୁଶବ୍ଦ ଓଡ଼ିଆ ଭାଷାରେ ପ୍ରବିଷ୍ଟ କରାଇବାକୁ ହେବ। ଏହା ଆମ୍ଭେମାନେ ମୁକ୍ତ କଣ୍ଠରେ ସ୍ୱୀକାର କରୁଁ ଏବଂ ଯେଉଁ ସ୍ଥଳମାନଙ୍କରେ ସେହିଭଳି ଶବ୍ଦ ବ୍ୟବହୃତ ହୋଇଅଛି ସେଥିପ୍ରତି ଆମ୍ଭେମାନେ କୌଣସି ଆପତ୍ତି କରୁନାହୁଁ; କିନ୍ତୁ ପୁସ୍ତକର ଅନେକ ସ୍ଥାନରେ ଭାଷା ସେହି ସୀମା ଅତିକ୍ରମ କରିଅଛି। ସନ୍ଧିପଦ ସଂସ୍କୃତ ଭାଷା ପକ୍ଷରେ ଉପାଦେୟ ହେଲେ ହେଁ ଭାଷା ପକ୍ଷରେ ସବୁ ସ୍ଥଳରେ ତାହା ଉପାଦେୟ ପଦ ନୋହେ। ଶଂସିତ ପୁସ୍ତକରେ ଆବଶ୍ୟକୀୟ ସ୍ଥଳେ ସନ୍ଧିବିଚ୍ଛେଦ ପଦ ବ୍ୟବହୃତ ହୋଇଥିଲେ ଭଲ ହୋଇଥାନ୍ତା। ବାଲାଜୀ ପଣ୍ଡିତଙ୍କ ପ୍ରବନ୍ଧରେ "ସଂବତ୍ ୧୮୧୬ ଅବ୍ଦର ୧୫ ପୌଷ ଦିନ" ଏହା ଓଡ଼ିଆ ଭାଷାର ଇଡ଼ିୟମ୍ ନୋହେ, ବଙ୍ଗଳା ଭାଷାର ଇଡ଼ିୟମ୍। 'ସଂବତ୍ ୧୮୧୬ ଅବ୍ଦର ପୌଷ ମାସ ୧୫ ଦିନରେ' ଏହି ଭଳି ହେବା ଉଚିତ ଥିଲା। "ସୂର୍ଯ୍ୟୋଦୟ ପୂର୍ବରେ ଦଶ କ୍ରୋଶ ଗମନ କରି ପୁନର୍ବାର ଶତ୍ରୁମାନଙ୍କ ସଙ୍ଗରେ ସାକ୍ଷାତ ହେଲା" ଏ ସ୍ଥଳେ 'ଗମନକରି' ବଦଳରେ 'ଗମନ କଲାରୁ' ହେବା ଉଚିତ ଥିଲା।

ବିଷୟ ସମ୍ବନ୍ଧରେ ଆମ୍ଭମାନଙ୍କର ବକ୍ତବ୍ୟ ଏହି ଯେ, ଗ୍ରନ୍ଥକାର ପୁସ୍ତକରେ ଆଉ କେତେଗୁଡ଼ିଏ ପ୍ରବନ୍ଧ ସନ୍ନିବେଶ କରିଥିଲେ ତାହା ଅପେକ୍ଷାକୃତ ପୂର୍ଣ୍ଣାବୟବ ହୋଇଥାନ୍ତା। ଉଦ୍ଭିଜ୍ଜତତ୍ତ୍ୱ, ରସାୟନ ଏବଂ ଅର୍ଥନୀତି ସମ୍ବନ୍ଧରେ ଗୋଟିଏ ଯୋଡ଼ିଏ ପ୍ରବନ୍ଧ ପୁସ୍ତକରେ ଦେଇଥିଲେ ତାହା ଅସ୍ଥାନନ୍ୟସ୍ତ ହୋଇ ନ ଥାନ୍ତା। ନବ୍ୟମାନବୋନ୍ନତିର ମୂର୍ତ୍ତିମାନ ଆତ୍ମାରୂପୀ ମେଦିନୀ ପ୍ରଭୃତି ମହାପୁରୁଷମାନଙ୍କର ସଂକ୍ଷିପ୍ତ ଜୀବନୀଦ୍ୱାରା ପୁସ୍ତକର ଉପାଦେୟତା ଯେମନ୍ତ ଏକ ପକ୍ଷରେ ପରିବର୍ଦ୍ଧିତ ହୋଇଥାନ୍ତା, ତେମନ୍ତ ମହୋପାଧ୍ୟାୟ ପ୍ଲୁଟାର୍କଙ୍କ କଥାନକ ପ୍ରାଚୀନ ମହାପୁରୁଷମାନଙ୍କ ମଧ୍ୟରୁ ଅନ୍ୟତରର ଜୀବନୀଦ୍ୱାରା ପ୍ରାଚୀନ ଯାବନିକ ଇତିହାସ ଏବଂ ଯାବନିକ ଭୂଗୋଳ ଆଲୋକିତ ହୁଅନ୍ତା। ଗ୍ରନ୍ଥକାର ରାମାୟଣ ସମ୍ବନ୍ଧରେ ଯେମନ୍ତ ଗୋଟିଏ ପ୍ରବନ୍ଧ ଦେଇଅଛନ୍ତି, ସେହିପରି ମହାଭାରତ ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ଏବଂ ଆନୁସଙ୍ଗିକରୂପେ ସେଥିସଙ୍ଗେ ଭାରତବର୍ଷୀୟ ପ୍ରାଚୀନ ଭୌଗୋଳିକ ବିବରଣ ଲିପିବଦ୍ଧ କରିଥିଲେ ତାହା ପାଠାର୍ଥିମାନଙ୍କ ପକ୍ଷରେ ବିଶେଷ କାର୍ଯ୍ୟକାରୀ ହୋଇଥାନ୍ତା। ଚରିତ୍ର ଚିତ୍ର କରିବା ବିଷୟରେ ଭଗବାନ୍ ବ୍ୟାସଦେବ ବାଲ୍ମୀକିଙ୍କ ଅପେକ୍ଷା ନିପୁଣତର, ତେଣୁ ଆଳଙ୍କାରିକ ଦୃଷ୍ଟିରେ ସୁଦ୍ଧା ମହାଭାରତର ସମାଲୋଚନା ରାମାୟଣ ଅପେକ୍ଷା ଅଧିକତର ଶିକ୍ଷାପ୍ରଦ ସନ୍ଦେହ ନାହିଁ। ଉତ୍କଳ ଏବଂ ବଙ୍ଗ ସାହିତ୍ୟ ସମ୍ବନ୍ଧରେ ଗୋଟିଏ ଯୋଡ଼ିଏ ପ୍ରବନ୍ଧ ଆମ୍ଭମାନଙ୍କ ମାତୃଭାଷାର ପ୍ରକୃତ ଅବସ୍ଥା ଏବଂ ଅଭାବପ୍ରତି ପାଠକବର୍ଗଙ୍କ ଦୃଷ୍ଟି ଆକର୍ଷଣ ବିଷୟରେ ଉପଯୋଗୀ ହୁଅନ୍ତା। ଉଲ୍ଲିଖିତ ବିଷୟକ ପ୍ରବନ୍ଧ ସମୂହର ସନ୍ନିବେଶଦ୍ୱାରା ପୁସ୍ତକର କଳେବର ବହୁ ପରିମାଣରେ ସ୍ଫୀତ ହୋଇଥାନ୍ତା ସତ୍ୟ; କିନ୍ତୁ ଆମ୍ଭେମାନେ ଖଣ୍ଡିଏ ସର୍ବାଙ୍ଗ ସୁନ୍ଦର ପାଠ୍ୟପୁସ୍ତକ ପାଇଥାନ୍ତୁ ଏବଂ ଓଡ଼ିଶାର ଶିକ୍ଷାବିଭାଗ ଗ୍ରନ୍ଥକାରଙ୍କ ନିକଟରେ ବହୁଦିନ ସକାଶ ଋଣୀହୁଅନ୍ତା। ପ୍ରାଚ୍ୟଜାତିର କଳ୍ପନାବୃତ୍ତି ସ୍ୱଭାବତଃ ଅତ୍ୟନ୍ତ ପ୍ରବଳ, ସେଥିଉପରେ ପୁଣି କଳ୍ପନାପ୍ରସୂତ ଗ୍ରନ୍ଥମାନଙ୍କର ନିରତିଶୟ ଚର୍ଚ୍ଚାଦ୍ୱାରା ପ୍ରାଚ୍ୟମନ ନିତାନ୍ତ ସୁକୁମାର ଏବଂ ନିସ୍ତେଜ ହୋଇଯାଇଅଛି। ଏହି ବୈଷମ୍ୟ ନିରାକରଣ ଏବଂ ସମତା ପ୍ରତିଷ୍ଠାପନ ନିମନ୍ତେ ଜୀବନ୍ତ ସତ୍ୟାଶ୍ରିତ ବିଷୟର ଅନୁଶୀଳନ ନିତାନ୍ତ ଆବଶ୍ୟକ ଏବଂ ପ୍ରତ୍ୟେକ ପାଠ୍ୟପୁସ୍ତକରେ ସେହିଭଳି ବିଷୟ ପ୍ରଚୁର ପରିମାଣରେ ଥିବାର ସର୍ବତୋଭାବେ ବାଞ୍ଛନୀୟ। ଆମ୍ଭେମାନେ ଗ୍ରନ୍ଥକାରଙ୍କୁ ଦୃଢ଼ରୂପେ ଅନୁରୋଧ କରୁଅଛୁଁ ଯେ, ପ୍ରବନ୍ଧମାଳାର ଦ୍ୱିତୀୟ ସଂସ୍କରଣ ସମୟରେ ଆମ୍ଭମାନଙ୍କର ପ୍ରାଗୁକ୍ତ ପ୍ରସ୍ତାବମାନ କାର୍ଯ୍ୟରେ ପରିଣତ କରି ସାଧାରଣଙ୍କର କୃତଜ୍ଞତା ଭାଜନ ହେବେ।

# ପରଲୋକଗତ ଦାଶରଥି କବିଚନ୍ଦ୍ର

ଉତ୍କଳାକାଶରୁ ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର ଅସ୍ତମିତ ହୋଇଅଛି। ପଣ୍ଡିତ ଦାଶରଥି କବିଚନ୍ଦ୍ର ମାନବଲୀଳା ସମ୍ବରଣ କରିଅଛନ୍ତି। ଏହାଙ୍କ ପରି ସଂସ୍କୃତଜ୍ଞ ଓଡ଼ିଶ୍ୟାରେ ନାହାନ୍ତି ଏହା ମୁଁ କହୁନାହିଁ, ମାତ୍ର ଏହାଙ୍କର ଯେଉଁ ଅସାଧାରଣ ଶକ୍ତି ଥିଲା ସେଥିର ଉଦାହରଣ ଓଡ଼ିଶ୍ୟାରେ ଦୁର୍ଲଭ। ସଂସ୍କୃତ କବିତା ରଚନା ବିଷୟରେ ସମଗ୍ର ଉତ୍କଳରେ କେବଳ ୨ଜଣ ପ୍ରକୃତ କ୍ଷମତାପନ୍ନ ବ୍ୟକ୍ତି ଦେଖାଯାନ୍ତି। ପ୍ରଥମ ଡିଗିରିଆ ନିବାସୀ ଭୁବନି ବଡ଼ପଣ୍ଡା; ଦ୍ୱିତୀୟ ବାଣପୁର ନିବାସୀ ଦାଶରଥି କବିଚନ୍ଦ୍ର। ପ୍ରଥମୋକ୍ତ ମହାତ୍ମା ଗୁଣଗ୍ରାହୀ ସାହିତ୍ୟରସିକ ବାମଡ଼ା ମହାରାଜ ଶ୍ରୀଯୁକ୍ତ ସୁଢଳଦେବଙ୍କର ଆଶ୍ରୟରେ ଦିନଯାପନ କରୁଅଛନ୍ତି। ଦାଶରଥି ଖଲ୍ଲିକୋଟରେ ବହୁକାଳ ଅବସ୍ଥାନାନନ୍ତର ଓଡ଼ିଶ୍ୟା, ଗଡ଼ଜାତ, ବଙ୍ଗ, ବିହାର, ଗିମା, ଦରଭଙ୍ଗା ପ୍ରଭୃତି ସ୍ଥାନମାନଙ୍କରେ ଭ୍ରମଣପୂର୍ବକ ବାନରୀ ପ୍ରାୟ ବାକ୍‌ଦେବୀଙ୍କୁ ନର୍ତ୍ତନ କରାଇ କଥଞ୍ଚିତ୍ ଜୀବିକା ଅର୍ଜନ କରୁଥିଲେ। ପ୍ରାୟ ୭-୮ ଦିନ ହେଲା ଉକ୍ତ ମହାତ୍ମା କାଳଗର୍ଭରେ ଲୀନହେଲେ।

ଦାଶରଥିଙ୍କର କେମନ୍ତ ଅସାଧାରଣ ଶକ୍ତି ଥିଲା ତାହା ଯେଉଁମାନେ ଚାକ୍ଷୁଷ କରିନାହାନ୍ତି କେବଳ ବର୍ଣ୍ଣନା ଦ୍ୱାରା ତାହା ସେମାନଙ୍କର ବୋଧଗମ୍ୟ ହେବନାହିଁ। ଦାଶରଥି ଜଣେ ଅଷ୍ଟାବଧାନୀ ପଣ୍ଡିତ ଥିଲେ। ତାହାଙ୍କର ଅଲୌକିକ ଅଷ୍ଟାବଧାନୀ କାର୍ଯ୍ୟ ପୁରୀ ଏବଂ କଟକରେ ଅନେକ ଭଦ୍ରଲୋକ ଦେଖିଥିବେ। ମାତ୍ର ଯେଉଁମାନେ ସଂସ୍କୃତ ଜାଣନ୍ତି ଏବଂ ସଂସ୍କୃତ କବିତାର ରସାସ୍ୱାଦନରେ ପଟୁ କେବଳ ସେହିମାନେ ଦାଶରଥିଙ୍କର ଉପସ୍ଥିତ କବିତାଶକ୍ତିର ପ୍ରସର ଅନୁଭବ କରିବାକୁ ସକ୍ଷମ ହେଉଥିଲେ। ପୂଜ୍ୟପାଦ ଭୁବନି ବଡ଼ପଣ୍ଡାଙ୍କୁ ମୁଁ ଦେଖିନାହିଁ। ମାତ୍ର ତାହାଙ୍କର ସୁଯୋଗ୍ୟ ପୁତ୍ରଙ୍କଠାରୁ ତାହାଙ୍କର ଅସାଧାରଣ ପ୍ରତିଭାର ଯେଉଁ ପରିଚୟ ପାଇଅଛି ତାହା ଅତି ବିସ୍ମୟକର। ଦାଶରଥି ପଣ୍ଡାମହୋଦୟଙ୍କ ସଙ୍ଗେ ଏକ ତୁଳାଦଣ୍ଡରେ ତୁଳିତ ହେବାର ଅନୁପଯୁକ୍ତ ନଥିଲେ।

ଆଜକୁ ପ୍ରାୟ ୧୫ ବର୍ଷ ପୂର୍ବେ ମୁଁ ପୁରୀରେ ଅବସ୍ଥାନ କରୁଥିଲି। ସେହି ସମୟରେ ଦାଶରଥିଙ୍କ ସହିତ ମୋହର ପ୍ରଥମ ସାକ୍ଷାତ୍। ନୈୟାୟିକପ୍ରବର ପଣ୍ଡିତ ହରିହର ଦାସ ଦାଶରଥିଙ୍କୁ ମୋହ ସଙ୍ଗେ ପରିଚୟ କରାଇଦେଇ ତାହାଙ୍କର ପ୍ରତିଭାର ଯଥେଷ୍ଟ ପ୍ରଶଂସା କଲେ। ଦାଶରଥି ପାଦପୂରଣ ଅଭିପ୍ରାୟରେ ମୋତେ ଗୋଟିଏ ପ୍ରଶ୍ନ କରିବାକୁ ଅନୁରୋଧ କଲେ। ମୁଁ ଯେଉଁ ପ୍ରଶ୍ନକଲି ସେ ଅବଲୀଳାକ୍ରମେ ସେଥିର ସନ୍ତୋଷଜନକ ଉତ୍ତର ଦେଲେ। ପାଦପୂରଣରେ ତାହାଙ୍କର ଅସାଧାରଣ କୌଶଳ ଦେଖି ମୁଁ ଚମତ୍କୃତ ହେଲି। କଥାପ୍ରସଙ୍ଗରେ ତାହାଙ୍କୁ ଗୋଟିଏ ବଙ୍ଗଳା କବିତାର ଭାବ ଗ୍ରହଣ କରି ସଂସ୍କୃତ କବିତା ରଚନା କରିବାକୁ ଅନୁରୋଧ କଲି। କବିଚନ୍ଦ୍ର ସେହିକ୍ଷଣି କହିଲେ –

ନମାମ ରାମଂ ମଣି ମୌଳି ମଣ୍ଡନା
ସଖୀ ସମୋଦା ନରମୁଣ୍ଡମାଳିନୀ
ଯଥା ପ୍ରଭାତେ ଲତିକା ପ୍ରସୂନଭୃତ୍
ବସନ୍ତବାତଂ ହିମବିନ୍ଦୁ ଶାଳିନୀ।

ଶ୍ରୋତାମାନେ ଆନନ୍ଦରେ ଗଦ୍‌ଗଦ ହୋଇ ଆଉ ଗୋଟିଏ ପ୍ରଶ୍ନ କରିବାକୁ ମୋତେ ଅନୁରୋଧ କଲେ। ମୁଁ ନିମ୍ନୋକ୍ତ ବଙ୍ଗୀୟ କବିତା ପଢ଼ି ସେଥିର ଭାବ ତାହାଙ୍କୁ ବୁଝାଇଦେଇ ଶାର୍ଦ୍ଦୂଳବିକ୍ରୀଡ଼ିତ ଛନ୍ଦରେ କବିତା ରଚନା କରିବାକୁ କହିଲି।

"ରାଜକାର୍ଯ୍ୟ ସାଧି ଯଥା ବିରାମ ମନ୍ଦିରେ
ରାଜେନ୍ଦ୍ର ରାଖେନ ଦେବ ଖୁଲି ସଯତନେ
କିରୀଟ, ରାଖିଲି ଖୁଲି ଅସ୍ତାଚଳ ଚୂଡ଼େ
ଦିନଦେବ ଦିନାନ୍ତେ ଦିନରତନ
ତମୋହାମିହିରେ।"

ଦାଶରଥି ପ୍ରାୟ ୨-୩ ମିନିଟ ମଧ୍ୟରେ କବିତା ରଚନା କରିଦେଲେ। ସମଗ୍ର କବିତା ମୋହୋର ମନେନାହିଁ। ଯେତିକି ମନେଅଛି ତାହା ଏହି –

ନିତ୍ୟୋ ଦ୍ୱୀପ୍ତି ନିରସ୍ତ ବିଶ୍ୱ ତମସଂ ଚଣ୍ଡାଶୁ ମୁଷ୍ଟାବତ୍
ଅସ୍ତକ୍ଷ୍ମାଧର ମସ୍ତକୋ ପରିଦିଧୌତ୍ରୁଟ୍ୟାଧିପୋବାସର
ଆନନ୍ଦୋଦୟ ରୋଷିତ ପ୍ରକୃତିକ
... ନାଗ ଦନ୍ତାନ୍ତରେ
....
... ଯଦ୍ୱତ ଦରି କୁମ୍ଭତେ।

ଏହି ପ୍ରଥମ ସାକ୍ଷାତରେ ଦାଶରଥି ଏହିପରି ଆଠ ଦଶୋଟି କବିତା ରଚନା କରି ସମବେତ ସମସ୍ତ ଶ୍ରୋତାଙ୍କୁ ଚମତ୍କୃତ ଏବଂ ମୋହିତ କରାଇଥିଲେ। ଏହି ସମୟରୁ ତାହାଙ୍କ ସଙ୍ଗେ ମୋହର ଘନିଷ୍ଠ ବନ୍ଧୁତା ଆରମ୍ଭହେଲା। ତାହାଙ୍କ ସହିତ ଯେତେଥର ସାକ୍ଷାତ ହୋଇଅଛି ତାହାଙ୍କର ଅମୃତ ନିସ୍ୟନ୍ଦିନୀ ସରସ୍ୱତୀ ମୋହୋର କର୍ଣ୍ଣ ପବିତ୍ର କରିଅଛି।

ଅଳ୍ପଦିନ ତଳେ ସେ କଟକକୁ ଆସିଥିଲେ। କଥା ପ୍ରସଙ୍ଗରେ ରୂପବର୍ଣ୍ଣନାତ୍ମକ ସ୍ୱରଚିତ କେତେଗୁଡ଼ିଏ କବିତା ମୋତେ ଶୁଣାଇ ଉକ୍ତ ବିଷୟକ ଉତ୍କୃଷ୍ଟତମ ପ୍ରାଚୀନ କବିତା ଯାହାକି ମୋ ପଢ଼ିବାରେ ଆସିଅଛି ଆବୃତ୍ତି କରିବାକୁ ମୋତେ ଅନୁରୋଧ କଲେ। ମୁଁ ନିମ୍ନଲିଖିତ କବିତା କହିଲି –

"ପରିପାଣ୍ଡୁ ଦୁର୍ବଳ କପୋଳ ସୁନ୍ଦରଂ
ଦଧତୀ ବିଲୋଳ କବରୀକମାନନଂ
କରୁଣସ୍ୟ ମୂର୍ତ୍ତିରଥବା ଶରୀରିଣୀ
ବିରହ ବ୍ୟଥେବ ବନମେତି ଜାନକୀ।"

ଏହି କବିତା ଶୁଣିବା ମାତ୍ରକେ କବିଚନ୍ଦ୍ରଙ୍କର ଗଣ୍ଡସ୍ଥଳ ଆନନ୍ଦାଶ୍ରୁରେ ଅଭିଷିକ୍ତ ହେଲା। ଗଦ୍‌ଗଦ ହୋଇ କହିଲେ, "ଧନ୍ୟ କ୍ଷମତା! ଆହା! ଏ ଶ୍ଳୋକ ଯେ ଲେଖିଛି ସଂସାର ସମ୍ପଦ ତାକୁ କେତେ? ଆଜ ମୋର ସୁପ୍ରଭାତ।" –ଏହା କହି ଆନନ୍ଦରେ ବିହ୍ୱଳ ହୋଇ ପ୍ରାୟ ୭-୮ ଥର ସେହି ଶ୍ଳୋକ ପଢ଼ିଲେ ଏବଂ ଉତ୍ତରରାମଚରିତ ଗ୍ରନ୍ଥ କିଣିବା ସକାଶେ ନିରତିଶୟ ବ୍ୟଗ୍ରତା ପ୍ରକାଶକଲେ। ଦାଶରଥିଙ୍କର ରୁଚି କେମନ୍ତ ଉନ୍ନତ ଓ ମାର୍ଜିତ ଥିଲା ସଂସ୍କୃତଜ୍ଞ ପାଠକେ ଏହି ସାମାନ୍ୟ ଘଟଣାରୁ ତାହା ବୁଝିପାରିବେ।

ବଡ଼ ଦୁଃଖର କଥା ଯେ, ଶେଷାବସ୍ଥାରେ ଦାଶରଥିଙ୍କୁ ଅର୍ଥାଭାବଜନିତ କଷ୍ଟ ଭୋଗ କରିବାକୁ ହେଲା। "ଦାରିଦ୍ର୍ୟ ଦୋଷୋ ଗୁଣରାଶିନାଶୀ"– ଦାଶରଥି ଏହି ପ୍ରବାଦର ସଜୀବ ଉଦାହରଣ ପ୍ରାୟ ଇତସ୍ତତଃ ବିଚରଣ କରୁଥିଲେ। ତାହାଙ୍କର ଦର୍ପଣବତ୍ ନିର୍ମଳ ପ୍ରତିଭା କ୍ରମଶଃ ନିଶ୍ୱାସାନ୍ଧ ହେବାକୁ ଲାଗିଲା। ଦାରୁଣ ଅନ୍ନଚିନ୍ତା ସବୁବେଳେ ତାହାଙ୍କୁ ଆକୁଳକଲା। କୌଣସି ଐଶ୍ୱର୍ଯ୍ୟଶାଳୀ ଗ୍ରାହକଙ୍କର ଆଶ୍ରୟ ଲାଭ କରି ସ୍ୱକୀୟ ନୈସର୍ଗିକ ପ୍ରବୃତ୍ତି ଚରିତାର୍ଥ କରିବେ ଏବଂ କାବ୍ୟାଦି ରଚନାକରି ଉତ୍କଳ ସାହିତ୍ୟ ସଂସାରରେ କୀର୍ତ୍ତି ସ୍ଥାପନ କରିବେ ଏହି ଇଚ୍ଛା ସର୍ବଦା ତାହାଙ୍କ ମନରେ ଜାଗରୂକ ଥିଲା। ମାତ୍ର ତାହାଙ୍କର ଏହି ସାଧୁ ଇଚ୍ଛା ଫଳବତୀ ହେଲାନାହିଁ। ପ୍ରତିଭାଶାଳୀ ଦାଶରଥିଙ୍କର ପରିଣାମ ଅରଣ୍ୟକୁସୁମର ପରିଣାମ ପରି ଶୋଚନୀୟ ହେଲା।

ଦାଶରଥି ନିତାନ୍ତ ଆଡ଼ମ୍ବରଶୂନ୍ୟ ଥିଲେ; ଅଥଚ ବିନୟାଚ୍ଛନ୍ନ ସାଧୁଗର୍ବ ତାହାଙ୍କଠାରେ ଯଥେଷ୍ଟ ଥିଲା। ଦିନେ ସେ ନିତାନ୍ତ ନିଃସମ୍ବଳ ହୋଇ ମୋହ ନିକଟରେ ଉପସ୍ଥିତ ହେଲେ। କଥାପ୍ରସଙ୍ଗରେ ମୁଁ ତାହାଙ୍କୁ କୌଣସି ଧନୀବ୍ୟକ୍ତିଙ୍କ ଅନୁସରଣ କରିବାକୁ ଉପଦେଶ ଦେଲି। ଦାଶରଥି କହିଲେ, "ସହସ୍ର କଷ୍ଟ ହେଲେ ସୁଦ୍ଧା ସେପରି ଲୋକର ଅନୁସରଣ କରିବାକୁ ମୋହର ପ୍ରବୃତ୍ତି ହୁଏ ନାହିଁ, ଅଗ୍ରାହକ ବଦାନ୍ୟଠାରୁ ଗ୍ରାହକ ମିତଦାତା ଭଲ"– ଏହା କହି ସେ ନିମ୍ନୋକ୍ତ କବିତାଟି ପାଠକଲେ –

କ୍ଷୁତ୍କ୍ଷାମୋଽପି ଜରାକୃଶୋଽପି
ଶିଥିଳପ୍ରାଣୋଽପି କଷ୍ଟାଂ ଦଶା
ମାପନ୍ନୋଽପି ବିପନ୍ନ ଦିଧିତିରପି
ପ୍ରାଣେଷ୍ଣୁ ଶ୍ୱେତସ୍ୱପି
ମତେ ଚ ଭଦ୍ର କଠୋର କୁମ୍ଭମିଶିତ
ଗ୍ରାସେକ ବଦ୍ଧସ୍ପୃହଃ
କିଂ ଜୀର୍ଣ୍ଣତୃଣମତ୍ତି ମନମହତାମଗ୍ରେସରଃ କେଶରୀ।

## ଭୂଦେବ-ପ୍ରସଙ୍ଗ

ପୂଜ୍ୟପାଦ ଭୂଦେବ ମୁଖୋପାଧ୍ୟାୟଙ୍କର ଓଡ଼ିଶାକୁ ଶୁଭାଗମନ ମୋ ଜୀବନର ଗୋଟିଏ ପ୍ରଧାନ ଘଟନା। ତାହାଙ୍କ ଚରଣରେ ମୁଁ ଯେତେଦୂର ଋଣୀ କୌଣସି ବଙ୍ଗବାସୀଙ୍କ ନିକଟରେ ସେତେଦୂର ଋଣୀ ନୁହେ। ସେ ଯେତେଦିନ ଜୀବିତ ଥିଲେ, ତାହାଙ୍କୁ ଦେବତା ମନେକରି ତାହାଙ୍କର ଶ୍ରୀଚରଣକୁ ମୁଁ ଭକ୍ତିପୁଷ୍ପରେ ପୂଜାକରିଅଛି। ବର୍ତ୍ତମାନ ସେ ଲୋକାନ୍ତରଗାମୀ ହୋଇଥିଲେ ମଧ୍ୟ ମୋ ଦୃଷ୍ଟିରେ ସେ ସର୍ବଦା ଜୀବିତ ଥିବେ।

ସେ ସର୍ବପ୍ରଥମରେ ଯେତେବେଳେ ଓଡ଼ିଶାକୁ ଆସିଲେ, ତହିଁ ପୂର୍ବରୁ ତାହାଙ୍କ ନିକଟରେ ମୁଁ ଆଦୌ ପରିଚିତ ନ ଥିଲି। ମୋ ସମ୍ବନ୍ଧରେ ସେ କିୟତ୍-ପରିମାଣରେ କୁସଂସ୍କାରବିଶିଷ୍ଟ ମଧ୍ୟ ଥିଲେ। ଏ କଥା ସେ ସ୍ୱୟଂ ମୋ ସମକ୍ଷରେ ସ୍ୱୀକାର କରିଥିଲେ।

ସର୍ବ ପ୍ରଥମରେ ସେ କଟକରେ ଉପସ୍ଥିତ ହେଲେ। ମୁଁ ତାଙ୍କ ସମଭିବ୍ୟାହାରରେ ପୁରୀ ଯାତ୍ରା କଲି। ପୁରୀ ପଥରେ ପ୍ରଥମେ ତାହାଙ୍କ ସହିତ ମୁଁ ବାଲିଅନ୍ତା ଚଟିରେ ଅବସ୍ଥାନ କାଳରେ ସେ କୌଣସି କାରଣରୁ ମୋ ଉପରେ ବିରକ୍ତ ହୋଇ ତାହାଙ୍କ ମତ ସମର୍ଥନ ଉଦ୍ଦେଶ୍ୟରେ ଜର୍ମାନ୍ କବି ଗେଟେଙ୍କର କୌଣସି ଗ୍ରନ୍ଥରୁ ଗୋଟିଏ ବାକ୍ୟ ଉଦ୍ଧାର କଲେ। ସୌଭାଗ୍ୟ-କ୍ରମେ ମୁଁ ସେହି ବହି ପଢ଼ିଥିଲି। ମୁଁ ତାହାଙ୍କ

କଥା ସମର୍ଥନପୂର୍ବକ କହିଲି, ''ଆଜ୍ଞା ହଁ। ଆପଣ ଯେଉଁ ବାକ୍ୟ ଉଚ୍ଚାରକଲେ, ତାହା ଠିକ୍ ସତ୍ୟ, କିନ୍ତୁ ଏ ସ୍ଥଳରେ ତାହାର ପ୍ରୟୋଗ ଠିକ୍ ହେଲା ନାହିଁ।'' ସେ ଆହୁରି ବିରକ୍ତହୋଇ କହିଲେ, ''ତୁମେ କଅଣ ବୁଝି ହଁ ଭରିଲ? ତୁମେ କଅଣ ଗେଟେଙ୍କର ନାମ ଶୁଣିଛ? ତାଙ୍କ ବହିର ତୁମେ କୌଣସି ଖବର ରଖ କି?''

''ଆଜ୍ଞା। ମୁଁ ଅବଶ୍ୟ ମୂଳ ବହି ପଢ଼ିନାହିଁ, ଅନୁବାଦ ପଢ଼ିଥିଲି।''

''ଅନୁବାଦ କଥା ମୁଁ କହୁଛି, ମୁଁ କଅଣ ଆଉ ମୂଳବହି ପଢ଼ିଅଛି?''

''ଆଜ୍ଞା। ମୁଁ ସେହି ଅନୁବାଦହିଁ ପଢ଼ିଥିଲି।''

''ତୁମେ ଏ ବହି ପଢ଼ିଛ? ଗେଟେଙ୍କର ଆଉ କୌଣସି ବହିର ନାମ କହିପାର?''

ମୁଁ କେତେକ ବହିର ନାମ କହିଲି। ସେହି ପୁସ୍ତକଗୁଡ଼ିକ ମୁଁ ପଢ଼ିଥିଲି। ତାହାଙ୍କ ଆଦେଶାନୁସାରେ ମୁଁ ଏହି ବହିଗୁଡ଼ିକର ସ୍ଥୂଳ ବୃତ୍ତାନ୍ତ ତାହାଙ୍କୁ କହିଲି। ସେ ଅଳ୍ପକ୍ଷଣ ନୀରବ ରହି କହିଲେ –

''ତୁମର ପଢ଼ିବାର ଅଭ୍ୟାସ ରହିଛି ଦେଖୁଛି। ମୁଁ ଏହା ଆଶା କରି ନ ଥିଲି। ତୁମେ କି କି ଭାଷା ଜାଣ?''

ମୋହୋର ଉତ୍ତର ପାଇ ସେ କହିଲେ, ''ତୁମେ ତୁମର ଜୀବନର ପୂର୍ବ ଘଟନାମାନ ସ୍ଥୂଳରେ କହ। ମୁଁ ଶୁଣିଥିଲି ଯେ, ତୁମେ କେବଳ ଏଣ୍ଟ୍ରାନ୍ସ ପାଶ୍ କରିଥିଲ, କଲେଜରେ ପଢ଼ିନାହଁ। ବର୍ତ୍ତମାନ ଦେଖୁଛି ମୋହୋର ମତ ପରିବର୍ତ୍ତନ କରିବାକୁ ହେବ।''

ମୁଁ ମୋହୋର ସମସ୍ତ ବକ୍ତବ୍ୟ ସ୍ଥୂଳରେ ନିବେଦନକଲି। ଆହାରାନ୍ତେ ସେ ପତ୍ରାଦି ଲେଖି ବସିଲେ। ୨-୩ ଘଣ୍ଟା ଉତ୍ତାରୁ ମୋତେ ଡକାଇ କହିଲେ, ''ଏହିଗୁଡ଼ିକ ପଢ଼ିଯାଅ।''

ମୁଁ ପତ୍ରଗୁଡ଼ିକ ପଢ଼ିଲି। ଭୂଦେବବାବୁ ତାହାଙ୍କର କେତେଗୁଡ଼ିଏ ନିତାନ୍ତ ଘନିଷ୍ଠ ବନ୍ଧୁଙ୍କୁ ଏହି ପତ୍ରଗୁଡ଼ିକ ଲେଖିଥିଲେ। ପତ୍ରସମୂହରେ ମୋ ସମ୍ବନ୍ଧରେ କେତେକ ବିବରଣ ଦେଇ ଉପସଂହାରରେ ମୋ ବିଷୟରେ ସେମାନଙ୍କର ପୂର୍ବମତ ପରିବର୍ତ୍ତନ କରିବା ସକାଶେ ସେ ପ୍ରତ୍ୟେକ ବନ୍ଧୁଙ୍କୁ ଅନୁରୋଧ କରିଥିଲେ। ମୁଁ ତାହାଙ୍କର ଉଦାରତା ଏବଂ ପ୍ରଶସ୍ତ ମନସ୍ୱିତା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲି।

ବାଲିଅନ୍ତାରୁ ଆମ୍ଭେମାନେ ଭୁବନେଶ୍ୱର ଗଲୁଁ। ଭୁବନେଶ୍ୱରର ପ୍ରାଚୀନ କୀର୍ତ୍ତିରାଜି ଦେଖି ସେ ଆହ୍ଲାଦ ଏବଂ ବିସ୍ମୟରେ ଗଦ୍‌ଗଦ ହେଲେ। ଓଡ଼ିଶା ପ୍ରତି ତାହାଙ୍କର ଭକ୍ତି ବଢ଼ିଉଠିଲା।

ଭୁବନେଶ୍ୱର ପରିତ୍ୟାଗ କରି ଆମ୍ଭେମାନେ ଖରଦେଉଳପୁର ଚଟିରେ ଅବସ୍ଥାନ କଲୁଁ। ସେଠାରେ ଅବସ୍ଥାନ ସମୟରେ ଭୁବନେଶ୍ୱରର ପ୍ରାଚୀନ ଆର୍ଯ୍ୟ କୀର୍ତ୍ତିରାଜି ପ୍ରସଙ୍ଗରେ ଅନେକ କଥୋପକଥନ ହେଲା। ଏହି ପ୍ରସଙ୍ଗରୁ ସ୍ୱଭାବତଃ ସଂସ୍କୃତ ସାହିତ୍ୟର କଥା ମଧ୍ୟ ଉଠିଲା। ଓଡ଼ିଶାରେ ସଂସ୍କୃତଶ୍ଳୋକସମୂହ ଲୋକେ ସ୍ୱର ସଂଯୋଗରେ ପଢ଼ିଥାଆନ୍ତି, ଏହି କଥା ଶୁଣି ସେ ମୋତେ ସ୍ୱର ସଂଯୋଗରେ କୌଣସି ଗୋଟିଏ ଶ୍ଳୋକ ପଢ଼ିବାକୁ କହିଲେ। ମୁଁ ମେଘଦୂତର ନିମ୍ନୋକ୍ତ ଶ୍ଳୋକ ମନ୍ଦ୍ରାକାନ୍ତା ଛନ୍ଦରେ ଆବୃତ୍ତି କଲି –

''ତାଂ ଜାନୀଥା ପରିମିତକଥାଂ ଜୀବିତଂ ମେ ଦ୍ୱିତୀୟମ୍
ଦୂରୀଭୂତେ ମୟି ସହଚ୍‌ରେ ଚକ୍ରବାକୀମିବୈକାମ୍।
ଗାଢ଼ୋତ୍କଣ୍ଠାଂ **ଗୁରୁଷୁ** ଦିବସେଷ୍ୱେଷୁ ଗଚ୍ଛତ୍ସୁ ବାଳାମ୍
ଜାତାଂ ମନ୍ୟେ ଶିଶିରମଥିତାଂ ପଦ୍ମିନୀ ବାନ୍ୟରୂପାମ୍।''

ଶ୍ଳୋକ ଶୁଣି ତାହାଙ୍କର ବିଶାଳ ନେତ୍ରରୁ ଅଶ୍ରୁଧାରା ପ୍ରବାହିତ ହେଲା। ଶ୍ଳୋକଦ୍ୱାରା ଯେପରି ତାହାଙ୍କ ହୃଦୟରେ କୌଣସି ଅନିର୍ବଚନୀୟ ଅନୁସ୍ମୃତି ଉପୁଜି ଉଠିଲା। ସେ ହଠାତ୍ କହିଉଠିଲେ ''ଆହା! କି ସାହିତ୍ୟ! କି କୀର୍ତ୍ତି! ଆମ୍ଭେମାନେ କଅଣ ହୋଇଗଲୁଣି!''

ସଂସ୍କୃତ ସାହିତ୍ୟ ପ୍ରସଙ୍ଗରେ ଅନୁସଙ୍ଗତଃ ଉତ୍କଳ ସାହିତ୍ୟ କଥା ଉଠିଲା। ଉତ୍କଳର ସର୍ବପ୍ରଧାନ କବି ଉପେନ୍ଦ୍ରଭଞ୍ଜଙ୍କର ସର୍ବପ୍ରଧାନ କାବ୍ୟ ବୈଦେହୀଶ ବିଳାସରୁ ମୁଁ କେତେଗୁଡ଼ିଏ ଉତ୍କୃଷ୍ଟ କବିତା ଆବୃତ୍ତି କରି ତାହାର ବ୍ୟାଖ୍ୟା ମଧ୍ୟ କରିଦେଲି।

କବିପ୍ରବର ଉପେନ୍ଦ୍ରଭଞ୍ଜଙ୍କର ଯେଉଁ ଯୋଡ଼ିଏ କବିତାଂଶ ମୁଁ ସ୍ୱର୍ଗତ ଭୂଦେବଙ୍କୁ ଶୁଣାଇଥିଲି ତାହା ନିମ୍ନରେ ପ୍ରଦତ୍ତ ହେଲା – ଲାବଣ୍ୟବତୀରୁ –

ମନଦେଇ ଶୁଣ କୋବିଦେ ନୃପସୁତା ସୁକେଶୀ
କୂଳରେ ବକୁଳ ମୂଳରେ ପୀଠ ଉପରେ ବସି। ୧।
ସରସୀ ଶୋଭିତ ଅନାଇ ମନ ନେତ୍ର ଲୋଭିତ
ତଟଘଟନା ବିଦ୍ରୁମରେ ପକ୍ଷାପଙ୍କ୍ତି ବିମ୍ରିତ। ୨।
କି ନୀଳଶାଢ଼ୀ ହଂସାବଳୀ ରଙ୍ଗ ଧଡ଼ି ହୋଇଛି,
ଅବନୀବନିତା ବିସ୍ତାରେ କିବା କିଣିବା ଇଚ୍ଛି। ୩।
ପାବଚ୍ଛ ସ୍ୱଚ୍ଛ ସ୍ଫଟିକରେ ନୀରତୀର ପ୍ରତୀତ,
ସୁବେଣୀ ପରଶ ଭାବି କି ତହିଁ ତ୍ରିବେଣୀ ଖ୍ୟାତ। ୪।
ଦୀପଦଣ୍ଡୀ ଲଭି ମରାଳପଙ୍କ୍ତି ଦିଏ ଭଉଁରୀ,
ବଡ଼ ବଡ଼ଭାଜି ବେଢ଼ି କି ଶୋଭା ଚୂର୍ଣ୍ଣ ଚଉଁରୀ। ୫।
ଜଳ ଜମ୍ବାଳ ଆବିଳରେ ଜନମନ ହରୁଛି,
ଜଳ ନିର୍ମଳରେ ଆଦର ଆଦରର୍ଶ୍ଣ ସାରୁଛି। ୬।

ଗଭୀର ଗୁଣକୁ ପଣ୍ଡିତଠାରୁ ଗ୍ରହୀତ କରି
ନର୍ତ୍ତକୀଠାବରୁ ଭଙ୍ଗୀ ଶିକ୍ଷା ପରା ଏହାରି । ୭ ।
ଅମୃତ ସଙ୍ଗତେ ହୋଇଛି ମିତ ମଧୁରଗୁଣେ,
ବିଧୁର ସ୍ନେହକୁ ବିଧୂର କରେ ଶୀତଳପଣେ । ୮ ।
ବୈଦେହୀଶ ବିଳାସରୁ –
ବଦନ ପୂରିଅଛି ହାସ ହରଷେ
ବିକର୍ତ୍ତନଜ ଯାଇ ଶ୍ରୀରାମ ପାଶେ ଯେ
ବିବର୍ତ୍ତନ ସନ୍ତାପ ହେଲା ପ୍ରଭୁର
ବାହୁଡ଼େ କାର୍ଯ୍ୟ କରି ଦକ୍ଷିଣଚାର ଯେ । ୧ ।
ବୋଲୁଁ ବୋଇଲେ ରାମ ହେ ମିତ୍ର ! ବସ
ବଡ଼ ମଙ୍ଗଳଯୁକ୍ତ ଭାଷ ତ ଭାଷ ଯେ
ବଧିର ବ୍ୟାଧି ସତେ ଶ୍ରୁତିରୁ ଯିବ
ବୈଦ୍ୟଦୂତ ଉଦନ୍ତ ଔଷଧି ଦେବ ଯେ । ୨ ।
ବିକମ୍ପକୁ କି ମହାପିପାସୀ ସହି
ବାରିପୂର୍ଣ୍ଣ କାସାର ଦେଖାଅ କାହିଁଯେ
ବୃହସ୍ପତି ଚଳନେ ବରଷେ ଘନ
ବିଚାରେ ତଥା ଧ୍ୱସ୍ତ କଲେ ମୋ ବନ ଯେ । ୩ ।

ସେ ଭାବର ସୌନ୍ଦର୍ଯ୍ୟରେ ଚମତ୍କୃତ ଏବଂ ମୁଗ୍‌ଧ ହୋଇ କହିଲେ, "ଏହି ଓଡ଼ିଶାକୁ ବଙ୍ଗାଳୀମାନେ ପୁଣି ବେହେରାର ଦେଶ ବୋଲି କହନ୍ତି !" ଏହା କହି ସେ ଭଞ୍ଜକବିଙ୍କର ଜୀବନୀ ଏବଂ ରଚନା ସମ୍ବନ୍ଧରେ ମୋତେ ଅନେକ ପ୍ରଶ୍ନ କଲେ । ମୋ ନିକଟରୁ ଭଞ୍ଜକବିଙ୍କର କବିତା ସେ ମଧେ ମଧେ ଶୁଣୁଥିଲେ ଏବଂ ସେହି ରଚନାର ସେ ଏତେଦୂର ପକ୍ଷପାତୀ ହୋଇଥିଲେ ଯେ, ଓଡ଼ିଶାରୁ ହୁଗୁଳୀ ପ୍ରତ୍ୟାବର୍ତ୍ତନ କରି କୌଣସି ଲବ୍‌ଧପ୍ରତିଷ୍ଠ ବଙ୍ଗୀୟ କବିଙ୍କ ହସ୍ତରେ ମୋତେ ଲକ୍ଷ୍ୟକରି ଗୋଟିଏ ଆଶୀର୍ବାଦସୂଚକ କବିତା ଲେଖାଇ ତାହା ଏଡୁକେଶନ ଗେଜେଟରେ ମୁଦ୍ରିତ କରାଇଥିଲେ । ଏହା ୧୮୭୯ ସାଲର ମେ ମାସ ୨୩ ତାରିଖର ଏଡୁକେଶନ ଗେଜେଟରେ ପ୍ରକାଶିତ ହୋଇଥିଲା ।

ଶରଦେଈପୁରଠାରୁ ଆମ୍ଭେମାନେ ପୁରୀ ଗଲୁଁ । ପୁରୀରେ ୨-୩ ଦିନ ମାତ୍ର ଅବସ୍ଥାନ କରି ପୁଣି କଟକକୁ ଫେରିଆସିଲୁଁ । ସେ ମୋ ଉପରିସ୍ଥ କର୍ମଚାରୀ ଥିଲେହେଁ ତାହାଙ୍କର ସହବାସ ମୋ ପକ୍ଷରେ ଉତ୍ସବମୟ ବୋଧହେଉଥିଲା । ସରକାରୀ କାର୍ଯ୍ୟ କରି ଆମ୍ଭେମାନେ ଯେତେବେଳେ ଅବସର ପାଉଥିଲୁଁ, ସେତେବେଳେ ଇଂରାଜି, ସଂସ୍କୃତ ଏବଂ ଓଡ଼ିଆ ସାହିତ୍ୟର ଅନୁଶୀଳନ କରୁଥିଲୁଁ । ଅଧିକାଂଶ ସମୟରେ କାଳିଦାସ ଏବଂ ଭବଭୂତିଙ୍କ ରଚନାର ଆଲୋଚନା ହେଉଥିଲା । ସେ ପ୍ରତିଥର ଓଡ଼ିଶାରେ ୧୦-୧୫ ଦିନରୁ ଅଧିକ ରହୁନଥିଲେ, କିନ୍ତୁ ଏହି ୧୦-୧୫ ଦିନ ମଧରେ ମୁଁ ତାହାଙ୍କ ନିକଟରୁ ଯେତେଦୂର ଶିକ୍ଷାଲାଭ କରୁଥିଲି, ସମସ୍ତ ବର୍ଷରେ ସେଭଳି ଶିକ୍ଷାଲାଭ ମୋ ପକ୍ଷରେ ଦୁର୍ଘଟ ହେଉଥିଲା । ସମୟସମୟରେ ମୁଁ ସାହିତ୍ୟଚର୍ଚ୍ଚା ପ୍ରସଙ୍ଗରେ ତାହାଙ୍କ ଦ୍ୱାରା କି ରୂପ ଭର୍ତ୍ସିତ ହେଉଥିଲି ଏହାର ଗୋଟିଏ ଉଦାହରଣ ଦେଉଅଛି ।

କାଳିଦାସଙ୍କର ଅଦ୍ଭୁତ ଉପମାପାରିପାଟ୍ୟ ଘେନି ଦିନେ କଥୋପକଥନ ହେଉଥିଲା । ମୁଁ ସେହି ପ୍ରସଙ୍ଗରେ ନିମ୍ନୋକ୍ତ କବିତା ଆବୃତ୍ତି କଲି –

ସଂରମ୍ଭଂ ମୈଥିଳୀହାସଃ କ୍ଷଣସୌମ୍ୟାଂ ନିନାୟ ତାମ୍ ।
ନିର୍ବାତସ୍ତିମିତାଂ ବେଳାଂ ଚନ୍ଦ୍ରୋଦୟ ଇବୋଦଧେଃ ।

ସେ ଏ ଶ୍ଳୋକ ଶୁଣି କହିଲେ, "ବଡ଼ ସୁନ୍ଦର ଉପମା, କିନ୍ତୁ ତୁମେ କଅଣ ଏହି ଶ୍ଳୋକରେ କବିଙ୍କର କୌଣସି ତ୍ରୁଟି ଦେଖୁନାହଁ ?" ମୁଁ ଅବାକ୍ ହୋଇ ଚାହିଁରହିଲି । ସେ କହିଲେ, "ତୁମର ଏତେ ପରିମାଣରେ ସ୍ଥୂଳବୁଦ୍ଧି ବୋଲି ମୋହର ଧାରଣା ନ ଥିଲା । ତୁମେ କେବଳ ଅଳଙ୍କାର ସୌନ୍ଦର୍ଯ୍ୟରେ ମୁଗ୍‌ଧ ହୋଇ ଚରିତ୍ର ସଙ୍ଗତି ଆଡ଼କୁ ଏକାବେଳକେ ଅନ୍ଧ ହୋଇଅଛ । ତୁମେ ଦେଖୁନାହଁ, କବି କିପରି ସ୍ଥଳରେ ସୀତାଙ୍କ ମୁଖରେ ହାସ୍ୟ ଦେଖିଅଛନ୍ତି ? ସୂର୍ପଣଖାର ସେହି ନିର୍ଲଜ୍ଜ ଆଚରଣରେ ସୀତାଙ୍କ ଭଳି ଅପ୍ରାକୃତା ସାଧ୍ୱୀଶୀଳା ନାୟିକା ମୁହଁରେ ହସ ଶୋଭାପାଇଲାଟିକି ? ଏ ସ୍ଥଳରେ ସେ ସ୍ୱୟଂ ଲଜ୍ଜାରେ ମ୍ରିୟମାଣା ହେବାର କଥା । ମନସ୍ୱିନୀ ସ୍ତ୍ରୀ ଅନ୍ୟ ସ୍ତ୍ରୀର ନିର୍ଲଜ୍ଜ ଆଚରଣ ଦେଖିଲେ ସ୍ୱୟଂ ଲଜ୍ଜିତା ହୋଇଥାଏ – ହସ ତ ଦୂରର କଥା ।"

ତାହାଙ୍କର ଏହି ମନ୍ତବ୍ୟ ଶୁଣି ମୋର ଚୈତନ୍ୟୋଦୟ ହେଲା; ନିଜର ଅର୍ବାଚୀନତା ସ୍ୱୀକାର କଲି ଏବଂ କହିଲି, "କବି ମାଇକେଲ ମଧୁସୂଦନ ଏହି ସ୍ଥଳରେ ଅତି ସାବଧାନ ହୋଇ ଲେଖିଅଛନ୍ତି – 'ସରମେ ! ସରମା ସଇ ! ମରିଲୋ ! ସ୍ମରିଲେ ତାର କଥା' ମୋ ଦୃଷ୍ଟି ସେ ଆଡ଼କୁ ଏକାବେଳକେ ଯାଇନାହିଁ ।"

ଭୂଦେବ – ଚରିତ୍ରଚିତ୍ରଣ ଏବଂ ଚରିତ୍ରସଙ୍ଗତି ରଚନାର ସର୍ବପ୍ରଧାନ ବିଷୟ । ଦେଖ, କାଳିଦାସଙ୍କ ଭଳି ଜଗତ୍‌ପୂଜ୍ୟ କବି ମଧ ଏକ ଏକ ସ୍ଥାନରେ ସ୍ଖଳିତପଦ ହୋଇଅଛନ୍ତି; ସାମାନ୍ୟ କବିଙ୍କର ତ କଥା ନାହିଁ । ସେମାନେ ଅଳଙ୍କାରକୁ କବିତାର ପ୍ରଧାନ ଅଙ୍ଗ ମନେକରିଥାଆନ୍ତି, କିନ୍ତୁ କାଳିଦାସଙ୍କ ଭଳି କବିଙ୍କର ଏ ଭଳି ଭ୍ରମ ଅପରିମାର୍ଜ୍ଜନୀୟ ।

ମୁଁ– ଏ ବିଷୟରେ ଭବଭୂତିଙ୍କର ବୋଧହୁଏ କେବେହେଁ ପଦସ୍ଖଳନ ଘଟି ନାହିଁ।

ଭୂଦେବ– ଠିକ୍। କାଳିଦାସ ଭବଭୂତିଙ୍କ ଅପେକ୍ଷା ଶକ୍ତିଶାଳୀ ଥିଲେ ସନ୍ଦେହ ନାହିଁ, କିନ୍ତୁ ଭବଭୂତି ଅଧିକ ଚିନ୍ତାଶୀଳ ଥିଲେ ଏବଂ ଚରିତ୍ର ବିଶ୍ଳେଷଣରେ ତାଙ୍କର ଅଧିକତର ସୂକ୍ଷ୍ମଦର୍ଶିତା ଥିଲା। ତୁମେ କହିଲ ଭଲା, ତୁମ ମତରେ ପୃଥିବୀର କେଉଁ କବି ଚରିତ୍ରଚିତ୍ରଣ ବିଷୟରେ ସର୍ବାପେକ୍ଷା କୃତୀ ?

ମୁଁ– ମୋ ମତରେ ହୋମର୍, ସେକ୍ସପିଅର ଏବଂ ବ୍ୟାସଦେବ ଏ ବିଷୟରେ ସର୍ବାପେକ୍ଷା କୃତୀ।

ଭୂଦେବ– ବ୍ୟାସଦେବଙ୍କ ନାମ ସର୍ବଶେଷରେ କହିଲ କାହିଁକି ?

ଏ ବିଷୟରେ ବ୍ୟାସଦେବଙ୍କ ସହିତ ଆଉ କୌଣସି କବିଙ୍କର ତୁଳନା ହୋଇ ନ ପାରେ। ଅନ୍ୟାନ୍ୟ କବିଙ୍କର ନାୟକ ନାୟିକା ଚିତ୍ରମାତ୍ର, ବ୍ୟାସଙ୍କର ନାୟକ ନାୟିକା ପ୍ରତିମୂର୍ତ୍ତି। ବ୍ୟାସଙ୍କ ତଳେ ହୋମର୍।

କଟକର ଅନେକ ଭଦ୍ରବ୍ୟକ୍ତି ଭୂଦେବବାବୁଙ୍କର ସମ୍ମାନାର୍ଥେ ଗୋଟିଏ ସଭା ଆହ୍ୱାନ କରିଥିଲେ। ଉତ୍କଳୀୟ ଓ ବଙ୍ଗବାସୀ ସମସ୍ତେହିଁ ଏ ଅନୁଷ୍ଠାନରେ ଯୋଗଦାନ କରିଥିଲେ। କଟକରେ ଅନେକ ଉତ୍କଳବାସୀଙ୍କ ସହିତ ତାହାଙ୍କର ଆଳାପ ହୋଇଥିଲା। ବିଶେଷତଃ ସୁପ୍ରଥିତନାମା ସ୍ୱର୍ଗତ ନନ୍ଦକିଶୋର ଦାସ ଏବଂ ମଧୁସୂଦନ ରାଓ ମହାଶୟଙ୍କର ସଦ୍‌ଗୁଣାବଳୀରେ ସେ ଅତ୍ୟନ୍ତ ପ୍ରୀତ ହୋଇଥିଲେ ଏବଂ ସମୟ ସମୟରେ ମୋ ନିକଟରେ ସେମାନଙ୍କର ଭୂୟସୀ ପ୍ରଶଂସା କରୁଥିଲେ।

କଟକରେ ଅବସ୍ଥାନ ସମୟରେ ମୁଁ ତାହାଙ୍କ ଅଭିମତ ଜାଣିବା ସକାଶେ ମୋ ରଚିତ ଖଣ୍ଡିଏ ବଙ୍ଗଳା କାବ୍ୟର ପାଣ୍ଡୁଲେଖ୍ୟ ତାଙ୍କୁ ଦେଇଥିଲି। ସେହି କାବ୍ୟ ମାଇକେଲଙ୍କର ବୀରାଙ୍ଗନା କାବ୍ୟ ଧରଣରେ ଲିଖିତ। ସେଥିରେ ଚାରିଗୋଟି ପୌରାଣିକ ଏବଂ ଗୋଟିଏ କାଳ୍ପନିକ ନାୟିକାଙ୍କ ପତ୍ର ଥିଲା। ସେ ମନୋଯୋଗପୂର୍ବକ ସମସ୍ତ ପାଠକଲେ ଏବଂ ଅନୁକୂଳ ମତ ପ୍ରକାଶ କରି କହିଲେ, "ପୁରାତନ ବିଷୟ ଘେନି ଶକ୍ତିର ଓ ଶ୍ରମର ଅଯଥା ବିନିଯୋଗ କର କାହିଁକି ? ତୁମର ପାଣ୍ଡୁଲେଖ୍ୟ ପାଠକରି ମୁଁ ପ୍ରୀତହୋଇଅଛି, ଏହାକୁ ଏଡୁକେଶନ ଗେଜେଟ୍‌ରେ ଛପାଇଦେବି, କିନ୍ତୁ ମୁଁ ଆଶାକରୁଅଛି, ତୁମେ ନୂଆ ଗଢ଼ିବାକୁ ଚେଷ୍ଟାକରିବ। ଦେଖ। ତୁମେ ସୁଭଦ୍ରାର ଚିତ୍ର ଅଙ୍କନ କରିଅଛ, କିନ୍ତୁ ତୁମେ ସହସ୍ର ଚେଷ୍ଟା କଲେହେଁ ବ୍ୟାସଦେବଙ୍କ ସୁଭଦ୍ରାକୁ ଅଧିକତର ସୁନ୍ଦର କରି ପାରିବ ନାହିଁ। ନୂତନ ଗଢ଼ିବାର ଚେଷ୍ଟାକର। ତୁମର ଏହି ପାଞ୍ଚୋଟି କବିତା ମଧ୍ୟରେ ଗୋଟିଏ ନୂଆ ରହିଅଛି ସତ୍ୟ, ମାତ୍ର ତହିଁରେ ଆଦିରସର ଯେ ରୂପ ଅବତାରଣା ହୋଇଅଛି, ତାହା ଉଚିତ ସୀମା ଅତିକ୍ରମ କରିଅଛି। ଆଦିରସର ଏ ରୂପ ଅବତାରଣା ନୈତିକ ସ୍ୱାସ୍ଥ୍ୟର ପ୍ରତିକୂଳ, ସୁତରାଂ ପରିହାର୍ଯ୍ୟ। ଓଡ଼ିଶା ଅତି ସୁନ୍ଦର ଦେଶ। ଏ ଦେଶର ମନୋହର ପ୍ରକୃତି କବିତାର ସମ୍ପୂର୍ଣ୍ଣ ଉପଯୋଗୀ। ଓଡ଼ିଶା ବାସ୍ତବିକ କବିତ୍ୱପୂର୍ଣ୍ଣ ଶିଶୁର ଉପଯୁକ୍ତ ଧାତ୍ରୀ (Meet nurse for a poetic child)। ଓଡ଼ିଶାର ଯେଉଁଆଡ଼କୁ ଚାହିଁବ ନୂଆ ଗଢ଼ିବାର ଉପାଦାନ ଯଥେଷ୍ଟ ରହିଅଛି।"

ମୁଁ କହିଲି, "ନୂଆ ଘଟନା କଳ୍ପନାରୁ ଉଦ୍ଭାବନ କରି ଲେଖିବା ମୋ ଭଳି ଲୋକର ସାଧ୍ୟାତୀତ।"

ଆମ୍ଭେମାନେ କଟକ ପରିତ୍ୟାଗ କରି ବାଲେଶ୍ୱରାଭିମୁଖରେ ଯାତ୍ରାକଲୁଁ। ୭-୮ କ୍ରୋଶ ଉତ୍ତାରୁ ଦର୍ପଣ ରାଜ୍ୟର କେତେଗୁଡ଼ିଏ ପର୍ବତ ଦେଖି ଭୂଦେବବାବୁ ସେହି ରାଜ୍ୟ ସମ୍ବନ୍ଧରେ ମୋତେ କେତେକ କଥା ପଚାରିଲେ। କିଂବଦନ୍ତୀ ଅଛି ଯେ, ଏହି ରାଜ୍ୟର ରାଜାଙ୍କ ଦର୍ପଣ ସେବା ଥିଲା; ଅର୍ଥାତ୍ ପ୍ରାଚୀନ ଉତ୍କଳୀୟ ଗଙ୍ଗବଂଶୀୟ ସମ୍ରାଟଙ୍କର ବେଶବିନ୍ୟାସ ସମୟରେ ଏ ରାଜା ଦର୍ପଣ ଧାରଣ କରୁଥିଲେ। ଏହି ଅଞ୍ଚଳରେ ଜଗନ୍ନାଥ ସଡ଼କର ପାର୍ଶ୍ୱରେ ପର୍ବତର ପାଦଦେଶସ୍ଥ ଚଟି ନିକଟରେ ଗୋଟିଏ ସୁନ୍ଦର ସରୋବର ଅଛି। ଏହି ସରୋବର ନିକଟରେ ଏକଦା ଜନୈକ ଧନଶାଳୀ ଯାତ୍ରୀଙ୍କର ଗୋଟିଏ ଶିଶୁ କ୍ରୀଡ଼ା କରୁ କରୁ ହଠାତ୍ ଅଦୃଶ୍ୟ ହୋଇ କେଉଁଆଡ଼େ ଚାଲିଗଲା, ତାହାର କୌଣସି ସନ୍ଧାନ ମିଳିଲା ନାହିଁ। ଭୂଦେବବାବୁଙ୍କୁ ମୁଁ ଏହି ଘଟନା କହିବାରୁ ସେ ସସ୍ମିତମୁଖରେ କହିଲେ, "ମୁଁ ଏ ସମ୍ବନ୍ଧରେ ଆଉ ଗୋଟିଏ ଗଳ୍ପ ଶୁଣିଥିଲି। ଗଳ୍ପଟି ଏହି –

ଉତ୍କଳ ସମ୍ରାଟଙ୍କ ଯୁବରାଜ କଟକରୁ ଥରେ ଏହି ଦର୍ପଣ ରାଜ୍ୟର ଅରଣ୍ୟରେ ମୃଗୟା କରିବାକୁ ଆସିଥିଲେ। ଦର୍ପଣ ରାଜକନ୍ୟା ତାହାଙ୍କୁ ଦେଖି ତାହାଙ୍କ ପ୍ରତି ଆସକ୍ତା ହେଲେ ଏବଂ ତାହାଙ୍କ ପିତା ଯେତେବେଳେ ଯୁବରାଜଙ୍କ ନିକଟକୁ ଦର୍ପଣ ଘେନି ସେବା ସକାଶେ ଆସିଥିଲେ, ରାଜକନ୍ୟା କୌଶଳରେ ସେହି ଦର୍ପଣ ମଧ୍ୟରେ ନିଜର ପ୍ରତିକୃତି ଏବଂ ଗୋଟିଏ ପ୍ରେମପତ୍ରିକା ସନ୍ନିବିଷ୍ଟ କରି ଦେଇଥିଲେ। ଯୁବରାଜଙ୍କର ଅସାବଧାନତାରେ ସେହି ପ୍ରତିକୃତି ଦର୍ପଣ ରାଜାଙ୍କ ସମ୍ମୁଖରେ ଦର୍ପଣରୁ

ଖସିପଡ଼ିଲା । ଦର୍ପଣରାଜ ନିଜ କନ୍ୟାର ଆଚରଣରେ କ୍ଷୁବ୍ଧ ଏବଂ ଲଜ୍ଜିତ ହେଲେ ଏବଂ ସ୍ୱୀୟ ଭବନକୁ ପ୍ରତ୍ୟାବୃତ୍ତ ହୋଇ କନ୍ୟାକୁ କ୍ରୋଧରେ ତିରସ୍କାର କଲେ । ରାଜକନ୍ୟା ସେହି ଦୁଃଖରେ ଏହି ସରୋବରରେ ଆତ୍ମହତ୍ୟା କରିଥିଲେ । ତୁମେ ସେଦିନ କହୁଥିଲ, ତୁମେମାନେ ନୂଆ ବିଷୟ ପାଅ ନାହିଁ– ଏହିତ ଗୋଟିଏ ନୂଆ ଗଳ୍ପ । ଯତ୍ନପୂର୍ବକ ସଜାଇ ଲେଖିଲେ ଏହି ଗଳ୍ପକୁ କାବ୍ୟରେ ପରିଣତ କରିବା ସହଜ ହେବ ।'' ମୁଁ ସ୍ପଷ୍ଟ ଦେଖିଲି, ମୋହର ପୂର୍ବକଥିତ ବୃତ୍ତାନ୍ତରୁ ଉପାଦାନ ସଂଗ୍ରହକରି ମୋତେ ଉପଦେଶ ଦେବା ସକାଶେ ମେଧାବୀ ଭୂଦେବ ବାବୁ ଏ ଗଳ୍ପ ରଚନାକରିଥିଲେ ।

ବାଲେଶ୍ୱର ପଥରେ ଦିନେ କଥାପ୍ରସଙ୍ଗରେ ମୁଁ ଅଳ୍ପାହାରିତାର ପ୍ରଶଂସାକଲି । ଭୂଦେବବାବୁ କହିଲେ, ''ଆତ୍ମବତ୍ ମନ୍ୟତେ ଜଗତ୍'', ତୁମେ ନିଜ ଭଳି ସମସ୍ତଙ୍କୁ ମନେକରୁଅଛ । ବର୍ତ୍ତମାନ ଲୋକେ ଦୁର୍ବଳ ହୋଇଯାଉଅଛନ୍ତି, ଜୀର୍ଣ୍ଣଶକ୍ତି ନାହିଁ । ଦୁର୍ଭାଗ୍ୟକ୍ରମେ ସ୍ୱାଧୀନତା ଲୋପ ସହିତ ପ୍ରଚୁର ଆହାର୍ଯ୍ୟ ଲାଭ ଦୁର୍ଘଟ ହୋଇଅଛି । ଅଳ୍ପାହାରିତାକୁ ଲୋକେ ଏଭଳି ପ୍ରତିଷ୍ଠା ଦେଇଥାଆନ୍ତି । ପ୍ରାଚୀନ ଆର୍ଯ୍ୟଋଷିମାନେ ଅଳ୍ପାହାରୀ ନ ଥିଲେ । ସେମାନଙ୍କର ଯେଉଁପରି ଉପବାସସହିଷ୍ଣୁତା ଥିଲା, ସେହିପରି ଭୋଜନଶକ୍ତି ମଧ୍ୟ ଥିଲା । ଏହା ନ ହେଲେ ସେମାନେ ମହାଭାରତ, ରାମାୟଣ ଭଳି ବିଶାଳ କୀର୍ତ୍ତି ରଖିଯାଇନଥାନ୍ତେ । ବର୍ତ୍ତମାନ ଆମ୍ଭମାନଙ୍କ ଦେଶରେ ଲୋକେ ଯେପରି ଆହାର କରନ୍ତି, ସେହିପରି ବହି ମଧ୍ୟ ଲେଖନ୍ତି ।''

ବାଲେଶ୍ୱରରେ ସେ ରାଜା ବୈକୁଣ୍ଠନାଥ ଦେ ବାହାଦୁରଙ୍କ ଅତିଥି ହୋଇଥିଲେ । ରାଜାବାହାଦୁର ତାହାଙ୍କ ସତ୍କାରରେ ତ୍ରୁଟି କରିନଥିଲେ । ତାହାଙ୍କର ଉଦ୍ୟାନ ବାଟିକାରେ ଆମ୍ଭେମାନେ ଅବସ୍ଥାନ କରିଥିଲୁଁ । ଦିନେ ମୁଁ ଉଦ୍ୟାନ ମଧ୍ୟସ୍ଥିତ ଗୋଟିଏ ସ୍ଥାନରେ ରାତ୍ରିକାଳରେ ଭୂଦେବ ବାବୁଙ୍କ ଅଦୂରରେ ବସି ନିମଗ୍ନଭାବରେ ତାରାମଣ୍ଡିତ ଆକାଶ ଦେଖୁଥିଲି । ସେ ସେତେବେଳେ କିଛି କହିଲେ ନାହିଁ । କିନ୍ତୁ କିଛିକ୍ଷଣ ଉତ୍ତାରୁ କଥାପ୍ରସଙ୍ଗରେ କହିଲେ, ''ଦେଖ ! ତୁମେ ଏଡ଼େ ନିମଗ୍ନ ହୋଇ ଆକାଶ ଆଡ଼କୁ ଚାହିଁରହିଥିଲ କାହିଁକି ? ସର୍ବଦା ଏପରି କରିବା ଭଲନୁହେ । ଏଥିରେ ନିଜର ଅକିଞ୍ଚିତ୍କରତା ନିତାନ୍ତ ପରିସ୍ଫୁଟ ହୋଇଥାଏ; ଅସ୍ତିତ୍ୱ ପ୍ରାୟ ଲୁପ୍ତ ହୋଇଥାଏ; କର୍ମକ୍ଷେତ୍ରରେ ଲୋକେ ଉଦାସୀନ ହୋଇଯାଆନ୍ତି । ବିରାଟର ଧ୍ୟାନ ଯୋଗୀ ପକ୍ଷରେ ଶୋଭନୀୟ ।''

ବାଲେଶ୍ୱରରେ ରାଜା ବୈକୁଣ୍ଠନାଥଙ୍କର ପ୍ରବୃତ୍ତି ବିମୁଖତା ଏବଂ ସତ୍କାର୍ଯ୍ୟରେ ଅଦମ୍ୟ ଉତ୍ସାହ ଦେଖି ସେ ତାଙ୍କୁ ମୁକ୍ତକଣ୍ଠରେ ପ୍ରଶଂସାକରିଥିଲେ ।

ବାଲେଶ୍ୱର ପରିତ୍ୟାଗ ପୂର୍ବରୁ ସେ ମୋତେ ଡେପୁଟି ଇନସ୍‌ପେକ୍ଟର୍ ପଦରୁ ଇନ୍‌ସ୍‌ପେକ୍ଟର୍ ପଦକୁ ଉନ୍ନୀତ କରି ଓଡ଼ିଶାକୁ ତାହାଙ୍କ ବିଭାଗରୁ ସ୍ୱତନ୍ତ୍ର କରିଦେବା ସକାଶେ ଦୃଢ଼ରୂପେ ଗଭର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିଥିଲେ । କୌଣସି ଓଡ଼ିଆ ପ୍ରତି କୌଣସି ବଙ୍ଗାଳୀ ଏତେ ପରିମାଣରେ ଉଦାରତା ଦେଖାଇ- ଅଛନ୍ତି ବୋଲି ମୋହର ସ୍ମରଣ ହେଉନାହିଁ । ସେଥର ବାଲେଶ୍ୱରରୁ ମୁଁ ତାହାଙ୍କ ନିକଟରୁ ବିଦାୟ ଗ୍ରହଣ କରି କଟକ ଫେରିଲି । ସେ ମେଦିନୀପୁର ମାର୍ଗରେ ହୁଗୁଳୀ ଯାତ୍ରାକଲେ ।

ବସ୍ତରାନ୍ତେ ତାହାଙ୍କର ପୁନଶ୍ଚ ଓଡ଼ିଶାକୁ ଶୁଭାଗମନ ହେଲା । ଏଥିରେ ତାହାଙ୍କ ସହିତ ତାହାଙ୍କର କନିଷ୍ଠପୁତ୍ର ମୁକୁନ୍ଦବାବୁ ଆସିଥିଲେ । ଏଥର ମଧ୍ୟ ସେ ଭୁବନେଶ୍ୱର, ପୁରୀ ପ୍ରଭୃତି ଉତ୍କଳର ପ୍ରଧାନ ସ୍ଥାନସମୂହ ପରିଦର୍ଶନ କରିଥିଲେ । ନୂତନ ସ୍ଥାନ ମଧ୍ୟରେ କୋଣାର୍କ ଓ ଯାଜପୁର ଦେଖିଥିଲେ । କୋଣାର୍କ (ଅର୍କକ୍ଷେତ୍ର) ଶ୍ରୀକ୍ଷେତ୍ରର ଐଶାନ୍ୟ କୋଣରେ ୧୧ କ୍ରୋଶ ଦୂରରେ ଅବସ୍ଥିତ । ଏଠାରେ ଦିଗନ୍ତବ୍ୟାପୀ ସୈକତ ପ୍ରାନ୍ତରରେ ପ୍ରାଚୀନ ସୂର୍ଯ୍ୟମନ୍ଦିରର ଭଗ୍ନାବଶେଷ ବର୍ତ୍ତମାନ ସୁଦ୍ଧା ବିରାଜିତ । ଅନତିଦୂରରେ ନୀଳାୟମାନ ସନାତନ ଅମ୍ବୁରାଶିର ଚିରନ୍ତନ କଲ୍ଲୋଳ । ପ୍ରାଚୀନ ମନ୍ଦିର ଭୂମିସାତ୍ ହୋଇ ବାଲୁକାରେ ପ୍ରୋଥିତ ହୋଇଅଛି । ବର୍ତ୍ତମାନ କେବଳ ଭଗ୍ନ ମୁଖଶାଳା ଦିଶେ । ଏହି ମୁଖଶାଳାର କାରୁକାର୍ଯ୍ୟ ଭାରତରେ ଅତୁଳନୀୟ କହିଲେ ଅତ୍ୟୁକ୍ତି ହେବନାହିଁ । ଭୂଦେବବାବୁ ଓ ମୁକୁନ୍ଦବାବୁଙ୍କ ସମଭିବ୍ୟାହାରରେ ମୁଁ କୋଣାର୍କ ଦେଖିବାକୁ ଯାଇଥିଲି । ପୁରୀଠାରୁ କୋଣାର୍କର ପଥ ନିରବଚ୍ଛିନ୍ନ ବାଲୁକାପ୍ରାନ୍ତର । ଏହି ପ୍ରାନ୍ତରର ପୂର୍ବରେ ସମୁଦ୍ର, ପଶ୍ଚିମରେ ସର ନାମକ ଗୋଟିଏ ପ୍ରକାଣ୍ଡ ହ୍ରଦ । ସ୍ଥାନେ ସ୍ଥାନେ ବ୍ୟାଘ୍ରସଙ୍କୁଳ ନିବିଡ଼ କେତକୀବନ । କେଉଁଠାରେ ଅବା ସାଗର ସମୀରରେ ଚିରମର୍ମରାୟମାଣ ଝାଉଁବଣ । ଏହି ପ୍ରାନ୍ତରରେ ଅସଂଖ୍ୟ ହରିଣପଲ ବିଚରଣ କରନ୍ତି । ଆମ୍ଭେମାନେ ରାତ୍ରିରେ ପଥ ହରାଇ ଅଗତ୍ୟା ଅନାବୃତ ବାଲୁକା ପ୍ରାନ୍ତରରେ ଅବସ୍ଥାନ କଲୁଁ । ସେହି ରାତ୍ରରେ ମୁଁ ଆମ୍ଭମାନଙ୍କର କୌଣସି ସଙ୍ଗୀ ପଥିକଙ୍କ ଅନ୍ୱେଷଣରେ ଯାଇ ପ୍ରାୟ ବ୍ୟାଘ୍ର ମୁଖରେ ପଡ଼ିଥିଲି । ନକ୍ଷତ୍ର ଦେଖି ଏବଂ ପୂର୍ବଦିଗରେ ସମୁଦ୍ରକଲ୍ଲୋଳ ଶୁଣି ଆମ୍ଭେ-

ମାନେ ଦିଗ ନିର୍ଣ୍ଣୟ କରୁଥିଲୁଁ। ପ୍ରତ୍ୟୁଷରୁ ଭୂଦେବବାବୁ ଶଯ୍ୟାରୁ ଉଠିବା ମାତ୍ରକେ ସମ୍ମୁଖରେ ଯୋଡ଼ିଏ ବାଘ ଦେଖିଲେ। ସେ ଇତିପୂର୍ବେ ପ୍ରକୃତିର ନିରଙ୍କୁଶ ଅବସ୍ଥାରେ କେବେହେଁ ବ୍ୟାଘ୍ର ଦେଖି ନଥିଲେ; ଏହି ହେତୁରୁ ଏ ଦୃଶ୍ୟ ତାହାଙ୍କୁ ଅଭିଭୂତ କରିପକାଇଥିଲା।

ସୂର୍ଯ୍ୟୋଦୟ ଉତ୍ତାରୁ ଆମ୍ଭେମାନେ କୋଣାର୍କ ପଥରେ ଅଗ୍ରସର ହେଲୁଁ। ଅଳ୍ପଦୂର ଯିବା ଉତ୍ତାରୁ କୋଣାର୍କର ମୁଖଶାଳା ଦିଶିଲା। ଦୂରରୁ ଏହି ମୁଖଶାଳାର ପ୍ରଥମ ଦୃଷ୍ଟି ନିତାନ୍ତ ନୈରାଶ୍ୟାବହ। ଆମ୍ଭମାନଙ୍କର ମନେହେଲା ଯେ, ଆମ୍ଭେମାନେ କାହିଁକି ଏତେ ପରିଶ୍ରମ ସ୍ୱୀକାର କରି ଏହି ଯତ୍ ସାମାନ୍ୟ ମନ୍ଦିର ଦେଖିବାକୁ ଆସିଲୁଁ? ଏତେ ପରିଶ୍ରମର କ'ଣ ଏହି ସତ୍କାର? କିନ୍ତୁ ଯେତେ ନିକଟବର୍ତ୍ତୀ ହେଲୁଁ, କ୍ରମଶଃ ପ୍ରୀତି ଓ ବିସ୍ମୟ ପୂର୍ବ ନୈରାଶ୍ୟର ସ୍ଥାନ ଅଧିକାରକଲା। ଆମ୍ଭେମାନେ ମନ୍ଦିରସମ୍ମୁଖରେ ଉପସ୍ଥିତ ହୋଇ ସ୍ତବ୍ଧ ଭାବରେ ଏବଂ ବିସ୍ମୟସ୍ତିମିତ ନେତ୍ରରେ ତାହାର ଗମ୍ଭୀର ମହାନ୍ ମୂର୍ତ୍ତି ଦେଖିବାରେ ଲାଗିଲୁଁ। ବାସ୍ତବିକ ଏ ଦୃଶ୍ୟ ଇଂରେଜ କବି ବାଇରନ୍‌ଙ୍କର "Those days are gone, but beauty still is there"– ସେଦିନ ସବୁ ଗଲାଣି, ତଥାପି ସୌନ୍ଦର୍ଯ୍ୟ ରହିଅଛି, ଏହି ପଂକ୍ତିର ସମ୍ପୂର୍ଣ୍ଣ ସ୍ମାରକ। ଭୂଦେବ ବାବୁଙ୍କ ଚକ୍ଷୁରେ ଅଶ୍ରୁକଣା ଦିଶିଲା।

ଜରାଜୀର୍ଣ୍ଣ ମୁଖଶାଳାର ଉପରିଭାଗରେ ବଂଶୀନାଦିନୀ ଗୋଟିଏ ସ୍ତ୍ରୀ ପ୍ରତିମୂର୍ତ୍ତିର ଅଦ୍ଭୁତ ସୌନ୍ଦର୍ଯ୍ୟ ଦେଖି ତାହା ମୁକୁନ୍ଦବାବୁଙ୍କୁ ଏବଂ ମତେ ଦେଖାଇ ସେ କହିଲେ, "ଏହି ପ୍ରତିମୂର୍ତ୍ତି ଦେଖିଲେ ଗ୍ରୀକ୍ ସେଫୋର କଥା ମନେପଡ଼େ ନାହିଁ କି?"

ଆମ୍ଭେମାନେ ନିତାନ୍ତ ଶ୍ରାନ୍ତ ହୋଇଥିଲୁଁ। ରୌଦ୍ର ମଧ ପ୍ରଖର ହେଲା। ଦେଉଳର ଅଦୂରବର୍ତ୍ତୀ ଗୋଟିଏ ପ୍ରକାଣ୍ଡ ପ୍ରସ୍ତରରେ ସୁନ୍ଦର ନବଗ୍ରହ ମୂର୍ତ୍ତିଗୁଡ଼ିକ ଦେଖି ବିଶାଳ ବଟବୃକ୍ଷ ଛାୟାରେ ଆଶ୍ରୟ ଗ୍ରହଣ କଲୁଁ। ଛାୟାରେ ବସି ମୁଁ ମୁଖଶାଳା ଆଡ଼କୁ ଚାହିଁ ଭୂଦେବ ବାବୁଙ୍କୁ କହିଲି, "ଆପଣ ସେହି ପ୍ରତିମୂର୍ତ୍ତି ଦେଖି ଗ୍ରୀକ୍ ସେଫୋର ସ୍ମରଣକଲେ। କୌଣସି କୌଣସି ପ୍ରତ୍ନତତ୍ତ୍ୱବିଦ୍‌ଙ୍କ ମତରେ ଏହି ମନ୍ଦିରର ଗଠନକାର୍ଯ୍ୟ ଗ୍ରୀକ୍‌ମାନଙ୍କଦ୍ୱାରା ସମ୍ପନ୍ନ ହୋଇଥିଲା, ଏହି ମତବାଦ ମଧ ଆପଣ ଦେଖିଥିବେ।"

ଭୂଦେବବାବୁ ଯେପରି କିଞ୍ଚିତ କ୍ଷୁଣ୍ଣ ହୋଇ କହିଲେ, "ସେ ରୂପ ମତବାଦ ମୁଁ ଦେଖିଅଛି ସତ୍ୟ, କିନ୍ତୁ ଏହି ମତବାଦ ଉପରେ ମୁଁ ଟିକିଏ ଟୀକା କରିବାକୁ ଇଚ୍ଛୁକ। ଗ୍ରୀକ୍‌ମାନେ ଭାରତକୁ ଆସି ଆମ୍ଭମାନଙ୍କ କୁମାରସମ୍ଭବ କାବ୍ୟ ଲେଖିଦେଇ ଯାଇଅଛନ୍ତି।"

ଅପରାହ୍ନରେ ଆମ୍ଭେମାନେ ପୁନଶ୍ଚ ମନ୍ଦିର ଦେଖିବାକୁ ଗଲୁଁ। ମନ୍ଦିର ଦେଖିବା ସମୟରେ ଆମ୍ଭେମାନେ ସ୍ଥାନେ ସ୍ଥାନେ ବ୍ୟାଘ୍ରର ପଦଚିହ୍ନ ଦେଖି ଭାବିଲୁଁ, ସମ୍ଭବତଃ ସେହି ଭଗ୍ନାବଶେଷ ମଧ୍ୟରେ ବ୍ୟାଘ୍ର ଆଶ୍ରୟ ନେଇଥିବ। ସ୍ୱସ୍ଥାନକୁ ଫେରିଆସି ଆମ୍ଭେମାନେ ରାତ୍ରିରେ ନିରାପଦରେ ରହିବା ସକାଶେ ସ୍ଥାନେ ସ୍ଥାନେ ଅଗ୍ନି ଜାଳିଲୁଁ। ପ୍ରଭାତ ହେବା ମାତ୍ରେ ପୁରୀ ଯାତ୍ରା କଲୁଁ, ତତ୍‌ପରେ ଆମ୍ଭେମାନେ ପୁରୀରୁ ଫେରି ଯାଜପୁର ଗଲୁଁ।

ଯାଜପୁରରେ ଅବସ୍ଥାନ ସମୟରେ ଭୂଦେବ ବାବୁ ଆମ୍ଭମାନଙ୍କୁ ସଂଗରେ ଘେନି ସପ୍ତମାତୃକା, ଶୁଭସ୍ତମ୍ଭ ପ୍ରଭୃତି ଦର୍ଶନ କରିଥିଲେ। ଯାଜପୁରର ସୁବିଖ୍ୟାତ ଶୁଭସ୍ତମ୍ଭର ସୌନ୍ଦର୍ଯ୍ୟ ଦର୍ଶନରେ ସେ ଅତ୍ୟନ୍ତ ମୁଗ୍ଧହୋଇଥିଲେ।

ଓଡ଼ିଶାରେ ଏହି ଭ୍ରମଣ ସମ୍ବନ୍ଧରେ ମୋର ଅଧିକ ବକ୍ତବ୍ୟ ନାହିଁ। ଶାସ୍ତ୍ରଚର୍ଚ୍ଚା ଏବଂ ସାହିତ୍ୟଚର୍ଚ୍ଚା ବ୍ୟତୀତ କୌଣସି ଦିନ ବୃଥା ଯାଉନଥିଲା। ପ୍ରାୟ ପ୍ରତ୍ୟହ କୌଣସି ପ୍ରକାର କୌତୁକାବହ ପ୍ରସଙ୍ଗ ଉପସ୍ଥିତ ହେଉଥିଲା। ସମସ୍ତ ଘଟନା ରୀତିମତ ଲେଖିରଖିଥିଲେ ଗୋଟିଏ ସୁବୃହତ୍ ପୁସ୍ତକ ହୋଇଥାଆନ୍ତା।

ଏକ ବର୍ଷ ଉତ୍ତାରୁ ମୁଁ ହୁଗୁଳୀର ଚୁଚୁଁଡ଼ାରେ ଭୂଦେବବାବୁଙ୍କ ଗୃହରେ ଅତିଥି ହୋଇଥିଲି। ପ୍ରାୟ ୨୦-୨୫ ଦିନ ମୁଁ ତାହାଙ୍କ ଘରେ ଅବସ୍ଥାନ କରିଥିଲି। ଏଭଳି ଆତିଥେୟତା ମୁଁ କେଉଁଠାରେ ଦେଖିନାହିଁ। ତାହାଙ୍କ ଗୃହର ସୁବ୍ୟବସ୍ଥା, ଆଚାରନିଷ୍ଠା, ଗୃହର ପ୍ରତ୍ୟେକ ବ୍ୟକ୍ତିଙ୍କ ସୁଶୀଳତା ଏବଂ ବିନୟ ମଧୁର ବ୍ୟବହାରରେ ମୁଁ ଏକାବେଳକେ ମୁଗ୍ଧ ଓ ଆତ୍ମବିସ୍ମୃତ ହୋଇଯାଇଥିଲି। ଅତିଥିର ମନ ବୁଝି ଏଭଳି ସେବା ଅଳ୍ପ ଗୃହସ୍ଥଙ୍କ ଘରେ ଦୃଷ୍ଟ ହୋଇଥାଏ। ମୁଁ ଭୂଦେବ ବାବୁଙ୍କ ଗୃହ ଭଳି ଏବଂ ଭୂଦେବବାବୁଙ୍କ ଭଳି ଗୃହସ୍ଥ ପ୍ରାୟ କେଉଁଠାରେ ଦେଖିନାହିଁ। ଭବଭୂତିଙ୍କ "ସୁଚରିତ ଚାରୁସ୍ତମ୍ଭାଧାର ଗୃହ" ଯେବେ କେଉଁଠାରେ ଥାଏ, ତାହା ଭୂଦେବବାବୁଙ୍କ ଗୃହରେ ଦେଖିଥିଲି। ବସ୍ତୁତଃ ପାରିବାରିକ ପ୍ରବନ୍ଧ, ଆଚାର ପ୍ରବନ୍ଧ ଓ ସାମାଜିକ ପ୍ରବନ୍ଧ ପ୍ରଭୃତି ଅମୂଲ୍ୟ ପୁସ୍ତକସମୂହର ସୁବିଜ୍ଞ ଲେଖକଙ୍କ ପକ୍ଷରେ ସ୍ୱଗୃହର ସୁବ୍ୟବସ୍ଥା ସମୀଚୀନ, ଏଥିରେ ସନ୍ଦେହ ନାହିଁ।

ତାହାଙ୍କ ସହିତ ମୁଁ ପାଟଣା, ବୀରଭୂମ, ଗୟା ପ୍ରଭୃତି ଜିଲ୍ଲାରେ ପରିଭ୍ରମଣ କରିଥିଲି। ଏହି ପରିଭ୍ରମଣ ସମ୍ବନ୍ଧରେ ମୋହର ଅନେକ କଥା ସ୍ମରଣ ଥିଲେହେଁ ବାହୁଲ୍ୟ ଭୟରେ ଲେଖିଲି ନାହିଁ।

# ନାରୀକବି ନଗେନ୍ଦ୍ରବାଳା ସରସ୍ୱତୀଙ୍କ ସଂକ୍ଷିପ୍ତ ଜୀବନୀ

ବଙ୍ଗଳା ୧୨୮୪ ସାଲ ବା ୧୮୭୮ ଖ୍ରୀଷ୍ଟାବ୍ଦରେ ଶ୍ରୀମତୀ ନଗେନ୍ଦ୍ରବାଳା ସରସ୍ୱତୀ ତାଙ୍କର ମାତୁଳାଳୟ, ହୁଗୁଳୀ ଜିଲ୍ଲା ଅନ୍ତର୍ଗତ ଭଦ୍ରେଶ୍ୱର ଷ୍ଟେସନର ପଶ୍ଚିମ ଦିଗରେ ଅବସ୍ଥିତ ପାଲଡ଼ା ନାମକ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତାଙ୍କ ନାମ ଶ୍ରୀଯୁକ୍ତ ବାବୁ ନୃତ୍ୟ-ଗୋପାଳ ସରକାର, ମାତାଙ୍କ ନାମ ଶ୍ରୀମତୀ କୁସୁମ କାମିନୀ ଦାସୀ। ନୃତ୍ୟଗୋପାଳ ବାବୁ ସଂପ୍ରତି ମୁନ୍‌ସଫର କାର୍ଯ୍ୟ କରୁଛନ୍ତି। ତାରକେଶ୍ୱର ରେଲୱେର ସିଂଗୁର ଷ୍ଟେସନ ଅଦୂରବର୍ତ୍ତୀ ଦଲୁଇଗାଛା ଗ୍ରାମରେ ତାଙ୍କର ପ୍ରଥମ ଘର ଥିଲା। କେତେବର୍ଷ ହେଲା ହୁଗୁଳୀର କାଟପରା ଲେନ୍‌ରେ ନୂଆଘର କରି ସେ ଅବସ୍ଥାନ କରୁଅଛନ୍ତି। ଏମାନେ ଦକ୍ଷିଣଭାରତୀୟ କାୟସ୍ଥ।

ଅଢ଼େଇବର୍ଷ ବୟସରେ ନଗେନ୍ଦ୍ରବାଳା ପିତାଙ୍କ ସହିତ ଚଟ୍ଟଗ୍ରାମ ଗମନକରନ୍ତି। ତେରବର୍ଷ ବୟଃକ୍ରମ ପର୍ଯ୍ୟନ୍ତ ସେ ଅଧିକାଂଶ ସମୟ ଏହିଠାରେ ଅବସ୍ଥାନ କରିଥିଲେ। ଏହା ପୂର୍ବରୁ ଦଶବର୍ଷ ବୟସରେ ହୁଗୁଳୀ ଜିଲ୍ଲାର ସୁଖଡ଼ିୟା ଗ୍ରାମର ଅତି ସମ୍ଭ୍ରାନ୍ତ ବଂଶୀୟ ଶ୍ରୀଯୁକ୍ତ ବାବୁ ଖଗେନ୍ଦ୍ରନାଥ ମିତ୍ର (ମୁସ୍ତୋଫୀ) ମହାଶୟଙ୍କ ସହିତ ନଗେନ୍ଦ୍ରବାଳାଙ୍କର ବିବାହ ହୋଇଥିଲା।

ବିବାହର ଅବ୍ୟବହିତ ପରେ ପ୍ରାୟ ଏକ ବର୍ଷ ଧରି ନଗେନ୍ଦ୍ରବାଳା ପାଲଡାରେ ନିଜ ମାତାମହୀଙ୍କ ନିକଟରେ ଅବସ୍ଥାନ କରିଥିଲେ। ତେରବର୍ଷ ବୟସରେ ସେ ଶ୍ୱଶୁରାଳୟ ଗମନକରନ୍ତି। ଏହି ସମୟରେ ଦାରୁଣ ଯକ୍ଷ୍ମାରୋଗରେ ଆକ୍ରାନ୍ତ ହୋଇ ପାଞ୍ଚବର୍ଷ କାଳ ଏହି ରୋଗ ତଥା ଅନ୍ୟାନ୍ୟ ଔପସର୍ଗିକ ରୋଗର ତୀବ୍ର ଯନ୍ତ୍ରଣା ଭୋଗକରନ୍ତି। ଏହି ଅବସ୍ଥାରେ ବାୟୁ ପରିବର୍ତ୍ତନ ଉଦ୍ଦେଶ୍ୟରେ ମୁର୍ଶିଦାବାଦ, ଯାଜପୁର (ଓଡ଼ିଶା) ପ୍ରଭୃତି ସ୍ଥାନରେ ପିତାଙ୍କ ସହିତ ଓ ମଝିରେ ମଝିରେ ସୁଖଡ଼ିୟା ଗ୍ରାମର ଶ୍ୱଶୁରାଳୟରେ ମଧ୍ୟ ସେ ଅବସ୍ଥାନ କରୁଥିଲେ।

ସମ୍ଭବତଃ ଚଟ୍ଟଗ୍ରାମ ଓ ଓଡ଼ିଶା ପରିଭ୍ରମଣ ସମୟରେ ସେ କବିତ୍ୱର ଉଦ୍ଦୀପକ ଓ ପରିପୋଷଣ ଉପଯୋଗୀ ପର୍ବତ ସମୁଦ୍ର ପ୍ରଭୃତି ପ୍ରକୃତିର ମହାନ ଦୃଶ୍ୟ ନିଚୟ ଦର୍ଶନ କରିବାର ସମ୍ପୂର୍ଣ୍ଣ ସୁବିଧା ପାଇଥିଲେ। ତା'ପରେ ଖଗେନ୍ଦ୍ରବାବୁଙ୍କ ସହିତ ହୁଗୁଳୀରେ ଆସି ଅବସ୍ଥାନ କରିଥିଲେ। ଖଗେନ୍ଦ୍ରବାବୁ ଶାକ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ। ଏହାଙ୍କର ପ୍ରକୃତି ଅତି ସଦାଶୟ ଓ ସତ୍ତ୍ୱଗୁଣପ୍ରଧାନ। ଗୋଟିଏ ଦିଗରେ ସେ ଯେଉଁଭଳି କାର୍ଯ୍ୟକୁଶଳ ଓ ତାଙ୍କର ବିଷୟବୁଦ୍ଧି ଯେଉଁଭଳି ତୀକ୍ଷ୍ଣ, ଅପର ଦିଗରେ କବିତା, ସାଧାରଣ ସାହିତ୍ୟ ଓ ଧର୍ମଗ୍ରନ୍ଥ ଅନୁଶୀଳନରେ ମଧ୍ୟ ତାଙ୍କର ବିଶେଷ ଆସ୍ଥା ପରିଲକ୍ଷିତ ହୁଏ। ନଗେନ୍ଦ୍ରବାଳାଙ୍କର ନିକଟ ଆତ୍ମୀୟ ଶ୍ରୀଯୁକ୍ତ ଅମରନାଥ ମିତ୍ର, ଖଗେନ୍ଦ୍ରବାବୁଙ୍କର ଜଣେ ବିଶିଷ୍ଟ ବନ୍ଧୁ। ତାଙ୍କରି ସଂସର୍ଗ ଫଳରେ ଖଗେନ୍ଦ୍ରବାବୁଙ୍କର ବୈଷ୍ଣବ ଧର୍ମ ପ୍ରତି ଐକାନ୍ତିକ ଶ୍ରଦ୍ଧା ସୃଷ୍ଟି ହୁଏ। ବୈଷ୍ଣବ ଧର୍ମରେ ତାଙ୍କର ଅତ୍ୟଧିକ ଶ୍ରଦ୍ଧାହେତୁ ହଟ୍‌ହାଲି ସହରନିବାସୀ ଭକ୍ତପ୍ରବର ପୂଜ୍ୟପାଦ ଶ୍ରୀଯୁକ୍ତ ନିତ୍ୟସଖା ମୁଖୋପାଧ୍ୟାୟ ମହାଶୟ ତାହାଙ୍କୁ ସସ୍ତ୍ରୀକ ବୈଷ୍ଣବ ଧର୍ମରେ ଦୀକ୍ଷିତ କରନ୍ତି। ସଦ୍‌ଗୁରୁଙ୍କର ପୁଣ୍ୟପ୍ରଭାବ ଓ ସତ୍ ଉପଦେଶ ଫଳରେ ପତିପତ୍ନୀ ଅଶେଷ ଶ୍ରେୟଃ ଲାଭକରିବାକୁ ସମର୍ଥ ହୋଇଛନ୍ତି। ଫଳତଃ ମୁଖୋପାଧ୍ୟାୟ ମହାଶୟଙ୍କ ସହିତ ଏମାନଙ୍କର ଏଇ ମଣିକାଞ୍ଚନ ଯୋଗ ଭଳି ଶ୍ଳାଘନୀୟ ସମ୍ବନ୍ଧ ଏମାନଙ୍କ ଜୀବନରେ ଏକ ନୂତନ ଯୁଗ ପ୍ରବର୍ତ୍ତିତ କରିଅଛି।

ଦୀକ୍ଷା ଗ୍ରହଣ ପରେ ଖଗେନ୍ଦ୍ରବାବୁ ଆପଣାର ମନସ୍ୱିନୀ ପତ୍ନୀଙ୍କୁ ସଂଗରେ ନେଇ ଓଡ଼ିଶା ଓ ପଶ୍ଚିମରେ ନାନା ତୀର୍ଥ ସନ୍ଦର୍ଶନ କରାଇଥିଲେ।

ଶ୍ରୀମତୀ ନଗେନ୍ଦ୍ରବାଳା ଉପଯୁକ୍ତ ପିତାମାତାଙ୍କର ଉପଯୁକ୍ତ ଦୁହିତା। ତାଙ୍କର ମାତା ଅତୀବ ବୁଦ୍ଧିମତୀ, ସୁଗୃହିଣୀ, ଗମ୍ଭୀରା ଓ ସାଧାରଣ ସ୍ତ୍ରୀ-ସୁଲଭ ଦୁର୍ବଳତାର ଊର୍ଦ୍ଧ୍ୱତନ ସ୍ତରରେ ଅବସ୍ଥିତ। ପିତା ନୃତ୍ୟଗୋପାଳବାବୁ ଆପଣାର ସ୍ୱଭାବସିଦ୍ଧ ସହୃଦୟତା ପାଇଁ ସର୍ବଜନପ୍ରିୟ। ସାହିତ୍ୟ-ରସିକତା ସହୃଦୟତା ସାପେକ୍ଷ। ପ୍ରାୟତଃ ବାଲ୍ୟକାଳରୁ ସେ ସାହିତ୍ୟଚର୍ଚ୍ଚା ପ୍ରତି ଅନୁରାଗୀ ଓ ଅବକାଶ ମିଳିଲେ ସମୟସମୟରେ କବିତା ରଚନା କରନ୍ତି। ନଗେନ୍ଦ୍ରବାଳା ସ୍ନେହଶୀଳ ପିତାଙ୍କର ନିରବଦ୍ୟ-ଆଦର୍ଶ ଅନୁସରଣ କରିବାରେ ତ୍ରୁଟି କରିନାହାନ୍ତି। ସେହି ଆଦର୍ଶ ସର୍ବଦା ଦୃଷ୍ଟି ସମ୍ମୁଖରେ ଥିବାରୁ ଅଳ୍ପ ବୟସରୁ ସେ ସାହିତ୍ୟ ଅନୁଶୀଳନରେ ପ୍ରବୃତ୍ତ ହୁଅନ୍ତି ଓ ପ୍ରାୟତଃ ବାରବର୍ଷ ବୟସରୁ ହିଁ କବିତା ରଚନା ଆରମ୍ଭକରିଛନ୍ତି। ସାମୟିକ କ୍ରମାନୁସାରେ ତାଙ୍କର ରଚିତ ପୁସ୍ତକଗୁଡ଼ିକର ନାମ

ନିମ୍ନରେ ପ୍ରଦତ୍ତ ହେଲା :
୧। ଦାନବ ନିର୍ବାଣ, ୨। ଉଷାପରିଣୟ, ୩। ମର୍ମଗାଥା, ୪। ଚାମେଲୀ, ୫। ଗୀତାବଳୀ, ୬। ପ୍ରେମଗାଥା, ୭। ବ୍ରଜଗାଥା, ୮। ନାରୀଧର୍ମ, ୯। ଗାର୍ହସ୍ଥ୍ୟ ଧର୍ମ, ୧୦। ଅମିୟଗାଥା, ୧୧। ଶିଶୁମଙ୍ଗଳ, ୧୨। କୁସୁମଗାଥା (ଅସମ୍ପୂର୍ଣ୍ଣ)।

ଏଇ ବାରଖଣ୍ଡ ପୁସ୍ତକ ମଧ୍ୟରୁ କେବଳ ମର୍ମଗାଥା, ପ୍ରେମଗାଥା ଓ ନାରୀଧର୍ମ ଏହା ପୂର୍ବରୁ ମୁଦ୍ରିତ ଓ ପ୍ରଚାରିତ ହୋଇଥିଲା। ସଂପ୍ରତି ଅମିୟଗାଥା ପ୍ରକାଶିତ ହେଲା। ଅବଶିଷ୍ଟ ପୁସ୍ତକଗୁଡ଼ିକ ଏବେ ମଧ୍ୟ ପାଣ୍ଡୁଲିପି ଅବସ୍ଥାରେ ପଡ଼ିରହିଅଛି।

ଏତଦ୍‌ବ୍ୟତୀତ ସେ ବାମାବୋଧିନୀ, ନବ୍ୟଭାରତ, ସାହିତ୍ୟ, ଜନ୍ମଭୂମି, ପୂର୍ଣ୍ଣିମା, ଆନନ୍ଦବଜାର ପ୍ରଭୃତି ନାନାବିଧ ମାସିକ ଓ ସାପ୍ତାହିକ ପତ୍ରିକାରେ ସମୟ-ସମୟରେ କବିତା ଆଦି ଲେଖିଛନ୍ତି ଓ ତାଙ୍କର ରଚନାସକଳ ସବୁବେଳେ ଆଗ୍ରହ ଓ ଆଦର ସହିତ ପରିଗୃହୀତ ହୋଇଛି।

ନଗେନ୍ଦ୍ରବାଳାଙ୍କର ପ୍ରତ୍ୟେକ କାବ୍ୟ ଉଜ୍ଜ୍ୱଳ ପ୍ରତିଭାର ଅମର ମୁଦ୍ରାରେ ମୁଦ୍ରିତ ହେଲେ ' କାବ୍ୟଗୁଡ଼ିକ ଉତ୍ତରୋତ୍ତର ଉତ୍କର୍ଷୋନ୍ମୁଖ ( ହୋଇଥାଏ। କି ପଦ୍ୟ, କି ଗଦ୍ୟ— ଉଭୟବିଧ ରଚନାରେ ସେ ସିଦ୍ଧହସ୍ତ। ତାହାଙ୍କର ଗଦ୍ୟ ରଚନା ମଧ୍ୟ କବିତ୍ୱପୂର୍ଣ୍ଣ। ତାଙ୍କର ରଚନା, ବିଶେଷତଃ ପଦ୍ୟ ରଚନାରେ ଏଭଳି ଏକ ମଧୁର ଆକର୍ଷଣୀ ଶକ୍ତି ନିହିତ, ଯାହା କେବଳ ସହୃଦୟ ସଂବେଦ୍ୟ— ଭାଷାରେ ତାହା ପ୍ରକାଶ କରିହେବନାହିଁ। କବିତାରେ ସେ ଆପଣା ହୃଦୟ ସୌନ୍ଦର୍ଯ୍ୟ ଅନୁରୂପ ଏକ ଅପାର୍ଥିବ ସୌନ୍ଦର୍ଯ୍ୟ ପରିସ୍ଫୁଟ କରିଛନ୍ତି। କବିତାଗୁଡ଼ିକ ପଢ଼ିଲେ ମନେହୁଏ — ସଙ୍ଗୀତ ରାଜ୍ୟରେ ବାମାକଣ୍ଠର ମାଧୁରୀ ଯେଭଳି ସର୍ବବାଦୀସମ୍ମତ, କବିତା ରାଜ୍ୟରେ ମଧ୍ୟ ସେହିଭଳି ବାମାକଣ୍ଠର ବିଶେଷତ୍ୱ ରହିଛି। ସଚରାଚର ପ୍ରଚଳିତ ଅତି ସହଜ ବଙ୍ଗଳା ଭାଷା ଉଚ୍ଚ ତଥା ଗଭୀର ଭାବ ପ୍ରକାଶର କିଭଳି ଉପଯୋଗୀ, ନଗେନ୍ଦ୍ରବାଳାଙ୍କର ପ୍ରାୟ ପ୍ରତ୍ୟେକ କବିତାରେ ଏହାର ଭୂରି ଭୂରି ଦୃଷ୍ଟାନ୍ତ ସୁଲଭ। ଜୀବନରେ ସେ ନାନାବିଧ ଦୈହିକ ଓ ମାନସିକ ଯନ୍ତ୍ରଣା ଭୋଗକରିଛନ୍ତି ଓ ତାଙ୍କ ପ୍ରଣୀତ କାବ୍ୟାବଳୀରେ ଏହି ଯନ୍ତ୍ରଣାଜନିତ ତୀବ୍ର ବିଷାଦ ଓ ନୈରାଶ୍ୟର ଛାୟା ପ୍ରତିବିମ୍ବିତ ହୋଇଅଛି। ମହାକବି ବାଇରନ୍‌ଙ୍କ ଭଳି ଏହାଙ୍କ କବିତାର କୌଣସି କୌଣସି ଅଂଶକୁ କିୟତ୍ ପରିମାଣରେ ତାଙ୍କ ନିଜ ଜୀବନର ଚିତ୍ରରୂପେ ଅଭିହିତ କରାଯାଇପାରେ। ଅଗୁରୁ ଧୂପଭଳି ସେ ନିଜେ ଦଗ୍ଧହୋଇ ଜଗତ୍‌କୁ ସୌରଭରେ ଆମୋଦିତ କରିଛନ୍ତି। ସଂସାରରେ ପ୍ରତ୍ୟେକ ଗୁଣୀ ବ୍ୟକ୍ତିଙ୍କୁ ଖଳ ଓ କୁସଂସ୍କାରାବିଷ୍ଟ ଲୋକଙ୍କର ନିର୍ଯ୍ୟାତନା ଅଳ୍ପାଧିକ ପରିମାଣରେ ସହ୍ୟ କରିବାକୁ ପଡ଼େ। ନଗେନ୍ଦ୍ରବାଳାଙ୍କର ଭାଗ୍ୟରେ ଏଭଳି ନିର୍ଯ୍ୟାତନା ପୂର୍ଣ୍ଣମାତ୍ରାରେ ଘଟିଥିଲା।

ପ୍ରତିଭାବାନ୍ ବ୍ୟକ୍ତିଗଣ ପ୍ରାୟତଃ ସାଧାରଣ ରୁଚି ଓ ସହାନୁଭୂତିର ଊର୍ଦ୍ଧ୍ୱତର ସ୍ତରରେ ଅବସ୍ଥାନ କରନ୍ତି। ଏଇଥିପାଇଁ ସେମାନେ ସାଧାରଣ ଲୋକଙ୍କ ମଧ୍ୟରେ ଅଧିକ ସଂଖ୍ୟକ ବନ୍ଧୁ ପାଇପାରନ୍ତି ନାହିଁ। କିନ୍ତୁ ସେମାନେ ଯେଉଁ ଅତି ଅଳ୍ପସଂଖ୍ୟକ ସମଧର୍ମୀ ବନ୍ଧୁ ପାଇଥା'ନ୍ତି, ସେମାନେ ଅନ୍ତରଙ୍ଗ ବନ୍ଧୁ। କେବଳ ବନ୍ଧୁ ନୁହନ୍ତି, ସେମାନଙ୍କୁ ପ୍ରତିଭାର ଉପାସକ କହିଲେ ଅତ୍ୟୁକ୍ତି ହେବ ନାହିଁ। ନଗେନ୍ଦ୍ରବାଳା ଯେତେବେଳେ ପ୍ରଥମେ କବିତା ଲେଖିବାକୁ ପ୍ରବୃତ୍ତ ହେଲେ, ସେତେବେଳେ ତାଙ୍କର କବି-ପ୍ରକୃତିବିଶିଷ୍ଟ ଖୁଲ୍ଲତାତ ଶ୍ରୀଯୁକ୍ତ ଅଖିଳ ଚନ୍ଦ୍ର ପାଳିତ ଓ ବାମାବୋଧିନୀ ପତ୍ରିକାର ସୁଯୋଗ୍ୟ ସଂପାଦକ ଶ୍ରୀଯୁକ୍ତ ବାବୁ ଉମେଶ ଚନ୍ଦ୍ର ଦତ୍ତ ତାଙ୍କୁ ଯଥେଷ୍ଟ ଉତ୍ସାହ ଦେଇଥିଲେ। ଏହି ଦୁଇ ସହୃଦୟ ଓ ସଦାଶୟ ମହାତ୍ମାଙ୍କର ସହାନୁଭୂତି ହିଁ ନଗେନ୍ଦ୍ରବାଳାଙ୍କ କବିତ୍ୱ ବିକାଶର ଅନ୍ୟତମ କାରଣ। ଏହି ଉତ୍ସାହବାରି ନ ପାଇଥିଲେ ଏହି ସୁରଭି କୁସୁମ ହୁଏତ ମୁକୁଳ ଅବସ୍ଥାରେ ହିଁ ବିନଷ୍ଟ ହୋଇଥାନ୍ତା। ନଗେନ୍ଦ୍ରବାଳାଙ୍କର ପୂଜନୀୟ ଦୀକ୍ଷାଗୁରୁ ଶ୍ରୀଯୁକ୍ତ ନିତ୍ୟସଖା ମୁଖୋପାଧ୍ୟାୟ ମହାଶୟ ମଧ୍ୟ ଗୋଟିଏ ଦିଗରେ ଯେଭଳି ତାଙ୍କର ଓ ତାଙ୍କ ସ୍ୱାମୀଙ୍କର ଆଧ୍ୟାତ୍ମିକ ଉନ୍ନତି ପାଇଁ ଯତ୍ନବାନ୍, ସେଥି-ସହ ନଗେନ୍ଦ୍ରବାଳାଙ୍କର ସାହିତ୍ୟସେବା ବ୍ରତ ଯେଭଳି ଅକ୍ଷୁଣ୍ଣ ରହେ, ସେଥିପ୍ରତି ଆସ୍ଥା ପ୍ରଦର୍ଶନ କରିଥାନ୍ତି। ତାଙ୍କର ଆଦେଶମତେ ନଗେନ୍ଦ୍ରବାଳା 'ବ୍ରଜଗାଥା' ଓ 'ନାରୀଧର୍ମ' ପୁସ୍ତକ ପ୍ରଣୟନ କରିଛନ୍ତି।

ନଗେନ୍ଦ୍ରବାଳା ଯଦିଓ ଭିନ୍ନ ଭିନ୍ନ ରସାଶ୍ରିତ କବିତା ପ୍ରଣୟନରେ ଯଥେଷ୍ଟ କୃତିତ୍ୱ ପ୍ରଦର୍ଶନ କରିଛନ୍ତି, ତେବେ ତାଙ୍କ ବୀଣାର ପ୍ରେମ-ତନ୍ତ୍ରୀର ଝଙ୍କାର ସବୁଠାରୁ ମଧୁର, ସବୁଠାରୁ ଅଧିକ ପ୍ରାଣସ୍ପର୍ଶୀ। ତାଙ୍କର ପ୍ରେମଗୀତିଗୁଡ଼ିକ ପ୍ରଗାଢ଼ ପ୍ରେମାବେଗରେ ପୂର୍ଣ୍ଣ ହୋଇ ମଧ୍ୟ ଅବଳାଜନୋଚିତ ଶାଳୀନତାରେ ସୁସଂଯତ ହୋଇ ଏତେ ମନୋହର ହୋଇଅଛି

ଯେ ତାହା ପାଠ କରୁ କରୁ ଆତ୍ମହରା ହେବାକୁ ହୁଏ। ନବ୍ୟବଙ୍ଗର ଅନ୍ୟ କୌଣସି କବି ଏ ବିଷୟରେ ତାଙ୍କୁ ଅତିକ୍ରମ କରିଛନ୍ତି କି ନାହିଁ ତାହା ମୁଁ ଜାଣି ନାହିଁ। କି ଲୌକିକ, କି ଅଲୌକିକ– ଉଭୟବିଧ ପ୍ରେମ ବର୍ଣ୍ଣନାରେ ନଗେନ୍ଦ୍ରବାଳା ତାଙ୍କର ନୈସର୍ଗିକ ଶକ୍ତିର ଏକ ପ୍ରାନ୍ତ ଦେଖାଇଅଛନ୍ତି। ତାଙ୍କର 'ପ୍ରେମଗାଥା' ଓ 'ବ୍ରଜଗାଥା' ଯେଉଁ ପାଠକ ପଢ଼ିଥିବେ, ସେ ଏହା ମୁକ୍ତକଣ୍ଠରେ ନିଶ୍ଚୟ ସ୍ୱୀକାର କରିବେ। ତାଙ୍କର ବ୍ରଜଗାଥା ମୁଦ୍ରିତ ହେଲେ ବୈଷ୍ଣବ ସାହିତ୍ୟ ମଧ୍ୟରେ ଅତି ଉଚ୍ଚସ୍ଥାନ ଅଧିକାର କରିବ– ଏ ବିଷୟରେ ମୋର ସାମାନ୍ୟମାତ୍ର ସନ୍ଦେହ ନାହିଁ।

ଶ୍ରୀମତୀ ନଗେନ୍ଦ୍ରବାଳା ଅଳ୍ପ ବୟସରେ ଯେଉଳି ସୁକବି କୀର୍ତ୍ତି ସ୍ଥାପନରେ କୃତକାର୍ଯ୍ୟ ହୋଇଛନ୍ତି, ଏଭଳି ଉଦାହରଣ ବଙ୍ଗଦେଶରେ, ସମ୍ଭବତଃ ଭାରତବର୍ଷରେ, ମଧ୍ୟ ବିରଳ। ଏବେ ମଧ୍ୟ ତାଙ୍କର ବୟସ ଚବିଶ ବର୍ଷ ଅତିକ୍ରମ କରିନାହିଁ। ସେ ଅନ୍ତଃପୁରଚାରିଣୀ ସମ୍ଭ୍ରାନ୍ତ ହିନ୍ଦୁ ଲଳନା। ନାନାବିଧ ଦାରୁଣ ରୋଗରେ ପ୍ରାୟ ଆଜୀବନ ଜର୍ଜରିତା। ଶିକ୍ଷାଲାଭର ସୁବିଧା ତାଙ୍କର ଭାଗ୍ୟରେ ଜୁଟିନାହିଁ କହିଲେ ହୁଏ। ବାଲ୍ୟକାଳରେ ସେ ଗୋଟିଏ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ କିଛିଦିନ ଅଧ୍ୟୟନ କରିଥିଲେ। ତାଙ୍କ ବିଦ୍ୟାଳୟ ଶିକ୍ଷାର ଏହାହିଁ ଚରମ ସୀମା।

ଇତିହାସରେ ଦେଖାଯାଏ ଯେ ପ୍ରତିଭା ନିଜର ଲକ୍ଷ୍ୟ ସ୍ଥିର ରଖି ସହସ୍ର ବାଧାବିଘ୍ନ ଅତିକ୍ରମ କରି କ୍ରମଶଃ ଲକ୍ଷ୍ୟ ଦିଗରେ ଅଗ୍ରସର ହୋଇଥାଏ– ବଂଗଦେଶରେ ନଗେନ୍ଦ୍ରବାଳା ଏହାର ଗୋଟିଏ ସୁନ୍ଦର ଉଦାହରଣ। ନିଜ ଯତ୍ନରେ ସେ ଯେଉଳି ସୁଶିକ୍ଷା ଲାଭକରିଛନ୍ତି, ଏଭଳି ସୁଦୃଷ୍ଟାନ୍ତ ପୁରୁଷମାନଙ୍କ ମଧ୍ୟରେ ମଧ୍ୟ କ୍ୱଚିତ୍ ଦେଖାଯାଏ। ଅନ୍ତଃପୁରରେ ଆବଦ୍ଧ ରହି ସେ କେବଳ ବଙ୍ଗଳା ଓ ଓଡ଼ିଆ ଭାଷାର ସାହିତ୍ୟ ନୁହେଁ, ଇଂରାଜୀ, ସଂସ୍କୃତ ପ୍ରଭୃତି ମାର୍ଜିତ ଭାଷାରେ ଲିଖିତ ସାହିତ୍ୟର କିଭଳି ଚର୍ଚ୍ଚା କରିଛନ୍ତି, ତାଙ୍କର ରଚନା ହିଁ ଏହାର ପରିଚାୟକ। ପ୍ରାୟ ସମସ୍ତ ମାସିକ ଓ ସାପ୍ତାହିକ ପତ୍ରିକା ମୁକ୍ତକଣ୍ଠରେ ତାଙ୍କର ପଦ୍ୟ ଓ ଗଦ୍ୟ ଉଭୟବିଧ ରଚନାର ପ୍ରଶଂସା କରିଛନ୍ତି। ହେୟାର ପ୍ରାଇଜ୍ ଫଣ୍ଡର ଅଧ୍ୟକ୍ଷଗଣ ଏହାଙ୍କ ରଚିତ 'ପ୍ରେମଗାଥା'ର କବିତ୍ୱରେ ପ୍ରୀତହୋଇ ପୁରସ୍କୃତ କରିଛନ୍ତି। କବିବର ନବୀନଚନ୍ଦ୍ର ତାଙ୍କୁ 'ରମଣୀରତ୍ନ' ଆଖ୍ୟା ପ୍ରଦାନ କରିଛନ୍ତି। ଫଳତଃ ନଗେନ୍ଦ୍ରବାଳାଙ୍କର ବିଦ୍ୟାମତ୍ତା, ଶକ୍ତିମତ୍ତା ଓ କୋମଳ ସୌମ୍ୟ ସ୍ନେହପ୍ରବଣ ଚରିତ୍ରର ସାମାନ୍ୟ ମାତ୍ର ପରିଚୟ ମଧ୍ୟ ଯେ ପାଇଛନ୍ତି 'ରମଣୀରତ୍ନ' ଆଖ୍ୟା ଅପାତ୍ରରେ ଅର୍ପିତ ହୋଇନାହିଁ, ଏହା ସେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ।

ଶ୍ରୀମତୀ ନଗେନ୍ଦ୍ରବାଳା ଏହିଭଳି ପ୍ରତିଭାବାନ୍ ଓ ସୁଶିକ୍ଷିତା ହୋଇ ମଧ୍ୟ ସମସ୍ତ ଗାର୍ହସ୍ଥ୍ୟ ସଦ୍‌ଗୁଣ ନିଚୟରେ ବି ଭୂଷିତା। ସ୍ୱଭାବତଃ ସୌନ୍ଦର୍ଯ୍ୟର ଉପାସକ ହୋଇ ମଧ୍ୟ ସେ ନିତ୍ୟ ପ୍ରୟୋଜନୀୟ ଓ ସୁଫଳୋପଧାୟକ ସମସ୍ତ ଗାର୍ହସ୍ଥ୍ୟ ଶିକ୍ଷା ପ୍ରତି ସମ୍ପୂର୍ଣ୍ଣ ଆସ୍ଥାବତୀ। ରଚନା ଓ ବାସ୍ତବ ଜୀବନ ଉଭୟତ୍ର ତାଙ୍କୁ କୋମଳା ନାରୀ ପ୍ରକୃତିର ଆତ୍ମା ସ୍ୱରୂପିଣୀ କହିଲେ ମଧ୍ୟ ଅତ୍ୟୁକ୍ତି ହେବନାହିଁ। ରୂଢ଼ତା କିମ୍ବା କର୍କଶତା ଯେଭଳି ତାଙ୍କ କବିତ୍ୱର ତ୍ରିସୀମା ସ୍ପର୍ଶ କରିନାହିଁ। ତାଙ୍କ ରଚିତ 'ନାରୀଧର୍ମ' ପୁସ୍ତକରେ ସେ ଯେଉଁ ସଦୁପଦେଶ ଦେଇଛନ୍ତି, ତାଙ୍କର ଗାର୍ହସ୍ଥ୍ୟ ଜୀବନରେ ସେ ସବୁ ପ୍ରତିଫଳିତ ହେଉଥିବା ଦେଖି ବିମୁଗ୍ଧ ହେବାକୁପଡ଼େ। ସେ ଯେଭଳି ସୁଗୃହିଣୀ, ସେହିଭଳି ସୁପାଚିକା, ସୀବନକୁଶଳା ଓ ସ୍ୱାସ୍ଥ୍ୟ-ତତ୍ତ୍ୱାଭିଜ୍ଞା। ରୋଗୀର ସେବାକାର୍ଯ୍ୟରେ ସେ ଯେଭଳି ସୁଦକ୍ଷା, ଅନେକ ସୁଶିକ୍ଷିତା ଧାତ୍ରୀ ମଧ୍ୟ ସେ ବିଷୟରେ ତାଙ୍କର ସମକକ୍ଷ ହେବେ କି ନାହିଁ ସନ୍ଦେହ। ଅତିଥିର ପରିଚର୍ଯ୍ୟା, ଆତୁରର ସେବା ଓ ଦରିଦ୍ର ପ୍ରତି ଦୟା ନଗେନ୍ଦ୍ରବାଳାଙ୍କର ଯେଭଳି ସ୍ୱଭାବଗତ। ଦୁଃଖିତ ଓ ତାପିତ ବ୍ୟକ୍ତିଗଣଙ୍କୁ ସମ୍ବୋଧନ କରି ନଗେନ୍ଦ୍ରବାଳା ଗୋଟିଏ ସ୍ଥଳରେ ଗାଇଛନ୍ତି–

"ହୟେ ଥାକ ଯଦି ସୁଖ ଥାନ୍ତି ହାରା
ଏସ ଗୋ ଆମାର ଘରେ
ହୃଦୟେର ରକ୍ତ ସଁପିବ ଗୋ ଆମି
ତୋମାର ସୁଖେର ତରେ।"

ତାଙ୍କର ଏହି ଉକ୍ତି କେବଳ ରଚନାର ଅଳଙ୍କରଣ ପାଇଁ ସନ୍ନିବେଶିତ ହୋଇ ନାହିଁ; ଏହାହିଁ ତାଙ୍କର ପ୍ରକୃତି। ଫଳତଃ ସ୍ନେହଶୀଳତା ଓ ସ୍ୱାବଲମ୍ବନପ୍ରିୟତା ତାଙ୍କ ଚରିତ୍ରର ମୂଳଭିତ୍ତି ଓ ଏହି ଦୁଇଗୁଣ ଯେ ନଗେନ୍ଦ୍ରବାଳାଙ୍କ ସର୍ବୋତମୁଖୀ ଉତ୍କର୍ଷର ପ୍ରସୂତୀ, ଏହା ସ୍ୱୀକାର କରିବାକୁ ହେବ। ମୃଦୁତା ଓ ଦୃଢ଼ତାର ଏଭଳି କମନୀୟ ସମାବେଶ ସ୍ତ୍ରୀ ଜୀବନରେ ଅତି ଅଳ୍ପ ସ୍ଥାନରେ ହିଁ ଦେଖିବାକୁ ମିଳେ–

"ମୃଦୁ ପ୍ରକୃତ୍ୟାତ୍ ସଂସାର ମେବଚ୍"– କାଳିଦାସଙ୍କର ଏହି ଉକ୍ତିର ଶ୍ରୀମତୀ ନଗେନ୍ଦ୍ରବାଳା ସରସ୍ୱତୀ ଗୋଟିଏ ଜୀବନ୍ତ ଦୃଷ୍ଟାନ୍ତ।

# ସମ୍ପାଦକଙ୍କୁ ପତ୍ରାବଳୀ

**(୧) ଓଡ଼ିଆ ଓ ନବସମ୍ବାଦ ସମ୍ପାଦକଙ୍କ ନିକଟକୁ ଲିଖିତ –**

ସବିନୟ ନିବେଦନମିଦଂ
ମହାଶୟ,

ବିଗତ ସଂଖ୍ୟକ ପତ୍ରିକାରେ ଗୋବିନ୍ଦବାବୁଙ୍କ ପଦ୍ୟ ସମ୍ବନ୍ଧରେ ମୋହୋର ମତ ଘେନି ଆପଣ ଯେଉଁ ଆକ୍ଷେପ କରିଅଛନ୍ତି, ତାହା ସଙ୍ଗତ କି ଅସଙ୍ଗତ ନିମ୍ନୋକ୍ତ ପ୍ରକୃତ ଘଟଣାରୁ ତାହା ଅବଶ୍ୟ ଅବଧାରଣ କରିପାରିବେ।

ଆପଣ ଲେଖିଛନ୍ତି– ଗୋବିନ୍ଦବାବୁ ମୋତେ ଫାନ୍ଦରେ ପକାଇ ମୋହୋରଠାରୁ ସେପରି ମତ ସଂଗ୍ରହ କରିଅଛନ୍ତି ଏବଂ ବାସ୍ତବ ସେ ମତ ମୋହୋର ଆନ୍ତରିକ ମତ ନୁହେଁ। ଏ ମନ୍ତବ୍ୟ ଦ୍ୱାରା ଆପଣ ମୋହୋର ଏବଂ ଗୋବିନ୍ଦବାବୁଙ୍କ ଚରିତ୍ର ପ୍ରତି ଅଯଥା ଆକ୍ଷେପ କରିଅଛନ୍ତି। ମୁଁ ପ୍ରଭାରେ ପ୍ରକଟିତ ଅନ୍ୟ କୌଣସି ରଚନା ସମ୍ବନ୍ଧରେ ମତ ବ୍ୟକ୍ତ କରିନାହିଁ। କେବଳ ସ୍ଥଳରେ ଗୋବିନ୍ଦବାବୁଙ୍କ ପ୍ରଶ୍ନମତେ କେତେ-ଗୁଡ଼ିଏ ପ୍ରବନ୍ଧ ଭଲ ବୋଲି ମୌଖିକ ମତ ବ୍ୟକ୍ତ କରିଥିଲି। ଅନ୍ୟାନ୍ୟ ଲେଖକମାନଙ୍କର ପ୍ରବନ୍ଧର ଉତ୍କର୍ଷାପକର୍ଷ ଅବଧାରଣ ସମ୍ପାଦକଙ୍କର କର୍ତ୍ତବ୍ୟ ଏବଂ ମୁଁ ଗୋବିନ୍ଦବାବୁଙ୍କୁ ଯେତେଦୂର ଜାଣେ, ସେ ଯେ ଜାଣିଶୁଣି ଅନ୍ୟାୟ କରିବେ, ମୋହୋର କଦାଚ ଏପରି ଧାରଣା ନାହିଁ। ହେଲେ ଭ୍ରମପ୍ରମାଦ ସମସ୍ତଙ୍କର ଅଛି ଏବଂ ଗୋବିନ୍ଦବାବୁ ମଧ୍ୟ ସେହି ନିୟମର ଅନ୍ତର୍ଭୁକ୍ତ। ଗୋବିନ୍ଦବାବୁ କେବଳ ନିଜର ରଚନା ସମ୍ବନ୍ଧରେ ମୋହୋର ମତଜିଜ୍ଞାସୁ ହୋଇ-ଥିଲେ। ତାହାଙ୍କର 'ହିମାଚଳ' ଉତ୍କଳପ୍ରଭାର ଆବିର୍ଭାବର ପ୍ରାୟ ଏକ ବର୍ଷ ପୂର୍ବେ ରଚିତ ହୋଇ-ଥିଲା। ଗୋବିନ୍ଦବାବୁ ଦାର୍ଜିଲିଂ ଅବସ୍ଥାନ ସମୟରେ ସମ୍ଭବତଃ ତାହା ଆରମ୍ଭ କରିଥିଲେ ଏବଂ ସମାପ୍ତି ପରେ କଟକରେ ପାଣ୍ଡୁଲିପି ଅବସ୍ଥାରେ ମୋତେ ସେହି ପଦ୍ୟ ଦେଖାଇଥିଲେ। ମୁଁ ସେତେବେଳେ ଯାହାର ପ୍ରଶଂସା କରିଥିଲି ବର୍ତ୍ତମାନ ତାହାର ନିନ୍ଦା କରିବି କିପରି ?

''ମୋ ଶିଶୁ'' ଏବଂ ''ଦୃଶ୍ୟରାଜି'' ଏ ଯୋଡ଼ିଏ କବିତା ''ହିମାଚଳ'' ତୁଳନାରେ ମୋତେ ଅନେକାଂଶରେ ନିକୃଷ୍ଟ ବୋଧହୋଇଥିଲା। କେବଳ ମଧୁବାବୁଙ୍କ କବିତା ଛାଡ଼ି ପ୍ରଭାରେ ଆଉ ଯେତେ କବିତା ପ୍ରକାଶିତ ହୋଇଅଛି, ସେମାନଙ୍କଠାରୁ ପ୍ରୋକ୍ତ ଦୁଇ କବିତା ନିକୃଷ୍ଟ, ମୋହୋର ଏପରି ବିଶ୍ୱାସ ନୁହେଁ। ଚନ୍ଦ୍ରମୋହନବାବୁଙ୍କ କବିତା ପ୍ରସାଦଗୁଣ ଏବଂ ଭାବଗାମ୍ଭୀର୍ଯ୍ୟାଦି ବିଷୟରେ ଉତ୍କୃଷ୍ଟତର ହୋଇ ସୁଦ୍ଧା ବହିଃପ୍ରକୃତି ଚିତ୍ର ସମ୍ବନ୍ଧରେ ଗୋବିନ୍ଦବାବୁଙ୍କ ରଚନା ଅପେକ୍ଷା ଉତ୍କୃଷ୍ଟ ନୁହେଁ। ଆପଣଙ୍କର ଏହା ମଧ୍ୟ ସ୍ମରଣ କରିବାର ଉଚିତ ଯେ ଗୋବିନ୍ଦବାବୁଙ୍କ ରଚନାକୁ ମୁଁ ଆଦର୍ଶ ରଚନା ବୋଲି କହିନାହିଁ। ପ୍ରସାଦ ଗୁଣର ଅଭାବ, କ୍ଲିଷ୍ଟତା, ଅପ୍ରଚୁର ଶବ୍ଦ ପ୍ରୟୋଗ, ଦୁରନ୍ୱୟ, ଦୂଷିତମିତ୍ରାକ୍ଷର ପ୍ରଭୃତି ଦୋଷମାନ ତାହାଙ୍କ କବିତାରେ ଥିବାର ମୁଁ ଅସ୍ୱୀକାର କରୁନାହିଁ। ମାତ୍ର ଆପେକ୍ଷିକ ରୀତିରେ ମତ ଦେବା ସ୍ଥଳେ ଦୋଷ ଏବଂ ଗୁଣ ଉଭୟ ପ୍ରତି ଦୃଷ୍ଟି ରଖି ମତ ଦେବାର ଉଚିତ ଏବଂ ମୁଁ ମଧ୍ୟ ଏହି ମତର ଅନୁସରଣ କରିଅଛି।

ମୁଁ ମତ ଦେଇଅଛି ବୋଲି ଯେ ମୋହୋର ମତ ଭ୍ରମସଂକୁଳ ନ ହେବ ଏକଥା କିଏ କହିଲା ? ମୋହୋର ମତ ମଧ୍ୟ ଯଥାଯଥ ପ୍ରକାଶିତ ହୋଇନାହିଁ। ଏକ ଏକ ସ୍ଥଳରେ ଏପରି ଭୁଲ ହୋଇଅଛି ଯେ ମୁଁ ସ୍ୱୟଂ ସେଥିର ଅର୍ଥ ବୁଝିପାରିଲିନାହିଁ।

କିପରି ଫାନ୍ଦରେ ପକାଇ ଗୋବିନ୍ଦବାବୁ ମୋହୋଠାରୁ ଅନୁକୂଳ ମତ ସଂଗ୍ରହ କଲେ ଏବଂ ମୁଁ ଇଚ୍ଛା ବିରୁଦ୍ଧରେ ଅଗତ୍ୟା ସେପରି ମତ ଦେଲି; ତାହା ଆପଣଙ୍କୁ ଅଥବା ଆପଣଙ୍କର 'ବିଶ୍ୱସ୍ତ' ସମ୍ବାଦଦାତାଙ୍କୁ ଜଣାଥିବ। ମୁଁ ଆଜିପର୍ଯ୍ୟନ୍ତ ସେ ଫାନ୍ଦର କଥା ଜାଣି ନ ଥିଲି। ମୋହୋର ସରଳବିଶ୍ୱାସ ଏହି ଯେ ସହସ୍ର ଦୋଷ ସତ୍ତ୍ୱେ 'ହିମାଚଳ' ଓଡ଼ିଆ ସାହିତ୍ୟରେ ଉଚ୍ଚ ଏବଂ ସ୍ଥାୟୀସ୍ଥାନ ପାଇବାର ଯୋଗ୍ୟ। ସମ୍ଭବତଃ ମୋହୋର ରୁଚିର ଦୋଷ ଥାଇପାରେ ଏବଂ ଆପଣ ସାଧାରଣ ରୁଚିର ପ୍ରତିନିଧି ଥିବା ସ୍ଥଳେ ମୋହୋର ରୁଚିର ଦୋଷ ଦେଖାଇ-ଦେବାର ଆପଣଙ୍କ କର୍ତ୍ତବ୍ୟ। ମାତ୍ର ଆପଣ ସେହି ସୀମା ବହୁଦୂର ଅତିକ୍ରମ କରିଥିବାର ବୋଧହୁଏ। ''ହିତୈଷିଣୀ'' ସମ୍ପାଦକ ମହାଶୟ ଏ ସମ୍ବନ୍ଧରେ ଆଶାତୀତ ସୌଜନ୍ୟ ଦେଖାଇ ମୋହୋର ଆନ୍ତରିକ ଧନ୍ୟବାଦାର୍ହ ହୋଇଅଛନ୍ତି।

ବର୍ତ୍ତମାନ ମୋହୋ ପାଖରେ "ଉତ୍କଳପ୍ରଭା" ନାହିଁ। ଅବସର ମଧ ନାହିଁ, ଅବସରମତେ ମୁଁ ଗୋବିନ୍ଦବାବୁଙ୍କ କବିତାଗୁଡ଼ିକ ପୁନର୍ବାର ମନୋ-ଯୋଗପୂର୍ବକ ପଢ଼ିବି ଏବଂ ତଦ୍ଵାରା ଯେବେ ଏପରି ବିଶ୍ୱାସ ହେବ ଯେ ମୋହୋର ମତ ଠିକ୍ ହୋଇନାହିଁ, ତାହାହେଲେ ମୁକ୍ତକଣ୍ଠରେ ମୋହୋର ମତ ପ୍ରତ୍ୟାହାର କରିବି। "ହିମାଚଳ" ସମ୍ବନ୍ଧରେ ମୋହୋର ବକ୍ତବ୍ୟ ଏହି ଯେ, ତାହା ମୁଁ ୩-୪ ଥର ପଢ଼ିଅଛି ଏବଂ ପଢ଼ି ଅନ୍ୟାନ୍ୟ ଭାବୁକ ବନ୍ଧୁଙ୍କୁ ମଧ ଶୁଣାଇଅଛି।

କଟକ ବଶମ୍ବଦ

ତା ୨୯।୨।୧୮୯୨ ଶ୍ରୀ ରାଧାନାଥ ରାୟ

## (୨) ଓଡ଼ିଆ ଓ ନବସମ୍ବାଦ ସମ୍ପାଦକଙ୍କୁ ଲିଖିତ –

ସବିନୟ ନିବେଦନମିଦଂ,

ମହାଶୟ,

ଶ୍ରୀଯୁକ୍ତ ବାବୁ ରାମନାରାୟଣ ରାୟ ଭଞ୍ଜୀୟ କବିତାର ସମାଲୋଚନା କରୁଥିବାରୁ କେହି କେହି ସମ୍ଭବତଃ ଏପରି ଅନୁମାନ କରିଅଛନ୍ତି ଯେ ରାମନାରାୟଣବାବୁଙ୍କର ସେହି ସମାଲୋଚନା ମୋହୋ ମତ ଉପରେ ଗଠିତ। ଏ ଅନୁମାନ ଅମୂଳକ ଅଟେ।

ରାମନାରାୟଣବାବୁ ବାଲ୍ୟକାଳରୁ ସାହିତ୍ୟର, ବିଶେଷତଃ ଉତ୍କଳସାହିତ୍ୟର ଆଲୋଚନା କରି-ଆସୁଛନ୍ତି। ପ୍ରାଚୀନ ଉତ୍କଳସାହିତ୍ୟ ଗୋଷ୍ଠୀ ବିଷୟରେ ସେ ମୋହୋଠାରୁ କୌଣସି ଅଂଶରେ ହୀନକକ୍ଷ ନୁହନ୍ତି, ଏ ବିଷୟରେ ମୋହୋର ଶିଷ୍ୟତା ସ୍ୱୀକାର କରିବାର ତାହାଙ୍କର ଆବଶ୍ୟକ ନାହିଁ।

ବନ୍ଧୁଭାବରେ ମୁଁ କେବେକେବେ ତାହାଙ୍କର କୌଣସି କୌଣସି ରଚନା ଦେଖିଥିଲି, ମାତ୍ର ତାହାଙ୍କ ମତବାଦ ଉପରେ ମୁଁ କୌଣସି କାଳରେ ହସ୍ତକ୍ଷେପ କରି ନାହିଁ। ଏହିପରି ହସ୍ତକ୍ଷେପ ମୋହୋ ମତରେ ଅନଧିକାର ଚର୍ଚ୍ଚା ଅଟେ। ରାମନାରାୟଣବାବୁ ଅଥବା ଅପର କୌଣସି ଲେଖକ ଏପରି ହସ୍ତକ୍ଷେପ ସହ୍ୟ କରିଥାଆନ୍ତେ କି ନାହିଁ ସନ୍ଦେହ। ମୋହୋର ଏହା ଉତ୍ତମ ସ୍ମରଣ ହେଉଅଛି ଯେ ରାମନାରାୟଣବାବୁଙ୍କ କୌଣସି କୌଣସି ରଚନା ଦେଖିବା ସମୟରେ ତାହାଙ୍କ ସହିତ ଏକ ଏକ ସ୍ଥଳେ ମୋହୋର ମତର ଅନୈକ୍ୟ ହେବାରୁ ମୁଁ ସେହି ସେହି ଅଂଶ ପ୍ରତ୍ୟାଖ୍ୟାନ କରିବା ସକାଶେ ତାହାଙ୍କୁ ଅନୁରୋଧ କରି କୃତକାର୍ଯ୍ୟ ହୋଇନାହିଁ। ତାହାଙ୍କ ମତ ଭ୍ରାନ୍ତ ହୋଇପାରେ, ମାତ୍ର ସେ ଯାହା ଲେଖିଅଛନ୍ତି ତାହା ତାହାଙ୍କର ସରଳ ମତ, ଆହୃତ ମତ ନୁହେଁ। ମୋହୋର ମତ ଗ୍ରହଣ କରି ସମାଲୋଚନା କରିଥିଲେ ଏ ବିତଣ୍ଡା ଉଠି ନ ଥାନ୍ତା।

ରାମନାରାୟଣବାବୁ ଅଥବା ଅପର କାହାରି ମତ ନିମନ୍ତେ ମୋତେ ଦାୟୀ କରିବାର ନ୍ୟାୟସଙ୍ଗତ ନୁହେଁ। ମୋତେ କୌଣସି ବିଷୟରେ ଦାୟୀ କରିବାକୁ ହେଲେ ମୋହୋର ସ୍ୱପ୍ରକାଶିତ ଲେଖା ଘେନି ଦାୟୀ କରିବାର ଉଚିତ।

ମୋହୋର ସାହିତ୍ୟ-ଜ୍ଞାନ ଅତି ସୀମାବଦ୍ଧ ଏବଂ ସମୟ ମଧ ନିତାନ୍ତ ଅଳ୍ପ। ଏପରି ବିଷୟରେ କୌଣସି ବିତଣ୍ଡାରେ ପ୍ରବୃତ୍ତ ହେବା ନିମନ୍ତେ ମୋହୋର ଯୋଗ୍ୟତା କିମ୍ବା ଅବକାଶ ନାହିଁ। ବିଶେଷତଃ ଭଞ୍ଜଙ୍କ ରଚିତ କାବ୍ୟାବଳୀରୁ ମୁଁ ଅଧିକାଂଶ ପଢ଼ିନାହିଁ। ଯେମାନେ ତାହା ଉତ୍ତମରୂପେ ପଢ଼ିଛନ୍ତି, ସେମାନେ ସେଥିର ସମାଲୋଚନା କରିପାରନ୍ତି। ମୋହୋର ଏପରି ବିଷୟରେ ପ୍ରବୃତ୍ତ ହେବାର ଅଧିକାର ନାହିଁ।

ରାମନାରାୟଣବାବୁ ଅଥବା ଅପର କାହାରି ପ୍ରତିକୂଳ ସମାଲୋଚନା ଦ୍ୱାରା ଭଞ୍ଜଙ୍କର ଅଥବା କୌଣସି ପ୍ରକୃତ କବିପଦବାଚ୍ୟ କବିର ଖ୍ୟାତି ବିଲୁପ୍ତ ହୋଇଯିବ – କୌଣସି ସାହିତ୍ୟଜ୍ଞ ବ୍ୟକ୍ତିଙ୍କ ମନରେ ଏପରି ଆଶଙ୍କା ଜାତ ହେବାର ସମ୍ଭାବନା ନାହିଁ। ଅମରତା ଦେବାର ଅଥବା କାଢ଼ିନେବାର ସମା-ଲୋଚନାର ସାଧ୍ୟାତୀତ। ରାମନାରାୟଣବାବୁ ମଧ ତାହାଙ୍କ ସମାଲୋଚନା ପ୍ରବନ୍ଧରେ ଏପରି ଅସଂମତ ଏବଂ ହାସ୍ୟାସ୍ପଦ ଅହମିକା କୁତ୍ରାପି କରିଥିବାର ମୋହୋର ସ୍ମରଣ ହେଉନାହିଁ।

ସମାଲୋଚନାଦ୍ୱାରା ଭଞ୍ଜଙ୍କ ପରି ଜଣେ ସୁପ୍ରସିଦ୍ଧ ପ୍ରଧାନ କବିଙ୍କର ଆସନ ଟଳିଯିବ ଘୋର ନିର୍ବୋଧ କିମ୍ବା କ୍ଷିପ୍ତ ନ ହେଲେ କେହି ଏପରି କଥାକୁ ମନରେ ସ୍ଥାନ ଦାନ କରିବ ନାହିଁ। ଇନ୍ଦ୍ରଧନୁର କେହି କେହି ଲେଖକଙ୍କ ଲେଖାରୁ ବୋଧହୁଏ ସେମାନେ ମୋତେ ଏହିପରି ନିର୍ବୋଧ ଅଥବା କ୍ଷିପ୍ତ ମନେକରିଅଛନ୍ତି। ଏ ଶ୍ରେଣୀର ଲେଖକଙ୍କ ଉକ୍ତିର ପ୍ରତିବାଦ କରିବାର ବିଫଳ ପ୍ରୟାସ ମାତ୍ର।

ଭଞ୍ଜକବିଙ୍କୁ ମୁଁ ମୋହୋର ଏକତର ଶିକ୍ଷାଗୁରୁ ଜ୍ଞାନ କରି ଆବାଲ୍ୟ ଭକ୍ତି କରି ଆସୁଅଛି। ମୁଁ ଯେ କେବଳ ବାକ୍ୟତଃ ତାହାଙ୍କ ପ୍ରତି ଭକ୍ତି ଦେଖାଇ-ଅଛି ତାହା ନୁହେଁ, କାର୍ଯ୍ୟତଃ ଭକ୍ତି ଦେଖାଇବାର

ଅନେକ ନିଦର୍ଶନ ମୋହୋର ନିଜ ପ୍ରକାଶିତ ପଦ୍ୟରୁ ସଂକଳିତ ହୋଇପାରେ। ମୋହୋ- ଠାରୁ ଭଞ୍ଜଙ୍କର ଅଧିକ ଅନୁକାରୀ ପଦ୍ୟ-ଲେଖକ ଓଡ଼ିଶାରେ ବୋଧହୁଏ ଅଳ୍ପ ବାହାରିବେ'

ଭଞ୍ଜଙ୍କ ରଚନାର ମୁଁ ଯେଉଁ ଯେଉଁ ଅଂଶ ପଢ଼ିଅଛି ସେଥିରୁ ମୋହୋର ଏହି ଉପଲବ୍ଧି ହୋଇଅଛି ଯେ ସେ ଜଣେ ଅସାଧାରଣ କବି ଥିଲେ। ଆଧୁନିକ ଲେଖକଙ୍କର ତ କଥା ନାହିଁ, ଭଞ୍ଜଙ୍କ ପରି ଭିନ୍ନ ଭିନ୍ନ ବିଷୟରେ ସମାନ ସୌଭାଗ୍ୟଶାଳୀ କବି ପ୍ରାଚୀନ କାଳରେ ସୁଦ୍ଧା ଉତ୍କଳରେ ଆବିର୍ଭୂତ ହୋଇ ନ ଥିଲେ। କୌଣସି କୌଣସି ପ୍ରାଚୀନ କବି ଏକ ଏକ ବିଷୟରେ ତାହାଙ୍କଠାରୁ ଅଧିକତର ଉତ୍କର୍ଷ ଦେଖାଇଥିଲେହେଁ ସମଷ୍ଟିରେ କେହି ତାହାଙ୍କର ସମକକ୍ଷ ହୋଇପାରି ନାହାନ୍ତି। ମୋହୋ ବିବେଚନାରେ ରାମନାରାୟଣବାବୁ ଏକ ଏକ ସ୍ଥଳେ ଭଞ୍ଜଙ୍କ ରଚନା ପ୍ରତି ଅଯଥା ଆକ୍ଷେପ କରିଅଛନ୍ତି। ବିଶେଷତଃ ଆଦିରସ ସମ୍ବନ୍ଧରେ ତାହାଙ୍କୁ ଯେଉଁ ଆକ୍ଷେପ କରାହୋଇଅଛି, ତାହା ଉଚିତ ସୀମା ଅତିକ୍ରମ କରି ଅନେକ ଦୂର ଚାଲି ଯାଇଥିବାର ବୋଧହୁଏ। ମୁଁ ନିଜେ ଭଞ୍ଜଙ୍କର ଯେତେ ରଚନା ପଢ଼ିଅଛି, ସେଥିମଧ୍ୟରୁ ୨୦-୩୦ ପଂକ୍ତି ଛାଡ଼ିଦେଲେ ଅବଶିଷ୍ଟାଂଶ ପ୍ରକୃତ ପ୍ରସ୍ତାବରେ ଦୂଷଣୀୟ ହେବ– ଏ ବିଷୟରେ ମୋହୋର ଗଭୀର ସନ୍ଦେହ ଅଛି। ଉତ୍କୃଷ୍ଟ ଇଉରୋପୀୟ ସମାଲୋଚକମାନେ ଏ ଶ୍ରେଣୀର ରଚନାର ପକ୍ଷପାତୀ ନୁହନ୍ତି– ଏହା ମୋହର ଅବିଦିତ ନାହିଁ। ସେମାନଙ୍କ ମତାବଲମ୍ବୀ ହୋଇ ଅନେକ ବଙ୍ଗୀୟ ସମାଲୋଚକ ମଧ୍ୟ ଆଦିରସ ପ୍ରତି ବୀତଶ୍ରଦ୍ଧ। ସଂସ୍କୃତ ଆଳଙ୍କାରିକମାନେ ମଧ୍ୟ ରସ ନାମ ଦ୍ୱାରା ବର୍ଣ୍ଣନୀୟ ନୁହେଁ, କେବଳ ବ୍ୟଞ୍ଜନା ଦ୍ୱାରା ସୂଚନୀୟ– ଏହି ନିୟମ ନିଦର୍ଶନ କରିଅଛନ୍ତି। ପକ୍ଷାନ୍ତରେ ପ୍ରଧାନ ପ୍ରଧାନ ସଂସ୍କୃତ କବି, ଇଉରୋପୀୟ କବି ଏବଂ ବଙ୍ଗୀୟ କବିଙ୍କ ଗ୍ରନ୍ଥରୁ ଏପରି ଅନେକ ଆଦିରସାଶ୍ରିତ କବିତା ବାହାରିବ, ଯାହାଦ୍ୱାରା ଭଞ୍ଜଙ୍କ ଅଧିକାଂଶ ରଚନା ସମର୍ଥିତ ହୋଇପାରେ। ବିରୁଦ୍ଧବାଦୀମାନଙ୍କ ମତ ସଂକଟରେ ପଡ଼ି ଏ ବିଷୟରେ ମୁଁ ଅବଧି ନିଜର ମତ ଠିକ୍ କରିପାରିନାହିଁ। ସେ ଯାହାହେଉ, ଭଞ୍ଜଙ୍କ ପ୍ରଭୂତ ଗୁଣରାଶି ଦୃଷ୍ଟିରେ ତାହାଙ୍କ ରଚନାନ୍ତର୍ଗତ ଉତ୍କଟ ଆଦିରସାଶ୍ରିତ ପଂକ୍ତିମାନଙ୍କୁ ଆର୍ଷପ୍ରୟୋଗ ରୂପେ ଗ୍ରହଣ ଅର୍ଥାତ୍ ସେମାନଙ୍କର ସସମ୍ମାନ ପ୍ରତ୍ୟାଖ୍ୟାନ ମୋହୋ ମତରେ ଅଯୌକ୍ତିକ ନୁହେଁ। ଅମୂଳକ ଅଭିଯୋଗର ପ୍ରତିବାଦରେ ମୁଁ ବିଶେଷ ଅଭ୍ୟସ୍ତ ନୁହେଁ। ମୋହୋ ସମ୍ବନ୍ଧରେ ଅନେକ ଥର ଅନେକ ଅମୂଳକ ଅଭିଯୋଗ ବାହାରି ଯଥାସମୟରେ ସେଥିର ଅସାରତା ସ୍ୱତଃ ପ୍ରତିପନ୍ନ ହୋଇଥିବାର ଦେଖିଅଛି। ବର୍ତ୍ତମାନ ବିତଣ୍ଡାରେ ମୁଁ ସେଥି ସକାଶ ଆଜ ପର୍ଯ୍ୟନ୍ତ ନୀରବ ଥିଲି। କେବଳ କୌଣସି କୌଣସି ଆନ୍ତରିକ ହିତୈଷୀ ବନ୍ଧୁଙ୍କର ସଦଭିପ୍ରାୟର ସମ୍ମାନରକ୍ଷା ସକାଶ ଏହି ପତ୍ର ଲେଖିଲି।

କଟକ ବଶମ୍ବଦ

ତା ୫।୨।୧୮୯୪ ଶ୍ରୀ ରାଧାନାଥ ରାୟ

**(୩) ସମ୍ବଲପୁର ହିତୈଷିଣୀ ସମ୍ପାଦକଙ୍କୁ ଲିଖିତ –**

ସବିନୟ ନିବେଦନମିଦଂ

ମହାଶୟ,

ଗତ ସଂଖ୍ୟକ ହିତୈଷିଣୀରେ ''ନିଗୂଢ଼ତତ୍ତ୍ୱ'' ଶୀର୍ଷକ ପ୍ରବନ୍ଧ ପାଠକରି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୋଇଅଛି। ମୋହୋର ବାଲେଶ୍ୱରର ଗୃହଦାହ ସହିତ ଭଞ୍ଜୀୟ ଆନ୍ଦୋଳନର କୌଣସି ଆର୍ଥିକ ସମ୍ପର୍କ ନାହିଁ। ମୋହୋର ଗୃହରେ ପ୍ରଥମେ ଅଗ୍ନି ଲାଗିନଥିଲା, ଅନ୍ୟ ବସାରେ ଅଗ୍ନି ଲାଗି ମଧ୍ୟାହ୍ନର ଖରପବନ ଯୋଗୁଁ ଉଡ଼ିଆସି ମୋହ ଓ ଅନ୍ୟାନ୍ୟ ବ୍ୟକ୍ତିଙ୍କ ବସା ଉପରେ ପଡ଼ିଥିଲା। ସେହି ପବନ ଭଞ୍ଜୀୟ ଆନ୍ଦୋଳନକାରିମାନଙ୍କର ଫୁତ୍କାରଜନିତ କି ନା ତାହା ଆପଣ ଆପଣଙ୍କର ''ବିଶ୍ୱସ୍ତ'' ସମ୍ବାଦଦାତାଙ୍କଠାରୁ ଅନୁସନ୍ଧାନ କଲେ ଜାଣିପାରିବେ।

ମୁଁ ଭୀତିପ୍ରଣୋଦିତ ହୋଇ ଭଞ୍ଜୀୟ ଆନ୍ଦୋଳନ ସମ୍ବନ୍ଧରେ ମୋହୋର ମନ୍ତବ୍ୟ ବ୍ୟକ୍ତ କରିଅଛି, ଆପଣଙ୍କର ଏ ବିଶ୍ୱାସ ମଧ୍ୟ ଭ୍ରାନ୍ତ ବିଶ୍ୱାସ ଅଟେ। ଅବଶ୍ୟ ଆପଣ ଆପଣଙ୍କ ''ବିଶ୍ୱସ୍ତ'' ସଂବାଦଦାତାଙ୍କ ପ୍ରେରିତ ସମ୍ବାଦ ଅବଲମ୍ବନ କରି ସେପରି ମନ୍ତବ୍ୟ ବ୍ୟକ୍ତ କରିଅଛନ୍ତି। ମାତ୍ର ମୁଁ ନିଶ୍ଚୟ କହିପାରେଁ ଏ ସମ୍ବାଦ ଆପଣଙ୍କୁ ଯେଉଁ ବ୍ୟକ୍ତି ଯୋଗାଇଅଛନ୍ତି, ତାହାଙ୍କର କଳ୍ପନା ବିକୃତ କଳ୍ପନା ଅଟେ। ତାହାଙ୍କର ଅଳୀକୋଦ୍‌ଘାଟନୀ ଶକ୍ତି ଅସାଧାରଣ, ଏ ବିଷୟରେ ଲେଶମାତ୍ର ସନ୍ଦେହ ନାହିଁ। ଇତି

କଟକ ବଶମ୍ବଦ

ତା ୨।୮।୧୮୯୪ ଶ୍ରୀ ରାଧାନାଥ ରାୟ

**(୪) ସମ୍ବଲପୁର-ହିତୈଷିଣୀ ସମ୍ପାଦକଙ୍କୁ ଲିଖିତ –**

ସବିନୟ ନିବେଦନମିଦଂ
ମହାଶୟ

ମଦ୍ ପ୍ରଣୀତ ଚିଲିକା କାବ୍ୟର ପ୍ରଥମ ପୃଷ୍ଠାରୁ–

"ବିମାନ ଆକାରେ ଭାସେ ଶତଶତ
ନୀଳୋରସେ ତୋର ଶୈଳ
ମାରକତ ..."

ଏହି ପଂକ୍ତିଦ୍ୱୟ ଅଛି। ମୂଳ ପାଣ୍ଡୁଲେଖ୍ୟରେ ଏ ପଂକ୍ତି ଯେପରି ଥିଲା ତାହା ନିମ୍ନରେ ପ୍ରଦର୍ଶିତ ହେଲା –

"ବିମାନ ଆକାରେ ଭାସେ ଅଗଣନ
ନୀଳୋରସେ ଶୈଳ ବୈଦୂର୍ଯ୍ୟବରଣ ..."

ଗ୍ରନ୍ଥାବଳୀର ପ୍ରୁଫ୍ ଦେଖିବା ସମୟରେ ମୁଁ ଏହି ପଂକ୍ତିକୁ ଉଲ୍ଲିଖିତରୂପେ ପରିବର୍ତ୍ତନ କରିଦେଇଥିଲି, ମାତ୍ର ପରିବର୍ତ୍ତନରେ ଯେ ଅଶୁଦ୍ଧି ଥିଲା, ସେଥିପ୍ରତି ମୋହୋର ଦୃଷ୍ଟି ପଡ଼ିନଥିଲା। ସଂପ୍ରତି ପ୍ରୟୋଜନ-ବଶତଃ ଚିଲିକାକାବ୍ୟ ଦେଖୁଁ ଦେଖୁଁ ସେହି ଭୁଲ ପ୍ରତି ଦୃଷ୍ଟି ଆକୃଷ୍ଟ ହେଲା। ବୋଲିବାର ବାହୁଲ୍ୟ ଯେ, ଭୁଲ ଏତେ ସ୍ପଷ୍ଟ ଯେ ତାହାକୁ ଯାଜ୍ଜ୍ୱଲ୍ୟମାନ ବୋଲାଯାଇପାରେ। ଚିଲିକାର ନୀରୋଦ୍‌ଗତ ଅଧିକାଂଶ ପର୍ବତ ଅନ୍ୟ ପର୍ବତ ପରି ନିକଟବର୍ତ୍ତୀ ଦର୍ଶକଚକ୍ଷୁରେ ମରକତବର୍ଣ୍ଣ ଦିଶନ୍ତି ସତ୍ୟ, ମାତ୍ର ସେମାନେ ଅବଶ୍ୟ ମାରକତ ଅର୍ଥାତ୍ ମରକତଗଠିତ ନୁହନ୍ତି।

ମୋହୋର ଗ୍ରନ୍ଥାବଳୀର ୨ୟ ସଂସ୍କରଣ ବାହାରିବାର ଯେବେ କଦାଚିତ୍ ସମ୍ଭବପର ହୁଏ, ତାହେଲେ ପ୍ରକାଶକମାନଙ୍କୁ ଏ ଭ୍ରମସଂଶୋଧନ କରି ପଂକ୍ତିଦ୍ୱୟକୁ ପୂର୍ବବତ୍ କରିଦେବାକୁ ଅନୁରୋଧ କରିବି। ଯେଉଁମାନେ ଅନୁଗ୍ରହପୂର୍ବକ ମୋହୋର ଗ୍ରନ୍ଥାବଳୀ କ୍ରୟ କରିଅଛନ୍ତି ସେମାନଙ୍କୁ ମୋହର ବିନୀତ ଅନୁରୋଧ ଯେ ସେମାନେ ନିଜ ନିଜ ପୁସ୍ତକରେ ଏହି ସଂଶୋଧନ ସନ୍ନିବିଷ୍ଟ କରିଦେବେ ଏବଂ ସଦୟ ଭାବରେ ମୋହୋର ଭ୍ରମପ୍ରମାଦ ମାର୍ଜନ କରିବେ। ଓଡ଼ିଶାର ଅନ୍ୟାନ୍ୟ ଅଂଶ ଅପେକ୍ଷା ବାମଣ୍ଡାରେ ଏହି ସଂଶୋଧନ ପ୍ରଚାରିତ ହେବାର ବିଶେଷରୂପେ ବାଞ୍ଛନୀୟ, ହେତୁକି ବାମଣ୍ଡା ମୋହୋର ଗ୍ରନ୍ଥାବଳୀର ସର୍ବପ୍ରଧାନ ଅଭିଭାବକ ଏବଂ ସମଗ୍ର ଉତ୍କଳ ପ୍ରଦେଶରେ ଯେତେ ସଂଖ୍ୟକ ଗ୍ରନ୍ଥାବଳୀ ବିକ୍ରୀତ ହୋଇଅଛି ଏକମାତ୍ର ବାମଣ୍ଡା ରାଜ୍ୟରେ ସେଥିର ପ୍ରାୟ ଦୁଇଗୁଣ ବିକ୍ରୀତ ହୋଇଅଛି।

ବଶମ୍ବଦ
ଶ୍ରୀ ରାଧାନାଥ ରାୟ

# ସାହିତ୍ୟବିଷୟକ ଆଦର୍ଶ ପ୍ରଶ୍ନାବଳୀ

ସାହିତ୍ୟ କି ରୀତିରେ ଶିଖାଇଲେ ଛାତ୍ରମାନଙ୍କ ପ୍ରକୃତ ଉପକାର ଦର୍ଶିବ ଏ ବିଷୟରେ ଅତି ଅଳ୍ପ ସଂଖ୍ୟକ ଶିକ୍ଷକଙ୍କ ଆସ୍ଥା ଦେଖାଯାଏ। ଅଧିକାଂଶ ଶିକ୍ଷକ ବିବେଚନା କରନ୍ତି ଯେ ବ୍ୟାକରଣ ଶିକ୍ଷା ସାହିତ୍ୟର ଏକମାତ୍ର ଉଦ୍ଦେଶ୍ୟ; ତେଣୁ ସେମାନେ ବ୍ୟାକରଣ ସମ୍ବନ୍ଧୀୟ ବିଷୟମାନ ଛାତ୍ରମାନଙ୍କୁ ଶିଖାଇପାରିଲେ ଆପଣାକୁ କୃତକାର୍ଯ୍ୟ ମଣନ୍ତି। ଏହି ଭ୍ରାନ୍ତ ସଂସ୍କାର ଯେତେଦିନ ପର୍ଯ୍ୟନ୍ତ ତିରୋହିତ ନ ହେବ ତେତେଦିନ ପର୍ଯ୍ୟନ୍ତ ସାହିତ୍ୟ ଶିକ୍ଷାର ପ୍ରକୃତ ଉଦ୍ଦେଶ୍ୟ ସାଧିତ ହେବାର ଆଶା ଦୁରାଶା ମାତ୍ର।

ଶିକ୍ଷକମାନଙ୍କର ଏହା ସ୍ମରଣ ରଖିବାର ଉଚିତ ଯେ, ଅର୍ଥଜ୍ଞାନର ସୌକର୍ଯ୍ୟ ନିମନ୍ତେ ଶବ୍ଦର ସୃଷ୍ଟି, ଏବଂ ଶବ୍ଦଜ୍ଞାନ ପଦାର୍ଥଜ୍ଞାନର ଉପାୟ ବ୍ୟତୀତ ଆଉ କିଛି ନୁହେଁ। ଲକ୍ଷ୍ୟକୁ ଛାଡ଼ି କେବଳ ଲକ୍ଷଣପ୍ରତି ଦୃଷ୍ଟିରଖିବାର ନିତାନ୍ତ ଅଦୂରଦର୍ଶିତାର କାର୍ଯ୍ୟ ଅଟେ। ବ୍ୟାକରଣ ସହସ୍ର ଉପକାରୀ ହେଲେହେଁ ପଦାର୍ଥଜ୍ଞାନ ସଙ୍ଗେ ତୁଳିତ ହେଲେ ତାହା ଦ୍ୱିତୀୟସ୍ଥାନର ଯୋଗ୍ୟ – ସନ୍ଦେହ ନାହିଁ।

ସାହିତ୍ୟ ପଢ଼ାଇବା ସମୟରେ ଅଧୀତ ବିଷୟ ଛାତ୍ରମାନେ ବୁଝିପାରିଲେ କି ନାହିଁ ଏବଂ ତାହା ସେମାନଙ୍କର ପ୍ରକୃତ ରୂପେ ହୃଦୟଙ୍ଗମ ହେଲା କି ନାହିଁ ସର୍ବପ୍ରଥମେ ଏହା ଦେଖିବାର ଆବଶ୍ୟକ। ଏହି ଉଦ୍ଦେଶ୍ୟ ସିଦ୍ଧ ହେଲା ଉତାରୁ ବ୍ୟାକରଣ ସମ୍ବନ୍ଧୀୟ ପ୍ରଶ୍ନ ପଚାରିବାର ଉଚିତ। ବସ୍ତୁବିଚାର ପଢ଼ାହେଉଅଛି। ପରୀକ୍ଷକ ଛାତ୍ରମାନଙ୍କୁ ପଚାରିଲେ "କର୍ପୂରର ଉତ୍ପତ୍ତି ଏବଂ ବ୍ୟବହାର ବିଷୟରେ ଯାହା ଜାଣ ତାହା ଲେଖ।" ଶିକ୍ଷକ ଚକିତ ହୋଇ

କହିଲେ ଏ ତ ଇତିହାସ ନୁହେଁ, ଆପଣ ଏଭଳି ପ୍ରଶ୍ନ କାହିଁକି ପଚାରିଲେ – କାରକ, ସମାସ, ଅବ୍ୟୟ ପଚାରନ୍ତୁ ! ଏହିପରି ଆପତ୍ତି ଉତ୍‌ଥାପନଦ୍ୱାରା ଶିକ୍ଷକମାନେ କେବଳ ଆପଣାର ଅନୁପଯୁକ୍ତତାର ପରିଚୟ ଦିଅନ୍ତି। ସାହିତ୍ୟଗ୍ରନ୍ଥରେ ଐତିହାସିକ, ପୌରାଣିକ ଅଥବା ଭୂଗୋଳ ସମ୍ବନ୍ଧୀୟ କଥାର ଉଲ୍ଲେଖ ଥାଏ; ମାତ୍ର ଅନେକ ଶିକ୍ଷକ ସେହି ବିଷୟମାନ ଛାତ୍ରମାନଙ୍କୁ ବୁଝାଇଦେବା ଆପଣାର କର୍ତ୍ତବ୍ୟର ଅଙ୍ଗ ମଣନ୍ତି ନାହିଁ।

ପଦ୍ୟ ଅଧ୍ୟାପନ ସମୟରେ ଛନ୍ଦ ଏବଂ ଅଳଙ୍କାର ପ୍ରତି ଦୃଷ୍ଟି ରଖିବାର ଆବଶ୍ୟକ। ଗଦ୍ୟ ଏବଂ ପଦ୍ୟର ଭାଷାର ବୈଲକ୍ଷଣ୍ୟ ଛାତ୍ରମାନଙ୍କୁ ବୁଝାଇଦେବାର ଉଚିତ। ପରନ୍ତୁ ଯେଉଁ କବିତାମାନଙ୍କରେ ଉଚ୍ଚଭାବର ଅଧିକ ସ୍ଫୂର୍ତ୍ତି ଅଛି ସେହି କବିତାମାନ ଛାତ୍ରମାନଙ୍କୁ ମୁଖସ୍ଥ କରାଇଲେ ତଦ୍ଦ୍ୱାରା ମାନସିକ ଉତ୍କର୍ଷ ସାଧିତ ହୋଇପାରିବ।

ଉପରଲିଖିତ ମନ୍ତବ୍ୟଦ୍ୱାରା ମୋହୋର ଏମନ୍ତ ବୋଲିବାର ତାତ୍ପର୍ଯ୍ୟ ନୁହେ ଯେ, ବ୍ୟାକରଣ ପ୍ରତି ବର୍ତ୍ତମାନ ଯେଉଁ ପରିମାଣରେ ମନୋଯୋଗ ପ୍ରଦତ୍ତ ହେଉଅଛି ସେଥିର ହ୍ରାସ ହେବାର ଉଚିତ। ବ୍ୟାକରଣ ଭାଷାର ଦ୍ୱାରସ୍ୱରୂପ, ତେଣୁ ବ୍ୟାକରଣପ୍ରତି ଅନାସ୍ଥା ଦର୍ଶାଇବାର ଯେ ନିତାନ୍ତ ଗୁରୁତର ତ୍ରୁଟି ଏହା ବୋଲିବାର ବାହୁଲ୍ୟ। ମାତ୍ର ବ୍ୟାକରଣ ଶିକ୍ଷା ସଙ୍ଗେ ସଙ୍ଗେ ଅଧୀୟମାନ ପୁସ୍ତକର ବିଷୟଗୁଡ଼ିକୁ ଛାତ୍ରମାନଙ୍କ ହୃଦୟଙ୍ଗମ କରାଇବା ନିମନ୍ତେ ଯଥାସାଧ ଯତ୍ନ କରିବାର ଉଚିତ।

ଅନୁଲିଖନ ପ୍ରଥା ପ୍ରାୟ କୌଣସି ଉତ୍କଳ ବିଦ୍ୟାଳୟରେ ପ୍ରଚଳିତ ନାହିଁ। ଛାତ୍ରମାନଙ୍କୁ ପଠିତ ବିଷୟ ଆପଣାଭାଷାରେ ଲେଖାଇବାର ରୀତି ପ୍ରଚଳିତ ଥିଲେ ରଚନାରେ ସେମାନଙ୍କର ଏପରି ଶୋଚନୀୟ ଅପଟୁତା ସାଧାରଣତଃ ଲକ୍ଷିତ ହୁଅନ୍ତା ନାହିଁ। ଅନ୍ୟ ବିଷୟ ତେଣିକି ଥାଉ, ଐତିହାସିକ ବିଷୟମାନଙ୍କର ସାରସଂଗ୍ରହ ସୁଦ୍ଧା ଅତି ଅଳ୍ପ ଛାତ୍ରେ କରିପାରନ୍ତି। ଯଦିଚ ରଚନା ଇତିହାସ ଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ ନୁହେ, ସ୍ମୃତିର ସାହାଯ୍ୟ ନିମନ୍ତେ ସୁପ୍ରଣାଳୀମତେ ଛାତ୍ରମାନଙ୍କୁ ଇତିହାସର ସାରସଂଗ୍ରହ ଲେଖିବାକୁ ପ୍ରବୃତ୍ତ କରାଇଲେ ତଦ୍ଦ୍ୱାରା ରଚନାଶକ୍ତିର ବହୁ ପରିମାଣରେ ଉନ୍ନତି ହେବାର ସମ୍ଭାବନା।

ଏଥିରେ ପ୍ରଚଳିତ ଗଦ୍ୟ ଓ ପଦ୍ୟ ପାଠ୍ୟପୁସ୍ତକରୁ କେତେଗୁଡ଼ିଏ ପ୍ରଶ୍ନ ଦିଆଗଲା। ଉକ୍ତ ପୁସ୍ତକମାନଙ୍କରୁ ସମ୍ଭବତଃ ଯେତେ ପ୍ରଶ୍ନ ଦିଆଯାଇପାରେ ତତ୍‌ସମୁଦାୟ ଏଥିରେ ସନ୍ନିବେଶିତ କରିବାର ମୋହୋର ଅଭିପ୍ରେତ ନୁହେ, କେବଳ ପ୍ରଶ୍ନର ପ୍ରଣାଳୀ ପ୍ରଦର୍ଶନ ଏକମାତ୍ର ଉଦ୍ଦେଶ୍ୟ ଅଟେ। ଯେଉଁ ପୁସ୍ତକ ସମ୍ବନ୍ଧରେ ଯେଉଁ ରୀତିର ପ୍ରଶ୍ନ ଦିଆଗଲା ସେହି ରୀତିର ପ୍ରଶ୍ନ ଯେ କେବଳ ସେହି ପୁସ୍ତକ ପ୍ରତି ପ୍ରବର୍ତ୍ତିତ ଏମନ୍ତ ନୁହେ। ଫଳତଃ ସନ୍ନିବିଷ୍ଟ ପ୍ରକାରର ପ୍ରଶ୍ନ ତାବତ୍ ପାଠ୍ୟପୁସ୍ତକ ପ୍ରତି ସାମାନ୍ୟ ଅଟେ। କେବଳ ବାହୁଲ୍ୟ ପରିହାର ନିମନ୍ତେ ଏକ ପୁସ୍ତକ ସମ୍ବନ୍ଧରେ ଯେଉଁ ପ୍ରଶ୍ନ ଦିଆଯାଉଅଛି ଅନ୍ୟ ପୁସ୍ତକ ସମ୍ବନ୍ଧେ ତାହା ଦିଆଯାଉନାହିଁ।

ପ୍ରବନ୍ଧ ରଚନାର ଅନୁଶୀଳନ ପୂର୍ବରୁ, ଛାତ୍ରମାନଙ୍କୁ ଅନୁଲିଖନରେ ଅଭ୍ୟସ୍ତ କରାଇବାର ଉଚିତ ଓ ନିମ୍ନଶ୍ରେଣୀମାନଙ୍କରୁ ଏହି ପ୍ରଥା ପ୍ରଚଳିତ ହେବାର ଉଚିତ। ଶିକ୍ଷାମଞ୍ଜରୀ, ହିତବୋଧ, ବୋଧାଙ୍କୁର, ଆଖ୍ୟାନମଞ୍ଜରୀ ଏବଂ ବସ୍ତୁବିଚାର ପ୍ରଭୃତି ଗ୍ରନ୍ଥମାନଙ୍କରୁ ଅନୁଲିଖନ ଅପେକ୍ଷାକୃତ ସହଜ ହେବ। ପ୍ରଥମୋକ୍ତ ତିନିପୁସ୍ତକର ଗଳ୍ପଗୁଡ଼ିକ ଏମନ୍ତ ସରଳ ଯେ ଥରେ ପଢ଼ିଗଲେ ଛାତ୍ରମାନେ ପୁସ୍ତକ ମୁଦି ସ୍ମରଣଶକ୍ତି ସାହାଯ୍ୟରେ ସେହି ଗଳ୍ପଗୁଡ଼ିକ ଆପଣା ଭାଷାରେ ଲେଖିପାରିବେ, ତେଣୁ ଚତୁର୍ଥ ଅଥବା ପଞ୍ଚମଶ୍ରେଣୀରେ ଉକ୍ତ ପୁସ୍ତକମାନଙ୍କରୁ ଅନୁଲିଖନ ରୀତି ପ୍ରବର୍ତ୍ତିତ ହେବାର ଉଚିତ। ବସ୍ତୁବିଚାର ଏହି ରୀତିରେ ଦ୍ୱିତୀୟଶ୍ରେଣୀରେ ବ୍ୟବହୃତ ହେବାର ଅଯୋଗ୍ୟ ଅଟେ।

ଅନୁଲିଖନରେ ଛାତ୍ରମାନେ କିୟତ୍‌ପରିମାଣରେ ଅଭ୍ୟସ୍ତ ହେଲା ଉତ୍ତାରୁ, ସେମାନଙ୍କୁ ସହଜ ସହଜ ବିଷୟରେ ପ୍ରବନ୍ଧ ଲେଖାଇବ। ଯେ ବିଷୟମାନ ସେମାନେ ପ୍ରତ୍ୟହ ପ୍ରତ୍ୟକ୍ଷ ଦେଖୁଅଛନ୍ତି ପ୍ରଥମରେ ସେହିପରି ବିଷୟମାନ ଦେବାର ଉଚିତ। ଏହିଭଳି ବିଷୟଦ୍ୱାରା ସେମାନଙ୍କ ଚିନ୍ତା ଏବଂ ଅନୁସନ୍ଧିତ୍ସା କ୍ରମଶଃ ଉତ୍ତେଜିତ ହେଉଥିବ ଏବଂ କୃତକାର୍ଯ୍ୟତାଦ୍ୱାରା ସେମାନଙ୍କର ଉତ୍ସାହ ମଧ୍ୟ ବଢ଼ିବ।

ସାଧାରଣତଃ ରଚନାକୁ ଦୁଇଶ୍ରେଣୀରେ ବିଭକ୍ତ କରାଯାଇପାରେ – ଯଥା ବର୍ଣ୍ଣନାତ୍ମକ ଏବଂ ଯୁକ୍ତ୍ୟାତ୍ମକ। ଶେଷୋକ୍ତ ପ୍ରକାରର ରଚନା ଛାତ୍ରମାନଙ୍କ ପକ୍ଷରେ ଦୁଃସାଧ୍ୟ, ଅତଏବ ସର୍ବପ୍ରଥମରେ ସେମାନଙ୍କୁ ବର୍ଣ୍ଣନାତ୍ମକ ରଚନାରେ ଅଭ୍ୟସ୍ତ କରାଇବାର ବିଧେୟ। ଏହି ଉଦ୍ଦେଶ୍ୟ ସାଧନର ସୁବିଧା ସକାଶେ ଏହି ପ୍ରଶ୍ନାବଳୀର ଶେଷଭାଗରେ ପ୍ରଶ୍ନମାନ ଦିଆଗଲା। ଶିକ୍ଷକମହାଶୟମାନେ ଏହି ପ୍ରଶ୍ନ ଅଥବା ଏହି ପ୍ରଶ୍ନର

ଆଦର୍ଶରେ ଅନ୍ୟ ପ୍ରଶ୍ନ ଦେଇପାରନ୍ତି। ଆଦୌ ରଚନାର ବିଷୟଟି ଭିନ୍ନ ଭିନ୍ନ ଅଂଶରେ ବିଭକ୍ତ କରିଦେଲେ ବାଳକମାନଙ୍କ ପକ୍ଷେ ଅପେକ୍ଷାକୃତ ସହଜ ହେବ।

## ଶିକ୍ଷାମଞ୍ଜରୀ, ବର୍ଣ୍ଣବିଜ୍ଞାନ, ବର୍ଣ୍ଣବୋଧକ ଓ ବାଳବୋଧିନୀରୁ ପ୍ରଶ୍ନ।

୧। ସ୍ୱରବର୍ଣ୍ଣ କେତୋଟି -- ସେମାନଙ୍କର ନାମ କୁହ।

୨। ବ୍ୟଞ୍ଜନବର୍ଣ୍ଣ କେତୋଟି – ସେମାନଙ୍କର ନାମ କୁହ।

୩। ତୁମ୍ଭର ଏ ପୁସ୍ତକରେ ଅବନା ଦୁଇଅକ୍ଷରିଆ ଯେଉଁ କଥା ଦିଆଯାଇଅଛି ତହିଁରୁ ଦିଓଟି କୁହ ଓ ମନରୁ ଦିଓଟି କୁହ।

୪। ଋତୁ, ଋଷି, ଋକୁ ଏମାନଙ୍କ ପ୍ରଥମ ଅକ୍ଷର ଠିକ୍ ଅଛି କି ନା? ଯେବେ ନ ଥାଏ କିପରି ହେବ ଲେଖି ଦେଖାଅ ବା କୁହ।

୫। ତୁମ୍ଭର ପାଦ, ହସ୍ତ, ପୃଷ୍ଠଦେଶ, ମସ୍ତକ, ଚକ୍ଷୁ, ଓଷ୍ଠ, ନାସିକା, କର୍ଣ୍ଣ, ଅଙ୍ଗୁଳୀ, ଉଦର ଓ ଜାନୁ ଗୋଟି ଗୋଟି କରି ଦେଖାଅ। ହାତର ପାଁଚ ଆଙ୍ଗୁଳୀର ନାମ କି କି କୁହ?

୬। ଭାତ, ପୋଥି, ଜଳ ଏ ସବୁ କଅଣ ଓ ତୁମ୍ଭେ ଏ ସବୁ ନେଇ କି କର?

୭। ଉଷ୍ଟ୍ର, ଷସ୍ୟ, ପ୍ରଦିପ, କ୍ଲେଷ, ଇଶ୍ୱର, ନୀସ୍ୱାଶ, ଶ୍ମସାନ, ଅଟ୍ରାଳିକା, ପଶ୍ଚିମ, ବୃଶ ଏମାନଙ୍କର ବନାନ ଠିକ୍ ଅଛି କି ନା? ଯଦି ନଥାଏ ଠିକ୍ କରି ଲେଖ।

୮। କେତେଗୁଡ଼ିଏ ଫଳ ଓ ଫୁଲର ନାମ କର। ତୁମ୍ଭ ପୁସ୍ତକରେ ଯେଉଁ ଫଳ ଓ ଫୁଲର ନାମ ଅଛି ତାହା ଛଡ଼ା ତୁମ୍ଭେ ଚାରୋଟି ଲେଖାଏ ଫଳ ଓ ଫୁଲର ନାମ କୁହ।

୯। ୭ ଗୋଟି ବୃକ୍ଷର ନାମ କହ ଓ ତୁମ୍ଭ ପୁସ୍ତକରେ ଥିବା ଗଛର ନାମ ଛଡ଼ା ଅନ୍ୟ ଚାରୋଟି ଗଛର ନାମ କୁହ।

୧୦। ତୁମ୍ଭ ପୁସ୍ତକରେ ଯେତେ ପଶୁ ଓ ପକ୍ଷୀର ନାମ ଅଛି ସବୁ କୁହ।

୧୧। ବାର କେତୋଟି, ସେମାନଙ୍କ ନାମ କୁହ ଏବଂ ତିଥି କେତୋଟି ସେମାନଙ୍କର ନାମ କୁହ।

୧୨। ଧାତବାନ ଏକତ୍ରରେ କ'ଣ କହି? ବର୍ଷଟା କେଇ ଭାଗରେ ବିଭକ୍ତ, ପ୍ରତି ଭାଗକୁ କି କହି? ସେହି ପ୍ରତି ଭାଗର ନାମ କୁହ।

୧୩। ଆମ୍ଭେମାନେ ବର୍ଷକ ମଧ୍ୟରେ କେଇ ଋତୁ ଭୋଗ କରିଥାଉଁ? ସେମାନେ କି କି?

୧୪। ଧାରାକ୍ରମେ ଇଂରାଜୀ ବାରମାସର ନାମ କୁହ। ବାରଟି ସୌରମାନ ମାସର ନାମ ବୋଲ।

୧୫। ରଜାଙ୍କ ସ୍ତ୍ରୀକୁ କି କହି? ଗୌଡ଼ର ସ୍ତ୍ରୀକୁ କି କହି? ଭଣ୍ଡାରିର ସ୍ତ୍ରୀକୁ କି କହି? କେଉଟର ସ୍ତ୍ରୀକୁ କି କହି?

୧୬। ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ଦେହ ଚର୍ମଦ୍ୱାରା କି କି କାର୍ଯ୍ୟ ହୁଏ କୁହ। ଯାହାର ଏକଚକ୍ଷୁନାହିଁ ତାକୁ କ'ଣ କହି?

୧୭। ପର୍ବତ, ନଦୀ ଓ ତରୁ ଏମାନେ କଅଣ?

୧୮। ୬ ଋତୁ ମଧ୍ୟରେ କେଉଁ ଋତୁ କେଉଁ କେଉଁ ମାସରେ ହୁଏ? କେଉଁ ଋତୁ ସବୁଠାରୁ ଭଲ?

୧୯। ଗ୍ରୀଷ୍ମ ଋତୁ କଥା ଯାହା ପଢ଼ିଅଛ ତାହା ଆପଣା ମନରୁ ଲେଖ?

୨୦। ଅତି ଲୋଭ କଲେ ଆପଣା ପୂର୍ବ ପୁଞ୍ଜି ସୁଦ୍ଧା ନଷ୍ଟ ହୁଏ – ଏ ବିଷୟ କିପରି ଗୋଟିଏ ଗଳ୍ପ କରି ବୁଝାଅ?

୨୧। ପଦାର୍ଥ କଅଣ? କେଇ ପ୍ରକାର? କେତେଗୁଡ଼ି ଚେତନ ଓ ଅଚେତନ ପଦାର୍ଥର ନାମ କର– ଉଦ୍ଭିଦ ପଦାର୍ଥ କିପରି ହୁଏ? ଦୁଇ ତିନୋଟି ଉଦ୍ଭିଦ ପଦାର୍ଥର ନାମ କୁହ?

୨୨। ଇନ୍ଦ୍ରିୟ କେତୋଟି ଓ କି କି? କେଉଁ ଜନ୍ତୁର କି କି ଇନ୍ଦ୍ରିୟ ଅନ୍ୟ ଜନ୍ତୁର ଇନ୍ଦ୍ରିୟଠାରୁ ପ୍ରବଳ?

୨୩। ଧାତୁ କି କି? କେଉଁଠାରୁ ମିଳେ? ସୁନାର ଦାମ୍ କାହିଁକି ସବୁ ଧାତୁଠାରୁ ଅଧିକ? ରୂପା କିପରି ଓ ଏଥିରେ କି କି କାର୍ଯ୍ୟ ହୁଏ?

୨୪। ମହୁମାଛିଠାରୁ କି ଗୁଣ ଶିକ୍ଷା କରିବାର ଉଚିତ କୁହ ବା ଲେଖ?

୨୫। ବାଲ୍ୟକାଳରେ କି କି କର୍ତ୍ତବ୍ୟ କର୍ମ ଶିକ୍ଷା କରିବାକୁ ହୁଏ ତାହା ଲେଖ?

୨୬। ରାଜାଙ୍କର କି ପ୍ରଧାନ ଗୁଣ ଥିବାର ଆବଶ୍ୟକ? କଥା କହିବା ବେଳେ କି କି ନିୟମ ଅନୁସରି ଚଳିବ? ପ୍ରତିଜ୍ଞା କରିବା ପୂର୍ବୁ କିପରି ବିଚାରିବା ଉଚିତ? ଗଧଠାରୁ କି ଗୁଣ ଶିଖିବା ଉଚିତ? ସବୁ ବିଷୟ ଅତି ବେଶି ହେଲେ କିପରି ଦଶା ହୁଏ?

୨୭। ଜନକ ଓ ଜନନୀଙ୍କପ୍ରତି କିପରି ବ୍ୟବହାର କରିବ?

୨୮। ଚାରିଦିଗର ନାମ କର, ଚାରି କୋଣର ନାମ ବୋଲ, ଅଗ୍ନିକୋଣ କାହାକୁ କହି?

୨୯ । ?, –, " ", ଏହି ଚିହ୍ନମାନଙ୍କୁ କ'ଣ କହି ? " " ଏହି ଉଦ୍ଧୃତ ଚିହ୍ନ କିପରି ସ୍ଥଳେ ବ୍ୟବହାର ହୁଏ ?

୩୦ । ଆପଣା ଶରୀର ସୁସ୍ଥ ରଖିବା ନିମନ୍ତେ କି କି ନିୟମ ଅବଲମ୍ବନ କରିବା ଉଚିତ ?

୩୧ । ଇଂରାଜୀ ମାସରେ ୩୦ ଶା ଓ ୩୧ ଶା ମାସ କି କି ବୋଲ । ଏଥିରେ ୨୯ ଦିନିଆ ମାସ କେଉଁଟା ଓ କେବେ ପଡ଼େ ? ପ୍ରଚଳିତ ସନମାନଙ୍କ ନାମ ବୋଲ ।

୩୨ । ପାଠଶାଳାରେ ପଢ଼ି ଯେପରି ଆପଣାର ଉନ୍ନତି କରିଅଛ ସେ ବିଷୟରେ ତୁମ୍ଭ ପିତାଙ୍କଠାକୁ ଖଣ୍ଡିଏ ଛୋଟ ଚିଟାଉ ଲେଖ ।

୩୩ । ଦୟା ପରମ ଧର୍ମ, ପର ଉପରେ ନିର୍ଭର କରିବ ନାହିଁ, ଜ୍ଞାନୀ ପୂଜା ପାଏ ସବୁ ଦେଶରେ, ଆଖି ଥାଇ ଆଖି ଖସିଲା ପରେ, ସେ ନେତା ହୋଇ ଲୋକଦଳରେ, ଶରଧା କରିବ ଭଲ ଚିଜକୁ – ଏମାନଙ୍କ ମତଲବ କି ବୁଝିଅଛ ଆପଣା କଥାରେ ବୁଝାଇ ଲେଖ ।

୩୪ । ଉଧାର କରି ଯେଉଁମାନେ ଦାନ କରନ୍ତି ସେମାନେ ଦାନୀ ନୁହନ୍ତି, ସେମାନେ ଦସ୍ୟୁ । ଈଶ୍ୱର ମନ ଜାଣନ୍ତି ଓ ତଦନୁସାରେ ଫଳ ଦିଅନ୍ତି, କାହାରି ସଙ୍ଗେ ସମ୍ଭାଷଣ କଲାବେଳେ କ୍ରୂର କଥା କହିବ ନାହିଁ, ପିତା ପରି ରକ୍ଷା କରେ ସଙ୍କଟ ବେଳରେ, ପ୍ରିୟ ଲୋକ ପରି ହୁଏ ସନ୍ତୋଷ ଆକର, ପରାକ୍ରମେ ବଶୀଭୂତ ହୁଅଇ ଦୁର୍ଜନ, ପ୍ରତିଷ୍ଠାରୁ ଶିବ ବିଷ ପିଇଲେ, ଅଶନି କରକା ପାତକୁ ଦକ, ପିକ କରେ ରତ ବସି ସହକାର ଡାଳେ, ତାହାର ଆମୋଦେ ବନଭାଗ ଚହଟଇ – ଏହି ଅଂଶମାନଙ୍କ ବ୍ୟାଖ୍ୟା ସରଳ କଥାରେ ଲେଖ ?

୩୫ । ମୁକ୍ତା, ଲବଙ୍ଗ, ଜାତିଫଳ କେଉଁଠାରେ ମିଳେ ? ଲବଙ୍ଗ ଗଛର କଥା କ'ଣ ଜାଣ ଲେଖ ।

## ହିତବୋଧରୁ ପ୍ରଶ୍ନ

୧ । ଠାବ, ଗୁଣ୍ଡ, ହୁଡ଼ିବା, ପିମ୍ପୁଡ଼ି, ବାଣ୍ଟିବା ଓ ଭେଟିବା ଏମାନଙ୍କ ସାଧୁଶବ୍ଦ ଦିଅ । ମନୁଷ୍ୟ କି ହେତୁ ଅନ୍ୟ ସକଳ ଜୀବଠାରୁ ଶ୍ରେଷ୍ଠ ?

୨ । ଗ୍ରାମ, ପରଗନା, ଜିଲା, ସହର, ରାଜଧାନୀ କାହାକୁ କହି ?

୩ । ଲୋମଶ, ପ୍ରାଦୁର୍ଭାବ, ଅଧମ, ବିରାଜମାନ, ହ୍ରଦ, ଦ୍ୱୀପ, ସନ୍ଧି, ଯୁଦ୍ଧ ଏମାନଙ୍କ ଅର୍ଥ ବୁଝାଇ ଲେଖ ।

୪ । ବାଳକେ ମୋର ବୋଲ କର, ବେଳହୁଁ ଈଶ୍ୱର ସୁମର – ଏହାର ମତଲବ କି ବୁଝିଅଛ ଲେଖ ।

୫ । ପରିଶ୍ରମର ବିପରୀତ ଅର୍ଥବୋଧକ କଥା କ'ଣ ? ତୁମ୍ଭେ ପରିଶ୍ରମ ଯୋଗେ କି କି ପାଅ ଓ ଅଳସତା ଯୋଗେ କି କି ହରାଅ ? ଶାରୀରିକ ଓ ମାନସିକ ପରିଶ୍ରମ କିପରି କୁହ ?

୬ । ଐଶ୍ୱର୍ଯ୍ୟ, ପ୍ରପିତାମହ, ଭ୍ରମ, ସ୍ଫୂର୍ତ୍ତି, କୁପ୍ରଥା, ପ୍ରକୃତି – ଏମାନଙ୍କ ଅର୍ଥ ଲେଖ ।

୭ । ଯାହାର ବିଦ୍ୟା ନାହିଁ ତାକୁ କି ବୋଲି ? ମୂର୍ଖଲୋକ କିପାଇଁ ପଶୁ ସମାନ ? ଯାହାର ଟଙ୍କା କଉଡ଼ି ଯଥେଷ୍ଟ ଥାଏ ତାକୁ ବିଦ୍ୟାଲାଭ କରିବା ଉଚିତ କି ନା, ଯେବେ ଉଚିତ, କି କାରଣରୁ ?

୮ । ଦୋହିତା, ଦ୍ରୁଷ୍ଟ, ଦ୍ରୁଦଶା, ବ୍ରତମାନ, ଭାର୍ଜନ, ସର୍ଜନା, ଶ୍ୟାନ୍ତ, ପ୍ରୁଷ୍ଟ – ଏକଥାଗୁଡ଼ି ଶୁଦ୍ଧ କରି ଲେଖ ।

୯ । ମନୁଷ୍ୟର ଜୀବନ କାଳ କେଉ ଅବସ୍ଥାରେ ବିଭକ୍ତ ? ସେମାନଙ୍କ ନାମ କୁହ । ବାଲ୍ୟାବସ୍ଥାରେ କି କି ଶିକ୍ଷା କରିବା ଉଚିତ ?

୧୦ । କୃତଜ୍ଞତା, ଆଲୋଚନା, ସଂସ୍କାର, ଜ୍ଞାନବୃଦ୍ଧ, ବୟୋବୃଦ୍ଧ, ପ୍ରଗଲ୍ଭ, ଉତ୍ସାହ, ଆକାଙ୍କ୍ଷା, ସ୍ପୃହା, ଅଧ୍ୟାପକ, ଅଭିନିବେଶ, ହିତାହିତ ଏମାନଙ୍କ ଅର୍ଥ ଲେଖ । ଶିକ୍ଷାଗୁରୁଙ୍କପ୍ରତି କିପରି ବ୍ୟବହାର କରିବା ଉଚିତ ମନରୁ ଗଳ୍ପକଲାପରି କୁହ ।

୧୧ । ଋଙ୍ଗମାନଙ୍କ ନାମ କର, ଗଛର ଭିନ୍ନ ଭିନ୍ନ ଅଂଶମାନଙ୍କ ନାମ କର । ଭୂମିରେ ମଞ୍ଜି ପଡ଼ି କିପରି ଗଛ ହୁଏ କୁହ ।

୧୨ । ଓଡ଼ିଶ୍ୟାର କେଉଁ ନଦୀର ବାଲିରୁ ସୁନା ମିଳେ ? ପ୍ଲାଟିନା ଧାତୁରୁ କି କି ପଦାର୍ଥ ପ୍ରସ୍ତୁତ ହୁଅଇ ?

୧୩ । ସ୍ୱାଭାବିକ ଓ କୃତ୍ରିମ ଏ ଦୁଇ କଥାର ମାନେ ବୁଝାଇଦିଅ । କିପରି ସ୍ଥଳେ ଦୟା ପ୍ରକାଶ କରିବ ? ଅତି ଦାନ କଲେ ଲୋକେ କିପରି ଅବସ୍ଥାକୁ ଲଭିବେ ?

୧୪ । ଏକ ବାର୍ଷିକ ଓ ବହୁବାର୍ଷିକ ଗଛର ମାନେ କି ବୁଝିଅଛ କୁହ ? ତୁଳା ଏ ଦେଶରୁ କେଉଁଠାକୁ ରପ୍ତାନୀ ହୁଏ ? ତୁଳା ଛଡ଼ା ଆଉ କି କି ପଦାର୍ଥ ବିଦେଶକୁ ପଠାଯାଏ ଲେଖ ।

୧୫ । ପଶୁ ପକ୍ଷୀମାନଙ୍କ ସ୍ୱାଭାବିକ ଜ୍ଞାନ କିପରି କୁହ । ମନୁଷ୍ୟ ଏମାନଙ୍କଠାରୁ କି କି ଗୁଣ ଅଧିକା ପାଇ ଅଛନ୍ତି ବୋଲ ।

୧୬ । ଉଭୟଚର ପ୍ରାଣୀରୁ ପାଞ୍ଚୋଟିର ନାମ କର । ବୃଷ୍ଟିଜଳ କିପରି ଜାତ ହୁଏ ? "ଜଳ ବିହୁନେ ସୃଷ୍ଟି ନାଶ, ଜଳ ଗହଳେ ସୃଷ୍ଟି ନାଶ ।" – ଏହା ଆପଣାର ସହଜ କଥାରେ ବୁଝାଇଦିଅ ।

୧୭ । କ୍ଷୁଧା କ'ଣ ଓ କିପରି ଜନ୍ମେ ? ସଦାଶୟ ଓ କ୍ଷୁଦ୍ରାଶୟ ଗୁଣର କିପରି ପରିଚୟ ମିଳେ ?

୧୮ । ଅର୍ଥୋତ୍ପାଦନ କରିବାରେ କି କି ଆବଶ୍ୟକ ? ଧନର ଆୟ ବ୍ୟୟ ସମ୍ବନ୍ଧରେ କି କି ନିୟମ ଅନୁସରି ଚଳିବା ଉଚିତ ?

୧୯ । ଚିହ୍ନିତ ଓ ଅଚିହ୍ନିତ କର୍ମଚାରିମାନଙ୍କ ମଧ୍ୟରେ ପ୍ରଭେଦ କି ? ମାଜିଷ୍ଟ୍ରେଟ ଓ କଲେକ୍ଟର ସାହେବଙ୍କ ପ୍ରତି କି କାର୍ଯ୍ୟଭାର ଅର୍ପିତ ହୋଇଅଛି ? ଜଜ ସାହେବଙ୍କ କାର୍ଯ୍ୟ କଅଣ ?

୨୦ । କେତେଗୁଡ଼ି ପ୍ରଚଳିତ ଆଇନର ନାମ କର ।

୨୧ । ସରଳ ବ୍ୟବହାରର ଗୋଟିଏ ମୋହିନୀ ଶକ୍ତି ଅଛି, ଅତି ଦାନରେ ବଳୀରାଜା ନଷ୍ଟ ହୋଇଥିଲେ, ଶକ୍ତି ଊଣା ପଡ଼ିଯାଏ, ଅତିରିକ୍ତ ପରିଶ୍ରମ ମଧ୍ୟ ଦୂଷଣୀୟ, ପୃଥିବୀର ମେରୁପ୍ରଦେଶ, ସୌଭାଗ୍ୟମଦରେ ମତ୍ତ ହୋଇ, ବାଳକତା ଓ ଲଘୁତା ପ୍ରକାଶ ପାଏ, ସ୍ୱାର୍ଥ-ପରଲୋକ ନିଜ ସ୍ୱାର୍ଥ ତ୍ୟାଗ କରି କାହାରିକୁ ଉପଦେଶ ଦିଅଇ ନାହିଁ, ଦୋଷୀ ଲୋକ କେବେହେଁ ଶଙ୍କାବିହୀନ ହୋଇ କାଳଯାପନ କରି ପାରେ ନାହିଁ, ଆତ୍ମଦୃଷ୍ଟାନ୍ତକୁ ଅନାଇ ପର ପୀଡ଼ାରୁ ନିବୃତ୍ତ ହେବା ଉଚିତ, ମନୁଷ୍ୟ ଦୋଷାଶ୍ରିତ, ଆପଣା ଦୋଷ ଦେଖିବା ବେଳକୁ ଅନ୍ଧ ହୁଅଇ, ସତ୍ୟସ୍ୱରୂପ ଈଶ୍ୱରଙ୍କୁ ପ୍ରତ୍ୟକ୍ଷ ଜାଣି ସକଳ କାର୍ଯ୍ୟ କରିବ – ଏହି ଗଦ୍ୟାଂଶମାନ ସରଳ କଥାରେ ବିସ୍ତାର କରି ବୁଝାଇ ଲେଖ ।

## ବୋଧାଙ୍କୁରରୁ ପ୍ରଶ୍ନ

୧ । ଅଚେତନ ପଦାର୍ଥ କେତେ ପ୍ରକାର ? ସେମାନଙ୍କ ଦୃଷ୍ଟାନ୍ତ ଦିଅ । ସଜୀବ ପଦାର୍ଥ କେତେଭାଗରେ ବିଭକ୍ତ ? ପ୍ରତ୍ୟେକ ଭାଗରୁ ଦୁଇ ଦୁଇଟି ବସ୍ତୁର ନାମ କର ।

୨ । ମନୁଷ୍ୟବିନା ଅନ୍ୟ ପ୍ରାଣୀଙ୍କି କି ନିମନ୍ତେ ନିର୍ବୋଧ ବୋଲି ? ପିତା ମାତା କି କାରଣରୁ ଅତୀବ ମାନନୀୟ ଅଟନ୍ତି ?

୩ । ଗ୍ରାମ୍ୟ ଓ ବନ୍ୟପଶୁ କାହାକୁ କହି ? ସେମାନଙ୍କର ନାମ ଦିଅ । ଅଣ୍ଡିରା ଓ ମାଈଗୋରୁଙ୍କୁ ଏକ କଥାରେ କି କି ବୋଲାଯାଏ ? କୁକୁରକୁ କି ନିମନ୍ତେ ପାଳିବା ଉଚିତ ?

୪ । ପରପୁଷ୍ଟ କେଉଁ ପକ୍ଷୀର ନାମ ଏପରି, ନାମ ହେବାର ହେତୁ କି ? ମତ୍ସ୍ୟ, ଭେକ, କାକ, ହଂସ, କୋକିଳ, ଜୋକ– ଏମାନଙ୍କ ମଧ୍ୟରେ କାହାକୁ କେଉଁ 'ଚର' ବୋଲାଯାଏ ?

୫ । ଅଣ୍ଡଜ, ଜରାୟୁଜ, ସ୍ୱେଦଜ, ଉଦ୍ଭିଜ, ମୂକ, ତୃଣାଶୀ, ମାଂସାଶୀ, ବିହଙ୍ଗମ, ବଲ୍ମିକ ଏମାନଙ୍କ ଅର୍ଥ ସବିଶେଷରୂପେ ବୁଝାଇ ଲେଖ ।

୬ । କେତେଗୁଡ଼ି କୀଟ ଓ ପତଙ୍ଗର ନାମ ବୋଲ; ପକ୍ଷିମାନଙ୍କୁ କି ନିମନ୍ତେ ଦ୍ୱିଜ ବୋଲାଯାଏ ? ଚକ୍ଷୁ, କର୍ଣ୍ଣ, ନାସିକା କେଉଁ ଜନ୍ତୁର କିପରି ପ୍ରବଳ କୁହ ।

୭ । ବିଆଳିଧାନ ଚାଷ କରିବା ରୀତି ସଂକ୍ଷେପରେ ଲେଖ ।

୮ । ବତୁରିବୁଣା, ଖରୁଡ଼ିବୁଣା, ବତୁରିଗାର, ବେଉଷଣ, ଷାଠିକା, କଳାମଇ, ଖେଳୁଆ, ଅଛରାତଳୀ, ବରଡ଼, ଡଳିମୁଣ୍ଡା, କଟଡ଼ାକଟା – ଏ ସବୁ କଥା ବୁଝାଇଦିଅ ।

୯ । କେତେଗୁଡ଼ି ସାରର ନାମକର । ପିଡ଼ିଆ ଓ ପଙ୍କସାର କିପରି କେଉଁ ଫସଲରେ ଲାଗେ ଲେଖ ?

୧୦ । ମଳମାସ କିପରି ହୁଏ ଲେଖ ? ପ୍ରଚଳିତ ସମ୍ବତ୍, ଶକାବ୍ଦ, ସାଲ ଓ ମସିହା ପ୍ରଭୃତି ସନ କିପରି କେଉଁ ଦିନଠାରୁ ଚଳି ଆସୁଅଛି ଲେଖ ?

୧୧ । ରସ କେତେ ପ୍ରକାର ? ସେମାନଙ୍କ ନାମ ବୋଲ । କୌଣସି ପଦାର୍ଥର ବେଧ କାହାକୁ କହି ? ବେଧ ଓ ଉପସର୍ଗ ଏ ଦୁଇ କଥାରେ କିଛି ପ୍ରଭେଦ ଅଛି କି ନା ?

୧୨ । ପିତ୍ତଳ, କଂସା ଓ କାଚ କି କି ପଦାର୍ଥ ଯୋଗେ ପ୍ରସ୍ତୁତ ହୁଏ ? ତୁମ୍ଭର ପୁସ୍ତକସ୍ଥ ଅକ୍ଷର-ଗୁଡ଼ିକ କିପରି ଛପାଯାଇଅଛି ? ହୀରା କେତେ ଜାତିର ହୁଏ ଓ ତାହାର ଜାତି କିପରି ଚିହ୍ନାଯାଏ ?

୧୩ । ଜୁଆର ଓ ଛାଡ଼େଣୀ କିପରି ଘଟେ ଲେଖ । ଦିଗ୍‌ବାରଣ ଯନ୍ତ୍ର କି ଉପକାରରେ ଆସେ ?

୧୪ । ଉଷ୍ଣପ୍ରସ୍ରବଣ କି ? ଓଡ଼ିଶାରେ ଉଷ୍ଣପ୍ରସ୍ରବଣ କେଉଁଠାରେ ଅଛି କୁହ ?

୧୫ । ମଦ୍ୟପାନ କଲେ କିପରି ଦଶା ଲଭିବାକୁ ହୁଏ ସରଳ କଥାରେ ସଂକ୍ଷେପରେ ଲେଖ ।

୧୬ । ମାନ୍ୟାସ୍ପଦ, ମନୋବଚନ କର୍ତ୍ତବ୍ୟ, ଗରୀୟାନ୍, ପ୍ରକଟ, ଅଚେଷ୍ଟିତ, ଅବିଧେୟ, ଉନ୍ମାଦଜନକ, ପ୍ରସ୍ତରବିକାରକୁ ଭଜି, ନିଶ୍ଚୟାତ୍ମକବୋଧକତା, ଅତଳସ୍ପର୍ଶ, ଅପାର, ପ୍ରବଳ, ସ୍ୱଚ୍ଛ, ଉଷ୍ଣପ୍ରସ୍ରବଣ, ଇୟତ୍ତା, ଅନ୍ୟଥା, କୋକିଳ ଗଠନ, ସୁପରିଣତ, ମାର୍ଜିତ, ପ୍ରବାଦ, ଉନ୍ନିଦ୍ର – ଏମାନଙ୍କ ଅର୍ଥ ଲେଖ ।

୧୭ । ନିମ୍ନଲିଖିତ ବାକ୍ୟମାନଙ୍କରେ ଭୁଲ ଥିଲେ ସଂଶୋଧନ କରି ଲେଖ –

ସେ ବାଳକ ଖୁବ୍ ସଂସ୍କାର ପଢ଼ିଚି । ଏ ବିଷୟରେ ମୋର ବଡ଼ ଉତ୍ସାହ ହୋଇଅଛି । ମୁଁ ସେଠାରୁ ସାଉକାର ପତ୍ର ଆଣିଅଛି । ଭାରଥ ଯୁଦ୍ଧ ଅଠର ଦିନେ ଶେଷହୋଇଥିଲା । ଦୃଯୋଧନ, ଯୁଧିଷ୍ଟିର, ଧୃଶାସନ, ଏମାନେ ବଡ଼ ବୀର ଥିଲେ । ମୁଁ ଏହା ତାଙ୍କଠାରେ ଭର୍ତ୍ସେଇ ଦେବି । ତାକୁ ଦୁର୍ବୁଦ୍ଧି ଘଟିଚି । ସେ ଚୋର ପାଣି ବଡ଼ ନ୍ରିମଳ ହୋଇଛି । ଶିକ୍ଷକ ଆମ୍ଭପ୍ରତି ବିରକ୍ତ ଅଛନ୍ତି । ସେ ଗୋଟିଏ ପ୍ରଷ୍ଟବକ୍ତା ଲୋକ । ଆଜି ଆମ୍ଭଙ୍କୁ ଚାରିଟାବେଳେ ଅର୍ଣ୍ଣ ଚାରୋଟି ମିଳିଲା । ତାଙ୍କର ଦ୍ରଶନ ପାଇବା କଠିଣ । ଆମ୍ଭ ଶ୍ୱରୀର ବର୍ତ୍ତମାନ ସୁସ୍ଥଅଛି ।

୧୮ । ଦାନୀ, ଉଚ୍ଚ, ମହାଜନ, ସୌଭାଗ୍ୟ, ପରିଶ୍ରମୀ, ଯତ୍ନ, ବଳବାନ୍, ସୁଖ, ଜୀବନ, ଭଲ, ଦୟାଳୁ, ପଣ୍ଡିତ, ସତ୍ୟ, ଭାରୀ, ଆଲୋକ – ଏମାନଙ୍କ ଠିକ୍ ଓଲଟା କଥା କି କି ବୋଲ ?

## ଆଖ୍ୟାନମଞ୍ଜରୀରୁ ପ୍ରଶ୍ନ

୧ । ପ୍ରତିବେଶୀ, ସୁତରାଂ, ଅପତ୍ୟ, ଆଖ୍ୟାନ, ମଞ୍ଜରୀ, ଆନୁଷଙ୍ଗିକ, ପିତୃବ୍ୟ, ସୌଜନ୍ୟ, ବିପରୀତ ଏହି ଶବ୍ଦମାନଙ୍କର ଅର୍ଥ ଲେଖ ।

୨ । ଦୟା, ଅଶ୍ୱ, ନିରୀକ୍ଷଣ, ଗହ୍ୱର, ଦେହ, ଅରଣ୍ୟ, ଗୃହ, ମାର୍ଗ, ହସ୍ତ, ଅଗ୍ନି, ଏମାନଙ୍କର ପ୍ରତ୍ୟେକର ଚାରୋଟି ପ୍ରତିଶବ୍ଦ ଦିଅ ।

୩ । ସହଜ, ଅବଶ୍ୟ ଏହି ଦୁଇଶବ୍ଦର ପ୍ରକୃତ ଅର୍ଥ ବୁଝାଇଦିଅ ।

୪ । ଘୋଡ଼ା, ଧୂଆଁ, ବଢ଼େଇ, ପୁଅ, ମୁହଁ, କାଦୁଅ, କାମ, ମାଛ, ହାତ, ଶଗଡ଼, କାନ୍ଦିବାର ଏମାନେ କେଉଁ ଶବ୍ଦର ଅପଭ୍ରଂଶ ?

୫ । ମେହେନତ, ଖାଇବାପିନ୍ଧିବାର, ବିଛଣା, ଦରକାର, ସଞ୍ଜବେଳ, ଆପେ, ପହଁରିବାର, ଚଢ଼ିବାର, ଏମାନଙ୍କ ସାଧୁଶବ୍ଦ ଲେଖ ।

୬ । ଅସୀମ, ଅଶ୍ୱାରୋହୀ, ବହୁକଷ୍ଟ, ହତାଶ, ଅନନ୍ୟମନରେ, ଭ୍ରାତୃସ୍ନେହ, ଦିନଯାପନ, ବିଧବା, ସୁବୋଧ, ମୁକ୍ତକଣ୍ଠରେ – ଏହି ପଦମାନଙ୍କର ସମାସ ବିଶ୍ଳେଷ କର ।

୭ । ଜଳ, ଅସୀମ, ଆସିବାର, ଅନୁଜ, ପୁରସ୍କାର, ମୂର୍ଖ, ବ୍ୟୟ, କୃତଜ୍ଞତା, ସବଳ, ବିଧବା, ସଦୟ, ଜ୍ୟେଷ୍ଠ ଏମାନଙ୍କ ବିପରୀତାର୍ଥବୋଧକ ଶବ୍ଦ ଲେଖ ।

୮ । ଯଥେଷ୍ଟ, କୃତାଞ୍ଜଳି, ନୟନାଶ୍ରୁ, ଅତୀବ, ପଦାର୍ଥ, ନିର୍ଭୟ, ଅନ୍ୱେଷଣ, ଏମାନଙ୍କର ସନ୍ଧି ବିଚ୍ଛେଦ କର ଏବଂ ଲକ୍ଷଣ ବୋଲ ।

୯ । ଆବୃତ୍ତ, ଉତ୍ତାପ, ନିର୍ମ୍ମାଣ, ଧାରଣ, ପ୍ରବେଶ ଏମାନଙ୍କର ଧାତୁ ପ୍ରତ୍ୟୟାଦି ଲେଖ ।

୧୦ । ସୌଭାଗ୍ୟ, କୌଶଳ, ଉଦାୟ, ସାମର୍ଥ୍ୟ, ଏମାନେ କି ରୂପେ ନିଷ୍ପନ୍ନ ହୋଇଅଛନ୍ତି ଲେଖ ।

୧୧ । ଅବହିତ – କେଉଁ ଧାତୁରୁ ନିଷ୍ପନ୍ନ ଏବଂ ସେହି ଧାତୁରୁ ନିଷ୍ପନ୍ନ ଆଉ ଯେତେ ଶବ୍ଦ ଜାଣ ଲେଖ ।

୧୨ । ରାକ୍ଷାସ, ଶିରାଧ, ରଞ୍ଚନା, ସ୍ନାହାନ, ବାନ୍ଧେବ, ସୁନ୍ଦେରୀ, କାମେନୀ, ତ୍ରେଷ୍ଠା, କ୍ଷୁଧା, ବେପାର, ବାଳକୀ, ବେବସା, ନିମାଂଶା, ଆଶ୍ଚାର୍ଯ୍ୟ, ଜଗର୍ନ୍ନାଥ, ପୁରସ୍ତମ, କଉତୁକ, ପାତେକ, ଯୁଧ୍ୟ, ସୃଯ୍ୟ, ଦୁଜନ, ତୃସ୍ତି, କ୍ରପୂର, ବିବର୍ଚ୍ଚନା, ଭୟାଙ୍କାର, ଅନ୍ଧକ୍ରାର, ସମୟା, ପାଦୁକ, ଏହି ଶବ୍ଦମାନଙ୍କର ଅଶୁଦ୍ଧି ସଂଶୋଧନ କର ।

୧୩ । ଇୟୋରୋପର ଅନ୍ତଃପାତୀ, ସୁଇଟଜରର୍ଲଣ୍ଡ ଦେଶ ପର୍ବତ ସଙ୍କୁଳ, ସେହି ସମସ୍ତ ପର୍ବତ ଶୃଙ୍ଗମାନେ ନିରନ୍ତର ନୀହାରରେ ଆଚ୍ଛନ୍ନ ଥା'ନ୍ତି, ଏଣୁକରି ସେହି ଦେଶରେ ଶୀତର ଅତ୍ୟନ୍ତ ପ୍ରାଦୁର୍ଭାବ – ଏହି ବାକ୍ୟର ପ୍ରତ୍ୟେକ ପଦର ଅନ୍ୱୟ କର ।

୧୪ । ପାରିସ୍, ରୁଶିୟା, ଆୟର୍ଲଣ୍ଡ, ସ୍କଟ୍ଲଣ୍ଡ, ଏମାନେ କଅଣ ଏବଂ ତୁମ୍ଭର ଜନ୍ମଭୂମିର କେଉଁ ଦିଗରେ ଅବସ୍ଥିତ ?

୧୫ । ମାତୃଭକ୍ତି ବିଷୟକ ଗଳ୍ପର ଶେଷ ଦୁଇ ଅନୁଚ୍ଛେଦ ସରଳ ଭାଷାରେ ବ୍ୟାଖ୍ୟା କର ।

୧୬ । ଲୋଭ ସମ୍ବରଣ ବିଷୟକ ଯେଉଁ ଗଳ୍ପ ପଢ଼ିଅଛ ତାହା ସଂକ୍ଷେପରେ ଲେଖ ।

## ବସ୍ତୁବିଚାରରୁ ପ୍ରଶ୍ନ

୧ । ରବରର ଉତ୍ପତ୍ତି, ଗୁଣ ଏବଂ ବ୍ୟବହାର ବିଷୟରେ ଯାହା ପଢ଼ିଅଛ ତାହା ସଂକ୍ଷେପରେ ଲେଖ ।
୨ । ସ୍ଥିତିସ୍ଥାପକତାର ଅର୍ଥ କି ?
୩ । କାଚର ପ୍ରଥମ ସୃଷ୍ଟିର ଇତିହାସ ଲେଖ ।
୪ । ଚା କେଉଁଠାରେ ଉତ୍ପନ୍ନ ହୁଏ ?
୫ । କିପରି ରୋଗରେ ଚନ୍ଦନଲେପନ ଉପକାରଜନକ ?
୬ । ଚନ୍ଦନବୃକ୍ଷସମ୍ବନ୍ଧରେ ଏ ଦେଶରେ କି ସଂସ୍କାର ଅଛି ?
୭ । ସର୍ପର ବିଷ ଦଂଶନ ସମୟରେ ଶରୀରରେ କି ରୂପେ ପ୍ରବେଶ କରେ ?
୮ । ହସ୍ତୀଦନ୍ତରେ କିପରି ରଙ୍ଗ ପ୍ରସ୍ତୁତ ହୁଏ ?
୯ । ମୁରସିଦାବାଦ, ରାଜସାହୀ, ମେକ୍ସିକୋ ଏମାନେ କ'ଣ ? ଏବଂ ତୁମ୍ଭ ଗ୍ରାମର କେଉଁଆଡ଼େ ?
୧୦ । ହୀରାକସ କିରୂପେ ପ୍ରସ୍ତୁତ ହୁଏ ?

## ରାମବିଳାସରୁ ପ୍ରଶ୍ନ

୧ । ରାମାୟଣର ମୂଳ ପ୍ରଣେତା କିଏ ?
୨ । ରାମାୟଣର ସ୍ଥୂଳ ବୃତ୍ତାନ୍ତ ସଂକ୍ଷେପରେ ଲେଖ ।
୩ । ପିତୃଭକ୍ତି, ପତିଭକ୍ତି, ସୌଭ୍ରାତୃ, ବହୁବିବାହ ଜନିତ କୁଫଳ ଏହି ବିଷୟମାନଙ୍କର ଦୃଷ୍ଟାନ୍ତ ରାମାୟଣରୁ ଦେଖାଅ
୪ । ବଶିଷ୍ଠ, ଋଷ୍ୟଶୃଙ୍ଗ, ବିରାଧ, ଗୁହକ ଏମାନେ କିଏ ଥିଲେ ?
୫ । ଧନୁଃଶର, ପଥଶ୍ରାନ୍ତ, ଚିନ୍ତାସମୁଦ୍ର, ଜଟାଧାରଣ, ପ୍ରଜାବର୍ଗ, ରାତ୍ରିଶେଷ, କରୁଣାର୍ଦ୍ରମାନସ, ରାମାଦି, ବ୍ୟସ୍ତମନା, ରାମଚନ୍ଦ୍ର, କେଶାକର୍ଷଣ, ସୁଗ୍ରୀବ ଏହି ଶବ୍ଦମାନଙ୍କରେ ଯେଉଁ ସମାସ ଅଛି ତାହା ବ୍ୟାଖ୍ୟା କର ।
୬ । ସୀତା ଦେଖି ସଭୀତହୋଇ ରାମଚନ୍ଦ୍ରଙ୍କ ପଛରେ ଲୁଚିଲେ – ଏଥିରେ କି ବ୍ୟାକରଣ ଦୋଷ ଅଛି ବୋଲ ?
୭ । ସୂର୍ପଣଖା ଶବ୍ଦର ଅର୍ଥ କି ?
୮ । ପୁଙ୍ଗବ ଶବ୍ଦର ପ୍ରକୃତ ଅର୍ଥ କି ?
୯ । "ସେହି ତିଳକ ଆମ୍ଭ ହୃଦୟରେ ସନ୍ନିହିତ କରି କୃତୋପକାରିଣୀ ହେଲ" – ଏହି ବାକ୍ୟ ମଧ୍ୟରେ କୌଣସି ବ୍ୟାକରଣ ଦୋଷ ଅଛି କି ?
୧୦ । ଏ ମନ୍ଦ ମନ୍ଦବୁଦ୍ଧି କରି ମୋତେ ଘୋରତର ପୀଡ଼ା ପ୍ରଦାନ କରିଅଛି – ଏଠାରେ ମନ୍ଦ ଶବ୍ଦର ଭିନ୍ନ ଭିନ୍ନ ଅର୍ଥ ଦେଖାଅ ।
୧୧ । କେଉଁ କାବ୍ୟ ଅବଲମ୍ବନ କରି ରମାବିଳାସ ଲିଖିତ ହୋଇଅଛି ସେହି କାବ୍ୟରୁ ଦୁଇ ତିନି ସ୍ଥାନରୁ ପଦ୍ୟ ଉଦ୍ଧୃତ କରି ତଦ୍‌ବିଷୟକ ଗଦ୍ୟାଂଶର ସହିତ ତାହାର ସାଦୃଶ୍ୟ ଦେଖାଅ ।
୧୨ । "ରାଜାଙ୍କର ସୋତ୍କଣ୍ଠିତ ବଚନ ଶୁଣି" ଏଥିରେ କି ଦୋଷ ଅଛି ?
୧୩ । ମିଥିଳା ଦେଶର ବର୍ତ୍ତମାନ ନାମ କଅଣ ? ମିଥିଳାର ଅନ୍ୟ ନାମ ବୋଲ ।
୧୪ । "ବିଭା" କେଉଁ ଶବ୍ଦର ଅପଭ୍ରଂଶ ?
୧୫ । ରାମବିଳାସରୁ ଅବ୍ୟାକରଣ ଦୋଷର ଚାରୋଟି ଉଦାହରଣ ପ୍ରଦର୍ଶନ କର ?
୧୬ । ରାମବିଳାସ ଏହି ଶବ୍ଦର ଅର୍ଥ କି ?

## ଶକୁନ୍ତଳାରୁ ପ୍ରଶ୍ନ

୧ । ଶକୁନ୍ତଳା ଉପାଖ୍ୟାନର ମୂଳ ପ୍ରଣେତା କିଏ ?
୨ । କାଳୀଦାସ ଶକୁନ୍ତଳାକୁ କି ଆକାରରେ ରଚନା କରି ଅଛନ୍ତି ? ସେହି ଆକାରର କାବ୍ୟକୁ କି କାବ୍ୟ ବୋଲାଯାଏ ?
୩ । ଶକୁନ୍ତଳାର ବୃତ୍ତାନ୍ତ ସଂକ୍ଷେପରେ ଲେଖ ।
୪ । ଶକୁନ୍ତଳାର କେଉଁ ଅଂଶ ସର୍ବୋତ୍କୃଷ୍ଟ ?
୫ । ଶକୁନ୍ତଳାର ସୁଚରିତ୍ରର ପରିଚୟ ପୁସ୍ତକରୁ ଯେମନ୍ତ ପାଇଅଛ ତାହା ବର୍ଣ୍ଣନା କର ।
୬ । ତ୍ରିଶଙ୍କୁ କିଏ ଥିଲେ, ତାହାଙ୍କର ବୃତ୍ତାନ୍ତ ଲେଖ ।
୭ । ବିଦୂଷକ ଶବ୍ଦର ଅର୍ଥ କି ? ଶକୁନ୍ତଳାରେ ବିଦୂଷକ କିଏ ?
୮ । ପୁରୁ, କଣ୍ୱ, ମାତଳି, ବିଶ୍ୱାମିତ୍ର, ଜୟନ୍ତ, ମେନକା, କାଶ୍ୟପ – ଏମାନେ କିଏ ? ଏବଂ ଏମାନଙ୍କ ସମ୍ବନ୍ଧରେ ଯାହା ଜାଣ ଲେଖ ।
୯ । ଅତ୍ୟନ୍ତ, ଅନୁଲଙ୍ଘନୀୟ, ଯଥାର୍ଥ, ବ୍ୟାକୁଳ, ସ୍ୱଳ୍ପତପୋବନ, କଥୋପକଥନ, ବ୍ୟତିରେକ, ପ୍ରତ୍ୟାଗମନ, ବ୍ୟର୍ଥ, ତରୁଚ୍ଛାୟା, ସୁହୃଦ୍‌ବାକ୍ୟ, ଯାବଜ୍ଜୀବନ, ବୃତ୍ତାନ୍ତ – ଏହି ଶବ୍ଦମାନଙ୍କର ସନ୍ଧିବିଚ୍ଛେଦ କର ?

୧୦। ନିମ୍ନଲିଖିତ ଉଦ୍ଧୃତ ଅଂଶମାନଙ୍କର ବ୍ୟାଖ୍ୟା କର –
ସଦ୍ୟପ୍ରସୂତ, କୌମାରବ୍ରହ୍ମଚାରୀ, ଧର୍ମାଧିକରଣରେ ନିଯୁକ୍ତ, ସମାଧିଭଙ୍ଗ, ମୁଗ୍ଧସ୍ୱଭାବ, ସ୍ୱୟମ୍ବରା, ନବମାଳିକକୁସୁମକୋମଳା, ଏ ଅଭ୍ୟର୍ଥନା ଅନୁଗ୍ରହବିଶେଷ, ଶାନ୍ତିରସାସ୍ପଦ-ତପୋବନ।

୧୧। ଆହ୍ୱାନ, ସମ୍ବୋଧନ, ନିକ୍ଷେପ, ପ୍ରକୃତି, ଅଭ୍ୟାସ, ପ୍ରଭୁ, ପ୍ରସ୍ଥାନ, ଅପଗତ, ଅନୁରୋଧ – ଏମାନେ କେଉଁ ଧାତୁରୁ ନିଷ୍ପନ୍ନ? ସେହି ଧାତୁମାନଙ୍କରୁ ନିଷ୍ପନ୍ନ ଯେତେ ଶବ୍ଦ ଜାଣ ଲେଖ।

୧୨। 'ଅଶ୍ରୁପୂର୍ଣ୍ଣନୟନରେ କହିଲେ'– ଏହି ବାକ୍ୟ ମଧ୍ୟରେ ସମାସ ଥିଲେ ତାହା ଦେଖାଇ ଦିଅ।

୧୩। ଜିଜ୍ଞାସା ଏହି ଶବ୍ଦ କିରୂପେ ନିଷ୍ପନ୍ନ ହୋଇଅଛି? ଏହିଭଳି ଆଉ ପାଞ୍ଚୋଟି ଶବ୍ଦ ଲେଖ।

୧୪। କଣ୍ୱମୁନି ଶକୁନ୍ତଳାଙ୍କୁ ଯେଉଁ ଉପଦେଶ ଦେଇଥିଲେ ତାହା ଲେଖ।

୧୫। ମୃଗୟାଜୀବିମାନଙ୍କ ବ୍ୟବସାୟର ନିଗୂଢ଼ କଥାମାନ କାଳୀଦାସଙ୍କୁ ଜଣାଥିବାର କୌଣସି ପ୍ରମାଣ ଶକୁନ୍ତଳାରୁ ମିଳେ କି?

୧୬। 'ରାଜା ପ୍ରସ୍ଥାନ କଲେ' ଏହି ବାକ୍ୟରେ "କଲେ", ପରିବର୍ତ୍ତରେ ହେଲେ ପ୍ରୟୋଗ କଲେ ବାକ୍ୟର ଆଉ କେଉଁଠାରେ ପରିବର୍ତ୍ତନ ଆବଶ୍ୟକ ହେବ?

୧୭। ସନ୍ଦେହ, ପରିତ୍ୟାଗ, କ୍ଳେଶ, ଅନୁରାଗ, ଅନୁରୋଧ, ଆଦେଶ, ଉତ୍‌ଥାନ, ଦାନ, ଏହି ବିଶେଷ୍ୟ ଗୁଡ଼ିକୁ ବିଶେଷଣରେ ପରିବର୍ତ୍ତନ କର।

୧୮। ତାପସ, ମାନସ, କାରୁଣ୍ୟ, ପ୍ରଭାବଶାଳୀ, ମାଧୁରୀ, ଚିରଜୀବୀ, ଏହି ଶବ୍ଦଗୁଡ଼ିକ କି ରୂପେ ନିଷ୍ପନ୍ନ ହୋଇଅଛି ତାହା ଲେଖ।

୧୯। ନିମ୍ନଲିଖିତ ବାକ୍ୟମାନଙ୍କୁ ସଂଶୋଧନ ଅଥବା ସମର୍ଥନ କର – ସୀତା ସୁନ୍ଦର ଥିଲେ, ବ୍ରହ୍ମପୁତ୍ର ତିବ୍ବତରେ, ସୂର୍ଯ୍ୟୋଦୟ ହେଲି, ସୂର୍ଯ୍ୟ ବଡ଼ ତେଜହେଲେ, ଋତୁରାଜ ବସନ୍ତ ଉପସ୍ଥିତ ହେଲେ, ସେ ସାମର୍ଥ୍ୟ ଲୋକ, ମୁଁ ପରୀକ୍ଷା କରି ସନ୍ତୋଷ ହେଲି, ରାମ ବଡ଼ ବିସ୍ମୟ ହେଲେ, ମାତା ମୋହୋର ପ୍ରତିପାଳକ, ପବନ ସଧୀରେ ବୋହିଲା, ଆକାଶ ପରିଷ୍କାର ହୋଇଅଛି, ସେ ମୋହ ଅପେକ୍ଷା ଭାଗ୍ୟବାନ୍ତିର, ସେ ମୋହ ହୋଇଗଲେ, ଗୁଣୀଗଣ ଗୁଣ ବୁଝନ୍ତି, ଚନ୍ଦ୍ର ଉଦୟ ହେଲେ, କନ୍ୟାକୁ ବିଭୂଷଣ କରି ଆଣ, ପୂର୍ବ ପ୍ରଦେଶ ଐଶ୍ୱର୍ଯ୍ୟଶାଳିନୀ ଅଟେ, ସେ ନିର୍ଦ୍ଦୋଷୀ, ତାଙ୍କର ବଳ କ୍ଷୟ ହେଲା, ତାହାଙ୍କର ବଡ଼ ଗାମ୍ଭୀର୍ଯ୍ୟ ବୃଦ୍ଧି, ମହାଭାରତର ସପ୍ତପର୍ବରେ ଦ୍ରୋଣବଧ ଅଛନ୍ତି, ସେ ବଡ଼ କ୍ରୋଧ ହୋଇ ଗଲେ, ମୁଁ ସେଥିରେ ସନ୍ମତ, ବିଧାତା ପ୍ରତିକୂଳଙ୍କୁ କିଏ ଖଣ୍ଡିବ? ବ୍ରାହ୍ମଣୀ ପୂର୍ବବାହୀ ଅଟେ, ସବିନୟପୂର୍ବକ ନିବେଦନ ଏହି ଯେ, ସେ ମୋହପ୍ରତି ଅନୁରାଗ ହେଲେ, ମୋହର ସେଥିରେ ଆପତ୍ ନାହିଁ, ସେ ମୋର ଭକତ ବିଶ୍ୱାସ, ଶରଚ୍ଚକାଳରେ କୃଷ୍ଣଙ୍କର ରାହାସଯାତ୍ରା ହୁଏ, ମୁଁ କୃତକୃତ ହେଲି।

୨୦। ଆଶ୍ଚର୍ଯ୍ୟ, ପ୍ରଶ୍ନ, ଖେଦସୂଚକ ତିନୋଟି ବାକ୍ୟ ଗଦ୍ୟରେ ଲେଖ ଏବଂ ପ୍ରତ୍ୟେକ ବାକ୍ୟରେ ଉକ୍ତ ଚିହ୍ନମାନ ଯଥାସ୍ଥାନରେ ସନ୍ନିବେଶ କର।

୨୧। ଉଦ୍ଧୃତଚିହ୍ନ କିପରି, ଦେଖାଅ। ଏବଂ କୌଣସି ଗଦ୍ୟାଂଶ ଉଦ୍ଧୃତ କରି– ସେଥିରେ ଉକ୍ତ ଚିହ୍ନ ଯଥାସ୍ଥାନରେ ସନ୍ନିବେଶ କର।

୨୨। , ; । ଏମାନଙ୍କୁ କି ଚିହ୍ନ ବୋଲି? ଗୋଟିଏ ବାକ୍ୟ ଲେଖି ଏମାନଙ୍କ ପ୍ରୟୋଗ ଦେଖାଅ।

୨୩। ବିଦ୍ୟାଳୟର ଛାତ୍ରମାନଙ୍କ ସମାଜ ସହିତ କୌଣସି ସମ୍ବନ୍ଧ ନାହିଁ ସୁତରାଂ ସମାଜ ବିଷୟରେ ସେମାନଙ୍କର କୌଣସି କ୍ଷମତା ବା ଆଧିପତ୍ୟ ନାହିଁ ଏ ରୂପ ସ୍ଥଳେ ସାମାଜିକ ଉଦ୍ଦେଶ୍ୟରେ ସେମାନେ କୌଣସି ସଭାଦି କଲେ ତହିଁରୁ ଉତ୍ତମ ଫଳ ଦର୍ଶେ ନାହିଁ– ଉପରଲିଖିତ ବାକ୍ୟରେ ପୂର୍ଣ୍ଣଚ୍ଛେଦ ପ୍ରଭୃତି ଚିହ୍ନମାନ ଯଥା ସ୍ଥାନରେ ସନ୍ନିବେଶ କର।

## କବିତାକଳାପରୁ ପ୍ରଶ୍ନ

୧। କବିତାକଳାପର ପଦ୍ୟଗୁଡ଼ିକ କେଉଁ କେଉଁ ଛନ୍ଦରେ ଲେଖାହୋଇଅଛି?

୨। "ସମାନ ମାନବେ ମାନସ ହରେ" "ସବୁ ସମୟତ ସମାନ ନ ଯାଏ" ଏ ପ୍ରକାର ରଚିତ ବାକ୍ୟମାନଙ୍କୁ ପଦ୍ୟରେ କି ବୋଲାଯାଏ?

୩। ରାଜେ, ନାଶି, ସର୍ଶନ, ପୁଣ, କଉତୁକ, ତେସନ, ଯେସନ, ଦରଶନ ପ୍ରଭୃତି ଶବ୍ଦ ଗଦ୍ୟରେ କିପରି ହେବ?

୪ । ପ୍ରକୃତି, ଛଟକ, ଉପହାର, ଅନିବାର, ଦୟାପର, ପାରାବାର, ସ୍ୱନ, ତୁଙ୍ଗ, ଉଦ୍ଦେଶ୍ୟ ଶବ୍ଦଗୁଡ଼ିକର ପ୍ରତିଶବ୍ଦ ଦିଅ ।

୫ । "କୁସୁମକାନନେ ସେହି ରମ୍ୟ ସ୍ଥାନେ
ଈଶ୍ୱର ଭଜନେ ରଷିଙ୍କର ମନେ
ଆନନ୍ଦ ସ୍ରୋତ ହୁଏ ପ୍ରବଳ" ।
ଉପରଲିଖିତ ପଂକ୍ତିଗୁଡ଼ିକ ସରଳଗଦ୍ୟରେ ବୁଝାଇଦିଅ ଓ ପୂର୍ବପଂକ୍ତିମାନଙ୍କ ସହିତ କୌଣସି ସମ୍ବନ୍ଧ ଥିଲେ ବୁଝାଇବାବେଳେ ତାହା ଉଲ୍ଲେଖ କରିବ ।

୬ । "ତୋର ସୁଖରବି ତୋର ମୁଖଛବି
ମଳିନତା ଲଭି ଗଲା ସବୁ ଲିଭି
ଦୁଃଖରାହୁ କରିଅଛି ଅଶନ"
ଉପର ଲିଖିତ ପଦ୍ୟରେ ଯେଉଁ ଉପମେୟ ଓ ଉପମାନ ଅଛି କାରଣ ନିର୍ଦ୍ଦେଶଦ୍ୱାରା ସେମାନଙ୍କ ସାର୍ଥକତା ଦେଖାଅ ।

୭ । ସରସୀ ଜୀବନ, ତଟିନୀ ପୁଳିନ, ସ୍ୱାର୍ଥରୋଗ, ଲୋତକ, ଅରଣ୍ୟ ସଞ୍ଚାରୀ, ମହୀଧର – ଏମାନଙ୍କ ଅର୍ଥ ଲେଖ ।

୮ । "ଶୀର୍ଣ୍ଣଚର" ପଦଟି କି ରୂପେ ସିଦ୍ଧ ହୋଇଅଛି ?

୯ । "ରହି ବୃକ୍ଷ ତାଳ" ଏଥିରେ ତାଳ ଶବ୍ଦ କି କାରକ ? ଏହା ପଦ୍ୟରେ କିପରି ହେବ ?

୧୦ । "ତୋର ଘରେ ସଦା ରହେକି ଆଲୋକ"– ଏଥିର ସାରାଂଶ ସରଳ ଭାଷାରେ ପ୍ରକାଶ କର ।

୧୧ । "ପଞ୍ଜୁରିବଦ୍ଧ ଶୁକପକ୍ଷୀ"– ଶୀର୍ଷକ ପଦ୍ୟଟିରୁ କି ନୀତି ପ୍ରାପ୍ତ ହେଲ ତାହା ଲେଖ ।

୧୨ । ନିମ୍ନଲିଖିତ ଶବ୍ଦମାନଙ୍କ ଅର୍ଥ ଲେଖ –
ଅମ୍ବର, ପ୍ରତିଘାତ, ହେମଜିତ, ପଟାନ୍ତର, ତଟିନୀ, ବିଟପୀ, ବେନି, ନିକର, ପ୍ରତିବିମ୍ବ, କଳାପ, କୁନ୍ତଳ, କବଳ, ସ୍ଫୁରଣ, ବିଧୁ, ଚାଟୁ, ପୋତ, ଜନପଦ, ପ୍ରାଙ୍ଗଣ, ନିଦାଘ, ଗୌରବ, ପ୍ରତିବନ୍ଧକ, ତୁଷାର, ଅପାର ।

୧୩ । କୃଷିଜୀବୀ, ଅରଣ୍ୟନିବାସୀ, ସୁକୁମାରମତି, ସତ୍ୟାନୁସନ୍ଧାନୀ, ପତିପରାୟଣା, ପର୍ବତନନ୍ଦିନୀ, ବିଟପୀଶ୍ରେଣୀ, ବାଳଭାନୁ, ନୀଳବର୍ଣ୍ଣରୂପ, ପ୍ରତିଦିନ, ପଶୁରାଜ – ଉଲ୍ଲିଖିତ ପଦମାନଙ୍କରେ କି କି ସମାସ ଅଛି ତାହା ଲେଖ ।

୧୪ । ରୁସିଆ, ଇଂଲଣ୍ଡ, ଚୀନ, ତୁରଷ୍କ ଏମାନେ କେଉଁ କେଉଁ ମହାଦେଶମାନଙ୍କରେ ଅବସ୍ଥିତ ଏବଂ ଏଥିରେ କି କି ଜାତି ବାସକରନ୍ତି ?

୧୫ । "ପର୍ତ୍ତୁଗିଜରାଜନ" କେଉଁ ରାଜାଙ୍କୁ ବୁଝାଉଅଛି ?

୧୬ । "ଉତ୍ତମାଶା" – ଏହା କି ପ୍ରକାର ଭୂମିଖଣ୍ଡ ଓ ଏହାର ନାମ ଏ ରୂପ ହେବାର ବୃତ୍ତାନ୍ତ ସଂକ୍ଷେପରେ ଲେଖ ।

୧୭ । "କଲମ୍ବସ" ନାବିକ; କଲମ୍ବସଙ୍କ ଜୀବନ-ବୃତ୍ତାନ୍ତ ସଂକ୍ଷେପରେ ଲେଖ । ଆମେରିକା କେତେ ସାଲରେ ଆବିଷ୍କୃତ ହୋଇଥିଲା ?

୧୮ । "ସିକନ୍ଦର" କେଉଁ ଦେଶର ରାଜା ? ଏହାଙ୍କ ବୃତ୍ତାନ୍ତ କଅଣ ଜାଣ ଲେଖ ।

୧୯ । "ଆଶାରେ ଉତ୍ସାହୀ କ୍ଲାଇବ ବୀର
ପଲାଶୀ ପ୍ରାଙ୍ଗଣେ କଲେ ସମର"
ଉପର ଲିଖିତ ପଦ୍ୟରେ ଯେଉଁ ଐତିହାସିକ ବିଷୟମାନଙ୍କର ଉଲ୍ଲେଖ ଅଛି ତାହା ସଂକ୍ଷେପରେ ଲେଖ । କ୍ଲାଇବଙ୍କ ବିଷୟ ଯାହା ଜାଣ ଲେଖ ।

୨୦ । ନିମ୍ନଲିଖିତ ଶବ୍ଦଗୁଡ଼ିକ କେଉଁ ଧାତୁରୁ ନିଷ୍ପନ୍ନ ତାହା ଲେଖ –
ଅନୁଭବ, ପରାଭବ, ଚିନ୍ତା, କାମନା, ଆଦର୍ଶ, ମନୋହର, ଶୋଭା, ପୂରଣ, ଆସନ, ଅଶନ, ଭୋଜନ, ଶୟନ, ନନ୍ଦନ, ରୋପଣ, ଅନୁଧାବନ, ବିଚରଣ, ଜୀର୍ଣ୍ଣ ।

୨୧ । "ନନ୍ଦନ" ଏହି ଶବ୍ଦଟି ଯେଉଁ ଧାତୁରୁ ନିଷ୍ପନ୍ନ ହୋଇଅଛି ତାହାର ମୂଳ ଅର୍ଥ ବୁଝାଇଦିଅ ଏବଂ ତଦ୍ଦ୍ୱାରା ଏହାର ସାର୍ଥକତା ପ୍ରମାଣ କର ।

୨୨ । "ବାଜୁ ବୀରବାଜା ଉଡୁଥାଉ ଧ୍ୱଜା
ଚିରକାଳ ଉତ୍କଳର"
ଉପର ଉକ୍ତ ଚରଣଦ୍ୱୟ କେଉଁ ରସାତ୍ମକ ? ଓ ସେହି ରସାତ୍ମକ ଆଉ କେତେକ ପଂକ୍ତି କବିତାକଳାପରୁ ଉଦ୍ଧୃତ କର ।

୨୩ । "ଆନ" ଶବ୍ଦର ଅର୍ଥ କି, ଦୃଷ୍ଟାନ୍ତଦ୍ୱାରା ଦେଖାଅ । ଓ ଗଦ୍ୟରେ କି ହେବ ତାହାର ମଧ୍ୟ ଦୃଷ୍ଟାନ୍ତ ଦିଅ ।

୨୪ । "ପୁରୁଷୋତ୍ତମର କେତେକ ଦୃଶ୍ୟ"– ଶୀର୍ଷକ ପଦ୍ୟରୁ ଓଡ଼ିଶ୍ୟା ଲୋକେ ଶିଳ୍ପବିଦ୍ୟା ଜାଣୁଥିବାର କି ପ୍ରମାଣ ପାଅ ତଦ୍‌ବିଷୟକ ତିନି ଚାରୋଟି ଚରଣ ଉଦ୍ଧୃତ କର ।

୨୫ । "ଦ୍ୱୀପାନ୍ତରିତ ବ୍ୟକ୍ତିର ଖେଦ" ଶୀର୍ଷକ ପଦ୍ୟ କି ରସାତ୍ମକ ?

୨୬ । "ଇନ୍ଦୁମତୀ ସ୍ୱୟମ୍ବରା"– ପଦ୍ୟର ସାରକଥା ସରଳ ଗଦ୍ୟରେ ଲେଖ ।

୨୭ । "ସ୍ୱୟମ୍ବର" ଶବ୍ଦଟି କିପରି ନିଷ୍ପନ୍ନ ଓ ତାହାର ଅର୍ଥ ଲେଖ ଓ ପୁରାକାଳରେ ସ୍ୱୟମ୍ବର କିପରି ନିର୍ବାହ ହେଉଥିଲା ତାହା ଲେଖ ।

୨୮ । "ଶରଚ୍ଚନ୍ଦ୍ର ଉପଗତା ଯେହ୍ନେ କୁମୁଦିନୀ
ଜଳନିଧି ଅନୁଗତା ହୁଏ ମନ୍ଦାକିନୀ,
ସେହିପରି ସମଗୁଣ, ଏ ବର କନ୍ୟା ବରଣି
ପୁରବାସିଙ୍କ ମୁଖରୁ ହେଲା ଏହି ବାଣୀ ।
ଅଜଙ୍କ ପ୍ରଶଂସା ତହିଁ ରାଜାମାନେ ଶୁଣି
ବ୍ୟଥିତ କୁଣ୍ଠିତ ହେଲେ ତାହା କଷ୍ଟମଣି ।"

ଉପର ଉକ୍ତ ପଦ୍ୟାଂଶରେ କି ଅଳଙ୍କାର ଅଛି ?

୨୯ । ଅଳଙ୍କାର କେତେ ଭାଗରେ ବିଭକ୍ତ ଓ କି କି ତାହା ଲେଖ ।

୩୦ । "ପ୍ରଭାତ" ଶୀର୍ଷକ ପଦ୍ୟଟି କି ଅଳଙ୍କାର ଯୁକ୍ତ ?

୩୧ । "ନିମେଷ ଶୂନ୍ୟରେ" "ଯୌବନ ଶିରୀକି କୃତାର୍ଥ କର"
"ହେବ ଦୁହିଁଙ୍କର ଯୋଗ ମଣିରେ କାଞ୍ଚନ,"
"ଆତ୍ମବତ୍ ସର୍ବଭୂତେ କରନ୍ତି ଦର୍ଶନ"
"ଯାନ୍ତି ପ୍ରତିଘାତ ବଳ ପ୍ରଭାବେ",
"ତାର ତୀରେ ସ୍ତରାବଳୀ ଆହା କି ଗଠନୀ",
"ନାଚି ଖେଳି ଆସନ୍ତି ଉପର୍ଯ୍ୟୁପରି,
"ଗତ କାଳ ସଙ୍ଗେ ତବ ନ ହେବ ମିଳନ,"
"କ୍ଷୁଦ୍ର କ୍ଷୁଦ୍ର ତୃଣେ ଯଥା ରଜ୍ଜୁ ସଂଘଟନ,"
"ପ୍ରତିଧ୍ୱନି, ଛଳେ କଲା ସୁଦୀର୍ଘ ରୋଦନ" ।

ଉପର ଉକ୍ତ ପଂକ୍ତିମାନଙ୍କୁ ବାହୁଲ୍ୟରୂପେ ବୁଝାଅ ।

୩୨ । ସଜ୍ଜନ, ଦୁଷ୍ପ୍ରବୃତ୍ତି, ଜଗନ୍ନାଥ, ଚତୁର୍ଦ୍ଦିଗ, ଜ୍ଞାନୋନ୍ନତି, ଦୁର୍ଦ୍ଦଶା, ଉତ୍ତୀୟମାନ— ଉପର ଉକ୍ତ ପଦମାନଙ୍କର ସନ୍ଧିବିଚ୍ଛେଦକର ।

୩୩ । ପୁଷ୍ପମୟୀ, ବହମାନ, ଐଶ୍ୱରିକ, ଦୟାଳୁ, ଐକ୍ୟତା, ମାନବ, ସ୍ୱଦେଶୀୟ, ପତିପରାୟଣା, ଭ୍ରମରଦ୍ୱୟ— ଏହି ପଦଗୁଡ଼ିକ କିପରି ନିଷ୍ପନ୍ନ ହୋଇଅଛି ଲେଖ ।

୩୪ । "ସବୁ ସମୟତ ସମାନ ନ ଯାଏ
ସଦା କାହା ଦର୍ପ ଜାଗ୍ରତ ନ ଥାଏ
ପର୍ବତ ସାଗର, ସିନ୍ଧୁ ମହୀଧର
ଦୁର୍ବଳ ସବଳ, ସବଳ ନିର୍ବଳ
ହେଉଛି ଦେଖୁଛୁ ତୁ ନୟନର"

ଉପରୋକ୍ତ ପଦରେ କି ଅଳଙ୍କାର ଅଛି ଲେଖ ।

୩୫ । ନିମ୍ନଲିଖିତ ଶବ୍ଦମାନଙ୍କର ମୂଳଶବ୍ଦ ଲେଖ ।
ମହିମା, ପିତା, ବୁଦ୍ଧିମାନ, ରାଜା, ଗୁଣୀ, ପଥ, ପଞ୍ଚ, ଦିଗ, ଯଶ, ପ୍ରେମ ।

୩୬ । "ସୁକୁମାର ସ୍ନେହାଧାର ଅପୂର୍ବ ସୁନ୍ଦର
ସୁଧାକର ସମ ମୁଖ ସୁମଧୁର ସ୍ୱର
ଏ ରୂପ କୁମାର କୋଳେ ଧରି ମାତା
ସ୍ନେହ ଭୋଳେ,
ଭବିଷ୍ୟତ ସୁଖରାଶି ଭାବନ୍ତି ମନର
ମରୀଚିକା ସମ ସୁଖ କରୁ ତୁ ତାଙ୍କର ।"
"ଅନୁପମା ମନୋରମା ସୁଶୀଳା କାମିନୀ
ପ୍ରତିବିମ୍ବ ସମ ସ୍ୱାମୀ ସଙ୍ଗ ବିହାରିଣୀ
କ୍ଷଣେ ସ୍ୱାମୀ ଅଦର୍ଶନ ଯେ ମଣେ
ବଜ୍ର ପତନ,
ସେ ପୁଣି ଧରାଶାୟିନୀ ଚିରବିରହିଣୀ
ତୋ ତୀକ୍ଷ୍ଣ ଛୁରୀକା ଏକା ସେ ପ୍ରେମଘାତିନୀ ।"

ଉପରୋକ୍ତ ପଂକ୍ତିମାନଙ୍କୁ ସରଳ ଗଦ୍ୟରେ ଲେଖ ଓ କଠିନ ଶବ୍ଦମାନଙ୍କର ପରିବର୍ତ୍ତେ ସରଳ ଶବ୍ଦମାନ ବ୍ୟବହାର କରିବ ।

୩୭ । ତୃଣାବୃତ କ୍ଷେତ୍ର ପ୍ରଭାତ କାଳେ
ମଣ୍ଡିତ ହୋଇଣ ତୁଷାରଜାଳେ
ମୁକୁତାକଳାପ ଶୋଭାର ଆଳାପ
ଲୋପଇ ଚଞ୍ଚଳେ ମନ ବିହ୍ୱଳେ
ହେବ କି ଏ ଶୋଭା ମନୁଷ୍ୟ ବଳେ
ଧନ୍ୟ ଧନ୍ୟ ପ୍ରଭୁ ବଳ କୌଶଳେ ।

ଉପରୋକ୍ତ ପଦ୍ୟାଂଶରେ ପୂର୍ଣ୍ଣଚ୍ଛେଦ ଆଦି ଚିହ୍ନମାନ ଯଥାସ୍ଥାନରେ ସନ୍ନିବେଶ କର ?

## ଭ୍ରମଭଞ୍ଜନରୁ ପ୍ରଶ୍ନ

୧ । ଭ୍ରମଭଞ୍ଜନର ଗଳ୍ପଟି ସରଳ ଗଦ୍ୟରେ ସଂକ୍ଷେପରେ ଲେଖ ଏବଂ ସେହି ଗଳ୍ପର ପ୍ରକୃତ ତାତ୍ପର୍ଯ୍ୟ କି ତାହା ବୁଝାଇଦିଅ ।

୨ । ଭ୍ରମଭଞ୍ଜନରେ ପ୍ରଭାତ ଏବଂ ସନ୍ଧ୍ୟା ପ୍ରକୃତିର ଯେଉଁ ସମସ୍ତ ବର୍ଣ୍ଣନା ଅଛି ତାହା କେତେଦୂର ସଙ୍ଗତ ?

୩ । ଭ୍ରମଭଞ୍ଜନରୁ ଉପମାଳଙ୍କାରର ଚାରୋଟି ଉଦାହରଣ ଦିଅ ।

୪ । "ତା ଉଦରେ ଉଦକ କେତେ ଅଛି
ଅବା ତୃଷାର୍ତ୍ତେ ସମୁଦ୍ର ଶୋଷିଛି"

ଏହି ପଂକ୍ତିଦ୍ୱୟରେ କି ଅଳଙ୍କାର ଅଛି ?

୫ । "ମନୋହର ଭୟଙ୍କର ସେ ସ୍ଥାନ" —ଏହାର ଅର୍ଥ ସ୍ପଷ୍ଟରୂପେ ବୁଝାଇ ଦିଅ ।
ମନୋହର ଅଥଚ ଭୟଙ୍କର ଏପରି ଅନ୍ୟ କୌଣସି ପଦାର୍ଥମାନଙ୍କର ନାମ ବୋଲ ।

୬ । ଉପର ଲିଖିତ ଉଦ୍ଧୃତ ପଂକ୍ତିମାନ କେଉଁ ଛନ୍ଦର ଅନ୍ତର୍ଗତ ଏବଂ ସେ ଛନ୍ଦର ଯତିର ନିୟମ କି ?

୭ । ନିମ୍ନ ପଂକ୍ତିମାନଙ୍କରେ ବ୍ୟାକରଣ ଦୋଷ ଅଛି କି ନାହିଁ ତାହା ବୋଲ । ଥିଲେ ତାହାର କାରଣ ଦେଖାଅ ।

"କହିବି ଏକ ତପିର ଚରିତ"
"ନଗ ଗଗନକୁ ହୋଇ ଉଦ୍‌ଥାନ"
"ଅବା ତୃଷାର୍ତ୍ତେ ସମୁଦ୍ର ଶୋଷିଛି"
"ନିରାଶ ପିଶାଚ ତାଙ୍କୁ ଗ୍ରାସିଲା"
"ନାଶ, ମଧୁପ ଆକୁଳ"
"ତେଜ ହୋଇ ବିକର୍ତ୍ତନ"
"ଉଦ୍‌ବିଗ୍ନ ବର୍ଦ୍ଧନ ହେଲା ଭାବି ଭାବି କେତେ ?"
"ସ୍ୱଚ୍ଛ ଅବସ୍ଥା ହୋଇଲା ବିଧ୍ୱଂସ" ?

୮ । ଭ୍ରମଭଞ୍ଜନର ତୃତୀୟ ଛନ୍ଦରୁ ସ୍ୱଭାବୋକ୍ତିର ଉଦାହରଣ ଦିଅ ।

୯ । "ଜଗନ୍ମୋହନ ବଦତି ଏ ଭାଷ" ଏହି ପଂକ୍ତିରେ "ବଦତି" ପ୍ରୟୋଗର ଅନୌଚିତ୍ୟ ଦେଖାଇଦିଅ । ଏହିପରି ପ୍ରୟୋଗ ଅନ୍ୟ କୌଣସି କାବ୍ୟରେ ଅଛି କି ନାହିଁ ?

୧୦ । ଚିନ୍ତାଭୈରବ ରାଗର କେତେକ ପଂକ୍ତି ଉଦ୍ଧାର କର ।

୧୧ । ଭ୍ରମଭଞ୍ଜନର ପ୍ରଥମ ଓ ଦ୍ୱିତୀୟ ଛନ୍ଦର ଯେଉଁ ସ୍ଥାନମାନଙ୍କରେ ଯତିଭଙ୍ଗ ଅଛି ତାହା ଦେଖାଇ ଦିଅ ।

୧୨ । ଭ୍ରମଭଞ୍ଜନର ତୃତୀୟ ଛନ୍ଦର ପ୍ରଥମ ୨୦ ପଂକ୍ତିକୁ ଗଦ୍ୟରେ ପରିଣତ କର ।

୧୩ । ହରି, ଅନନ୍ତ, ମିତ୍ର, ଆଶା, ଅହି, ବିକର୍ତ୍ତନ, ଶ୍ରବଣ – ଏହି ଶବ୍ଦମାନ କି କି ଅର୍ଥରେ ବ୍ୟବହୃତ ହୋଇଅଛି ?

୧୪ । "ଦାତାପଣେ କର୍ଣ୍ଣ ସଙ୍ଗରେ ସମ" – କର୍ଣ୍ଣଙ୍କ ଦାତାପଣ ସୂଚକ କି କାହାଣୀ ଅଛି ?

୧୫ । ଅତିଶୟୋକ୍ତିର ୨ଟି ଉଦାହରଣ ଭ୍ରମଭଞ୍ଜନରୁ ଦିଅ ।

୧୬ । ନିମ୍ନଲିଖିତ ଶବ୍ଦମାନଙ୍କର ଅର୍ଥ ଲେଖ –
ପାନ୍ଥ, ବିଭାବରୀ, କୌଶିକ, ଧ୍ୱାନ୍ତ, ହଂସକୁମର, କମଳକ, ପାଦପ, ପ୍ରଭଞ୍ଜନ, କୃତାନ୍ତ, ଚରମାଚଳ, ବାରୁଣୀ, ଜୀମୂତ, ପାରାବାର, ରମ୍ଭାପଳାଶ, ଜୀବଧନ ।

୧୭ । ମୂରତି, ମାତର, ଚିତର, ତକ୍ଷଣ, ଶଇଳୁ ଗଦ୍ୟରେ କିପରି ଲେଖାଯିବ ?

୧୮ । "ଦେହ ତେଜି ଈଶ୍ୱରେ ଲୀନ ହେବେ
ଅନନ୍ତ ଆନନ୍ଦ ଭୋଗକରିବେ"–
ଏହି ଉକ୍ତିଟି କେଉଁ ଶାସ୍ତ୍ରର ଅନୁମୋଦିତ ?

୧୯ । ଭ୍ରମଭଞ୍ଜନରୁ ପ୍ରସାଦଗୁଣବିଶିଷ୍ଟ କେତେକ ପଦ୍ୟ ଉଦ୍ଧୃତ କର ।

୨୦ । "ସାଗରଗର୍ଭୁଁ ଜଳକଣା ପବନ
ଆଣି ଲୋକଙ୍କ ଦେହେ କରେ ଲେପନ
ଦେଖି ଏ ଅନୁପମ ଶୋଭା ଚାତୁରୀ
ହୃଦସାଗରୁ ଉଠେ ଭାବଲହରୀ
ଧନ୍ୟ ଧନ୍ୟ ସେ କର୍ତ୍ତା ଏ ଶୋଭାରାଶି
କରିଅଛନ୍ତି ପ୍ରଭୁ ବୈକୁଣ୍ଠବାସୀ ।"
ଉପର ଉକ୍ତ ଉଦ୍ଧୃତାଂଶରେ ଯେ ସ୍ଥାନରେ ଯେପରି ଛେଦ ବ୍ୟବହାର ହେବ ତାହା ସନ୍ନିବେଶ କର ?

## କବିତାବଳୀରୁ ପ୍ରଶ୍ନ

୧ । କବିତାର ଲକ୍ଷଣ କି ?

୨ । କାବ୍ୟ ସାଧାରଣତଃ କେତେ ଶ୍ରେଣୀରେ ବିଭକ୍ତ ?

୩ । ସ୍ତୋତ୍ର କେଉଁ ଛନ୍ଦରେ ରଚିତ ? ଉକ୍ତ ଛନ୍ଦର ଯତିର ନିୟମ ଲେଖ । ଏବଂ କବିତାବଳୀରେ ଆଉ କେଉଁ କେଉଁ ବିଷୟରେ ଉକ୍ତ ଛନ୍ଦ ବ୍ୟବହୃତ ହୋଇଅଛି ତାହା ବୋଲ । କବିତାବଳୀରୁ ଉକ୍ତ ଛନ୍ଦର ଯତି ବ୍ୟତିକ୍ରମର ଉଦାହରଣ ଦେଖାଅ ।

୪ । ପୂର୍ଣ୍ଣ ମିତ୍ରାକ୍ଷରର ଲକ୍ଷଣ କି ? ପୂର୍ଣ୍ଣ ଓ ଅପୂର୍ଣ୍ଣ ମିତ୍ରାକ୍ଷରର ଉଦାହରଣ ଦେଖାଅ ଏବଂ ଏଥି ମଧ୍ୟରୁ କିଏ ଅଧିକତର ସୁଶ୍ରାବ୍ୟ ?

୫ । ପଦ୍ୟରେ ବ୍ୟବହୃତ ହୁଏ ଅଥଚ ଗଦ୍ୟରେ ହୁଏ ନାହିଁ – ଏମନ୍ତ ଆଠଗୋଟି ଶବ୍ଦ ଲେଖ ।

୬ । ଅବତରି, ବେଭାର, ତରାସେ, ଗମଇଁ, ହୃଦୁଁ, ଅଗ୍ରତେ, ପ୍ରଭାତିଲା, ଚଉଦିଗର, ପ୍ରାପତି, ଚଉପାଶେ, ଆଶ୍ରିଲେ, ନିହିବି, ପରବତ, କ୍ଷେପିଲେ ଏହି ଶବ୍ଦଗୁଡ଼ିକ ଗଦ୍ୟରେ କିପରି ଲିଖିତହେବ ?

୭ । ସୀତାବନବାସ କେଉଁ ଛନ୍ଦରେ ବିରଚିତ ? ସେହି ଛନ୍ଦର ଯତିର ନିୟମ ଲେଖ ।

୮ । "ଶରୀରୀ ଜୀବର ଜୀବଧାରଣ
ତୋ' ଯୋଗୁଁ ହୁଅଇ ହେ ସମୀରଣ ।"
ଉଲ୍ଲିଖିତ ପଦ୍ୟ କେଉଁ ଛନ୍ଦରେ ରଚିତ ?

୯ । କବିତାବଳୀରୁ ରସକୁଲ୍ୟା ଛନ୍ଦର ଗୋଟିଏ ଉଦାହରଣ ଦିଅ ଏବଂ ସେଥିର ଯତିର ନିୟମ ଲେଖ । ଉପେନ୍ଦ୍ରଭଞ୍ଜ ଏହି ଛନ୍ଦ ସାଧାରଣତଃ କିପରି ବର୍ଣ୍ଣନାରେ ବ୍ୟବହାର କରିଅଛନ୍ତି ?

୧୦ । ବେଣୀସଂହାର କେଉଁ ରସାତ୍ମକ ?

୧୧ । ଏପରି ଗୋଟିଏ ଉଦାହରଣ ଦେଖାଅ ଯହିଁରେ କୌଣସି ଭାବ ଏକକ କିମ୍ବା ଦୁଇ ଚରଣରେ ସମାପ୍ତ ନହୋଇ ଅନେକ ଚରଣ ପର୍ଯ୍ୟନ୍ତ ବିସ୍ତୃତ ହୋଇଅଛି ।

୧୨ । ବେଣୀସଂହାର ଏବଂ ଅଯୋଧ୍ୟା ପ୍ରତ୍ୟାଗମନ ନାମକ କବିତା ଦ୍ୱୟରେ ଯେଉଁ ସବୁ ବିଷୟ ବର୍ଣ୍ଣିତ ହୋଇଅଛି ତାହା ସଂକ୍ଷେପରେ ଲେଖ ।

୧୩ । "ଏ ରେବା ତଟିନୀ ଯାବତ ବହିବ
ଯାବତ ଏ ଗିରି ଟେକିବ ଶିର ।"

ରେବାନଦୀର ନାମାନ୍ତର କି ?– "ଏ ଗିରି" କେଉଁ ଗିରିକି ଲକ୍ଷ୍ୟ କରି ଲେଖାହୋଇଅଛି ?

୧୪ । ପମ୍ପା ସରୋବର କେଉଁଠାରେ ? ରାମାୟଣର କେଉଁଖଣ୍ଡରେ ପମ୍ପା ସରୋବରର ଉଲ୍ଲେଖ ଅଛି ?

୧୫ । କାଳିନ୍ଦୀର ନାମାନ୍ତର କି ?

୧୬ । "ଚିତ୍ରକୂଟ ଗିରି ପାଶେ ବହେ ମନ୍ଦାକିନୀ" ଉଲ୍ଲିଖିତ ଗିରି ଏବଂ ନଦୀ କେଉଁଠାରେ ତାହା ଲେଖ ?

୧୭ । ରାମଚନ୍ଦ୍ର ପୁଷ୍ପକରେ ଆସୁ ଆସୁ [illegible] ନଗରଠାରେ ଗଙ୍ଗାନଦୀକୁ ଭେଟିଥିଲେ ?

୧୮ । ଗଙ୍ଗା ଏବଂ ଯମୁନା ଜଳ ବର୍ଣ୍ଣନାର ତାରତମ୍ୟ କି ? ଯମୁନା ଜଳର ନୀଳତ୍ୱ ବର୍ଣ୍ଣନା ସମ୍ବନ୍ଧୀୟ କବିତା ଅନ୍ୟ କୌଣସି ଉତ୍କଳୀୟ କବିଙ୍କ ଗ୍ରନ୍ଥରୁ ଉଦ୍ଧାରକର ।

୧୯ । ବିଭ୍ରମୀଭ୍ରମର, କୃଳପ୍ରକମ୍ପନଦେବ, ଦରହସିତ-ବଦନ, ବାସରଯୌବନ, ଆର୍ତ୍ତହାହାକାରେ, ଭ୍ରାନ୍ତବିଳାସିନୀ, ଶୂନ୍ୟାସନେ, ଭୀଷଣ, ସୌମ୍ୟ-ବଦନ, ବୈଧବ୍ୟବିଧୁରାବାଳା, କାଞ୍ଚନଶିବିର-ଚୂଡ଼ା, ଜଳଦଗମ୍ଭୀରସ୍ୱନେ, ଭୀଷଣ ବିଷାଣ-ନାଦେ, ପାଣ୍ଡୁଗଣ୍ଡଦେବବଳ, ମଧୁରକାଳ, ରାମପ୍ରେମୈକଟାଧର, ବିପଦବନ୍ଧୁ, ଶୁକ୍ଳଯଶ, ବିକଟହାସ୍ୟ, ଉତ୍ତାନେପତିତ– ଏ ଗୁଡ଼ିକ ବ୍ୟାଖ୍ୟା କର ଏବଂ ଯେଉଁଠାରେ ସମାସ ଅଛି ତାହା ଦେଖାଇ ଦିଅ ।

୨୦ । "ଗହନବନେ କ୍ରୂରନିଷାଦଶର
ବିଦ୍ଧ କ୍ରୌଞ୍ଚ ବିହଙ୍ଗ ଅବଲୋକନେ
ଶୋକ ଉଚ୍ଛ୍ୱାସ ଯାର ବହିଣ ଘନେ
ଶୋକରୂପେ ମୋହିଲା ସର୍ବ ଅବନୀ ।"

ଏଠାରେ କେଉଁ କବିଙ୍କୁ ଲକ୍ଷ୍ୟ କରାଯାଇଅଛି ? ତାହାଙ୍କର କବିତାସ୍ଫୁରଣର ବୃତ୍ତାନ୍ତ ଲେଖ ।

୨୧ । ନିମ୍ନଲିଖିତ ଉପମାମାନଙ୍କରେ ଉପମାନ ଏବଂ ଉପମେୟ ନିରୂପଣ କର ।

ଶ୍ରବଣେ କୁଣ୍ଡଳ ଦୋଳେ ଶରଦେ ଯେମନ୍ତ
ପ୍ରାଚୀ ମୂଳେ ନିଶାଅନ୍ତେ ତାରା ଦୀପ୍ତିମନ୍ତ ।
ଗମ୍ଭୀର ଭାବ ସଙ୍କୁଳ ହୋଇଲା ମାନସ
ବର୍ଷାଗମେ ହଂସେ ଯଥା ଦେଢ଼ନ୍ତି ମାନସ ।
ଅବନୀ ରମଣୀ କଣ୍ଠେ ମୁକ୍ତାର ହାର
ପ୍ରାୟେ ମନ୍ଦାକିନୀ ପ୍ରିୟେ ଦିଶଇ ଉଦାର ।

୨୨ । କବିତାବଳୀରୁ ମାଳୋପମାର ଗୋଟିଏ ଉଦାହରଣ ଦିଅ ।

୨୩ । ସୀତାବନବାସ କେଉଁ ରସାତ୍ମକ ?

୨୪ । ଶିବାଜୀଙ୍କର ଉତ୍ସାହବାକ୍ୟ କେଉଁ ରସାତ୍ମକ ଏବଂ ସେଥିରେ କେଉଁ ଭାବର ବିଶେଷ ସ୍ଫୁରଣ ଲକ୍ଷିତ ହୁଏ ?

୨୫ । ଅପୂର୍ଣ୍ଣ ମିତ୍ରାକ୍ଷରର ଗୋଟିଏ ଯୋଡ଼ିଏ ଉଦାହରଣ କବିତାବଳୀରୁ ଦେଖାଅ ।

୨୬ । ଯମକ କାହାକୁ ବୋଲି ? କବିତାବଳୀରୁ ଗୋଟିଏ ଯୋଡ଼ିଏ ଯମକର ଉଦାହରଣ ଦିଅ ।

୨୭ । ଝରଝରଝର, କଳକଳକଳ, ଘର୍ଘରି, ମର୍ମ୍ମରି, ଏ ଗୁଡ଼ିକ କିପରି ଶବ୍ଦ ?

୨୮ । ବେଣୀସଂହାରର ଅର୍ଥ କି ? ମହାଭାରତର କେଉଁ ଘଟନା ଅବଲମ୍ବନ କରି ତାହା ଲିଖିତ ହୋଇଅଛି ?

୨୯ । ମହାଭାରତ ଏବଂ ରାମାୟଣର ପ୍ରଧାନ ନାୟକମାନଙ୍କର ନାମ, ଚରିତ ଏବଂ ଚରିତ୍ର ଲେଖ ।

୩୦ । ମହାଭାରତ ଏବଂ ରାମାୟଣର ରଚୟିତା-ମାନଙ୍କର ନାମ ଲେଖ । ସେ ଉଭୟଙ୍କ ମଧ୍ୟରେ କିଏ ପ୍ରାଚୀନତର ?

୩୧ । "ଭଲ କରି ଦେଖ ମୋର ଭ୍ରାତାଙ୍କ ବଦନ
ଉପକାରୀ ପୁରୁଷ ଗୋ ଅଟନ୍ତି ଏ ଜନ"

– ଏ କିପରି ଉକ୍ତି ?

୩୨ । ଶାନ୍ତିରସାତ୍ମକ କୌଣସି କବିତା କବିତାବଳୀରୁ ଉଦ୍ଧୃତ କର ।

୩୩ । କର୍ଣ୍ଣଙ୍କର ରୂପ ଓ ପ୍ରଭାବ ବର୍ଣ୍ଣନା ସମ୍ବନ୍ଧୀୟ କବିତା ଉଦ୍ଧୃତ କର ।

୩୪ । ଦୁଃଶାସନଙ୍କୁ ଲକ୍ଷ୍ୟ କରି ଭୀମଙ୍କର ଯେଉଁ ଉକ୍ତି ଅଛି ସେଥିର ଯେଉଁ ଅଂଶ ସର୍ବୋତ୍କୃଷ୍ଟ ତାହା ଉଦ୍ଧୃତ କର ।

୩୫ । ସ୍ୱଭାବୋକ୍ତି ଅଳଙ୍କାରର ଚାରିଗୋଟି ଉଦାହରଣ ଅଯୋଧ୍ୟା ପ୍ରତ୍ୟାଗମନରୁ ଉଦ୍ଧୃତ କର। ସ୍ୱଭାବୋକ୍ତି ଅଳଙ୍କାରର ଲକ୍ଷଣ କି ?

୩୬ । "ସିନ୍ଧୁକୁ ମନ୍ଦରଗିରି କଅଣ ମନ୍ଥିଛି" ସମୁଦ୍ରମନ୍ଥନର ପୌରାଣିକ ବିବରଣ ସଂକ୍ଷେପରେ ଲେଖ ।

୩୭ । "ପୂର୍ବଦୁଃଖ ଅପମାନ କଲେକ ସ୍ମରଣ" "କଲେକ" ଏ କିପରି ପ୍ରୟୋଗ ?

୩୮ । କାଳୀଦାସଙ୍କୁ ଭାରତବର୍ଷର ଭୂଗୋଳ ଉରମରୂପେ ଜଣାଥିବାର ପ୍ରମାଣ ଅଯୋଧ୍ୟା ପ୍ରତ୍ୟାଗମନରୁ ମିଳେ କି ନାହିଁ ?

୩୯ । ଦୁର୍ଯ୍ୟୋଧନଙ୍କର ମାତାଙ୍କ ନାମ କି ? ଏବଂ ସେ କେଉଁ ରାଜାର କନ୍ୟା ? ସେହି ରାଜ୍ୟର ବର୍ତ୍ତମାନ ନାମ କଣ ?

୪୦ । ତୀର, ତିର, କୂଳ, କୁଳ, ବିଲ, ବିଲ୍, ଶୂର, ସୁର, ସୃତ, ସୁତ, ବେଣୀ, ବେନି– ଏହି ଶବ୍ଦମାନଙ୍କର ପ୍ରଭେଦ ଲେଖ ?

୪୧ । "ପ୍ରକୃତି ସୁନ୍ଦରୀ ହରେ ଭାବୁକ ହୃଦୟ" ଏଠାରେ ପ୍ରକୃତି ଶବ୍ଦର ଅର୍ଥ କଅଣ, ଆଉ କେଉଁ ଅର୍ଥରେ ପ୍ରକୃତି ଶବ୍ଦର ବ୍ୟବହାର ହୁଏ ତାହା ଲେଖ ।

୪୨ । "<u>ବିଶାଳଯଶା</u> ବୀରତନୟ ଲଭ" ରେଖାରୂଢ଼ ଶବ୍ଦଟି କେଉଁ ଲିଙ୍ଗ ?

୪୩ । "ସେ ଛବି ରସିକ ରସନା ବଳେ" ଏହି ପଂକ୍ତିର ଅର୍ଥ ସହଜ ଭାଷାରେ ବୁଝାଇ ଦିଅ । ଏହିଭଳି ଭାବ କବିତାବଳୀରେ ଆଉ କୌଣସି ସ୍ଥାନରେ ଅଛି କି ନାହିଁ ? ଭ୍ରମଭଞ୍ଜନରୁ ଏହିପରି ଗୋଟିଏ ଭାବ ବୋଲ ।

୪୪ । ଶିବାଜୀଙ୍କର ଉତ୍ସାହବାକ୍ୟରେ "ସ୍ମରି ଦେବଦେବ ପଶ ରଣସ୍ଥଳେ– ଏହି ପଂକ୍ତିରେ "ଦେବଦେବ" ଏହି ଶବ୍ଦର ସାର୍ଥକତା ଦେଖାଅ ।

୪୫ । "କରିବା ବିବିଧ ଗନ୍ଧେ ଚିର ବିନିମୟ" ଏହାର ଅର୍ଥ ସହଜଭାଷାରେ ପ୍ରକାଶକର ।

୪୬ । ଦୁର୍ଗାବତୀଙ୍କର ସଂକ୍ଷିପ୍ତ ଇତିହାସ ଲେଖ ।

୪୭ । ପଦ୍ୟ ସ୍ୱାତନ୍ତ୍ର୍ୟ କାହାକୁ ବୋଲ ? କବିତାବଳୀରୁ ସେଥିର କେତେଗୁଡ଼ିଏ ଉଦାହରଣ ଦେଖାଅ ।

୪୮ । ଭାଗୀରଥୀର ଏପରି ନାମ ହେବାର କାରଣ କି ?

୪୯ । "ଯେ ଦିନ ହିନ୍ଦୁଏ ଏକତା ଛାଡ଼ିଲେ" କେଉଁ ସମୟ ଏବଂ ଘଟନାକୁ ଲକ୍ଷ୍ୟକରି ଏହା ଲିଖିତ ହୋଇଅଛି ?

୫୦ । ଓଡ଼ିଆ ଭାଷାରେ ଯେତେ ଛନ୍ଦ ଅଛି ସେମାନଙ୍କ ମଧ୍ୟରେ କେଉଁ ଛନ୍ଦ ସବୁ ବିଷୟ ଏବଂ ସବୁ ରସ ପ୍ରତି ଉପଯୋଗୀ ?

୫୧ । ପ୍ରହାର, ଦୁର୍ଗତି, ଅବହିତ, ଜୟ, ଆକାର, ବିଚାର, ପରିଚୟ, ସମ୍ମାନ, ଅବତୀର୍ଣ୍ଣ, ପ୍ରୟୋଜନ, ପ୍ରବାଦ– ଏ ଶବ୍ଦମାନ କେଉଁ ଧାତୁରୁ ନିଷ୍ପନ୍ନ ? ସେହି ଧାତୁମାନଙ୍କରୁ ନିଷ୍ପନ୍ନ ଅନ୍ୟାନ୍ୟ ଶବ୍ଦମାନ ଲେଖ ।

୫୨ । 'ନିର୍ବାସିତର ବିଳାପ' କେଉଁ ଘଟନାକୁ ଲକ୍ଷ୍ୟକରି ଲିଖିତ ହୋଇଅଛି ?

୫୩ । "କଳିଙ୍ଗ ସଙ୍ଗରେ ଯୁଝେ ଦ୍ରୁପଦ କୁମର" ଏଠାରେ କେଉଁ ନିୟମାନୁସାରେ କଳିଙ୍ଗଦେଶର ରାଜା ସୂଚିତ ହେଲେ ? କଳିଙ୍ଗ ଦେଶର ବର୍ତ୍ତମାନ ନାମ କଅଣ ?

୫୪ । ନିମ୍ନଲିଖିତ ପଦମାନଙ୍କର ସମାସ ବ୍ୟାଖ୍ୟା କର ।

ଧରାବାସୀ, ଭୀମସେନ, ଗଜଧ୍ୱଜ, ଉଗ୍ରାୟୁଧ, ବିଜନ, ଅସୀମ, ଆଦିସୃଷ୍ଟି, କ୍ଷତ୍ରିୟଦୁର୍ଯ୍ୟକ୍ଷ, ଶିଖରିକୁଳ, ସନ୍ଧ୍ୟାତପ, ହିମଶୈଳସାନୁ, କୁରୁପାଣ୍ଡବକ ଅବିନୟତରି-କର୍ଣ୍ଣଧାର, ରାଜର୍ଷି, ହସ୍ତିନାହର୍ମ୍ମ୍ୟରାଜୀ, କରକମଳ, ଶ୍ୟାମଶାଖାକର, ରଥାଙ୍ଗମିଥୁନ, ଅବନୀବରବଦନ, ଗଜାକ୍ଷ, ଯଶୋରୂପଧନ, ପ୍ରଭାତସନ୍ଧ୍ୟାରାଗଲୋହିତ, ସପ୍ତର୍ଷିମଣ୍ଡଳ, ଜଳବେଣୀରମ୍ୟକାଳିନ୍ଦୀକୂଳ ।

୫୫ । ଉଗାରେ, ଗରାସେ– ଏ ଗୁଡ଼ିକ କିପରି ପ୍ରୟୋଗ ? ଗଦ୍ୟରେ ଲିଖିତ ହେଲେ କ'ଣ ହେବ ?

୫୬ । "ପନ୍ତି" ଏହି ଶବ୍ଦଟି କେଉଁ ଶବ୍ଦର ଅପଭ୍ରଂଶ ?

୫୭ । ଶଶାଙ୍କ, ତଟିନୀ, ପୁତ୍ର, ହସ୍ତୀ, ମୃଗ, ବାନର, ସାୟକ, ଶମନ, ଆକାଶ, କମଳ, ରବି, ଖଗେନ୍ଦ୍ର, କେତନ, କୁଟୀର, ହେମ, ସଂସାର, କୁସୁମ, ସାବାର, ଘନ, ମାନବ, ସମୀରଣ, ପିକ ଏହି ଶବ୍ଦମାନଙ୍କର ଯେତେ ପ୍ରତିଶବ୍ଦ ଜାଣ ଲେଖ ।

୫୮ । ନିମ୍ନ ଶବ୍ଦଗୁଡ଼ିକ କିପରି ନିଷ୍ପନ୍ନ ହୋଇଅଛି ?– ମହିମା, କଳାପୀ, କୌଶଳ, ଗାଣ୍ଡୀବୀ, ଯୌବନ, ପୌତ୍ର, ତେଜସ୍ୱୀ ବୀରପଣ, ସରୋଜିନୀ, କୈକେୟୀ, ସୌମିତ୍ର, ଐଶ୍ୱର୍ଯ୍ୟ, କେଶରୀ, କରୀ, ଦ୍ରୌପଦୀ, ବୈଷ୍ଣବ, ପାଶୁପତ, ବାତ୍ସଲ୍ୟ, ଯାଜ୍ଞସେନୀ ।

୫୯ । ସମ୍ବନ୍ଧ ଅର୍ଥରେ ନିମ୍ନଲିଖିତ ଶବ୍ଦମାନଙ୍କ ଉତ୍ତର ତଦ୍ଧିତ ପ୍ରତ୍ୟୟ କଲେ କିପରି ହେବ, ତାହା ଲେଖ ।

ଯମୁନା, ଗଙ୍ଗା, ସୁମେରୁ, ଶରତ, ନିଦାଘ, ସମୟ, ପକ୍ଷ, ପବନ, ନିଶା, ତମଃ, ଚନ୍ଦ୍ର, ଅସୁର, ଭୂମି, ପୃଥିବୀ ।

୬୦ । ନିରଦୟ, ନିରପେକ୍ଷ – ଗଦ୍ୟରେ କିପରି ଲେଖିବ ?

ଏଥିରେ ସମାସ ଥିଲେ ତାହା ବ୍ୟାଖ୍ୟା କର । ''ହିଆ'' କେଉଁ ଶବ୍ଦର ଅପଭ୍ରଂଶ ?

୬୧ । ଅଗ୍ରଜ, ଗୁରୁ, ପ୍ରବଳ, ଶୀତଳ, ପ୍ରଭୁ, ହାସ୍ୟ, ନିର୍ମୂଳ, ସମଭିନ୍ନ, ଦୂର, ଶତ୍ରୁ, ନିତ୍ୟ, ବିପକ୍ଷ, ନିନ୍ଦା, ସ୍ତୁତି, ଉଦୟ, ଆଗମ ଏମାନଙ୍କ ବିପରୀତଅର୍ଥବୋଧକ ଶବ୍ଦ ଲେଖ ।

୬୨ । ବରୁଣଙ୍କୁ ପାଶୀ ବୋଲିବାର ହେତୁ କି ? ସେହି ରୀତିରେ ଇନ୍ଦ୍ର, ଶିବ, ବିଷ୍ଣୁଙ୍କୁ କ'ଣ ବୋଲିବ ?

୬୩ । ନିମ୍ନଲିଖିତ ପଂକ୍ତିମାନଙ୍କରେ ରେଖାରୂଢ଼ ଶବ୍ଦ ଗୁଡ଼ିକର ଅନ୍ୱୟ ଦେଖାଅ ।

''ସମ୍ପଦକାଳକୁ ସଖା ସମସ୍ତେ ତ ଥିଲ'
''ବେଗେଣ ମିଳିଲେ ଯାଇ ଭୀମସେନ ପାଶ''
''ଭେଟିଲା ସୌବଳ କର୍ଣ୍ଣମୂଳେ ଭୀମତୀର''
''ତୁମ୍ଭି ଫୁଲ ନଦୀ ପର୍ଣ୍ଣେ''
''ଏଣେ ଆସିବାକୁ ନାହିଁ ତିଳେ ଅବସର''
''ଶବଦେ ଅବନୀ ଭୟେ କମ୍ପେ ଥରହର''
''ପଶିଲା ଶବ୍ଦ ଯାଇ ଭୀମଙ୍କ କର୍ଣ୍ଣର''
''ଆଘାତେ ସଂଘାତେ ଥାଏ ତରଙ୍ଗ ଫେନିଳ''
''କେତେ କାଳ ଭୁଲିଥିବ ଶାନ୍ତି ନିକେତନ''

୬୪ । ପଦ୍ୟ ଏବଂ ଗଦ୍ୟରେ ପଦବିନ୍ୟାସର କିପରି ବିଲକ୍ଷଣ୍ୟ ଅଛି ଉଦାହରଣଦ୍ୱାରା ତାହା ବୁଝାଇ ଦିଅ ।

୬୫ । ନିମ୍ନଲିଖିତ ପଂକ୍ତିମାନଙ୍କୁ ଗଦ୍ୟରେ ପରିଣତ କର –

''ମହାଶବ୍ଦେ ଭୂତଳେ ପଡ଼ିଲା ଦୁଃଶାସନ''ଠାରୁ ''ଚରଣେ ଚାପଇ ଭୀମ ଦୁଃଶାସନ ଗଳା'' ପର୍ଯ୍ୟନ୍ତ । ଉକ୍ତ ପୁସ୍ତକର 'ପବନ' ଶୀର୍ଷାଙ୍କିତ ପାଠର ଶେଷ ୧୫ ପଂକ୍ତି, 'ନିଶାଥଚିନ୍ତା' ଶୀର୍ଷାଙ୍କିତ ପଦ୍ୟରୁ ୯ ପଂକ୍ତି ।

୬୬ । ନିର୍ବାସିତର ବିଳାପର ଭାବ ଘେନି ସରଳ ଗଦ୍ୟରେ ସମୁଦାୟ ବିଷୟଟି ଲେଖିଯାଅ ।

୬୭ । ''ପ୍ରଳୟେ ବରାହରୂପୀ ମୁରାରିସଂହାରି ରଣେ ରାବଣ''– ଏଥିରେ କି ଅଳଙ୍କାର ଅଛି ?

୬୮ । ନିମ୍ନଲିଖିତ ପଂକ୍ତିମାନଙ୍କର ଭାବ ସ୍ପଷ୍ଟରୂପେ ବ୍ୟାଖ୍ୟା କର ।

''ମୁମୂର୍ଷୁ ଜନର ଅଟେ ଆଶ୍ରୟ ଚରମ''
''ପ୍ରଶାନ୍ତ ନିର୍ମ୍ମଳ ଯଥା ଦେବତାଙ୍କ ମନ
ଜାହ୍ନବୀର ଜଳ ସଦା ତେମନ୍ତ ପ୍ରସନ୍ନ''
''ଯୌବନ କପଟ ଯନ୍ତ୍ରେ ପଞ୍ଚଅପ୍ସରୀର
ବାନ୍ଧିଲେ ଯୋଗୀ ମାନସମୃଗ ସୁନାସୀର''
''କଳି ନୋହେ ଏହାର ସ୍ୱରୂପ ପରିମାଣ
ବିଷ୍ଣୁଙ୍କ ପରାୟେ ତାହା ଅତିକ୍ରମେ ଜ୍ଞାନ''
''ନିୟତି ଘୋଷଣା ସେହି ଜାଣି ନ ଜାଣିଲୁ''

୬୯ । ମହାମନ୍ତ୍ରୀ ପାଣ୍ଡବ ସମ୍ରାଟ ପାଟରାଣୀ
ହସ୍ତଧରି ଭୀମ ଆଗେ ଭେଟାଇଲେ ଆଣି ।

ମହାମନ୍ତ୍ରୀ କିଏ ? ଏବଂ ତାହାଙ୍କୁ ଏପରି ବିଶେଷଣ ପଦ ଦେବାର ହେତୁ କି ?

୭୦ । ହିରଣ୍ୟକଶ୍ୟପ କିଏ ଥିଲେ ? ତାହାଙ୍କ ବଧର ପୌରାଣିକ ଇତିବୃତ୍ତ ଲେଖ ।

୭୧ । ''ଆକର୍ଷି ଝିଙ୍କିଲୁଁରେ ପାମର ତା ବେଣୀ''
''ମାତ୍ର ତୋ ଦେହେ ଯୌବନ ରଭସ ।''

ଏ ଦୁଇ ପଂକ୍ତିରେ ଯତିଗତ ଦୋଷ ଥିଲେ ଦେଖାଇଦିଅ ।

୭୨ । ବିଶେଷ୍ୟ ପରେ ବିଶେଷଣ, କ୍ରିୟା ପରେ କର୍ତ୍ତୃପଦର ପ୍ରୟୋଗର ପଦ୍ୟରୁ କେତେଗୁଡ଼ିଏ ଉଦାହରଣ ଦିଅ ।

୭୩ । ''ଧୃଷ୍ଟଦ୍ୟୁମ୍ନ ବିଶିଖେ କଳିଙ୍ଗ ହେଲେ ନାଶ''
''ସମସ୍ତଙ୍କୁ ତ୍ରସ୍ତେ ବ୍ୟସ୍ତେ ଡାକିଲି ବହନ''
''ଅସ୍ତଗିରିଶୃଙ୍ଗେ ଏବେ ପ୍ରବେଶ ତପନ''
''ହୃଦ୍‌ବିକାର ନାଶି ଏ ତପୋବନେ''

ଉପର ଉକ୍ତ ପଂକ୍ତିମାନଙ୍କରେ କୌଣସି ପ୍ରକାର ବ୍ୟାକରଣ ଦୋଷ ଥିଲେ ତାହା ଦେଖାଇଦିଅ ।

୭୪ । ''ବାଣେ କୁରୁବୀରଙ୍କୁ ସେ ପକାଇଲେ ପୋତି''– ଏହି ପଂକ୍ତିରେ କି ଦୋଷ ଅଛି ?

୭୫ । ''ଆବରେ ଅର୍ଜୁନବାଣ ଗଗନମଣ୍ଡଳ''
''ପର୍ବତ ଆକାରେ ପଡ଼ିଅଛି ଦୁଃଶାସନ''

ଏହି ଦୁଇ ପଂକ୍ତିରେ କି ଅଳଂକାର ଅଛି ? ଏହିଭଳି ଅଳଂକାରର ଆଉ ୩-୪ଟି ଉଦାହରଣ କବିତାବଳୀରୁ ଉଦ୍ଧାରକର ।

୭୬ । ଅର୍ଥାନ୍ତରନ୍ୟାସର ଗୋଟିଏ ଉଦାହରଣ କବିତାବଳୀରୁ ଦେଖାଅ ।

୭୭ । ଗୁଣ କେତେ ପ୍ରକାର । ଓଜଗୁଣବିଶିଷ୍ଟ କେତେକ ପଂକ୍ତି କବିତାବଳୀରୁ ଉଦ୍ଧାରକର ।

୭୮ । କବିତାବଳୀରୁ ଶ୍ରୁତିକଟୁ ଦୋଷର ଗୋଟିଏ ଉଦାହରଣ ଦେଖାଅ ।

୭୯ । ''କ୍ରୂରହର୍ଷ'' ଏହାର ଅର୍ଥ ସ୍ପଷ୍ଟରୂପେ ବୁଝାଇ ଦିଅ ।

୮୦ । ପାବକ ଶବ୍ଦର ମୂଳ ଅର୍ଥ କଅଣ ?

୮୧ । ''କଳ୍ପନା ଚିତ୍ରିଲା କେତେ ଛବି ଚିତ୍ତପଟେ''– କଳ୍ପନାର ଅର୍ଥ କି ଏବଂ ତାହାର କାର୍ଯ୍ୟ କଅଣ ?

୮୨ । ଅଯୋଧ୍ୟା ପ୍ରତ୍ୟାଗମନରେ ରସକୁଲ୍ୟା ବୃତ୍ତର ଯେତେ ପଂକ୍ତି ଅଛି ତାହାର ଭାବ ଘେନି ଗଦ୍ୟ ରଚନା କର ।

୮୩ । ''ନର୍ତ୍ତିତକିରୀଟ ଦେବ କାର୍ତ୍ତିକ ଯେସନ''– ନର୍ତ୍ତିତକିରୀଟର ଅର୍ଥ କି ?

୮୪ । ଉଦ୍ଧାର ଚିହ୍ନ କିପରି ଏବଂ ତାହା କିପରି ସ୍ଥଳରେ ବ୍ୟବହାର ହୁଏ ?

୮୫ । ''ପୁଣି କୁରୁଯୋଧଙ୍କୁ ସମ୍ବୋଧି ବୃକୋଦର
ସଦର୍ପେ କହଇ ଆହେ ଆହେ ଅସ୍ତ୍ରଧର
ଶୂରେ ଭଲା ଆସି ରଖ ଦୁଃଶାସନ ଜୀବ
ଏତେ ସଖା ଥାଉଁ ଦୁଃଶାସନ ନାଶଯିବ ।
କୁରୁ ନୃପତିର ଧନ ଭଣ୍ଡାଇ ଖାଇଲ
ଅପ୍ରିୟ କାଳକୁ କେହି ସାହା ନ ହୋଇଲ''

ଉପର ଉକ୍ତ ଉଦ୍ଧୃତାଂଶରେ ଯେ ସ୍ଥାନରେ ଯେପରି ଛେଦ ହେବ ତାହା ସନ୍ନିବେଶକର ।

୮୬ । ନିମ୍ନଲିଖିତ ଶବ୍ଦମାନ କେଉଁ ବାଚ୍ୟରେ ନିଷ୍ପନ୍ନ ତାହା ଲେଖ –
ଅଧିରୋହିଣୀ, ଅସନ, ସ୍ଥାନ, ମାନ, ଲେଖନୀ, ଆସନ, ଅବତାର, ବାହନ, ବ୍ୟାପାର, ମଦ, ଆରାଧନା, ସର୍ଜ୍ଜନା, ଦଳନ, ମୋହନ, ଦୀପକ, ଜଳନ, ଘ୍ରାଣ, ଭକ୍ଷ୍ୟ, ଅଶନ, ଗ୍ରାସ, ନୟନ, ଦୁର୍ଯ୍ୟୋଧନ, ଦୁଃଶାସନ, ରାବଣ, ଗୀତ, ବୀର, ଚରଣ, ସହ୍ୟ, କାର୍ଯ୍ୟ, ଜୀବନ, ପ୍ରସାଧନୀ, ଚୂର୍ଣ୍ଣ, ପୂର୍ଣ୍ଣ ।

୮୭ । ବେଣୀସଂହାରରେ କେଉଁ ରସ ଅଙ୍ଗୀ ଅଟେ ?

୮୮ । ରଘୁବଂଶ କାହା କର୍ତ୍ତୃକ ବିରଚିତ ? ତାହାଙ୍କ ଜୀବନବୃତ୍ତାନ୍ତ ସମ୍ବନ୍ଧରେ କି କିମ୍ବଦନ୍ତୀ ଅଛି ? ତାହାଙ୍କ ପ୍ରଣୀତ ଅନ୍ୟାନ୍ୟ ଗ୍ରନ୍ଥମାନଙ୍କର ନାମ ଲେଖ ।

୮୯ । ଓଡ଼ିୟା ଭାଷାରେ ଅନ୍ୟ କେଉଁ କେଉଁ ଭାଷାର ଶବ୍ଦ କେଉଁ ପରିମାଣରେ ମିଶ୍ରିତ ହୋଇଅଛି ତାହା ଲେଖ ।

୯୦ । ଓଡ଼ିଶ୍ୟାର ପ୍ରଧାନ କବିମାନଙ୍କର ନାମ ଏବଂ ସେମାନଙ୍କ ପ୍ରଧାନ ପ୍ରଧାନ ଗ୍ରନ୍ଥର ଉଲ୍ଲେଖ କର ।

## ରଚନା

୧ । ତୁମ୍ଭର ଗ୍ରାମର ଚତୁଃସୀମା ଏବଂ ଅନ୍ୟାନ୍ୟ ବିବରଣ ଲେଖ ।

୨ । ତୁମ୍ଭର ଜୀବନବୃତ୍ତାନ୍ତ ଲେଖ ।

୩ । ନଦୀଦ୍ୱାରା କି ଉପକାର ହୁଏ ତାହା ବର୍ଣ୍ଣନା କର ।

୪ । ଶରତ୍‌କାଳର ଶୋଭା ବର୍ଣ୍ଣନାକର ।

୫ । ବାଉଁଶଗଛ କେତେ କାର୍ଯ୍ୟରେ ଲାଗେ ତାହା ବର୍ଣ୍ଣନା କର ।

୬ । ଧାନଚାଷ କି ରୂପେ ହୁଏ ତାହା ବର୍ଣ୍ଣନା କର ।

୭ । ନାରିକେଳ ଗଛ କେତେ କାର୍ଯ୍ୟରେ ଲାଗେ ତାହା ବର୍ଣ୍ଣନା କର ।

୮ । ଇଟା କି ରୂପେ ପ୍ରସ୍ତୁତ ହୁଏ ତାହା ଲେଖ ।

୯ । ଘୃତ କି ରୂପେ ପ୍ରସ୍ତୁତ ହୁଏ ତାହା ଲେଖ ।

୧୦ । ମନୁଷ୍ୟର ପଞ୍ଚ ଇନ୍ଦ୍ରିୟମାନଙ୍କ ବ୍ୟବହାର ବର୍ଣ୍ଣନା କର ।

୧୧ । କୂପ ଖନନର ତାବତ୍ ପ୍ରକ୍ରିୟା ବର୍ଣ୍ଣନା କର ।

୧୨ । ଗୋମୟ କେତେ କାର୍ଯ୍ୟରେ ଲାଗେ ତାହା ବର୍ଣ୍ଣନାକର ।

୧୩ । ଧୋବାମାନେ କିରୂପେ ବସ୍ତ୍ର ପରିଷ୍କାର କରନ୍ତି ସେ ପ୍ରକ୍ରିୟା ବର୍ଣ୍ଣନା କର ।

୧୪ । ଇକ୍ଷୁଚାଷର ପ୍ରଣାଳୀ ବର୍ଣ୍ଣନା କର ।

୧୫ । କୁମ୍ଭାରମାନଙ୍କର ମୃତ୍ତିକା ପ୍ରସ୍ତୁତ କରିବାର ପ୍ରକ୍ରିୟା ବର୍ଣ୍ଣନା କର ।

୧୬ । ହାଟଦ୍ୱାରା କି ଉପକାର ହୁଏ ତାହା ବର୍ଣ୍ଣନା କର ।

୧୭ । ସଡ଼କଦ୍ୱାରା କି ଉପକାର ହୁଏ ?

୧୮ । ବ୍ରାହ୍ମଣଶାସନର ଗଠନ ଏବଂ ଅବସ୍ଥାନ ବର୍ଣ୍ଣନା କର ।

୧୯ । ଦୋଳୋତ୍ସବ ବର୍ଣ୍ଣନା କର ।

୨୦ । ଘୋରୁଦ୍ୱାରା ମନୁଷ୍ୟର ଯେଉଁ କାର୍ଯ୍ୟ ଓ ଉପକାର ହୁଏ ତାହା ବର୍ଣ୍ଣନା କର ।

୨୧ । ଲୌହଦ୍ୱାରା ମନୁଷ୍ୟମାନଙ୍କର ଯେଉଁ ଉପକାର ହୁଏ ତାହା ବର୍ଣ୍ଣନା କର ।

୨୨ । ହିନ୍ଦୁମାନଙ୍କର ଅଶୌଚ ପ୍ରଥା ବର୍ଣ୍ଣନା କର ।

୨୩ । ଭଣ୍ଡାରିମାନେ କି କି କାର୍ଯ୍ୟ କରନ୍ତି ତାହା ବର୍ଣ୍ଣନା କର ।
୨୪ । କର୍ପୂରର ଉତ୍ପତ୍ତି ଏବଂ ବ୍ୟବହାର ବର୍ଣ୍ଣନା କର ।
୨୫ । ହସ୍ତୀର ଆକୃତି ଏବଂ ବ୍ୟବହାର ବର୍ଣ୍ଣନା କର ।
୨୬ । ବିରାଡ଼ି କି ପ୍ରକାର ଜନ୍ତୁ ଏବଂ ତାହାଦ୍ୱାରା ମନୁଷ୍ୟର କି ଉପକାର ହୁଏ ତାହା ବର୍ଣ୍ଣନା କର ।
୨୭ । ହରିଦ୍ରା କି ରୂପେ ଉତ୍ପନ୍ନ ହୁଏ ଏବଂ ସେଥିର ବ୍ୟବହାର ବର୍ଣ୍ଣନା କର ।
୨୮ । ବଟ ବୃକ୍ଷର ବର୍ଣ୍ଣନା କର ।
୨୯ । ହରିତକୀ କେତେ କାର୍ଯ୍ୟରେ ଲାଗେ ତାହା ବର୍ଣ୍ଣନା କର ।
୩୦ । ତେଲ ପ୍ରସ୍ତୁତ କରିବାର ଏ ଦେଶୀୟ ପ୍ରଚଳିତ ରୀତି ବର୍ଣ୍ଣନା କର ।
୩୧ । ଲବଣ ପ୍ରସ୍ତୁତ କରିବାର ରୀତି ବର୍ଣ୍ଣନା କର ।
୩୨ । ଚାଉଳ ପ୍ରସ୍ତୁତ କରିବାର ରୀତି ବର୍ଣ୍ଣନା କର ।
୩୩ । ଗୁଡ଼ ପ୍ରସ୍ତୁତ କରିବାର ରୀତି ବର୍ଣ୍ଣନା କର ।
୩୪ । ଲୌହଦ୍ରବ୍ୟ ପ୍ରସ୍ତୁତ କରିବାର ପ୍ରକ୍ରିୟା ବର୍ଣ୍ଣନା କର ।
୩୫ । ଗୋକ୍ଷୁର ସର୍ପର ବର୍ଣ୍ଣନା କର ।
୩୬ । ତାଳ ବୃକ୍ଷର ଉପକାରିତା ବର୍ଣ୍ଣନା କର ।
୩୭ । ଘରଠାରୁ ସ୍କୁଲକୁ ଆସିବା ସମୟରେ ପଥରେ ଯାହା ଯାହା ଦେଖିଛ ତାହା ବର୍ଣ୍ଣନା କର ।

# ଭୂମିକା, ମନ୍ତବ୍ୟ ଓ ସଂକ୍ଷିପ୍ତ ସମାଲୋଚନା

(୧) ନିକଲିଖିତ 'ମେଘଦୂତ' (୧୮୭୩)ର 'ଭୂମିକା'–

ମହାକବି କାଳିଦାସ ପ୍ରଣୀତ ମେଘଦୂତ ସଂସ୍କୃତ ଭାଷାରେ ଖଣ୍ଡିଏ ଅତ୍ୟୁତ୍କୃଷ୍ଟ କାବ୍ୟ । ଏହି କାବ୍ୟର ଅନୁକରଣରେ ହଂସଦୂତ, ପଦାଙ୍କଦୂତ, କୋକିଳଦୂତ ପ୍ରଭୃତି ଖଣ୍ଡକାବ୍ୟମାନ ବିରଚିତ ହୋଇଅଛି । ମାତ୍ର କେହି ମେଘଦୂତ ସଙ୍ଗେ ଉପମିତ ହେବାର ଯୋଗ୍ୟ ନୁହଇ । କାଳିଦାସ ଆଉ କିଛି ନଲେଖି କେବଳ ଯେବେ ମେଘଦୂତ ଲେଖିଥାଆନ୍ତେ ଏକା ସେହି ମେଘଦୂତ ଦ୍ୱାରା ସେ ଅଦ୍ୱିତୀୟ କବି ବୋଲି ପ୍ରତିଷ୍ଠିତ ହୋଇ ଥାଆନ୍ତେ । ଯେମାନେ ମୂଳଗ୍ରନ୍ଥର ଲୋକୋତ୍ତର ମାଧୁରୀ ଅନୁଭବ କରିଅଛନ୍ତି ସେମାନେ ଏ ବିଷୟରେ ମତାନ୍ତର କରିବେ ନାହିଁ । ମେଘଦୂତର ପ୍ରତ୍ୟେକ ଶ୍ଳୋକ ପ୍ରକୃତିର ଚିତ୍ରବିଶେଷ । ଚିତ୍ରକର ପ୍ରତ୍ୟେକ ଶ୍ଳୋକରୁ ଖଣ୍ଡିଏ ମନୋହର ଛବି ପ୍ରସ୍ତୁତ କରିପାରେ; ମେଘଦୂତର ଭାବ ଓ ଭାଷା ଅନ୍ୟୋନ୍ୟ ଶୋଭାସମ୍ପାଦକ ଅଟନ୍ତି ଏବଂ ଯେଉଁ ବୃତ୍ତରେ ତାହା ରଚିତ ହୋଇଅଛି ସେ ବୃତ୍ତର ଗଭୀରଝଙ୍କାର ଅନ୍ୟ ବୃତ୍ତରେ ସୁଲଭ ନୋହେ ।

ଏପରି ଗ୍ରନ୍ଥକୁ ଭାଷାନ୍ତର କରି ମୂଳର ଭାବମାନଙ୍କୁ ଅବିକଳ ପ୍ରକଟନ କରିବାର ମାଦୃଶ ଲୋକ ପକ୍ଷରେ ଦୁଃସାଧ, ପରନ୍ତୁ ସହସ୍ର ଯତ୍ନ କଲେହେଁ ମୂଳଗ୍ରନ୍ଥର ମାଧୁରୀ ଅନୁବାଦରେ ଆଣିବାର ଦୁଷ୍କର । ମୁଁ ସେ ଯତ୍ନ କରିନାହିଁ, କରିଥିଲେ ସୁଦ୍ଧା ସଫଳ ହୋଇ ନଥାଆନ୍ତି । ଅନେକ ସ୍ଥଳରେ ମିତ୍ରାକ୍ଷର ଉପଦ୍ରବରୁ ଅଗତ୍ୟା ନୂଆଭାବ ସନ୍ନିବେଶିତ କରାଯାଉଅଛି । ଯେଉଁମାନେ ମିତ୍ରାକ୍ଷରର ଉପଦ୍ରବ ସହିଅଛନ୍ତି ସେମାନେ କଦାଚ ମୋତେ ଦୋଷୀ କରିବେ ନାହିଁ । ମିତ୍ରାକ୍ଷର ଅଭାବରୁ ମୂଳଭାବ ପରିତ୍ୟାଗ ଏବଂ ମିତ୍ରାକ୍ଷର ସଦ୍ଭାବରୁ ନୂଆ ଅସଙ୍ଗତ ଭାବ ଆରୋପ କରିବାର ମାଦୃଶ ଅନୁବାଦକମାନଙ୍କର ଲଲାଟଲେଖନ ମଣିବାକୁ ହେବ । ସଂସ୍କୃତଜ୍ଞ ପାଠକଙ୍କୁ ମୋହୋର ଅନୁବାଦ ପଢ଼ିବାକୁ ଅନୁରୋଧ କରୁନାହିଁ । କବିସୂର୍ଯ୍ୟଙ୍କର ଉଜ୍ଜ୍ୱଳପ୍ରଭା ଭେଦି ଆସିବା ନିମନ୍ତେ ଯେତେ ସ୍ୱଚ୍ଛତାର ପ୍ରୟୋଜନ ମୋହୋର ଅନୁବାଦରେ ସେଥିର ଦଶମାଂଶ ନାହିଁ । ସୁତରାଂ ସଂସ୍କୃତାନଭିଜ୍ଞ ପାଠକେ ମୋହୋର ଅନୁବାଦଦ୍ୱାରା ମୂଳର ଉତ୍କର୍ଷ ପରୀକ୍ଷା କଲେ ପ୍ରତାରିତ ହେବେ, ଏହା ମୁଁ ମୁକ୍ତ କଣ୍ଠରେ ସ୍ୱୀକାର କରୁଅଛି । ତଥାଚ ଭରସା ହେଉଅଛି ଯେ ଏ ଅନୁବାଦ ପାଠଦ୍ୱାରା ମୂଳ ପ୍ରସଙ୍ଗର ସ୍ଥୂଳମର୍ମ ଉପଲବ୍ଧ ହୋଇପାରିବ । ପାଠକ ମହୋଦୟମାନଙ୍କୁ ବିନୟପୂର୍ବକ ପ୍ରାର୍ଥନା ଏହି ଯେ ସେମାନେ ମେମ...

ଆଦ୍ୟୋପାନ୍ତ ପାଠ କରିବା ପୂର୍ବରୁ ମୋ ପ୍ରତି ବିରକ୍ତ ନ ହୁଅନ୍ତି ।

ଗ୍ରନ୍ଥର ଅନେକ ସ୍ଥଳରେ ଭାବ, ଭାଷା ଓ ମୁଦ୍ରାଗତ ଦୋଷ ଥାଇପାରେ । ଉଦାର ପାଠକେ ନିଜ ଉଦାରତାର ବଶମ୍ବଦ ହୋଇ ମାର୍ଜନା କରିବେ ।

ଏଥିରେ ମୂଳଗ୍ରନ୍ଥର ପ୍ରାୟ ସବୁ ଶ୍ଳୋକ ଭାଷାନ୍ତରିତ ହୋଇଅଛି, କେବଳ ସର୍ବଶେଷରେ ଯେଉଁ ଶ୍ଳୋକ ଅଛି ତାହା ଅନୁବାଦିତ ହୋଇନାହିଁ । ସେହି ଶ୍ଳୋକ କାଳିଦାସଙ୍କ ଲେଖନୀରୁ ନିଃସୃତ ହୋଇଥିବାର ବିଶ୍ୱାସ କଲେ କାଳିଦାସଙ୍କର ଅପମାନ ହେବ । କାବ୍ୟର ମୁଖବନ୍ଧରେ କବି –

ଧୂମଜ୍ୟୋତିଃ ସଲିଳ ମରୁତାଂ ସନ୍ନିପାତଂ କ୍ୱ ମେଘଃ
ସନ୍ଦେଶାର୍ଥାଃ କ୍ୱ ପଟୁକରଣୈଃ ପ୍ରାଣିଭିଃ ପ୍ରାପଣୀୟାଃ ।
ଇତ୍ୟୌତ୍ସୁକ୍ୟାଦପରିଗଣୟନ୍ ଗୁହ୍ୟକସ୍ତଂ ଯୟାଚେ
କାମାର୍ତ୍ତାହି ପ୍ରକୃତିକୃପଣାଶ୍ଚେତନାଚେତନେଷୁ ।

ଏହି ଶ୍ଳୋକ ଲେଖି ଶେଷକୁ ପୁଣି –

ଶ୍ରୁତ୍ୱା ବାର୍ତ୍ତାଂ ଜଳଦକଥିତାଂ ତାଂ ଧନେଶୋଽପି ସଦ୍ୟଃ
ଶାପସ୍ୟାନ୍ତଂ ସଦୟହୃଦୟଃ ସଂବିଧାୟାସ୍ତକୋପଃ,
ସଂଯୋଜ୍ୟୈତୌ ବିଗଳିତଶୁଚୌ ଦମ୍ପତୀ ହୃଷ୍ଟଚିତ୍ତୌ
ଭୋଗାନିଷ୍ଟାନଭିମତସୁଖଂ ଭୋଜୟାମାସ ଶଶ୍ୱତ୍ ।

ଏମନ୍ତ ଲେଖିଲେ ଏହା ସମ୍ଭବକୁ ଆସୁନାହିଁ । ଇତର କବି ଗ୍ରନ୍ଥରେ ଏପରି ଅସଙ୍ଗତି ମାର୍ଜନୀୟ ନୋହେ – କାଳିଦାସଙ୍କର ତ କଥା ନାହିଁ । ବୋଧହୁଏ, କୌଣସି ସ୍ଥୂଳଦର୍ଶୀ ଲେଖକ କାବ୍ୟକୁ ଅସମ୍ପୂର୍ଣ୍ଣ ମଣି କାଳିଦାସଙ୍କର ପ୍ରତିଷ୍ଠା ବଢ଼ାଇବା ମାନସରେ ନିଜ ଦୁଷ୍ଟ ସରସ୍ୱତୀକୁ ମେଘଦୂତର ସହାୟ କରାଇଥିବେ । ଏହି ବିଶ୍ୱାସର ବଶମ୍ବଦ ହୋଇ ମୁଁ ସେହି ଶ୍ଳୋକର ଅନୁବାଦରୁ ନିବୃତ୍ତହେଲି ।

ଅନୁବାଦରେ କେବଳ କଳହଂସକେଦାର ଓ ରସକୁଲ୍ୟା ଏହି ଦୁଇଛନ୍ଦ ବ୍ୟବହୃତ ହୋଇଅଛି ।

ଆମ୍ଭର ଭକ୍ତିଭାଜନ ଅଧ୍ୟାପକ ପଣ୍ଡିତ ସଦାଶିବ ନନ୍ଦ ଏବଂ ସୋଦରପ୍ରତିମ ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓ ଏ ଗ୍ରନ୍ଥ ଆଦ୍ୟୋପାନ୍ତ ପଢ଼ି ମୁଦ୍ରିତ କରିବା ନିମନ୍ତେ ଯଥେଷ୍ଟ ଉତ୍ସାହ ଦେଇଅଛନ୍ତି । ଉଭୟଙ୍କଠାରେ ଆନ୍ତରିକ କୃତଜ୍ଞତା ପ୍ରକାଶକରୁଅଛି ।

ମୋହର ସର୍ବପ୍ରଧାନ ଉତ୍ସାହଦାତା ଶ୍ରୀଯୁକ୍ତ ବାବୁ ବୈକୁଣ୍ଠନାଥ ଦେ ମହାଶୟଙ୍କୁ ଏ ପୁସ୍ତକ ସସତ୍ତ୍ୱ ଅର୍ପଣକଲି ।

ବାଲେଶ୍ୱର — ଶ୍ରୀ ରାଧାନାଥ ରାୟ
୧୨ । ୨୨ । ୧୮୭୩ ।

### (୨) ନିଜ ରଚିତ 'କ୍ଷେତ୍ରତତ୍ତ୍ୱ' (୧୮୭୭)ର 'ଭୂମିକା'ର ଅଂଶବିଶେଷ –

ଓଡ଼ିଶାର ମଧ୍ୟମ ଶ୍ରେଣୀସ୍ଥ ସ୍କୁଲ ଛାତ୍ରମାନଙ୍କୁ କ୍ଷେତ୍ରତତ୍ତ୍ୱର ପ୍ରଥମ ଅଧ୍ୟାୟ ଏବଂ ପରିମାଣର କେତେକ ଅଂଶ ଶିକ୍ଷା କରିବାକୁ ହୁଏ । ମାତ୍ର ସେହି ଉଭୟ ପୁସ୍ତକ ଦୁର୍ମୂଲ୍ୟ ଓ ଦୁଷ୍ପ୍ରାପ୍ୟ । ମଫସଲର ଛାତ୍ରମାନଙ୍କ ପକ୍ଷରେ ତେତେ ମୂଲ୍ୟ ଦେଇ ପୁସ୍ତକ କିଣିବାର ସହଜ ନୁହଇ । ଏହି କଷ୍ଟର ପ୍ରତିକାର କରିବା ମାନସରେ ଓଡ଼ିଶାର ଜଏଣ୍ଟ୍ ଇନ୍‌ସ୍ପେକ୍ଟର ମାନ୍ୟବର ଶ୍ରୀଯୁକ୍ତ ନନ୍ଦକିଶୋର ଦାସ ଖଣ୍ଡିଏ କ୍ଷୁଦ୍ରାବୟବର ପୁସ୍ତକରେ ସଂକ୍ଷେପରେ ସଙ୍କଳନ କରିବାକୁ ଅନୁରୋଧ କରିଥିଲେ । ସେହି ଅନୁରୋଧର ଅନୁବର୍ତ୍ତୀ ହୋଇ ଆମ୍ଭେମାନେ ଏହି ପୁସ୍ତକ ଖଣ୍ଡିକ ପ୍ରଣୟନ କଲୁଁ । (୧୧ । ୯ । ୧୮୭୬)

### (୩) ଶିବନାରାୟଣ ନାୟକଙ୍କ ସହଯୋଗରେ ସ୍ୱପ୍ରଣୀତ 'ଭୂଗୋଳ ବ୍ୟବହାରିକ ପ୍ରଥମଭାଗ' (୧୮୭୭)ର 'ବିଜ୍ଞାପନ' –

ଓଡ଼ିଶାରେ ମଧ୍ୟମ ଶ୍ରେଣୀର ବିଦ୍ୟାଳୟମାନଙ୍କରେ ଛାତ୍ରମାନଙ୍କର ପାଠୋପଯୋଗୀ ଉପଯୁକ୍ତ ଭୂଗୋଳଗ୍ରନ୍ଥର ଅସଦ୍ଭାବ ଦେଖି ଆମ୍ଭେମାନେ ଏହି ପୁସ୍ତକଖଣ୍ଡିକ ସଙ୍କଳନରେ ପ୍ରବୃତ୍ତ ହେଲୁଁ । ଏହାର ଭାଷା ସରଳ, ମୂଲ୍ୟ ଅଳ୍ପ ଏବଂ ବିଷୟ ସାରବାନ୍ କରିବା ପକ୍ଷରେ ଆମ୍ଭେମାନେ ତ୍ରୁଟି କରିନାହୁଁ । ଏହି ପୁସ୍ତକ କୌଣସି ପୁସ୍ତକରୁ ସଙ୍କଳିତ କିମ୍ବା ଅନୁବାଦିତ ହୋଇନାହିଁ । ଅନେକଗୁଡ଼ିଏ ଭୂଗୋଳ, ଇତିହାସ ଏବଂ ମାସିକ ସମ୍ବାଦପତ୍ରିକାର ସାହାଯ୍ୟରେ ପ୍ରସ୍ତୁତ ହୋଇଅଛି ।

### (୪) ଗୋବିନ୍ଦ ରଥଙ୍କ 'ମହାମେଳା-ଦର୍ଶନ' ସମ୍ପର୍କରେ ମନ୍ତବ୍ୟ –

ଶ୍ରୀବାବୁ ଗୋବିନ୍ଦ ରଥଙ୍କ ପ୍ରଣୀତ 'ମହାମେଳା-ଦର୍ଶନ' ଉତ୍କଳ ବିଦ୍ୟାଳୟ ପକ୍ଷରେ ଖଣ୍ଡିଏ ଅତି ଉପଯୋଗୀ ଏବଂ ଉପାଦେୟ ପାରିତୋଷିକ ପୁସ୍ତକ । ଏଥିରେ ବିଗତ ମହାମେଳା ସମ୍ବନ୍ଧରେ ଅନେକ ଜ୍ଞାତବ୍ୟ ଓ କୌତୁକାବହ ବିଷୟ ସନ୍ନିବିଷ୍ଟ ହୋଇଅଛି । ରଚନା ମଧ୍ୟ ସରଳ ଓ ପ୍ରାଞ୍ଜଳ । ଶିକ୍ଷାବିଭାଗ ଡାଇରେକ୍ଟର ମହୋଦୟ କେତେକ ପୁସ୍ତକ କ୍ରୟ କରିଅଛନ୍ତି । ଉତ୍କଳ ବିଦ୍ୟାଳୟର

କର୍ତ୍ତୃପକ୍ଷୀୟମାନେ ପାରିତୋଷିକ ରୂପେ ଏ ପୁସ୍ତକକୁ ନିର୍ବାଚନ କଲେ ଆମ୍ଭେ ଅତ୍ୟନ୍ତ ଆହ୍ଲାଦିତ ହେବୁଁ।
କଟକ
୨୦।୮।୧୮୮୫ ଶ୍ରୀ ରାଧାନାଥ ରାୟ
(ଉତ୍କଳ-ଦୀପିକା – ୨୦-୩୫, ୨୯.୮. ୧୮୮୫)

(୫) ବାସୁଦେବ ସୁଢ଼ଳଦେବଙ୍କ 'ଅଳଙ୍କାର-ବୋଧୋଦୟ' (୧୮୮୬) ସମ୍ପର୍କରେ ମନ୍ତବ୍ୟ –

ପରମ ମାନନୀୟ ଶ୍ରୀଳ ଶ୍ରୀଯୁକ୍ତ ବାମଣ୍ଡାଧିପତି ମହାରାଜ ସୁଢ଼ଳଦେବ ମହୋଦୟ ମହନୀୟ ଚରିତେଷୁ – ସବିନୟ ନିବେଦନମିଦଂ
ମହାରାଜ!

ଭବତ୍‌ପ୍ରେରିତ ଅଳଙ୍କାର-ବୋଧୋଦୟର ପାଣ୍ଡୁଲେଖ୍ୟ ଆଦ୍ୟୋପାନ୍ତ ପାଠକରି ଅତ୍ୟନ୍ତ ପ୍ରୀତ ହେଲି।

ସାହିତ୍ୟଦର୍ପଣକୁ ଆଦର୍ଶରୂପେ ଅବଲମ୍ବନ କରି ଉକ୍ତ ଗ୍ରନ୍ଥ ରଚିତ ହୋଇଥିବାର ବୋଧହୁଅଇ। ଓଡ଼ିଆ ଭାଷାର କଥା ଦୂରେ ଥାଉ, ମୁଁ ବଙ୍ଗଳାରେ ସୁଦ୍ଧା ଏପରି ଅଳଙ୍କାରଗ୍ରନ୍ଥ ଅଦ୍ୟାବଧି ଦେଖିନାହିଁ। ଏହାର ରଚୟିତା ସଂସ୍କୃତ ଓଡ଼ିଆ ଭାଷାରେ ବ୍ୟୁତ୍ପନ୍ନ। ପରନ୍ତୁ ଏହି ଗ୍ରନ୍ଥ-ପ୍ରଣୟନରେ କେତେ ପ୍ରୟାସ ସ୍ୱୀକୃତ ଓ କେତେ ଗ୍ରନ୍ଥ ଆଲୋଚିତ ହୋଇଅଛି, ତାହା ଅନୁଭବୀ ବ୍ୟତୀତ ଅନ୍ୟ ଲୋକେ ବୁଝିପାରିବେ ନାହିଁ। କି ପ୍ରାଚୀନ କି ନବ୍ୟ ଉଭୟ ସାହିତ୍ୟ ଗ୍ରନ୍ଥରୁ ଉପଯୁକ୍ତ ଉଦାହରଣମାନ ସଙ୍କଳନ କରି ଗ୍ରନ୍ଥକାର ଗ୍ରନ୍ଥକୁ ଉପଯୁକ୍ତ କରିବା ବିଷୟରେ ଆଦୌ ଅବହେଳା କରିନାହାନ୍ତି। ଅଧିକାଂଶ ଉଦାହରଣ ଉତ୍କଳ ଗ୍ରନ୍ଥରୁ ସଙ୍କଳିତ ଏବଂ ଲକ୍ଷଣମାନଙ୍କର ଭାଷା ଆହୁରି ସହଜ ହୋଇଥିଲେ ଗ୍ରନ୍ଥ ଅଧିକତର ଉପଯୋଗୀ ହୁଅନ୍ତା ସତ୍ୟ – ମାତ୍ର ଭାଷା ଗ୍ରନ୍ଥରେ ସର୍ବପ୍ରକାର ଅଳଙ୍କାରର ଓ ବିଶେଷତଃ ଶବ୍ଦାଳଙ୍କାରର ଉଦାହରଣ ସୁଲଭ ନୁହେଁ। ତେଣୁ ଗ୍ରନ୍ଥକାର ଅଗତ୍ୟା ସଂସ୍କୃତ ଗ୍ରନ୍ଥର ଆଶ୍ରୟ ଗ୍ରହଣ କରିଅଛନ୍ତି, ପୁଣି ତଜ୍ଜନିତ ଅସୁବିଧା ନିବାରଣାର୍ଥ ପ୍ରାୟ ପ୍ରତ୍ୟେକ ସ୍ଥଳରେ ସଂସ୍କୃତ ଶ୍ଳୋକମାନଙ୍କର ଅର୍ଥ ବିଶଦରୂପେ ବ୍ୟକ୍ତ କରିଅଛନ୍ତି।

ଏହି ଗ୍ରନ୍ଥ ସମ୍ପୂର୍ଣ୍ଣ ହେଲେ ଉତ୍କଳ ଭାଷାର ଗୋଟିଏ ଅମୂଲ୍ୟ ସମ୍ପତ୍ତି ହେବ ଏହା ମୁଁ ମୁକ୍ତକଣ୍ଠରେ କହିବାକୁ ପ୍ରସ୍ତୁତ ଅଛି। ମୋହର କେବଳ ଏତିକି ବକ୍ତବ୍ୟ ଯେ, ଗ୍ରନ୍ଥର ଅବଶିଷ୍ଟ ପରିଚ୍ଛେଦମାନଙ୍କରେ ପର୍ଯ୍ୟାପ୍ତମାଣର ଉତ୍କଳଭାଷା ଉଦାହରଣର ସନ୍ନିବେଶ ନିତାନ୍ତ ବାଞ୍ଛନୀୟ।
କଟକ ସଦା ବଶମ୍ବଦ
୫।୨।୧୮୮୬ ଶ୍ରୀ ରାଧାନାଥ ରାୟ

(୬) ଭାଗୀରଥୀ ଷାଠିୟାଙ୍କ 'ସୁଚିତ୍ର ରାମାୟଣ' (୧୮୮୮) ସଂପର୍କରେ ମନ୍ତବ୍ୟ –

ଆପଣଙ୍କ ପ୍ରଣୀତ ସୁଚିତ୍ର ରାମାୟଣର ଉପହାର କୃତଜ୍ଞ ଚିତ୍ତରେ ଗ୍ରହଣ କଲୁଁ। ପୁସ୍ତକର ଭାଷା ପ୍ରାଞ୍ଜଳ ଏବଂ ରଚନା ଏକ ଏକ ସ୍ଥାନରେ ପ୍ରୀତିପ୍ରଦ ହୋଇଅଛି। ଆମ୍ଭେ ଆଶା କରୁଁ ଆପଣଙ୍କର ଏହି ସଦୁଦ୍ୟମ ସାଧାରଣଙ୍କଠାରୁ ଉଚିତ ଉତ୍ସାହ ଲାଭ କରିପାରିବ।
(ଉତ୍କଳ-ଦୀପିକା – ୨୩-୧୭, ୨୮.୪.୧୮୮୮)

(୭) 'ସମ୍ବଲପୁର-ହିତୈଷିଣୀ' (ସାପ୍ତାହିକ ସମ୍ବାଦପତ୍ର) ସମ୍ପର୍କରେ ମତାମତ –

ଓଡ଼ିଶ୍ୟାରେ ବର୍ତ୍ତମାନ ୪ଖଣ୍ଡି ସମ୍ବାଦପତ୍ର ଅଛି। ଏମାନଙ୍କ ମଧ୍ୟରେ ସମ୍ବଲପୁର-ହିତୈଷିଣୀ ଅନ୍ୟ କୌଣସି ପତ୍ରିକା ଅପେକ୍ଷା କୌଣସି ଅଂଶରେ ହୀନକଳ୍ପ ନୁହଇ। ଆକୃତିରେ ଏହା ସର୍ବାପେକ୍ଷା ବୃହତ୍ତର ଅଥଚ ମୂଲ୍ୟ ସମ୍ବନ୍ଧରେ ସର୍ବାପେକ୍ଷା ସୁଲଭ। ଅନେକ ଇଂରେଜି, ବଙ୍ଗଳା ଏବଂ ଓଡ଼ିୟା ସମ୍ବାଦପତ୍ରରୁ ସାର ସାର ବିଷୟମାନ ଏହି ପତ୍ରିକାରେ ଉଦ୍ଧୃତ ହୁଅଇ। ସୁତରାଂ କେବଳ ଏହି ପତ୍ରିକା ପାଠଦ୍ୱାରା ଅନେକ ପତ୍ରିକା ପାଠର ଫଳଲାଭ ହୋଇପାରେ। ରାଜନୈତିକ, ସାମାଜିକ ଏବଂ ବୈଜ୍ଞାନିକ ବିଷୟ ବ୍ୟତୀତ ଉତ୍କଳ-ସାହିତ୍ୟର ଅନୁଶୀଳନ ଏ ପତ୍ରିକାରେ ଯଥେଷ୍ଟ ପରିମାଣରେ ହୁଅଇ। ନବୀନ ଓଡ଼ିଆ ଲେଖକମାନଙ୍କର ଏ ପତ୍ରିକା ସହିତ ଘନିଷ୍ଠ ସଂସ୍ରବ ବିଶେଷ ଫଳୋପଧାୟକ ଅଟେ, ହେତୁକି ପତ୍ରିକାର ଆକାର ବୃହତ୍ ହୋଇଥିବାରୁ ସେମାନଙ୍କର ରଚନା ଏଥିରେ ଶୀଘ୍ର ପ୍ରକାଶିତ ହେବାର ସମ୍ଭାବନା।

ତା ୩୧।୧।୧୮୯୧ରିଖ ଶ୍ରୀ ରାଧାନାଥରାୟ
କଟକ
(ସମ୍ବଲପୁର ହିତୈଷିଣୀ, ୨-୪୬, ୨୯.୪.୧୮୯୧)

**(୮) ନୀଳମଣି ବିଦ୍ୟାରତ୍ନଙ୍କଦ୍ୱାରା ରଚିତ 'ଗୋଧନରକ୍ଷା' (୧୮୯୨) ସମ୍ପର୍କରେ ମତାମତ –**

ଏହି ପୁସ୍ତିକା ପାଠକରି ସବିଶେଷ ପ୍ରୀତି ଲାଭ କରିଅଛି। ଏହାର ପ୍ରତ୍ୟେକ ପୃଷ୍ଠାରୁ ଲେଖକ ମହାଶୟଙ୍କର ପ୍ରଗାଢ଼ ଓ ଜ୍ୱଳନ୍ତ ଉତ୍ସାହର ପରିଚୟ ମିଳଇ। ଗ୍ରନ୍ଥ ପ୍ରତିପାଦିତ ବିଷୟ କି ପ୍ରାଚୀନ କି ନବ୍ୟ ଉଭୟ ସମ୍ପ୍ରଦାୟର ହୃଦୟଙ୍ଗମ କରିବା ସକାଶ ଗ୍ରନ୍ଥକାର ପ୍ରମାଣ ଓ ଯୁକ୍ତି ସଂଗ୍ରହ ବିଷୟରେ ଅଣୁମାତ୍ର ତ୍ରୁଟି କରିନାହାନ୍ତି। ପ୍ରତ୍ୟେକ ଉତ୍କଳବାସୀ ହିନ୍ଦୁର ଏ ପୁସ୍ତିକା ଆଦ୍ୟୋପାନ୍ତ ପଢ଼ିବାର ଉଚିତ।

କଟକ ଶ୍ରୀ ରାଧାନାଥ ରାୟ
୧୯।୨।୧୮୯୨
(ସମ୍ବଲପୁର ହିତୈଷିଣୀ, ୩-୩୯, ୯।୩।୧୮୯୨)

**(୯) ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ 'ହିମାଚଳ' ଓ 'ଦୃଶ୍ୟରାଜି' ସମ୍ପର୍କରେ ଇଂରେଜୀରେ ଦେଇଥିବା ମତାମତର ସ୍ପଷ୍ଟୀକରଣ –**

'ମୁଁ କାହିଁକି ଏପରି ମତ ଦେଲି'– ଏହି ପ୍ରଶ୍ନର ଉତ୍ତରରେ କହୁଅଛି ଯେ ଗୋବିନ୍ଦବାବୁଙ୍କ କବିତାରେ ପ୍ରସାଦ ଗୁଣର ନିତାନ୍ତ ଅଭାବ। କୌଣସି କୌଣସି ସ୍ଥଳରେ ଅର୍ଥ ଗ୍ରହଣ ହେବାର ଦୁର୍ଘଟ। ଏକ ଏକ ସ୍ଥଳରେ ଭାବ ନିତାନ୍ତ ଅପରିସ୍ଫୁଟ ରୂପରେ ପ୍ରକାଶିତ ହୋଇଅଛି। ଏହି ଦୋଷମାନ କି 'ହିମାଚଳ' କି 'ଦୃଶ୍ୟରାଜି' ଉଭୟରେ ପ୍ରଚୁର ପରିମାଣରେ ବିଦ୍ୟମାନ। ମାତ୍ର ଏହି ତ୍ରୁଟୀ ସତ୍ତ୍ୱେ 'ହିମାଚଳ'ର ରଚନାକୁ ମୁଁ କଦାଚ ମନ୍ଦ ବୋଲି କହିବାକୁ ସାହସୀ ହେବିନାହିଁ। ହିମାଳୟ ମୁଁ ସ୍ୱୟଂ ଦେଖିଅଛି। ମୋହୋର ସ୍ମୃତିପଟରେ ସେହି ମହାଦୃଶ୍ୟର ଯେଉଁ ଛବି ଅଙ୍କିତ ହୋଇଅଛି, ସେଥିସଙ୍ଗେ ମୁଁ ଗୋବିନ୍ଦବାବୁଙ୍କ ରଚନା ମିଳାଉଥିଲି। ମୁଁ ହୃଦୟର ସହିତ କହୁଅଛି ଯେ ଗୋବିନ୍ଦବାବୁଙ୍କ ଚିତ୍ର ମୋହୋର ମନଶ୍ଚିତ୍ରର ପ୍ରାୟ ଅନୁରୂପ। ଏପରି ଅବସ୍ଥାରେ ସେହି ପଦ୍ୟକୁ ନିକୃଷ୍ଟ ଶ୍ରେଣୀଭୁକ୍ତ କରିବା ମୋହପକ୍ଷରେ ସଙ୍ଗତ ହେବନାହିଁ।

'ହିମାଚଳ' ଏବଂ 'ଦୃଶ୍ୟରାଜି' ଏ ଉଭୟ ମଧ୍ୟରେ ବିଭିନ୍ନ ପ୍ରଭେଦ। ଉଭୟ ରଚନା ବର୍ଣ୍ଣନାତ୍ମକ, କଳ୍ପନା ଏମ[illegible]ସେଥିର କୌଣସି ସମ୍ବନ୍ଧ ନାହିଁ। ତଥାପି ବର୍ଣ୍ଣନା[illegible]ରଚନା ମଧ୍ୟରେ 'ହିମାଚଳ' ଉଚ୍ଚସ୍ଥାନ ପାଇବାର ଯୋଗ୍ୟ। 'ଦୃଶ୍ୟରାଜି'କୁ ମୁଁ ଆପେକ୍ଷିକ ରୀତିରେ ଭଲ କହିଅଛି।

କ୍ଳିଷ୍ଟତା ଗୋବିନ୍ଦବାବୁଙ୍କ ରଚନାର ଗୋଟିଏ ପ୍ରଧାନ ତ୍ରୁଟୀ। 'ହିମାଚଳ'ର ରଚନା ସ୍ଥଳରେ ଉତ୍କୃଷ୍ଟ ହୋଇ ସୁଦ୍ଧା ଏହି ଦୋଷରେ ଦୂଷିତ। 'ଦୃଶ୍ୟରାଜି' ଅଧିକତର ଦୂଷିତ। ପ୍ରସାଦଗୁଣର ଅଭାବ ଏବଂ କ୍ଳିଷ୍ଟତା ହେତୁରୁ ସେ ରଚନା କାହାରି ଶ୍ରଦ୍ଧା ଆକର୍ଷଣ କରିପାରିନାହିଁ।

ମୁଁ ମୁକ୍ତକଣ୍ଠରେ ସ୍ୱୀକାର କରୁଅଛି, ପ୍ରସାଦ ଗୁଣର ଅଭାବ ଦୃଷ୍ଟିରେ ଗୋବିନ୍ଦବାବୁଙ୍କ ରଚନାକୁ କେହି ଯେବେ ନିକୃଷ୍ଟ ରଚନା ମଧ୍ୟରେ ପରିଗଣିତ କରନ୍ତି, ସେଥିରେ ମୁଁ ଆଶ୍ଚର୍ଯ୍ୟାନ୍ୱିତ ହେବିନାହିଁ। ବାସ୍ତବରେ ଏ ଅଂଶରେ ଗୋବିନ୍ଦବାବୁଙ୍କ ତ୍ରୁଟୀ ଏପରି ପରିସ୍ଫୁଟ ଯେ ସେଥି ସମ୍ବନ୍ଧରେ ମତଭେଦ ହେବାର ସମ୍ଭାବନା ନାହିଁ।

(ସମ୍ବଲପୁର ହିତୈଷିଣୀ, ୩-୩୮,
୨।୩।୧୮୯୨)

**(୧୦) ଦାମୋଦର ମିଶ୍ରଙ୍କ 'କମଳା' (୧୮୯୩) ସମ୍ବନ୍ଧରେ ନୀଳମଣି ବିଦ୍ୟାରତ୍ନଙ୍କୁ ଲେଖିଥିବା ପତ୍ରର ଅଂଶବିଶେଷ –**

ଗତସଂଖ୍ୟକ ହିତୈଷିଣୀରେ 'କମଳା' ନାମକ କାବ୍ୟାଂଶ ପଢ଼ି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହେଲି। ଏ ଲେଖା କାହାର ? ଲେଖା ଯାହାର ହେଉ ପଛକେ, ଲେଖକ ଯେ ଉତ୍କଳର ଜଣେ ଉଦୀୟମାନ କବି ଏ ବିଷୟରେ ଲେଶମାତ୍ର ସନ୍ଦେହ ନାହିଁ।

(ସମ୍ବଲପୁର ହିତୈଷିଣୀ, ୪-୪୨,
୨୨।୩।୧୮୯୩)

**(୧୧) ଦାମୋଦର ମିଶ୍ରଙ୍କ 'କମଳା'ର ସଂକ୍ଷିପ୍ତ ସମାଲୋଚନା –**

ଶ୍ରୀଯୁକ୍ତ ବାବୁ ଦାମୋଦର ମିଶ୍ର ପଦ୍ମାକରଙ୍କାର ମହାଶୟଙ୍କ ପ୍ରଣୀତ 'କମଳା' କାବ୍ୟ ମୁଁ ଆଦ୍ୟୋପାନ୍ତ ପାଠକରି ପ୍ରୀତିଲାଭ କରିଅଛି। 'କମଳା' 'କମଳସୁନ୍ଦରୀ' ପ୍ରଣେତାଙ୍କର ସୁପ୍ରତିଷ୍ଠାର ଅନୁପଯୁକ୍ତ ହୋଇନାହିଁ। ଦାମୋଦରବାବୁ ଅତି ଅଳ୍ପ ବୟସରେ ଉତ୍କଳସାହିତ୍ୟସଂସାରରେ ଅସାଧାରଣ କୃତିତ୍ୱ ଲାଭକରିଅଛନ୍ତି। ତାହାଙ୍କ ରଚିତ ପ୍ରାୟ ପ୍ରତ୍ୟେକ

କବିତା ନ୍ୟୂନାଧିକରେ ପ୍ରତିଭା ଏବଂ ଭାବୁକତାର ପରିଚାୟକ। ତଦ୍‌ଗତ ଚିତ୍ତରେ ପ୍ରକୃତିର ସେବା ନ କଲେ ପ୍ରକୃତ ଭାବପ୍ରଧାନ କବିତାର କଦାଚ ସୂତ୍ରପାତ ହୁଅଇ ନାହିଁ। ଏହି ତପଶ୍ଚରଣରେ ସେମାନେ ପରାଙ୍ମୁଖ, ଅଥଚ ସେମାନେ ଶବ୍ଦଶାସ୍ତ୍ରରେ ସୁବ୍ୟୁତ୍ପନ୍ନ, ଏପରି ଲୋକେ ରାଶି ରାଶି ପଦ୍ୟ ଲେଖି ତାହାକୁ କାବ୍ୟଆଖ୍ୟାରେ ଆଖ୍ୟାତ କରନ୍ତି; ମାତ୍ର ସେ ପ୍ରୟାସ କେବଳ ବିଡ଼ମ୍ବନାରେ ପରିଣତ ହୁଏ। ଏହି ଶ୍ରେଣୀର ଲେଖକଙ୍କର ଶବ୍ଦପ୍ରଧାନ ରଚନାକୁ ଲକ୍ଷ୍ୟକରି ଜଣେ ସୁରସିକ କବି ଲେଖିଅଛନ୍ତି – "ରତରୀତି ବୀତବସନାପ୍ରିଏବ ଶୁଦ୍ଧାପି ବାଙ୍ମୁଦେସରସା, ଅରସା ସାଳଂକୃତିରପି ନ ରୋଚତେ ଶାଳଭଞ୍ଜୀବ।" ଦାମୋଦରବାବୁ ଏ ଶ୍ରେଣୀର ଲେଖକ ନୁହନ୍ତି। ଏ ପ୍ରକୃତିଦେବୀ ଉପାସନାରେ ବାସ୍ତବ ତଦ୍‌ଗତଚିତ୍ତ। ତାହାଙ୍କ ରଚିତ 'ଅଂଶୁପା', 'କମଳସୁନ୍ଦରୀ', 'ପଦ୍ମାବତୀ' ଏବଂ 'କମଳା' ଯେଉଁମାନେ ଅଭିନିବେଶପୂର୍ବକ ପାଠକରି ଅଛନ୍ତି ସେମାନେ ମୋହୋର ଏହି ମତର ସମର୍ଥନ କରିବାକୁ କୁଣ୍ଠିତ ହେବେନାହିଁ।

ଅବଶ୍ୟ ଦାମୋଦରବାବୁ ନବବ୍ରତୀ ହେବାସକେ ତାହାଙ୍କ ରଚନାର ଅନେକ ସ୍ଥଳମାନଙ୍କରେ ପ୍ରଥମୋଦ୍ୟମସୁଲଭ ତ୍ରୁଟୀ ଏବଂ ଦୋଷ ଅଛି। ଅଭ୍ୟାସବଶରୁ ସମୟରେ ଏହି ଦୋଷମାନ ତିରୋହିତ ହେବାର ସମ୍ପୂର୍ଣ୍ଣ ସମ୍ଭାବନା। ପରିପକ୍ୱତା ସମୟସାଧ୍ୟ ଏବଂ ଆୟାସସାଧ୍ୟ, ମାତ୍ର ପ୍ରତିଭା ସେପରି ନୁହଇ। ଦାମୋଦରବାବୁଙ୍କ ପ୍ରତିଭା ଅଛି। ପରନ୍ତୁ ସେ ଶକ୍ତିମାନ୍ ସୁକବି ଶ୍ରୀଯୁକ୍ତ ମହାରାଜ ବାସୁଦେବ ସୁଢ଼ଳଦେବ ମହୋଦୟଙ୍କ ଶିଷ୍ୟତ୍ୱ ସ୍ୱୀକାର କରିଅଛନ୍ତି। ଏପରି ଅନୁକୂଳ ଅବସ୍ଥାରେ ଅବସ୍ଥିତ ହୋଇ ତାହାଙ୍କ ଶକ୍ତିର ଉତ୍ତରୋତ୍ତର ବିକାଶ ହେବ ଏଥିରେ ସନ୍ଦେହ କି ?

ଶ୍ରୀ ରାଧାନାଥ ରାୟ, କଟକ

(ସମ୍ବଲପୁର ହିତୈଷିଣୀ, ୫-୩, ୨୧.୬.୧୮୯୩)

**(୧୨) ରାଜନାରାୟଣ ଦାସଙ୍କ 'ବନ୍ୟ-ପୁଷ୍ପାଞ୍ଜଳି– ଦ୍ୱିତୀୟଭାଗ' (୧୮୯୪)ର ସଂକ୍ଷିପ୍ତ ସମାଲୋଚନା –**

ଏ ପୁସ୍ତିକା ମୁଁ ଆଦ୍ୟୋପାନ୍ତ ବିଶେଷ ମନୋଯୋଗ ସହିତ ପାଠକରିଅଛି। ରାଜନାରାୟଣବାବୁଙ୍କ ସହିତ ମୁଁ ପ୍ରାୟ ଆକୈଶୋର ଘନିଷ୍ଠରୂପେ ପରିଚିତ। ଅବସ୍ଥାର ବିଶେଷ ବୈଷମ୍ୟ ଥିଲେ ସୁଦ୍ଧା ତାହାଙ୍କର ନିର୍ଜ୍ଜନପ୍ରିୟତା, ଚିନ୍ତାଶୀଳତା ଏବଂ ସାହିତ୍ୟାନୁରାଗ ମୋତେ ସ୍ୱଭାବତଃ ତାହାଙ୍କର ସହବାସାନୁରାଗୀ କରାଇଥିଲା। ସେହି ସଦ୍‌ଗୁଣ ପ୍ରସୂନାବଳୀର ସୁଫଳ ସମ୍ପ୍ରତି ଦେଖି ମୁଁ ଯତ୍ପରୋନାସ୍ତି ପ୍ରୀତ ହେଲି।

ବନ୍ୟପୁଷ୍ପାଞ୍ଜଳିର ୧ମ ଓ ୨ୟ ଖଣ୍ଡର ଅନେକ ପୃଷ୍ଠାରୁ ଦର୍ଶନଶକ୍ତି, ଚିନ୍ତାଶୀଳତା ଏବଂ ଭାବୁକତାର ପରିଚୟ ମିଳୁଅଛି। ଏହି ଦୁଇ ପୁସ୍ତିକାର ଅଧିକାଂଶ ସ୍ଥଳେ ଯେଉଁ ସୂକ୍ଷ୍ମ ଅଥଚ ଉଚ୍ଚ ଶ୍ରେଣୀର କବିତା ନିହିତ ଅଛି, ତାହା ସାଧାରଣ ସାହିତ୍ୟାନୁରାଗୀଙ୍କର ଅନୁଭବର ଅତୀତ ବିଷୟ ଅଟେ। ପ୍ରାଚୀନ ଏବଂ ନବ୍ୟ, ସ୍ୱଦେଶୀୟ ଏବଂ ବିଦେଶୀୟ ନାନାବିଧ ସାହିତ୍ୟର ଅନୁଶୀଳନ ଦ୍ୱାରା ଯେମାନଙ୍କର ରୁଚି ସମ୍ୟକ ମାର୍ଜ୍ଜିତ ହୋଇନାହିଁ, ଏବଂ ଅଳଙ୍କାର ବିଶେଷତଃ ଶବ୍ଦାଳଙ୍କାର ଯେମାନଙ୍କ ମତରେ କବିତାର ପ୍ରଧାନ ଉପାଦାନ, ସେମାନେ ଏଥିରେ କବିତା ଥିବାର ଆଦୌ ଉପଲବ୍ଧି କରିପାରିବେ କି ନାହିଁ ସନ୍ଦେହ। ପଦ୍ମ କିମ୍ବା ଗୋଲାପପରି ଏ କବିତାରେ ସୌରଭ ସହିତ ଉଜ୍ଜ୍ୱଳ ରୂପ ନାହିଁ। ସୋମପୁଷ୍ପର ଲେଶମାତ୍ର ରୂପାଡ଼ମ୍ବର ନାହିଁ, ମାତ୍ର ତାହାର ଅପ୍ରଗଲ୍‌ଭା ସୌରଭରୁ ଯେଉଁ ଅନିର୍ବ୍ବଚନୀୟ ମାଧୁରୀ ଅନୁଭୂତ ହୁଏ ଏ କବିତାରେ ସେହିପରି ମାଧୁରୀ ଅଛି। ଉତ୍କଳର ବର୍ତ୍ତମାନ ସାଧାରଣ ସାହିତ୍ୟଜ୍ଞାନର ମାନଦଣ୍ଡ ପ୍ରତି ଦୃଷ୍ଟିପାତ କଲେ ଏ ଶ୍ରେଣୀର କବିତା ଯେ ସମୁଚିତ ଆଦର ପ୍ରାପ୍ତ ହେବ ଏହା କଦାଚ ସମ୍ଭବପର ନୁହେଁ। ମାତ୍ର ପ୍ରକୃତ କବି କୌଣସି ଦେଶ କିମ୍ବା କୌଣସି କାଳରେ ତାହାଙ୍କର ସମସାମୟିକ ରୁଚି ପ୍ରତି ଆସ୍ଥା ନରଖି ନିଜ ପ୍ରବୃତ୍ତିର ପରାମର୍ଶ ଘେନି କାର୍ଯ୍ୟ କରନ୍ତି। ରାଜନାରାୟଣବାବୁ ଅବିକଳ ସେହି ପ୍ରଣାଳୀର ଅନୁସରଣ କରିଅଛନ୍ତି।

୨ୟ ଖଣ୍ଡ ବନ୍ୟପୁଷ୍ପାଞ୍ଜଳିରେ ଶକ୍ତି, ରାଜଲକ୍ଷ୍ମୀ, ଗୃହଲକ୍ଷ୍ମୀ ଏବଂ ମହାଲକ୍ଷ୍ମୀ ଏହି ଚାରୋଟି ପ୍ରବନ୍ଧ ଅପେକ୍ଷାକୃତ ଅଧିକତର ମନୋହର ହୋଇଅଛି। ଲକ୍ଷ୍ମୀଙ୍କର ଭିନ୍ନ ଭିନ୍ନ ରୂପରେ ତାହାଙ୍କର ଭିନ୍ନ ଭିନ୍ନ ସ୍ତୋତ୍ର ବିଶେଷ ସୂକ୍ଷ୍ମଦର୍ଶିତାର ପରିଚାୟକ।

ପୁସ୍ତିକାର ଭାଷା ସରଳ ଏବଂ ବିଶୁଦ୍ଧ ହୋଇଅଛି। ଦୁଃଖର କଥା ଏହି ଯେ, ବର୍ତ୍ତମାନ ଅଧିକାଂଶ ଓଡ଼ିଆ ଲେଖକଙ୍କର ଭାଷାର ବିଶୁଦ୍ଧତା ପ୍ରତି ଆଦୌ ଦୃଷ୍ଟି ନ ଥାଏ। ଅଧିକାଂଶ ସମୟରେ ବଙ୍ଗୀୟ ପୁସ୍ତକ ଓ ସମ୍ବାଦପତ୍ରାଦି ପଠନାଭ୍ୟାସ ହେତୁରୁ

ଏମାନେ ଉଭୟ ଭାଷାର ପ୍ରଭେଦ ଆଦୌ ବାରି-ପାରନ୍ତିନାହିଁ। ପୂର୍ବେ ଏ ଦୋଷ କେବଳ ବାଲେଶ୍ୱର ଓଡ଼ିଆ ପ୍ରତି ଆବଦ୍ଧ ଥିଲା, ବର୍ତ୍ତମାନ ପ୍ରାୟ ସମଗ୍ର ଉତ୍କଳବ୍ୟାପୀ ହୋଇଅଛି। ରାଜନାରାୟଣବାବୁ ବାଲେଶ୍ୱରବାସୀ ହେଲେହେଁ ତାହାଙ୍କର ଓଡ଼ିଆ ଯେମନ୍ତ ବିଶୁଦ୍ଧ ଏବଂ ମାର୍ଜ୍ଜିତ, ଆଦର୍ଶ ଓଡ଼ିଆର କେନ୍ଦ୍ରସ୍ଥଳୀ ଖୋର୍ଦ୍ଧାରେ ସୁଦ୍ଧା ଏପରି ଭାଷା ପ୍ରାୟଶଃ ସୁଲଭ ନୁହେଁ।

ଯତିବିଭାଗ ଏବଂ ମିତ୍ରାକ୍ଷର କବିତାର ଅତି ସାମାନ୍ୟ ଅଙ୍ଗ, ସନ୍ଦେହ ନାହିଁ। ମାତ୍ର ସାମାନ୍ୟ ବୋଲି ସେଥିପ୍ରତି ଉଦାସୀନ ହେବାର ଉଚିତ ନୁହେଁ। ରାଜନାରାୟଣବାବୁଙ୍କ ପଦ୍ୟରେ ଏ ଶ୍ରେଣୀର ତ୍ରୁଟୀ ପ୍ରାୟ ଦେଖାଯାଏ ନାହିଁ। ତାହାଙ୍କର ଶ୍ରବଣେନ୍ଦ୍ରିୟ ନିଃସର୍ଗତଃ ସୂକ୍ଷ୍ମଥିବାର ପ୍ରତୀୟମାନ ହୁଏ।

କଟକ ଶ୍ରୀ ରାଧାନାଥ ରାୟ
୨।୭।୧୮୯୪

(ସମ୍ବଲପୁର ହିତୈଷିଣୀ, ୬-୬, ୧୧।୭।୧୮୯୪)

## (୧୩) ଦାମୋଦର ମିଶ୍ରଙ୍କ 'ମାତା' (୧୮୯୫) ସମ୍ବନ୍ଧରେ ମନ୍ତବ୍ୟ –

ମାତାର ପାଣ୍ଡୁଲେଖ୍ୟ ଆଦ୍ୟୋପାନ୍ତ ମନୋଯୋଗ ସହିତ ମୁଁ ପଢ଼ିଅଛି। ଈଶ୍ୱର-କୃପାରୁ ଆପଣଙ୍କର ପ୍ରତ୍ୟେକ ରଚନାରେ ଅଳ୍ପାଧିକ ସୌନ୍ଦର୍ଯ୍ୟ ଅଛି, ମାତ୍ର 'ମାତା' ଯୋଗଜନ୍ମା ରଚନା ମଧ୍ୟରେ ସ୍ଥାନ ପାଇବାର ଯୋଗ୍ୟ।

ଆପଣ ଜାଣିଥିବେ ମୁଁ 'ମାତା'ର ଉତ୍କର୍ଷ ସମ୍ବନ୍ଧେ ଅତ୍ୟୁକ୍ତି କରୁନାହିଁ। ଏଠାରେ ମୁଁ ଅନେକଙ୍କ ନିକଟରେ ମାତାର ସୁଖ୍ୟାତି କରିଅଛି। 'ମାତା' କାବ୍ୟରେ ପଦ୍ମ, କୁମୁଦ, ସୁଧାକର, ପ୍ରଣୟୀର ଉଲ୍ଲାସ କିମ୍ବା ବିରହୀର ହାହାକାର ନାହିଁ ସତ୍ୟ, ପ୍ରକୃତିର ସୁନ୍ଦର ଚିତ୍ର ଯଥାଯଥ ଚିତ୍ରିତ ହୋଇଅଛି। ମୁଁ ନିଜେ ତାହା ଲେଖିଥିଲେ ଆପଣାକୁ ଭାଗ୍ୟବାନ ମଣିଥାନ୍ତି।...

ଆଦିରସ ନଥାଇ ସୁଦ୍ଧା 'ମାତା'ର ରଚନା କେଡ଼େ ମଧୁର ହୋଇଅଛି! ଆଦିରସରେ ଲେଖକମାନଙ୍କର ଅଧିକ ପ୍ରୟାସୀ ହେବାର ଉଚିତ ନୁହେଁ। ଆଦିରସରେ, ବିଶେଷତଃ ସ୍ଥୂଳ ଆଦିରସରେ, ଭଞ୍ଜଙ୍କୁ କେହି ଅତିକ୍ରମ କରିପାରିବେନାହିଁ।

ବାଗ୍‌ଦେବୀ ବାସ୍ତବିକ ଆପଣଙ୍କ ପ୍ରତି ପ୍ରସନ୍ନା। ଆପଣ ଯେଉଁ ପ୍ରଶସ୍ତ ମାର୍ଗ ଧରିଅଛନ୍ତି କେବଳ ଅତି ବିସ୍ତୃତ ବର୍ଣ୍ଣନ ଦୋଷ ପରିହାର କରିପାରିଲେ ଉତ୍କଳର କବିମାନଙ୍କ ମଧ୍ୟରେ ଅଗ୍ରଣୀ ହୋଇ-ପାରିବେ।

୮।୯।୧୮୯୪ ଶ୍ରୀ ରାଧାନାଥ ରାୟ
କଟକ

## (୧୪) ନୀଳମଣି ବିଦ୍ୟାରତ୍ନଙ୍କ 'ତମାଖୁର ଅପକାରିତା' (୧୮୯୫)ର ସଂକ୍ଷିପ୍ତ ସମାଲୋଚନା –

ଏହି ପୁସ୍ତକ ମୁଁ ଆଦ୍ୟୋପାନ୍ତ ପାଠକରି ପ୍ରୀତ ହୋଇଅଛି। ନୀଳମଣିବାବୁ ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠ ଲେଖକ। ଏ ପୁସ୍ତକ ତାହାଙ୍କର ପ୍ରତିଷ୍ଠାର ଅନୁପଯୁକ୍ତ ହୋଇନାହିଁ। ପୁସ୍ତକର ଭାଷା ବିଷୟର ଉପଯୁକ୍ତ ହୋଇଅଛି ଏବଂ ତାହାର ପ୍ରତ୍ୟେକ ପୃଷ୍ଠା ଗ୍ରନ୍ଥକାରଙ୍କର ଅନୁସନ୍ଧିତ୍ସା ଏବଂ ଗବେଷଣାର ପରିଚୟ ଦେଉଅଛି। ସର୍ବସାଧାରଣରେ ଏ ଶ୍ରେଣୀର ପୁସ୍ତକର ବହୁଳ ପ୍ରଚାର ସର୍ବଥା ବାଞ୍ଛନୀୟ।

ପୁସ୍ତକର ଉତ୍ସର୍ଗପତ୍ରରେ ମଧ୍ୟ ଗ୍ରନ୍ଥକାର ସମୀଚୀନତାର ପରିଚୟ ଦେଇଅଛନ୍ତି। ପୁସ୍ତକ ଓଡ଼ିଶ୍ୟାର ପ୍ରଥିତନାମା ଜମିଦାର ରାୟ ବାହାଦୁର ଶ୍ରୀଯୁକ୍ତ ଗୋବିନ୍ଦବଲ୍ଲଭ ରାୟ ମହାଶୟଙ୍କ ଗୌରବାନ୍ୱିତ ନାମରେ ଉତ୍ସୃଷ୍ଟ ହୋଇଅଛି, ଏବଂ ଗ୍ରନ୍ଥକାର ମହୋଦୟ "ପ୍ରିୟ ମପ୍ୟଶିଥ୍ୟା" ଭାଷା ପ୍ରୟୋଗରେ ଏବଂ ଉପଦେଶଗର୍ଭକ ପ୍ରଶଂସାବାଦରେ କିପରି ସିଦ୍ଧହସ୍ତ ତାହାଙ୍କର ଉତ୍ସର୍ଗପତ୍ର ସେଥିର ପରିଚାୟକ ଅଟେ।

ଶ୍ରୀ ରାଧାନାଥ ରାୟ

(ସମ୍ବଲପୁର ହିତୈଷିଣୀ, ୬-୩୯, ୨୭।୨।୧୮୯୫)

## (୧୫) ଚିନ୍ତାମଣି ମହାନ୍ତିଙ୍କ 'ମୋହିନୀ' (୧୮୯୬) କାବ୍ୟ ସମ୍ବନ୍ଧରେ ମନ୍ତବ୍ୟ –

ଶ୍ରୀଯୁକ୍ତ ବାବୁ ଚିନ୍ତାମଣି ମହାନ୍ତିଙ୍କ ମୋହିନୀ, ଶତଦଳ ପ୍ରଭୃତି ରଚନା ପାଠକରି ମୁଁ ବାସ୍ତବ ପ୍ରୀତି ଲାଭ କରିଅଛି। ଉତ୍କଳସାହିତ୍ୟରେ ଏହାଙ୍କର ଯେପରି ବ୍ୟୁତ୍ପତ୍ତିର ପରିଚୟ ପାଇଲି, ତାହା ଅସାଧାରଣ କହିଲେ ଅତ୍ୟୁକ୍ତି ହେବନାହିଁ। ସମଗ୍ର ବାଲେଶ୍ୱର ଜିଲ୍ଲାରେ ଚିନ୍ତାମଣିବାବୁଙ୍କ ପରି ସାହିତ୍ୟିକ ୫-୭ ଜଣ ମିଳିବେ କି ନାହିଁ ସନ୍ଦେହ। ଜଣେ ଛାତ୍ର ବୃତ୍ତି ପରୀକ୍ଷୋତ୍ତୀର୍ଣ୍ଣ ବ୍ୟକ୍ତି ପକ୍ଷରେ ଏହା ସାମାନ୍ୟ ଗୌରବାବହ ନୁହେଁ।

ଚିନ୍ତାମଣିବାବୁଙ୍କ ରଚନା ସମ୍ପୂର୍ଣ୍ଣ ଆଶାପ୍ରଦ। ନିସର୍ଗଦତ୍ତ ଶକ୍ତିର ସୁବ୍ୟବହାର କଲେ ଏ ମହାଶୟ ଯଥାସମୟରେ ଉତ୍କଳରେ କବିକୀର୍ତ୍ତି ସ୍ଥାପନ କରିବାକୁ ସକ୍ଷମ ହେବେ।

କଟକ ଶ୍ରୀ ରାଧାନାଥ ରାୟ
୧୭।୮।୧୮୯୫

(୧୬) ମଧୁସୂଦନ ରାଓଙ୍କ 'ସଙ୍ଗୀତମାଳା' (୧୮୯୬) ସମ୍ପର୍କରେ ମତ –

ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓଙ୍କ ପ୍ରଣୀତ 'ସଙ୍ଗୀତମାଳା' ତାଙ୍କର ଉତ୍କଳବ୍ୟାପିନୀ ପ୍ରତିଷ୍ଠାର ସମ୍ପୂର୍ଣ୍ଣ ଉପଯୁକ୍ତ ହୋଇଅଛି। ଏହା ଏପରି କୌଶଳରେ ରଚିତ ହୋଇଅଛି ଯେ ଧର୍ମ୍ମ ଏବଂ ସମ୍ପ୍ରଦାୟ ନିର୍ବିଶେଷରେ ଭକ୍ତମାନଙ୍କ ପକ୍ଷରେ ଉପାଦେୟ ହେବ। ସାହିତ୍ୟିକ ଉତ୍କର୍ଷ ଲେଖକଙ୍କର ଅଭିପ୍ରାୟ ନ ଥିଲେହେଁ ଭାବୋଲ୍ଲାସର ଅପରିହାର୍ଯ୍ୟ ଅନୁଚର ସ୍ୱରୂପ ତାହା ସ୍ୱତଃ ଉପଗତ ହୋଇ 'ସଙ୍ଗୀତମାଳା'କୁ ସାହିତ୍ୟ ରସିକମାନଙ୍କ ପକ୍ଷରେ ମଧ ଉପାଦେୟ କରିଅଛି। ଓଡ଼ିଆ ଭାଷାରେ ଭକ୍ତିରସପ୍ରଧାନ ଏଭଳି ସଙ୍ଗୀତ ଅତି ବିରଳ। .

(ସମ୍ବଲପୁର ହିତୈଷିଣୀ, ୭-୫୧,
୨୭।୪।୧୮୯୬)

(୧୭) ବିଶ୍ୱନାଥ କରଙ୍କ 'ବିବିଧ ପ୍ରବନ୍ଧ' (୧୮୯୬)ର ସଂକ୍ଷିପ୍ତ ସମାଲୋଚନା –

ଓଡ଼ିଶ୍ୟାର ଲବ୍ଧପ୍ରତିଷ୍ଠ ଲେଖକ ଶ୍ରୀଯୁକ୍ତ ବାବୁ ବିଶ୍ୱନାଥ କରଙ୍କର ପ୍ରଣୀତ 'ବିବିଧ ପ୍ରବନ୍ଧ'କୁ ଆଦ୍ୟୋପାନ୍ତ ପାଠକରି ମୁଁ ଅତ୍ୟନ୍ତ ପ୍ରୀତ ହୋଇଅଛି। ଓଡ଼ିଶ୍ୟାରେ ବର୍ତ୍ତମାନ ବିଦ୍ୟାଳୟ ପାଠ୍ୟଗ୍ରନ୍ଥର ଅଭାବ ଏକପ୍ରକାର ପୂରଣ ହୋଇଅଛି। ପଦ୍ୟପୁସ୍ତକ, ନାଟକ, ଉପନ୍ୟାସାଦି ବଙ୍ଗଦେଶ ତୁଳନାରେ ଯତ୍‌ସାମାନ୍ୟ ହେଲେହେଁ, ଓଡ଼ିଶ୍ୟାର ଆୟତନ ଏବଂ ବର୍ତ୍ତମାନ ଶିକ୍ଷୋନ୍ନତି ଦୃଷ୍ଟିରେ ପ୍ରଚୁର ବୋଲାଯାଇପାରେ। କିନ୍ତୁ ସାଧାରଣର ସୁପାଠ୍ୟ ଗଦ୍ୟପୁସ୍ତକ ପ୍ରାୟ ନାହିଁ କହିଲେ ଚଳେ। ବିଶ୍ୱନାଥବାବୁ ଏହି ପଥର ପ୍ରଥମ ପଥିକ ହୋଇ ସାଧାରଣର ଧନ୍ୟବାଦାର୍ହ ହୋଇଅଛନ୍ତି। 'ବିବିଧ ପ୍ରବନ୍ଧ'ରେ ସୁଚିନ୍ତା ଓ ସୁଭାବୋଦ୍ଦୀପକ ଅନେକ ଗୁଡ଼ିଏ ପ୍ରବନ୍ଧ ଅଛି। ଏ ଶ୍ରେଣୀର ପୁସ୍ତକ ପାଠଦ୍ୱାରା ଉତ୍କଳୀୟ ପାଠକମାନଙ୍କର ଦୃଷ୍ଟି ପ୍ରସାରିତ, ରୁଚି ସଂସ୍କୃତ ଏବଂ ନୀତି ଉନ୍ନତ ହେବାର ସମ୍ପୂର୍ଣ୍ଣ ସମ୍ଭାବନା।

(ସମ୍ବଲପୁର ହିତୈଷିଣୀ, ୮-୩୩,
୧୩।୧।୧୮୯୭)

(୧୮) ଖଲ୍ଲିକୋଟର ରାଣୀ କନକମଞ୍ଜରୀ ଦେବୀଙ୍କ 'ବାଳିକାପାଠ, ପ୍ରଥମଖଣ୍ଡ' (୧୮୯୭) ଉପରେ ଅଭିମତର ଅଂଶବିଶେଷ –

ବୈଷୟିକ ଏବଂ ନୈତିକ ଶିକ୍ଷାର ଏପରି ସୁନ୍ଦର ସମବାୟ ଅନ୍ୟ କୌଣସି ବାଳିକାପାଠ ଗ୍ରନ୍ଥରେ ସୁଲଭ ନୁହେଁ। ନୀତିଗର୍ଭ, ପୌରାଣିକ ଏବଂ ଐତିହାସିକ ଆଖ୍ୟାୟିକାର ସନ୍ନିବେଶ ହେତୁରୁ ଗ୍ରନ୍ଥଖଣ୍ଡିକ ଯେପରି ଉପଦେଶପ୍ରଦ, ସେହିପରି କୌତୁକାବହ ହୋଇଅଛି। ...ଏ ପୁସ୍ତକର ବହୁଳ ପ୍ରଚାରଦ୍ୱାରା ଓଡ଼ିଶ୍ୟାରେ ସ୍ତ୍ରୀଶିକ୍ଷାର ସମ୍ୟକ ଶ୍ରେୟ ଲାଭର ସମ୍ଭାବନା। ଉତ୍କଳୀୟ ବାଳିକାମାନଙ୍କୁ ସୁଗୃହିଣୀ ଏବଂ ସୁମାତା କରାଇବାର ପୁସ୍ତକର ଉଦ୍ଦେଶ୍ୟ ଅଟେ ଏବଂ ପୁସ୍ତକର ବିଷୟ ଏବଂ ଭାଷା ସେହି ଉଦ୍ଦେଶ୍ୟର ପୁଣି ଦେଶ, କାଳ, ପାତ୍ରର ସମ୍ପୂର୍ଣ୍ଣ ଉପଯୋଗୀ ହୋଇଅଛି।

(୧୯) ବରପାଳିର ଲକ୍ଷ୍ମଣ ମିଶ୍ରଙ୍କ 'ସାହିତ୍ୟ ସୁନ୍ଦରୀ' (୧୮୯୭) ସଂପର୍କରେ ଅଭିମତ –

ଆପଣଙ୍କ ପ୍ରେରିତ 'ସାହିତ୍ୟସୁନ୍ଦରୀ' ପାଠକରି ଅତ୍ୟନ୍ତ ପ୍ରୀତ ହେଲି। ଏହି କବିତାଟି ଆପଣଙ୍କର ସୂକ୍ଷ୍ମଦର୍ଶିତା ଏବଂ ଦେଶହିତୈଷିତାର ସମ୍ୟକ୍ ପରିଜ୍ଞାପକ ଅଟେ। ଉତ୍କଳର ସାହିତ୍ୟ ଦରିଦ୍ରତା ଏବଂ ଉତ୍କଳବାସିଙ୍କର ଅଳୀକ ଅଭିମାନ ଏବଂ ଔଦାସୀନ୍ୟ ଦେଖି ଆପଣଙ୍କ ହୃଦୟରେ କିପରି ନିର୍ବେଦ ଜାତହୋଇଅଛି ଏହି କବିତାରୁ ତାହାର ସ୍ପଷ୍ଟ ପରିଚୟ ମିଳୁଅଛି।...

କବିତାରେ ପାଣ୍ଡିତ୍ୟ ଯଥେଷ୍ଟ ପରିମାଣରେ ପ୍ରଦର୍ଶିତ ହେଉଅଛି। କେବଳ ମିତ୍ରାକ୍ଷର ଏବଂ ଯତି ସମ୍ବନ୍ଧରେ ମୋହୋର ଯାହା ବକ୍ତବ୍ୟ ଅଛି ତାହା ନିମ୍ନରେ ସ୍ଥଳରେ ପ୍ରକଟିତ ହେଲା।...

**(୨୦) ଅକବିର କବିତା : 'ସାହିତ୍ୟସୁନ୍ଦରୀ' ସଂପର୍କରେ ଦେଇଥିବା ମତବ୍ୟ ନେଇ ସ୍ପଷ୍ଟୀକରଣ (ନୀଳମଣି ବିଦ୍ୟାରତ୍ନଙ୍କୁ) –**

କବିତା ଲେଖିବା ଦୂରେ ଥାଉ, କବିତା ବୁଝନ୍ତି କେତେଜଣ ? କେବଳ ଉଚ୍ଚଶିକ୍ଷାରେ କବିତା ବୁଝିବାର କ୍ଷମତା ଜନ୍ମେନାହିଁ, ଏଥିପାଇଁ ସଂସ୍କୃତ ଆଲଙ୍କାରିକମାନେ କହିଅଛନ୍ତି ଯେ କବିତା ଲେଖିବା ନିମନ୍ତେ ଯେମନ୍ତ ପ୍ରତିଭା ଆବଶ୍ୟକ, କବିତା ବୁଝିବା ନିମନ୍ତେ ସେହିପରି ହୃଦୟ ଆବଶ୍ୟକ। ଅକବିର କବିତା ଲେଖିବା ଓ ଅଭାବୁକର କବିତା ବୁଝିବା ଉଭୟ ସମାନ। ସ୍ୱର୍ଗୀୟ ମାଇକେଲ ମଧୁସୂଦନ ଦତ୍ତ ଅକବିର କବିତା ସାଧନ ସମ୍ବନ୍ଧରେ ଲେଖିଅଛନ୍ତି –

"କାମାର୍ତ୍ତ ଦାନବ ଯଦି ଅପ୍ସରାରେ ସାଧେ
ଘୃଣାୟ ଘୋରାୟେ ମୁଖ ହାତ ଦେଏ କାନେ
କିନ୍ତୁ ଦେବପୁତ୍ର ଯଦି ପ୍ରେମିତୋରେଁ ବାଧେଁ
ମନ ତାର ପ୍ରେମସୁଧା ହରଷେ ସେ ଦାନେ।"

ପ୍ରଥମୋକ୍ତ ପଦଦ୍ୱୟ ଅକବି ଓ ଅଭାବୁକ ଉଭୟ ପ୍ରତି ସମାନ ପ୍ରଯୋଜ୍ୟ। କବିତା, ଅନୁରାଗିଣୀ ନାୟିକାପରି ଭାବୁକକୁ ସର୍ବାଙ୍ଗର ସୌନ୍ଦର୍ଯ୍ୟ ଦେଖାଇବାକୁ ସଙ୍କୁଚିତ ହୁଏନାହିଁ, ମାତ୍ର ଅଭାବୁକର ସାଧନା ଶୁଣି ସେ ଘୃଣାରେ ଆତ୍ମଗୋପନ କରିବାକୁ ସଚେଷ୍ଟ ହୁଏ।

କେହି କେହି କବିତାଲେଖି ସେଥି ସମ୍ବନ୍ଧରେ ଅନ୍ୟର ଆନ୍ତରିକ ମତ ଜିଜ୍ଞାସୁ ହୁଅନ୍ତି। ଏମାନଙ୍କ ଅଭିଧାନରେ ଆନ୍ତରିକ ମତର ଅର୍ଥ ପ୍ରଶଂସା। ଏ ଶ୍ରେଣୀର ଲୋକଙ୍କୁ କେବଳ ଅଶାନ୍ତି ପରିହାର ସକାଶେ ଶିଷ୍ଟାଚାର ସ୍ୱରୂପ ଦୁଇଚାରିଶବ୍ଦ କହିବାକୁ ହୁଏ। କିନ୍ତୁ ସୁଲେଖକମାନଙ୍କର କବିତା ସମ୍ବନ୍ଧରେ ଆନ୍ତରିକ ମତ ବ୍ୟକ୍ତ କରିବାକୁ ଲେଶମାତ୍ର ସଙ୍କୋଚ ଜାତ ହୁଏ ନାହିଁ।

ପ୍ରକୃତ କବି ପ୍ରଶଂସା ଖୋଜି ବୁଲେ ନାହିଁ, ବରଂ ପ୍ରଶଂସା କବି ପଛେ ପଛେ ଗୋଡ଼ାଇଯାଏ। ପ୍ରଶଂସାକୁ ଗୋଡ଼ାଇଥିବାର ଦେଖି ଈର୍ଷ୍ୟା ନିନ୍ଦା ସଖୀକୁ ସଙ୍ଗେ ନେଇ ପ୍ରଶଂସା ପଛେ ପଛେ ଅତି ବ୍ୟଗ୍ରଭାବରେ ଦଉଡ଼େ। କବି ଈର୍ଷ୍ୟାର ବିଭୀଷିକାକୁ ଗ୍ରାହ୍ୟକରେନାହିଁ, କାରଣ ସେ ତାହାର ନିକର ବଳ ଉତ୍ତମରୂପେ ଜାଣେ।

(ସମ୍ବଲପୁର ହିତୈଷିଣୀ, ୯-୧୧, ୧୧.୮.୧୮୯୭)

**(୨୧) ରତ୍ନାକର ଶର୍ମାଙ୍କ 'ଅଜବିଳାପ' (୧୯୦୧) ସମ୍ପର୍କରେ ମନ୍ତବ୍ୟ –**

ଶ୍ରୀଯୁକ୍ତ ବାବୁ ରତ୍ନାକର ଶର୍ମାଙ୍କ ଅନୂଦିତ 'ଅଜବିଳାପ' ମୁଁ ଆଦ୍ୟୋପାନ୍ତ ପାଠକରି ପ୍ରୀତ ହୋଇଅଛି। ଅନୁବାଦ ଆଶାନୁରୂପ ଲଳିତ ଓ ପ୍ରାଞ୍ଜଳ ହୋଇଅଛି। ରତ୍ନାକର ବାବୁ ସୁଲେଖକ ବୋଲି ଉତ୍କଳୀୟ ସାହିତ୍ୟ-ସଂସାରରେ ପରିଚିତ। 'ଅଜବିଳାପ' ତାହାଙ୍କ ପ୍ରତିଷ୍ଠାର ଅନୁପଯୁକ୍ତ ହୋଇନାହିଁ।

କଟକ ଶ୍ରୀ ରାଧାନାଥ ରାୟ
୩୧।୧୨।୧୯୦୦

**(୨୨) ନଗେନ୍ଦ୍ରବାଳା ସରସ୍ୱତୀଙ୍କ 'ନାରୀଧର୍ମ' (୧୯୦୦) ସଂପର୍କରେ ମତବ୍ୟ –**

ନାରୀଧର୍ମ ବଙ୍ଗଭାଷାରେ ଗୋଟିଏ ବହୁମୂଲ୍ୟ ସଂପତ୍ତି। ନୈତିକ ଏବଂ ବୈଷୟିକ ଉପଦେଶରେ ପୁସ୍ତକ ଖଣ୍ଡିକ ଆପାଦମସ୍ତକ ପରିପୂର୍ଣ୍ଣ। ଫଳତଃ ସୁଶିକ୍ଷିତା ଏବଂ ପ୍ରତିଭାନ୍ୱିତା ଆର୍ଯ୍ୟମହିଳାର ଲେଖନୀରୁ ଯେଉଁକି ପୁସ୍ତକ ଆଶାକରାଯାଇପାରେ, ନାରୀଧର୍ମ ଅବିକଳ ତାହାହିଁ ହୋଇଅଛି। ପ୍ରତ୍ୟେକ ହିନ୍ଦୁଗୃହରେ ନାରୀଧର୍ମ ପ୍ରଥମସ୍ଥାନ ପାଇବାର ଯୋଗ୍ୟ।

କଟକ ଶ୍ରୀ ରାଧାନାଥ ରାୟ
୨୬।୩।୧୯୦୧

**(୨୩) ନନ୍ଦକିଶୋର ବଳଙ୍କ 'କୃଷ୍ଣକୁମାରୀ' (୧୯୦୧) ସମ୍ବନ୍ଧରେ ମନ୍ତବ୍ୟ –**

କୃଷ୍ଣକୁମାରୀର ପ୍ରତ୍ୟେକ ପୃଷ୍ଠା କବିତ୍ୱପୂର୍ଣ୍ଣ। 'ସୀତାବନବାସ'ରେ କବି ବିୟୋଗାନ୍ତ ବିଷୟରେ ଯେ ସିଦ୍ଧହସ୍ତତା ଦେଖାଇଅଛନ୍ତି, 'କୃଷ୍ଣକୁମାରୀ'ରେ ମଧ୍ୟ ସେଥିର ପରିଚୟ ଅସୁଲଭ ନୁହେଁ। କୃଷ୍ଣକୁମାରୀ ନନ୍ଦକିଶୋରଙ୍କର ପ୍ରତିଷ୍ଠାର ଅନୁପଯୁକ୍ତ ହୋଇନାହିଁ।

ଚୁଁଚୁଡ଼ା ଶ୍ରୀ ରାଧାନାଥ ରାୟ
୧୯।୩।୧୯୦୧

**(୨୪) ନନ୍ଦକିଶୋର ବଳଙ୍କ କାବ୍ୟକବିତା ସଂପର୍କରେ ମତାମତ। ନନ୍ଦକିଶୋରଙ୍କ 'ଚାରୁଚିତ୍ର' (୧୯୦୨) ଗ୍ରନ୍ଥର ବିଜ୍ଞାପନରେ ସ୍ଥାନିତ –**

'ପଲ୍ଲୀଚିତ୍ର' ବାସ୍ତବ ହୃଦୟଗ୍ରାହୀ, 'ନିର୍ଝରିଣୀ' ଆପାଦ ମସ୍ତକ ସୁକବିତାରେ ପୂର୍ଣ୍ଣ, 'ସୀତାବନବାସ' ଆପଣଙ୍କ କବିତା ରତ୍ନହାରର ନାୟକମଣି ପ୍ରାୟ ବୋଧହେଲା।... 'କୃଷ୍ଣକୁମାରୀ'ର ପ୍ରତ୍ୟେକ ପୃଷ୍ଠା କବିତ୍ୱପୂର୍ଣ୍ଣ।... ଏପରି ସ୍ୱଭାବୋକ୍ତିର ଓଡ଼ିଆ ଭାଷାରେ ପଟାନ୍ତର ନାହିଁ। ଓଡ଼ିଆ ଭାଷା ଆପଣଙ୍କ ଲେଖନୀଦ୍ୱାରା ବାସ୍ତବ ବିଭବଶାଳିନୀ ହୋଇଅଛି। ଆପଣ ଶୁଭକ୍ଷଣରେ ଲେଖନୀ ଧାରଣ କରିଥିଲେ।

**(୨୫) ନଗେନ୍ଦ୍ରବାଳା ସରସ୍ୱତୀଙ୍କ 'ବ୍ରଜଗାଥା' (୧୯୦୨)ର ଭୂମିକା –**

'ବ୍ରଜଗାଥା'ର ରଚୟିତ୍ରୀ ଶ୍ରୀମତୀ ନଗେନ୍ଦ୍ରବାଳା ସରସ୍ୱତୀ ବଙ୍ଗୀୟ ସାହିତ୍ୟ ସଂସାରରେ ସୁପରିଚିତ। ଏହାଙ୍କର ରସମୟୀ ଲେଖନୀନିଃସୃତ ମର୍ମଗାଥା, ପ୍ରେମଗାଥା ଏବଂ ଅମିୟଗାଥା ମାଧ୍ୟମରେ ଏହାଙ୍କ କବିପ୍ରତିଷ୍ଠା ସମଗ୍ର ବଙ୍ଗରେ ବ୍ୟାପ୍ତ ହୋଇଅଛି। ବଙ୍ଗର ଅନେକ ସୁପ୍ରସିଦ୍ଧ ସମ୍ବାଦପତ୍ର ଓ ସାମୟିକ ପତ୍ରିକା ତଥା ବଙ୍ଗୀୟ ସାହିତ୍ୟ ଜଗତରେ କୃତବିଦ୍ୟ ବ୍ୟକ୍ତିମାନେ ମୁକ୍ତ-କଣ୍ଠରେ ଏହି ପୁସ୍ତକଗୁଡ଼ିକର ସୁଖ୍ୟାତି ଘୋଷଣା ଓ ଲେଖିକାଙ୍କୁ ଆଗ୍ରହର ସହିତ ସାଧୁବାଦ ପ୍ରଦାନ କରିଛନ୍ତି। ଫଳତଃ ଯାହାଙ୍କର ସାମାନ୍ୟତମ ସହୃଦୟତା ଅଛି, ସେ ଯେ ଗାଥାତ୍ରୟର ରଚନାଗତ ସୁକୁମାର ସୌନ୍ଦର୍ଯ୍ୟରେ ମୁଗ୍ଧ ହେବେ, ଏହା କହିଲେ ଅତିଶୟୋକ୍ତି ଦୋଷରେ ଦୂଷିତ ହେବାକୁ ପଡ଼େନାହିଁ। ଗାଥା ତିନୋଟିର କବିତା ଭଳି ଅକ୍ଲିଷ୍ଟ ଅବ୍ୟାଜ ମନୋହର ସରଳ ତରଳ ରଚନା ଆଧୁନିକ ବଙ୍ଗ ସାହିତ୍ୟରେ ନିତାନ୍ତ ବିରଳ। ଏହାର ବିଶେଷତ୍ୱ ହେଲା, ଏଥିରେ ପରିଚ୍ଛେଦ ଓ ଅଳଂକରଣର କୌଣସି ଆଡ଼ମ୍ବର ନାହିଁ, ଅଥଚ ଏହାର ନୈସର୍ଗିକ ସୌନ୍ଦର୍ଯ୍ୟରେ ହୃଦୟ ଦ୍ରବୀଭୂତ ହୁଏ।

ମହାକବି ଭାରବୀଙ୍କର– "ନ ରମ୍ୟ ମାହାର୍ଯ୍ୟ ମପକ୍ଷତେ ଗୁଣମ୍" ଏହି ଚିର ପ୍ରସିଦ୍ଧ ଉକ୍ତି ନଗେନ୍ଦ୍ରବାଳାଙ୍କ କବିତାପ୍ରତି ସଂପୂର୍ଣ୍ଣ ପ୍ରଯୋଜ୍ୟ। ଏଥିରେ ସାମାନ୍ୟତମ କୃତ୍ରିମତା ନାହିଁ। କବିତା ହୃଦୟରୁ ନିଃସୃତ ହୋଇଛି, ତେଣୁ ସ୍ୱତଃ ଏହା ହୃଦୟରେ ପ୍ରବେଶ ଲାଭ କରେ। ଅଳ୍ପ ତଥା ଅତି ସହଜ କଥାରେ ରାଶି ରାଶି ଭାବ ସାଂଦ୍ରୀକୃତ ହୋଇ କବିତାଗୁଡ଼ିକ ପାଠକର କଳ୍ପନାକୁ ଯେଉଁଳି ଅନନ୍ତ-ଭାବ-ରାଜ୍ୟର ନିଭୃତତମ, ଅତର୍କିତ ଓ ଅନାବିଷ୍କୃତ ପ୍ରଦେଶକୁ ଘେନିଯାଏ, ଲୁପ୍ତଭାବଗୁଡ଼ିକୁ ପୁନରୁଦ୍ଧାର ଓ ସୁପ୍ତ ଭାବଗୁଡ଼ିକୁ ପୁନଃ ଜାଗ୍ରତ କରିଥାଏ। ଏହାର ଅପ୍ରଗଲ୍‌ଭ ମାଧୁରୀ କେବଳ ଅନୁଭବର ବିଷୟ, ଏହା ବିଶ୍ଳେଷଣକ୍ଷମ ନୁହେଁ।

ଏହା ପୂର୍ବରୁ ପ୍ରକାଶିତ ହୋଇଥିବା ଗାଥାତ୍ରୟର କବିତାଠାରୁ 'ବ୍ରଜଗାଥା'ର କବିତାବଳୀ ଭିନ୍ନ ଧର୍ମାକ୍ରାନ୍ତ। ରଚୟିତ୍ରୀ ତାଙ୍କର ସ୍ନେହମୟ ସ୍ୱାମୀଙ୍କର ସତ୍ ଦୃଷ୍ଟାନ୍ତରେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ବୈଷ୍ଣବଶାସ୍ତ୍ର ଓ ପ୍ରେମପ୍ରଧାନ ପ୍ରାଚୀନ ବୈଷ୍ଣବ କାବ୍ୟ ରୀତିରକମ ଅନୁଶୀଳନ କରିଥିଲେ ଓ ସେହି ଭାବରେ ଅନୁଭାବିତ ହୋଇ ନିଜର ଦୀକ୍ଷାଗୁରୁ ଶ୍ରୀମନ୍ ନିତ୍ୟସଖା ମୁଖୋପାଧ୍ୟାୟ ମହାଶୟଙ୍କର ଆଦେଶରେ ବୈଷ୍ଣବ କବିଗଣଙ୍କର ପଦାଙ୍କ ଅନୁସରଣ ପୂର୍ବକ ବ୍ରଜଗାଥା ରଚନା କରିଥିଲେ। କେବଳ ଭାବ ନୁହେଁ, ଭାଷାରେ ମଧ୍ୟ ବ୍ରଜଗାଥା ପ୍ରାଚୀନ କବିମାନଙ୍କର ପ୍ରଦର୍ଶିତ ପଥ ଅନୁସରଣ କରିଅଛି। ସୁମଧୁର ବ୍ରଜବୁଲି ଆୟତ୍ତ କରି ଏହାର ଯଥାଯଥ ପ୍ରୟୋଗ ଦ୍ୱାରା ରଚୟିତ୍ରୀ କାବ୍ୟର ମାଧୁରୀ କିଭଳି ପ୍ରସ୍ଫୁଟିତ କରିଛନ୍ତି, ସହୃଦୟ ପାଠକ ମାତ୍ରେ ଏହା ବୁଝିପାରିବେ।

ବ୍ରଜଗାଥା ଧର୍ମ ସମ୍ବନ୍ଧରେ ସାଂପ୍ରଦାୟିକ ହେଲେ ମଧ୍ୟ କାବ୍ୟଗୁଣରେ ପୂର୍ବୋକ୍ତ ତିନିଗାଥାଠାରୁ ହୀନକକ୍ଷ ନୁହେଁ। ନାୟକନାୟିକାଗଣଙ୍କର ଉକ୍ତି ପ୍ରତ୍ୟୁକ୍ତିର ଚାତୁରୀ, ସରସତା ଓ ନାଟକୀୟ ଛଟା ଏହାର ସୌନ୍ଦର୍ଯ୍ୟର ପ୍ରଧାନ ଉପାଦାନ। ଆଦିରସାତ୍ମକ ହୋଇ ମଧ୍ୟ ଏହି ନର୍ମୋକ୍ତିଗୁଡ଼ିକ ଏଭଳି ମର୍ଯ୍ୟାଦା-ସଂଯତ ହୋଇଛି ଯେ, ଏହା ମାର୍ଜିତ ନବ୍ୟ ରୁଚି ଦୃଷ୍ଟିରେ ମଧ୍ୟ କୌଣସି ଅଂଶରେ ଅନନୁମୋଦନାର୍ହ ମନେହୁଏନାହିଁ। ସାଂପ୍ରଦାୟିକ ଗ୍ରନ୍ଥ ହେଲେ ମଧ୍ୟ ବ୍ରଜଗାଥାର ସ୍ଥଳ ବିଶେଷରେ ସାର୍ବଭୌମିକ ଆଧ୍ୟାତ୍ମିକ ଭାବର ସୁନ୍ଦର ବିକାଶ ଦେଖାଯାଏ।

ଉଦାହରଣସ୍ୱରୂପ ନିମ୍ନରେ କେତେକ ପଂକ୍ତି ଉଦ୍ଧୃତ ହେଲା –

ବୃଥା କେନ କର ରୋଷ, ମୋର ତରି ବିନା ଆର
କଭୁ ନ ପାରିବେ ହତେ ଏ ଦୁରନ୍ତ ନଦୀ ପାର,

ଶୁନଲୋ ଶପଥ୍ ତୋର,
ପ୍ରତି ଘାଟେ ତରି ମୋର,
ଲକ୍ଷ ଲକ୍ଷ ଜନେ ନିତି କରିତେଛି ନଦୀ ପାର,
ମୋର ତରି ବିନା ସଖି, କାରୋ ଗତି ନାହିଁ ଆର,
'ତାଇ ବଲି ମିଛା କେନ ବାଡ଼ାଓ ବିବାଦ ଆର,
ବିଲମ୍ବେ କି ଫଲ, ଏସ କରେଦି ଯମୁନାପାର,
ତୋଦେର ଓ ରୂପରାଶି
ଆମାରେ ପରାୟେ ଫାଁସି,
ତୋଦେର ନାକରି ଯଦି ଆଜି ଏ ଯମୁନା ପାର,
ଆକୁଲେ ଆମାର ନାୟ କେ ତବେ ଚଢ଼ିବେ ଆର ?

ଉପଦେଶଗର୍ଭ ଏହିଭଳି ଉଦାହରଣ ବାକ୍ୟ ପ୍ରାୟ ପ୍ରତି ତରଙ୍ଗରେ ହିଁ ସୁଲଭ ଓ ତାହାଦ୍ୱାରା କାବ୍ୟର ଉତ୍କର୍ଷ ବହୁ ପରିମାଣରେ ବର୍ଦ୍ଧିତ ହୋଇଛି।

ଶ୍ରୀରାଧିକାର ନିର୍ମଳ ପ୍ରେମ ବ୍ରଜଗାଥାର ପ୍ରତିପାଦିତ ବିଷୟ। ଏହି ପ୍ରେମର ଚିତ୍ରାଙ୍କନରେ ଶ୍ରୀମତୀ ନଗେନ୍ଦ୍ରବାଳା ସରସ୍ୱତୀ ଯେରୂପ କୃତିତ୍ୱ ପ୍ରଦର୍ଶନ କରିଛନ୍ତି, ଆଧୁନିକ ବଙ୍ଗ ସାହିତ୍ୟରେ ତାହା ଅତୁଳନୀୟ ମନେହୁଏ। ତେଣୁ ନଗେନ୍ଦ୍ରବାଳାଙ୍କର ରାଧିକାକୁ ବୈଷ୍ଣବ କବି ଚୂଡ଼ାମଣି ଚଣ୍ଡୀଦାସଙ୍କର ରାଧିକାର ନବ୍ୟ ଓ ସମୟୋଚିତ ସଂସ୍କରଣ କୁହାଯାଇପାରେ।

ନଗେନ୍ଦ୍ରବାଳାଙ୍କର ଗୁଣଗ୍ରାହୀ ସହୃଦୟ ପିତା ଶ୍ରୀଯୁକ୍ତ ବାବୁ ନୃତ୍ୟଗୋପାଳ ସରକାର ମହାଶୟ କନ୍ୟାର ଏହି ସଦ୍‌ଗ୍ରନ୍ଥ ପ୍ରଣୟନରେ ଅତ୍ୟନ୍ତ ପ୍ରୀତ ହୋଇ ଆଗ୍ରହ ସହକାରେ ଏହା ଆଦ୍ୟୋପାନ୍ତ ପାଠ କରିଥିଲେ ଓ ଏହା ପ୍ରକାଶ କରିବାପାଇଁ ତାହାଙ୍କୁ ଯଥେଷ୍ଟ ଉତ୍ସାହ ଦେଇଥିଲେ। ବୈଷ୍ଣବ ସାହିତ୍ୟ ବିଶାରଦ ଓ ବଙ୍ଗୀୟ ସାହିତ୍ୟ ସେବକ ଦଳର ଅଗ୍ରଣୀ ଶ୍ରୀଯୁକ୍ତ ବାବୁ କ୍ଷୀରୋଦଚନ୍ଦ୍ର ରାୟ ଚୌଧୁରୀ ଏମ୍.ଏ. । ମହାଶୟ ମଧ ବ୍ରଜଗାଥା ଅଂଶତଃ ପାଠକରି ଅନୁକୂଳ ମତ ପ୍ରକାଶ କରିଥିଲେ।

ଧବଳେଶ୍ୱର କୁଟୀର — ଶ୍ରୀ ରାଧାନାଥ ରାୟ
ଆଠଗଡ଼ ରାଜ୍ୟ, କଟକ – ୯।୧୦।୧୯୦୨

## (୨୬) ବୀରବିକ୍ରମ ଦେବଙ୍କ 'ନାଟକ ରଚନା ପ୍ରଣାଳୀ' (୧୯୦୩) ସଂପର୍କରେ ମନ୍ତବ୍ୟ –

ପରମ ଶ୍ରଦ୍ଧାସ୍ପଦ ଖଡ଼ିଆଳ ଯୁବରାଜ ଶ୍ରୀଳ ଶ୍ରୀଯୁକ୍ତ ବୀରବିକ୍ରମ ଦେବଙ୍କ କର୍ତ୍ତୃକ ସଙ୍କଳିତ 'ନାଟକ ରଚନା ପ୍ରଣାଳୀ' ମୁଁ ଆଦ୍ୟୋପାନ୍ତ ପାଠକରି ପ୍ରୀତିଲାଭ କରିଅଛି। ଲେଖକ ମହାଶୟ ଭିନ୍ନ ଭିନ୍ନ ଭାଷାର ନାଟକାନୁଶୀଳନ, ନାଟକୀୟ ସମ୍ବନ୍ଧୀୟ ସାହିତ୍ୟ ଏବଂ ସଂସ୍କୃତ ଅଳଙ୍କାର ଶାସ୍ତ୍ରାଲୋଚନା ଏବଂ ନାନା ସ୍ଥାନରେ ନାଟକାଭିନୟ ସନ୍ଦର୍ଶନ ଦ୍ୱାରା ଯେଉଁ ଅଭିଜ୍ଞତା ଲାଭକରିଅଛନ୍ତି, ତତ୍‌ସମୁଦାୟ ସ୍ୱପ୍ରଣାଳୀକ୍ରମେ ଏଥିରେ ଲିପିବଦ୍ଧ କରିଅଛନ୍ତି। ଉତ୍କଳୀୟ ସାହିତ୍ୟ ସେବକମାନଙ୍କ ପକ୍ଷରେ ଏ ପୁସ୍ତକ ଶିକ୍ଷାପ୍ରଦ ହେବାର ସମ୍ପୂର୍ଣ୍ଣ ସମ୍ଭାବନା।

କଟକ — ଶ୍ରୀ ରାଧାନାଥ ରାୟ
୨।୧।୧୯୦୩

## (୨୭) ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦିତ 'ପ୍ରଜାବନ୍ଧୁ' ସଂପର୍କରେ ଅଭିମତ –

ଗଞ୍ଜାମ ଉପେନ୍ଦ୍ର ଏବଂ ବଳଭଦ୍ରଙ୍କର ପ୍ରସୂତି। ଏ ଦୃଷ୍ଟିରେ ଗଞ୍ଜାମ ଓଡ଼ିଶାର କେବଳ ଅଙ୍ଗ ନୁହେଁ, ଉତ୍ତମାଙ୍ଗ କହିଲେ ଅତ୍ୟୁକ୍ତି ହେବନାହିଁ। ଓଡ଼ିଶ୍ୟାର ଭାଗ୍ୟଦୋଷରୁ ସେହି ଗଞ୍ଜାମ ଓଡ଼ିଶ୍ୟାରୁ ଏକ ପ୍ରକାର ବିଚ୍ଛିନ୍ନ ହେବାରୁ ଓଡ଼ିଶ୍ୟା କେବଳ ବିକଳାଙ୍ଗ ନୁହେଁ, ମୃତବତ୍ ହୋଇ ରହିଥିଲା। ଦେହରୁ ଉତ୍ତମାଙ୍ଗ ବିଚ୍ଛିନ୍ନ ପ୍ରାୟ ହେଲେ ଉତ୍ତମାଙ୍ଗର ଯେ ଦଶା ହୁଏ ଗଞ୍ଜାମ ମଧ ତଦବସ୍ଥ ହୋଇଥିଲା। ଏହି ଦୁର୍ବିପାକର ମୂର୍ତ୍ତିମାନ ପ୍ରତିକାର ସ୍ୱରୂପ ପ୍ରଜାବନ୍ଧୁର ଆବିର୍ଭାବ ହୋଇଅଛି। ପ୍ରଜାବନ୍ଧୁ ପ୍ରତ୍ୟେକ ଗଞ୍ଜାମବାସୀ, ପ୍ରତ୍ୟେକ ଉତ୍କଳବାସୀର ଆଦରର ସାମଗ୍ରୀ।

(ପ୍ରଜାବନ୍ଧୁ, ୧୯୦୩) — ଶ୍ରୀ ରାଧାନାଥ ରାୟ

## (୨୮) 'ପ୍ରଜାବନ୍ଧୁ'ର ଶୀର୍ଷକ ପଦ୍ୟ –

"ହିତକଥା ଶୁଭବାର୍ତ୍ତା ସର୍ବ ସମାଚାର
କରିବ ଏ ପ୍ରଜାବନ୍ଧୁ ଉତ୍କଳେ ପ୍ରଚାର।
ନିୟତ କାମନାକରି ସ୍ୱଦେଶର ହିତ
ରଜାଙ୍କର ହେଉ ମନ୍ତ୍ରୀ ପ୍ରଜାଙ୍କର ମିତ।
ନ୍ୟାୟଦେବଙ୍କର କରି ନିତ୍ୟ ସେବକତା
କରୁ 'ପ୍ରଜାବନ୍ଧୁ' ନିଜ ନାମ ସାର୍ଥକତା।
ହେଉ ସ୍ୱଦେଶର ଏହା ନିତ୍ୟଶ୍ରଦ୍ଧାସ୍ଥଳ,
ଜଗଦୀଶ କରନ୍ତୁ ଏ କାମନା ସଫଳ।

**(୨୯) ଉଦୟନାଥ ମିଶ୍ରଙ୍କ 'ଜନନୀବିୟୋଗ' (୧୯୦୪) ସଂପର୍କରେ ମତ –**

ଶ୍ରୀଯୁକ୍ତ ବାବୁ ଉଦୟନାଥ ମିଶ୍ରଙ୍କର ଏହି ନବୋଦ୍ୟମ ସମ୍ପୂର୍ଣ୍ଣ ଆଶାପ୍ରଦ ଓ ତାହାଙ୍କର ମାତୃଭକ୍ତି ପ୍ରଶଂସନୀୟ। କରୁଣରସାଶ୍ରିତ ଓ ପ୍ରସାଦଗୁଣବିଶିଷ୍ଟ ହୋଇ ଅଧିକାଂଶ ସ୍ଥଳରେ ରଚନା ପ୍ରୀତିକର ହୋଇଅଛି।

**(୩୦) ଭାଗୀରଥୀ ରଥଙ୍କ 'ପଦ୍ମାବତୀ ପରିଣୟ' (୧୯୦୫)ର ସଂକ୍ଷିପ୍ତ ସମାଲୋଚନା –**

ପଣ୍ଡିତ ଶ୍ରୀ ଭାଗୀରଥୀ ରଥ ବିରଚିତ ଶୀର୍ଷାଙ୍କିତ କାବ୍ୟ ଏତେଦିନେ ମୋହୋର ହସ୍ତଗତ ହେଲା। ପଣ୍ଡିତ ମହାଶୟଙ୍କର ପୂର୍ବତନ ରଚନାମାନ ଦେଖି ମୁଁ ପ୍ରୀତିଲାଭ କରିଥିଲି ଏବଂ ସେ ସମୟରେ ଯେ ସେ ସୁକବି ହୋଇପାରିବେ ଏ ଆଶା ମଧ୍ୟ ପୋଷଣ କରିଥିଲି। 'ପଦ୍ମାବତୀ ପରିଣୟ'ରେ ସେ ଆଶା ସମ୍ପୂର୍ଣ୍ଣ ସଫଳ ହୋଇଅଛି। ମୋହର କ୍ଷୁଦ୍ରମତରେ 'ପଦ୍ମାବତୀ ପରିଣୟ' ଉତ୍କଳ ଭାଷାରେ ଖଣ୍ଡିଏ ଉତ୍କୃଷ୍ଟ ଏବଂ ଉପାଦେୟ କାବ୍ୟ। କି ଭାଷା କି ଭାବ, କି ବର୍ଣ୍ଣନାଛଟା, ପ୍ରତ୍ୟେକ ବିଷୟରେ ଏହି କାବ୍ୟର ଉତ୍କର୍ଷ ଦେଖି ମୁଁ ଅତ୍ୟନ୍ତ ଆହ୍ଲାଦିତ ହୋଇଅଛି।

ମୋହର ଚିର ସୁହୃତ୍ ପୁଣ୍ୟଚରିତ କବିବର ଶ୍ରୀ ମଧୁସୂଦନ ରାଓ ମହାଶୟ ଏହି ପୁସ୍ତକର ମୁଦ୍ରାଙ୍କନ ବ୍ୟୟ ବହନ କରି ଉତ୍କଳର ସାହିତ୍ୟବିନୋଦୀ-ସମ୍ପ୍ରଦାୟର ଧନ୍ୟବାଦାର୍ହ ହୋଇ-ଅଛନ୍ତି ଏଥିରେ ଲେଶମାତ୍ର ସନ୍ଦେହ ନାହିଁ।

କଟକ **ଶ୍ରୀ ରାଧାନାଥ ରାୟ**
୧୨।୨।୧୯୦୫
(ସମ୍ବଲପୁର ହିତୈଷିଣୀ, ୧୬-୨୪, ୨୫।୬।୧୯୦୫)

**(୩୧) ବିଶ୍ୱନାଥ ରଥଙ୍କ 'ସ୍ୱଦେଶ ସ୍ୱପ୍ନ' (୧୯୦୭) ସମ୍ପର୍କରେ ଅଭିମତ –**

ପ୍ରଥମ ଉଦ୍ୟମରେ କବି ଯେପରି ଶକ୍ତିମତ୍ତାର ପରିଚୟ ଦେଇଅଛନ୍ତି ତାହା ସମ୍ପୂର୍ଣ୍ଣ ଆଶାପ୍ରଦ ଓ ପ୍ରୀତିକର। ଏହାଙ୍କର ସଂସ୍କୃତ କାବ୍ୟ ମୁଁ ପୂର୍ବେ ପାଠକରି ପ୍ରୀତହୋଇଥିଲି, ଓଡ଼ିଆ କାବ୍ୟ ପାଠକରି ତତୋଽଧିକ ପ୍ରୀତ ହେଲି। ଅଧ୍ୟବସାୟ ସହିତ ଲେଖିଲେ ଓଡ଼ିଆ ସାହିତ୍ୟ ଜଗତରେ ଏ ମହାଶୟ ସ୍ଥାୟିକୀର୍ତ୍ତି ସଂସ୍ଥାପନ କରିପାରିବେ। ପ୍ରାଞ୍ଜଳତା ଏହାଙ୍କ ରଚନାର ଗୋଟିଏ ବିଶେଷ ଗୁଣ। ଏ ସଦ୍‌ଗୁଣ ଅଧିକାଂଶ ଅମିତ୍ରାକ୍ଷର ଲେଖକଙ୍କ ରଚନାରେ ପ୍ରାୟ ଦେଖାଯାଏନାହିଁ। କାବ୍ୟର ଶେଷାଂଶ ସୁନୀତି-ଗର୍ଭକ ହୋଇଥିବାରୁ ତଦ୍ୱାରା ସେଥିର ଉପାଦେୟତା ବହୁ ପରିମାଣରେ ବର୍ଦ୍ଧିତ ହୋଇଅଛି।

କଟକ **ଶ୍ରୀ ରାଧାନାଥ ରାୟ**
୧୫।୮।୧୯୦୭

**(୩୨) ବିଶ୍ୱନାଥ ରଥଙ୍କ 'ଧର୍ମ୍ମନୀତି' (୧୯୦୮)ର ପ୍ରଶଂସାପତ୍ର –**

ଧର୍ମ୍ମନୀତି ପାଣ୍ଡୁଲେଖ୍ୟାବସ୍ଥାରେ ମୁଁ ଆଦ୍ୟୋପାନ୍ତ ପାଠକରି ଅତ୍ୟନ୍ତ ପ୍ରୀତ ହୋଇଅଛି। ପୁସ୍ତକ ଖଣ୍ଡିକ ସାରବାନ୍ ଉପଦେଶରେ ପରିପୂର୍ଣ୍ଣ ଏବଂ ଏହାର ଭାଷା ମଧ୍ୟ ଆଶାନୁରୂପ ପ୍ରାଞ୍ଜଳ ହୋଇଅଛି। ପଣ୍ଡିତ ବିଶ୍ୱନାଥ ରଥ ମହାଶୟ ଆଜି ପର୍ଯ୍ୟନ୍ତ ଯେତେ ପୁସ୍ତକ ରଚନା କରିଅଛନ୍ତି, ପ୍ରତ୍ୟେକରେ ପ୍ରସାଦଗୁଣ ପରିସ୍ଫୁଟ ରୂପେ ବିଦ୍ୟମାନ। ଧର୍ମ୍ମନୀତିରେ ସେହି ଗୁଣ ଅଧିକତର ପରିସ୍ଫୁଟ ହୋଇଅଛି। ଏହି କ୍ରମୋନ୍ନତି ସମ୍ପୂର୍ଣ୍ଣ ଆଶାପ୍ରଦ ଏବଂ ଭାବୀ ଉତ୍କର୍ଷର ସୂଚକ। ପ୍ରଭୂତ ବାଗ୍ମିତବଶାଳୀ ହୋଇ ସୁଦ୍ଧା ଉତ୍କଳୀୟ ସଂସ୍କୃତଜ୍ଞ ପଣ୍ଡିତମଣ୍ଡଳୀ ଉତ୍କଳ ଭାଷାର ଉନ୍ନତି ବିଧାନକଳ୍ପେ ପ୍ରାୟଶଃ ଆସ୍ଥାହୀନ। ବିଗତ କେତେକ ବର୍ଷରେ ଏହି ଦଳ ମଧ୍ୟରୁ କେବଳ ୩-୪ ଜଣ ଉତ୍କଳସାହିତ୍ୟାନୁଶୀଳନରେ ବ୍ରତୀ ହୋଇଥିବାର ଦେଖାଯାଏ। ଉତ୍କଳ ଭାଷା ପକ୍ଷରେ ଏହା ଶୁଭ ଲକ୍ଷଣ ବୋଲିବାକୁ ହେବ। କବି ବିଶ୍ୱନାଥ ଏହି ମୁଷ୍ଟିମେୟ ଦଳର ଅନ୍ୟତର। ଅତି ଅଳ୍ପ ସମୟ ମଧ୍ୟରେ ଏ ମହାଶୟ ଚାରିଖଣ୍ଡ ଉତ୍କଳ କାବ୍ୟ ପ୍ରଣୟନ କରିଅଛନ୍ତି, ମାତ୍ର ଅର୍ଥାଭାବ ବଶତଃ ସେଗୁଡ଼ିକରୁ ଅଧିକାଂଶ ଅମୁଦ୍ରିତାବସ୍ଥାରେ ପଡ଼ି ରହିଅଛି। ମୁଁ ଆଶାକରେ ଉତ୍କଳଭାଷାନୁରାଗୀ ବଦାନ୍ୟ ବ୍ୟକ୍ତିମାନେ କବିଙ୍କୁ ଏ ବିଷୟରେ ଯଥୋଚିତ ସାହାଯ୍ୟ ପ୍ରଦାନ କରି କବିଙ୍କର ଏବଂ ସାଧାରଣର ଧନ୍ୟବାଦାର୍ହ ହେବେ।

କଟକ **ଶ୍ରୀ ରାଧାନାଥ ରାୟ**
୨୭।୧୧।୧୯୦୭

**(୩୩) ହରପ୍ରିୟା ଦେବୀଙ୍କର 'ସ୍ୱରଷୋଡ଼ଶୀ' (୧୯୦୯) ସଂପର୍କରେ ଅଭିମତ –**

[ପୁସ୍ତକରେ ରଚୟିତା ସ୍ଥାନରେ ଲେଖାଅଛି ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନ ଜଗଦ୍ଦେବ ଓ ରାଧାନାଥ ମଧ୍ୟ ତାହାଙ୍କୁ ଗ୍ରନ୍ଥକାର ରୂପେ ଗ୍ରହଣକରି ନେଇଛନ୍ତି।]

ପ୍ରିୟ ରାଜା ମହୋଦୟ,

ମୁଁ ଆମ୍ଭମାନଙ୍କର ସାହିତ୍ୟାନୁରାଗିତାର କଥା ବହୁବାର ଜନଶ୍ରୁତିରୁ ଶୁଣିଥିଲି, ମାତ୍ର ପ୍ରତ୍ୟକ୍ଷ ପ୍ରମାଣ ପାଇନଥିଲି।

ବର୍ତ୍ତମାନ ଆପଣଙ୍କ ବିରଚିତ ଓ ପ୍ରେରିତ 'ସ୍ୱରସୁନ୍ଦରୀ'ର [ରାଧାନାଥ 'ସ୍ୱରଷୋଡ଼ଶୀ'କୁ 'ସ୍ୱରସୁନ୍ଦରୀ' ବୋଲି ଲେଖିଛନ୍ତି। ସଂ. –] ପାଣ୍ଡୁଲିପି ପାଠକରି ପରମାପ୍ୟାୟିତ ହେଲି। କବିତାଟି ପ୍ରାଚୀନ ରୀତିର ଅନୁକୃତି ସତ୍ୟ, ମାତ୍ର ପ୍ରାଚୀନ ସାହିତ୍ୟ ସାମ୍ରାଜ୍ୟର ସମ୍ରାଟରୂପୀ... ଉପେନ୍ଦ୍ର ଭଞ୍ଜ ଏହି ସ୍ୱରବର୍ଣ୍ଣଗୁଡ଼ିକରେ କବିତା ଲେଖି ଯେ କୃତିତ୍ୱ ପ୍ରଦର୍ଶନ କରିଯାଇଅଛନ୍ତି। ଆପଣଙ୍କ ରଚନା ଅପେକ୍ଷାକୃତ ଉତ୍ତମବୋଲି ମୁଁ ନିଃସନ୍ଦେହରେ କହିପାରେ ଏବଂ ଭରସା କରେ ଅନୁସନ୍ଧିତ୍ସୁ-ଶିକ୍ଷିତ ବ୍ୟକ୍ତିମାନେ ଅନୁସନ୍ଧାନ କଲେ ମୋହର ଉକ୍ତିର ଯାଥାର୍ଥ୍ୟ ନିଶ୍ଚୟ ସ୍ୱୀକାର କରିବେ। ସେ ଅଦ୍ୱିତୀୟ ଶବ୍ଦଶାସ୍ତ୍ରବିଶାରଦ ଥିଲେ ସୁଦ୍ଧା ସ୍ୱରବର୍ଣ୍ଣମାନଙ୍କରେ ଶବ୍ଦ ଦେଇନପାରି 'ଲୃ'– ପରି ମଧମା' ପ୍ରଭୃତି ଲେଖିଯାଇଅଛନ୍ତି। ସୁଖର କଥା 'ସ୍ୱରଷୋଡ଼ଶୀ'ରେ ଆପଣ ଯେ ଶବ୍ଦପାଣ୍ଡିତ୍ୟ ପ୍ରଦର୍ଶନ କରିଅଛନ୍ତି ତାହା ପ୍ରଶଂସାର୍ହ – ସୁତରାଂ ଶିକ୍ଷିତ ସମାଜର ଆଦରଣୀୟ ହେବ ସନ୍ଦେହ ନାହିଁ।

ଜଟିଳ ରାଜକାର୍ଯ୍ୟରେ ବ୍ୟାପୃତ ଥାଇ ଆପଣ ସାହିତ୍ୟାନୁଶୀଳନ ଓ ବାଗ୍‌ଦେବୀ ସେବାରେ ମନୋ-ନିବେଶ କରିବା ଦେଖି ମୁଁ ଅତ୍ୟନ୍ତ ଆନନ୍ଦିତ ହୋଇଅଛି ଓ ହୃଦୟର ସହିତ ଅଜସ୍ର ସାଧୁବାଦ ପ୍ରଦାନ କରୁଅଛି। ଜଗଦୀଶ୍ୱର ଆପଣଙ୍କର ଲେଖନୀରେ ପୁଷ୍ପଚନ୍ଦନ ବୃଷ୍ଟିକରି ଉତ୍କଳ ସାହିତ୍ୟାଶ୍ରମର ଶ୍ରୀବୃଦ୍ଧି ସାଧନକରାଇବେ, ମୋହର ଏହିମାତ୍ର ଅଭିଳାଷ ଓ ପ୍ରାର୍ଥନା।

କାଳିଗଳୀ, କଟକ — ଶ୍ରୀ ଆମ୍ଭମାନଙ୍କର

୧୮।୩।୧୯୦୩ — ଶ୍ରୀ ରାଧାନାଥ ରାୟ

**(୩୪) ରତ୍ନାକର ଶର୍ମାଙ୍କର 'ଚମ୍ପାବତୀ' (୧୯୧୦) ସଂପର୍କରେ ମନ୍ତବ୍ୟ –**

ପଣ୍ଡିତ ଶ୍ରୀଯୁକ୍ତ ରତ୍ନାକର କବିଭୂଷଣ ମହାଶୟଙ୍କ ରଚନା ମୁଁ ଇତିପୂର୍ବେ ସମୟସମୟରେ ପାଠକରି ବିଶେଷ ପ୍ରୀତିଲାଭ କରିଥିଲି। 'ଚମ୍ପାବତୀ'କାବ୍ୟ କବିଙ୍କର ଶକ୍ତିମତ୍ତା ଓ ସାହିତ୍ୟଜ୍ଞତାର ସ୍ଫୁଟତର ପରିଚାୟକ।

ଶ୍ରୀ ରାଧାନାଥ ରାୟ

**(୩୫) ଗୋପୀନାଥ ନନ୍ଦ ଶର୍ମାଙ୍କ 'ବିହ୍ଲଣୀୟ କାବ୍ୟ' (୧୯୧୫) ସଂପର୍କରେ ମନ୍ତବ୍ୟ –**

ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦଶର୍ମା ମହୋଦୟଙ୍କ ପ୍ରଣୀତ ବିହ୍ଲଣକାବ୍ୟଟି ପଢ଼ି ମୁଁ ଦେଖିଅଛି। ଏହାର ଭାଷା ପ୍ରାଞ୍ଜଳ ଓ ପ୍ରସାଦଗୁଣବିଶିଷ୍ଟ ହୋଇ ସମଧିକ ପ୍ରୀତିକର ଓ ଚିତ୍ତାକର୍ଷକ ହୋଇଅଛି। ଏଥିରେ ସେ ନାନାବିଧ ସଂସ୍କୃତ ଛନ୍ଦ ବ୍ୟବହାର କରି ଯଥେଷ୍ଟ ଉତ୍କର୍ଷ ପ୍ରଦର୍ଶନ କରିଛନ୍ତି। ଏହା ଉତ୍କଳରେ ଅଭିନବ ମାର୍ଗ ଅଟେ।

ଏହି ରଚନାରେ ପଣ୍ଡିତ ମହାଶୟ ଯେପରି ପାଣ୍ଡିତ୍ୟ, କବିତ୍ୱଶକ୍ତିମତ୍ତା ଏବଂ ଶ୍ରମଶୀଳତା ଦେଖାଇଅଛନ୍ତି, ତାହା ଉତ୍କଳରେ ଗୋଟିଏ ଉତ୍କୃଷ୍ଟ ଆଦର୍ଶସ୍ୱରୂପ ପ୍ରତିଭାତ ହୋଇଅଛି।

କଟକ — ଶ୍ରୀ ରାଧାନାଥ ରାୟ

୧।୫।୧୯୦୬

# ପତ୍ରାବଳୀ

**(୧) ମୟୂରଭଞ୍ଜର ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେବଙ୍କୁ ଲିଖିତ ପତ୍ର –**

ଶ୍ରୀଚରଣେଷୁ

ମହାରାଜ !

ଅଦ୍ୟ ଆପଣଙ୍କ ପତ୍ର ପାଇଲି। ମହାରାଜଙ୍କର ଯେରୂପ ହୃଦୟ ଦୟା ଓ ଦାକ୍ଷିଣ୍ୟପରାୟଣ, ପତ୍ରଖଣ୍ଡିକ ତାହାର ସଂପୂର୍ଣ୍ଣ ଅନୁରୂପ ହୋଇଅଛି। ମୁଁ ମହାରାଜଙ୍କୁ ସର୍ବଦା ପିତୃତୁଲ୍ୟ ଭାବିଥାଏଁ ଏବଂ ଶ୍ରୀମାନ୍ ରାମଚନ୍ଦ୍ରଙ୍କୁ ମୋହର ଅନୁଜ ବୋଧରେ ସ୍ନେହ କରିଥାଏଁ। ରାମଚନ୍ଦ୍ର ଦୀର୍ଘଜୀବୀ ହୋଇ ରାଜ୍ୟଶାସନରେ ଆପଣଙ୍କ ଭଳି ଅଥବା ଆପଣଙ୍କ ଅପେକ୍ଷା ଅଧିକତର ସୁଖ୍ୟାତି ଲାଭକରନ୍ତୁ, ଏହା ମୁଁ ଜଗଦୀଶ୍ବରଙ୍କ ସମୀପରେ ପ୍ରାର୍ଥନା କରୁଅଛି।

ମୁଁ ବର୍ତ୍ତମାନ ୪୦୦ ଟଙ୍କାର ଗ୍ରେଡ୍‌ରେ ରହିଅଛି, ମହାରାଜ ୬୦୦ଟଙ୍କା ଦେବାକୁ ପ୍ରସ୍ତୁତ; [illegible] ଯିବାକୁ ସାହସ ହେଉନାହିଁ। କାହିଁକି, ଏହାର [illegible] ଗୁଡ଼ିଏ ଗୂଢ଼ କାରଣ ଅଛି, ତାହା ମୁଁ ବା[illegible]ନିକ ଶ୍ରୀଚରଣରେ ନିବେଦନ କରିବି; କିନ୍ତୁ ପତ୍ରରେ ଜଣାଇବାକୁ ଅକ୍ଷମ। ମହାରାଜ କହିପାରନ୍ତି, "କାହିଁକି, ତୁମ୍ଭର ତ ସରକାରୀ କାର୍ଯ୍ୟ ରହିବ, ତୁମ୍ଭେ ଯେବେ କୌଣସି କାରଣରେ ମୟୂରଭଞ୍ଜ ପରିତ୍ୟାଗକର, ସେହି ସରକାରୀ କାର୍ଯ୍ୟକୁ ସହଜରେ ଯାଇପାରିବ।" ଏହାର ଅନେକଗୁଡ଼ିଏ ଉତ୍ତର ରହି-ଅଛି, ସବୁଗୁଡ଼ିକ ପତ୍ରରେ ଲେଖିପାରୁନାହିଁ। ଗୋଟିଏ କଥା ଲେଖୁଅଛି। ମନେକରନ୍ତୁ, ମୁଁ ଛଅମାସ କିମ୍ବା ଏକ ବର୍ଷ ମୟୂରରଭଞ୍ଜରେ କାର୍ଯ୍ୟ କରି ଫେରିଆସିଲି, ସେତେବେଳେ ସରକାରୀ କାର୍ଯ୍ୟକୁ ଫେରିବି ସତ୍ୟ, କିନ୍ତୁ ବୋଧହୁଏ, ସେହି ସରକାରୀ କାର୍ଯ୍ୟରେ କଟକରେ ନ ରହି ବେହାର, ଢାକା ଅଥବା ଚଟ୍‌ଟଗ୍ରାମ ପ୍ରଭୃତି ଦୂରବର୍ତ୍ତୀ ସ୍ଥାନକୁ ଯିବାକୁ ହେବ ଏବଂ ମୋହର ବର୍ତ୍ତମାନ ପଦରେ ଅନ୍ୟ ବ୍ୟକ୍ତି ସ୍ଥାୟୀରୂପେ ଅଧିକାରୀ ହୋଇ ବସିବେ। ଏହା ବ୍ୟତୀତ ପ୍ରତିବର୍ଷ ମୋହର ଯେପରି ବେତନ ବଢୁଅଛି, ସେ ବୃଦ୍ଧିରୁ ମଧ ବଞ୍ଚିତହେବି। କଟକର ଡେପୁଟି ଇନ୍‌ସପେକ୍ଟର ପ୍ୟାରୀବାବୁ ୧୦୦ ଟଙ୍କା ବେତନରେ କାର୍ଯ୍ୟ କରୁଥିଲେ। ଢେଙ୍କାନାଳକୁ ୧୮୦ ଟଙ୍କା ବେତନରେ ଯାଇଥିଲେ। ବର୍ତ୍ତମାନ ତାହାଙ୍କର ଫେରିଆସିବାର କଥା ହେଉଅଛି। ସେ ବେତନବୃଦ୍ଧିରୁ ବଞ୍ଚିତ ଏବଂ କଟକରୁ ସ୍ଥାନାନ୍ତରିତ ହୋଇଅଛନ୍ତି। ବର୍ତ୍ତମାନ ପରିଣାମରେ ଦେଖୁଅଛନ୍ତି ଯେ, ସଦ୍ୟଲାଭର ଆଶାରେ ଢେଙ୍କାନାଳ ଯାଇ ଭଲ କରିନାହାନ୍ତି।

ଗଡ଼ଜାତରେ ବ୍ୟକ୍ତିଗତ ଭାବହିଁ ପ୍ରବଳ। ଅଳ୍ପଦିନ ମଧ୍ୟରେ ରାଜପ୍ରସାଦ ଫଳରୁ ଲୋକର ଧନୀ ହେବାର ଯେପରି ସମ୍ଭାବନା, ସେହିପରି ଅଳ୍ପଦିନ ମଧ୍ୟରେ ରାଜବିରାଗଭାଜନ ହେଲେ ଅନିଷ୍ଟର ମଧ ସମ୍ଭାବନା। ଗଭର୍ଣ୍ଣମେଣ୍ଟଙ୍କ କାର୍ଯ୍ୟରେ ଏ ଉଭୟ ସମ୍ଭାବନା ଅପେକ୍ଷାକୃତ କମ୍; ସୁତରାଂ ସ୍ଥିରରୂପେ ଜୀବିକା ନିର୍ବାହ ପକ୍ଷରେ ଆଶଙ୍କା ମଧ କମ୍।

ମୁଁ ଉପରେ ଯେଉଁ କଥାଗୁଡ଼ିକ ଲେଖିଲି, ସେଥିରେ ଯେବେ ମହାରାଜଙ୍କ ନିକଟରେ ଅପରାଧୀ ହୋଇଥାଏଁ, ସ୍ବୀୟ ଔଦାର୍ଯ୍ୟ ଗୁଣରେ ମହାରାଜ ସେହି ଅପରାଧ କ୍ଷମା କରିବେ। ମହାରାଜ ଏ ସେବକକୁ ଆଶ୍ରିତ ଏବଂ ଆତ୍ମୀୟବର୍ଗ ମଧ୍ୟରେ ପରିଗଣିତ କରିଅଛନ୍ତି; ଏହା ମୁଁ ଉତ୍ତମରୂପେ ଜାଣେ ଏବଂ ସେ ସମ୍ବନ୍ଧ ଈଶ୍ବରଙ୍କ ପ୍ରସାଦରୁ କୌଣସି ଅବସ୍ଥାରେ ଲୁପ୍ତହେବନାହିଁ। କିନ୍ତୁ ମୁଁ ଯେବେ ସୌଭାଗ୍ୟକ୍ରମେ ମୟୂରଭଞ୍ଜ ଯାଏଁ, ମହାରାଜଙ୍କ ସହିତ ଆଉ ଗୋଟିଏ ସମ୍ବନ୍ଧ ହୋଇଯିବ ଏବଂ ସେହି ସମ୍ବନ୍ଧ ବିଚାର ଛଳରେ ପୂର୍ବୋକ୍ତ ସମ୍ବନ୍ଧ ଏକାବେଳକେ ବିସ୍ମୃତ ହେବା ଉଭୟଙ୍କ ପକ୍ଷରେ ଶ୍ରେୟସ୍କର।

ମୁଁ ବହୁକାଳ ଏକ ବିଭାଗରେ କାର୍ଯ୍ୟ କରିଅଛି ଏବଂ ଓଡ଼ିଶାରେ ସେହି ବିଭାଗରେ ଯେତେଦୂର ଉଠିବାର ସମ୍ଭାବନା ତହିଁରେ ଏକପ୍ରକାର କୃତକାର୍ଯ୍ୟ ହୋଇଅଛି। ଅନ୍ୟ ବିଭାଗରେ ଏବଂ ଭିନ୍ନ ପ୍ରକୃତିକ କାର୍ଯ୍ୟରେ ନିଯୁକ୍ତ ହୋଇ ତାହା ସୁଚାରରୂପେ ସମ୍ପନ୍ନ କରି ପ୍ରତିଷ୍ଠା ଲାଭ କରିପାରିବି ଏବଂ ସର୍ବାନ୍ତଃ-କରଣରେ ପ୍ରଭୁଙ୍କ ମଙ୍ଗଳ ସାଧନ କରି ତାହାଙ୍କର ପ୍ରୀତିଭାଜନ ହେବି, ଏହି ଇଚ୍ଛା ମୋ ହୃଦୟରେ ସର୍ବଦା ଜାଗ୍ରତ ରହିଅଛି; ମାତ୍ର ତାହା ଚରିତାର୍ଥ ହେବା ମହାରାଜଙ୍କର ଅନୁଗ୍ରହସାପେକ୍ଷ। ମହାରାଜ ମୋତେ ଯେପରି ଅନୁଗ୍ରହଭାଜନ ମନେକରନ୍ତି କି ନାହିଁ, ତାହା ମୁଁ ଜାଣେନାହିଁ; କିନ୍ତୁ ମୁଁ ଏତିକି

କହିପାରେ ଯେ, ଶ୍ରମଶୀଳତା ଏବଂ କର୍ତ୍ତବ୍ୟନିଷ୍ଠା ଯେବେ ରାଜପ୍ରସାଦ ଲାଭ କରିବାକୁ ସମର୍ଥ ହୁଏ, ମୁଁ ସେହି ରାଜପ୍ରସାଦରୁ ବଞ୍ଚିତ ହେବିନାହିଁ।

ସମ୍ପ୍ରତି ମୁଁ ଶିକ୍ଷାବିଭାଗର ଦ୍ୱିତୀୟ ଶ୍ରେଣୀରେ ରହିଅଛି ବୋଲି ପ୍ରତିବର୍ଷ ମୋର ଯେପରି ବେତନ ବଢୁଅଛି, ସ୍ଥାନାନ୍ତରକୁ ଗଲେ ତହିଁରୁ ବଞ୍ଚିତହେବି ଏବଂ ଯେବେ ଦୁର୍ଭାଗ୍ୟକ୍ରମେ ଫେରିଆସିବାକୁ ହୁଏ, ତାହାହେଲେ ବର୍ତ୍ତମାନ ଯେଉଁ ବେତନ ଅଛି, ସେହି ବେତନରେ ପୁଣି ଆରମ୍ଭ କରିବାକୁ ହେବ। ଏହି ସମସ୍ତ କଥା ଭାବିଲେ ଏବଂ ତାହାର ସମ୍ଭାବନା ସ୍ୱୀକାରକଲେ ମୟୂରଭଞ୍ଜ ଗମନଦ୍ୱାରା ପ୍ରକୃତ ପ୍ରସ୍ତାବରେ ମୋହୋର ବିଶେଷ କିଛି ପ୍ରାପ୍ତିର ସମ୍ଭାବନା ନାହିଁ। ଏ ରୂପ ଅବସ୍ଥାରେ ମୋହୋର ଯିବାକୁ କେତେଦୂର ପ୍ରବୃତ୍ତି ହେବ, ତାହା ମହାରାଜଙ୍କର ସଦ୍‌ବିବେଚନା ଉପରେ ସମ୍ପୂର୍ଣ୍ଣ ନିର୍ଭରକରୁଅଛି।

ମହାରାଜାଙ୍କର ସତ୍ୟନିଷ୍ଠା ଏବଂ ସଦାଶୟତା ଉପରେ ମୋହୋର ସମ୍ପୂର୍ଣ୍ଣ ନିର୍ଭର ରହିଅଛି; କିନ୍ତୁ ଆମ୍ଭମାନଙ୍କ ଅବସ୍ଥା ସେପରି ସ୍ୱଚ୍ଛଳ ନୁହେଁ ଯେ, କେବଳ ବ୍ୟକ୍ତିଗତ ଭାବ ଉପରେ ନିର୍ଭର କରି ଉପସ୍ଥିତକର୍ମ ପରିତ୍ୟାଗ କରିପାରିବି। ଢେଙ୍କାନାଳର ରାଜା ବନମାଳୀ ବାବୁଙ୍କୁ ଯେଉଁ ପ୍ରଣାଳୀରେ ନେଇଅଛନ୍ତି, ତାହା ବୋଧହୁଏ ମହାରାଜଙ୍କର ଅବିଦିତ ନାହିଁ। ସେ ରୂପ ପ୍ରଣାଳୀରେ ଯେବେ ମୋତେ ନେବାକୁ ଇଚ୍ଛାକରନ୍ତି, ମୁଁ ବର୍ତ୍ତମାନ ପଦର ଆଶା ଏକାବେଳକେ ପରିତ୍ୟାଗ କରି ଯିବାକୁ ପରାଙ୍‌ମୁଖ ହେବିନାହିଁ ଏବଂ ମହାରାଜଙ୍କୁ ପ୍ରତିମାସରେ ୧୨୦ ଟଙ୍କା ମୋହର ପେନ୍‌ସନ୍ ପାଇଁ ଦେବାକୁ ହେବନାହିଁ।

ବନମାଳୀ ବାବୁ କମିଶନରଙ୍କ ଅଫିସରେ ୬୦ ଟଙ୍କା ବେତନରେ କାର୍ଯ୍ୟ କରୁଥିଲେ, ପରେ ୨୦୦ ଟଙ୍କା ବେତନରେ ଅନୁଗୋଳର ଅସ୍ଥାୟୀ ତହସିଲଦାର ଥିଲେ। ଢେଙ୍କାନାଳର ମହାରାଜା ତାହାଙ୍କୁ ନଗଦ ୨୩୦୦୦ ଟଙ୍କା ଏବଂ ନିଜ ରାଜ୍ୟ ମଧ୍ୟରେ ପ୍ରାୟ ୧୫୦୦୦ ଟଙ୍କା ଆୟବିଶିଷ୍ଟ ବେହେରା ପ୍ରଧାନର ପଦ ଏବଂ ମାସିକ ୨୦୦ ଟଙ୍କା ବେତନ ଏବଂ ବରଖାସ୍ତ କରିବାକୁ ହେଲେ ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କ ବିନା ମଞ୍ଜୁରୀରେ ବରଖାସ୍ତ କରିପାରିବେ ନାହିଁ ଏହି ନିୟମରେ ତାହାଙ୍କୁ ନେବାକୁ ଅଙ୍ଗୀକାର କରିବାରୁ ସେ ଗଭର୍ଣ୍ଣମେଣ୍ଟଙ୍କ କାର୍ଯ୍ୟ ପରିତ୍ୟାଗ କରି ଗଡ଼ଜାତକୁ ଗଲେ। ଢେଙ୍କାନାଳ ମହାରାଜାଙ୍କ ନିକଟରୁ ସେ ଯେଉଁ ନଗଦ ଟଙ୍କା ପାଇଥିଲେ, ତାହା ବ୍ୟାଙ୍କ୍‌ରେ ଗଚ୍ଛିତ ରଖି ତାହାର ସୁଧ ପାଉଅଛନ୍ତି। ବର୍ତ୍ତମାନ ଯେବେ ତାହାଙ୍କର କାର୍ଯ୍ୟ ଚାଲିଯାଏ, ସେହି ଟଙ୍କାର ସୁଧରେ ସେ କୌଣସିମତେ ଜୀବିକା ଚଳାଇପାରିବେ।

ବନମାଳୀବାବୁ ଯେତେଗୁଡ଼ିଏ ସୁବିଧା ପାଇଅଛନ୍ତି, ମୁଁ ତତ୍‌ସମସ୍ତର ପ୍ରତ୍ୟାଶୀ ନୁହେଁ। ସେହି ସମସ୍ତ ସୁବିଧା ସହିତ ପଦଗୌରବର ସାମଞ୍ଜସ୍ୟ ରହିନପାରେ, ଏହା ମୁଁ ବିଶେଷରୂପେ ଅବଗତ। ମୋହର ବିବେଚନାରେ ଯେ ରାଜ୍ୟର ପ୍ରଧାନ ପାତ୍ର ହେବେ, ତାହାଙ୍କ ପକ୍ଷରେ ବେହେରା-ପ୍ରଧାନୀ ଅଥବା ଅନ୍ୟ କୌଣସି ସୂତ୍ରରେ ଆୟ ଶୋଭନୀୟ ନୁହେଁ। ସେ ଯାହା ପାଇବେ, ରାଜକୋଷରୁ ପ୍ରକାଶ୍ୟ ଭାବରେ ପାଇବେ।

ମୁଁ ବାଲେଶ୍ୱରବାସୀ, ସୁତରାଂ ମୟୂରଭଞ୍ଜକୁ ମୋହର ପ୍ରଧାନ ଆଶ୍ରୟସ୍ଥଳ ବୋଲି ମନେକରିଥାଏ ଏବଂ ସେ ରୂପ ସୁବିଧା ହେଲେ ମୟୂରଭଞ୍ଜର ପ୍ରଜା ହୋଇ ରହିବାକୁ ମୋହର ସମ୍ପୂର୍ଣ୍ଣ ଇଚ୍ଛା ରହିଅଛି। ପୂର୍ବପୁଣ୍ୟ ଫଳରୁ ମୟୂରଭଞ୍ଜ ଆପଣଙ୍କୁ ସିଂହାସନରେ ପାଇଅଛି ଏବଂ ଜଗଦୀଶ୍ୱର ଶ୍ରୀମାନ ରାମଚନ୍ଦ୍ରଙ୍କୁ ଦୀର୍ଘଜୀବୀ କଲେ ତାହାଙ୍କର ରାଜତ୍ୱକାଳ ବର୍ତ୍ତମାନ ରାଜତ୍ୱ ଅପେକ୍ଷା ଗୌରବାନ୍ୱିତ ହେବ। ମୁଁ ସେହି ଗୌରବର ଅଂଶୀ ହୁଏ କିମ୍ବା ନ ହୁଏ, ତାହା ଭିନ୍ନ କଥା, କିନ୍ତୁ ସର୍ବଦା କାୟମନୋବାକ୍ୟରେ ମୟୂରଭଞ୍ଜର ମଙ୍ଗଳକାମନା କରୁଥିବି।

କମିଶନର ସାହେବ ଏ ବିଷୟରେ ମୋହର ମତ ଶୀଘ୍ର ଜାଣିବାକୁ ଇଚ୍ଛା ପ୍ରକାଶ କରିଅଛନ୍ତି। କିନ୍ତୁ ଏ ରୂପ ଗୁରୁତର ବିଷୟର ମୀମାଂସା ସମୟସାପେକ୍ଷ।

ବଶମ୍ବଦ ଭୃତ୍ୟ

**ଶ୍ରୀ ରାଧାନାଥ ରାୟ**

### (୨) ବିଶ୍ୱନାଥ ରଥଙ୍କ ନିକଟକୁ ଲିଖିତ ପତ୍ରାବଳୀ।

(କ)

ଶ୍ରୀହରିଃ ଶରଣଂ

କଟକ, ୨।୧୧।୧୮୯୧

ସପ୍ରଣାମ ନିବେଦନମିଦଂ –

ମହାଶୟ,

ଆପଣଙ୍କର ଅନୁଗ୍ରହଲିପି ଅଦ୍ୟ ହସ୍ତଗତ ହେଲା। ପାର୍ବତୀ କାବ୍ୟ ଅସମ୍ପୂର୍ଣ୍ଣ – ଏ ସମ୍ପୂର୍ଣ୍ଣ ହେବା ଦୂରେଥାଉ ଅର୍ଦ୍ଧାବୟବ ସୁଦ୍ଧା ହୋଇନାହିଁ। ବାମଣ୍ଡା

ମହାରାଜ ସଦୟ ହୋଇ ସେହି ଅସମ୍ପୂର୍ଣ୍ଣ ଅବସ୍ଥାରେ ତାହା ସୁଗଚ୍ଛିତ କରାଇଲେ। ମୋତେ ୧୦-୧୨ ଖଣ୍ଡ ପୁସ୍ତକ ଦେଇଥିଲେ। ତାହା ବନ୍ଧୁମାନଙ୍କ ମଧ୍ୟରେ ବିତରିତ ହୋଇ ଶେଷ ହୋଇଗଲା। ବର୍ତ୍ତମାନ ମୋ ପାଖରେ ପୁସ୍ତକ ନ ଥିବାରୁ ଆପଣଙ୍କ ଅନୁରୋଧ ରକ୍ଷା କରିବାକୁ ଅସମର୍ଥ ହୋଇ ଦୁଃଖିତ ହେଲି।

ଆପଣ କବିବର ଉପେନ୍ଦ୍ରଭଞ୍ଜଙ୍କ ରଚନା ସହିତ ମୋହର ଯତ୍-ସାମାନ୍ୟ ରଚନାକୁ ତୁଳନା କରିଅଛନ୍ତି। ଏ ତୁଳନା ଆପଣଙ୍କ ଶ୍ରଦ୍ଧାର ଆତିଶଯ୍ୟ ସୂଚକ ମାତ୍ର। ମନର ଅବସ୍ଥା ଯେତେବେଳେ ଭଲଥିଲା, ଅବସରମତେ ନିଜର ବିନୋଦନ ସକାଶେ କେବେ କେବେ ପଦ୍ୟ ଲେଖୁଥିଲି। କବିଯଶଃପ୍ରାର୍ଥୀ ହୋଇ କବିତା ଲେଖିବା ମାଦୃଶ ଜନ ପକ୍ଷରେ ବାତୁଳତା ମାତ୍ର। ଯେଉଁମାନଙ୍କର ପ୍ରକୃତିଦତ୍ତ ଶକ୍ତି ଅଛି ଏବଂ ଅବକାଶ ଅଛି, କେବଳ ସେହିପରି ଲୋକଙ୍କର କବିଯଶଃପ୍ରାର୍ଥୀ ହେବା ଉଚିତ।

ପ୍ରଣତ
ଶ୍ରୀ ରାଧାନାଥ ରାୟ।

(ଖ)

କଟକ, ୧୮।୬।୧୮୯୨

ସପ୍ରଣାମ ନିବେଦନମିଦଂ –
ମହାଶୟ,

ଉତ୍କଳ ସାହିତ୍ୟ ପ୍ରତି ଆପଣଙ୍କର ଅନୁରାଗ ଥିବା ଜାଣି ମତ୍ପ୍ରଣୀତ ଚିଲିକାନାମ୍ନୀ ଖଣ୍ଡିଏ ପୁସ୍ତିକା ଉପହାର ସ୍ୱରୂପ ଆପଣଙ୍କଠାକୁ ପଠାଇଲି। ସଦୟ-ଭାବରେ ଗୃହୀତ ହେଲେ ଚରିତାର୍ଥ ହେବି।

ପ୍ରଣତ
ଶ୍ରୀ ରାଧାନାଥ ରାୟ

(ଗ)

ଶ୍ରୀ ହରିଃ ଶରଣମ୍

କଟକ, ୭।୫।୧୮୯୩

ସପ୍ରଣାମ ନିବେଦନମିଦଂ –
ଶ୍ରଦ୍ଧାସ୍ପଦ ମହାଶୟ,

ଆପଣଙ୍କର ଅନୁଗ୍ରହ ପତ୍ର ବହୁଦିନ ପୂର୍ବେ ପାଇ କେବଳ ନିରନ୍ତର ବ୍ୟାପୃତତା ବଶତଃ ଉତ୍ତର ଦେବାରେ ବିଳମ୍ବ କରିଅଛି। ଆପଣଙ୍କ କାଶରୋଗର ସମ୍ବାଦରେ ଚିନ୍ତିତ ହେଲି। କାଶରୋଗ ବଡ଼ ବିଷମ ରୋଗ। ଅନେକ କାଶରୋଗଗ୍ରସ୍ତ ବ୍ୟକ୍ତି ନାନା ଉପାୟ କରି ସୁଦ୍ଧା ଉପଶମ ଲାଭ କରିନପାରିବାରୁ ଅଗତ୍ୟା ଅଫିମ ବ୍ୟବହାର କରୁଅଛନ୍ତି। ଅନ୍ୟ ଉପାୟରେ ଆପଣଙ୍କର ଯଦି ଉପଶମ ନହୁଏ, ଶେଷକୁ ଅଗତ୍ୟା ସେହି ଉପାୟ ଅବଲମ୍ବନ କରିବାକୁ ହେବ। ଅଫିମସେବନ ଅବଶ୍ୟ ଦୂଷଣୀୟ, ମାତ୍ର ଏପରି ଅବସ୍ଥାରେ ଦୂଷଣୀୟ ନୁହେଁ।

"ପଦ୍ମାବତୀ" ଦାମୋଦର ମିଶ୍ରଙ୍କର ରଚିତ। ଦାମୋଦର ମୋ ରଚିତ ପୁସ୍ତକାଦି ସର୍ବଦା ଅନୁଶୀଳନ କରି ସେଥିର ଅନୁକରଣରେ ଲେଖିଥିବାରୁ ଆପଣଙ୍କର ଭ୍ରମ ହୋଇଅଛି। ବାସ୍ତବରେ ଦାମୋଦର ବାବୁଙ୍କ ଶକ୍ତି ଅତି ପ୍ରଶଂସନୀୟ। ତାହାଙ୍କର ବୟଃକ୍ରମ ଅତି ଅଳ୍ପ। ଏତେ ଅଳ୍ପ ବୟସରେ ଏପରି ରଚନାଶକ୍ତି ସଚରାଚର ଦେଖାଯାଏନାହିଁ। ସାଲତମାମି କାର୍ଯ୍ୟରେ ମୁଁ ଅତ୍ୟନ୍ତ ବ୍ୟସ୍ତ ଅଛି। ଏହା ଉପରେ ପୁତ୍ରର ପୀଡ଼ା ନିବନ୍ଧନ ମନ ସର୍ବଦା ଚିନ୍ତାକୁଳ ଏବଂ ଶଙ୍କାକୁଳ।

"ପାର୍ବତୀ" ବର୍ତ୍ତମାନ ମୋ ପାଖରେ ନାହିଁ, କିଛି ଦିନ ପରେ ଆପଣଙ୍କୁ ଅଣାଇଦେବି। "ମହାଯାତ୍ରା"ର ୫ମ ସର୍ଗ ଲେଖି ଆଉ ଅବକାଶ ମିଳିଲାନାହିଁ। ସେହି ହେତୁରୁ ଆଉ ଅଗ୍ରସର ହୋଇ-ପାରିନାହିଁ।

ମୋ ବିବେଚନାରେ ଯେଉଁମାନଙ୍କୁ ନିଜର ଜୀବିକା ସକାଶେ ପରିଶ୍ରମ କରିବାକୁ ହୁଏ, ସେପରି ଲୋକଙ୍କର କାବ୍ୟରଚନାରେ ପ୍ରବୃତ୍ତ ହେବା ଉଚିତ ନୁହେଁ। କାବ୍ୟ ରଚନା ଅବକାଶ ଏବଂ ନିଶ୍ଚିନ୍ତତା ସାପେକ୍ଷ। ଆମ୍ଭମାନଙ୍କ ପରି ଲୋକଙ୍କର ସେ ବିଷୟରେ ମନ ବଳାଇବା ବାତୁଳତା ମାତ୍ର। ଆପଣଙ୍କ ରଚିତ ଗୀତ ଅବଧି ପାଇଲିନାହିଁ। ଆପଣଙ୍କ ଶାରୀରିକ ସ୍ୱାସ୍ଥ୍ୟ ପୂର୍ବାପେକ୍ଷା ଉନ୍ନତ ହୋଇଅଛି କି ନାହିଁ? ରୋଗମୁକ୍ତି ସକାଶେ କି ଉପାୟ ଅବଲମ୍ବନ କରିଅଛନ୍ତି, ଅନୁଗ୍ରହ-ପୂର୍ବକ ଲେଖିବାହେବେ।

ପ୍ରଣତ
ଶ୍ରୀ ରାଧାନାଥ ରାୟ

(ଘ)

ଶ୍ରୀ ହରିଃ ଶରଣମ୍

ଭଦ୍ରକ, ୧୮।୯।୧୮୯୫

ସପ୍ରଣାମ ନିବେଦନମିଦଂ –
ପରମ ଶ୍ରଦ୍ଧାସ୍ପଦ ମହାଶୟ!

ଆପଣଙ୍କ ଅନୁଗ୍ରହଲିପି ଏବଂ ତତ୍‌ସହିତ ପ୍ରେରିତ ୫ଟଙ୍କା ପ୍ରାପ୍ତ ହେଲି। ଆପଣଙ୍କ କାଶରୋଗ ଏପର୍ଯ୍ୟନ୍ତ ଉପଶମ ହୋଇନଥିବା ସମ୍ବାଦରେ ଚିନ୍ତିତ ଅଛି। କଡ୍‌ଲିଭର୍ ଅଏଲ୍ ଆପଣଙ୍କର ସର୍ବଦା ବ୍ୟବହାର କରିବା ଉଚିତ। ଆମ୍ଭମାନଙ୍କ ଆୟୁର୍ବେଦୀୟ ଚିକିତ୍ସାରେ

ଚ୍ୟବନପ୍ରାଶ କାଶ ରୋଗର ଉତ୍କୃଷ୍ଟ ଔଷଧ। କଲିକତାସ୍ଥ ବିନୋଦଲାଲ ସେନଙ୍କଠାରେ ଅନୁସନ୍ଧାନ କଲେ ସେହି ଔଷଧ ପାଇପାରିବେ। ଅନେକ କଠିନ ରୋଗୀ ସେହି ଔଷଧରେ ରୋଗମୁକ୍ତ ହେବା ଶୁଣିଅଛି। ଯେବେ ଈଶ୍ୱର କରନ୍ତି, ଶୀତକାଳରେ ଆପଣଙ୍କ ସହିତ ଅନୁଗୋଳରେ ସାକ୍ଷାତ୍କାରଲାଭ ହୋଇ-ପାରେ। ଆପଣଙ୍କର ସର୍ବାଙ୍ଗୀନ ମଙ୍ଗଳ ସର୍ବଦା ମନାସୁଅଛି।

ପ୍ରଣତ
ଶ୍ରୀ ରାଧାନାଥ ରାୟ

(ଙ)
ଶ୍ରୀ ହରିଃ ଶରଣମ୍
ଭଦ୍ରକ, ୩୦।୧୧।୧୮୯୫

ପ୍ରଣତିପୂର୍ବକ ନିବେଦନମିଦଂ –
ଶ୍ରଦ୍ଧାସ୍ପଦ ମହୋଦୟ!

ଆପଣଙ୍କର ଅନୁଗ୍ରହଲିପି ପାଇ ଆପ୍ୟାୟିତ ହେଲି। 'ଯଯାତିକେଶରୀ' ସମ୍ବନ୍ଧରେ ଆପଣ ଯାହା ଲେଖିଅଛନ୍ତି, ତାହା ବନ୍ଧୁତାସୁଲଭ, କିନ୍ତୁ ମୋହୋ ପକ୍ଷରେ ଅତିଶୟୋକ୍ତି ମାତ୍ର। ମୋହର କୌଣସି ରଚନା ସେଭଳି ପ୍ରଶଂସାର ଯୋଗ୍ୟ ନୁହେଁ। ପ୍ରାଚୀନ ଉତ୍କଳୀୟ କବିମାନଙ୍କ ସମାନ ହେବା ଦୂରେ ଥାଉ, ସେମାନଙ୍କର ପ୍ରତିଯୋଗିତା କରିବାର ସଙ୍କଳ୍ପ ସ୍ୱପ୍ନରେ ମୋ ମନରେ ଉଦିତ ହୋଇ ନାହିଁ। ମୁଁ କେବଳ ନିଜର ବିନୋଦନ ନିମନ୍ତେ ଅବସରମତେ ଟିକିଏ ଟିକିଏ ଲେଖୁଥିଲି। ଅବକାଶଭାବ ଏବଂ ଅସୁସ୍ଥତା ହେତୁରୁ ସାହିତ୍ୟଚର୍ଚ୍ଚା ବହୁଦିନୁ ପରିତ୍ୟାଗ କରିଅଛି।

'ଯଯାତିକେଶରୀ'ରେ ଅନେକ ଛାପାର ଭୁଲ ହୋଇଅଛି। ମୁଁ ତାହା ଦୁଇମାସରେ ଲେଖିଥିଲି, ଛାପା ହେବାକୁ ଦୁଇବର୍ଷ ଲାଗିଲା। ପୁଣି ୨ ବର୍ଷ ଉତାରୁ ଯାହା ବାହାରିଲା ତାହା ଭ୍ରମପରିପୂର୍ଣ୍ଣ।

ଆପଣଙ୍କର ଉତ୍କଳଭାଷାନୁରାଗ ସ୍ମରଣ କରି ମୁଁ ସମୟସମୟରେ ଆଶ୍ଚର୍ଯ୍ୟାନ୍ୱିତ ହୋଇଥାଏ। ସମଗ୍ର ଓଡ଼ିଶ୍ୟାରେ ଆପଣଙ୍କ ପରି ଯେବେ ୧୦୦ ଜଣ ଭାଷାନୁରାଗୀ ବ୍ୟକ୍ତି ଥାଆନ୍ତେ, ତାହାହେଲେ ଉତ୍କଳ ଭାଷା ଉନ୍ନତିମାର୍ଗରେ ବହୁଦୂର ଅଗ୍ରସର ହୋଇ-ଥାଆନ୍ତା।

ପ୍ରଣତ
ଶ୍ରୀ ରାଧାନାଥ ରାୟ।

(ଚ)
ଶ୍ରୀ ହରିଃ ଶରଣମ୍
କଟକ, ୨୦।୪।୧୮୯୬

ସପ୍ରଣାମ ନିବେଦନମିଦଂ –
ପରମ ଭକ୍ତିଭାଜନ ମହୋଦୟ!

ଆପଣଙ୍କ ଅନୁଗ୍ରହଲିପି ପାଇ ଆପ୍ୟାୟିତ ହେଲି। 'ମହାଯାତ୍ରା' ପାଠକରି ଆପଣଙ୍କ ପରି ଓଡ଼ିଶାର ଅନ୍ୟାନ୍ୟ ଅନେକ ସାହିତ୍ୟରସିକ ମହାତ୍ମା ମଧ୍ୟ ସନ୍ତୋଷ ପ୍ରକାଶ କରିଅଛନ୍ତି। ପକ୍ଷାନ୍ତରେ କେହି କେହି ପୁସ୍ତକକୁ ଆକ୍ରମଣ କରିବାକୁ ଏବଂ ସମ୍ବାଦପତ୍ରରେ ଲେଖକଙ୍କୁ ଆକ୍ଷେପ କରିବା ସକାଶେ ମଧ୍ୟ ଉଦ୍ୟତ ହୋଇଅଛନ୍ତି। ସଂସାରରେ, ବିଶେଷତଃ ସାହିତ୍ୟ ସଂସାରରେ ଏହା ସଚରାଚର ଘଟୁଥିବା ଦେଖାଯାଏ। ଏପରି ଆକ୍ରମଣ ସହିବାରେ ମୁଁ ଚିରାଭ୍ୟସ୍ତ।

ଓଡ଼ିଶାରେ ଆପଣଙ୍କ ପରି ସାହିତ୍ୟସେବକ ଯେବେ ଅଧିକ ଥାଆନ୍ତେ, ତାହାହେଲେ ଆଜିପର୍ଯ୍ୟନ୍ତ ଉତ୍କଳ ସାହିତ୍ୟର ଏପରି ଦୁର୍ଦ୍ଦଶା ନ ଥାନ୍ତା, ପୂ[illegible]ା ଗ୍ରାହକଙ୍କ ସଂଖ୍ୟା ଅଧିକ ହେଉଅଛି ସନ୍ଦେ[illegible]ହିଁ। ପୁଣି ଗ୍ରାହକଙ୍କ ସଙ୍ଗେ ସଙ୍ଗେ ଆକ୍ରମଣକାରୀ ସଂଖ୍ୟା ମଧ୍ୟ ବଢୁଥିବା ଦେଖାଯାଏ।

ଆପଣ କାଶରୋଗରୁ ବର୍ତ୍ତମାନ ସମ୍ପୂର୍ଣ୍ଣ ମୁକ୍ତିଲାଭ କରିଅଛନ୍ତି କି? ଆପଣଙ୍କର ଶିରୋରୋଗ ଉପଶମ ହୋଇଅଛି କି?

ମୁଁ ଶାରୀରିକ କୁଶଳରେ ଅଛି। ଅବକାଶମତେ ଉତ୍ତର ପ୍ରେରଣକରି ଆପ୍ୟାୟିତ କରାଇବାହେବେ।

ଆପଣଙ୍କର ସ୍ନେହକ୍ରୀତ
ଶ୍ରୀ ରାଧାନାଥ ରାୟ।

(ଛ)
ଶ୍ରୀ ହରିଃ ଶରଣମ୍
ଲକ୍ଷ୍ମଣନାଥ, ୧୬।୨।୧୮୯୭

ସପ୍ରଣାମ ନିବେଦନମିଦଂ –
ଶ୍ରଦ୍ଧେୟ ମହୋଦୟ!

ପାର୍ସେଲ୍‌ରେ ଆପଣଙ୍କ ନିକଟକୁ ଅତିଶୀଘ୍ର ଶଙ୍ଖଆଳୁ ପଠାଇବି। ପ୍ରାପ୍ତି ମାତ୍ରେ ତାହାର ବକ୍‌କଳ ଛଡ଼ାଇ ତାହା ବ୍ୟବହା[illegible] କରିବା ହେବେ। କେବଳ ନଖ କିମ୍ବା ଦନ୍ତଦ୍ୱାରା ବକ୍‌କଳ ବାହାରିଯାଏ। ଅଧିକ ଖାଇବା ଉଚିତ ନୁହେ। ହେତୁ କି, ତରଭୁଜ ଏବଂ ଅନ୍ୟାନ୍ୟ କଞ୍ଚାଫଳ ଯେପରି ଗୁରୁପାକ, ଶଙ୍ଖଆଳୁ

ମଧ ସେହିପରି। ମୋ ଜାଣିବାରେ ଶଙ୍ଖଆଳୁ ପରି ଉପାଦେୟ କନ୍ଦ ସଂସାରରେ ଅତି ବିରଳ। ଏହାର ଗୋପଣରେ ମଧ୍ୟ ଅଧିକ ଯତ୍ନ ଆବଶ୍ୟକ ନାହିଁ। ବାଡ଼ ନିକଟରେ କେବଳ ଯଥାସମୟରେ ମଞ୍ଜି ପୋତିଦେଲେ ହେଲା। ରୀତିମତ ଚାଷକଲେ ଆହୁରି ଭଲ ହେବ। ମାତ୍ର ତାହା କରିବାର ବର୍ତ୍ତମାନ ଆବଶ୍ୟକ ନାହିଁ। ମୁଁ ଆଳୁର ମଞ୍ଜି ମଧ ଶୀଘ୍ର ପଠାଇବି। ଆପଣ ଯତ୍ନପୂର୍ବକ "ପୋକତୁଙ୍ଗୀରେ" ଏହି ଉପାଦେୟ କନ୍ଦର ପ୍ରଚାର କରାଇବା ହେବେ।

ପ୍ରଣତ

ଶ୍ରୀ ରାଧାନାଥ ରାୟ

(ଜ)

ଶ୍ରୀ ହରିଃ ଶରଣମ୍

ହୁଗୁଳି, ୩।୨।୧୯୦୧

ପ୍ରଣତିପୂର୍ବକ ନିବେଦନମିଦଂ—

ଶ୍ରଦ୍ଧେୟ ମହୋଦୟ!

ଓଡ଼ିଶ୍ୟାରୁ ମୁଁ ବହୁଦିନ ଦେଶାନ୍ତରିତ ଏବଂ ଓଡ଼ିଶ୍ୟାରେ ବିସ୍ମୃତ ହୋଇ ସୁଦ୍ଧା ଓଡ଼ିଶାକୁ ଏବଂ ଆପଣମାନଙ୍କୁ ବିସ୍ମୃତ ହୋଇନାହିଁ। ଓଡ଼ିଶ୍ୟାରେ ମୋହର ଅସଂଖ୍ୟ ବନ୍ଧୁ ଅଛନ୍ତି; ମାତ୍ର ଆପଣଙ୍କ ପରି ପ୍ରକୃତ ଅନିବନ୍ଧନ ବନ୍ଧୁଙ୍କ ସଂଖ୍ୟା ମୁଷ୍ଟିମେୟ। ମାତ୍ର ସଂସାରରେ ସର୍ବତ୍ର ଏହି ରୀତି।

ଏ ଅଞ୍ଚଳକୁ ପରିବର୍ତ୍ତିତ ହୋଇ ମୋହର ଅସୁବିଧା ଅପେକ୍ଷା ସୁବିଧା ବରଂ ଅଧିକ ହୋଇଅଛି। ମାତ୍ର ମୋହର ସ୍ୱାସ୍ଥ୍ୟ ପୂର୍ବେ ଯେପରି ଥିଲା, ବର୍ତ୍ତମାନ ମଧ ସେହିପରି। ପ୍ରାୟ ୪-୫ ବର୍ଷ ପୂର୍ବେ ମୁଁ କାର୍ଯ୍ୟରୁ ଅବସୃତ ହେବାର ସଙ୍କଳ୍ପ କରିଥିଲି। ବର୍ତ୍ତମାନ ମଧ ସେହି ସଙ୍କଳ୍ପ।

ରେଳ ଯୋଗୁଁ ଏ ପ୍ରବାସ ପ୍ରବାସ ପରି ବୋଧ ହେଉନାହିଁ। ଢେଙ୍କାନାଳରୁ କଟକ ଯିବା ଅପେକ୍ଷା ଏଠାରୁ କଟକ ଯିବା ସହଜ। ଏଠାରୁ କଟକ ୧୫ ଘଣ୍ଟାର ମାର୍ଗମାତ୍ର।

ଆପଣଙ୍କ ଶାରୀରିକ କୁଶଳସମ୍ବାଦ ଲେଖି ଆପ୍ୟାୟିତ କରିବା ହେବେ। ଆପଣଙ୍କ ପିତୃଦେବଙ୍କୁ ମୋହୋର ପ୍ରଣାମ ଜଣାଇବାହେବେ।

ପ୍ରଣତ

ଶ୍ରୀ ରାଧାନାଥ ରାୟ

(ଝ)

ଶ୍ରୀ ହରିଃ ଶରଣମ

ହୁଗୁଳି, ୯।୨।୧୯୦୧

ସପ୍ରଣାମ ନିବେଦମିଦଂ—

ପରମ ଶ୍ରଦ୍ଧେୟ ମହୋଦୟ!

ଗତକାଲି ଆପଣଙ୍କର ଖଣ୍ଡିଏ କାର୍ଡ଼ ପାଇଲି। ଅଳ୍ପଦିନ ପୂର୍ବେ ମୁଁ ମଧ ଆପଣଙ୍କୁ ଖଣ୍ଡିଏ କାର୍ଡ଼ ଲେଖିଥିଲି। ସେ କାର୍ଡ଼ ଆପଣ ପାଇ ପତ୍ର ଲେଖିଅଛନ୍ତି, କିମ୍ବା ସ୍ୱତଃପ୍ରବୃତ୍ତ ଭାବରେ ଲେଖିଅଛନ୍ତି, ଆପଣଙ୍କ କାର୍ଡ଼ରୁ ତାହା ବୁଝି ପାରିଲି ନାହିଁ। ଅନୁଗ୍ରହପୂର୍ବକ ଏ ବିଷୟରେ ମୋହୋର ସନ୍ଦେହ ଭଞ୍ଜନ କରିବାହେବେ। ସ୍ୱାସ୍ଥ୍ୟଭଙ୍ଗ ହେତୁରୁ ମୋହୋର ଅଧିକ ଦିନ କାର୍ଯ୍ୟ କରିବାର ଇଚ୍ଛା ନାହିଁ। ମାତ୍ର କାର୍ଯ୍ୟ କରିବାକୁ ହେଲେ ଓଡ଼ିଶ୍ୟା ଅପେକ୍ଷା ଏ ବିଭାଗରେ ସୁବିଧା ଅନେକ ଥିବା ବୋଧହୁଏ। ଏ ବର୍ଷ ମୁଁ ଗସ୍ତରେ ଯେତେ ସମୟ ଦେଇଅଛି, ଓଡ଼ିଶ୍ୟାରେ ଏପରି ପ୍ରାୟ କେବେ ହୋଇ ନ ଥିଲା। ଏ ଅଞ୍ଚଳରେ ନାନାପ୍ରକାର ଯାନ ସୁଲଭ। ଗସ୍ତରେ ବାହାରିଲେ ପୂର୍ବରୁ କୌଣସି ପ୍ରକାର ବନ୍ଦୋବସ୍ତର ଆବଶ୍ୟକତା ନାହିଁ।

ଶୁଣି ଆହ୍ଲାଦିତ ହେଲି ଯେ, ଓଡ଼ିଶ୍ୟାର ନୂତନ ଇନ୍‌ସ୍ପେକ୍ଟର ସାହେବ ଅତି ଅଳ୍ପଦିନ ମଧ୍ୟରେ ସାଧାରଣରେ ଏପରି ପ୍ରିୟ ହୋଇଅଛନ୍ତି ଯେ, ପୁରୀର ବ୍ରାହ୍ମଣ ପଣ୍ଡିତମଣ୍ଡଳୀ ମଧ ତାହାଙ୍କୁ ସ୍ଥାୟିତ୍ୱ ସକାଶେ ଗଭର୍ଣ୍ଣମେଣ୍ଟଙ୍କୁ ଆବେଦନ କରିଅଛନ୍ତି। ଦେଶ ଗ୍ରାହକ ହେଲେ ସଦ୍‌ଗୁଣର ଏପରି ସମାଦର ହୋଇଥାଏ।

ପ୍ରଣତ

ଶ୍ରୀ ରାଧାନାଥ ରାୟ

(ଞ)

ଶ୍ରୀ ହରିଃ ଶରଣମ୍

ଚୁଁଚୁଡ଼ା, ୧୮।୭।୧୯୦୧

ସପ୍ରଣାମନିବେଦନମିଦଂ—

ପରମସ୍ନେହାସ୍ପଦ ପଣ୍ଡିତ ମହାଶୟ!

ଆପଣଙ୍କ ଅନୁଗ୍ରହଲିପି ପାଇ ଆପ୍ୟାୟିତ ହେଲି। ପୂର୍ବ ପତ୍ର ସମ୍ବନ୍ଧରେ ଆପଣ ଯାହା ଲେଖିଅଛନ୍ତି, ତାହା ସମ୍ପୂର୍ଣ୍ଣ ସତ୍ୟ। ଶ୍ରଦ୍ଧାର ଆକର୍ଷଣ ଚୁମ୍ବକ ଆକର୍ଷଣ ପରି। ସେହି ଘଟନାରୁ ଏହା ସମ୍ପୂର୍ଣ୍ଣ ପ୍ରତିପନ୍ନ ହୋଇଅଛି।

ଚୌର୍ଯ୍ୟଦ୍ୱାରା ଆପଣଙ୍କ କ୍ଷତିର ସମ୍ବାଦରେ ଦୁଃଖିତ ହେଲି।

ମୋହର ବଙ୍ଗଳା "ଲେଖାବଳୀ" ଯେତେ ଶୀଘ୍ର ସମ୍ଭବ, ଉପହାରସ୍ୱରୂପ ଆପଣଙ୍କ ନିକଟକୁ ପ୍ରେରିତ ହେବ। ମୋହର ଓଡ଼ିଆ "ଗ୍ରନ୍ଥାବଳୀ" କଟକରେ ମୁଦ୍ରିତ ହେଉଅଛି, କେବେ ବାହାରିବ କହିପାରୁନାହିଁ।' ପ୍ରକାଶ ହେଲେ ଆପଣ ଅବଶ୍ୟ ଜାଣିପାରିବେ। ତାହା ଖଡ଼ିଆଳର ଯୁବରାଜଙ୍କ ବ୍ୟୟରେ ମୁଦ୍ରିତ ହେଉଅଛି।

ପୁନଶ୍ଚ ଆପଣଙ୍କ ପିତୃଦେବଙ୍କୁ ମୋହୋର ଭୂମିଷ୍ଠ ପ୍ରଣାମ ଜଣାଇବାହେବେ।

ପ୍ରଣତ
ଶ୍ରୀ ରାଧାନାଥ ରାୟ।

(ଟ)
ଶ୍ରୀ ହରିଃ ଶରଣମ୍
ଚୁଚୁଁଡ଼ା, ୨୨।୬।୧୯୦୨

ପ୍ରଣତିପୂର୍ବକ ନିବେଦନମିଦଂ–
ପରମ ଶ୍ରଦ୍ଧାସ୍ପଦ ମହାଶୟ !

ଆପଣଙ୍କର ଅନୁଗ୍ରହ କାର୍ଡ଼ ପାଇ ଆପ୍ୟାୟିତ ହେଲି। ଓଡ଼ିଶ୍ୟାରୁ ପ୍ରାୟ ୩ ବର୍ଷ ଅନ୍ତରିତ ହୋଇ ସୁଦ୍ଧା ଅଦ୍ୟାବଧି ମୋହର ସ୍ମୃତି ଆପଣମାନଙ୍କ ହୃଦୟରେ ଜାଗରୂକ ଥିବା ମୋ ପକ୍ଷରେ ଆଶାତୀତ ସୌଭାଗ୍ୟ ଅଟେ।

ମୋହୋର ମୟୂରଭଞ୍ଜ ଅବସ୍ଥାନର ଜନରବ ସମ୍ପୂର୍ଣ୍ଣ ଭିତ୍ତିହୀନ। ଏପରି ଜନରବ କାହିଁକି ପ୍ରଚାରିତ ହେଲା କହିପାରୁନାହିଁ।

ଅଳ୍ପଦିନ ପୂର୍ବେ ମୁଁ କଟକ ଯାଇଥିଲି। ସେଠାରେ ଆପଣଙ୍କର ଏବଂ ଆପଣଙ୍କ ପିତୃଦେବଙ୍କର କୁଶଳ ସମ୍ବାଦ ପାଇ ଆପ୍ୟାୟିତ ହୋଇଥିଲି।

ପ୍ରଣତ
ଶ୍ରୀ ରାଧାନାଥ ରାୟ।

(ଠ)
ଶ୍ରୀ ହରିଃ ଶରଣମ୍
ହୁଗୁଳି, ୨୧।୯।୧୯୦୩

ସପ୍ରଣାମ ନିବେଦନମିଦଂ –
ପଣ୍ଡିତ ମହାଶୟ !

ଅଦ୍ୟ ଡାକରେ "କାଳିଦାସ-ସ୍ମୃତ୍ରୟଃ" ଆପଣଙ୍କ ନିକଟକୁ ପଠାଇଲି। ଅନୁଗ୍ରହପୂର୍ବକ ପ୍ରାପ୍ତିସ୍ୱୀକାର କରିବାହେବେ।

ମୁଁ ଗୋଟିଏ କଥାରେ ଆପଣଙ୍କଠାରେ ଅପରାଧୀ ହୋଇଅଛି। ମୋହୋର "ଗ୍ରନ୍ଥାବଳୀ" ଛାପାହୋଇ-ଅଛି ସତ୍ୟ, ମାତ୍ର ମୁଁ ତାହାର ସ୍ୱତ୍ୱାଧିକାରୀ ନୁହେ ଏବଂ ମୋ ପାଖରେ ସେ ପୁସ୍ତକ ଖଣ୍ଡିଏ ସୁଦ୍ଧା ନାହିଁ। ଏହି ହେତୁରୁ ପଠାଇ ପାରିନାହିଁ।

ଚଳିତ ମାସ ୨୬-୨୭ ତାରିଖରେ ମୋହର କଟକ ଯିବାର ସଙ୍କଳ୍ପ ଅଛି।

ପ୍ରଣତ
ଶ୍ରୀ ରାଧାନାଥ ରାୟ।

(ଡ)
ଶ୍ରୀ ହରିଃ ଶରଣମ୍
କଟକ, ୭।୬।୧୯୦୫

ପ୍ରଣତିପୂର୍ବକ ନିବେଦନମିଦଂ –
ପରମଭକ୍ତିଭାଜନ ମହାଶୟ।

ଆପଣଙ୍କ କୃପାଲିପି ପାଇ ଉତ୍ତର ଦେବାରେ ବିଳମ୍ବ କରି ଅପରାଧୀ ହୋଇଅଛି। ମୋ ଅପରାଧ କ୍ଷମାକରିବେ।

ପ୍ରାୟ ଏକବର୍ଷରୁ ଅଧିକ ହେବ ମୁଁ ନିତାନ୍ତ ଅସୁସ୍ଥ ଅବସ୍ଥାରେ ସମୟ ଯାପନ କରୁଅଛି।

ମୋହୋର ମୟୂରଭଞ୍ଜ ଯିବାର ଜନରବ ଅମୂଳକ ଅଟେ। ମୋହୋର ବର୍ତ୍ତମାନ ଅବସ୍ଥାରେ ମୁଁ କାର୍ଯ୍ୟ କରିବାକୁ ଏକପ୍ରକାର ଅକ୍ଷମ।

ଆଶାକରେଁ, ଆପଣ ସପରିବାର କୁଶଳରେ ଅଛନ୍ତି।

ପ୍ରଣତ ସେବକ
ଶ୍ରୀ ରାଧାନାଥ ରାୟ।

(ଢ)
ଶ୍ରୀହରିଃ ଶରଣମ୍
କଟକ, ୧୫।୯।୧୯୦୭

ପ୍ରଣତିପୂର୍ବକ ନିବେଦନମିଦଂ –
ପରମ ଭକ୍ତିଭାଜନ ମହୋଦୟ !

ଆପଣଙ୍କ ଅନୁଗ୍ରହ ପତ୍ର ପାଇ ଆପ୍ୟାୟିତ ହେଲି। ପତ୍ରରୁ ବୋଧହେଲା, ମୋ ଜୀବନରେ କି ଭୟଙ୍କର ପରିବର୍ତ୍ତନ ଘଟିଅଛି, ତାହା ଆପଣ ଅବଗତ ନୁହନ୍ତି। ଆପଣ କି କୌଣସି ଓଡ଼ିଆ ସମ୍ବାଦପତ୍ର ନିଅନ୍ତି ନାହିଁ?

ନୂତନ ମଧ୍ୟରେ ମୁଁ କେବଳ "ସାବିତ୍ରୀଚରିତ" ଲେଖିଥିଲି। ସାହିତ୍ୟ କାଗଜରେ ତାହା ପ୍ରକାଶିତ ହୋଇଥିଲା। ସ୍ୱତନ୍ତ୍ର କୌଣସି ପୁସ୍ତକ ଲେଖିନାହିଁ; ଲେଖିଥିଲେ ଆପଣଙ୍କ ନିକଟକୁ ସର୍ବାଗ୍ରେ ପ୍ରେରଣ କରିଥାନ୍ତି।

ପ୍ରଣତ
ଶ୍ରୀ ରାଧାନାଥ ରାୟ।

**(୩) ଖୋର୍ଦ୍ଧା ବିଦ୍ୟାଳୟର ତତ୍କାଳୀନ ପ୍ରଧାନଶିକ୍ଷକ ମାଧବଚନ୍ଦ୍ର ମିଶ୍ରଙ୍କ ନିକଟକୁ ଲିଖିତ ପତ୍ର –**

କଟକ, ୨୧।୯।୧୮୯୮

ପ୍ରିୟତମ ମାଧବବାବୁ,

ଆପଣଙ୍କର ଦୁଇଖଣ୍ଡି ପତ୍ର ଏତେଦିନ ଅନୁତ୍ତରିତ ରଖି ଲଜ୍ଜିତ ଅଛି। ଅନବସର ଏବଂ ଅସୁସ୍ଥତା ବିଳମ୍ବର ପ୍ରଧାନ କାରଣ ଅଟେ। ଆଶାକରେଁ, ଆପଣ କ୍ଷମାକରିବେ।

କଟକରେ (ନର୍ମାଲ ସ୍କୁଲରେ) ଏବଂ ପୁରୀରେ ଯୋଡ଼ିଏ କାର୍ଯ୍ୟ ଖାଲି ହେବାର କଥା ଥିଲା। ପ୍ରଥମେ ଆପଣଙ୍କୁ କଟକକୁ ଆଣିବାର ସଙ୍କଳ୍ପ କରିଥିଲି। ଦୁର୍ଭାଗ୍ୟକ୍ରମେ କଟକର କାର୍ଯ୍ୟ ଖାଲି ହେଲାନାହିଁ। ପୁରୀ କାର୍ଯ୍ୟର ଅବଧି କୌଣସି Official intimation ଆସି ନାହିଁ। ସମ୍ଭବତଃ ଦିବ୍ୟସିଂହ ବାବୁ କାର୍ଯ୍ୟାନ୍ତର ଗ୍ରହଣର ସଙ୍କଳ୍ପ ପରିତ୍ୟାଗ କରିଅଛନ୍ତି। ବର୍ତ୍ତମାନ ତାହାଙ୍କର ବେତନ ୬୦ ଟଙ୍କା ହୋଇଅଛି। ୬୦ ଟଙ୍କା ପରିତ୍ୟାଗକରି ୫୦ ଟଙ୍କାକୁ ଯିବାର ସମ୍ଭବପର ବୋଧହେଉନାହିଁ। ସେ ଯାହାହେଉ, ଆପଣ ନିରୁତ୍ସାହ ହେବେନାହିଁ। ଆପଣ ଯେଉଁ ରୀତିରେ କାର୍ଯ୍ୟ କରୁଅଛନ୍ତି, ତାହା ଅତି ସନ୍ତୋଷପ୍ରଦ। ଭଲ କାର୍ଯ୍ୟ କଲେ ଆପଣ କଦାଚ ଉପେକ୍ଷିତ ହେବେନାହିଁ।

ପଣ୍ଡିତଙ୍କ କାର୍ଯ୍ୟପ୍ରତି ବିଶେଷ ଦୃଷ୍ଟି ରଖିବେ। ଦ୍ୱିତୀୟ ଶିକ୍ଷକ ନୂତନ ଲୋକ, ତାହାଙ୍କ କାର୍ଯ୍ୟପ୍ରତି ମଧ ଦୃଷ୍ଟି ରଖିବାର ଆବଶ୍ୟକ।

ନିମ୍ନ ଶ୍ରେଣୀମାନଙ୍କରେ Mental arithmetic ଏବଂ Local Geography ପ୍ରତି ବିଶେଷ ମନୋଯୋଗୀ ହେବାର ଆବଶ୍ୟକ। H.E. ସ୍କୁଲର ଛାତ୍ରମାନେ ସାମାନ୍ୟ ପଣକିଆଗତ ପ୍ରଶ୍ନର ଉତ୍ତର ଦେଇ ନ ପାରିବା ଲଜ୍ଜାର ବିଷୟ ନୁହେ କି? ଆପଣଙ୍କର ପରୀକ୍ଷାର ପ୍ରଶ୍ନ ଦେଖିଅଛି। ପ୍ରଶ୍ନ କଠିନ ହେଲେ କ୍ଷତି ନାହିଁ, କେବଳ ନମ୍ବର ଦେବା ସମୟରେ ଦେଶ କାଳ ପାତ୍ର ବୁଝି ଟିକିଏ ସଦୟ ଭାବରେ ନମ୍ବର ଦେବାର ବାଞ୍ଛନୀୟ। ଅତି ଦୟା, ଅତି ନିର୍ଦ୍ଦୟତା ଏ ଉଭୟର ସମଦୂରବର୍ତ୍ତୀ ହୋଇ ନମ୍ବର ଦେବା ହେବେ। ଆପଣଙ୍କ ଅପେକ୍ଷା ଯେମାନେ ବୟୋବୃଦ୍ଧ କିମ୍ବା ଅଧିକତର ବହୁଦର୍ଶୀ, ସେମାନଙ୍କପ୍ରତି ସର୍ବଦା ବିନୟମଧୁର ଶିଷ୍ଟାଚାର ପ୍ରଦର୍ଶନ କରିବା-ହେବେ। ଶିଷ୍ଟାଚାରରେ ସମସ୍ତେ ପ୍ରୀତି ହୁଅନ୍ତି ଅଥଚ ସେଥିରେ କୌଣସି ବ୍ୟୟ କିମ୍ବା କ୍ଷତିର ସମ୍ଭାବନା ନାହିଁ।

ଆପଣଙ୍କର
ଶ୍ରୀ ରାଧାନାଥ ରାୟ।

**(୪) ବାଲେଶ୍ୱର ଜିଲ୍ଲା ଦେହୁଡଦା ମାଇନର୍ ସ୍କୁଲର ପ୍ରଧାନଶିକ୍ଷକ ହୃଦୟଚନ୍ଦ୍ର ବସୁଙ୍କ ନିକଟକୁ ଲିଖିତ ବଂଗଳାପତ୍ରର ଓଡ଼ିଆ ଅନୁବାଦ –**

ଶ୍ରୀହରିଃ ଶରଣମ୍

କଟକ, ୮।୧୨।୧୮୯୩

ପ୍ରିୟ ହୃଦୟ,

ତୁମର ପତ୍ର ପାଇଁ ଅତ୍ୟଧିକ ଦୁଃଖିତ ହେଲି। ମୁଁ ପୂର୍ବ ପତ୍ରରେ ତୁମକୁ କିଭଳି ସମ୍ବୋଧନ କରିଥିଲି, ତାହା ମୋର ଆଦୌ ସ୍ମରଣ ନାହିଁ। ରାଶି ରାଶି ପତ୍ର ଲେଖିବାକୁ ହୁଏ। ଶିଷ୍ଟାଚାରରେ ଲେଶମାତ୍ର ତ୍ରୁଟି ଦେଖିଲେ ଅନେକେ ନାନା ପ୍ରକାର ଭ୍ରୂକୁଟି କରିଥାନ୍ତି, ଏଥିପାଇଁ ସମୟସମୟରେ ଅତିରିକ୍ତ ସାବଧାନତା ଅବଲମ୍ବନ କରିବାକୁ ହୁଏ। ହୁଏତ ତୁମକୁ ପତ୍ର ଲେଖିବାକୁ ଯାଇ ଅସ୍ଥାନରେ ଶିଷ୍ଟାଚାରର ଆଡ଼ମ୍ବର କରିଅଛି। ମୋ ମନରେ କିନ୍ତୁ ବାସ୍ତବିକ ସେଭଳି କୌଣସି ଭାବ ସ୍ଥାନପାଇନାହିଁ। ଆଶାକରେ, ତୁମେ ମୋର ଦୋଷ ଗ୍ରହଣ କରିବ ନାହିଁ। ସାକ୍ଷାତ୍ ହେଲେ ଏ ସମ୍ବନ୍ଧରେ ଅନ୍ୟାନ୍ୟ କଥା ହେବା।

ତୁମେ ଯେ କନ୍ୟାଟିର କଥା ଲେଖିଛ, ସେ ବାସ୍ତବିକ ଆମମାନଙ୍କର ଆତ୍ମୀୟା। ସେ ଆମର ପିଉସୀଙ୍କ ଝିଅ ଭଉଣୀର କନ୍ୟା। ଏହାର ମଙ୍ଗଳ ଅବଶ୍ୟ ଆମମାନଙ୍କର ବାଞ୍ଛନୀୟ। ସଂପ୍ରତି ନରେନ୍ଦ୍ର ଏବଂ ଚନ୍ଦ୍ରନାଥ ବାବୁ ଏହାର ଅଭିଭାବକସ୍ଥାନୀୟ। ବିଶେଷତଃ ନରେନ୍ଦ୍ର ଓ ମହେନ୍ଦ୍ରବାବୁ ବାଲ୍ୟାବଧି ଏହାକୁ ପ୍ରତିପାଳନ କରିଆସିଅଛନ୍ତି।

ସମ୍ଭବତଃ ଆଗାମୀ ମାସେ ମୁଁ ଦେହୁଡ଼ଦାକୁ ଯିବି।

ତୁମର
ଶ୍ରୀ ରାଧାନାଥ ରାୟ

**(୫) ନୀଳମଣି ବିଦ୍ୟାରତ୍ନଙ୍କୁ ଲେଖିଥିବା ଚିଠିର ଅଂଶବିଶେଷ –**

"ଲୋକଠାରୁ ମୁଁ ଶୁଣିଲି ଯେ, ଆପଣମାନେ ଗୋଟିଏ ପ୍ରକାଶ୍ୟ ସଭା କରି ସେହି ସଭାରେ ମୋତେ ସମ୍ମାନ ପ୍ରଦର୍ଶନ କରିବାର ସଙ୍କଳ୍ପ

କରିଅଛନ୍ତି। ଆହୁରି ମଧ ଶୁଣିଲି ଯେ, ସେହି ଉପଲକ୍ଷରେ କୌଣସି ଧନିକ ଗୋଟିଏ ସୁବର୍ଣ୍ଣ ଲେଖନୀ ଉପହାର ଦେବେ। ଏ ସମ୍ବାଦ ଯେବେ ଅମୂଳକ ହୁଏ, ତାହାହେଲେ ମୋହୋର କିଛି ବକ୍ତବ୍ୟ ନାହିଁ, ମାତ୍ର ଯେବେ ସମୂଳକ ହୋଇଥାଏ, ମୋହୋର ଦୃଢ଼ ଅନୁରୋଧ, ଏ ଉଦ୍ୟମର ସୂତ୍ରପାତ ପୂର୍ବରୁ ମୋହ ସହିତ ଏ ବିଷୟରେ ପରାମର୍ଶ କରି ମୋହୋର ମତ ବୁଝି ଅଗ୍ରସର ହେବେ। ଧନିକଙ୍କର ରୀତିଗତି ମୁଁ ଉତ୍ତମରୂପେ ଅବଗତ। ଏପରି ସଙ୍କଳ୍ପ ଯେବେ ତାହାଙ୍କ ମନରେ ସ୍ଥାନ ପାଇଥାଏ, ତାହା ସ୍ୱତଃଉଦ୍ଭୂତ ନୁହେ, ଆରୋପିତ ମାତ୍ର, ସୁତରାଂ କୃତ୍ରିମ। ବୋଲିବାର ବାହୁଲ୍ୟ ମୁଁ ଏପରି କୃତ୍ରିମ ସମ୍ମାନର ପ୍ରୟାସୀ ନୁହେ।

ଗୋଟିଏ ସୁବର୍ଣ୍ଣ ଲେଖନୀର ମୂଲ୍ୟ ଅଧିକ ନୁହେ, ଟ୨୫-୩୦ଙ୍କା ମାତ୍ର। ମୁଁ ମଧ ଇଚ୍ଛାକଲେ ସେପରି ଉପହାର ଦେଇପାରେ। ମୁଁ ଶୁଣିଅଛି, ଧନିକ ଲକ୍ଷ ଲକ୍ଷ ଟଙ୍କା ବିଦେଶୀୟ ସେବାରେ ବ୍ୟୟ କରିଅଛନ୍ତି, ବର୍ତ୍ତମାନ ମଧ କରୁଅଛନ୍ତି। ମୁଁ ମଧ ଏହା ଶୁଣିଅଛି ଯେ ଏହି ହେତୁରୁ ସେ ଋଣଭାରାକ୍ରାନ୍ତ ହୋଇଅଛନ୍ତି। ସେ ଯେଉଁ ବ୍ରତ ଧାରଣ କରିଅଛନ୍ତି, ସେହି ବ୍ରତ ଉଦ୍‌ଯାପନ କରନ୍ତୁ, ଏଭଳି ଶୂନ୍ୟଗର୍ଭ ବିଷୟରେ ତାହାଙ୍କୁ ପ୍ରବର୍ତ୍ତିତ କରିବା ଅନୁଚିତ।

ଅଳ୍ପ ଟଙ୍କାରେ ଲୋକଚକ୍ଷୁରେ ଗୋଟିଏ ଚଟକ ଲଗାଇବାର ଏବଂ ଶସ୍ତାରେ ନାମ କିଣିବାର ଯେବେ ତାହାଙ୍କର ଅଭିପ୍ରାୟ ଥାଏ, ତେବେ ଅପର କୌଣସି ବ୍ୟକ୍ତିଙ୍କୁ ସେପରି ସମ୍ମାନ ପ୍ରଦର୍ଶନ କରନ୍ତୁ। ମୁଁ ମଧ ସେହିପରି ସଭାରେ ଯୋଗ ଦେବାକୁ ପ୍ରସ୍ତୁତ ଅଛି। ମାତ୍ର ନିଜ ସମ୍ବନ୍ଧରେ ଏପରି ବିଷୟରେ ମୁଁ ସମ୍ମତି ଦେବାକୁ ପ୍ରସ୍ତୁତ ନୁହେ। ତାହାଙ୍କର ଯେବେ ମୋହୋପ୍ରତି ଶ୍ରଦ୍ଧାଥାଏ, ଅବସରମତେ ମୁଁ ଗଲେ, ସେ ମୋତେ ପ୍ରାକୃତିକ ଦୃଶ୍ୟ ଦର୍ଶନର ସୁବିଧା କରିଦେଲେ ମୁଁ ଆପଣାକୁ ଯଥେଷ୍ଟ ସମ୍ମାନିତ ଏବଂ ଉପକୃତ ମଣିବି। ଏହାର ଅଧିକ କିଛି କରିବାର ଅନାବଶ୍ୟକ।''

(୬) ମେଦିନୀପୁର ଜିଲ୍ଲାର ନୟାବସାନ ମଧ ଇଂରାଜୀ ବିଦ୍ୟାଳୟର ହେଡ୍‌ପଣ୍ଡିତ ବଳରାମ ନାୟକଙ୍କୁ ଲିଖିତ ପତ୍ର –

ପ୍ରିୟ ବଳରାମ,

କଟକ ନର୍ମାଲ୍ ସ୍କୁଲର ଛାତ୍ର ବଙ୍ଗବିଦ୍ୟାଳୟରେ ବିଶେଷତଃ ମଧ୍ୟମଶ୍ରେଣୀୟ ବଙ୍ଗ ବିଦ୍ୟାଳୟରେ ବଙ୍ଗଳା ଅଧ୍ୟାପନ କରୁଥିବାର ଏକମାତ୍ର ତୁମ୍ଭଙ୍କୁ ଜାଣି ଅତୀବ ଆହ୍ଲାଦିତ ହେଲି। ଏହା ତୁମ୍ଭର ବିଚକ୍ଷଣତାର ପରିଚାୟକ। ତୁମ୍ଭ ସ୍କୁଲକୁ ପରିଦର୍ଶନାର୍ଥ ଯିବାକୁ ମୋତେ ଲେଖିଅଛ; କିନ୍ତୁ ଏ ଅଞ୍ଚଳରେ ଏଣ୍ଟ୍ରାନ୍‌ସ ସ୍କୁଲ ସଂଖ୍ୟା ଏତେ ଅଧିକ ଯେ, ସେଗୁଡ଼ିକ ଦେଖିବାକୁ ସମୟର ଅଭାବ। ଆଶା କରେଁ, ଭଲଅଛ।

। ଇତି।

ତୁମ୍ଭର

ରାଧାନାଥ

(୭) ପୁତ୍ର ଶଶିଭୂଷଣଙ୍କୁ ଲିଖିତ ବଙ୍ଗଳାପତ୍ରର ଓଡ଼ିଆ ଅନୁବାଦ –

କଲିକତା, ୭।୨।୧୯୦୦

ମଧୁ,

ହଠାତ୍ ଏ ରୂପ ପରିବର୍ତ୍ତନର ଆଦେଶ ଆସିବ ଏହା ସ୍ୱପ୍ନରେ ବି ମୁଁ ଭାବିନଥିଲି। ତିନି ଜଣଙ୍କ ପ୍ରତି ଏକସମୟରେ ଗୋଟିଏ ଆଦେଶ ପ୍ରେରିତ ହୋଇଛି, ସୁତରାଂ କୌଣସିପ୍ରକାର ଆପତ୍ତି ସଙ୍ଗତ କିମ୍ବା ଶୋଭନୀୟ ହେବନାହିଁ।

ତୁମ୍ଭର ମା' ମୋହ ସଙ୍ଗରେ ଆସିଥିବାରୁ ମୁଁ ନିତାନ୍ତ ବିବ୍ରତ ହୋଇପଡ଼ିଅଛି। ତାହାଙ୍କର କୌଣସି ଦୋଷ ନାହିଁ; କାରଣ କେହି ଭାବୀଜ୍ଞ ନୁହନ୍ତି।

ରଘୁବାବୁଙ୍କୁ Permanent advance ଦେବାପାଇଁ ମୁଁ ବକ୍ରବାବୁଙ୍କୁ ପତ୍ର ଲେଖିଅଛି। ଏହି ପତ୍ରର ସହିତ ଡିରେକ୍ଟରଙ୍କ ଟେଲିଗ୍ରାମ ପଠାଇଅଛି।

ଏହି ପତ୍ର ପ୍ରାପ୍ତିମାତ୍ରେ ବସାର ଅଫିସରେ ଯେତେଗୁଡ଼ିଏ ଛପା ରିପୋର୍ଟ ଅଛି ଏବଂ ମୋହୋର ପୁରାତନ Diary ବହିଗୁଡ଼ିକ ଅଛି, ସେ ସମସ୍ତ ଯତ୍ନପୂର୍ବକ ସଂଗ୍ରହକରି ବ୍ରଜବାବୁଙ୍କୁ ଦେବ। ସମସ୍ତ ବହିର ଖଣ୍ଡିଏ ତାଲିକା କରି ଏଥିରେ ତାହାଙ୍କର ପ୍ରାପ୍ତିସ୍ୱୀକାର କରିନେବ। Diary ବହିଗୁଡ଼ିକ ସମ୍ଭବତଃ ବିଶୃଙ୍ଖଳଭାବରେ ପଡ଼ିଅଛି। ସମସ୍ତ ମିଳି ନ ପାରେ। ଯାହା ମିଳିଯିବ ସେଗୁଡ଼ିକ ବ୍ରଜବାବୁଙ୍କୁ ଦେବ। ଏଗୁଡ଼ିକ କିଛି ବଡ଼ ବେଶି important record ନୁହେଁ।

ବାଲେଶ୍ୱର . ଏବଂ ପୁରୀ ଜିଲ୍ଲା ସ୍କୁଲ ଏବଂ କଟକ ନର୍ମାଲ୍ ସ୍କୁଲରୁ ମୁଁ ଯେଉଁ ଯେଉଁ ବହି ଅଣାଇଥିଲି, ସେଗୁଡ଼ିକ ବିଶ୍ୱାସୀ ଲୋକହାତରେ କିମ୍ବା ଡାକରେ ଫେରସ୍ତକରିଦେବ ଏବଂ reply card ପଠାଇ ହେଡ୍‌ମାଷ୍ଟରଗଣଙ୍କର ପ୍ରାପ୍ତିସ୍ୱୀକାର ଅଣାଇବ।

ଅଫିସ୍‌ର ଗୋଟିଏ ଘଣ୍ଟା (Call bell) ବସାରେ ଅଛି, ବ୍ରଜବାବୁଙ୍କୁ ଦେବ। ଏଠାରେ ମୋହ ପାଖରେ ଯେଉଁ ଯେଉଁ report ପ୍ରଭୃତି ଅଛି ଏବଂ ବ୍ୟାଗ ଏବଂ କମ୍ବଳ ଅଛି, ତୁମର ମାଙ୍କ ସହ ଅଥବା ଲୋକନାଥର ହାତରେ ପଠାଇବି।

ମନିର ଉଦ୍ଧୀରେ ୨୦ ଟଙ୍କା ବାଳକୃଷ୍ଣବାବୁଙ୍କୁ ଦେବ। ବାକୀ ତାହାର ସୁଧ ସହିତ କେତେ ଟଙ୍କା ହେଲା ତାହା ବୁଝି ବ୍ୟାକରଣର ପଣରୁ ଏହି ଟଙ୍କା ଆଦାୟ କରିଦେବ। ମନିର ସୁବିଧା ହେଲେ ଟଙ୍କା ଦେବ। ଆମ୍ଭର ତାହାକୁ ତାଗିଦା କରିବା ଅନୁଚିତ। ବ୍ୟାକରଣ ରଚନା ସମୟରେ ସେ ଆମ୍ଭଙ୍କୁ ବହୁ ସାହାଯ୍ୟ କରିଥିଲା, ଏହା ସ୍ମରଣରେ ରଖିଥିବ।

ତୁମର ମା'ଙ୍କୁ ମୁଁ ହରନାଥର ସମଭିବ୍ୟାହାରରେ ପଠାଇଦେବି କିମ୍ବା ହୁଗୁଳୀରେ charge ନେବାପରେ ଏକ ସପ୍ତାହର casual leave ନେଇ ସ୍ୱୟଂ ତାହାଙ୍କୁ କଟକରେ ଛାଡ଼ି ଆସିବି।

ଅଫିସରେ ସମସ୍ତଙ୍କୁ ମୋହର ସ୍ନେହ ସମ୍ଭାଷଣ ଜଣାଇବ। ସମସ୍ତେ ଆମ୍ଭ ପ୍ରତି ଆସ୍ଥା ଓ ଆମ୍ଭର ବିପଦରେ ସହାନୁଭୂତି ଦେଖାଇଥିଲେ। ସମସ୍ତଙ୍କୁ ଆମ୍ଭ ହୃଦୟର ଧନ୍ୟବାଦ ଜଣାଇବ। ଜେନାକୁ କହିବ ଯେ ତାହାର ଋଣ ମୁଁ ଏ ଜୀବନରେ ପରିଶୋଧ କରି ପାରିବି ନାହିଁ। ଜେନା ରୋରୁଦ୍ୟମାନ ମୁଖରେ ଆମ୍ଭମାନଙ୍କୁ ବିଦାୟ ଦେଇଥିଲା। ତାହାକୁ କହିବ ଯେ ମୁଁ ଅଶ୍ରୁଅଭିଷିକ୍ତ ନେତ୍ରରେ ଏଇ ପଂକ୍ତି-ଗୁଡ଼ିକ ଲେଖିଅଛି।

କାଲି Conference ଆରମ୍ଭ ହେବ— ବଡ଼ ବ୍ୟସ୍ତ ଅଛି। ଅବକାଶ ଦେଖି ପରେ ପତ୍ର ଦେବି।

ରଜନୀକୁ କହିବ ଯେ ତାହାର ଉପରେ ଆମ୍ଭର ଭାବୀ ଆଶା ନ୍ୟସ୍ତ। ସର୍ବାଗ୍ରେ ସ୍ୱାସ୍ଥ୍ୟପ୍ରତି ଦୃଷ୍ଟିରଖି ପଢ଼ାଶୁଣାରେ ମନୋଯୋଗୀ ହେବ। ରଜନୀ ଭଳି ସୁବୋଧ ପୁତ୍ରକୁ ଏଭଳି ଉପଦେଶ ଦେବା ବାହୁଲ୍ୟ।

ମୁଁ କଟକ ପରିତ୍ୟାଗ ପୂର୍ବରୁ ସମସ୍ତ ଭଦ୍ର-ଲୋକଙ୍କର ଘରକୁ ଯାଇ ବିଦାୟ ନେଇ ଆସିବି ବୋଲି ମନେକରିଥିଲି, ଏଭଳି ଅଦ୍ଭୁତ ବଦଳି ହେବାରୁ ଆମ୍ଭର ସେହି ସଙ୍କଳ୍ପ ଚରିତାର୍ଥ ହେଲାନାହିଁ।

ଆର୍ତ୍ତ ଏବଂ ହରିଚରଣ ବାବୁଙ୍କୁ ଆମ୍ଭର ସ୍ନେହ ସମ୍ଭାଷଣ ଜଣାଇବ। ଲକ୍ଷ୍ମଣଙ୍କୁ ଆମ୍ଭର ଆଶୀର୍ବାଦ ଜଣାଇବ।

ଶ୍ରୀ ରାଧାନାଥ ରାୟ।

(୮) ଆଠଗଡ଼ ସ୍କୁଲର ପଣ୍ଡିତ ପୀତାମ୍ବର ପ୍ରହରାଜଙ୍କ ନିକଟକୁ ଲିଖିତ ପତ୍ର—

କଟକ, ୧୮।୩।୧୮୯୫

ସପ୍ରଣାମ ନିବେଦନମିଦଂ—

ପ୍ରିୟ ପୀତାମ୍ବର,

ତୁମ୍ଭର ପତ୍ର ପାଇ ସମସ୍ତ ଅବଗତ ହେଲି। ତୁମ୍ଭ ସମ୍ବନ୍ଧରେ ମୋହୋର ମନ୍ତବ୍ୟ ମୁଁ ଆଠଗଡ଼ ସ୍କୁଲର ଦର୍ଶକ ପୁସ୍ତକରେ ଲେଖିଅଛି। ଆଠଗଡ଼ାଧୀଶ୍ୱର ମହୋଦୟଙ୍କୁ ଅଧିକ ଲେଖିବାର ଅନାବଶ୍ୟକ। ଯେବେ ଆବଶ୍ୟକ ମନେକର, ମୁଁ ଲେଖିବାକୁ ପ୍ରସ୍ତୁତ ଅଛି।

ତୁମ୍ଭର ସର୍ବଦା ସାହିତ୍ୟଚର୍ଚ୍ଚା କରିବାର ଉଚିତ। ଓଡ଼ିଆ ସମ୍ବାଦପତ୍ର ମଧ୍ୟରେ 'ସମ୍ବଲପୁର ହିତୈଷିଣୀ' ତୁମ୍ଭର ନିୟମିତରୂପେ ପଢ଼ିବାର ଉଚିତ। ହେତୁ କି ସାହିତ୍ୟର ଆଲୋଚନା ହିତୈଷିଣୀରେ ଯେପରି ହୁଏ, ଅନ୍ୟ କୌଣସି ଉତ୍କଳୀୟ ପତ୍ରିକାରେ ସେପରି ହୁଏ ନାହିଁ।

ଏହି ପତ୍ର ସହିତ ତୁମ୍ଭର ପ୍ରାର୍ଥିତ ପ୍ରଶଂସାପତ୍ର ପଠାଇଲି।

ତୁମେ ଯେଉଁ ଠିକଣାକୁ ଏହା ପଠାଇବା ସକାଶେ ଅନୁରୋଧ କରିଥିଲ, ନାନା କାରଣରୁ ତାହା କରିବାକୁ ସ୍ୱଭାବତଃ ପ୍ରବୃତ୍ତି ହେଲାନାହିଁ।

ଏ ପ୍ରଶଂସାପତ୍ର ଦ୍ୱାରା ସମୟରେ ତୁମ୍ଭର ଉପକାର ହେଲେ ହୋଇପାରେ। ମାତ୍ର ଆଠଗଡ଼ର ବର୍ତ୍ତମାନ ଅବସ୍ଥାରେ ଏପରି ସହସ୍ର ସାର୍ଟିଫିକେଟ ଦ୍ୱାରା କୌଣସି ଶ୍ରେୟଃ ଲାଭର ସମ୍ଭାବନା ନାହିଁ।

ତୁମ୍ଭର

ଶ୍ରୀ ରାଧାନାଥ ରାୟ

(୯) ତତ୍କାଳୀନ କଟକ ଫିମେଲ୍ ଅର୍ଫାନେଜ୍‌ର ପଣ୍ଡିତ ଚିନ୍ତାମଣି ଦାସଙ୍କ ନିକଟକୁ ଲିଖିତ ପତ୍ର—

କଲିକତା, ୯।୧।୧୯୦୦

ପ୍ରିୟତମ ଚିନ୍ତାମଣି,

ମୁଁ ଏଠାକୁ ଆସି ଏହି ମାର୍ଗରେ ନୂତନ କାର୍ଯ୍ୟର ଚାର୍ଜ ନେବାକୁ ଆଦିଷ୍ଟ ହୋଇଅଛି। ଏ କଥା ପୂର୍ବରୁ ଜାଣିଥିଲେ ମୋହୋର ପରମହିତୈଷିଣୀ ଦୟାଶୀଳା ଉଦାରହୃଦୟା ଶ୍ରୀମତୀ ମିସ୍‌ଲି ଏବଂ ଶ୍ରୀମତୀ ମିସ୍ ଟମ୍‌ସନ୍ ମହୋଦୟାଙ୍କ ସହିତ ସାକ୍ଷାତ୍

କରି ସେମାନଙ୍କର ଆଶୀର୍ବାଦ ଗ୍ରହଣକରି ବିଦାୟ ହୋଇ ଆସିଥାଛି ।

ତୁମ୍ଭଙ୍କୁ ମୋହୋର ଅନୁରୋଧ ଯେ, ଏହି ପତ୍ର ପ୍ରାପ୍ତିମାତ୍ରେ ତୁମ୍ଭେ ଅନୁଗ୍ରହପୂର୍ବକ ଉକ୍ତ ମହୋଦୟା ଏବଂ ପରମଭକ୍ତିଭାଜନ ପୂଜନୀୟ ଶ୍ରୀଯୁକ୍ତ ବେଲି ଏବଂ ଭୟଂସାହେବ ମହୋଦୟଙ୍କ ସହିତ ସାକ୍ଷାତ୍ କରି ମୋହୋର ବିନୀତ ଏବଂ ଭକ୍ତିପୂର୍ଣ୍ଣ ଅଭିବାଦନ ଜଣାଇବ ଏବଂ କହିବଯେ ସେମାନଙ୍କର ଦୟା ଦାକ୍ଷିଣ୍ୟ ଚିରଦିନ ସକାଶ ମୋହୋ ମନରେ ମୁଦ୍ରିତ ରହିଲା ।

ବର୍ତ୍ତମାନ ମୁଁ କାର୍ଯ୍ୟରେ ଏପରି ବ୍ୟସ୍ତ ଯେ ନିଶ୍ୱାସ ନେବାର ସମୟ ନାହିଁ । ଏହି ହେତୁରୁ ବର୍ତ୍ତମାନ ମୁଁ ଉକ୍ତ ମହୋଦୟା ଏବଂ ମହୋଦୟମାନଙ୍କୁ ପତ୍ର ଲେଖିବାକୁ ଅକ୍ଷମ ।

ଶ୍ରୀମତୀ ମିସ୍ ରେ ମହୋଦୟାଙ୍କୁ ମଧ ପତ୍ରଦ୍ୱାରା ମୋହର ଅଭିବାଦନ ଜଣାଇବ ।

ତୁମ୍ଭର
ଶ୍ରୀ ରାଧାନାଥ ରାୟ ।

(୧୦) କଟକ ମ୍ୟୁନିସିପାଲିଟିର କମିଶନର୍ ଲକ୍ଷ୍ମଣ ସ୍ୱାଇଁଙ୍କ ନିକଟକୁ ଲିଖିତ ପତ୍ର –

କଟକ, ୧୬।୫।୧୯୦୪

ଶ୍ରୀହରିଃ ଶରଣମ୍ ।
ପ୍ରିୟତମ ଲକ୍ଷ୍ମଣ,

ତୁମ୍ଭର ପତ୍ର ପାଇ ଆପ୍ୟାୟିତ ହେଲି ।

ତୁମ୍ଭର ଅସାଧାରଣ ସଦ୍‌ଗୁଣର ମୁଁ ଯେପରି ପରିଚୟ ପାଇଅଛି, ତାହା ଆଜୀବନ ମୋହୋ ହୃଦୟରେ ଅଙ୍କିତ ରହିବ । ମୁଁ ଅନେକ ସମୟରେ ମଧ୍ୟ ଏବଂ ଆଉ ନିକଟରେ ତୁମ୍ଭର ପ୍ରସଙ୍ଗ କରିଥାଏଁ ।

ନାନା କାରଣରୁ ମୋହୋର ଶାରୀରିକ ସ୍ୱାସ୍ଥ୍ୟ ଭଲନାହିଁ, ସେହି ହେତୁରୁ ମାନସିକ ପରିଶ୍ରମସାପେକ୍ଷ କୌଣସି ବିଷୟରେ ମୁଁ ହସ୍ତାର୍ପଣ କରିପାରିନାହିଁ ।

ଅବସରମତେ କଟକ ଆସିଲେ ତୁମ୍ଭେ ମୋହୋ ସହିତ ସାକ୍ଷାତ୍ କରିବ । ବୋଲିବାର ବାହୁଲ୍ୟ ଯେ, ତୁମ୍ଭଙ୍କୁ ମୁଁ ପୁତ୍ରନିର୍ବିଶେଷରେ ଦେଖିଥାଏଁ ।

ଭଗବାନ୍ ତୁମ୍ଭର ସର୍ବାଙ୍ଗୀନ ମଙ୍ଗଳ ବିଧାନ କରନ୍ତୁ ଏବଂ ତୁମ୍ଭର ପରାର୍ଥପ୍ରିୟତାର ପ୍ରତିଷ୍ଠା ଅଧିକତର ଉଜ୍ଜ୍ୱଳ ହେଉ ।

ତୁମ୍ଭର
ଶ୍ରୀ ରାଧାନାଥ ରାୟ ।

## 'ସଂଯୋଜନ'ର ପରିଶିଷ୍ଟ

(୧) 'ପାର୍ବତୀ' କାବ୍ୟର ପ୍ରଥମ ସଂସ୍କରଣରେ ନୀଳମଣି ବିଦ୍ୟାରତ୍ନ ଲେଖିଥିବା "ଭୂମିକା"–

ଗ୍ରନ୍ଥକାର ମହୋଦୟ ଆପଣାର ପ୍ରାଣପ୍ରତିମ ପ୍ରିୟତମ ପୁତ୍ରଙ୍କୁ କାଳ କବଳରେ ପଡ଼ିବାର ଦେଖି ସର୍ବଦା ଚିନ୍ତିତ ରହିବାରୁ 'ପାର୍ବତୀ' କାବ୍ୟର ରଚନା ଅସମ୍ପୂର୍ଣ୍ଣ ରହିଗଲା । କବି ପୁତ୍ରଙ୍କ ପୀଡ଼ାରେ ଯେପରି ଦୁଃଖିତ, ତହିଁରେ ପାର୍ବତୀର ଅବଶିଷ୍ଟାଂଶ ଯେ ଶୀଘ୍ର ରଚିତ ଓ ମୁଦ୍ରିତ ହୋଇ ଉତ୍କଳ ସାହିତ୍ୟରସିକମାନଙ୍କ ପ୍ରୀତି ସମ୍ପାଦନ କରିବ ଏପରି ସମ୍ଭାବନା ଅତି ଅଳ୍ପ । କାବ୍ୟର ଯେଉଁ କେତେକାଂଶ ରଚିତ ହୋଇଅଛି, ତହିଁରେ କବିଙ୍କର କାରିଗରିର ଯଥେଷ୍ଟ ପରିଚୟ ମିଳୁଥିବାରୁ ଅସମ୍ପୂର୍ଣ୍ଣ ଭାବରେ ସେହି କେତେକାଂଶ ଆପାତତଃ ପ୍ରକାଶିତ ହେଲା । ଈଶ୍ୱର ସୁଦିନ ଦେଲେ ପାର୍ବତୀ ଦିନେ ପୂର୍ଣ୍ଣାବୟବରେ ପ୍ରଚାରିତ ହୋଇ ସାଧାରଣଙ୍କ ପ୍ରୀତ୍ୟୁତ୍ପାଦକ ହୋଇ ପାରିବ ।

୨୫।୬।୧୮୯୧ ଖ୍ରୀଃ ଅନୁମତ୍ୟନୁସାରେ
ଶ୍ରୀ ନୀଳମଣି ବିଦ୍ୟାରତ୍ନ
ବାମଣ୍ଡା

(୨) 'ଯଯାତିକେଶରୀ' କାବ୍ୟର ପ୍ରକାଶକ ନୀଳମଣି ବିଦ୍ୟାରତ୍ନଙ୍କ ଲିଖିତ 'ଭୂମିକା' –

ଯଯାତି-କେଶରୀର କବି ଏବଂ ତାଙ୍କର କାବ୍ୟ ଉତ୍କଳରେ ସୁପରିଚିତ, ଏପରି ସ୍ଥଳେ ଯଯାତିକେଶରୀ କାବ୍ୟର ସରସତା ସମ୍ବନ୍ଧରେ ବାକ୍ୟ ବ୍ୟୟ କରିବା ନିରର୍ଥକ । ଅନେକ ଲୋକଙ୍କର ବିଶ୍ୱାସ ଯେ ଆଦିରସକୁ ଉଚିତ ସୀମାରେ ଆବଦ୍ଧ ରଖି ସରସକାବ୍ୟ ରଚନା କରାଯାଇପାରିବନାହିଁ । ସେମାନେ ଏହି କାବ୍ୟଖଣ୍ଡି ମନୋଯୋଗ ପୂର୍ବକ ପାଠକଲେ ସେମାନଙ୍କର ଉକ୍ତ

ବିଶ୍ୱାସ ଭ୍ରାନ୍ତସଙ୍କୁଳ ଥିବାର ବୁଝିପାରିବେ। ଏହି କାବ୍ୟ ପ୍ରଥମେ 'ଉତ୍କଳପ୍ରଭା' ନାମ୍ନୀ ମାସିକ ପତ୍ରିକାରେ ପ୍ରକାଶିତ ହୋଇ ସର୍ବତ୍ର ସମାଦୃତ ହୋଇ-ଥିଲା। ସେହି ସମୟରେ କେତେକ ବ୍ୟକ୍ତି ଏହି କାବ୍ୟକୁ ପୁସ୍ତକାକାରରେ ପ୍ରକାଶ କରିବାପାଇଁ ମୋତେ ବାରମ୍ବାର ଅନୁରୋଧ କରିଥିଲେ। ପାଠକମାନଙ୍କର ଆଗ୍ରହାତିଶଯ୍ୟ ଦର୍ଶନ କରି ସେମାନଙ୍କର ପ୍ରୀତି ସମ୍ପାଦନ ସକାଶେ ଏହି କାବ୍ୟକୁ ବର୍ତ୍ତମାନ ପ୍ରକାଶ କଲି। ଭରସାକରେ ଉତ୍କଳର ସାହିତ୍ୟ- ରସିକମାନେ ବର୍ତ୍ତମାନ ଏହି ପୁସ୍ତକକୁ ଶ୍ରଦ୍ଧାର ସହିତ ଗ୍ରହଣ କରିବେ।

କବିବର ମହୋଦୟ ମୋତେ ସ୍ୱପ୍ରଣୀତ 'ପାର୍ବତୀ' କାବ୍ୟ ଏବଂ 'ତୁଳସୀସ୍ତବକ'ର ପ୍ରକାଶ କରିବାର ଅଧିକାର ପ୍ରଦାନ କରିଥିଲେ। ବର୍ତ୍ତମାନ ଏହି କାବ୍ୟକୁ ପ୍ରକାଶ କରିବାର ଅନୁମତି ପ୍ରଦାନ କରି ମୋତେ ବିଶେଷ ଅନୁଗୃହୀତ କରିଅଛନ୍ତି। ଏଥି ସକାଶେ ତାଙ୍କ ନିକଟରେ ଚିର କୃତଜ୍ଞତା ସ୍ୱୀକାର କରୁଅଛି।

ଛାପାଖାନା ଦୋଷରୁ ଏ ପୁସ୍ତକରେ ଅନେକ ବର୍ଣ୍ଣାଶୁଦ୍ଧି ରହିଯାଇଛି, ଏ ହେତୁ ଅତ୍ୟନ୍ତ ଦୁଃଖିତ ଏବଂ ଲଜ୍ଜିତ ହୋଇଅଛି। ତହିଁର ପ୍ରତିକାର ସ୍ୱରୂପ ପୁସ୍ତକାଦ୍ୟରେ ଶୁଦ୍ଧିପତ୍ର ସନ୍ନିବେଶିତ ହେଲା। ଗ୍ରାହକ ମହୋଦୟମାନେ ତଦନୁସାରେ ପୁସ୍ତକକୁ ସଂଶୋଧନ କରି ପରେ ପାଠାରମ୍ଭକଲେ ଅର୍ଥଗ୍ରହଣର ଅସୁବିଧା ହେବନାହିଁ। ପ୍ରକାଶକ

**(୩) 'ମହାଯାତ୍ରା' ପ୍ରଥମ ସଂସ୍କରଣରେ ପୁରୁଷୋତ୍ତମ ତର୍କାଳଙ୍କାର ଲେଖିଥିବା 'ଭୂମିକା' –**

ମହାଯାତ୍ରାର ପ୍ରଥମଖଣ୍ଡ ପ୍ରକାଶିତ ହେଲା। ପୂର୍ବେ ଏହା ଅଂଶତଃ ଉତ୍କଳପ୍ରଭାରେ ପ୍ରକାଶିତ ହୋଇଥିଲା। ସେହି ମୁଦ୍ରଣରେ ଅନେକ ଭୁଲ ଥିଲା। ଏକ ଏକ ସ୍ଥଳ ଏପରି ଅଶୁଦ୍ଧ ହୋଇଥିଲା ଯେ ସୁଶିକ୍ଷିତ ପାଠକମାନଙ୍କ ପକ୍ଷରେ ସୁଦ୍ଧା ତାହାର ଅର୍ଥ ଗ୍ରହଣ କଠିନ ହେଉଥିଲା। ଶୁଦ୍ଧତା ରକ୍ଷା ବିଷୟରେ ଏ ସଂସ୍କରଣରେ ଯଥାସାଧ ଚେଷ୍ଟାକରାଯାଇଅଛି।

ମହାଯାତ୍ରା ଅମିତ୍ରଛନ୍ଦରେ ରଚିତ। ଏ ଛନ୍ଦ ଶୀଘ୍ର ଲୋକପ୍ରିୟ ହେବାର ସମ୍ଭାବନା ନ ଥିଲେ ସୁଦ୍ଧା ଓଡ଼ିଆଭାଷା ପକ୍ଷରେ ଏହା ଗୋଟିଏ ଉପାଦେୟ ଛନ୍ଦ। ଏଥି ସମ୍ବନ୍ଧରେ ମୋହୋର ଅଧିକ ବୋଲିବାର ଅନାବଶ୍ୟକ। କବିବର ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓ ମହାଶୟଙ୍କ ଲିଖିତ ପରବର୍ତ୍ତୀ ମୁଖବନ୍ଧରେ ଏହାର ସଂକ୍ଷିପ୍ତ ଆଲୋଚନା ହୋଇଅଛି। ମଧୁବାବୁ ଯେ କେବଳ ମହାଯାତ୍ରା ଅଧ୍ୟୟନ କରିଅଛନ୍ତି ଏମନ୍ତ ନୁହେଁ, ଓଡ଼ିଆ ଭାଷାର ସର୍ବପ୍ରଧାନ ବିଦ୍ୟାଳୟରେ ସେ ମହାଯାତ୍ରା ଏକାଧିକଥର ଅଧ୍ୟାପନ କରାଇଅଛନ୍ତି।

ଲେଖକଙ୍କ ସମ୍ମତିକ୍ରମେ କନିକାରାଜ୍ୟର ପଟ୍ଟମହାଦେବୀ ଶ୍ରୀମତୀ କୃଷ୍ଣପ୍ରିୟା ଦେବୀ ମହୋଦୟା ମହାଯାତ୍ରାର ଏହି ସଂସ୍କରଣ ପ୍ରକାଶ କଲେ। ଅନ୍ୟାନ୍ୟ ଖଣ୍ଡ ରଚିତ ହେଲେ ଏହିପରି ପ୍ରକାଶ କରିବାର ତାହାଙ୍କର ଅଭିପ୍ରେତ ଅଟେ।

କଟକ ଶ୍ରୀ ପୁରୁଷୋତ୍ତମ ତର୍କାଳଙ୍କାର
କନିକାରାଜପ୍ରାସାଦ, ୧୨।୧୨।୧୮୯୫

**(୪) 'ରାଧାନାଥ-ଗ୍ରନ୍ଥାବଳୀ'ର ପ୍ରଥମ ସଂସ୍କରଣରେ ସ୍ଥାନିତ ବଙ୍ଗଳାର ନାରୀକବି ନଗେନ୍ଦ୍ରବାଳା ସରସ୍ୱତୀଙ୍କ ରାଧାନାଥ-ପ୍ରଶସ୍ତି ସୂଚକ କବିତା 'ଭୂତଲେ ସ୍ୱର୍ଗ'–**

ଆମିତ ଦେଖେଛି ସ୍ୱର୍ଗ ଭୂତଲେ ଏବାର –
ଓଇ ମହାଶୂନ୍ୟସ୍ତର,
ସ୍ୱର୍ଗରାଜ୍ୟ ମନୋହର –
ନହେ ଗୋ; ଏବାର ଭୁଲ ଭେଙ୍ଗେଛେ ଆମାର।
ଓଯେ ଭରା ବାସ୍ତବଲେ
କେ ଏମନ କଥା ବଲେ,
"ଉହାତେ ତେତ୍ରିଶକୋଟି ଦେବତାର ବାସ",
ମିଛେ ଏ କଳ୍ପନା, – ଏଯେ ବାଲକେର ଭାଷ।
ଆମି ଯା ଦେଖେଛି ତାହା ଭବେ ଅତୁଲନ –
ଦୟା ସ୍ନେହ ପ୍ରେମପ୍ରୀତି,
ଜଡିତ୍ୱ ସୌନ୍ଦର୍ଯ୍ୟ ରୀତି,
ଏଇତ ଦେବତା ଆର୍ ଦେବତା କେମନ,
ଏରା ଯେ ହୃଦୟ ମାଝେ,
ନିତିଯେ ପବିତ୍ର ସାଜେ,
ସେଇତ ସ୍ୱରଗ – ସ୍ୱର୍ଗ କୋଥା ଅଛେ ଆର!
ଏ ଛାଡ଼ା ସେ ସ୍ୱର୍ଗ ମିଛା ଅସ୍ତିତ୍ୱ ତାହାର।
ପୂତ ହୃଦି ଅଭ୍ୟନ୍ତରେ – କି କବ ତୋମାୟ!
ଉଠିତେଛେ ଯେ ସ୍ୱତାନ,
ସେଇତ ମୁରଲୀଗାନ
ଏତେଇ ବ୍ରଜେର ଖେଲା –
"ଆୟ ରାଧେ ଆୟ"!
ହୃଦୟେ ଭାବେର ଘରେ
ଅନନ୍ତ ପ୍ରଣୟ ଭରେ,

ପୁରୁଷ ପ୍ରକୃତି ଖେଳା ହତେଛେ ସବାଇ ।
ଆମରା ବୁଝି ନା ତାଇ ଉଡ଼ି ଉଡ଼ି ଧାଇ ।
ଆମି ଯା ଦେଖେଛି ତାହା ଅତୁଲ ଧରାୟ—
ସ୍ୱାର୍ଥପୂର୍ଣ୍ଣ ଧରାମାଝି,
ପବିତ୍ର ଦେବତା ସାଜେ,
ଭୂତଲେ ସ୍ୱର୍ଗେର ଚିତ୍ର— "ରାଧାନାଥ ରାୟ" ।
ସେ ପୂତ ହୃଦୟୋପର,
ସ୍ୱର୍ଗରାଜ୍ୟ ମନୋହର,
ଆମିତ ପରାଣ ଭରେ କରେଛି ଦର୍ଶନ ।
ଏମନ ପବିତ୍ର ସ୍ୱର୍ଗ ଦେଖିନି କଖନ ।
ଏ ଛାଡ଼ା ଗୋଲୋକ ସ୍ୱର୍ଗ ନାହିକ କୋଥାଓ—
ସ୍ୱରଗ ଗୋଲକ ଧରା,
ସକଲି ହୃଦୟେ ଭରା,
"ସ୍ୱର୍ଗ ବହୁଦୂରେ"— ବଲେ କେନେ ଫାଁକି ଦାଓ ।
ନହେ ସ୍ୱର୍ଗ ବହୁଦୂରେ,
ତୋମାରି ହୃଦୟ ପୁରେ,
ରୟେଛେ ଅସ୍ତିତ୍ୱ ତାର ମାନସମୋହନ ।
"ସ୍ୱର୍ଗ ବହୁଦୂରେ" ସେ ତ ପାପୀର ସାନ୍ତ୍ୱନ ।
ବିଶ୍ୱେର ସୌନ୍ଦର୍ଯ୍ୟଗୀତେ ଉଚଳା ହୃଦୟ—
ଛିଡ଼ିୟାଛ ସଂକୀର୍ଣ୍ଣତା,
ନିର୍ମ୍ମମତା କଠୋରତା,
ତୁମି ଗୋ ମାନବରୂପେ ଦେବତା ନିଶ୍ଚୟ ।
"ଏଖାନେ କୋଥାୟ ସ୍ୱର୍ଗ,
କୋଥା ମୁକ୍ତି ଅପବର୍ଗ,"
ବଲିୟା ଛଲନା, ଦେବ, କରୋନା ଆମାୟ ।
କେନ ଗୋ ବଞ୍ଚନା ତାରେ ସ୍ୱରଗ ଯେ ଚାୟ ।
ଆମି ଯେ ଚିନେଛି ସ୍ୱର୍ଗ ଲୁକାବେ କୋଥାୟ ।
ଆମି ଯେ ଆପନା ଭୁଲେ,
ଦେଖେଛି ଓ ଆଦିମୂଲେ,
ସ୍ୱରଗ ଗୋଲୋକ ଆମି ନୀରବେ ଲୁଟାୟ ।
ବିଶ୍ୱ ଆବିଲତାମୟ,
ଏଖାନେ ନାଇକ ରୟ
ଏମନ ନିସ୍ୱାର୍ଥ-ସ୍ନେହ-ପବିତ୍ରତାମୟ—
ଓ ହୃଦୟେ କେନ ଆଛେ ସ୍ୱର୍ଗ ଯଦି ନୟ ?
ମୋର ଜୀବନେର ସୁଧୁ ସ୍ୱରଗ ସାଧନ—
ଓ ଯଦି ଗୋ ସ୍ୱର୍ଗ ନୟ
ତବେ କେନ ଏ ହୃଦୟ—
ଆକର୍ଷେ—, ଚୁମ୍ବକ ଲୌହ ଆକର୍ଷେ ଯେମନ ।

ବିଶ୍ୱେତେ ସ୍ୱର୍ଗେର ସ୍ରୋତ,
ସଦା ହୟ ଓତୋପ୍ରୋତ,
ଉନ୍ମାଦିନୀ ସିନ୍ଧୁ ନଦୀ ତାର ସିନ୍ଧୁ ପାନେ ଧାୟ ।
ବିଭଳ ସମଗ୍ର ବିଶ୍ୱ ସୁଧୁ ସ୍ୱର୍ଗ ଚାୟ ।
ନହେ ଯଦି ଓ ହୃଦୟ ସ୍ୱରଗ ମହାନ୍—
କେନ ହୃଦି ଓର ପାୟ,
ସଦା ଆନମନେ ଧାୟ—
ବଲ ଏ ପ୍ରାଣେର କେନ ଓ ଚରଣେ ଟାନ୍ ?
ଆମି ଓ ହୃଦୟେ ମାଝେ
ଦେଖେଛି ହୃଦୟସାଜେ,—
ସପ୍ତଦେବତାର * ମୂର୍ତ୍ତି ପବିତ୍ର ସୁନ୍ଦର ।
ତବେ କେନ ସ୍ୱର୍ଗ ବଲେ ମୋର ଏ ଅନ୍ତର ।
ନା ଲୁଟାବେ ଓଇ ପୂତ ଚରଣ ତଳାୟ ?—
ସୌନ୍ଦର୍ଯ୍ୟ ସାଧକ ଧରା
ସ୍ୱର୍ଗ ଯେ ସୌନ୍ଦର୍ଯ୍ୟେ ଭରା—
ତାଇତ ଆଶ୍ରୟ ଭିକ୍ଷା ସବେ କରେ ତାୟ
ଆମି ଦେଖିୟାଛି ଯାହା
କଭୁ ମିଥ୍ୟା ନହେ ତାହା,
ଓଇ ସ୍ୱର୍ଗ ଲାଭ— ଫଲେ କୋଟି ତପସ୍ୟାର ।
ଭେଙ୍ଗନାଗୋ "ଭ୍ରମ" ବଲେ ଧ୍ରୁବ ଯେ ଆମାର ।
ଯେନ ଗୋ ଓ ସୁପବିତ୍ର ସ୍ୱରଗଛାୟାୟ—
ଏ ଚାତକୀ ଶିଷ୍ୟାରୂପେ
ନୀରବେତେ ଚୁପେ ଚୁପେ—
ଶାନ୍ତିର ମଦିରା ପିୟେ ଆରାମେ ଘୁମାୟ ।
ଲଳିତ କଳାର ସ୍ୱାମୀ —
ତୁମି ଗୁରୁ, ଶିଷ୍ୟା ଆମି,
ପରଶ ପରଶେ ଲୋହା ସୋନା ହୟେ ଯାୟ
ଏ ମହାସ୍ୱରଗ ତୋରା କେ ଦେଖିବି ଆୟ ।

୧୩୦୮ । ୩ରା ଶ୍ରାବଣ — ସେହ୍ନକାଙ୍କ୍ଷିଣୀ
ବଡ଼ାଲ ଲେନ, ହୁଗୁଳି — ନଗେନ୍ଦ୍ରବାଳା

* ଏ ସ୍ଥଲେ ଦୟା, ସ୍ନେହ, ପ୍ରେମ, ପ୍ରୀତି, ସୌନ୍ଦର୍ଯ୍ୟ, କବିତ୍ୱ (ଭାବ) ଏବଂ ଗାନ— ଏଇ ସାତଟି ପବିତ୍ର ଜିନିଷକେ ସପ୍ତଦେବତା ନାମେ ବର୍ଣ୍ଣିତ କରାହଇୟାଛେ ।— ଲେଖିକା ।

# ରାଧାନାଥ ରାୟ – କାଳାନୁକ୍ରମିକ ସଂକ୍ଷିପ୍ତ ଜୀବନପଞ୍ଜି

ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ଇଂରେଜ ପ୍ରଶାସନର ପ୍ରସାଦରୁ କଟକ, ବାଲେଶ୍ୱର ଓ ପୁରୀ ଭଳି ସହରରେ ଏକ ମଧ୍ୟବିତ୍ତ ଓ ନିମ୍ନ ମଧ୍ୟବିତ୍ତ ଶ୍ରେଣୀ ଗଢ଼ିଉଠିଥିଲା। ଏହି ଶ୍ରେଣୀରୁ ଉଦ୍‌ଭୂତ ମୁଷ୍ଟିମେୟ ବିଦ୍ୱତ୍/ବୁଦ୍ଧିଜୀବୀ ଓଡ଼ିଶାରେ ଶିକ୍ଷା, ସାହିତ୍ୟ, ସାମ୍ବାଦିକତା ଓ ରାଜନୀତି କ୍ଷେତ୍ରରେ ଆପଣାର ଉଦ୍‌ବୃତ୍ତ ଶ୍ରମ ଓ ସମୟକୁ ବିନିଯୋଗ କରିଥିଲେ, ନିଜର ସୀମିତ ସାମର୍ଥ୍ୟ ମଧ୍ୟରେ ନୂଆ କିଛି କରିଯିବାର ଆଶା ପୋଷଣ କରିଥିଲେ। 'କବିବର' ଭାବରେ ପରିଚିତ 'ରାଧାନାଥ ରାୟ' ଥିଲେ ଏହି ଶ୍ରେଣୀ ଓ ଗୋଷ୍ଠୀର ପ୍ରତିନିଧି। ଶିକ୍ଷା ଓ ସାହିତ୍ୟ ଏହି ଉଭୟ କ୍ଷେତ୍ରରେ ସେ ଦୀର୍ଘ ଚାଳିଶ ବର୍ଷ ଧରି ଓଡ଼ିଶାରେ ନିଜର ପ୍ରଭାବ ବିସ୍ତାର କରି- ଥିଲେ। ଗୋଟିଏ କ୍ଷେତ୍ରରେ ସିଦ୍ଧି/ପ୍ରତିଷ୍ଠା ଅନ୍ୟ କ୍ଷେତ୍ରରେ କର୍ତ୍ତୃତ୍ୱ ବିସ୍ତାର କରିବାପାଇଁ ତାଙ୍କୁ ସୁଯୋଗ ଆଣିଦେଇଥିଲା। ତାଙ୍କର ପ୍ରତିଭା, ବିନୟ- ଭାବ ଓ ସମସ୍ତ କାର୍ଯ୍ୟ ସୃଷ୍ଟିଶୀଳ ଢଙ୍ଗରେ କରିବାର ଇଚ୍ଛା ତାଙ୍କୁ ଦୀର୍ଘ ତେଇଶ ବର୍ଷ ଧରି ଓଡ଼ିଶା ଡିଭିଜନ ଶିକ୍ଷାବିଭାଗର କରିଥିଲା ସର୍ବମୟ କର୍ତ୍ତା। ନିଜ ଜୀବଦ୍ଦଶାରେ ସେ ହୋଇଉଠିଥିଲେ ଅନେକ କାହାଣୀ, କିଂବଦନ୍ତୀର ନାୟକ। ରାଧାନାଥଙ୍କ କବି ଜୀବନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ଆରମ୍ଭ ହେବା ପୂର୍ବରୁ ('କେଦାରଗୌରୀ' ଆଦି କାବ୍ୟର ପ୍ରକାଶ ପୂର୍ବରୁ) ସେ ଓଡ଼ିଶାର ଶ୍ରେଷ୍ଠ କବିରେ ପରିଣତ ହୋଇଥିଲେ ନିଜର ପଦମର୍ଯ୍ୟାଦା ପାଇଁ।

୧୦।୩।୧୮୮୩ ତାରିଖରେ କୌଣସି ଅଜ୍ଞାତନାମା ଲେଖକ 'ଶ୍ରୀପଞ୍ଚମୀ' ନାମକ କବିତାରେ ଲେଖିଥିଲେ –

''ଆଶୀର୍ବାଦ ଦାନ କର ମାତଃ
କବିତାରେ ଦୁଇଜଣ ତୋତେ ସେବିବେ ଯତନେ
ରାଧାନାଥ – ଆନନ୍ଦନ ମଧୁ, ରାଧାନାଥ
ଆଧୁନିକ କବିଶ୍ରେଷ୍ଠ, ଉତ୍କଳ ବିଖ୍ୟାତ।
(ଉତ୍କଳ ଦୀପିକା, ୧୮-୧୦, ପୃ. ୭୯)

ଶିକ୍ଷା ଓ ସାହିତ୍ୟ ଉଭୟ କ୍ଷେତ୍ରରେ ରାଧାନାଥଙ୍କର ରାଜତ୍ୱ ତାଙ୍କୁ ଯେଉଁଳି ଦେବତାରେ ପରିଣତ କରି- ଥିଲା; ଠିକ୍ ସେହିଭଳି ତାଙ୍କୁ ବାଦ-ବିସମ୍ବାଦ ଘେରକୁ ନେଇଆସିଥିଲା। ତାଙ୍କର ଏକାନ୍ତ ଶୁଭେଚ୍ଛୁ ଥିବା ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ଗୋବିନ୍ଦ ରଥ, ଚତୁର୍ଭୁଜ ପଟ୍ଟନାୟକ ଓ ସର୍ବୋପରି ଗୌରୀଶଙ୍କର ରାୟ ପରବର୍ତ୍ତୀ ସମୟରେ ତାଙ୍କର ଘୋର ବିରୋଧିତା କରିଥିଲେ। ତେଣୁ ଗୋଟାଏ ଦିଗରେ ଯେଉଁଳି ତାଙ୍କର ପ୍ରଶସ୍ତି ଚାଲିଥିଲା, ଅପରପକ୍ଷରେ ତାଙ୍କର ନିନ୍ଦାଗାନ ମଧ୍ୟ ଚାଲିଥିଲା। ସେ ଯେ 'ଉଡ଼ିଗଲା ଚଢ଼େଇର ପର ଗଣିଦେବା ଲୋକ' ଭଳି ବୁଦ୍ଧିମାନ୍ ଥିଲେ, ଏହା ତାଙ୍କର ଏକାନ୍ତ ପ୍ରଶଂସକ ବିଶ୍ୱନାଥ କର ପ୍ରସଙ୍ଗକ୍ରମେ ଯେଉଁଳି କହିଛନ୍ତି, ତାଙ୍କର ବହୁ ସଦ୍‌ଗୁଣ ଓ ପ୍ରତିଭାକୁ ବିରୋଧୀମାନେ ମଧ୍ୟ ଅସ୍ୱୀକାର କରିପାରିନାହାନ୍ତି। କିନ୍ତୁ ତାଙ୍କର ଯେଉଁ ପରିଚିତ ଜୀବନଚରିତ ଉତ୍ତର ପୁରୁଷ ପାଇଁ ରହିଯାଇଛି, ତାହା ପ୍ରଶସ୍ତିରେ କେବଳ ପରିପୂର୍ଣ୍ଣ। ତାଙ୍କ ଘଟଣାବହୁଳ ଜୀବନର ଏକ ଧାରାବାହିକ ଓ ପ୍ରାମାଣିକ ଚିତ୍ର ମଧ୍ୟ ତାହା ପ୍ରଦାନ କରେ ନାହିଁ। 'ରାଧାନାଥ ଗ୍ରନ୍ଥାବଳୀ'ର ପ୍ରଥମ ସଂସ୍କରଣରେ ସଂଯୋଜିତ ଆର୍ତ୍ତତ୍ରାଣ ଶତପଥୀଙ୍କ ଲିଖିତ ରାଧାନାଥଙ୍କ ଜୀବନଚରିତରେ ତାଙ୍କ ଜୀବନର ବିଶେଷ ବିଶେଷ ଘଟନାର ଉଲ୍ଲେଖ ମଧ୍ୟ ନାହିଁ। (ସ୍ମରଣଯୋଗ୍ୟ ଯେ, ଶତପଥୀ ମହାଶୟ ରାଧାନାଥଙ୍କର ଏକାନ୍ତ ଘନିଷ୍ଠ ଥିଲେ ଓ ରାଧାନାଥଙ୍କ ଜୀବଦ୍ଦଶାରେ ଏହି 'ଜୀବନ ଚରିତ' ସେ ପ୍ରସ୍ତୁତ କରିଥିଲେ) ତା' ବାହାରେ ଆର୍ତ୍ତତ୍ରାଣ କେତେକ କାହାଣୀ ସୃଷ୍ଟି କରିଛନ୍ତି, ଯାହା ତଥ୍ୟ ଉପରେ ପର୍ଯ୍ୟବସିତ ନୁହେଁ। ଦୃଷ୍ଟାନ୍ତସ୍ୱରୂପ, ଶତପଥୀ ମହାଶୟ ଲେଖିଛନ୍ତି– ''ସେ ସମୟରେ ବଙ୍କିମ ବାବୁଙ୍କର [ବଙ୍କିମ ଚନ୍ଦ୍ର ଚଟ୍ଟୋପାଧ୍ୟାୟ] ଜଣେ ଭୂତପୂର୍ବ ସହାଧ୍ୟାୟୀ କଲିକତାନିବାସୀ ଜଗଦୀଶନାଥ ରାୟ ବାଲେଶ୍ୱରରେ ପୁଲିସ ସୁପରିଟେଣ୍ଡେଣ୍ଟ ଥିଲେ। ତାଙ୍କ ଜ୍ୟେଷ୍ଠପୁତ୍ରଙ୍କର ନାମ ରାଧାନାଥ ରାୟ ଏମ.ଏ.। ରାଧାନାଥବାବୁ ସେ ସମୟରେ କଲିକତାରୁ

ଆସି ନିଜ ପିତାଙ୍କ ସହିତ ଏକତ୍ରାବସ୍ଥାନ କରୁଥିଲେ। ବଙ୍କିମବାବୁ ସେହି ରାଧାନାଥ ରାୟଙ୍କୁ କବିତାବଳୀର ପ୍ରଣେତା ଅନୁମାନ କରି ତାହାଙ୍କ ପିତା ଜଗଦୀଶ ନାଥ ରାୟଙ୍କୁ ଅଭିନନ୍ଦନପୂର୍ବକ ଆଶୀର୍ବାଦଗର୍ଭକ ଖଣ୍ଡିଏ ପତ୍ର ଲେଖିବାରୁ ଜଗଦୀଶବାବୁ, ବିଶେଷତଃ ତାହାଙ୍କର ପୁତ୍ର ରାଧାନାଥବାବୁ, ଆଶ୍ଚର୍ଯ୍ୟାନ୍ୱିତ ହୋଇ ସେଥିର କାରଣ ଅନୁସନ୍ଧାନ କରି ବଙ୍ଗଳା କବିତା-ବଳୀର ପ୍ରକୃତ ଲେଖକ କିଏ ତାହା ଅବଧାରଣ କଲେ ଏବଂ ସ୍ୱତଃପ୍ରବୃତ୍ତ ହୋଇ ରାଧାନାଥଙ୍କ ବସାକୁ ଆସି ତାହାଙ୍କ ସହିତ ବନ୍ଧୁତା ସୂତ୍ରରେ ଆବଦ୍ଧ ହେଲେ।'' ଏହି କାହାଣୀଟି କେତେ କଳ୍ପିତ ଓ କେତେ ବାସ୍ତବ ତଥ୍ୟ ଉପରେ ଆଧାରିତ ତାହା ତଥ୍ୟ ସହ ବର୍ଣ୍ଣିତ ବିଷୟର ତୁଳନାକଲେ ସ୍ପଷ୍ଟ ହେବ। ପ୍ରଥମତଃ, ବଙ୍କିମଚନ୍ଦ୍ର 'ବଙ୍ଗଦର୍ଶନ' (୨/୩; ୨। ୧୮୭୪)ରେ 'କବିତାବଳୀ ଦ୍ୱିତୀୟଭାଗ'ର ଏକ ସମୀକ୍ଷା ଲେଖିଛନ୍ତି ଓ ଏହାର ଲେଖକ ଯେ ଜଣେ ଉତ୍କଳୀୟ ତାହା ପ୍ରକାଶକଙ୍କ ସୂଚନାରୁ ସ୍ପଷ୍ଟ ଜାଣିଛନ୍ତି। ତେଣୁ ବଙ୍ଗଳାର ରାଧାନାଥ ରାୟଙ୍କୁ (ଯେ ଖୁବ୍ କମ୍‌ଦିନ ପାଇଁ ଓଡ଼ିଶାକୁ ଆସିଥିଲେ?) ସେ କବିତାବଳୀର ପ୍ରଣେତା ବୋଲି କିଭଳି ଭାବିନେବେ? ଦ୍ୱିତୀୟତଃ, ପୁସ୍ତକସମୀକ୍ଷାକୁ ପତ୍ର ବୋଲି ଗ୍ରହଣ କରିନେଇ ଶ୍ରୀ ଶତପଥୀ ଆଉ ଏକ ପ୍ରମାଦର ସମ୍ମୁଖୀନ ହୋଇଛନ୍ତି। ତୃତୀୟତଃ, କଳିକତା ବିଶ୍ୱ-ବିଦ୍ୟାଳୟର କ୍ୟାଲେଣ୍ଡରରୁ ଜଣାଯାଏ ଯେ ଜଣେ ମାତ୍ର ରାଧାନାଥ ରାୟ କଳିକତା ବିଶ୍ୱବିଦ୍ୟାଳୟରୁ ୧୮୮୧ ମଧ୍ୟରେ ଏମ.ଏ. ଡିଗ୍ରୀ ଲାଭକରିଛନ୍ତି ଏବଂ ସେ ଡିଗ୍ରୀ ପାଇଥିବା ବର୍ଷ ହେଲା ୧୮୭୮ ମସିହା। ୧୮୭୩ ମସିହାରେ ପ୍ରକାଶିତ 'କବିତାବଳୀ ଦ୍ୱିତୀୟଭାଗ'ର ଲେଖକ ରାଧାନାଥ ରାୟ, ଏମ.ଏ. କିଭଳି ବା ହୋଇପାରିବେ?

ଆର୍ତ୍ତତ୍ରାଣଙ୍କ ରଚନାର ଦୋଷଗୁଣ ବିଚାର ଏଠାରେ ଲକ୍ଷ୍ୟ ନୁହେଁ। କିନ୍ତୁ ରାଧାନାଥଙ୍କ ସଂପର୍କରେ କିଭଳି କିଂବଦନ୍ତୀ ସବୁ ସୃଷ୍ଟିକରାଯାଇଛି ଓ ସେସବୁ ବିନା ଦ୍ୱିଧାରେ ଗୃହୀତ ହୋଇଛି, ତାହାର ଦୃଷ୍ଟାନ୍ତ ହିସାବରେ ଆର୍ତ୍ତତ୍ରାଣଙ୍କ ରଚନାର ଆଲୋଚନା କରା-ଯାଇଛି। ୧୯୪୧ ମସିହାରେ ରାଧାନାଥଙ୍କ ପୁତ୍ର-ଜାମାତା ଦୁର୍ଗାଚରଣ ରାୟଙ୍କ ଦ୍ୱାରା ପ୍ରସ୍ତୁତ 'ରାଧାନାଥ ଜୀବନୀ' ଏହିଭଳି ଅସତ୍ୟ, ଅର୍ଦ୍ଧସତ୍ୟ ଓ ସତ୍ୟ-ସଂଗୋପନରେ ଭରପୂର। ପରବର୍ତ୍ତୀ ସମୟରେ ଯେଉଁମାନେ ରାଧାନାଥଙ୍କ ଜୀବନୀ ଓ ସାହିତ୍ୟ ଉପରେ ଆଲୋଚନା କରିଛନ୍ତି (କେବଳ ଡକ୍ଟର ନଟବର ସାମନ୍ତରାୟଙ୍କ ବ୍ୟତୀତ) ସେମାନେ ଉପରୋକ୍ତ ଦୁଇ ଉପାଦାନ ଉପରେ ମୁଖ୍ୟତଃ ନିର୍ଭର କରିଛନ୍ତି। ଆର୍ତ୍ତତ୍ରାଣ ଓ ଦୁର୍ଗାଚରଣଙ୍କୁ ଆଶ୍ରୟ କରି ନିଜ କଳ୍ପନାକୁ ସଂପ୍ରସାରିତ କରିବା ଫଳରେ ରାଧାନାଥଙ୍କ ଜୀବନୀର ଏକ ଅବାସ୍ତବ ଛବିହିଁ ସେମାନେ ଅଙ୍କନ କରିଛନ୍ତି – ଜୀବନଚରିତ ଲେଖିବାକୁ ଯାଇ ଚରିତାମୃତ ଲେଖିଛନ୍ତି। ଅଥଚ ରାଧାନାଥଙ୍କ ସଂପର୍କରେ ସମକାଳୀନ ଉପାଦାନ ପ୍ରଚୁର। ରାଧାନାଥ ଜୀବନୀ-ରଚନାରେ ସେ ସବୁର ଯଥାର୍ଥ ଉପଯୋଗ ହୋଇପାରିନାହିଁ। ଠିକ୍ ସେହିଭଳି ତାଙ୍କ ଜୀବନର ଏକ ବିଧିବଦ୍ଧ କାଳାନୁକ୍ରମିକ ପଞ୍ଜିକା ଅଭାବରେ ତାଙ୍କ କବିତାର ଆଲୋଚନା ଅସ୍ପଷ୍ଟ ହୋଇପଡ଼େ। ସେ ସବୁକୁ ଦୃଷ୍ଟି ସମ୍ମୁଖରେ ରଖି ଏହି କାଳାନୁକ୍ରମିକ ଜୀବନପଞ୍ଜି ପ୍ରସ୍ତୁତ। ଏହାକୁ ପ୍ରସ୍ତୁତ କରିବାରେ 'ରାଧାନାଥ ଜୀବନୀ' ସମେତ ସମକାଳୀନ ସମ୍ବାଦପତ୍ର ଓ ସରକାରୀ ରିପୋର୍ଟ, ଫକୀରମୋହନ ଓ ଚିନ୍ତାମଣି ମହାନ୍ତିଙ୍କର ଆତ୍ମଚରିତ ତଥା ବହୁ ଚିଠିପତ୍ରର ସାହାଯ୍ୟ ନିଆଯାଇଛି। ରାଧାନାଥଙ୍କର ଏକ ତଥ୍ୟପୂର୍ଣ୍ଣ ଜୀବନୀ ରଚନା ଓ ତାଙ୍କ ସାହିତ୍ୟର ବସ୍ତୁନିଷ୍ଠ ଆଲୋଚନା ପାଇଁ ଏହା ସହାୟକ ହେବ ବୋଲି ବିଶ୍ୱାସ।

୧୮୪୮ – ସେପ୍ଟେମ୍ବର ୨୮ ତାରିଖରେ (ଆଶ୍ୱିନ ପନ୍ଦର ଦିନ, ୧୭୭୧ ଶକାବ୍ଦ) ସୋରୋ ନିକଟସ୍ଥ କେଦାରପୁର ଗ୍ରାମରେ ସୁନ୍ଦରନାରାୟଣ ରାୟ ଓ ତାରିଣୀ ଦାସୀଙ୍କର ଜ୍ୟେଷ୍ଠ ସନ୍ତାନ ହିସାବରେ ରାଧାନାଥ ଭୂମିଷ୍ଠ ହୋଇଥିଲେ। ସୁନ୍ଦରନାରାୟଣ ରାୟ ଥିଲେ ଦକ୍ଷିଣ ରାଢ଼ୀୟ କାୟସ୍ଥ ଓ ତାଙ୍କର ପୂର୍ବପୁରୁଷ ମେଦିନୀପୁର ଅନ୍ତର୍ଗତ ରାଧାନଗର ଗ୍ରାମରୁ ଆସିଥିଲେ। ତାଙ୍କର ବଂଶଗତ ଉପାଧି ଥିଲା 'ଦେ'। ସୁନ୍ଦରନାରାୟଣ ବାଲେଶ୍ୱର କଲେକ୍ଟୋରେଟ୍‌ରେ ଥିଲେ ସଦର କାନୁନ୍‌ଗୋ। ତାଙ୍କର ବଙ୍ଗଳା, ଓଡ଼ିଆ ଓ ହିନ୍ଦୁସ୍ତାନୀ ବ୍ୟତୀତ ଫାର୍ସି, ସଂସ୍କୃତ ଓ ଉର୍ଦ୍ଦୁରେ ମଧ୍ୟ ପ୍ରବେଶ ଥିଲା। ଗୋଟାଏ ଦିଗରେ ସେ ଯେଭଳି କଠୋର ଶାସନପ୍ରିୟ ଓ ଶୃଙ୍ଖଳାରେ ବିଶ୍ୱାସୀ ଥିଲେ; ଅପରଦିଗରେ ସେ ଥିଲେ ଜଣେ ସାହିତ୍ୟ-ପ୍ରେମୀ। ଜନ୍ ବୀମ୍‌ସ ବାଲେଶ୍ୱର କଲେକ୍ଟର ଥିଲା-ବେଳେ ସୁନ୍ଦରନାରାୟଣ ତାଙ୍କର ବେଶ୍ ପ୍ରିୟପାତ୍ର ଥିଲେ। ତାରିଣୀଦାସୀଙ୍କ ପିତ୍ରାଳୟ ମଧ୍ୟ ଥିଲା ସୋରୋ। ସେ ଥିଲେ ପ୍ରସିଦ୍ଧ 'ରାୟମହାଶୟ' ବଂଶୀୟ।

**୧୮୫୨** – ରାଧାନାଥଙ୍କର ଦ୍ୱିତୀୟ ଭ୍ରାତା ଓ ଏକମାତ୍ର ସହୋଦର ଯଦୁନାଥଙ୍କର ଜନ୍ମ।

**୧୮୫୩** – ମାତା ତାରିଣୀ ଦାସୀଙ୍କର ପରଲୋକ। ମାତାଙ୍କର ଏହି ଅକାଳ ବିୟୋଗ ପାଞ୍ଚବର୍ଷର ବାଳକ ରାଧାନାଥଙ୍କୁ ଗଭୀରଭାବେ ଆଲୋଡ଼ିତ କରିଥିଲା। ୧୮୭୩ ମସିହାରେ ପ୍ରକାଶିତ 'କବିତାବଳୀ – ଦ୍ୱିତୀୟଭାଗ' (ବଙ୍ଗଳା)ରେ ଥିବା 'ଗ୍ରାମ୍ୟଶ୍ମଶାନ ଦର୍ଶନେ ବିଦେଶ ହଇତେ ପ୍ରତ୍ୟାଗତ ମାତୃହୀନେର ଉକ୍ତି' କବିତା ରାଧାନାଥଙ୍କ ଏହି ଦୁଃଖଦ ଅନୁଭବର ଚମତ୍କାର କାବ୍ୟିକ ପ୍ରତିଲିପି।

ନଭେମ୍ବର ଏକ ତାରିଖରେ ବାଲେଶ୍ୱର ସହରରେ ଏକ ଇଂରାଜୀ ଉଚ୍ଚ ବିଦ୍ୟାଳୟର ପ୍ରତିଷ୍ଠା – ୧୮୫୧ ମସିହାରୁ ଆଲଫ୍ରେଡ୍ ବଣ୍ଡ ନାମକ ଜଣେ ଜାହାଜର କାପ୍ଟେନ ଓ ସ୍ଥାନୀୟ ଜମିଦାର ବର୍ଗଙ୍କ ଦ୍ୱାରା ଏଥିପାଇଁ ଉଦ୍ୟମ ହୋଇଥିଲା। ସମକାଳରେ ପୁରୀଠାରେ ମଧ୍ୟ ହାଇସ୍କୁଲର ପ୍ରତିଷ୍ଠା ହୋଇଥିଲା। ଏହି ଉଭୟ ସ୍କୁଲ ଅଳ୍ପଦିନ ପରେ 'ଜିଲ୍ଲାସ୍କୁଲ' ନାମରେ ନାମିତ ହୋଇଥିଲା।

**୧୮୫୪** – ସୁନ୍ଦରନାରାୟଣଙ୍କ ଯତ୍ନରେ ନିଜ ଗୃହରେ ଏକ ପାଠଶାଳା ଆରମ୍ଭ। ପରେ ଏହି ପାଠଶାଳା ଗ୍ରାମପ୍ରାନ୍ତରେ ଥିବା ଚଣ୍ଡୀମଣ୍ଡପ ସଂଲଗ୍ନ କୋଠରୀକୁ ସ୍ଥାନାନ୍ତରିତ ହୋଇଥିଲା। ଏହି ପାଠଶାଳାର ଅବଧାନ ଥିଲେ ନାରାୟଣ ନାୟକ। ଅବଧାନେ ପରେ ନିଜ ସାଙ୍ଗିଆକୁ 'ପାତ୍ର'କୁ ପରିବର୍ତ୍ତନ କରିଥିଲେ। ଶାସନ ଦୃଷ୍ଟିରୁ ନାରାୟଣ ଅବଧାନେ ଥିଲେ ଅତ୍ୟନ୍ତ କଠୋର। ରାଧାନାଥ ଏହି ପାଠଶାଳାରେ ଛଅବର୍ଷ ବୟସରେ ପ୍ରବେଶ କରିଥିଲେ ଓ ନାରାୟଣ ଅବଧାନଙ୍କଦ୍ୱାରା ତାଙ୍କର 'ଖଡ଼ିଛୁଆଁ' କାର୍ଯ୍ୟ ସଂପନ୍ନ ହୋଇଥିଲା। ୧୮୫୬ ମସିହା ପର୍ଯ୍ୟନ୍ତ ରାଧାନାଥ ଏହି ପାଠଶାଳାର ଥିଲେ ଛାତ୍ର। ଅବଶ୍ୟ ଅଧିକାଂଶ ସମୟ ତାଙ୍କର ଶାରୀରିକ ଅସୁସ୍ଥତାରେ କଟିଥିଲା।

ରୂପଦାସୀଙ୍କୁ ସୁନ୍ଦରନାରାୟଣଙ୍କର ଦ୍ୱିତୀୟ ବିବାହ। ଏଇ ରୂପଦାସୀ ଥିଲେ ଯାଜପୁରନିବାସୀ ଶମ୍ଭୁନାଥ ସିଂହଙ୍କ କନ୍ୟା। ବିମାତା ହେଲେ ବି ରୂପଦାସୀ ରାଧାନାଥଙ୍କର ଯତ୍ନ ନେବାରେ କୌଣସି ଅବହେଳା କରିନଥିଲେ। ତାଙ୍କର (ରୂପଦାସୀଙ୍କର) ଗର୍ଭରୁ ଦୁଇପୁତ୍ର (ସୀତାନାଥ ଓ ହରନାଥ) ଓ ଗୋଟିଏ କନ୍ୟା (ସ୍ୱର୍ଣ୍ଣମୟୀ) ଭୂମିଷ୍ଠ ହୋଇଥିଲେ।

**୧୮୫୬** – ସୋରୋଠାରେ ନବପ୍ରତିଷ୍ଠିତ ଭର୍ଣ୍ଣାକୁଲାର ବିଦ୍ୟାଳୟରେ ରାଧାନାଥଙ୍କର ପ୍ରବେଶ। ସଂସ୍କୃତ ଭାଷାରେ ପାରଦର୍ଶୀ ସଦାଶିବ ନନ୍ଦ ଏହିଠାରେ ରାଧାନାଥଙ୍କର ଶିକ୍ଷକ ଥିଲେ। ନନ୍ଦଙ୍କ ଶିକ୍ଷାଦାନ ହେତୁ ବାଲ୍ୟକାଳରୁ ରାଧାନାଥ ସଂସ୍କୃତ ଭାଷାକୁ ଆୟତ୍ତ କରିଥିଲେ।

**୧୮୫୭** – କାଶରୋଗଦ୍ୱାରା ରାଧାନାଥ ଭୟଙ୍କର ଭାବେ ଆକ୍ରାନ୍ତ। ଫଳରେ ଚିକିତ୍ସାପାଇଁ ସୁନ୍ଦରନାରାୟଣ ତାଙ୍କୁ ବାଲେଶ୍ୱରକୁ ନେଇଆସିଲେ। ଏକବର୍ଷ ଚିକିତ୍ସାରେ ରହିବା ଫଳରେ ପୀଡ଼ାର କ୍ରମଃ-ଉପଶମ ହୋଇଥିଲା।

**୧୮୫୮** – ରାଧାନାଥଙ୍କର ବାଲେଶ୍ୱର ହାଇସ୍କୁଲରେ ଷଷ୍ଠଶ୍ରେଣୀର ଛାତ୍ର ହିସାବରେ ଫେବ୍ରୁଆରୀ ମାସରେ ଯୋଗଦାନ। ସେଠାରେ ପଢ଼ିଲାବେଳେ ଜଣେ ମୁସଲମାନ ଆଖୁନ୍‌ଜୀଙ୍କଠାରୁ ସେ ଫାର୍ସି ଓ ଉର୍ଦ୍ଦୁଭାଷା ଶିକ୍ଷା କରୁଥିଲେ। ଷଷ୍ଠଶ୍ରେଣୀରେ ଅଳ୍ପଦିନପାଇଁ ପଢ଼ିବାର ସୁଯୋଗ ପାଇଥିଲେ ମଧ୍ୟ ସେ ବାର୍ଷିକ ପରୀକ୍ଷାରେ ଆଶାତୀତ ସଫଳତା ଲାଭକରିଥିଲେ। ୧୮୫୭-୫୮ ମସିହାର ବାର୍ଷିକ ବିବରଣୀରେ ତାଙ୍କ ସଂପର୍କରେ କୁହାଯାଇଥିଲା – "the progress made by the boys of the two sections is pretty fair. I recommend Radhanath Roy as deserving a prize"। ଏହି ବର୍ଷ ସ୍ୱଳ୍ପକାଳପାଇଁ ଗୌରୀଶଙ୍କର ରାୟ ରାଧାନାଥଙ୍କର ଶିକ୍ଷକ ଥିଲେ।

**୧୮୫୯** – ପଞ୍ଚମ ଶ୍ରେଣୀ (ଦ୍ୱିତୀୟ ବର୍ଷ ଶ୍ରେଣୀ)ରେ ରାଧାନାଥ ପ୍ରଥମ ହୋଇ ଉତ୍ତୀର୍ଣ୍ଣ। ଏ ସଂପର୍କରେ ସ୍କୁଲର ୧୮୫୯-୬୦ ଶିକ୍ଷାବର୍ଷର ବାର୍ଷିକ ବିବରଣୀରେ କୁହାଯାଇଥିଲା – "of the second year class Radhanath Ray is decidedly the best and he has own the highest number of marks!"

**୧୮୬୦** – ଏକ ସରକାରୀ ରିପୋର୍ଟ ଅନୁଯାୟୀ ରାଧାନାଥ ପଢ଼ିଲାବେଳେ ନିମ୍ନଲିଖିତ ବ୍ୟକ୍ତିମାନେ ବାଲେଶ୍ୱର ଜିଲ୍ଲାସ୍କୁଲର ଶିକ୍ଷକ ଥିଲେ –

୧। ପୂର୍ଣ୍ଣଚନ୍ଦ୍ର ସୋମ, ପ୍ରଧାନଶିକ୍ଷକ
୨। ଶ୍ରୀନାଥ ଦତ୍ତ, ୨ୟ ଶିକ୍ଷକ
୩। ତାରାପ୍ରସାଦ ବାନାର୍ଜୀ, ୩ୟ ଶିକ୍ଷକ
୪। ରାଖାଲଚନ୍ଦ୍ର ଚାଟାର୍ଜୀ, ୪ର୍ଥ ଶିକ୍ଷକ

୫. ପ୍ରସନ୍ନ କୁମାର ମିତ୍ର, ୫ମ ଶିକ୍ଷକ
୬. ଆର୍ତ୍ତତ୍ରାଣ ନନ୍ଦ, ହେଡ୍ ପଣ୍ଡିତ ।

**୧୮୬୧-୬୩** – ବାଲେଶ୍ୱର ଜିଲ୍ଲା ସ୍କୁଲରେ ଅଧ୍ୟୟନ କଲାବେଳେ ରାଧାନାଥ ଗଣିତରେ ଅତ୍ୟନ୍ତ ପାରଦର୍ଶୀ ଥିଲେ । ସେ ସମୟର ମାଜିଷ୍ଟ୍ରେଟ ଟୁଗୁଡ୍ ସାହେବ ଏକ ପରୀକ୍ଷା କରାଇଥିଲେ ଓ ସେ ରାଧାନାଥଙ୍କ ଜ୍ୟାମିତିଜ୍ଞାନରେ ମୁଗ୍ଧହୋଇ ତାଙ୍କୁ କୋଡ଼ିଏଟଙ୍କା ପୁରସ୍କାର ଦେଇଥିଲେ । ଦ୍ୱିତୀୟ ଶ୍ରେଣୀ (ଦଶମ ବାର୍ଷିକ ଶ୍ରେଣୀ) ବାର୍ଷିକ ପରୀକ୍ଷାରେ ଇଂରାଜୀ ଫଳାଫଳକୁ ବିଚାରକରି ସେ ବର୍ଷ (୧୮୬୨)ର ସେଠାରେ ଥିବା ଜିଲ୍ଲା ମାଜିଷ୍ଟ୍ରେଟ୍ କର୍ଣ୍ଣେଲ୍ ସାହେବ ରାଧାନାଥଙ୍କ ସମେତ ତିନିଜଣ ଛାତ୍ରଙ୍କର ଇଂରାଜୀଜ୍ଞାନ 'ଉତ୍କୃଷ୍ଟ' ବୋଲି ଅଭିହିତ କରିଥିଲେ । ସ୍କୁଲର ୧୮୬୨-୬୩ ଶିକ୍ଷାବର୍ଷର ବିବରଣୀରେ ରାଧାନାଥଙ୍କ ସଂପର୍କରେ କୁହାଯାଇଥିଲା – of the first three boys Radhanath Ray is very promising; his age is in his favour and he is intelligent, careful and I should think industrious. The other two are older and some what less energitic ।''

['ରାଧାନାଥ ଜୀବନୀ'ରେ ରାଧାନାଥଙ୍କର ଏକ ଚରିତ୍ର-ପ୍ରମାଣପତ୍ର ସଂଯୁକ୍ତ (ପୃ. ୨୮) । ଏହା ସ୍କୁଲର ହେଡ୍‌ମାଷ୍ଟର ଶ୍ରୀନାଥ ସୋମ ତା. ୨୪ । ୧୦ । ୧୮୬୮ରେ ପ୍ରଦାନ କରିଥିବାର ଉଲ୍ଲେଖ ଅଛି । ସେହି ପ୍ରମାଣପତ୍ରରେ ଉଲ୍ଲେଖଅଛି – These are to certify that Radhanath Ray has regularly attended the Balasore English school for a period of six years, that is to say that from February 1858 to 27th January 1864; that at the time of quitting the school he was in the highest class; that he has made fair progress in the various subjects taught in the school and acquired a fair proficiency in the English literature, Arithmetic, Euclid, Algebra and in Oriya and Bengali language and that his conduct has been unexceptionable । ଏହି ପ୍ରମାଣପତ୍ରରେ ଦୁଇଟି ଅସଂଗତି ରହିଛି – ପ୍ରଥମ ହେଲା ତାରିଖ ଓ ଦ୍ୱିତୀୟ ହେଡ୍‌ମାଷ୍ଟରଙ୍କ ନାମ । ୧୮୬୮ ମସିହା ବେଳକୁ ରାଧାନାଥ ବାଲେଶ୍ୱର ଜିଲ୍ଲା ସ୍କୁଲର ତୃତୀୟ ଶିକ୍ଷକ ଥିଲେ, ତାର ଚାରିବର୍ଷ ପୂର୍ବରୁ ଛାତ୍ର ହିସାବରେ ସ୍କୁଲ ପରିତ୍ୟାଗ କରିସାରିଥିଲେ । କିନ୍ତୁ ପ୍ରମାଣପତ୍ରଟି ନିଷ୍ପନ୍ନ-ବର୍ତ୍ତମାନକାଳ (Present perfect tense)ରେ ଲେଖାହୋଇଛି । ବାଲେଶ୍ୱର ଜିଲ୍ଲା ସ୍କୁଲର ପ୍ରଧାନଶିକ୍ଷକ ଥିଲେ ପୂର୍ଣ୍ଣଚନ୍ଦ୍ର ସୋମ – ଶ୍ରୀନାଥ ସୋମ ନୁହନ୍ତି ।]

**୧୮୬୪** – ଜାନୁଆରୀ ମାସରେ କଲିକତା ବିଶ୍ୱବିଦ୍ୟାଳୟରୁ ସେ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଚଉଦଟଙ୍କା ସରକାରୀ ବୃତ୍ତି ଲାଭ କଲେ । ପ୍ରେସିଡେନ୍‌ସୀ କଲେଜରେ ଅଧ୍ୟୟନ ଲାଗି ସେ କଲିକତା ଗଲେ ଓ ତାଙ୍କ ସାଙ୍ଗରେ ଗଲେ ବାପାଙ୍କ ସାନଭାଇ ଜାହ୍ନବୀ ରାୟ । ଅର୍ଥାଭାବ, ରୋଗଜନିତ ପୀଡ଼ା ଓ ଅନ୍ୟାନ୍ୟ କାରଣରୁ ରାଧାନାଥ ତାଙ୍କ କାକାଙ୍କ ସହିତ କଲିକତା ଛାଡ଼ି ବାଲେଶ୍ୱର ଫେରିଆସିଲେ । ଫଳରେ କଲେଜ-ଶିକ୍ଷା ପାଇଁ ତାଙ୍କର ଉଦ୍ୟମ ବ୍ୟର୍ଥ ହେଲା । ['ରାଧାନାଥଜୀବନୀ'କାରଙ୍କ ମତରେ ପ୍ରେସିଡେନ୍ସୀ କଲେଜରେ ଅଧ୍ୟୟନର ସ୍ୱଳ୍ପକାଳ ମଧ୍ୟରେ ରାଧାନାଥ ପରବର୍ତ୍ତୀ କାଳରେ ବଙ୍ଗଳାର ପ୍ରସିଦ୍ଧ କବି ନବୀନଚନ୍ଦ୍ର ସେନଙ୍କ ସହ ଘନିଷ୍ଠ ଥିଲେ – "ଏମାନଙ୍କ ମଧ୍ୟରେ ନବୀନଚନ୍ଦ୍ରଙ୍କ ସହିତ ତାଙ୍କର ବିଶେଷ ଘନିଷ୍ଠତା ଜନ୍ମିଥିଲା । ସ୍ୱଭାବ ଗୁଣରେ ଦୁଇ ତରୁଣ କବିଙ୍କ ତରୁଣ ହୃଦୟର ଶୁଭ-ସଂଯୋଗ ଏହି ବିଦ୍ୟାମନ୍ଦିରରେ ପ୍ରଥମେ ସଂଘଟିତ ହେଲା । ନବୀନଚନ୍ଦ୍ର ରାଧାନାଥଙ୍କୁ ସହୋଦର ତୁଲ୍ୟ ଜ୍ଞାନ କରୁଥିଲେ...;" (ପୃ. ୩୪) କିନ୍ତୁ ନବୀନଚନ୍ଦ୍ର ରାଧାନାଥଙ୍କ ସଂପର୍କରେ ଯେଉଁ କବିତା ଲେଖିଛନ୍ତି, ସେଥିରେ ଲେଖାଅଛି – "ସଖେ, କଭୁ ଦେଖିନାଇ ତୋମାରେ ନୟନେ ।"

ଉଚ୍ଚଶିକ୍ଷା ଉଦ୍ୟମ ନିଷ୍ଫଳ ହେଲା ପରେ ବାଲେଶ୍ୱର ଜିଲା ସ୍କୁଲର ତୃତୀୟ ଶିକ୍ଷକ ରୂପେ ତିରିଶ ଟଙ୍କା ବେତନରେ ରାଧାନାଥ ୧ । ୫ । ୧୮୬୪ ତାରିଖରେ ଯୋଗଦେଲେ । ଏହି ପଦବୀରେ ସେ ୨୩ । ୬ । ୧୮୬୪ ତାରିଖରେ ସ୍ଥାୟୀ ହେଲେ । ସେ ସମୟର ଜିଲ୍ଲା ସ୍କୁଲର ଅନ୍ୟ ଶିକ୍ଷକମାନେ ହେଲେ –

୧ । ଗଙ୍ଗାଧର ଆଚାର୍ଯ୍ୟ – ପ୍ରଧାନ ଶିକ୍ଷକ
୨ । ବିଶ୍ୱନାଥ ଚକ୍ରବର୍ତ୍ତୀ – ଦ୍ୱିତୀୟ ଶିକ୍ଷକ
୩ । ରଙ୍ଗଲାଲ ରାୟ – ଚତୁର୍ଥ ଶିକ୍ଷକ

୪। ଗଙ୍ଗାଲାଲ କୁଣ୍ଡୁ – ପଞ୍ଚମ ଶିକ୍ଷକ
୫। ଆର୍ତ୍ତତ୍ରାଣ ନନ୍ଦ – ହେଡ୍ ପଣ୍ଡିତ

୧୮୬୫ – ଜଣେ ଶିକ୍ଷକଭାବରେ ରାଧାନାଥ ସୁନାମ ଅର୍ଜନ କରିଥିଲେ। ତାଙ୍କର କୃତିତ୍ୱକୁ ସ୍ୱୀକୃତି ଦେଇ ସ୍କୁଲର ୧୮୬୪-୬୫ ଶିକ୍ଷାବର୍ଷର ବିବରଣୀରେ ପ୍ରଧାନଶିକ୍ଷକ ଗଙ୍ଗାଧର ଆଚାର୍ଯ୍ୟ ଲେଖିଥିଲେ – "The third master Babu Radhanath Rai is an intelligent young man, and though sometimes before he was little prone to carelessness he has latterly given me great satisfaction."

୧୮୬୫-୬୬ – ଦାମୋଦର ପ୍ରସାଦ ଦାସଙ୍କ ସହ ତାଙ୍କର ଆତ୍ମୀୟତା। ସେ ସମୟରେ ବାଲେଶ୍ୱର ମିଶନ ସ୍କୁଲର ହେଡ୍‌ମାଷ୍ଟର ଥିଲେ ଫକୀରମୋହନ ସେନାପତି। ମଧୁସୂଦନ ଦାସ [ଉତ୍କଳଗୌରବ] ସମକାଳରେ ରାଧାନାଥଙ୍କର ସହକର୍ମୀ ଥିଲେ। ତେଣୁ ଉଭୟ ବ୍ୟାସକବି ଫକୀରମୋହନ ଓ ଉତ୍କଳ-ଗୌରବଙ୍କ ଘନିଷ୍ଠ ସଂସ୍ପର୍ଶରେ ସେ ଆସିଥିଲେ। ସେମାନଙ୍କର ଯେଉଁ ଆସର ବସୁଥିଲା [illegible] ଭୟରେ ଦିନରେ ଯୋଗ ନ ଦେଲେ ମଧ ସନ୍ଧ୍ୟାରେ ରାଧାନାଥ ସେଥିରେ ଯୋଗଦେଉଥିଲେ।

୧୮୬୬ – ଅଗଷ୍ଟ ମାସରେ ବିଚିତ୍ରାନନ୍ଦ ଦାସ ଓ ଜଗନ୍ମୋହନ ରାୟ ପ୍ରମୁଖଙ୍କ ଉଦ୍ୟମରେ ଓ ଗୌରୀଶଙ୍କର ରାୟଙ୍କ ସଂପାଦକତ୍ୱରେ 'କଟକ ପ୍ରିଣ୍ଟିଂ କୋମ୍ପାନୀ' ରୁ 'ଉତ୍କଳଦୀପିକା' ସାପ୍ତାହିକ ସମ୍ବାଦପତ୍ରର ପ୍ରକାଶ। ଏହି ଉତ୍କଳଦୀପିକା ଓଡ଼ିଆ ଜାତୀୟ ଜୀବନ ଗଠନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା। ରାଧାନାଥଙ୍କ ଭବିଷ୍ୟତ ଜୀବନରେ ମଧ ଏହି ସମ୍ବାଦପତ୍ର ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା। ପୂର୍ବ-ଓଡ଼ିଶାରେ ଦୁର୍ଭିକ୍ଷର କରାଳ ଛାୟା। 'ନଅଙ୍କ ଦୁର୍ଭିକ୍ଷ' ଭାବରେ ପରିଚିତ ଏହି ଦୁର୍ଭିକ୍ଷ ଓଡ଼ିଶାର ଆର୍ଥିକ ମେରୁଦଣ୍ଡକୁ କେବଳ ଭାଙ୍ଗି ଦେଇ ନ ଥିଲା; ରାଧାନାଥଙ୍କ ଭଳି ଉଚ୍ଚାକାଙ୍କ୍ଷୀ ନିମ୍ନ ମଧ୍ୟବିତ୍ତ-ମାନଙ୍କର ଜୀବନର ଗତିକୁ ମଧ ପରିବର୍ତ୍ତନ କରି-ଦେଇଥିଲା।

୧୮୬୭-୬୮ – କଟକରେ କଲେଜ ପ୍ରତିଷ୍ଠା ହେବାରୁ ରାଧାନାଥଙ୍କର ଆତ୍ମୀୟ ଓ ସ୍ୱଦେଶହିତୈଷୀ ଜଗନ୍ମୋହନ ରାୟ ରାଧାନାଥଙ୍କୁ ଉଚ୍ଚଶିକ୍ଷା ଲାଭ କରିବାକୁ ପ୍ରବର୍ତ୍ତାଇଥିଲେ ଓ ତାଙ୍କର ସମସ୍ତ ଖର୍ଚ୍ଚ ବହନ କରିବାକୁ ପ୍ରତିଶ୍ରୁତି ଦେଇଥିଲେ। ସୁନ୍ଦରନାରାୟଣ ଏ ସଂପର୍କରେ ନିଷ୍ପତ୍ତି କରିବାର ଦାୟିତ୍ୱ ରାଧାନାଥଙ୍କ ଉପରେ ନ୍ୟସ୍ତ କରିଥିଲେ। ଘୋର ଦୁର୍ଭିକ୍ଷ କାଳରେ ପିତାଙ୍କର ଆର୍ଥିକ ଅବସ୍ଥା ଦେଖି ରାଧାନାଥ ଏଭଳି ଏକ ପ୍ରସ୍ତାବ ଗ୍ରହଣ କରିନଥିଲେ।

୧୮୬୮ – ଭାଦ୍ରବ ମାସ ପ୍ରଥମ ତିଥି (ଅଗଷ୍ଟ ମାସ)ରେ ବାଲେଶ୍ୱରର 'ଉତ୍କଳଯନ୍ତ୍ର'ରୁ 'ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦବାହିକା' ପତ୍ରିକାର ପ୍ରକାଶ। ଏହି ମାସିକ ପତ୍ରର 'ବିଜ୍ଞାପନ'ଦେଇ ସଂପାଦକ ଫକୀରମୋହନ ସେନାପତି ଲେଖିଥିଲେ – "ଭାଦ୍ରବମାସ ପ୍ରଥମ ତାରିଖଠାରୁ ବାଲେଶ୍ୱର ଉତ୍କଳ ପ୍ରେସରେ 'ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦବାହିକା' ନାମ୍ନୀ ଖଣ୍ଡେ ମାସିକ ପତ୍ରିକା ପ୍ରକାଶିତ ହେବାକୁ ଆରମ୍ଭ କରିଅଛି। ତାହାର ବାର୍ଷିକ ମୂଲ୍ୟ (ମାସୁଲ ସହିତ) ଟ୨ଙ୍କା ଚାରିଅଣା, ଷାଣ୍ମାସିକ ଟ୧ଙ୍କା ଚାରିଅଣା ଓ ତ୍ରୈମାସିକ ଦଶଅଣା ମାତ୍ର।" (ଉତ୍କଳ-ଦୀପିକା ୩-୩୮; ୧୯।୯।୧୮୬୮) ରାଧାନାଥଙ୍କର ପ୍ରଥମ ରଚନା 'ମେଘଦୂତ'ର କେତେକାଂଶ ବୋଧଦାୟିନୀରେ ପ୍ରକାଶିତ ହୋଇଥିଲା।

୧୮୬୯ – ଓଡ଼ିଶାର ବିଦ୍ୟାଳୟଗୁଡ଼ିକରେ ଓଡ଼ିଆ ଭାଷା ଓ ସାହିତ୍ୟ ପଢ଼ା ହେବା ନେଇ ସରକାରୀ ଆଦେଶ। ୧୮୬୯ ମସିହାରେ ଓଡ଼ିଶାର ଏହା ଏକ ପ୍ରଧାନ ସିଦ୍ଧି ବୋଲି 'ଉତ୍କଳ-ଦୀପିକା' ମତ ବ୍ୟକ୍ତ କରିଥିଲା – "ଶିକ୍ଷା ବିଷୟରେ ପ୍ରଧାନ ଉନ୍ନତି ଏହି ଯେ ଏତେ କାଳ ଉତ୍କଳ ଓ ବଙ୍ଗଭାଷା ଘେନି ଯେଉଁ ବିବାଦ ଥିଲା ତାହା ଏ ବର୍ଷ ଭଞ୍ଜନ ହେଲା। ସ୍ୱାର୍ଥପର ଲୋକମାନେ ଯେ ଯାହା ବୋଲନ୍ତୁ ଗବର୍ଣ୍ଣମେଣ୍ଟ ସୁବିଚାର କରି ଉତ୍କଳରେ ଓଡ଼ିଆଭାଷା ପଠନ ହେବାର ଆଜ୍ଞା ଦେଇଅଛନ୍ତି ଏବଂ ଉତ୍କଳ ପୁସ୍ତକର ବିଚାର ନିମିତ୍ତ କମିଟୀ ନିଯୁକ୍ତ କରି ଆମ୍ଭମାନଙ୍କର ବହୁଦିନର ଆଶା ପୂରଣ କରିଅଛନ୍ତି।" (ଉତ୍କଳ-ଦୀପିକା, ୫।୩; ୧୫।୧।୧୮୭୦)

ଘରୋଇ ପରୀକ୍ଷାର୍ଥୀ ଭାବରେ ରାଧାନାଥ ଏଲ.ଏ.[ଏଫ୍.ଏ.] ପରୀକ୍ଷାରେ ଉତ୍ତୀର୍ଣ୍ଣ। ଏହି ସମ୍ବାଦ ପ୍ରକାଶ କରି 'ଉତ୍କଳ-ଦୀପିକା' ଲେଖିଥିଲା – "ଏ ଛଡ଼ା [ଏଣ୍ଟ୍ରାନ୍ସ ପରୀକ୍ଷାରେ ପାସ୍ କରିଥିବା ଛାତ୍ରମାନଙ୍କ ଛଡ଼ା] ବାଲେଶ୍ୱର ସ୍କୁଲର ଜଣେ ଶିକ୍ଷକ ବାବୁ ରାଧାନାଥ ରାଏ ଏଲ.ଏ. ଉପାଧି ପରୀକ୍ଷାରେ

ଉତ୍ତୀର୍ଣ୍ଣ ହୋଇଅଛନ୍ତି । (ଉତ୍କଳ-ଦୀପିକା, ୪ । ୨; ୯ । ୧ । ୧୮୬୯)

ପଦୋନ୍ନତି ପାଇ ପୁରୀ ଜିଲ୍ଲା ସ୍କୁଲରେ ଦ୍ୱିତୀୟ ଶିକ୍ଷକ ରୂପେ ତା ୧୪ । ୧ । ୧୮୬୯ରେ ରାଧାନାଥଙ୍କର ଯୋଗଦାନ । ସେତେବେଳେ ମଧୁସୂଦନ ରାଓ ଥିଲେ ପ୍ରଥମ ଶ୍ରେଣୀ (ଏକାଦଶ ବର୍ଷ ଶ୍ରେଣୀ)ର ଛାତ୍ର । ଏହିଠାରେ ରାଧାନାଥଙ୍କ ସହ ମଧୁସୂଦନ ଘନିଷ୍ଠ ସଂପର୍କରେ ଆସିଲେ । ଏହି ସଂପର୍କ ଓଡ଼ିଶାର ଶିକ୍ଷା ଓ ସାହିତ୍ୟ କ୍ଷେତ୍ରରେ ଗଭୀର ପ୍ରଭାବ ଛାଡ଼ିଯାଇଛି ।

**୧୮୭୦** – ଜଣେ ଉତ୍ତମ ଓ କର୍ତ୍ତବ୍ୟନିଷ୍ଠ ଶିକ୍ଷକ ଭାବରେ ରାଧାନାଥଙ୍କର ପୁରୀ ଜିଲ୍ଲା ସ୍କୁଲରେ ସୁନାମ । ୧୮୬୯-୭୦ ଶିକ୍ଷାବର୍ଷର ବାର୍ଷିକ ବିବରଣୀରେ ପୁରୀ ଜିଲ୍ଲା ସ୍କୁଲର ପ୍ରଧାନଶିକ୍ଷକ କୁଞ୍ଜବିହାରୀ ଚକ୍ରବର୍ତ୍ତୀ ରାଧାନାଥଙ୍କ ସଂପର୍କରେ ଲେଖିଥିଲେ – "I am mainly indebted to the exertions and assistance of the second master, Babu Radhanath Rai, in bringing the school to its present prosperous condition and for the successful result of the University Entrance Examination. In a word within my whole experience, I have never met with such an energetic teacher !" ରାଧାନାଥ ପୁରୀ ଜିଲ୍ଲା ସ୍କୁଲରେ ଯୋଗଦେବାର ଦୁଇବର୍ଷ ପୂର୍ବ ପର୍ଯ୍ୟନ୍ତ କୌଣସି ଛାତ୍ର ସେହି ସ୍କୁଲରୁ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନ ଥିଲେ । ୧୮୬୯ ମସିହାରେ ଏଣ୍ଟ୍ରାନ୍ସ ପରୀକ୍ଷାର୍ଥୀରୂପେ ଏକୁଟିଆ ମଧୁସୂଦନ ରାଓ ପୁରୀ ଜିଲ୍ଲା ସ୍କୁଲରୁ ଉତ୍ତୀର୍ଣ୍ଣ ହେଲେ । (ଉତ୍କଳ ଦୀପିକା, ୫ । ୨; ୮ । ୧ । ୧୮୭୦) ମଧୁସୂଦନଙ୍କ ସହ ରାଧାନାଥଙ୍କର ଘନିଷ୍ଠତା ହେତୁ ପ୍ରଧାନଶିକ୍ଷକ ଚକ୍ରବର୍ତ୍ତୀ ଗ୍ରହଣ କରି ନେଇଥିଲେ ଯେ ଏ କୃତିତ୍ୱ ପ୍ରକୃତରେ ହେଉଛି ରାଧାନାଥଙ୍କର । ସ୍କୁଲ ସମୂହର ଇନ୍‌ସପେକ୍ଟର ମାର୍ଟିନ୍ ମଧ୍ୟ ଚକ୍ରବର୍ତ୍ତୀଙ୍କ ମତକୁ ସମର୍ଥନ କରି ବିଭାଗୀୟ ରିପୋର୍ଟରେ ଲେଖିଥିଲେ – "I have much pleasure saying that I believe the late Headmaster's [Kunjabihari Chakravarty's] statement to be strictly correct, that Radhanath Babu has passed the First Arts Examination and is most anxious to have a transfer as will enable him to pass the Degree Examination of the University and that as his home is in Orissa, I hope, he will be one of those who will contribute to the uprising of the province." [General Report of Public Instruction, 1870, P.142] । ମାର୍ଟିନ୍‌ଙ୍କର ଏହି ମନ୍ତବ୍ୟ ଶିକ୍ଷାବିଭାଗରେ ରାଧାନାଥଙ୍କ ଉନ୍ନତି ପାଇଁ ପଥ ପ୍ରସ୍ତୁତ କରିଥିଲା ।

ପରଶମଣିଙ୍କ ସହ ରାଧାନାଥଙ୍କର ବିବାହ । ରାଧାନାଥଙ୍କ ଶ୍ୱଶୁର ଚନ୍ଦ୍ରମୋହନ ଆଦିତ୍ୟ ଥିଲେ ରେମୁଣାନିବାସୀ ।

ପୁରୀ ଜିଲ୍ଲା ସ୍କୁଲରେ ସାହେବମାନଙ୍କର ସାପ୍ତାହିକ ଉପାସନା ଓ ସେଥିନେଇ ବିଭିନ୍ନ ସମ୍ବାଦପତ୍ରର ବିରୂପ ପ୍ରତିକ୍ରିୟା – "ଏଡୁକେଶନ ଗେଜେଟ ଶୁଣି-ଅଛନ୍ତି ଯେ ପୁରୀର ଗବର୍ଣ୍ଣମେଣ୍ଟ ସ୍କୁଲ ଗୃହରେ କେତେମାସ ହେଲା ସାହେବମାନେ ପ୍ରତି ରବିବାର ଗିର୍ଜା କରୁଅଛନ୍ତି । ଏହା ପୁରୀ ସ୍କୁଲର ଦୁର୍ଗତିର କାରଣ ହୋଇଥିବାରୁ ଉକ୍ତ ସ୍କୁଲର ହେଡ୍‌ମାଷ୍ଟର ଆପତ୍ତି କଲେ, ଏଥିପାଇଁ ସାହେବମାନେ ବଡ଼ ବିରକ୍ତ ଅଛନ୍ତି ।" (ଉତ୍କଳ ଦୀପିକା, ୫ । ୨୬; ୨୫ । ୬ । ୧୮୭୦) ଏହି ବିରକ୍ତିର ଶରବ୍ୟ ହୋଇଛନ୍ତି ରାଧାନାଥଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିବା ହେଡ୍‌ମାଷ୍ଟର କୁଞ୍ଜବିହାରୀ ଚକ୍ରବର୍ତ୍ତୀ । ଚକ୍ରବର୍ତ୍ତୀଙ୍କୁ ପୁରୀ ଜିଲ୍ଲା ସ୍କୁଲରୁ ବଦଳି କରିଦିଆଯାଇଛି ଓ ତାଙ୍କ ସ୍ଥାନରେ ହେଡ୍‌ମାଷ୍ଟର ହୋଇଛନ୍ତି ରାମଦାସ ଚକ୍ରବର୍ତ୍ତୀ । ବାଲେଶ୍ୱର ସରକାରୀ ସ୍କୁଲର ପଣ୍ଡିତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନହେ' ପୁସ୍ତକ ପ୍ରକାଶ ଓ ସେଥିନେଇ ବାଲେଶ୍ୱର ଓ କଟକରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି । ୧୮୬୯ ମସିହାରେ ପ୍ରଚାରିତ ସରକାରୀ ଆଦେଶକୁ ବିରୋଧକରି ଏହି ପୁସ୍ତକଟି ରଚିତ । ବାଲେଶ୍ୱରର ଡେପୁଟୀ ଇନ୍ସପେକ୍ଟର ଶିବଦାସ ଭଟ୍ଟାଚାର୍ଯ୍ୟ କାନ୍ତିଚନ୍ଦ୍ରଙ୍କୁ କେବଳ ସମର୍ଥନ କରି ନ ଥିଲେ, ସରକାରୀ ଆଦେଶକୁ କାର୍ଯ୍ୟକାରୀ ନ କରିବାକୁ ଚେଷ୍ଟା କରିଥିଲେ । ତେଣୁ 'ବାଲେଶ୍ୱର ସମ୍ବାଦବାହିକା' ସମ୍ବାଦପତ୍ର ଶିବଦାସଙ୍କ ବିରୁଦ୍ଧରେ ଜନମତ ସୃଷ୍ଟି

କରିଥିଲା – "ଗତ ପ୍ରକାଶିତ ବାଲେଶ୍ୱର ସମ୍ବାଦ-ବାହିକାରୁ ଅବଗତ ହେଲୁଁ ଯେ ଉକ୍ତ ଜିଲ୍ଲା ସ୍କୁଲସମୂହର ଡେପୁଟି ଇନ୍ସପେକ୍ଟର ବାବୁ ଶିବଦାସ ଭଟ୍ଟାଚାର୍ଯ୍ୟ ଉତ୍କଳ ଭାଷା ଉଚ୍ଛେଦର ଚେଷ୍ଟା କରିବାରୁ ବାଲେଶ୍ୱର ସହରସ୍ଥ ପ୍ରାୟ ସମସ୍ତ ଜମିଦାର ମହାଜନ ସରକାରୀ କର୍ମଚାରୀ ପ୍ରଭୃତି ତାହାଙ୍କ ବଦଳି ପାଇଁ ଇନ୍ସ୍‌ପେକ୍ଟର ସାହେବଙ୍କଠାରେ ଦରଖାସ୍ତ କରିଅଛନ୍ତି। ନଗରବାସି-ମାନେ ସେହି ଆବେଦନପତ୍ର ଭାଷାବିତ୍ ସୁଯୋଗ୍ୟ କଲେକ୍ଟର ଜନ୍ ବିମ୍‌ସଙ୍କ ହସ୍ତରେ ଦେଇ ଅନୁରୋଧ କରିବାରୁ ସେ ଆପଣା ମନ୍ତବ୍ୟ ପ୍ରକାଶପୂର୍ବକ ଇନ୍ସ୍‌ପେକ୍ଟର ସାହେବଙ୍କ ନିକଟକୁ ପ୍ରେରଣ କରି ଡାଇରେକ୍ଟର ଗେଟ୍‌କିନ୍‌ସନ୍ ସାହେବଙ୍କ ନିକଟକୁ ପଠାଇବା ଲାଗି ଅନୁରୋଧ କରିଅଛନ୍ତି। ଦେଖାଯାଉ କି ଫଳ ହୁଏ ? ଘରର ଢେଙ୍କି ଯେବେ କୁମ୍ଭୀର ହେଲା ତେବେ ତାହାକୁ ତଡ଼ିଦେବାପାଇଁ ବାଲେଶ୍ୱରବାସିମାନେ ଯାହା କରିଅଛନ୍ତି ତାହା ଉଚିତ ହୋଇଅଛି।" (ଉତ୍କଳଦୀପିକା, ୫।୧୩; ୨୬।୩।୧୮୭୦)

**୧୮୭୧** – ବଙ୍ଗର ଛୋଟଲାଟ କାମ୍ପେଲ ସାହେବଙ୍କ ପ୍ରବର୍ତ୍ତିତ ଡେପୁଟୀ ପରୀକ୍ଷା ଦେବା ଉଦ୍ଦେଶ୍ୟରେ ରାଧାନାଥଙ୍କର ଆଇନ ଅଧ୍ୟୟନ ଓ ଜରିବ ପ୍ରଭୃତି ଶିକ୍ଷା। ବର୍ଷେ କାଳ କଠିନ ପରିଶ୍ରମ କରିବା ଫଳରେ ତାଙ୍କର ସ୍ୱାସ୍ଥ୍ୟଭଙ୍ଗହେଲା। ତେଣୁ ସେ ଚାରିମାସ ଛୁଟି ନେଇ ବାଲେଶ୍ୱରରେ ଅବସ୍ଥାନ କଲେ। ଏହି ସମୟରେ ସେ ପୂର୍ବପରିଚିତ କୁମାର ବୈକୁଣ୍ଠନାଥ ଦେଙ୍କ ସହ ଘନିଷ୍ଠ ହେଲେ ଓ ରସିକଚାନ୍ଦ ଦେଙ୍କ ସହ ଆତ୍ମୀୟ ହୋଇ ତାଙ୍କଠାରୁ ସଙ୍ଗୀତ ଶିକ୍ଷା କଲେ।

**୧୮୭୨** – ରାଧାନାଥ ପୁରୀ ଜିଲ୍ଲା ସ୍କୁଲରୁ ବଦଳି ହୋଇ ବାଙ୍କୁଡ଼ା ସ୍କୁଲର ଦ୍ୱିତୀୟ ଶିକ୍ଷକରୂପରେ ୧୦।୧।୧୮୭୨ତାରିଖରେ ଯୋଗଦାନ କଲେ। ପୁରୀ ଜିଲ୍ଲା ସ୍କୁଲରେ ଥିଲାବେଳେ ସେ ଅତ୍ୟନ୍ତ ଲୋକପ୍ରିୟ ଥିଲେ। ୧୮୭୧-୭୨ ଶିକ୍ଷାବର୍ଷର ବିବରଣୀରେ ତାଙ୍କ ସଂପର୍କରେ କୁହାଯାଇଥିଲା – "The departure of Baboo Radhanath Rai from this school can't be sufficiently regretted. He was highly popular with the boys and everyone else connected with the school and was very painstaking and useful officer।"

ମଧୁସୂଦନରାଓ ଦ୍ୱିତୀୟ ଶ୍ରେଣୀରେ କଟକ ହାଇସ୍କୁଲର ଏଫ୍.ଏ.ଶ୍ରେଣୀରୁ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ। କିଛିକାଳ ଯାଜପୁରରେ ଶିକ୍ଷକତା କଲା ପରେ ସେ ବଦଳିହୋଇ ବାଲେଶ୍ୱର ଜିଲ୍ଲାସ୍କୁଲରେ ଯୋଗଦେଲେ।

ଓଡ଼ିଆ ବିରୋଧୀ ମନୋଭାବ ଓ କାର୍ଯ୍ୟକଳାପ ହେତୁ ଶିବଦାସ ଭଟ୍ଟାଚାର୍ଯ୍ୟଙ୍କ ବିରୁଦ୍ଧରେ ହେଉଥିବା ଆନ୍ଦୋଳନ ଶୀର୍ଷ ସୀମାରେ ଉପନୀତ ହେଲା। ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ 'ବାଲେଶ୍ୱର ସମ୍ବାଦବାହିକା'ର ସଂପାଦକ ଓ ବାଲେଶ୍ୱର ନର୍ମାଲ୍ ସ୍କୁଲର ପ୍ରଧାନଶିକ୍ଷକ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ। ସମକାଳରେ ଡେପୁଟୀ ଇନ୍ସ୍‌ପେକ୍ଟର ଭାବରେ ରାଧାନାଥଙ୍କୁ ପଦୋନ୍ନତି ଦେବାଲାଗି ଆନ୍ଦୋଳନ-କାରୀଙ୍କ ତରଫରୁ ପ୍ରସ୍ତାବ ଦିଆଯାଇଥିଲା। ଅବଶେଷରେ ଶିବଦାସ ପଦ ତ୍ୟାଗକଲେ ଓ ରାଧାନାଥ ତୃତୀୟ ଶ୍ରେଣୀର ଡେପୁଟୀ ଇନ୍ସପେକ୍ଟର ଭାବରେ ପଦୋନ୍ନତି ଲାଭକରି ୨୬।୬।୧୮୭୨ ତାରିଖରେ ଯୋଗଦାନକଲେ। ପୂର୍ବର ଛାତ୍ର ଓ ସୁହୃଦ ମଧୁସୂଦନ ରାଓ ସେତେବେଳକୁ ଜିଲ୍ଲା ସ୍କୁଲର ଅନ୍ୟତମ ଶିକ୍ଷକ ଭାବରେ ଯୋଗଦେଇଥିବାରୁ ପରସ୍ପର ପୁଣି ଥରେ ଘନିଷ୍ଠ ସଂପର୍କରେ ଆସିଲେ।

ଏହି ବର୍ଷ ଜୁଲାଇ ମାସରେ କେଦାରପୁର ଗ୍ରାମରେ ଭୟଙ୍କର ବଜ୍ରପାତ। ଏହ ବଜ୍ରପାତର ସ୍ମୃତି ରାଧାନାଥଙ୍କ କବି ମନରେ ଜୀବନ୍ତ ରହିଥିଲା। ସଂପୃକ୍ତ ବଜ୍ରପାତ ସଂପର୍କରେ 'ଉତ୍କଳଦୀପିକା'ରେ କୁହାଯାଇଥିଲା – "ସୋରୋ କେଦାରପୁର ନିକଟରେ ଏହି ଜୁଲାଇ ମାସ ତା୨୦ରିଖରେ ବେଳ ଦଶ ଘଣ୍ଟା ସମୟରେ ଅଗ୍ନି ଆକୃତି ଦୁଇ ଗୋଟା ସ୍ତମ୍ଭ ଆକାଶରୁ ଖସି ଏକ କ୍ଷୁଦ୍ର ନଦୀରେ ପଡ଼ିଲା। ସେହି ସ୍ତମ୍ଭ ଆଡ଼େ ଦୀର୍ଘେ ଅଧକ୍ରୋଶ ପର୍ଯ୍ୟନ୍ତ ସ୍ଥଳେ ଧୂଆଁ ହୋଇଥିବାରୁ ନିକଟବର୍ତ୍ତୀ ଗ୍ରାମବାସି-ମାନେ ପଳାଇବାକୁ ଉଦ୍ୟତ ହୋଇଥିଲେ; କିନ୍ତୁ କେହି ପ୍ରାଣୀ ନଷ୍ଟହୋଇନାହିଁ। (୬।୩୨; ୧୦।୮।୧୮୭୨)

**୧୮୭୩** – ଜାନୁଆରୀ ମାସରେ କୁମାର ବୈକୁଣ୍ଠନାଥ ଦେଙ୍କ ଦ୍ୱାରା 'ଉତ୍କଳ-ଦର୍ପଣ' ପତ୍ରିକାର ପ୍ରକାଶ। ଏହା ଥିଲା ଓଡ଼ିଶାର ପ୍ରଥମ ମାସିକ ସାହିତ୍ୟ-ପତ୍ରିକା। ଏହାର ପ୍ରକାଶନକୁ ସ୍ୱାଗତ କରି 'ଉତ୍କଳ-ଦୀପିକା' ଲେଖିଥିଲା – "ବାଲେଶ୍ୱରରେ ଉତ୍କଳଦର୍ପଣ . . . ଏହି ମାସରେ ବାହାରିଅଛି ଓ

ଆମେମାନେ ତହିଁରେ ସାତିଶୟ ଆନନ୍ଦିତ ହୋଇଅଛୁଁ ଓ କୃତଜ୍ଞତାପୂର୍ବକ ଖଣ୍ଡିଏ ପତ୍ରିକା ପାଇବାର ସ୍ୱୀକାର କରୁଅଛୁଁ। ଉତ୍କଳ-ଦର୍ପଣର ଉଦ୍ଦେଶ୍ୟ ମହତ୍ ଅଟେ ଓ ତାହା ସଫଳ ହେଲେ ଦେଶର ଅନେକ ଉପକାର ହେବ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ। ସୁତରାଂ ସେଥିରେ ସଂପାଦକମାନେ ସହସା ଏ କାର୍ଯ୍ୟରେ ପ୍ରବୃତ୍ତ ହେବା ହେତୁ ସେମାନଙ୍କୁ ପ୍ରଶଂସା କରିବାକୁ ହେବ।" (୮।୩; ୧୮।୧।୧୮୭୩)

'ଉତ୍କଳ-ଦର୍ପଣ'ର ପ୍ରକାଶନ ରାଧାନାଥଙ୍କ ସାହିତ୍ୟିକଜୀବନର ଏକ ପ୍ରଧାନ ଘଟଣା।

ଜୁଲାଇ ୨୧ ତାରିଖରେ ରାଧାନାଥଙ୍କ ପିତା ସୁନ୍ଦରନାରାୟଣଙ୍କର ବିସୂଚିକା ରୋଗରେ ଦେହାନ୍ତ। ସୁନ୍ଦରନାରାୟଣ ଥିଲେ ବାଲେଶ୍ୱର କଚେରୀର ଜଣେ ସର୍ବମାନ୍ୟ ଅମଲା। ତାଙ୍କ ମୃତ୍ୟୁରେ କଲେକ୍ଟର ଜନ୍ ବୀମସ୍ ଗୋଟିଏଦିନ କଚେରୀ ବନ୍ଦ କରି-ଦେଇଥିଲେ ଓ ରାଧାନାଥଙ୍କୁ ଲେଖିଥିଲେ –

"My dear Radhanath,

I am indeed deeply grieved at hearing the sad news of your father's death. He was an excellent official, very intelligent and active and always rendered me great assistance. I lost my own father many years ago but I have not yet ceased to grieve for him, and I can therefore deeply sympathize with you.

Come and see me as soon as you are able to appear in public. Although I cannot make any promise now about your uncles, I need not assure you that I will do all in my power to assist you and your family in this deplorable juncture.

Your sincere friend

July 21st 1873 Sd/John Beames

(ରାଧାନାଥ ଜୀବନୀ,– ପୃ. ୭୪)

୧୮୭୬– ରାଧାନାଥଙ୍କର ଜ୍ୟେଷ୍ଠପୁତ୍ର ଶଶିଭୂଷଣଙ୍କର ଜନ୍ମ। ଜଣେ ତୃତୀୟ ଶ୍ରେଣୀର ଡେପୁଟୀ ଇନ୍ସ୍ପେକ୍ଟର ଥିଲେ ମଧ୍ୟ ରାଧାନାଥଙ୍କ ଚେଷ୍ଟାରେ ବାଲେଶ୍ୱର ଜିଲ୍ଲାର ପ୍ରାଥମିକ ଶିକ୍ଷାରେ ଯଥେଷ୍ଟ ଅଗ୍ରଗତି ସାଧିତ ହୋଇଥିଲା। ସ୍କୁଲସମୂହର ଜଏଣ୍ଟ ଇନ୍ସ୍ପେକ୍ଟର ନନ୍ଦକିଶୋର ଦାସ ଏ ସଂପର୍କରେ ୧୮୭୫-୭୬ ବର୍ଷର ରିପୋର୍ଟରେ ଲେଖିଥିଲେ – "Balasore takes the lead in Primary Education. The Patsalas are well attended and are taught for the most parts by well qualified teachers and altogether exhibit a vigorous and healthy life not approached else where in Orissa. Among other causes, Balasore school, own their success to intelligent supervision by the Deputy Inspector, Babu Radhanath Rai who takes more than an official interest in his work." "Radhanath Rai, 3rd grade Deputy Inspector, Balasore, deserves high commendations for the intelligence, tact, ca[illegible]tness which he has shown in exe[illegible]n of his duties!"

୧।୭୭ – ଡେପୁଟୀ କଲେକ୍ଟର ଚାକିରୀରୁ ଅସ୍ଥାୟୀଭାବେ ଜଏଣ୍ଟ ଇନ୍ସପେକ୍ଟର ହୋଇ ଆସିଥିବା ନନ୍ଦକିଶୋର ଦାସ ଅଗଷ୍ଟ-ସେପ୍ଟେମ୍ବରରେ ଏକ ବିଷମ ସମସ୍ୟାର ସମ୍ମୁଖୀନ ହେଲେ। ସେ ତାଙ୍କର ପୂର୍ବ କାର୍ଯ୍ୟକୁ ଫେରିଗଲେ ୧୯୦୦ ଟଙ୍କା ବର୍ଦ୍ଧିତ ଦରମା ପାଇବେ ଅଥଚ ଜଏଣ୍ଟ ଇନ୍ସପେକ୍ଟର ପଦବୀରେ ରହିଲେ ସେଇ ବର୍ଦ୍ଧିତ ଦରମା ଭତ୍ତା ଆକାରରେ ମଧ୍ୟ ପାଇବେ ନାହିଁ ବୋଲି ସରକାରୀ ନିର୍ଦ୍ଦେଶନାମା ପ୍ରଦତ୍ତ ହୋଇଥିଲା। ତେଣୁ ସେ ପୂର୍ବ ଚାକିରୀକୁ ଫେରିଯିବାପାଇଁ ଇଚ୍ଛାକଲେ। ଏ ସଂପର୍କରେ ଏକ ବିସ୍ତୃତ ବିବରଣୀ ଦେଇ ଓ କିଏ ପରବର୍ତ୍ତୀ ଜଏଣ୍ଟ ଇନ୍ସପେକ୍ଟର ହେବା ଉଚିତ ସେଥିନେଇ ଜନମତ ସୃଷ୍ଟି କରିବା ଉଦ୍ଦେଶ୍ୟରେ କେହି ଛଦ୍ମବେଶୀ 'ଠିକ୍ଠାକ୍' ନିମ୍ନୋକ୍ତ ମନ୍ତବ୍ୟ ଦେଇଛନ୍ତି – "ଯାହା ହେଉ ଜଣେ ଦେଶୀୟଙ୍କ ନାମ ଏଠାରେ ଉଲ୍ଲିଖିତ ହୋଇପାରେ। ତାଙ୍କୁ ଉକ୍ତ କର୍ମ ଦେଲେ ଓଡ଼ିଶାବାସିଏ ଅସନ୍ତୁଷ୍ଟ ହେବେନାହିଁ, ସେ ବ୍ୟକ୍ତି ବାଲେଶ୍ୱରର ଡେପୁଟୀ ଇନ୍ସ୍ପେକ୍ଟର ରାଧାନାଥବାବୁ। ତାଙ୍କୁ ଏ କର୍ମରେ ନିଯୁକ୍ତ କଲେ ମଧ୍ୟ ଓଡ଼ିଶା ଶିକ୍ଷାବିଭାଗର ମଙ୍ଗଳର ସମ୍ୟକ୍ ସମ୍ଭାବନା। ସେ ପ୍ରକୃତ ବି.ଏ.,

ଏମେ [ଏମ୍.ଏ.]ଙ୍କଠାରୁ ଉପଯୁକ୍ତତର। ଅନେକ ଶିକ୍ଷାବିଭାଗୀୟ ୨-୩ ଶତଟଙ୍କା ବେତନ ପାଇବା ଲୋକଙ୍କ ଅପେକ୍ଷା ସୁଦକ୍ଷରେ କର୍ମଚାରୀ ଓ ଅଧିକ ପାଣ୍ଡିତ୍ୟଧାରୀ। ରେଭେନ୍‌ସା ସାହେବ ସେଦିନ ଡେପୁଟୀ ଇନ୍‌ସ୍ପେକ୍ଟର ଧାଡ଼ିରେ ତାଙ୍କୁ ପଦୋନ୍ନତି ନ ଦେଇ ତାଙ୍କପ୍ରତି ବିଶେଷ ଅନ୍ୟାୟ କରିଅଛନ୍ତି। ଏହା ବୋଧହୁଏ ସ୍ୱୟଂ ବୀମ୍‌ସ ସାହେବଙ୍କୁ ସୁଦ୍ଧା ଅଗୋଚର ନାହିଁ।'' (ଉତ୍କଳ ଦୀପିକା, ୧୨।୩୯; ୨୯।୯।୧୮୭୭)

ନନ୍ଦକିଶୋର ଦାସ ଡେପୁଟୀ କଲେକ୍ଟର ଚାକିରୀକୁ ଫେରିଆସିବା ଫଳରେ ଓଡ଼ିଶା ଡିଭିଜନର ଜଏଣ୍ଟ ଇନ୍‌ସପେକ୍ଟର ପଦବୀ ଖାଲିପଡ଼ିଲା ଓ ସେଥିପାଇଁ ରାଧାନାଥଙ୍କ ବ୍ୟତୀତ ତିନିଜଣ ପ୍ରାର୍ଥୀ ଥିଲେ – କଟକ କଲେଜର ଜଣେ ଅଧ୍ୟାପକ, ପୁରୀ ଜିଲ୍ଲା ସ୍କୁଲର ହେଡ୍‌ମାଷ୍ଟର (ରାମଦାସ ଚକ୍ରବର୍ତ୍ତୀ) ଓ ଜଣେ ପୁରୁଖା ଡେପୁଟି ଇନ୍‌ସପେକ୍ଟର (ଉମା ପ୍ରସାଦ ଦେ)। ଅଭିଜ୍ଞତା ଓ ଶିକ୍ଷାଗତ ଯୋଗ୍ୟତାରେ ଅନ୍ୟ ତିନିଜଣ ରାଧାନାଥଙ୍କ ଅଧିକ ଉପଯୁକ୍ତ ଥିଲେ। କିନ୍ତୁ 'ଉତ୍କଳ-ଦୀପିକା'ଦ୍ୱାରା ଜଣେ ଓଡ଼ିଆଙ୍କୁ ନିଯୁକ୍ତି ଦେବାପାଇଁ ଜନମତ ସୃଷ୍ଟି, ନିଜର କାର୍ଯ୍ୟଦକ୍ଷତା ଓ କମିସନର୍ ଜନ୍ ବୀମ୍‌ସଙ୍କ ଦୃଢ଼ ସୁପାରିଶ ଫଳରେ ରାଧାନାଥ ଜଏଣ୍ଟ ଇନ୍ସପେକ୍ଟର ପଦବୀକୁ ଉନ୍ନିତ ହେଲେ। ଏ ସଂପର୍କରେ ସମ୍ବାଦ ପ୍ରକାଶ କରି 'ଉତ୍କଳ-ଦୀପିକା' ଲେଖିଥିଲା – ''ଆମ୍ଭେମାନେ ଅନେକ ଦିନୁ ଉଡ଼ାଖବର ଶୁଣିଥିଲୁଁ ଯେ ଓଡ଼ିଶାର ଜଏଣ୍ଟ ଇନସ୍ପେକ୍ଟର ପଦ ସକାଶେ ଶ୍ରୀଯୁକ୍ତ ବୀମ୍‌ସ ସାହେବ ବାବୁ ରାଧାନାଥ ରାୟଙ୍କୁ ମନୋନୀତ କରି ଗବର୍ଣ୍ମେଣ୍ଟକୁ ରିପୋର୍ଟ କରିଥିଲେ। ଗତ ସପ୍ତାହର କଲିକତା ଗେଜେଟ୍ ଉକ୍ତ ଜନରବକୁ ସ୍ୱାର୍ଥ କଲା। ଆମ୍ଭେମାନେ ବାବୁ ରାଧାନାଥଙ୍କ ନିଯୋଗରେ ଆନନ୍ଦିତ ହୋଇଅଛୁ। ଓଡ଼ିଶାର ଡେପୁଟୀ ଇନ୍‌ସ୍ପେକ୍‌ଟରମାନଙ୍କ ମଧ୍ୟରେ ଏହାଙ୍କ ପ୍ରଶଂସା ଅଧିକ। ପ୍ରତିବର୍ଷ ବିଜ୍ଞାପନରୁ ତାହା ପ୍ରକାଶ ପାଉଅଛି। ଇଂରାଜୀ ଭାଷାରେ ଏମ୍.ଏ. ଅଥବା ବି.ଏ. ହୋଇ ନ ଥିଲେ ମଧ୍ୟ ଘରେ ବସି ଅନେକ ଶିକ୍ଷା କରିଅଛନ୍ତି ଏବଂ ଦେଶୀୟ ଭାଷାରେ ଏହାଙ୍କ ଯୋଗ୍ୟତାର ପରିଚୟ ଏହାଙ୍କ ପ୍ରକାଶିତ ପୁସ୍ତକମାନ ଦେଉଅଛି। କେହି କେହି ବୋଲନ୍ତି କି ଉମାପ୍ରସାଦ ଦେଙ୍କ ପ୍ରତି ଅନ୍ୟାୟ ହୋଇଅଛି; କାରଣ ସେ ଏହାଙ୍କଠାରୁ ଉଚ୍ଚଶ୍ରେଣୀରେ ଥିଲେ। ମାତ୍ର ଏ ଆପତ୍ତି ଯଥାର୍ଥ ନୁହଇ, କାରଣ ଉମାପ୍ରସାଦଙ୍କ ପଦୋନ୍ନତି ଠିକ ନ୍ୟାୟ ବିଚାରରେ ହୋଇଥିବା ପକ୍ଷେ ସନ୍ଦେହ ଅଛି; ପୁଣି ସେ ଓଡ଼ିଶାର ଲୋକ ନୁହନ୍ତି। ଆମ୍ଭମାନଙ୍କ ମତରେ ବାବୁ ନନ୍ଦକିଶୋର ଦାସଙ୍କ ଉତ୍ତାରୁ ବାବୁ ରାଧାନାଥ ରାୟଙ୍କୁ ମନୋନୀତ କରିବାରେ ଶ୍ରୀଯୁକ୍ତ ବୀମ୍‌ସ ସାହେବ ଉତ୍ତମ କରିଅଛନ୍ତି ଏବଂ ଏଥିରେ ଓଡ଼ିଶାର ଲୋକମାନେ ସନ୍ତୁଷ୍ଟ ହେବାର ଜଣାଯାଏ। (୧୨।୪୬; ୨୪।୧୧।୧୮୭୭) ଏହି ସମ୍ବାଦ ପ୍ରକାଶିତ ହେବା ଦିନ ଅର୍ଥାତ୍ ୨୪।୧୧।୧୮୭୭ ତାରିଖରେ ରାଧାନାଥ ଓଡ଼ିଶାର ଜଏଣ୍ଟ ଇନ୍‌ସ୍ପେକ୍ଟର ପଦବୀରେ ଯୋଗ ଦେଇଛନ୍ତି। ରାଧାନାଥ ଜଏଣ୍ଟ ଇନ୍‌ସପେକ୍ଟର ପଦବୀକୁ ଉନ୍ନୀତ ହେଲାପରେ ବାଲେଶ୍ୱରର କାର୍ଯ୍ୟନିର୍ବାହୀ ମାଜିଷ୍ଟ୍ରେଟ ଟି. ନର୍ମାନ୍ ତାଙ୍କୁ ୧୪।୧୧।୧୮୭୭ତାରିଖରେ ଯେଉଁ ପତ୍ର ଦେଇଥିଲେ ତାହା ତାଙ୍କର କାର୍ଯ୍ୟଦକ୍ଷତା ପ୍ରତି ସମସ୍ତଙ୍କର ବିଶ୍ୱାସ ଓ ବ୍ୟକ୍ତିତ୍ୱ ପ୍ରତି ଅନେକଙ୍କର ଥିବା ଶ୍ରଦ୍ଧାର ପ୍ରମାଣ। ଜଏଣ୍ଟ ଇନ୍‌ସପେକ୍ଟର ଭାବରେ ଯୋଗଦେଲାପରେ ମଧ୍ୟ ଡେପୁଟୀ ଇନ୍‌ସପେକ୍ଟର ଭାବରେ ପ୍ରାଥମିକ ବିଦ୍ୟାଳୟର ପରୀକ୍ଷା କାର୍ଯ୍ୟ ତଦାରଖ କରିବାପାଇଁ ସଂପୃକ୍ତ ପତ୍ରରେ ଅନୁରୋଧ କରାଯାଇଥିଲା ଓ ରାଧାନାଥ ସେଇ ଅନୁରୋଧ ରକ୍ଷାକରିଥିଲେ।

୧୮୭୮ – ୧୮।୧।୧୮୭୮ତାରିଖରେ 'ଉତ୍କଳସଭା'ର ପ୍ରଥମ ଷାଣ୍ମାସିକ ଅଧିବେଶନ। ସେଥିରେ ରାଧାନାଥଙ୍କ ସଭାପତି ଆସନ ଗ୍ରହଣ କରିଥିଲେ। ଏହି ସଭାର ବିବରଣୀ ଦେଇ 'ଉତ୍କଳ-ଦୀପିକା' ଲେଖିଥିଲା – ''ଗତ ସପ୍ତାହ ଶୁକ୍ରବାର ରାତ୍ରରେ ଛାପାଖାନା ଦୋମହଲାରେ ଉତ୍କଳସଭାର ପ୍ରଥମ ଷାଣ୍ମାସିକ ଅଧିବେଶନ ହୋଇଥିଲା। ଏଥିର ସଭ୍ୟମାନେ ପ୍ରାୟ ସମସ୍ତେ ବିଦ୍ୟାଳୟର ଛାତ୍ର ଓ କେତେ ଜଣ ଶିକ୍ଷକ ଅଟନ୍ତି। ଏଦିନ ସଭାରେ ପ୍ରାୟ ସେହିମାନେ ଥିଲେ ଓ ବାହାରର ଭଦ୍ରଲୋକ ଦୁଇ-ଚାରିଜଣରୁ ଅଧିକ ହେବେନାହିଁ। ବାବୁ ରାଧାନାଥ ରାୟଙ୍କୁ ସଭାପତି କରି ସଭାର କାର୍ଯ୍ୟାରମ୍ଭ ହେଲା ଓ ଷାଣ୍ମାସିକ ବିଜ୍ଞାପନୀ ପାଠ ହେଲା।'' (୧୩।୪; ୨୬।୧।୧୮୭୮) ଏହି ସଭାରେ ପ୍ୟାରୀମୋହନ ଆଚାର୍ଯ୍ୟ ଓଡ଼ିଆ ଭାଷା ଉପରେ ଭାଷଣ ଦେବାକୁ ଯାଇ ଉପେନ୍ଦ୍ର ସାହିତ୍ୟର କଠୋର ସମାଲୋଚନା କରିଥିଲେ। ଚତୁର୍ଭୁଜ ପଟ୍ଟନାୟକ ଆ[illegible]

ବକ୍ତବ୍ୟର ପ୍ରତିବାଦ କରିଥିଲେ; କିନ୍ତୁ ସଭାପତି ହିସାବରେ ରାଧାନାଥ କୌଣସି ମନ୍ତବ୍ୟ ଦେଇ-ନଥିଲେ।

୪।୭।୧୮୭୮ତାରିଖରେ ଉତ୍କଳସଭାର ବାର୍ଷିକ ଅଧିବେଶନ ଓ ଏହି ଅଧିବେଶନରେ ମଧ୍ୟ ରାଧାନାଥ ସଭାପତିତ୍ୱ କରିଥିଲେ। ବକ୍ତାଭାବରେ ଯୋଗଦେଇ ପ୍ୟାରୀମୋହନ ଆଚାର୍ଯ୍ୟ 'ଉତ୍କଳରଆଶା ଓ ନୈରାଶ୍ୟ' ସଂପର୍କରେ ଦୀର୍ଘ ଭାଷଣ ଦେଇଥିଲେ। ପ୍ରସଙ୍ଗ ଭିତରକୁ ଅନାବଶ୍ୟକ ଭାବରେ ଉପେନ୍ଦ୍ର ଭଞ୍ଜଙ୍କୁ ଟାଣିଆଣି ସେ ତାଙ୍କ ସାହିତ୍ୟର ନିନ୍ଦାଗାନ କରିଥିଲେ। ସଭାପତି ଭାବରେ ରାଧାନାଥ ନୀରବ ନରହି ଆଚାର୍ଯ୍ୟଙ୍କ ବକ୍ତବ୍ୟର ଅସାରତା ଦେଖାଇ-ଥିଲେ; ଏହାଙ୍କ [ଆଚାର୍ଯ୍ୟଙ୍କ] ବକ୍ତୃତା ଶେଷ ହେଲା ଉତାରୁ ସଭାପତି ରାଧାନାଥ ରାୟ କେତେଗୁଡ଼ିଏ ସଦ୍‌ଯୁକ୍ତି ଦେଖାଇ ବକ୍ତାଙ୍କ ପ୍ରଦର୍ଶିତ କେତେକ ହେତୁର ଅସାରତା ଦେଖାଇଲେ ଓ ନୈରାଶ୍ୟର କାରଣ ନ ଥିବାର ପ୍ରତିପନ୍ନ କଲେ। ରାଧାନାଥବାବୁ ବକ୍ତାନୁହନ୍ତି; ସୁତରାଂ ଅଳ୍ପ କଥାରେ ଆପଣା ମତ ପ୍ରକାଶ କରି କ୍ଷାନ୍ତ ରହିଲେ; କିନ୍ତୁ ତାହାଙ୍କର ମଧୁର ବଚନରେ ସମସ୍ତେ ସନ୍ତୁଷ୍ଟ ହୋଇଥିଲେ ଏବଂ ପ୍ରତି କଥାରେ ତାହାଙ୍କର ନମ୍ର ସ୍ୱଭାବ ଓ ଗମ୍ଭୀର ବୁଦ୍ଧିର ପରିଚୟ ପାଇ ଶ୍ରୋତାମାନେ ମୋହିତ ହେଲେ।'' ('ଉତ୍କଳ-ଦୀପିକା', ୧୩।୨୮; ୧୩।୭।୧୮୭୮)

ରାଧାନାଥଙ୍କ କନିଷ୍ଠପୁତ୍ର ରଜନୀଭୂଷଣଙ୍କର ଜନ୍ମ। ୧୮୭୯ – ମାର୍ଚ୍ଚମାସରେ ଓଡ଼ିଶା ଦାୟିତ୍ୱରେ ଥିବା ଇନ୍‌ସପେକ୍ଟର ଭୂଦେବ ମୁଖାର୍ଜୀ ଓଡ଼ିଶାର ବିଦ୍ୟାଳୟ ପରିଦର୍ଶନ ଉଦ୍ଦେଶ୍ୟରେ ଆଗମନ କରିଥିଲେ। ସେ ରାଧାନାଥଙ୍କ କାର୍ଯ୍ୟଦକ୍ଷତା ଓ ଓଡ଼ିଶାର ବିଦ୍ୟାଳୟଗୁଡ଼ିକର ସୁପରିଚାଳନା ନେଇ ସନ୍ତୋଷ ପ୍ରକାଶ କରିଥିଲେ ଓ ସେହି ସମ୍ବାଦ ୩।୪।୧୮୭୯ତାରିଖରେ ପ୍ରଚାରିତ ହୋଇଥିଲା। ଏହି ସମୟରେ ୦୧।୪।୧୮୭୯ ତାରିଖରେ ଭୂଦେବ ଶିକ୍ଷା ନିର୍ଦ୍ଦେଶକଙ୍କୁ ଯେଉଁ ପତ୍ର ଲେଖିଥିଲେ ସେଥିରେ ପାଣ୍ଡିତ୍ୟ ଓ କାର୍ଯ୍ୟଦକ୍ଷତା ଦୃଷ୍ଟିରୁ ରାଧାନାଥଙ୍କୁ ଇନ୍‌ସପେକ୍ଟର ପଦବୀରେ ଅବସ୍ଥାପିତ କରିବାପାଇଁ ସୁପାରିଶ କରିଥିଲେ – "I would further suggest the advisability of making Babu Radhanath Rai indepe-ndent Inspector of Orissa and raising his position by increasing his pay. I have now seen that he is quite capable of holding independent charge of a circle and fully endorse the opinions expressed of him by Messers Beames and Norman that he is excellently educated, very intelligent and altogether devoted to his duties...'' ୧୮୭୮-୭୯ବର୍ଷର ଶିକ୍ଷା ବିଭାଗର ବିବରଣୀରେ ମଧ୍ୟ ଭୂଦେବ ରାଧାନାଥଙ୍କ ସଂପର୍କରେ ଦେଇଥିବା ପ୍ରଶଂସାସୂଚକ ମତାମତ ଉଦ୍ଧୃତ। ଏଇ ବର୍ଷ ମେ୨୩ ତାରିଖରେ ଭୂଦେବଙ୍କ ସଂପାଦିତ 'ଏଡୁକେଶନ୍‌ଗଜେଟ'ରେ ରାଧାନାଥଙ୍କ ପ୍ରଶସ୍ତିସୂଚକ ଗୋଟିଏ କବିତା ପ୍ରକାଶ ପାଇଥିଲା। କବିତାର ଶୀର୍ଷକ ଥିଲା – "ରାଧାନାଥ ଭବିଷ୍ୟତର ଗୌରବ କେତନ।'' କେବଳ ଉପରିସ୍ଥ କର୍ତ୍ତାଙ୍କ ନିକଟରେ ନୁହେଁ, ଜଣେ ଶିକ୍ଷକ ଓ ଶିକ୍ଷାବିଭାଗ ପରିଦର୍ଶକ ହିସାବରେ ରାଧାନାଥ ଓଡ଼ିଆ ଜନସାଧାରଙ୍କ ନିକଟରୁ ଅଶେଷ ଶ୍ରଦ୍ଧା ଓ ସମ୍ମାନ ଲାଭ କରିଥିଲେ। ୫।୬।୧୮୭୯ତାରିଖ 'ବାଲେଶ୍ୱର ସମ୍ବାଦବାହିକା'ରେ ପ୍ରକାଶିତ 'ପ୍ରେରିତ ପତ୍ର' ତାର ଦୃଷ୍ଟାନ୍ତ – "ଆମ୍ଭମାନଙ୍କର ସ୍କୁଲ ଜଏଣ୍ଟ ଇନ୍‌ସ୍ପେକ୍ଟର ମାନ୍ୟବର ଶ୍ରୀଯୁକ୍ତ ବାବୁ ରାଧାନାଥ ରାୟ ବଙ୍ଗ ଓ ଓଡ଼ିଶା ପ୍ରଦେଶସ୍ଥ ଯେଉଁ ଯେଉଁ ସ୍ଥଳରେ କାର୍ଯ୍ୟ କରିଅଛନ୍ତି, ସେହି ସେହି ସ୍ଥଳରେ ପ୍ରଶଂସା ଲାଭ କରିଅଛନ୍ତି। ବର୍ତ୍ତମାନ ସମୟରେ ଓଡ଼ିଶାବାସୀ ହୋଇ ତାହାଙ୍କ ପରି ପ୍ରତିଷ୍ଠା ଲାଭ କରିଅଛନ୍ତି, ଏମନ୍ତ ବ୍ୟକ୍ତି ଓଡ଼ିଶାରେ ବିରଳ ଦୃଷ୍ଟିଗୋଚର ହୁଅନ୍ତି। ବାଲେଶ୍ୱର ଜିଲ୍ଲାରେ ଡେପୁଟୀ ଇନସ୍ପେକ୍ଟର ଭାବରେ କାର୍ଯ୍ୟ କରୁଥିବାବେଳେ ତାହାଙ୍କର କାର୍ଯ୍ୟଦକ୍ଷତା ଓ ବିନୀତ ସ୍ୱଭାବର ପରିଚୟ ପାୟାଯାଇଅଛି। ଅନେକାନେକ ରାଜକର୍ମଚାରୀ ମଧ୍ୟ ତାହାଙ୍କୁ ଏକ ବାକ୍ୟରେ ପ୍ରଶଂସା କରିଅଛନ୍ତି।''

ଅଗଷ୍ଟ ମାସରେ ଚୁଁଚୁଡ଼ାରୁ ପ୍ରକାଶିତ ଓ ଭୂଦେବ ମୁଖାର୍ଜୀଙ୍କ ଦ୍ୱାରା 'ଏଡୁକେଶନ ଗେଜେଟ'ରେ (ତା ୩୧।୮।୧୮୭୯ ସଂଖ୍ୟାରେ) 'ବାବୁ ରାଧାନାଥ ରାୟ ଓ ଉଡ଼ିଷ୍ୟାର ଶିକ୍ଷାବିଭାଗ' ଶୀର୍ଷକ ଏକ ବଙ୍ଗଳା ଲେଖା ପ୍ରକାଶିତ ହୋଇଥିଲା। ଏହି ଲେଖାରେ ରାଧାନାଥଙ୍କ ବ୍ୟକ୍ତିତ୍ୱ, କାର୍ଯ୍ୟଦକ୍ଷତା, ପାଣ୍ଡିତ୍ୟ ଓ କବିତ୍ୱ ଅତି ଉଜ୍ଜ୍ୱଳ ବର୍ଣ୍ଣରେ ଚିତ୍ରିତ। ଓଡ଼ିଆ

ସାହିତ୍ୟରେ ଏକ ଯୁଗର ସେ ସୂଚନା କରିଥିବା ଶଂସିତ ରଚନାରେ ଅଭିବ୍ୟକ୍ତ– "ତିନି ଉତ୍କଳ ଭାଷାୟ ଅନେକଗୁଲି ପୁସ୍ତକ ଲିଖିୟା ଉଡ଼ିୟା ଭାଷାର ଗତି ଫିରାଇୟା ଦିଆଛେନ୍। ରାଧାନାଥ ବାବୁକେ ଉଡ଼ିଷ୍ୟାର 'ବିଦ୍ୟାସାଗର' ବଲିଲେ ଅସଙ୍ଗତ ହଇବେନା। ତିନି ଆବାର ଏକଜନ ଉତ୍ତମ କବି।"

୧୮୮୦ – ମଧୁସୂଦନ ରାଓଙ୍କ 'ପ୍ରବନ୍ଧମାଳା' ପ୍ରକାଶ। ଉତ୍କୃଷ୍ଟ ଓଡ଼ିଆ ଗଦ୍ୟରଚ଼ନାର ଦୃଷ୍ଟାନ୍ତ ଭାବରେ ରାଧାନାଥ ଏହାକୁ 'ସମାଲୋଚ଼ନା – ପ୍ରବନ୍ଧମାଳା' ଶୀର୍ଷକ ଗୋଟିଏ ପ୍ରବନ୍ଧରେ ପ୍ରଶଂସା କରିଥିଲେ (ବାଲେଶ୍ୱର ସମ୍ବାଦବାହିକା, ୧୩।୪୧; ୭।୧୦।୧୮୮୦)। ଏହା ପରଠାରୁ ରାଧାନାଥ ମଧୁସୂଦନ ଯୋଡ଼ି କ୍ରମଶଃ ବାଦବିସମ୍ବାଦର ଏକ କେନ୍ଦ୍ରବିନ୍ଦୁ ହୋଇପଡ଼ନ୍ତି।

ରାଧାନାଥଙ୍କର ଏକମାତ୍ର ଭଗିନୀ ସ୍ୱର୍ଣ୍ଣମୟୀଙ୍କର କାଉପୁରର ଜମିଦାର ଗୋବିନ୍ଦବଲ୍ଲଭ ରାୟଙ୍କ ସହ ବିବାହ। ଏହି ବିବାହକୁ ରାଧାନାଥ ଖୁବ୍ ଜାକଜମକରେ ଅନୁଷ୍ଠିତ କରିଥିଲେ। କଟକରେ ଥିବା ଉର୍ଦ୍ଦୁ ସ୍କୁଲ ବନ୍ଦ ହୋଇଯିବା ଫଳରେ ସେଥିନେଇ ପ୍ରତିକ୍ରିୟା ସୃଷ୍ଟିହୋଇଥିଲା। ୫।୮।୧୮୮୦ ତାରିଖରେ ଗୋଟିଏ ପ୍ରେରିତ ପତ୍ରରେ ଦୀନନାଥ ବନ୍ଦୋପାଧ୍ୟାୟ ଏ ସଂପର୍କରେ ଲେଖିଥିଲେ – "...ଉର୍ଦ୍ଦୁ ସ୍କୁଲ ଯେତେବେଳେ ଉଠିଗଲା ତେତେବେଳେ ତହବିଲ କାହାକୁ ବୁଝାଇ ଦିଆଗଲା ? ଉକ୍ତ ସ୍କୁଲରେ ଗବର୍ଣ୍ଣମେଣ୍ଟଙ୍କର ଏଡ୍ ଥିଲା। ଆମ୍ଭେମାନେ ସ୍ଥାନୀୟ ଜଏଣ୍ଟ ଇନସ୍ପେକ୍ଟରଙ୍କୁ [ରାଧାନାଥଙ୍କୁ] ଅନୁରୋଧ କରୁ ସେ ଯେମନ୍ତ ତହିଁର ତଦନ୍ତ କରନ୍ତି। ତାହାଙ୍କୁ ଏ ବିଷୟରେ ନିଶ୍ଚେଷ୍ଟ ଦେଖିଲେ ଆମ୍ଭେମାନେ ଏ କଥା ଛୋଟଲାଟ ସାହେବଙ୍କ କର୍ଣ୍ଣରେ ଉଠାଇବାରେ ତ୍ରୁଟିକରିବାନାହିଁ।" (ଉତ୍କଳ ଦୀପିକା – ୧୫।୩୪; ୨୧।୮।୧୮୮୦) ଦୀନନାଥଙ୍କ ଏହି ଧମକପୂର୍ଣ୍ଣ ପତ୍ର ସତ୍ତ୍ୱେ ରାଧାନାଥ ଏ ସଂପର୍କରେ କୌଣସି ପଦକ୍ଷେପ ନେଇ ନ ଥିଲେ। ଫଳରେ ଦୀନନାଥ ବଙ୍ଗର ଛୋଟଲାଟଙ୍କ ପର୍ଯ୍ୟନ୍ତ ବିଭିନ୍ନ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଏଥିନେଇ ଆକର୍ଷଣ କରିଥିଲେ।

୧୮୮୧ – ମୟୂରଭଞ୍ଜର ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଙ୍କ ସହ ରାଧାନାଥଙ୍କର ପରିଚ଼ୟ ଓ ଏହି ପରିଚ଼ୟ ଘନିଷ୍ଠତାରେ ପରିଣତ। କୃଷ୍ଣଚନ୍ଦ୍ର ରାଧାନାଥଙ୍କ ସାଧୁତା ଓ କାର୍ଯ୍ୟଦକ୍ଷତାରେ ମୁଗ୍ଧ ହୋଇ ମୟୂରଭଞ୍ଜର ଦେୱାନ ପଦ ଅର୍ପଣ କରିଥିଲେ। କିନ୍ତୁ ଚାକିରୀ ସର୍ତ୍ତାବଳୀ ଓ ବେତନ ସମ୍ବନ୍ଧୀୟ ରାଜିନାମା ନ ହେଲା ପର୍ଯ୍ୟନ୍ତ ରାଧାନାଥ ଏହି ପଦକୁ ଗ୍ରହଣ କରିବାକୁ ଚାହିଁନଥିଲେ। ଏହି ରାଜିନାମା ହେବାରେ ବିଳମ୍ବ ହେଲା ଓ ତାହା ଶେଷ ପର୍ଯ୍ୟାୟରେ ପହଞ୍ଚିଲା ବେଳକୁ କୃଷ୍ଣଚନ୍ଦ୍ର ଭଞ୍ଜ ପରଲୋକ ଗମନ କଲେ। ଫଳରେ ରାଧାନାଥଙ୍କର ବାରିପଦା ଯିବା ନୋହିଲା।

୧୮୮୨ – ପରୀକ୍ଷକ, ପାଠ୍ୟପୁସ୍ତକ ଚୟନକର୍ତ୍ତା ହିସାବରେ ରାଧାନାଥଙ୍କ ଭୂମିକା ନେଇ ଅସନ୍ତୋଷ। ଏହି ଅସନ୍ତୋଷ ଏକ 'ପ୍ରେରିତ ପତ୍ର' (୨୪।୧।୧୮୮୧ରେ ଲିଖିତ) ଆକାରରେ 'ଉତ୍କଳ-ଦୀପିକା' ରେ ପ୍ରକାଶିତ – "Personally I have the highest regard for Babu Radhanath Rai, but for the sake of Justice and fair play I am compelled to say that when the joint Inspector himself fixed the text books for the said examination (Orissa Minor and Vernacular Examination), appoints examiners who are mostly his subordinates or place-hunters he does great injustice. When the Joint Inspector has a voice almost potential in the framing of question papers of the times directing an examiner who happens to set a little too stiff or other than ordinary questions, to alter such questions according to his own fancy and occasionally exercising his best influence over the examiners to allow liberal marks to the candidates and when the same Joint Inspector is to have his own discretion in giving grace marks to the candidates at the time of preparing result papers, that officer should not finally be entitled to any credit in showing up his own arbitrary doings"। (୧୭।୧; ୭।୧।୧୮୮୨)। ସରକାର ସ୍କୁଲ ବୁକ୍ ସୋସାଇଟୀକୁ ଦେଉଥିବା ସାହାଯ୍ୟ ପ୍ରତ୍ୟାହାର କରି ଏହି ଅର୍ଥ ଖର୍ଚ୍ଚର ଦାୟିତ୍ୱ ଜଏଣ୍ଟ ଇନ୍‌ସପେକ୍ଟର

ରାଧାନାଥଙ୍କ ଉପରେ ନ୍ୟସ୍ତ କରିଥିଲେ। ସରକାରଙ୍କ ଏଭଳି ନିଷ୍ପତ୍ତିର ପ୍ରତିବାଦ 'ଉତ୍କଳ ପାଠ୍ୟପୁସ୍ତକର ବ୍ୟବସ୍ଥା' ଶୀର୍ଷକରେ 'ଉତ୍କଳ-ଦୀପିକା' (୧୬।୨୩; ୧୦।୬।୧୮୮୧) କରିଥିଲା। ଉଦ୍ଧୃତ ଇଂରାଜୀ ପତ୍ର ଏଭଳି ପ୍ରତିବାଦର ଥିଲା ପୃଷ୍ଟୀକରଣ। ଏହି ବାଦପ୍ରତିବାଦ ଭିତରେ ଦୀର୍ଘ ସତର ବର୍ଷ ଧରି ଅକୁଣ୍ଠ ଶ୍ରଦ୍ଧା, ସମ୍ମାନ ଓ ବିଶ୍ୱାସ ଲାଭ କରିଆସିଥିବା ରାଧାନାଥ କ୍ରମଶଃ ହଜିଯାଇଛନ୍ତି।

ପୁରୀ ଜିଲ୍ଲା ସ୍କୁଲରେ ରାଧାନାଥ ଦ୍ୱିତୀୟ ଶିକ୍ଷକ ଥିଲାବେଳେ ସେଠାରେ ପ୍ରଧାନ ଶିକ୍ଷକ ଥିଲେ ରାମଦାସ ଚକ୍ରବର୍ତ୍ତୀ। ଜଏଣ୍ଟ ଇନ୍‌ସପେକ୍ଟର ପଦବୀପାଇଁ ରାଧାନାଥଙ୍କର ସେ ଅନ୍ୟତମ ପ୍ରତିଯୋଗୀ ମଧ ଥିଲେ। ରାଧାନାଥ ଜଏଣ୍ଟ ଇନ୍‌ସପେକ୍ଟର ଭାବରେ ପୁରୀ ଜିଲ୍ଲା ସ୍କୁଲ ପରିଦର୍ଶନ କଲାବେଳେ ମଧ ସେଠାରେ ହେଡ୍‌ମାଷ୍ଟର ଥିଲେ ରାମଦାସ ଚକ୍ରବର୍ତ୍ତୀ। ଏକଦା ଅଧୀନସ୍ଥ କର୍ମଚାରୀ ଥିବା ରାଧାନାଥ ତାଙ୍କ ସ୍କୁଲ ପରିଦର୍ଶକୁ ରାମଦାସ ଗ୍ରହଣ କରି ପାରି ନଥିଲେ ଓ ରାଧାନାଥଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନରେ ଅବହେଳା କରିଥିଲେ। ସଂପୃକ୍ତ ବିଷୟ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ଦୃଷ୍ଟିକୁ ଆଣି ରାଧାନାଥ ରାମଦାସଙ୍କର ଅବନତି କରାଇଥିଲେ ଓ ବାଧ ହୋଇ ଚକ୍ରବର୍ତ୍ତୀ ରାଧାନାଥଙ୍କୁ ନିଃସର୍ତ୍ତ କ୍ଷମାପ୍ରାର୍ଥନା କରିଥିଲେ। ପରେ ଚକ୍ରବର୍ତ୍ତୀ ରେଭେନ୍‌ସା କଲେଜିଏଟ୍ ସ୍କୁଲର ପ୍ରଧାନଶିକ୍ଷକ ହୋଇଥିଲେ।

ଭୂଦେବ ମୁଖୋପାଧାୟଙ୍କ ନିମନ୍ତ୍ରଣ ଓ ସରକାରଙ୍କ ଅନୁମତିକ୍ରମେ ରାଧାନାଥ ପାଟଣା, ଗୟା ଓ ବୀରଭୂମ ପ୍ରଭୃତି ସ୍ଥାନ ଭ୍ରମଣ କରିସାରିଲା ପରେ ହୁଗୁଳିରେ ଭୂଦେବଙ୍କ ଗୃହରେ କିଛିଦିନ ପାଇଁ ଅତିଥି ହୋଇଥିଲେ।

୧୮୮୩ – ଲେଖକଙ୍କ ନାମ ନ ଥାଇ ବାଲେଶ୍ୱରର ଦେ'ଙ୍କ ପ୍ରେସରୁ 'ଓଡ଼ିଶାର ସଂକ୍ଷିପ୍ତ ଇତିହାସ' ନାମରେ ଏକ ପୁସ୍ତକ ଏହି ବର୍ଷ ଆରମ୍ଭରେ ପ୍ରକାଶିତ ହୁଏ। ପୃଷ୍ଠାର ପ୍ରଶ୍ନାବଳୀ ସମେତ ପୁସ୍ତକର ପୃଷ୍ଠା ସଂଖ୍ୟା ମାତ୍ର ଛୟାଳିଶ। ରାଧାନାଥ ତରବରରେ ଏହି ପୁସ୍ତିକାଟିକୁ ବିଦ୍ୟାଳୟ ଗୁଡ଼ିକରେ ପ୍ରଚଳନ କରାଇଛନ୍ତି -- ଏଥିନେଇ 'ଉତ୍କଳଦୀପିକା' ଓ 'ବାଲେଶ୍ୱର ସମ୍ବାଦ ବାହିକା' ରାଧାନାଥଙ୍କ ବିରୋଧରେ ଅଭିଯୋଗ ଆଣିଛନ୍ତି। 'ଉତ୍କଳଦୀପିକା' ଏ ପୁସ୍ତକ ସଂପର୍କରେ କୁହେ – ''ଏତିକିରେ ଗୋଟିଏ ପ୍ରଦେଶର ଇତିହାସର କେତେ କଥା ଲେଖା ଯାଇପାରେ ତାହା ପାଠକମାନେ ଅନାୟାସରେ ଅନୁମାନ କରିପାରିବେ। ଆମ୍ଭମାନଙ୍କର ବୋଲିବାର ଅଧିକ, ପ୍ରକୃତରେ ଏହାକୁ ପାଠକଲାବେଳେ ଦୋକ-ମଣ୍ଡପରେ ଗ୍ରାମ୍ୟଜ୍ୟୋତିଷଠାରୁ ପାଞ୍ଜି ଶୁଣିଲା ପ୍ରାୟ ବୋଧହେଲା।'' (୧୮।୧୧; ୧୭।୩।୧୮୮୩) ପରେ ଏହି ବେନାମୀ ପୁସ୍ତକଟି ରାଧାନାଥଙ୍କ ଭାଇ ସୀତାନାଥ ରାୟଙ୍କ ଲେଖା ବୋଲି ଜଣାପଡ଼ିଥିଲା।

ନଭେମ୍ବର ମାସରେ ରାଧାନାଥଙ୍କର ତିନିମାସ ଛୁଟି ପାଇଁ ଦରଖାସ୍ତ। ତାଙ୍କର ଅନୁପସ୍ଥିତିରେ ମଧୁସୂଦନ ରାଓ ତାଙ୍କ ଦାୟିତ୍ୱ ନେବାପାଇଁ ସେ ସରକାରଙ୍କୁ ପରାମର୍ଶ ଦେଇଥିଲେ। ମଧୁସୂଦନଙ୍କଠାରୁ ଦୁଇଜଣ ଅଧିକ ବରିଷ୍ଠ ଅଧିକାରୀ ଥିଲାବେଳେ ରାଧାନାଥଙ୍କର ଏଭଳି ପରାମର୍ଶ ବେନିୟମ ବୋଲି ସମକାଳରେ ମତ ପ୍ରକାଶ ପାଇଥିଲା।

୧୮୮୪ – ତିନିମାସ ଛୁଟି ମଞ୍ଜୁର ହେଲାପରେ ରାଧାନାଥଙ୍କର ଉତ୍ତର ଓ ପଶ୍ଚିମ ଭାରତ ଭ୍ରମଣ। ଏହି ଭାରତଭ୍ରମଣର ଅନୁଭୂତିକୁ ସେ ଚିଲିକାରେ କାବ୍ୟରୂପ ଦେଇଛନ୍ତି। ଏପ୍ରିଲ୍ ମାସରେ ପ୍ରକାଶିତ ଏକ ଲେଖା ଅନୁସାରେ ରାଧାନାଥ ଏହି ଭ୍ରମଣରେ ଟ ୬୩୦ ଙ୍କା ଖର୍ଚ୍ଚ କରିଥିଲେ ଓ ନିମ୍ନଲିଖିତ ସ୍ଥାନ ପରିଦର୍ଶନ କରିଥିଲେ – କଲିକତା, ବୈଦ୍ୟନାଥ, ପାଟଣା, କାଶୀ, ଅଯୋଧ୍ୟା, ଲକ୍ଷ୍ନୌ, କାନପୁର, ଆଗ୍ରା, ମଥୁରା, ବୃନ୍ଦାବନ, ଦିଲ୍ଲୀ, ଜୟପୁର, ଆଜମୀର, ପୁଷ୍କରତୀର୍ଥ, ଅହମଦାବାଦ, ବରୋଦା, ସୁରଟ, ବମ୍ବେ, ନାସିକ (ପଞ୍ଚବଟୀ – ଦଣ୍ଡକାରଣ୍ୟ – ଗୋଦାବରୀ) ସଙ୍ଗପୁର (ଗୋଦାବରୀର ଜଳପ୍ରପାତ), ଅଣ୍ଡୁଆ, ଇନ୍ଦୋର, ଉଜ୍ଜୟିନୀ (ଅବନ୍ତୀ ନଗର), ଜବଲପୁର, ଭେଡ଼ାଘାଟ (ଶଙ୍ଖମର୍ମର ପର୍ବତ ମଧ୍ୟରେ ବାହିନୀ ନର୍ମଦା ନଦୀ); ଧୂଆଁଧାର (ନର୍ମଦାର ଜଳପ୍ରପାତ), ମଣିପୁର (ଚିତ୍ରକୂଟର ମାର୍ଗ), ପ୍ରୟାଗ, ବିନ୍ଧ୍ୟବାସିନୀ (ମିର୍ଜାପୁର), ବାଙ୍କୀପୁର, ଗୟା, ବର୍ଦ୍ଧମାନ ଓ ଦାର୍ଜିଲିଂ ପ୍ରଭୃତି। ରାଧାନାଥ ତାଙ୍କର ଯାତ୍ରା କଲିକତାର ଆନ୍ତର୍ଜାତିକ ପ୍ରଦର୍ଶନୀ ଦର୍ଶନରୁ ଆରମ୍ଭ କରି ହିମାଳୟର ଭୀମକାନ୍ତ ସୌନ୍ଦର୍ଯ୍ୟ ସନ୍ଦର୍ଶନରେ ଶେଷକରିଥିଲେ।

ରାଧାନାଥ ଓ ବୈକୁଣ୍ଠନାଥ ଦେଙ୍କ ପ୍ରେସ୍ ମଧ୍ୟରେ ଥିବା ଅବୈଧ ସଂପର୍କ ନେଇ 'ଉତ୍କଳଦୀପିକା' ଓ 'ବାଲେଶ୍ୱର ସମ୍ବାଦବାହିକା'ରେ ଅନେକ ଲେଖା ପ୍ରକାଶିତ। 'ଉତ୍କଳଦୀପିକା'ରେ ପ୍ରକାଶିତ 'ଓଡ଼ିଆ ପୁସ୍ତକ' (୧୯।୧୫; ୧୨।୪।୧୮୮୪), ଓଡ଼ିଆ

ପୁସ୍ତକ (୧୯୧୨୦), ଓଡ଼ିଶାର ଶିକ୍ଷାବିଭାଗ ଏବଂ ଓଡ଼ିଆ ପୁସ୍ତକ (୧୯୧୨୬ ଓ ୧୯୧୨୭) ଆଦି ଲେଖା ଓ 'ବାଲେଶ୍ୱର ସମ୍ବାଦବାହିକା'ର ୧୭।୭।୧୮୮୪ ତାରିଖର ଲେଖାରେ ଏହି ପ୍ରସଙ୍ଗ ବାରମ୍ବାର ଉତ୍‌ଥାପିତ। ପାଠ୍ୟପୁସ୍ତକ ନେଇ ହୋଇ-ଥିବା ଆଲୋଚନା ପ୍ରତ୍ୟାଲୋଚନାରେ ରାଧାନାଥଙ୍କୁ ଅକପଟତା, ଅସାଧୁତା ଓ ପକ୍ଷପାତତା ଆଦି ଦୋଷରେ ଦୋଷୀ ବୋଲି କୁହାଯାଇଛି। ଅପର ପକ୍ଷରେ 'ଉତ୍କଳଦର୍ପଣ' (ସାପ୍ତାହିକପତ୍ର), 'ସେବକ' ଓ 'ସଂସ୍କାରକ ଓ ସେବକ' ରାଧାନାଥଙ୍କୁ ନିର୍ଦ୍ଦୋଷ ବୋଲି ପ୍ରଚାର କରିଛି।

ରାଧାନାଥଙ୍କ ସପକ୍ଷରେ ଲୋକମତ ସୃଷ୍ଟି କରିବା ପାଇଁ, ବିଭିନ୍ନ ପତ୍ରପତ୍ରିକାରେ ରାଧାନାଥଙ୍କ ବିପକ୍ଷରେ ହେଉଥିବା ପ୍ରଚାରକୁ ପ୍ରତିହତ କରିବାପାଇଁ, ବୈକୁଣ୍ଠନାଥ ଦେଙ୍କ ପାଠ୍ୟପୁସ୍ତକ ବ୍ୟବସାୟର ସ୍ୱାର୍ଥ ରକ୍ଷା କରିବାପାଇଁ ଅଗଷ୍ଟ ମାସରେ ବାଲେଶ୍ୱରର ଦେ'ଙ୍କ ପ୍ରେସରୁ 'ଧୂମକେତୁ' ନାମରେ ସାମୟିକ ପତ୍ରିକାର ପ୍ରକାଶ। ଏହି ପତ୍ରିକାକୁ ଇନ୍ଦ୍ରଧନୁ-ବିଜୁଳିର ପୂର୍ବସୂରୀ କୁହାଯାଇପାରେ।

'ବାଲେଶ୍ୱର ସମ୍ବାଦବାହିକା'ର ସତର ବର୍ଷ ଚଉରାଳିଶ ସଂଖ୍ୟା (୬।୧୧।୧୮୮୪)ରେ ଏକ ଦୀର୍ଘ ଇଂରେଜୀ ରଚନା 'ପ୍ରେରିତ ପତ୍ର' ଆକାରରେ ପ୍ରକାଶିତ ହୁଏ। ଏଇ ରଚନାରେ ଓଡ଼ିଆମାନଙ୍କର ଆନ୍ଦୋଳନଦ୍ୱାରା ଓ ଓଡ଼ିଆମାନଙ୍କ ସ୍ୱାର୍ଥରକ୍ଷା କରିବେ ଏଇ ଆଶାରେ କିଭଳି ରାଧାନାଥ ଶୀଘ୍ର ପଦୋନ୍ନତି ପାଇଥିଲେ ଓ ଜଏଣ୍ଟ-ଇନ୍‌ସପେକ୍ଟର ହେବାପରେ ରାଧାନାଥଙ୍କ ପ୍ରକୃତ ସ୍ୱରୂପ କିଭଳି ଜଣାପଡ଼ିଲା, ତାହା ବର୍ଣ୍ଣନା କରାଯାଇଛି। ଓଡ଼ିଆ ଲେଖକମାନଙ୍କ ପ୍ରତି ତାଙ୍କର ଥିବା ହେୟଭାବ, ଓଡ଼ିଆ ଭାଷା ପ୍ରତି ଥିବା ଉପେକ୍ଷା ମନୋଭାବ ଏହି ପତ୍ରରେ ପ୍ରକାଶିତ। ନିଜର ବଙ୍ଗାଳୀ ଜ୍ଞାତି କୁଟୁମ୍ବ ଓ ବନ୍ଧୁମାନଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ସେ କିଭଳି ଜାଲ ବିସ୍ତାର କରନ୍ତି, ତାହାର ମଧ୍ୟ ସବିଶେଷ ବର୍ଣ୍ଣନା ଦିଆଯାଇଛି। 'ସଂସ୍କାରକ ସେବକ' (୨।୩; ନଭେମ୍ବର, ୧୮୮୪) ଏହାକୁ ରାଧାନାଥଙ୍କ ଉପରେ ଅନୁଚିତ ଆକ୍ରମଣ ବୋଲି ଅଭିହିତ କରିଛି। 'ବାଲେଶ୍ୱର ସମ୍ବାଦବାହିକା'ରେ ଏହି ପତ୍ରର ପ୍ରକାଶ ପରେ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକଙ୍କୁ 'ବାଲେଶ୍ୱର ସମ୍ବାଦବାହିକା'ର ସଂପାଦକ ପଦରୁ ଅପସାରିତ କରିବା ପାଇଁ ରାଧାନାଥ ଯୋଜନା ପ୍ରସ୍ତୁତ କରିଛନ୍ତି।

**୧୮୮୫** – ଫେବ୍ରୁଆରୀ ମାସରେ ଓଡ଼ିଶା ଡିଭିଜନ ଦାୟିତ୍ୱରେ ଥିବା ପଶ୍ଚିମ ମଣ୍ଡଳର ଇନ୍‌ସପେକ୍ଟର ବ୍ରହ୍ମମୋହନ ମଲ୍ଲିକଙ୍କର ସ୍କୁଲ ପରିଦର୍ଶନ ସକାଶେ ଓଡ଼ିଶା ଆଗମନ। ତାଙ୍କର ଦୃଷ୍ଟି ଆକର୍ଷଣ କରିବାପାଇଁ 'ଉତ୍କଳଦୀପିକା' ଓ 'ବାଲେଶ୍ୱର ସମ୍ବାଦବାହିକା' ରାଧାନାଥଙ୍କ ବିରୁଦ୍ଧରେ ଅତିରିକ୍ତ, ଅଧିକ ସମ୍ବାଦ ଓ ଅଭିଯୋଗପତ୍ର ପ୍ରକାଶ କରିଥିଲେ। 'ବାଲେଶ୍ୱର ସମ୍ବାଦବାହିକା'ର ଉଦ୍ଧୃତ ଅଭିଯୋଗ ତାହାର ଦୃଷ୍ଟାନ୍ତ – "ଜଏଣ୍ଟ ଇନସ୍ପେକ୍ଟର ରାଧାନାଥବାବୁ କୌଣସି ସ୍ଥାନରେ ଗୋଟିଏ ପଦ ଶୂନ୍ୟ ହେବାର ଦେଖିଲେ ଆଦିମ ଓଡ଼ିଆମାନଙ୍କୁ ଉପେକ୍ଷା କରି ଆପଣା ଜାତିଭାଇ ଏବଂ ଲେଖାଯୋଖା ସମ୍ବନ୍ଧୀୟ ଲୋକମାନଙ୍କୁ ଆଗ ନିଯୁକ୍ତ କରନ୍ତି। ପୁଣି କୌଶଳ ଦ୍ୱାରା ନିଯୁକ୍ତି କରାଇବାକୁ ଛାଡ଼ନ୍ତି ନାହିଁ। (୧୮।୯; ୨୬।୨।୧୮୮୫)

ମାର୍ଚ୍ଚ ମାସରେ ଏକ ସରକାରୀ ଆଦେଶ ହେଲା ଯେ ବାଲେଶ୍ୱର ନର୍ମାଲ ସ୍କୁଲର ହେଡ଼ମାଷ୍ଟର ଓ ଓଡ଼ିଆ-ସପକ୍ଷବାଦୀ ଆନ୍ଦୋଳନର ପ୍ରମୁଖ ମୁଖପାତ୍ର ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ ସରକାରୀ ଚାକିରୀ କରି ସମ୍ବାଦପତ୍ର ସମ୍ପାଦନା କରିପାରିବେ ନାହିଁ। ଏହି ସରକାରୀ ଆଦେଶ ବିରୁଦ୍ଧରେ ତଥା ରାଧାନାଥଙ୍କ ବିରୁଦ୍ଧରେ ବିଷୋଦ୍‌ଗାର ଉଭୟ 'ଉତ୍କଳଦୀପିକା' (୨୦।୧୪; ୪।୪।୧୮୮୫) ଓ 'ବାଲେଶ୍ୱର ସମ୍ବାଦବାହିକା' (୧୮।୧୫; ୯।୪।୧୮୮୫) କରିଥିଲେ। ରାଧାନାଥଙ୍କ ବିଷଦୃଷ୍ଟିରେ ସେ କାହିଁକି ପଡ଼ିଲେ ତାହାର କାରଣ ଦର୍ଶାଇ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ଲେଖିଥିଲେ – "ସମ୍ବାଦବାହିକା ଭୂତପୂର୍ବ ଜଏଣ୍ଟ ଇନ୍‌ସ୍ପେକ୍ଟର ଶ୍ରୀଯୁକ୍ତ ଏଡ଼ର୍ ସାହେବ ଓ ଶ୍ରୀଯୁକ୍ତ ବାବୁ ନନ୍ଦକିଶୋର ଦାସଙ୍କ ଅମଳରୁ ଚାଲିଆସୁଅଛି, ରାଧାନାଥ ବାବୁଙ୍କ ଅମଳଦାରୀରେ ଛଅବର୍ଷ ପର୍ଯ୍ୟନ୍ତ କିଛି କଥା ନ ଥିଲା। ଯେଉଁଦିନୁ ଦେ'ଙ୍କ ପ୍ରେସ୍‌ରେ ପ୍ରକାଶିତ ଆଳିମାଳିକା ଓ ବେନାମି ପୁସ୍ତକ (ଜି ଯେଉଁ ପୁସ୍ତକମାନ ପ୍ରାଇମେରୀ ଫଣ୍ଡରୁ ଅନେକ ଅର୍ଥ ଗ୍ରହଣ କରିଅଛି) ଏବଂ ହରିଶ୍ଚନ୍ଦ୍ରଙ୍କ ଇତିହାସର ସମାଲୋଚନା ଆରେ କରିଅଛୁଁ, ସେହିଦିନୁ ରାଧାନାଥ ବାବୁଙ୍କର ବିଷଦୃଷ୍ଟିରେ ପଡ଼ିଅଛୁଁ। 'ଧୂମକେତୁ' ବାହାରିଅଛି, 'ସଂସ୍କାରକ' ରାଧାନାଥ ବାବୁଙ୍କର ଓକିଲାତି କରିବାକୁ ଛାଡ଼ିନାହାନ୍ତି। ପ୍ରାକୃତିକ ନିୟମ ଅନୁସାରେ 'ଦର୍ପଣ' ଲଢୁଅଛନ୍ତି। 'ଶିକ୍ଷାବନ୍ଧୁ'ଙ୍କୁ ରାଧାନାଥ ବାବୁଙ୍କର ବାରିଷ୍ଟର ବୋଇଲେ ତଳେ।

ହେଉ, କିଛି ଚିନ୍ତା ନାହିଁ। ବର୍ତ୍ତମାନ ଇଂରାଜୀଙ୍କର ଅମଳ; ମରହଟ୍ଟା ଅଥବା ମୋଗଲଙ୍କ କାଳ ନୋହେ। ଭରସା କରୁଁ ଓ ପ୍ରାର୍ଥନା କରୁଁ ବର୍ଷେ ହେଲା ଯେଉଁ ଆନ୍ଦୋଳନ ଚଳୁଅଛି ସେଥିର ତଦନ୍ତ ହେଉ।'' (୧୮।୧୫) ମେ ୬ ଓ ୭ ତାରିଖରେ କଟକ ଶିକ୍ଷାସମିତିର ଏକ ଅଧିବେଶନ ଅନୁଷ୍ଠିତ ହୋଇଥିଲା ଓ ଏଥିରେ ରାଧାନାଥ ସଭାପତିତ୍ୱ କରିଥିଲେ। ଆଲୋଚନାର ବିଷୟ ଥିଲା – ''...(୧) ପ୍ରତ୍ୟେକ ବିଦ୍ୟାଳୟର ଶିକ୍ଷାଗତ ଓ ଅନ୍ୟବିଧ ଅବସ୍ଥାର ସମାଲୋଚନା, (୨) କି ପ୍ରଣାଳୀରେ ଏବଂ କି ଉପାୟରେ ବ୍ୟାୟାମ ଶିକ୍ଷା ପ୍ରତ୍ୟେକ ବିଦ୍ୟାଳୟରେ ପ୍ରବର୍ତ୍ତିତ ହୋଇପାରିବ, (୩) ନିର୍ଦ୍ଦିଷ୍ଟ ପାଠ୍ୟପୁସ୍ତକମାନଙ୍କ ଦୋଷ ବା ଅନୁପଯୋଗିତାର ଆଲୋଚନା, (୪) ଶିକ୍ଷକମାନଙ୍କର ଜ୍ଞାନୋନ୍ନତି ସମ୍ବନ୍ଧରେ ଆଲୋଚନା, (୫) ପ୍ରତ୍ୟେକ ବିଦ୍ୟାଳୟ ନିମିତ୍ତ ଛାତ୍ରାବାସ ନିର୍ମାଣ କରିବାର ଆଲୋଚନା।'' (ସଂସ୍କାରକ ଓ ସେବକ, ୨।୨୧; ୧୩।୫।୧୮୮୫)

ଜୁଲାଇ ୮ ତାରିଖରେ କଟକରୁ ଜଣେ ସମ୍ବାଦଦାତା କଲିକତାରୁ ପ୍ରକାଶିତ ହେଉଥିବା 'Indian Mirror'କୁ ଟେଲିଗ୍ରାମ କରିଥିଲେ। ସେହି ଟେଲିଗ୍ରାମରେ ପରୋକ୍ଷଭାବେ ରାଧାନାଥଙ୍କ ବିରୁଦ୍ଧରେ ଅଭିଯୋଗ କରାଯାଇଥିଲା – ''The Utkal Dipika gives instances of how some inspecting officers in the District are turning to their own profit, their duty of rewards to village school masters. They carry a number of books of their own or friends, and force them on the teachers in part of their reward. This paper has been expressing such practices of the local educational officers since more than a year, but neither the commissioner nor the Govt. seems to take any notice of them''। 'ବିଚିତ୍ର ରାମାୟଣ' ଓ 'ଚୌତିଶା'କୁ ଅଶ୍ଳୀଳ ପୁସ୍ତକରୂପେ ଅଭିହିତ କରି ଏହାର ପ୍ରସାର ବନ୍ଦ କରିବା ଉଦ୍ଦେଶ୍ୟରେ ରାଧାନାଥଙ୍କ ଘନିଷ୍ଠ ବନ୍ଧୁ କୁମାର ବୈକୁଣ୍ଠନାଥ ଦେ ଛୋଟଲାଟଙ୍କୁ ଆବେଦନ କରିଥିଲେ ଓ ଛୋଟଲାଟ ଏହି ଆବେଦନ ଗ୍ରହଣ କରି ଶିକ୍ଷାବିଭାଗରେ ଏହି ପୁସ୍ତକଦ୍ୱୟର ବିତରଣ ନିଷିଦ୍ଧ କରି, ଏହା ବିତରଣ କରିଥିବା ଅଭିଯୋଗରେ କେତେ ଜଣ ଶିକ୍ଷାବିଭାଗୀୟ କର୍ମଚାରୀଙ୍କ ପ୍ରତି ଦଣ୍ଡାଦେଶ କରିଥିଲେ। ଏହି ସମସ୍ତର ଅନ୍ତରାଳରେ ରାଧାନାଥ କାର୍ଯ୍ୟ କରିଥିବା ଥିଲା ତାଙ୍କ ବିରୋଧୀମାନଙ୍କର ଦୃଢ଼ବିଶ୍ୱାସ। ଏ ସଂପର୍କରେ 'ପ୍ରାଚୀନ ସାହିତ୍ୟ ଅଶ୍ଳୀଳ' ଶିରୋନାମାରେ ଗୌରୀଶଙ୍କର ଲେଖିଥିଲେ – ''କୁମାର ବୈକୁଣ୍ଠନାଥ ଦେଙ୍କର ଉତ୍କଳ ସାହିତ୍ୟର ନିଧନ ଚେଷ୍ଟା ଏତେ ଦିନେ ସଫଳ ହେଲା। କ୍ରମାଗତ କେତେକ ମାସ ହେଲା ଉତ୍କଳ ଭାଷା ନାମରେ ବହୁବିଧ ପୁସ୍ତକ ବାହାର ଏବଂ ବାହୁଲ୍ୟରୂପେ ବିତରଣ କରାଇ ସେ ଓଡ଼ିଶାର ଭବିଷ୍ୟତ ଆଶା ଭରସାର ମୂଳଚ୍ଛେଦ କରୁଅଛନ୍ତି ତଥାଚ୍ ପ୍ରାଚୀନ ଓ ସର୍ବଜନ ମନୋନୀତ ଖଣ୍ଡେ ଅଧେ ଓଡ଼ିଆ ପୁସ୍ତକ ପ୍ରତି କେହି କେହି ଆସ୍ଥା ଦେଖାଇ ତାଙ୍କର ଉକ୍ତ କାର୍ଯ୍ୟରେ ବାଧା ଦେବାର ଦେଖାଗଲା। ଏଥିପାଇଁ ଅଶ୍ଳୀଳତାର ଦୋଷ ଦେଖାଇ ଜିଲ୍ଲାଠାରୁ ସଦର ପର୍ଯ୍ୟନ୍ତ ଯେଉଁ ଆବେଦନ ପତ୍ରମାନ [କୁମାର ବୈକୁଣ୍ଠନାଥ ଦେ] ପଠାଇଥିଲେ ତହିଁର ବିବରଣ ଏଥିପୂର୍ବେ ଜଣାଇଅଛୁଁ। ବର୍ତ୍ତମାନ ଶୁଣିଲୁଁ ଯେ ଆମ୍ଭମାନଙ୍କ ଛୋଟଲାଟ ସାହେବ ଏହି ସତ୍‌କାର୍ଯ୍ୟ ନିମିତ୍ତ କୁମାର ବୈକୁଣ୍ଠନାଥଙ୍କୁ ଧନ୍ୟବାଦ ଦେଇଅଛନ୍ତି ଓ ବାଲେଶ୍ୱରର ଡେପୁଟୀ ଇନସ୍ପେକ୍ଟର ବାବୁ ପ୍ୟାରୀମୋହନ ସେନ, ଇଂରାଜୀ ସ୍କୁଲର ହେଡ୍‌ମାଷ୍ଟର ବେଚାରାମ ନନ୍ଦି ଏବଂ ନର୍ମାଲ ସ୍କୁଲର ହେଡ୍‌ମାଷ୍ଟର ବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ 'ବିଚିତ୍ର ରାମାୟଣ' ଏବଂ ବା 'ଚୌତିଶା' ପାଠଶାଳାରେ ବିତରଣ ନିମିତ୍ତ ନିର୍ବାଚନ କରିଥିବାରୁ ସେମାନଙ୍କ ପଦୋନ୍ନତି ସ୍ଥଗିତ ରହିବାର ଦଣ୍ଡବିଧାନ କରିଅଛନ୍ତି। (ଉତ୍କଳ-ଦୀପିକା, ୨୦।୩୦; ୨୫।୦୭।୧୮୮୫) ଏହାର ପ୍ରତିକ୍ରିୟାରେ ପ୍ରାଚୀନ ସାହିତ୍ୟର ସପକ୍ଷବାଦୀମାନେ ରାଧାନାଥଙ୍କ 'ମେଘଦୂତ'ରେ ଅଶ୍ଳୀଳତା ଥିବା ଓ ତାହା ନର୍ମାଲ ସ୍କୁଲର ପାଠ୍ୟପୁସ୍ତକ ଥିବା ପାଲଟା ଅଭିଯୋଗ ଆଣିଛନ୍ତି। ପରେ 'ଇନ୍ଦ୍ରଧନୁ' 'ବିଜୁଳି' ସଂଘର୍ଷରେ ଏହି ଘଟଣାର ପୁନରାବୃତ୍ତି ମାତ୍ର ହୋଇଥିଲା। ରାଧାନାଥ-ପକ୍ଷୀୟ କୌଣସି ଲେଖକଙ୍କର ସ୍ୱାସ୍ଥ୍ୟରକ୍ଷା ସଂପର୍କୀୟ ପାଣ୍ଡୁଲିପି ନିର୍ଦ୍ଦିଷ୍ଟ ତାରିଖ ମଧ୍ୟରେ ପ୍ରସ୍ତୁତ ହୋଇ ନ ପାରିବାରୁ, ତା ୨୫।୭।୧୮୮୫ରେ

ବସିଥିବା ପାଠ୍ୟପୁସ୍ତକ ବିଷୟକ ସବ୍‌କମିଟୀ, ଉପସ୍ଥାପିତ ସମସ୍ତ ପାଣ୍ଡୁଲିପିକୁ ନିମ୍ନମାନର କହି ପ୍ରତ୍ୟାଖାନ କରିଥିଲା । ଏଭଳି ନିଷ୍ପତ୍ତି ରାଧାନାଥଙ୍କ ବିରୁଦ୍ଧରେ ଘୋର ପ୍ରତିକ୍ରିୟା ସୃଷ୍ଟି କରିଥିଲା – "ଗତ ଶନିବାର ଅପରାହ୍ଣରେ ଜଏଣ୍ଟ ଇନ୍‌ସ୍ପେକ୍ଟରଙ୍କ କଚେରୀରେ ଓଡ଼ିଶା ଶିକ୍ଷାବିଭାଗ ପାଠ୍ୟପୁସ୍ତକ ବିଷୟକ ସବ୍‌କମେଟୀର ଅଧିବେଶନ ହୋଇଥିଲା । ଯେତେ ଖଣ୍ଡ ସ୍ୱାସ୍ଥ୍ୟରକ୍ଷାର ପାଣ୍ଡୁଲିପି ଆସିଥିଲା, କେହି ସବ୍‌କମେଟୀର ମନୋନୀତ ହେଲାନାହିଁ । କେଉଁ ପ୍ରଣାଳୀରେ ସ୍ୱାସ୍ଥ୍ୟରକ୍ଷା ଗ୍ରନ୍ଥ ପ୍ରଣୟନ କଲେ ବାଳକ-ବାଳିକାମାନଙ୍କ ପାଠୋପଯୋଗୀ ହେବ, ସେଥି ସମ୍ବନ୍ଧରେ କେତେକ ନିୟମାବଳୀ ପ୍ରସ୍ତୁତ କରିବା ନିମିତ୍ତ ବାବୁ ରାଧାନାଥ ରାୟ ଓ ବାବୁ ମଧୁସୂଦନ ରାଓ ଅନୁରୁଦ୍ଧ ହୋଇଅଛନ୍ତି । ଯେଉଁମାନେ ଗ୍ରନ୍ଥ ପ୍ରଣୟନ କରି କମେଟୀରେ ଦାଖଲ କରିଥିଲେ, ସ୍ୱାସ୍ଥ୍ୟରକ୍ଷାଜ୍ଞାନ ବିଷୟରେ ଉଲ୍ଲିଖିତ ବାବୁଦ୍ୱୟ ଯେ ସେମାନଙ୍କଠାରୁ ଅଧିକ ଉପଯୁକ୍ତ ଆମ୍ଭେମାନେ ସ୍ୱୀକାର କରି ନ ପାରୁଁ । ତେବେ ବି ନିୟମାବଳୀ ବାହାରୁଅଛି କ୍ରମେ ଜଣାପଡ଼ିବ ଓ ବାବୁଦ୍ୱୟଙ୍କର ପାଣ୍ଡିତ୍ୟ ମଧ୍ୟ ପ୍ରକାଶ ପାଇବ ।" ('ସଂସ୍କାରକ ଓ ସେବକ', ୨।୩୨; ୨୯।୭।୧୮୮୫)

ରାଧାନାଥ ଜୀବନୀକାରଙ୍କ ବିବରଣୀ ଅନୁଯାୟୀ ଦୁଇଜଣ ମୁକ୍ତ୍ୟାର (ଜଣେ କଟକ ଜିଲ୍ଲାର ଓ ଅନ୍ୟ ଜଣକ ବାଲେଶ୍ୱର ଜିଲ୍ଲାର) ଛାତ୍ରାବସ୍ଥାରେ ହିନ୍ଦୁଧର୍ମ ତ୍ୟାଗକରି ଡୁବନ ହୋଇ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ରାଧାନାଥଙ୍କ ଉପଦେଶ ଓ ପ୍ରଚେଷ୍ଟା ଫଳରେ ପ୍ରାୟଶ୍ଚିତ୍ତ କରି ସେମାନେ ପୁଣିଥରେ ହିନ୍ଦୁଧର୍ମକୁ ଫେରିଆସିଥିଲେ ।

ଦୀର୍ଘ ନଅ ବର୍ଷର ବ୍ୟବଧାନ ପରେ ରାଧାନାଥ ପୁଣିଥରେ ଓଡ଼ିଆ କବିତା ରାଜ୍ୟରେ ପ୍ରବେଶ କଲେ । ପ୍ରଥମେ ବେନାମୀରେ 'ସଂସ୍କାରକ ଓ ସେବକ'ରେ ଓ ପରେ ନିଜ ନାମରେ ସେ 'ଭେଦାରଗୌରୀ' ପ୍ରକାଶ କରିଥିଲେ । ପରେ ଭୂଦେବଙ୍କ ପରାମର୍ଶରେ ଓଡ଼ିଆରେ ଲେଖିଥିବା କଥା ରାଧାନାଥ କହନ୍ତି, କିନ୍ତୁ ଘଟଣାକ୍ରମ ରାଧାନାଥଙ୍କ ମତାମତ ଉପରେ ସନ୍ଦେହ ସୃଷ୍ଟି କରେ ।

୧୮୮୬ – ଦଶଦିନ ଛୁଟି ନେଇ ରାଧାନାଥଙ୍କର ଗଡ଼ଜାତ ଭ୍ରମଣ । ରାଧାନାଥ ପ୍ରଥମେ ତାଳଚେର ଯାଇ ସେଠାରୁ ବାମଣ୍ଡା ଯାଇଥିଲେ । ବାମଣ୍ଡାରେ କିଛିଦିନ ଅବସ୍ଥାନ କରିଥିଲେ ଓ ଏହି ଅବସ୍ଥାରେ ବାମଣ୍ଡାର ରାଜା ବାସୁଦେବ ସୁଢ଼ଳଦେବଙ୍କ ସହ ଘନିଷ୍ଠ ହୋଇଥିଲେ । ବାମଣ୍ଡାରେ ରାଧାନାଥଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦିଆଯାଇଥିଲା । ବାମଣ୍ଡାରୁ ଫେରିଲାବେଳେ ସେ ପାଲଲହଡ଼ା ଓ କେନ୍ଦୁଝର ହୋଇ ରହିଥିଲେ ।

ଆଭ୍ୟନ୍ତରୀଣ କନ୍ଦଳରୁ ଓଡ଼ିଶାର ବ୍ରାହ୍ମସମାଜ ଦୁଇ ଦଳରେ ବିଭକ୍ତ । ଏହି ବ୍ରାହ୍ମମାନେ ରାଧାନାଥଙ୍କର ଘନିଷ୍ଠ ଥିବାରୁ ସେମାନଙ୍କ ଦଳାଦଳିର ଶରବ୍ୟ ହୋଇଥିଲେ ରାଧାନାଥ ।

୧୮୮୭ – ଏକ ଦଳ ବ୍ରାହ୍ମଙ୍କ ଦ୍ୱାରା 'ନବସମ୍ବାଦ' ସାପ୍ତାହିକ ପତ୍ର ପ୍ରକାଶ । ରାଧାନାଥ ଲେଖକ ହିସାବରେ ଏହି 'ନବସମ୍ବାଦ' ସହ ସଂପୃକ୍ତ ଥିବା ଫଳରେ ଅପରଦଳର ପତ୍ରିକା 'ସଂସ୍କାରକ'ର ରାଧାନାଥଙ୍କ ବିଷୋଦ୍‌ଗାର ।

ବିଜୟଚନ୍ଦ୍ର ମଜୁମଦାରଙ୍କୁ ଅକ୍ଟୋବର ମାସରେ ପୁରୀ ଜିଲ୍ଲା ସ୍କୁଲର ଦ୍ୱିତୀୟ ଶିକ୍ଷକ ରୂପେ ନିଯୁକ୍ତି ଦିଆଯାଇଥିଲା । ଏହି ନିଯୁକ୍ତି ବିରୁଦ୍ଧରେ ବାଲେଶ୍ୱର ସମ୍ବାଦ ବାହିକା, ଉତ୍କଳଦୀପିକା ଓ ବିଶେଷ ଭାବରେ 'ସଂସ୍କାରକ' ପ୍ରତିବାଦ କରିଥିଲା । ନିଯୁକ୍ତିଦାତା ହିସାବରେ ରାଧାନାଥଙ୍କୁ ଏହି ସମ୍ବାଦପତ୍ରଗୁଡ଼ିକର କଟୁ ସମାଲୋଚନା । 'ଓଡ଼ିଶାର ଦୁଃଖ' ଶିରୋନାମାରେ କ୍ରମାନୁୟରେ ପ୍ରକାଶିତ ହୋଇଥିବା ରଚନାରେ 'ସଂସ୍କାରକ' ଲେଖିଥିଲା – "ଏ ଘଟଣାରେ ଆମ୍ଭେମାନେ ଜଏଣ୍ଟ ଇନସ୍ପେକ୍ଟରଙ୍କୁ ପ୍ରଧାନତଃ ଦୋଷୀ ବୋଲି ଧାର୍ଯ୍ୟ କରିଅଛୁଁ । ରାଧାନାଥ ବାବୁ ଓଡ଼ିୟାମାନଙ୍କର ପ୍ରକୃତ ବନ୍ଧୁ ଥିଲେ । ପୁରୀ ବିଦ୍ୟାଳୟରେ ଶିକ୍ଷକତା କାର୍ଯ୍ୟ କଲା ଦିନଠାରୁ ଜଏଣ୍ଟ ଇନ୍‌ସ୍ପେକ୍ଟର ହେବା ପର୍ଯ୍ୟନ୍ତ ସେ ଯଥେଷ୍ଟ ଦେଶାନୁରାଗ ପ୍ରଦର୍ଶନ କରିଆସିଅଛନ୍ତି । ଜଏଣ୍ଟ ଇନ୍‌ସ୍ପେକ୍ଟରୀର ପ୍ରଥମ ଅମଳରେ ସୁଦ୍ଧା ଉତ୍କଳୀୟମାନଙ୍କ ସ୍ୱାର୍ଥ ପ୍ରତି ସେ ବିଶେଷ ଦୃଷ୍ଟି କରୁଥିଲେ । ଏଣିକି ତାହାଙ୍କର ଭାବାନ୍ତର ଦେଖି ଆମ୍ଭେମାନେ ବିସ୍ମୟାପନ୍ନ ହୋଇଅଛୁଁ, ଅର୍ଥାତ୍ ଏଣିକି ଦେଶର ପ୍ରତିନିଧି ସ୍ୱରୂପ ସମ୍ବାଦପତ୍ରମାନଙ୍କର ମତାମତ ପ୍ରତି ତାହାଙ୍କର ଖାତିର ନାହିଁ । କାନ-କୁହାମାନଙ୍କର ମନ୍ତ୍ରଣାରେ ତାଙ୍କର ରାଜନୀତି ଅନେକ ସମୟରେ ଚାଳିତ ହେଉଅଛି ଓ 'ନବସମ୍ବାଦୀୟ ବ୍ରାହ୍ମିକ'ଦଳ ତାହାଙ୍କୁ କୁହୁକ ଜାଲରେ ବାନ୍ଧି ରଖି-ଅଛନ୍ତି । 'ନବସମ୍ବାଦ' ଓଡ଼ିୟା ଭାଷାକୁ ଉଠାଇଦେବାର ଏକପ୍ରକାର ପ୍ରସ୍ତାବ କରିସାରିଲେଣି; ଏହି ବିଷୟ ଜଏଣ୍ଟ ଇନ୍‌ସ୍ପେକ୍ଟରଙ୍କ ପର୍ଯ୍ୟନ୍ତ ପହଞ୍ଚିଅଛି କି ନାହିଁ

କହି ନ ପାରୁଁ । ଉଚ୍ଚ ଇନ୍‌ସ୍ପେକ୍ଟର ଜାଣିବା ଉଚିତ ଯେ ଦେଶାନୁରାଗ ଗୋଟିଏ ପ୍ରଧାନ ବଳ ଏବଂ ଓଡ଼ିୟାମାନଙ୍କ ସ୍ୱାର୍ଥରେ କ୍ରମାଗତ ହସ୍ତକ୍ଷେପ କଲେ ସେମାନେ ସେହି ବଳରେ ପରିଚାଳିତ ହୋଇ କେତେବେଳେ କି ଉପଦ୍ରବ ଘଟାଇବେ ସେଥି ନିମନ୍ତେ ତାହାଙ୍କର ପ୍ରସ୍ତୁତ ରହିବାର ଉଚିତ ।'' ('ସଂସ୍କାରକ', ୪ । ୪୪; ୧୭ । ୧୧ । ୧୮୮୭, ପୃ.୩୭୩)

୧୮୮୮ – ପାଠ୍ୟପୁସ୍ତକ ନିର୍ବାଚନ, ପ୍ରାଇଜ୍-ପୁସ୍ତକର ନିର୍ବାଚନ ଓ ବିତରଣ, ଶିକ୍ଷକ ନିଯୁକ୍ତି, ପଦୋନ୍ନତି ଓ ସେମାନଙ୍କୁ ଦିଆଯାଉଥିବା ପୁରସ୍କାରକୁ କେନ୍ଦ୍ରକରି ଶିକ୍ଷାବିଭାଗରେ ଦଳାଦଳି ଏହି ସମୟରେ ଚରମ ସୀମାରେ ପହଞ୍ଚିଥିଲା ଓ ରାଧାନାଥ ଅନେକାଂଶରେ ଏହାର ସ୍ରଷ୍ଟା ଓ ପୃଷ୍ଠପୋଷକ ହୋଇପଡ଼ିଥିଲେ । 'ବାଲେଶ୍ୱର ସମ୍ବାଦବାହିକା' ଏକ ଦୀର୍ଘ ଆଲୋଚନାରେ ଲେଖିଥିଲା – ''ଯେଉଁ ଶିକ୍ଷକ ଓଡ଼ିଶାରେ ଉଚ୍ଚ ଇନ୍‌ସ୍ପେକ୍ଟର ରାଧାନାଥ ବାବୁଙ୍କ ଇଚ୍ଛା ଅନୁସାରେ କାର୍ଯ୍ୟ ନ କରିବେ ଅର୍ଥାତ୍ 'ଦେ'ଙ୍କ ପ୍ରେସରେ ମୁଦ୍ରିତ ଓ ତାଙ୍କ କନିଷ୍ଠ ଭାଇର ପୁସ୍ତକ ନ ଚଳାଇବେ, ସେହି ଶିକ୍ଷକ ତାଙ୍କ ଚକ୍ଷୁର ଶୂଳ । ...ରାଧାନାଥ ବାବୁ ଦେ' ପ୍ରେସ୍‌ରେ ମୁଦ୍ରିତ ଓ ଆପଣା ଭାଇର ପ୍ରସ୍ତାବକୁ ଏମନ୍ତ କୌଶଳରେ ବିଦ୍ୟାଳୟମାନଙ୍କରେ ଚଳାନ୍ତି ଯେ ସାଧାରଣଲୋକର ତାହା ବୁଝିବା କଠିନ । ଦ୍ୱାରିକା ବାବୁଙ୍କ [ଦ୍ୱାରିକାନାଥ ଚକ୍ରବର୍ତ୍ତୀ, କଟକ ନର୍ମାଲ ସ୍କୁଲର ହେଡ୍‌ମାଷ୍ଟର] ଓଡ଼ିଶାର ଭୂଗୋଳ ପରିବର୍ତ୍ତରେ ଦେ'ଙ୍କ ପ୍ରେସ୍ ଓଡ଼ିଶାର ଭୂଗୋଳ ପଢ଼ାଇବା ସମ୍ବନ୍ଧରେ ରେମୁଣା ସ୍କୁଲ ଭିଜିଟିଂ ବହିରେ ସେ ଯାହା ଲେଖିଥିଲେ ତାହା ବାହିକା ଓ ଦୀପିକା ପାଠକଙ୍କୁ ଗୋଚର ଅଛି । ପାଠଶାଳାର ପୁରସ୍କାର ଟଙ୍କାରୁ ବେନାମୀ ପୁସ୍ତକ (ଦେ' ପ୍ରେସ୍‌ର) ଯୋଗେ ଯେଉଁ ଆୟ ହେଉଥିଲା, ଏବଂ ଦେ'ଙ୍କ ପ୍ରେସ୍ ଅନୁପଯୁକ୍ତ ପୁସ୍ତକ ଯୋଗାଇ ଥକି ଥକି ଟଙ୍କା ଯେରୂପେ ଛାଟିନେଉଥିଲେ ତାହା ଗହିତ ହେବାରୁ ଏବଂ କଟକ ପ୍ରିଣ୍ଟିଂ କୋମ୍ପାନୀଙ୍କ ଯନ୍ତ୍ରାଳୟରୁ ଅତି ଅଳ୍ପ ଟଙ୍କାରେ 'ବିଚିତ୍ର ରାମାୟଣ' ଓ ମହାଭାରତ ଅଂଶ 'ବା ଚଉତିଶା' କିଣାଯାଇ ଥିବାରୁ ରାଧାନାଥବାବୁଙ୍କ କୌଶଳରେ ଯେଉଁ କାଣ୍ଡମାନ ଘଟିଗଲା ତାହା ଓଡ଼ିଶାବାସୀଙ୍କୁ ଗୋଚର ।'' (୨୧ । ୨୧; ୨୪ । ୫ । ୧୮୮୮)

ବାଲେଶ୍ୱରର ବାରବାଟୀ ବାଳିକା ବିଦ୍ୟାଳୟର କର୍ତ୍ତୃତ୍ୱ ନେଇ ବୈକୁଣ୍ଠନାଥ ଦେ ଓ ତାଙ୍କର ପ୍ରତିପକ୍ଷମାନଙ୍କ ମଧ୍ୟରେ ଘୋର ବିବାଦ ଦେଖାଦେଇଥିଲା । ରାଧାନାଥ ଏହି ବିବାଦରେ ତାଙ୍କର ବନ୍ଧୁ ବୈକୁଣ୍ଠନାଥଙ୍କୁ ସମର୍ଥନ କରିବାରୁ ସ୍କୁଲର ପରିଚାଳନା ବୈକୁଣ୍ଠନାଥଙ୍କ ଅକ୍ତିଆରକୁ ଆସିଥିଲା ରାଧାନାଥ ଖଣ୍ଡପଡ଼ା ଗସ୍ତ କାଳରେ ସାମନ୍ତ ଚନ୍ଦ୍ରଶେଖର ମହାପାତ୍ରଙ୍କ (ପଠାଣି ସାମନ୍ତ) ସହ ପରିଚିତ ହେଲେ । କ୍ରମଶଃ ଏହି ପରିଚିତି ଘନିଷ୍ଠତାରେ ପରିଣତ ହେଲା । ରାଧାନାଥ ଜୀବନୀକାରଙ୍କ ଅନୁସାରେ ସାମନ୍ତଙ୍କ ପ୍ରତିଭା ସଂପର୍କରେ ରାଧାନାଥ ଶିକ୍ଷାବିଭାଗର ନିର୍ଦ୍ଦେଶକଙ୍କୁ ବିସ୍ତୃତ ବିବରଣୀ ପ୍ରଦାନ କରିଥିଲେ ଓ ଏହି ବିବରଣୀ ପାଠକରି କଲିକତା ସଂସ୍କୃତ କଲେଜର ଅଧ୍ୟକ୍ଷ ମହେଶଚନ୍ଦ୍ର ଆୟାର ଓଡ଼ିଶା ଆସି ରାଧାନାଥଙ୍କ ଶେଖବଜାରସ୍ଥିତ ଗୃହରେ ସାମନ୍ତଙ୍କ ସହ ସାକ୍ଷାତ କରିଥିଲେ । ଏହିସବୁ ଫଳରେ ପଠାଣି ସାମନ୍ତ ବୃହତ୍ତର ସୁଧୀମଣ୍ଡଳୀର ଦୃଷ୍ଟି ଆକର୍ଷଣ କରିପାରିଥିଲେ ।

୧୮୮୯ – 'ସାହିତ୍ୟ-ସମ୍ମିଳନୀ-ସମାଲୋଚନା' ନାମରେ ଏକ ପତ୍ରିକା ଓଡ଼ିଶା ପେଟ୍ରିୟଟ୍ ପ୍ରେସ୍‌ରୁ ପ୍ରକାଶିତ ହେଲା । ପାଠ୍ୟପୁସ୍ତକ ଓ ସମକାଳରେ ପ୍ରକାଶିତ ଅନ୍ୟାନ୍ୟ ଗ୍ରନ୍ଥର ଆଲୋଚନା-ପ୍ରତ୍ୟାଲୋଚନା ଥିଲା ଏହାର ପ୍ରମୁଖ ଉଦ୍ଦେଶ୍ୟ । ଏହାର ପରିଚାଳନା ପାଇଁ ଏକ କମିଟୀ ନିମ୍ନଲିଖିତ ସଦସ୍ୟମାନଙ୍କୁ ନେଇ ଗଠିତ ହୋଇଥିଲା – ଗୌରୀଶଙ୍କର ରାୟ, ରାଧାନାଥ ରାୟ, ମଧୁସୂଦନ ରାଓ, ନିମାଇଁ ବଲ୍ଲଭ ଭଟ୍ଟାଚାର୍ଯ୍ୟ, କପିଳେଶ୍ୱର ବିଦ୍ୟାଭୂଷଣ, ଗଦାଧର ତ୍ରିପାଠୀ, କାଳୀପଦ ବନ୍ଦ୍ୟୋପାଧ୍ୟାୟ, ଜଗନ୍ମୋହନ ରାୟ, ଦୀନନାଥ ବନ୍ଦ୍ୟୋପାଧ୍ୟାୟ, ଚତୁର୍ଭୁଜ ପଟ୍ଟନାୟକ ଓ ରାମଶଙ୍କର ରାୟ ।

୧୮୯୦ – ପାଠ୍ୟପୁସ୍ତକ ନିର୍ବାଚନ ଓ ଅନ୍ୟାନ୍ୟ କ୍ଷେତ୍ରରେ ରାଧାନାଥ କରୁଥିବା ଦୁର୍ନୀତି ସଂପର୍କରେ ତଦନ୍ତ କରିବା ଉଦ୍ଦେଶ୍ୟରେ ପଣ୍ଡିତ ଗୋବିନ୍ଦ ରଥ ସଦର ବୋର୍ଡ଼କୁ ଏକ ଅଭିଯୋଗ-ପତ୍ର ପ୍ରେରଣ କରିଥିଲେ । ସଦର ବୋର୍ଡ଼ ଏହି ପତ୍ରକୁ ଶିକ୍ଷାବିଭାଗର ଡିରେକ୍ଟରଙ୍କ ନିକଟକୁ ପ୍ରେରଣ କରିଥିଲେ । ଏହି ଦୀର୍ଘ ଅଭିଯୋଗପତ୍ରଟି ଉତ୍କଳ-ଦୀପିକା (୨୫ । ୧୨ ଓ ୨୫ । ୧୩, ୨୨ । ୩ । ୧୮୯୦ ଓ ୨୯ । ୩ । ୧୮୯୦)ରେ ପ୍ରକାଶିତ । ଏହି ଅଭିଯୋଗର ତଦନ୍ତ ପାଇଁ ବିଭାଗୀୟ ଇନ୍ସପେକ୍ଟର ବ୍ରହ୍ମମୋହନ ମଲ୍ଲିକ ଓଡ଼ିଶା ଆସିଥିଲେ ଓ ସେ

ଏଭଳି ଅଭିଯୋଗକୁ ଅସ୍ୱୀକାର କରି ମହାସ୍ୱାର୍ଥ-ପ୍ରଣୋଦିତ ବୋଲି ଶିକ୍ଷାବିଭାଗ ଡିରେକ୍ଟରଙ୍କୁ ରିପୋର୍ଟ ପ୍ରଦାନ କରିଥିଲେ। ଏହି ରିପୋର୍ଟରେ ସ୍ୱାଭାବିକ ଭାବେ ଅସଂତୋଷ ପ୍ରକାଶ ପୂର୍ବକ ପୁନଃ ଅନୁସନ୍ଧାନ ପାଇଁ ପଣ୍ଡିତ ରଥ ଦାବୀ କରିଥିଲେ। ଏହି ପୁନଃ ଅନୁସନ୍ଧାନ ପାଇଁ ଦାବୀ ହେଲାପରେ ସଂପୃକ୍ତ ଅଭିଯୋଗ ଓ ତଦନ୍ତ ସଂପର୍କରେ ସ୍ପଷ୍ଟୀକରଣ ଦେଇ ବ୍ରହ୍ମମୋହନ ମଲ୍ଲିକ (ଇନ୍ସପେକ୍ଟର, ପଶ୍ଚିମ ମଣ୍ଡଳ) ତା ୧୬।୧୦।୧୮୯୦ରେ ଲେଖିଥିଲେ– "In justice to Babu Radhanath Rai it must be related that during his incumbency as Joint Inspector a large number of good books in Oriya has been written and published and that text books have been considerably cheap and in consequence of a book compiled both by Babu Radha Nath Rai and Madhusudan Rao. Superior Oriya scholars, both of them have written some very good books and both have tried to raise the character and tone of Oriya school book literature."

ଜ୍ୟେଷ୍ଠ ପୁତ୍ର ଶଶିଭୂଷଣ ଅପସ୍ମାର ରୋଗରେ ପୀଡ଼ିତ ଓ ବାରମ୍ବାର ମୂର୍ଚ୍ଛାଯିବାଫଳରେ ରାଧାନାଥ ଘୋର ମାନସିକ ଦୁଶ୍ଚିନ୍ତାରେ ପଡ଼ିଥିଲେ। ନାନା ଔଷଧ ଓ ଉପଚାରରେ ରାଧାନାଥ ଏ ବାବଦରେ ପ୍ରାୟ ଦୁଇ ହଜାର ଟଙ୍କା ଖର୍ଚ୍ଚ କଲେ ମଧ୍ୟ ଶଶିଭୂଷଣ ଆରୋଗ୍ୟ ଲାଭ କଲେ ନାହିଁ।

୧୮୯୧ – ଏପ୍ରିଲ ମାସରେ ବାରିପଦାରୁ ମୟୂରଭଞ୍ଜର ମହାରାଜା ରାମଚନ୍ଦ୍ର ଭଞ୍ଜଙ୍କ ପୃଷ୍ଠପୋଷକତାରେ 'ଉତ୍କଳପ୍ରଭା' ମାସିକ ସାହିତ୍ୟ-ପତ୍ରର ପ୍ରକାଶ। ସ୍ୱୟଂ ମହାରାଜା ବ୍ରାହ୍ମ- ଧର୍ମାବଲମ୍ବୀ ଓ ନବ୍ୟବଙ୍ଗୀୟ ସଂସ୍କୃତିର ଉପାସକ ଥିବାରୁ ତଥାକଥିତ ଆଧୁନିକ ଦୃଷ୍ଟିଭଙ୍ଗୀର ଏହା ପୋଷକତା କରୁଥିଲା। ଏଥିରେ ପ୍ରକାଶିତ ଉଚ୍ଚମାନର ରଚନା ପାଇଁ ପୁରସ୍କାର ବ୍ୟବସ୍ଥା ଥିଲା। ରାଧାନାଥ ଏହି ପତ୍ରିକାର ଉପଦେଷ୍ଟା ଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ। ଫଳରେ 'ଉତ୍କଳପ୍ରଭା' ନେଇ ଯେତେ ବାଦବିସମ୍ବାଦ ଦେଖାଦେଇଥିଲା, ରାଧାନାଥ ସେସବୁ ସହ ପରୋକ୍ଷରେ ଜଡ଼ିତ ହୋଇପଡ଼ିଥିଲେ।

'ଉତ୍କଳପ୍ରଭା'ରେ ପ୍ରକାଶିତ ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ 'ହିମାଚଳ', 'ମୋ ଶିଶୁ' ଓ ଦୃଶ୍ୟରାଜି ସଂପର୍କରେ ନଭେମ୍ବର ମାସରେ ରାଧାନାଥ ମତାମତ ଦେଇ ଲେଖିଥିଲେ –

"This [Himachal] is a composition far above average and deserves a permanent place in the Oriya literatu-re. It is a priceless gem and one ought to go to the Himalayas to be able to appreciate this truly beautiful poem. It would be unfair in my opinion to treat it on the same footing with the other poetical pieces published in the Utkalprabha "Mo Sishu" and 'Drushyaraji' – both are good poetical pieces better than any published in the Utaklprabha exce-pting ofcourse (Himachal) which is quite an unique production.

Cuttack R. N. Rai
1.11.1891 Joint Inspector of Schools,

(ଉତ୍କଳପ୍ରଭା ୧।୮; ନଭେମ୍ବର ୧୮୯୧; ପୃ.୨୩୨)

ରାଧାନାଥଙ୍କର ମତାମତ ସେ ସମୟର ଅନେକ ପ୍ରତିକୂଳ ସମାଲୋଚନାର ଶରବ୍ୟ ହୋଇଥିଲା। ତେଣୁ ସେ 'ଓଡ଼ିଆ ଓ ନବସମ୍ବାଦ' ଓ 'ସମ୍ବଲପୁର ହିତୈଷିଣୀ'ରେ ନିଜ ସ୍ଥିତିକୁ ସ୍ପଷ୍ଟ କରିବାପାଇଁ ବାଧ୍ୟ ହୋଇ ପତ୍ର ଲେଖିଥିଲେ।

'ଉତ୍କଳପ୍ରଭା' ପ୍ରଥମ ବର୍ଷ ନବମ ସଂଖ୍ୟା (ଡିସେମ୍ବର, ୧୮୯୧) ସଂଖ୍ୟାଠାରୁ କ୍ରମାନ୍ୱୟରେ ଲାଲ ରାମନାରାୟଣ ରାୟଙ୍କ 'କବି ଉପେନ୍ଦ୍ରଭଞ୍ଜ' ପ୍ରବନ୍ଧର ପ୍ରକାଶ। ଲାଲାଜୀ ରାଧାନାଥଙ୍କର ଥିଲେ ସ୍ତାବକ ଓ ଅତ୍ୟନ୍ତ ଘନିଷ୍ଠ। ତେଣୁ ରାମନାରାୟଣଙ୍କର ଉପେନ୍ଦ୍ରକାବ୍ୟର ପ୍ରତିକୂଳ ସମାଲୋଚନା ରାଧାନାଥ ପ୍ରଚୋଦିତ ବୋଲି ଅନେକେ ସେ ସମୟରେ ଗ୍ରହଣ କରିନେଇଥିଲେ।

୧୮୯୨ – ୧୮୯୧ ମସିହାର ମିଡ଼ିଲ ଭର୍ଣ୍ଣାକୁଲାର ଓ ମାଇନର ପରୀକ୍ଷାଫଳ ଜାନୁଆରୀ ମାସରେ ପ୍ରକାଶିତ ହେଲା। ବିଶ୍ୱନାଥ କର ପ୍ରଧାନଶିକ୍ଷକ ଥିବା କଟକ ଟାଉନ ସ୍କୁଲର ଛାତ୍ର

ନନ୍ଦକିଶୋର ବଳ ମାଇନର ପରୀକ୍ଷାରେ ଓ ଲାଲା ରାମନାରାୟଣ ରାୟ ପ୍ରଧାନ ଶିକ୍ଷକ ଥିବା ରେଭେନ୍ସା ହିନ୍ଦୁ ବାଳିକା ବିଦ୍ୟାଳୟର ଛାତ୍ରୀ ଗିରିବାଳା ଦାସୀ ମିଡ଼ିଲ୍ ଭର୍ଣ୍ଣାକୁଲାର୍ ପରୀକ୍ଷାରେ ସେ ବର୍ଷ ପ୍ରଥମ ସ୍ଥାନ ଅଧିକାର କରିଥିଲେ। ଏଥିନେଇ 'ଓଡ଼ିଆ ଓ ନବସମ୍ବାଦ' ତୀବ୍ର ପ୍ରତିକ୍ରିୟା ପ୍ରକାଶ କରି ଲାଲା ରାମନାରାୟଣଙ୍କ ଚରିତ୍ର ସଂହାର କରିଥିଲା। ରାଧାନାଥଙ୍କୁ ସନ୍ତୁଷ୍ଟକରି ଲାଲା ନିଜ ବିଦ୍ୟାଳୟ ପାଇଁ ଏଇ କୃତିତ୍ୱ ହାସଲ କରିଥିବା ଏହି ପତ୍ରିକାରେ ଅଭିଯୋଗ କରାଯାଇଥିଲା। ଏଠାରେ ଉଲ୍ଲେଖଯୋଗ୍ୟ ଯେ, ରାଧାନାଥଙ୍କର ଘନିଷ୍ଠ ବନ୍ଧୁ ବୈକୁଣ୍ଠନାଥ ଦେଙ୍କ ବାରବାଟୀ ବାଳିକା ବିଦ୍ୟାଳୟର ସ୍ୱାର୍ଥକୁ ସୁରକ୍ଷିତ ରଖିବାପାଇଁ ରାଧାନାଥ ଓ ରାମନାରାୟଣଙ୍କ ବିରୁଦ୍ଧରେ ଏହି ଅଭିଯୋଗସବୁ ଅଣାଯାଇଥିଲା।

ଜୁନ ୨୧ ତାରିଖରେ ଇନ୍ସପେକ୍ଟର ପଦବୀକୁ ଅସ୍ଥାୟୀ ଭାବେ ପଦୋନ୍ନତି ପାଇ ରାଧାନାଥ ଓଡ଼ିଶା ଡିଭିଜନର ପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କଲେ ଓ ଡିସେମ୍ବର ୧ ତାରିଖରୁ ଏହି ପଦବୀରେ ସ୍ଥାୟୀ ହେଲେ। ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଓଡ଼ିଶା ଡିଭିଜନର ଦାୟିତ୍ୱରେ ଥିବା ପଣ୍ଡିମ ମଣ୍ଡଳର ଇନ୍ସପେକ୍ଟର ବ୍ରହ୍ମମୋହନ ମଲ୍ଲିକ ଏଇ ବର୍ଷ ମେ ୩୧ ତାରିଖରୁ ଚାକିରିରୁ ଅବସର ନେଲେ ଓ ଅବସର ନେବା ପୂର୍ବରୁ ୨୮।୫।୧୮୯୨ତାରିଖରେ ରାଧାନାଥଙ୍କୁ ଇନ୍ସପେକ୍ଟର ପଦବୀକୁ ଉନ୍ନୀତ କରାଯିବାକୁ ସୁପାରିଶ କରି ଉପରିସ୍ଥ କର୍ତ୍ତାଙ୍କୁ ଲେଖିଥିଲେ—

"As I am going to retire from public life within a short time, I feel it my duty to record the sincere pleasure I have felt in having for an associate, and officer like Babu Radhanath Rai, Joint Inspector of schools, Orissa. He commenced official life as a second master and has by his intelligence and ability risen to the highest post which he holds at present. As an Oriya scholar he has few equals. His acquirements in Sanskrit and Bengali are of high order. He possesses all the qualifications required in an Inspector of School, and I doubt not that he is fully capable of discharging the duties of a Circle Inspector."

ବିହାରର ପାଟଣା ନିକଟସ୍ଥ ବେନୋଲିଆନିବାସୀ ପଣ୍ଡିତ ମହେନ୍ଦ୍ରନାଥ ତେଓ୍ୱାରୀ ଜଗନ୍ନାଥ ଦର୍ଶନ କଲା ପରେ କଟକରେ ରାଧାନାଥଙ୍କର ଅତିଥି ହୋଇଥିଲେ। ରାଧାନାଥଙ୍କ ଅନୁରୋଧକ୍ରମେ ସେ ଏକବର୍ଷ ପାଇଁ ରାଧାନାଥଙ୍କୁ ପଚିଶ ଟଙ୍କା ବେତନରେ ହିନ୍ଦୀଭାଷା ଶିକ୍ଷାଦେଇଥିଲେ।

୧୮୯୩—ରାଧାନାଥଙ୍କର ଗଙ୍ଗାଧରଙ୍କ ସହ ସମ୍ପର୍କ ସ୍ଥାପନ। ଯଦିଓ ଗଙ୍ଗାଧର ଓ ରାଧାନାଥଙ୍କ ମଧ୍ୟରେ ପୂର୍ବରୁ ପତ୍ରବିନିମୟ ହୋଇଥିଲା, ତେବେ ତାହା ସ୍ଥାୟୀ ସଂପର୍କ ପ୍ରତିଷ୍ଠାରେ ସହାୟକ ହୋଇ ନଥିଲା। ଗଙ୍ଗାଧର ନିଜର ନବପ୍ରକାଶିତ 'ଅହଲ୍ୟାସ୍ତବ'କୁ ରାଧାନାଥଙ୍କ ନିକଟକୁ ଉପହାର ରୂପେ ପଠାଇବାଦ୍ୱାରା ଏକ ଦୃଢ଼ ସାରସ୍ୱତ ସଂପର୍କ ପ୍ରତିଷ୍ଠା ହୋଇଥିଲା। ରାଧାନାଥ-ଗଙ୍ଗାଧର ସଂପର୍କ ଓଡ଼ିଶାର ସାରସ୍ୱତ ଇତିହାସରେ ଏକ ବିଶିଷ୍ଟ ଘଟଣା ଓ ବହୁଚର୍ଚ୍ଚିତ ବିଷୟ।

କଟକର କାଳୀଗଳିରେ ରାଧାନାଥଙ୍କର ନୂତନ ବାସଭବନ ନିର୍ମାଣ ଓ ନବନିର୍ମିତ ଗୃହରେ ମେ ମାସ ୧୦ ତାରିଖରୁ ତାଙ୍କର ଅବସ୍ଥାନ। ତା'ପୂର୍ବରୁ ଶେଖବଜାରର ଏକ ଭଡ଼ାଘରେ ସେ ଦୀର୍ଘ ପନ୍ଦର ବର୍ଷ କାଳ ଧରି ଅବସ୍ଥାନ କରୁଥିଲେ। ନୂଆ ଘରେ କବି ମଧୁସୂଦନ ରାଓ ତାଙ୍କର ପଡ଼ୋଶୀ ହେଲେ।

ଅଗଷ୍ଟ ୧୭ ତାରିଖରେ 'ଇନ୍ଦ୍ରଧନୁ' ନାମରେ ସାମୟିକ ପତ୍ର କଟକରୁ ପ୍ରକାଶ ପାଏ। ଏହି ସମ୍ବାଦ ଘୋଷଣାକରି 'ଉତ୍କଳଦୀପିକା' କୁହେ— "ଇନ୍ଦ୍ରଧନୁ ନାମରେ ରୟେଲ୍ ଚାରିପୃଷ୍ଠା ଆକୃତିର ଖଣ୍ଡିଏ ପତ୍ରିକା ଗତ ଗୁରୁବାର ଦିନ କଟକ ପ୍ରିଣ୍ଟିଂ କୋମ୍ପାନୀଙ୍କ ଯନ୍ତ୍ରାଳୟରୁ ବାହାରିଅଛି। . . . ମୁଖବନ୍ଧରୁ ପ୍ରକାଶ ଯେ ସ୍ୱଭାବାନୁସାରେ ଅନିଶ୍ଚିତ ସମୟରେ ଏହା ଥରେ ଥରେ ଦେଖାଦେବ ଏବଂ ଉତ୍କଳ ସାହିତ୍ୟରେ ଘୋର ବାଦ ପ୍ରତିବାଦ ଆଜିକାଲି ଲାଗିଥିବାରୁ ଜାତୀୟ ଗୌରବ ରକ୍ଷା ନିମନ୍ତେ ଇନ୍ଦ୍ରଦେବ ଏହାକୁ ପଠାଇଅଛନ୍ତି।" (୨୮।୩୩; ୧୯।୮।୧୮୯୩) ଭଞ୍ଜକାବ୍ୟର ପ୍ରଶଂସା ଓ ପ୍ରସଙ୍ଗ, ଭଞ୍ଜନିନ୍ଦକ ସଙ୍ଗେ ସଂପୃକ୍ତ ବ୍ୟକ୍ତିମାନଙ୍କର ନିନ୍ଦା ଏହାର ଆଭିମୁଖ୍ୟ ଥିଲା। ଏଠାରେ

ସୂଚନାଯୋଗ୍ୟ ଯେ ଭଞ୍ଜସାହିତ୍ୟକୁ 'ଅଶ୍ଳୀଳ' ରଚନା ଭାବରେ ଅଭିହିତ କରିବାର ଯେଉଁ ଉଦ୍ୟମ ଚାଲିଥିଲା, ତାହା ସହିତ ରାଧାନାଥ ପରୋକ୍ଷରେ ସଂଶ୍ଳିଷ୍ଟ ଥିଲେ। ତେଣୁ 'ଇନ୍ଦ୍ରଧନୁ' ରାଧାନାଥ ନିନ୍ଦକ ଓ ତାଙ୍କ କାବ୍ୟର ଦୋଷଉଦ୍‌ଘାଟନକୁ ଅନ୍ୟତମ ଉଦ୍ଦେଶ୍ୟ ଭାବରେ ଗ୍ରହଣ କରିଥିଲା।

ସେପ୍ଟେମ୍ବର ୧୬ ତାରିଖରୁ ବାମଣ୍ଡାର 'ମୁଦ୍ରାଳ ଯନ୍ତ୍ର'ରୁ 'ବିଜୁଳି' ନାମକ ସାମୟିକ ପତ୍ରର ପ୍ରକାଶ। ଏହାର ସଂପାଦକ ଥିଲେ ଦାଶରଥି ରାଉତ ଓ ପରିଚାଳକ ଥିଲେ ଦାମୋଦର ମିଶ୍ର। 'ବିଜୁଳି' କାହିଁକି ପ୍ରକାଶ କରାଗଲା, ସେ ସଂପର୍କରେ ଏକ ଦୀର୍ଘ ପତ୍ରରେ ଦାଶରଥି ରାଉତ କହନ୍ତି– ''...[ଗୋଲକଧନ୍ଦା] ପୂର୍ବ ପ୍ରତିଜ୍ଞା, ପୂର୍ବମନୁଷ୍ୟତ୍ୱ ସମସ୍ତ ପରିତ୍ୟାଗ କରି ଇନ୍ଦ୍ରଙ୍କଠାରୁ ଗୋଟିଏ ଭଙ୍ଗା ଧନୁ ମାଗିଆଣି ଦିନା କେତେ ପାଇଁ ଉତ୍କଳ ଆକାଶରେ ଆବିର୍ଭୂତ ହୋଇଅଛନ୍ତି ଏବଂ ସ୍ୱୀୟ ଦଳବଳ ସହିତ ବିପୁଳ ବିକ୍ରମରେ କୁତ୍ସାରୂପ ପର୍ଯ୍ୟୁସିତ ଦୁର୍ଗନ୍ଧଯୁକ୍ତ ପ୍ରବନ୍ଧମୟ ଶର ବର୍ଷଣ କରୁଅଛନ୍ତି।... ତୁମ୍ଭେ ତେଣୁ ସତ୍ୟ ଭାଙ୍ଗିଅଛ– ସେଥିକି ଆଉ ଆମ୍ଭେ ଏହି ହିତୈଷିଣୀ କ୍ଷେତ୍ରରେ ରହି ତୁମ୍ଭ ସଙ୍ଗରେ ବଦଯୋ କରିବାକୁ ଇଚ୍ଛା କରୁନାହିଁ।'' (ସମ୍ବଲପୁର ହିତୈଷିଣୀ, ୫।୧୬; ୨୦।୯।୧୮୯୩) 'ବିଜୁଳି'ର ଲକ୍ଷ୍ୟ ଥିଲା ଭଞ୍ଜକାବ୍ୟର 'ଦୋଷୋଦ୍‌ଘାଟନ' ଓ ପ୍ରସଙ୍ଗକ୍ରମେ ରାଧାନାଥଙ୍କର ଗୁଣକୀର୍ତ୍ତନ।

୧୮୯୪ – ଜାନୁଆରୀ ୨୫ ତାରିଖରୁ ଫେବୃଆରୀ ୨ ତାରିଖ ମଧ୍ୟରେ ରାଧାନାଥଙ୍କର ପୁରୀ ଜିଲ୍ଲା ପରିଦର୍ଶନ। ସେହି ପରିଦର୍ଶନ କାଳରେ ଗୋପବନ୍ଧୁ ଦାସ (ପରବର୍ତ୍ତୀ କାଳରେ 'ଉତ୍କଳମଣି') ନାମକ ଛାତ୍ର 'ଇନ୍ଦ୍ରଧନୁ'ରେ ଲେଖୁଥିବା ଖବର ରାଧାନାଥ ପାଇଲେ ଓ ସେଥିପାଇଁ ତାହା ପ୍ରତି ଦଣ୍ଡାଦେଶ ଦେଇଥିଲେ।

ଫେବ୍ରୁଆରୀ ମାସରେ ରାଧାନାଥଙ୍କୁ ନିନ୍ଦିତ କରିବା ଉଦ୍ଦେଶ୍ୟରେ, 'ବକଚରିତ' ନାମରେ ଦୁଇ ଶହ ପଂକ୍ତିବିଶିଷ୍ଟ ଏକ ଦୀର୍ଘ କବିତା 'ଇନ୍ଦ୍ରଧନୁ'ରେ ପ୍ରକାଶିତ ହେଲା। ଦଶଟି କାରଣରୁ ଏଥିରେ ରାଧାନାଥଙ୍କର ନିନ୍ଦା ଗାନ କରାଯାଇଛି। ବାମଣ୍ଡା ଓ ମୟୂରଭଞ୍ଜ ଏ ଦୁଇ ରାଜ୍ୟର ମହାରାଜାମାନଙ୍କ ସହ ମିଶି ନିଜର ଗୌରବ ଘୋଷଣା କରିବାକୁ ଯାଇ ସେ କିଭଳି କର୍ତ୍ତବ୍ୟ ହୁଡ଼ିଛନ୍ତି, ତାହା ଏଥିରେ ଉପସ୍ଥାପିତ –

''ପ୍ରବଳ ହୋଇଲା ଲୋଭ ସ୍ୱଭାବ
କ୍ରମେ କ୍ରମେ ବଢ଼ିଗଲା ପ୍ରଭାବ
ସ୍ଥାୟି କରିବାକୁ ସ୍ୱୀୟ ଗୌରବ
ଜଳାଞ୍ଜଳି ଦେଇ ନିଜ କର୍ତ୍ତବ୍ୟ
ବଣୁଆ ସଙ୍ଗତେ
ଜପିଲା ବିଷମ ମନ୍ତ୍ର ଗୁପତେ।''

'ବକଚରିତ'ର ତୀବ୍ର ପ୍ରତିବାଦ କରିଥିଲେ ରାଧାନାଥଙ୍କର ଏକାନ୍ତ ଅନୁଗତ ଆର୍ତ୍ତତ୍ରାଣ ଶତପଥୀ (ସମ୍ବଲପୁର ହିତୈଷିଣୀ, ୫।୪୨; ୨୩।୩।୧୮୯୪) ଶତପଥୀ ତାଙ୍କ ରଚନାରେ ରାଧାନାଥଙ୍କର ପାଣ୍ଡିତ୍ୟ, କବିତ୍ୱ, ମନସ୍ୱିତା ଓ ହୃଦୟବତ୍ତା ପ୍ରସଙ୍ଗ ଉପସ୍ଥାପିତ କରିଛନ୍ତି। ଏହି 'ବକଚରିତ' ରାଧାନାଥଙ୍କୁ ଘୋର ବିବ୍ରତ କରିଥିଲା। 'ଓଡ଼ିଆ ଓ ନବସମ୍ବାଦ'ରେ ପ୍ରକାଶିତ ରାଧାନାଥଙ୍କ ପତ୍ରର ଏହା ମୌନ ପ୍ରେରଣା ବୋଲି ଅନୁମାନ କରାଯାଇପାରେ।

'ଇନ୍ଦ୍ରଧନୁ' 'ବିଜୁଳି' ଯୁଦ୍ଧରୁ ନିଜକୁ ଅସଂପୃକ୍ତ କରିବାପାଇଁ ରାଧାନାଥ 'ଓଡ଼ିଆ ଓ ନବସମ୍ବାଦ' (୧୪।୩।୧୮୯୪)ରେ ଏକ ଦୀର୍ଘ ପତ୍ର ପ୍ରକାଶ କରିଥିଲେ। ଏହି ପତ୍ର ସହ ଏକ ସଂପାଦକୀୟ ସୂଚନା ଥିଲା – ''ଏହି ପ୍ରେରିତ ପତ୍ର ଖଣ୍ଡି ଲେଖକ ବହୁଦିନରୁ ଲେଖି ଇନ୍ଦ୍ରଧନୁ କାଗଜରେ ପ୍ରକାଶ କରିବା ସକାଶେ ଇଚ୍ଛା କରିଥିଲେ। କୌଣସି କାରଣବଶତଃ ତାହା ଛାପାହେବାର ବିଳମ୍ବ ହେଲା। ଲେଖକ ସଂପ୍ରତି ଏଠାରେ ଉପସ୍ଥିତ ଥିବାରୁ ପ୍ରକାଶ ସକାଶ ଏହା ଆମ୍ଭମାନଙ୍କୁ ଦେଇଥିବାରୁ ଏହାକୁ ପ୍ରକାଶ କଲୁଁ।'' ଏହି ପତ୍ର ସଂପର୍କରେ ପ୍ରତିକ୍ରିୟା ପ୍ରକାଶ କରି ଗୌରୀଶଙ୍କର ଲେଖିଥିଲେ – ''ଆମ୍ଭେମାନେ ରାଧାନାଥବାବୁଙ୍କ ପତ୍ର ପଢ଼ି ବଡ଼ ଆନନ୍ଦିତ ହୋଇଅଛୁଁ। ସେ ଯେମନ୍ତ ସରଳ ଭାବରେ ଆପଣାର ମନକଥା ପ୍ରକାଶ କରିଅଛନ୍ତି, ଭରସା କରୁଁ, ସେହିପରି ସରଳ ଭାବରେ ସମସ୍ତେ ଗ୍ରହଣ କରିବେ। ଏହି ପତ୍ର ଭଞ୍ଜକଳିର ଆଦ୍ୟଅବସ୍ଥାରେ ବାହାରିଥିଲେ ଅନେକ ଅନର୍ଥ ନିବାରିତ ହୋଇଥାନ୍ତା ଓ ତାହାଙ୍କ ସମ୍ବନ୍ଧରେ ଯେଉଁ ଭ୍ରମାତ୍ମକ କଳ୍ପନାର ଗୁହାରି କରିଅଛନ୍ତି ତାହା ଘଟିନଥାନ୍ତା।''

ରାଧାନାଥଙ୍କ ବାଲେଶ୍ୱର ସହରରେ ଥିବା ବସାଘର ୨୪।୩।୧୮୯୪ତାରିଖରେ ପୋଡ଼ିଯାଏ। (ବାଲେଶ୍ୱର ସମ୍ବାଦବାହିକା, ୨୬।୨୫; ୨୭।୬।୧୮୯୪) ଏହି ଘର ପୋଡ଼ିବା ସହ

ରାଧାନାଥ ନିଜକୁ ଭଞ୍ଜଙ୍କର ଶ୍ରେଷ୍ଠ ଅନୁକାରକ କହିବାର ସଂପର୍କ ଅଛି ବୋଲି 'ସମ୍ବଲପୁର ହିତୈଷିଣୀ'ର ସଂପାଦକ ମନେକରିଥିଲେ – "ଆମ୍ଭେମାନେ ବିଶ୍ୱସ୍ତ ସୂତ୍ରେ ଜାଣିଲୁଁ ରାଧାନାଥବାବୁ ଭଞ୍ଜୀୟ ଆନ୍ଦୋଳନ ସମ୍ବନ୍ଧେ ଯେଉଁ ମନ୍ତବ୍ୟ ଦେଇଅଛନ୍ତି ତାହା ସେ ଘରପୋଡ଼ିଆ ଛାତ୍ରଙ୍କ ନୀତି ଓ ଫରାସି ରାଷ୍ଟ୍ରବିପ୍ଳବ କଥା ସ୍ମରଣ କରି ସେପରି ଲେଖିଅଛନ୍ତି। ବିଶେଷତଃ ତାଙ୍କ ବାଲେଶ୍ୱରର ବସାଘର ପୋଡ଼ିଯିବାରୁ ଇନ୍ଦ୍ରଧନୁ ଅଫିସକୁ ପଠାଇ-ଥିବା ମନ୍ତବ୍ୟ ଛାପାରେ ବିଳମ୍ବ ଦେଖି ତରତର ହୋଇ 'ଓଡ଼ିଆ ଓ ନବସମ୍ବାଦ'ରେ ଛାପିଦେଲେ।" (୬।୧, ୬।୬।୧୮୯୪) ସଂପାଦକଙ୍କୁ ୨।୮।୧୮୯୪ ତାରିଖରେ ଲିଖିତ ଏକ ପତ୍ରରେ ରାଧାନାଥ ଏହି ସମ୍ବାଦର ପ୍ରତିବାଦ କରିଛନ୍ତି। (ସମ୍ବଲପୁର ହିତୈଷିଣୀ, ୬।୧୧; ୧୫।୮।୧୮୯୪) ରାଧାନାଥଙ୍କର ଏହି ପତ୍ରଟି ପ୍ରକାଶିତ ହେଲା ପରେ ପରେ 'ବିଜୁଳି' ସାମୟିକ ପତ୍ରର ପ୍ରକାଶନ ବନ୍ଦ ହୋଇଛି।

ରାଧାନାଥଙ୍କର ବୈମାତୃକ ଭାଇ ସୀତାନାଥ ରାୟଙ୍କ ଦ୍ୱାରା 'ରାୟ ପ୍ରେସ' ସ୍ଥାପନ। ପରେ ଶଶିଭୂଷଣ ଏହି ପ୍ରେସର ପରିଚାଳକ ଥିଲେ।

ମେ ମାସ ପନ୍ଦର ତାରିଖରେ ରାଧାନାଥଙ୍କର ଶୁଭେଚ୍ଛୁ ଭୂଦେବ ମୁଖୋପାଧ୍ୟାୟଙ୍କର ପରଲୋକ ଗମନ। ରାଧାନାଥ ତାଙ୍କ ସଂପର୍କରେ ସ୍ମୃତିଚାରଣ କରିବାକୁ ଯାଇ ନିଜକୁ ଉପେନ୍ଦ୍ର ଭଞ୍ଜଙ୍କର ପ୍ରଶଂସକ ଭାବରେ ଉପସ୍ଥାପିତ କରିଥିଲେ।

ରାଧାନାଥଙ୍କର ଭିଣୋଇ ଗୋବିନ୍ଦବଲ୍ଲଭ ରାୟଙ୍କୁ 'ରାୟ ବାହାଦୁର' ଉପାଧି ଓ ସାମନ୍ତ ଚନ୍ଦ୍ରଶେଖରଙ୍କୁ 'ମହାମହୋପାଧ୍ୟାୟ' ଉପାଧି ଦେବାପାଇଁ ୨୯।୮।୧୮୯୪ ଓ ୩।୯।୧୮୯୪ରେ କଟକରେ ଦୁଇଟି ଦରବାର ହୋଇଥିଲା। ଏହି ଦୁଇଟି ଦରବାରକୁ ଆଧାର କରି ରାଧାନାଥଙ୍କ 'ଦରବାର' କାବ୍ୟ ରଚିତ।

ଭଞ୍ଜ-ବିରୋଧୀ ଆନ୍ଦୋଳନ ସହ ଅସଂପୃକ୍ତ ବୋଲି ରାଧାନାଥ ବାରମ୍ବାର ଘୋଷଣା କରିବାରୁ 'ବିଜୁଳି'ର ପ୍ରକାଶନ ବନ୍ଦ କରିବା ପାଇଁ ତାହାର ସଂପାଦକ ଓ ପରିଚାଳକଙ୍କର ନିଷ୍ପତ୍ତି। ଏହି ନିଷ୍ପତ୍ତି ଘୋଷଣା କରି ୧୬।୯।୧୮୯୪ ତାରିଖରେ 'ବିଜୁଳି'ର ସଂପାଦକ ଦାଶରଥି ରାଉତ ଲେଖିଥିଲେ – "ମୁଁ ଆଜକୁ ଏକବର୍ଷ ହେଲା 'ବିଜୁଳୀ'ର ସମ୍ପାଦକ ହୋଇ ଉତ୍କଳଭ୍ରାତାମାନଙ୍କ- ଠାରେ ବିରୋଧୀ ହୋଇଥିବାରୁ ବର୍ତ୍ତମାନ ତହିଁପାଇଁ ଅନୁତପ୍ତ, ଦୁଃଖିତ ଓ ସନ୍ତପ୍ତ ହେଉଅଛି। ସୁତରାଂ ମୁଁ ଦୃଢ଼ପ୍ରତିଜ୍ଞ ହୋଇଅଛି ଯେ ମୁଁ ଭବିଷ୍ୟତରେ ଆଉ 'ବିଜୁଳି'ର ସମ୍ପାଦକସ୍ୱରୂପ ଦେଖାଦେବିନାହିଁ। ଅତଏବ ଏଥିଦ୍ୱାରା ବର୍ତ୍ତମାନ ପ୍ରାର୍ଥନା କରୁଅଛି ଯେ ଉତ୍କଳଭ୍ରାତାମାନେ, ଇନ୍ଦ୍ରଧନୁଦଳ ଓ ବିଜୁଳିଦଳ ଅନୁଗ୍ରହ କରି କ୍ଷମା ଦାନ କରିବେ। ବିଜୁଳିଦଳଠାରେ ସାନୁନୟ ନିବେଦନ କରୁଅଛି ଯେ, ଆଜି ଊନବିଂଶ ଶତାବ୍ଦୀରେ କାହାରି ଇଚ୍ଛା ବିରୁଦ୍ଧରେ କେହି ଜବରଦସ୍ତି କରିନପାରେ। ଏହା ବୁଝି ମୋ'ପ୍ରତି ଆକ୍ରୋଶଭାବ ରଖିବେ ନାହିଁ।" (ଉତ୍କଳଦୀପିକା, ୨୯।୪୦; ୨୦।୧୦।୧୮୯୪) 'ବିଜୁଳି'ର ଶେଷ ସଂଖ୍ୟା ପ୍ରକାଶିତ ହୋଇଛି ୨୨।୧୦।୧୮୯୪ତାରିଖରେ।

ରାଧାନାଥଙ୍କର ବାଲେଶ୍ୱର ଗସ୍ତ। ଭଦ୍ରଖର ସ୍କୁଲ ସବ୍-ଇନ୍ସପେକ୍ଟର ରମାନାଥ ଦାସଙ୍କ ମାଧ୍ୟମରେ କବି ଚିନ୍ତାମଣି ମହାନ୍ତିଙ୍କ ସହ ଏହି ଗସ୍ତକାଳରେ ରାଧାନାଥ ପ୍ରଥମେ ପରିଚିତ ହୋଇଥିଲେ। ଏହି ପରିଚୟ ପରବର୍ତ୍ତୀ କାଳରେ ଅନ୍ତରଙ୍ଗ ହୋଇଥିଲା ଓ ଚିନ୍ତାମଣି ଜଣେ ରାଧାନାଥଭକ୍ତରେ ପରିଣତ ହୋଇଥିଲେ।

୧୮୯୫ – ମାର୍ଚ୍ଚ ୨୨ରୁ ୨୪ ତାରିଖ ଯାଏ ରାଧାନାଥ କେନ୍ଦ୍ରାପଡ଼ାସ୍କୁଲ ପରିଦର୍ଶନରେ ଯାଇ-ଥିଲେ। ସେତେବେଳେ ନନ୍ଦକିଶୋର ବଳ ଜଣେ ଛାତ୍ର ହିସାବରେ ତାଙ୍କୁ ଦେଖିବାର ସୁଯୋଗ ପାଇଥିଲେ।

୧୮୯୬ – ରାଧାନାଥଙ୍କ ଜ୍ୟେଷ୍ଠପୁତ୍ର ଶଶିଭୂଷଣ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଦ୍ୱିତୀୟ ଶ୍ରେଣୀର ବୃତ୍ତି ଲାଭକରେ। ରାଧାନାଥଙ୍କର ଭଦ୍ରଖ ହାଇସ୍କୁଲ, ଦୋଳସାହି ସ୍କୁଲ, ଗଣେଶ୍ୱର ଟୋଲ୍ ଓ ଶେଷରେ ଚିନ୍ତାମଣି ମହାନ୍ତି ଶିକ୍ଷକତା କରୁଥିବା କୁମାରପୁର ସ୍କୁଲ ପରିଦର୍ଶନ କରିଥିଲେ। ଚିନ୍ତାମଣିଙ୍କ ବିରୁଦ୍ଧରେ ହେଉଥିବା ଅମୂଳକ ଅଭିଯୋଗରୁ ତାଙ୍କୁ ରକ୍ଷା- କରିବାପାଇଁ ସେ ଅଧସ୍ତନ କର୍ମଚାରୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ। କୁମାରପୁର ସ୍କୁଲ ସଂପର୍କରେ ସେ ଲେଖିଥିଲେ – "ଅଦ୍ୟ କୁମାରପୁର ଉଚ୍ଚ ପ୍ରାଇମେରୀ ସ୍କୁଲ ଦେଖିଲି। ପରୀକ୍ଷାର ଫଳ ଆଶାତୀତ ସନ୍ତୋଷଜନକ। ଏଭଳି ଆଦର୍ଶ ଉଚ୍ଚ ପ୍ରାଇମେରୀ ସ୍କୁଲ ମୁଁ ସମଗ୍ର ଉତ୍କଳରେ ଦେଖିନାହିଁ। ବାଲେଶ୍ୱର ଜିଲ୍ଲାର ଅନେକ ଭର୍ଣ୍ଣାକୁଲାର

ସ୍କୁଲ ସୁଦ୍ଧା ଏହାର ସମକକ୍ଷ ନୁହେଁ। ଶିକ୍ଷକ [ଚିନ୍ତାମଣି ମହାନ୍ତି] ଜଣେ ବିଦ୍ୱାନ୍, ସଚ୍ଚରିତ୍ର ଏବଂ ବହୁଦର୍ଶୀ ବ୍ୟକ୍ତି। ଏ ଭଳି ଶ୍ରମପ୍ରାଣ ସୁଶିକ୍ଷକ ସର୍ବାଦୌ ଉତ୍ସାହର ଯୋଗ୍ୟ।''

ରାଧାନାଥଙ୍କ ଉଦ୍ୟୋଗରେ ଢେଙ୍କାନାଳରେ ଏକ ହାଇସ୍କୁଲ ପ୍ରତିଷ୍ଠା। ଏ ସଂପର୍କରେ ଢେଙ୍କାନାଳ ନିବାସୀ ଓ ସେ ସମୟରେ ପାଲଲହଡ଼ାରେ ଦେବାନ୍ ଥିବା ଦାମୋଦର ପଟ୍ଟନାୟକ ୨୦।୬।୧୮୯୬ ତାରିଖରେ ରାଧାନାଥଙ୍କ ନିକଟକୁ ଲେଖିଥିଲେ – ''କେବଳ ଆପଣଙ୍କ ଯତ୍ନରେ ଢେଙ୍କାନାଳରେ ଏଣ୍ଟ୍ରେନ୍ସ ସ୍କୁଲ ହେବାର ଭାଇଙ୍କଠାରୁ ଅଦ୍ୟ ଶୁଣି ଢେଙ୍କାନାଳର ଜଣେ ପ୍ରତିନିଧିରୂପେ ଆପଣଙ୍କୁ ଅନ୍ତରର ସହିତ ଅଶେଷ ଧନ୍ୟବାଦ ଦେଉଅଛି।''

ରାଧାନାଥଙ୍କର ସହଯୋଗୀ ଓ ଏକଦା ମୁଖ୍ୟ-ସ୍ତାବକ ଲାଲା ରାମନାରାୟଣ ରାୟଙ୍କର ୨୨।୬।୧୮୯୬ରେ ଦେହାନ୍ତ। ଲାଲାଙ୍କର ଏହି ଅକାଳ ବିୟୋଗ ଭଞ୍ଜବିରୋଧୀ ଆନ୍ଦୋଳନର ତିକ୍ତ ସ୍ମୃତି ଅନେକଙ୍କ ମନରୁ ପୋଛିଦେବାରେ ସହାୟକ ହୋଇଥିଲା।

୧୮୯୭ – ଜାନୁଆରୀ ମାସରେ ବିଶ୍ୱନାଥ କର ସଂପାଦନା ଓ କୃଷ୍ଣପ୍ରସାଦ ଚୌଧୁରୀଙ୍କର ପରିଚାଳନାରେ 'ଉତ୍କଳ ସାହିତ୍ୟ' ସାହିତ୍ୟପତ୍ର ପ୍ରକାଶିତ ହୁଏ। ରାଧାନାଥ ଏହାର ସଂପାଦନା-ମଣ୍ଡଳୀର ଅନ୍ୟତମ ଉପଦେଷ୍ଟା ଥିଲେ। 'ଉତ୍କଳ ସାହିତ୍ୟ' ଆଧୁନିକ ସାହିତ୍ୟର ବିକାଶରେ ଉଲ୍ଲେଖ-ଯୋଗ୍ୟ ଭୂମିକା ଗ୍ରହଣ କରିଥିଲା। ଜୁନ ମାସରେ ଇଂଲଣ୍ଡର ମହାରାଣୀ ଭିକ୍ଟୋରିଆଙ୍କ ରାଜତ୍ୱର ହୀରକ ଜୁବିଲି ଉତ୍ସବ ପାଳନ ଅବସରରେ ରାଧାନାଥଙ୍କୁ 'ରାୟବାହାଦୁର' ଉପାଧି ପ୍ରଦାନ। ରାଧାନାଥଙ୍କୁ ପ୍ରଦତ୍ତ ସନନ୍ଦରେ ଲେଖାଥିଲା –

To,
Babu Radhanath Rai,
Inspector of School, Orissa

I hereby confer upon you the title of Rai Bahadur as a personal distinction.

Sd/- Elgin
Viceroy and Governor General of India

Simla
The 22nd June, 1897

ରାଧାନାଥଙ୍କ 'ରାୟବାହାଦୁର' ଉପାଧି ପ୍ରାପ୍ତି ହେତୁ ତାଙ୍କୁ ଅଭିନନ୍ଦିତ କରିବା ଉପଲକ୍ଷ୍ୟରେ ବାମଣ୍ଡାରେ ଯୁବରାଜ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ସଭାପତିତ୍ୱରେ ଜୁଲାଇ ୨୬ରେ ଏକ ସଭାର ଆୟୋଜନ ହୋଇଥିଲା। ଏହି ସଭାରେ ରାଧାନାଥଙ୍କର ସଂକ୍ଷିପ୍ତ ଜୀବନୀ, ସଂସ୍କୃତ ଭାଷା ଓ ସଂସ୍କୃତଜ୍ଞମାନଙ୍କ ପ୍ରତି ତାଙ୍କର ଥିବା ଶ୍ରଦ୍ଧା, ଓଡ଼ିଆ ସାହିତ୍ୟକୁ ତାଙ୍କର ଦାନ, ତାଙ୍କର ଦାନଶୀଳତା ଓ ମହନୀୟ ବ୍ୟକ୍ତିତ୍ୱ ଆଦି ପ୍ରଶଂସିତ ହୋଇଥିଲା। ଏହି ସଭାର ଏକ ବିବରଣୀ 'ସମ୍ବଲପୁର ହିତୈଷିଣୀ' (୯।୬; ୭।୭।୧୮୯୭)ରେ ପ୍ରକାଶିତ ହୋଇ-ଥିଲା ଓ ଏହାର ଏକ କିତା ନକଲ ରାଧାନାଥଙ୍କ ନିକଟକୁ ପ୍ରେରିତ ହୋଇଥିଲା।

୧୮୯୯ – ରାଧାନାଥଙ୍କର ଦ୍ୱିତୀୟ ଭ୍ରାତା ଯଦୁନାଥଙ୍କର ମାତ୍ର ୪୭ ବର୍ଷ ବୟସରେ କେନ୍ଦ୍ରାପଡ଼ାଠାରେ ପରଲୋକ ଗମନ। ଭ୍ରାତୃବିୟୋଗ ଦୁଃଖ ସହିତ ଯଦୁନାଥଙ୍କ ପରିବାର ପ୍ରତିପୋଷଣର ଭାର ରାଧାନାଥଙ୍କ ଉପରେ ପଡ଼ିଥିଲା। ନିଜ ରଚନା ସମ୍ବନ୍ଧରେ ରାଧାନାଥଙ୍କର ସରକାରଙ୍କ ସହ ଗୁପ୍ତ ପତ୍ର ଆଦାନ ପ୍ରଦାନ। ଏକଦା ରାଧାନାଥଙ୍କର ଘନିଷ୍ଠ ସହଯୋଗୀ ଥିବା ଓଡ଼ିଆ ଲେଖକ ସରକାରଙ୍କୁ ଜଣାଇଥିଲେ ଯେ 'ମହାଯାତ୍ରା' ପଞ୍ଚମ ସର୍ଗର ଶେଷ ଅଂଶ ଓ 'କବିତାବଳୀ'ର 'ନିଜ ସୈନ୍ୟ ପ୍ରତି ଶିବାଜୀ' କବିତା ଦେଶଦ୍ରୋହମୂଳକ ରଚନା। ଏଥିନେଇ ଜୁଲାଇରୁ ନଭେମ୍ବର ଶେଷ ପର୍ଯ୍ୟନ୍ତ ରାଧାନାଥଙ୍କ ସହ ସରକାରଙ୍କର ଗୁପ୍ତ ପତ୍ର ଆଦାନ ପ୍ରଦାନ ହୋଇଥିଲା। 'ରାଧାନାଥ ଗ୍ରନ୍ଥାବଳୀ'ର ପ୍ରଥମ ସଂସ୍କରଣ (୧୯୦୨)ରୁ 'ମହାଯାତ୍ରା'ର ସଂପୃକ୍ତ ଅଂଶ ଓ 'ନିଜ ସୈନ୍ୟ ପ୍ରତି ଶିବାଜୀ' କବିତା ରାଧାନାଥ ବାଦ୍‌ଦେଇଥିଲେ।

୧୯୦୦ – ଜାନୁଆରୀ ମାସ ଦୁଇ ତାରିଖରେ ରାଧାନାଥଙ୍କର ବର୍ଦ୍ଧମାନ ଡିଭିଜନକୁ ଇନ୍‌ସପେକ୍ଟର ଭାବରେ ବଦଳି। ଗୋଟିଏ ଶିକ୍ଷାବିଭାଗୀୟ ସମ୍ମିଳନୀକୁ ଆମନ୍ତ୍ରିତ ହୋଇ ସେ ସସ୍ତ୍ରୀକ କଲିକତା ଯାଇଥିଲାବେଳେ ସେଠାରେ ଏ ବଦଳି ନିର୍ଦ୍ଦେଶ ପାଇଲେ। ତାଙ୍କ ସ୍ଥାନରେ ଓଡ଼ିଶାକୁ ଇନ୍‌ସପେକ୍ଟର ହୋଇ ଆସିଲେ ରୁଥର୍ ସାହେବ। ପାଠ୍ୟପୁସ୍ତକ ମନୋନୟନ ଓ ଅନ୍ୟାନ୍ୟ କାରଣରୁ ତାଙ୍କ ବିରୁଦ୍ଧରେ ଏକଦା ଆନ୍ଦୋଳନ କରୁଥିବା ସମ୍ବାଦପତ୍ରଗୁଡ଼ିକ ଏତେବେଳକୁ ସେମାନଙ୍କ ଦୃଷ୍ଟିଭଙ୍ଗୀ ବଦଳେଇ-

ସାରିଥିଲେ। ତେଣୁ ତାଙ୍କ ବଦଳିରେ ଓଡ଼ିଶାର ସମ୍ବାଦପତ୍ରଗୁଡ଼ିକ ଦୁଃଖ ପ୍ରକାଶ କରିଥିଲେ।

ଖଡ଼ିଆଳର ଦ୍ୱିତୀୟ ରାଜକୁମାର ଲାଲ ଶିବନାରାୟଣ ଦେବ ଏଣ୍ଟ୍ରାନ୍ସ ପରୀକ୍ଷା ଦେବାପାଇଁ ଜାନୁଆରୀ/ଫେବ୍ରୁଆରୀ ମାସରେ କଟକ ଆସିଥିଲେ। ତାଙ୍କର କଟକ ରହଣୀ କାଳରେ ରାଧାନାଥଙ୍କ ସମସ୍ତ ଓଡ଼ିଆ କବିତାକୁ ଏକତ୍ର କରି ପ୍ରକାଶ କରିବାକୁ ରାଧାନାଥଙ୍କୁ ପ୍ରସ୍ତାବ ଦେଇଥିଲେ। ଏହି ପ୍ରସ୍ତାବରେ ସମ୍ମତି ଜଣାଇ ରାଧାନାଥ ଶଶିଭୂଷଣଙ୍କୁ ୨୨।୨।୧୯୦୦ ତାରିଖରେ ଲେଖିଥିଲେ– "I am glad to learn that the Lalsaheb of Kharial is willing to bring about a complete edition of may Oriya Poetry at his own cost. Get a collection of them ready for revision by me in April next"। ରାଧାନାଥଙ୍କର ନିର୍ବାଚିତ ଓଡ଼ିଆ କାବ୍ୟସଂଗ୍ରହ 'ରାଧାନାଥ ଗ୍ରନ୍ଥାବଳୀ' ଶୀର୍ଷକରେ ୧୯୦୨ ମସିହାରେ ପ୍ରକାଶିତ ହୋଇଥିଲା।

ବଙ୍ଗୀୟ ନାରୀକବି ନଗେନ୍ଦ୍ରବାଳା ସରସ୍ୱତୀ (ମୁସ୍ତୋଫୀ)ଙ୍କ ରାଧାନାଥଙ୍କର ପରିଚୟ। ଏହି ପରିଚୟ ପ୍ରଥମେ ଗୁରୁ ଶିଷ୍ୟା ଓ ପରେ ପ୍ରେମିକ-ପ୍ରେମିକା ସଂପର୍କରେ ରୂପାନ୍ତରିତ ହୋଇଥିଲା।

**୧୯୦୧** – 'ସମ୍ବଲପୁର ହିତୈଷିଣୀ'ର ସଂପାଦକ ନୀଳମଣି ବିଦ୍ୟାରତ୍ନ ବାମଣ୍ଡାର ରାଜା ସୁଢ଼ଳଦେବଙ୍କ ଅଜ୍ଞାତରେ ରାଜକୋଷରୁ ୩୦୦ଟଙ୍କା ଖର୍ଚ୍ଚ କରି-ଦେଇଥିଲେ। ସାତଦିନ ମଧ୍ୟରେ ସାମୟିକ ଆତ୍ମସାତ୍ ହୋଇଥିବା ଅର୍ଥ ଜମା ନ କଲେ ଆଇନଗତ କାର୍ଯ୍ୟାନୁଷ୍ଠାନ କରିବେ ବୋଲି ବିଦ୍ୟାରତ୍ନଙ୍କୁ ସୁଢ଼ଳ ଦେବଙ୍କର ଧମକ୍। ବିଦ୍ୟାରତ୍ନଙ୍କର ରାଧାନାଥଙ୍କୁ ଅର୍ଥପାଇଁ ନିବେଦନ ଓ ନିର୍ଦ୍ଧାରିତ ସମୟରେ ରାଧାନାଥ ଆବଶ୍ୟକ ଅର୍ଥ ରାଜକୋଷରେ ଜମାକରିଥିଲେ। ଏହି ଘଟଣାରେ ବିଦ୍ୟାରତ୍ନ ରାଧାନାଥଙ୍କ ସାହାଯ୍ୟ ହେତୁ ଜେଲ୍‌ଦଣ୍ଡରୁ ମୁକ୍ତି ପାଇଲେ ବି ତାଙ୍କୁ ଲଜ୍ଜା ହେତୁ ବାମଣ୍ଡା ଛାଡ଼ି ଆସିବାକୁ ହେଲା ଓ ନିଜ ହାତରେ ଗଢ଼ିଥିବା 'ସମ୍ବଲପୁର ହିତୈଷିଣୀ' ସଂପାଦକ ପଦ ତ୍ୟାଗ କରିବାକୁ ହେଲା।

ମାର୍ଚ୍ଚ ମାସରେ ଶଶିଭୂଷଣ ଓ ଜୁନମାସରେ ରଜନୀଭୂଷଣଙ୍କର ବିବାହ। ଉଭୟ ବିବାହ ରାଧାନାଥ ମହା-ସମାରୋହରେ କରିଥିଲେ। ଶଶିଭୂଷଣଙ୍କ ବିବାହ କଟକ ଜିଲ୍ଲା ବହୁଗ୍ରାମନିବାସୀ ରାଧାନାଥ ସେନଙ୍କ କନ୍ୟା ବିନୋଦିନୀଙ୍କ ସହିତ ଓ ରଜନୀଭୂଷଣଙ୍କ ବିବାହ କଟକନିବାସୀ ବନୱାରିଲାଲ ସେନଙ୍କର ଏକମାତ୍ର କନ୍ୟା ନିରୁପମାଙ୍କ ସହିତ ଅନୁଷ୍ଠିତ ହୋଇଥିଲା। ରାଧାନାଥଙ୍କର ଏକ ମନୋମତ ଗୃହ ଧବଳେଶ୍ୱରଠାରେ ଶଶିଭୂଷଣ ତିଆରି କରିଥିଲେ ଓ ଏହାର ନିର୍ମାଣକାର୍ଯ୍ୟ ଏଇ ବର୍ଷ ଏପ୍ରିଲ ମାସରେ ସଂପୂର୍ଣ୍ଣ ହୋଇଥିଲା। ଶଶିଭୂଷଣ ସେହି ଗୃହର ନାମ ଦେଇଥିଲେ 'ନିଭୃତ ନିଳୟ'। 'ଉତ୍କଳ-ସାହିତ୍ୟ'ର ପଞ୍ଚମ ବର୍ଷ ତୃତୀୟ ସଂଖ୍ୟା (ଜୁନ୍, ୧୯୦୧)ରେ 'ଶ୍ରୀ'ଛଦ୍ମନାମରେ ନନ୍ଦକିଶୋରଙ୍କର 'ଓଡ଼ିଆ ବାଳିକା' କବିତା ପ୍ରକାଶପାଏ। ଏହି କବିତାରେ ଥିବା ତିନିପଦ–

"ଅଚ୍ଛା ଆଉ ପାଶେ ବସି ଶିଖେ ରସକଳା
ଥଟ୍ଟା ମଜ୍ଜା କରେ ଯେବେ ଆସେ ଭାଇଣଲା।
× × ×
ଭାଉଜ, ଭେଣେଇ, ଭାଇଣଲା ଅଚ୍ଛା ଆଉ
ଗୁରୁ ଯାର ପ୍ରବୀଣା ସେ ହେବ କିପାଇଁ?
ହାତ ଧୋଇ ନ ଜାଣୁଣୁ ବୁଝେ ବିଭା ମର୍ମ
ବିଭା ଛୁଆପିଲା, ଏକମାତ୍ର ନାରୀମର୍ମ।"

ସେତେବେଳେ ଭୀଷଣ ପ୍ରତିକ୍ରିୟା ସୃଷ୍ଟି କରିଥିଲା। 'ଉତ୍କଳସାହିତ୍ୟ' ସଂପାଦକଙ୍କୁ ଏଥି ସଂପର୍କରେ ରାଧାନାଥ ଲେଖିଥିଲେ– "ଏପରି କବିତା ପ୍ରକାଶ-କରି ସେ ବିଜ୍ଞତାର ପରିଚୟ ଦେଇନାହାନ୍ତି।"

ରାଧାନାଥ ବର୍ଦ୍ଧମାନ ଡିଭିଜନର ସ୍କୁଲ ଇନ୍‌ସପେକ୍ଟର ଥିଲାବେଳେ ବଙ୍ଗଳାର ଛୋଟ ଲାଟ ସାର୍ ଜନ୍ ଉଡ୍‌ବର୍ଣ୍ଣ ବର୍ଦ୍ଧମାନ ମ୍ୟୁନିସିପାଲ ସ୍କୁଲ ଓ ବାଙ୍କୁଡ଼ା ଜିଲ୍ଲା ସ୍କୁଲକୁ ପରିଦର୍ଶନ ଉଦ୍ଦେଶ୍ୟରେ ଯାଇଥିଲେ। ପିଲାମାନଙ୍କ ତରଫରୁ ତାଙ୍କୁ ଅଭ୍ୟର୍ଥନା କରିବାପାଇଁ ରାଧାନାଥ ଇଂରେଜୀରେ ଦୁଇଟି ସ୍ୱାଗତସଙ୍ଗୀତ ରଚନା କରିଥିଲେ। ଏହି ସ୍ୱାଗତ-ସଙ୍ଗୀତ ଦୁଇଟି 'ରାଧାନାଥ ଜୀବନୀ'ରେ ସଂକଳିତ ହୋଇଛି। (ପୃ.୩୩୫)

ବଙ୍ଗଳାର ନାରୀକବି ନଗେନ୍ଦ୍ରବାଳାଙ୍କ ଦ୍ୱାରା ଜୁଲାଇ ମାସରେ ରାଧାନାଥ-ପ୍ରଶସ୍ତି-ମୂଳକ 'ଭୂତଳେ ସ୍ୱର୍ଗ' କବିତାର ରଚନା। ଏହି ଅପୂର୍ବ କବିତାଟି 'ରାଧାନାଥ ଗ୍ରନ୍ଥାବଳୀ' ପ୍ରଥମ ସଂସ୍କରଣରେ ସ୍ଥାନ ପାଇଥିଲା।

ବଙ୍ଗଳାର 'ପ୍ରଭିନ୍‌ସିଆଲ ସର୍ଭିସେସ୍'ର ଶୀର୍ଷ-ସ୍ଥାନକୁ ରାଧାନାଥ ଉନ୍ନୀତ ହେଲେ।

**୧୯୦୨** – ମାର୍ଚ୍ଚ ମାସରେ ନାରୀକବି ନଗେନ୍ଦ୍ରବାଳାଙ୍କର 'ଅମିୟଗାଥା' ପ୍ରକାଶିତ। ଏଥିରେ ଥିବା 'ଗ୍ରନ୍ଥକର୍ତ୍ତ୍ରୀଙ୍କର ସଂକ୍ଷିପ୍ତ ଜୀବନୀ' ରଚନା କରିଛନ୍ତି ରାଧାନାଥ ଓ ରାଧାନାଥଙ୍କୁ ପୁସ୍ତକଟି ଉତ୍ସର୍ଗିତ –

"ଗୁରୁପ୍ରତିମ ଉତ୍କଳେର କବିଗୁରୁ ଶ୍ରୀଲ ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୁର, ସ୍କୁଲ ଇନସ୍ପେକ୍ଟର
ମହୋଦୟେର ପ୍ରତି –
ଦେବାର ତୋମାର କାଛେ କି ମୋର ଅଦେୟ ଆଛେ
କିନ୍ତୁ ତବ ଯୋଗ୍ୟଧନ କି ଆଛେ ଧରାୟ,
ସ୍ୱର୍ଗେର ଦେବତା ତୁମି, ବିଷାକ୍ତ ଏ ମର୍ତ୍ତ୍ୟଭୂମି
ଏଖାନେ କଠୋର ସବି – ଯଦି ବାଜେ ପାୟ!
କତଇ ଆଗ୍ରହ ଭରେ, ଦେବ ଗୋ ଯତନ କରେ
ଯେଇ କ୍ଷୁଦ୍ର ମାଲା ଗଛି କରେଛି ରଚନ –
ଉତ୍‌କଣ୍ଠା-ପୂରିତ-ଚିତ୍ତେ ଆସିୟାଛି ତାଇ ଦିତେ
ଶିଷ୍ୟା ବଲେ ଦୟା କରେ କର ତା' ଗ୍ରହଣ।
ତୁମି ଗୋ ମହାନ ଉଚ୍ଚ, ଆମି କ୍ଷୁଦ୍ରତମ ତୁଚ୍ଛ,
ଆପ୍ଲୁତ ହଇୟା ତବ ସ୍ନେହେର ଧାରାୟ –
ଏସେଛି ସାହସ ଭରେ, ଦିତେ ଇହା ପଦୋପରେ
ଧରି ଏ ଅଞ୍ଜଳି କର – କୃତାର୍ଥ ଆମାୟ।
ସେବିକା
ନଗେନ୍ଦ୍ରବାଲା।"

ସେପ୍ଟେମ୍ବର ମାସରେ ରାଧାନାଥଙ୍କର ଘନିଷ୍ଠ ବନ୍ଧୁ ବୈକୁଣ୍ଠନାଥ ଦେ ବଡ଼ଲାଟ ଲର୍ଡ଼ କର୍ଜନଙ୍କୁ 'ପ୍ରାକୃତିକ ଓଡ଼ିଶା'ର ଏକୀକରଣ ସଂପର୍କରେ ଏକ ଆବେଦନ ପତ୍ର ଦେଇଥିଲେ ଓ ଏହି ଆବେଦନପତ୍ରର ଖସଡ଼ା ପ୍ରସ୍ତୁତ କରିଥିଲେ ରାଧାନାଥ।

ରାଧାନାଥଙ୍କର ସ୍ତ୍ରୀ ପରଶମଣିଙ୍କ ଦ୍ୱାରା ନିମନ୍ତ୍ରିତା ହୋଇ ନଗେନ୍ଦ୍ରବାଳାଙ୍କର ଅକ୍ଟୋବର ମାସରେ କଟକ ଆଗମନ ଓ ଧବଳେଶ୍ୱରରେ ଥିବା ରାଧାନାଥଙ୍କ ଗୃହ 'ନିଭୃତ-ନିଳୟ'ରେ ଅବସ୍ଥାନ। ନଗେନ୍ଦ୍ରବାଳା 'ଧବଳେଶ୍ୱର' ସଂପର୍କରେ ଏକ କ୍ଷୁଦ୍ର କାବ୍ୟ ରଚନା କରିଥିଲେ ଓ ଏହା ଆର୍ତ୍ତତ୍ରାଣ ଶତପଥୀଙ୍କ ଦ୍ୱାରା ୧୯୦୩ ମସିହାରେ ପ୍ରକାଶିତ ହୋଇଥିଲା। ଏହାର ଭୂମିକାରେ ଶତପଥୀ ଲେଖିଥିଲେ – "ରାୟ ବାହାଦୁର ପତ୍ନୀ କର୍ତ୍ତୃକ ଆମନ୍ତ୍ରିତା ହୋଇ ଲେଖିକା ୧୯୦୨ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସରେ ଏଇ କୁଟୀରକୁ ଆସି କେତେଦିନ ଶାନ୍ତି ଲାଭ କରିଥିଲେ।"

**୧୯୦୩** – ସେପ୍ଟେମ୍ବର ମାସରେ ରାଧାନାଥଙ୍କର ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ ଓ ହୁଗୁଳୀ ତ୍ୟାଗ କରି କଟକକୁ ପ୍ରତ୍ୟାବର୍ତ୍ତନ। ତାଙ୍କୁ ସ୍ୱାଗତ କରି 'ଉତ୍କଳ-ସାହିତ୍ୟ'ରେ ରାଧାଚରଣ ଦାସ ଏକ କବିତା ପ୍ରକାଶ କରିଥିଲେ –

"ଫେରିଆସ ଉତ୍କଳକୁ ଉତ୍କଳ ଚନ୍ଦ୍ରମା
ବର୍ଷା ଅନ୍ତେ ଶାରଦୀୟ ନିଶାନାଥ ଯଥା,
ବରଷେ କୌମୁଦୀ-ସୁଧାଧାରା ମନୋରମା
ନବ ଉତ୍କଳ ଶ୍ରବଣେ କାବ୍ୟାମୃତ କଥା
ତବ ବିରହେ ସୁକବିକୁଳଚୂଡ଼ାମଣେ!
ଉତ୍କଳ ଭାରତୀ ଆଜି ମଳିନବଦନା,
ମଳିନବଦନା ଦୀନା ହୁଅଇ ଯେସନେ
ପ୍ରୋଷିତ-ନନ୍ଦନ-ସ୍ନେହମୟୀ କୁଳାଙ୍ଗନା।
ଉତ୍କଳ ନିସର୍ଗ-ବେଦୀ ପୁରୋଧା ପ୍ରଧାନ,
କେ ସୃଜିବ ତରୁଲତା ପ୍ରେମର ବନ୍ଧନ?
ଗିରିବନଠାବେ କିଏ ଡେରିବ ଶ୍ରବଣ
ଶୁଣିବାକୁ ପ୍ରେମମୟ ବିହଙ୍ଗମ ସ୍ୱନ?
ବାଣାପାଣି ଜନନୀର ସ୍ନେହାସ୍ପଦ ଧନ
ଅଟଇ ବଙ୍ଗକବିର ଧ୍ରୁବ ଏ ବଚନ।"
(ସପ୍ତମ ବର୍ଷ, ଷଷ୍ଠ ସଂଖ୍ୟା; ସେପ୍ଟେମ୍ବର ୧୯୦୩)

ରାଧାନାଥଙ୍କର ଅନ୍ୟତମ ପୃଷ୍ଠପୋଷକ ବାମଣ୍ଡାର ରାଜା ବାସୁଦେବ ସୁଢ଼ଳଦେବଙ୍କର ନଭେମ୍ବର ୨୯ ତାରିଖରେ ପରଲୋକ ଗମନ। ସୁଢ଼ଳଦେବଙ୍କର ବିୟୋଗ ରାଧାନାଥଙ୍କୁ ଘୋର ଦୁଃଖିତ କରିଥିଲା।

ଡିସେମ୍ବର ୨୯ ତାରିଖରେ 'ଉତ୍କଳ ସାହିତ୍ୟ ସମାଜ'ର ପ୍ରଥମ ବାର୍ଷିକ ଅଧିବେଶନ କଟକରେ ଅନୁଷ୍ଠିତ ହୋଇଥିଲା ଓ ଏହାର ସଭାପତି ଭାବରେ ରାଧାନାଥ ମନୋନୀତ ହୋଇଥିଲେ।

ଡିସେମ୍ବର ୩୦ ଓ ୩୧ ତାରିଖରେ ମଧୁସୂଦନ ଦାସଙ୍କ ପ୍ରଯତ୍ନରେ କଟକର ଇଦ୍‌ଗା ପଡ଼ିଆଠାରେ 'ଉତ୍କଳସମ୍ମିଳନୀ'ର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା। ଓଡ଼ିଆ ଜାତିର ଏହି ମହାସମ୍ମିଳନୀ ସହିତ ରାଧାନାଥ ବିଭିନ୍ନ ଭାବରେ ଓ ଭୂମିକାରେ ଜଡ଼ିତ ଥିଲେ। ରାଧାନାଥଙ୍କଦ୍ୱାରା ରଚିତ କେତେକ ଗଦ୍ୟ ବଡ଼ ବଡ଼ ଅକ୍ଷରରେ ଲେଖାହୋଇ ସମ୍ମିଳନୀ ମଣ୍ଡପରେ ଝୁଲା ଯାଇଥିଲା। ତାଙ୍କ ରଚିତ 'ଭାରତଗୀତିକା' ଉଦ୍‌ଯାପନୀ ସଂଗୀତ ରୂପରେ ସମ୍ମିଳନୀରେ ଗାନକରାଯାଇଥିଲା। ଏହା ବ୍ୟତୀତ ରାଧାନାଥ ପଞ୍ଚମ ପ୍ରସ୍ତାବ ଆଗତ କରିଥିଲେ ଓ କବି ମଧୁସୂଦନ ରାଓଙ୍କ ଦ୍ୱାରା ଏହା ସମର୍ଥିତ

ହୋଇଥିଲା । ଦୁଇଟି ଷ୍ଟାଣ୍ଡିଂ କମିଟୀର ମଧ୍ୟ ସେ ସଦସ୍ୟ ଥିଲେ ।

**୧୯୦୪** – ମୌଦାର ଜମିଦାର ଓ ପ୍ରତ୍ନତତ୍ତ୍ୱବିତ୍ ଆର୍ତ୍ତତ୍ରାଣ ମିଶ୍ରଙ୍କ ନିମନ୍ତ୍ରଣକ୍ରମେ ରାଧାନାଥ କିଛିଦିନ ମୌଦାରେ କଟାଇଥିଲେ । ସେଠାରେ ଦିଆଯାଇଥିବା ସମ୍ବର୍ଦ୍ଧନା ଓ ଆତିଥ୍ୟ ତାଙ୍କୁ ମୁଗ୍ଧ କରିଥିଲା । ସେ ସଂପର୍କରେ ରାଧାନାଥ ୨ । ୩ । ୧୯୦୪ତାରିଖରେ ଶଶିଭୂଷଣଙ୍କୁ ଲେଖିଥିଲେ – "My reception here [in Mauda] has been in a style far beyond my deserts or desire" ।

୨୬ । ୧୨ । ୧୯୦୪ତାରିଖରେ କଟକ ଟାଉନ ସ୍କୁଲ ଗୃହରେ 'ଉତ୍କଳସାହିତ୍ୟସମାଜ'ର ଦ୍ୱିତୀୟ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ରାଧାନାଥ ଏଥିରେ ଯୋଗଦେଇ ସଭାପତି ମନୋନୟନର ପ୍ରସ୍ତାବ ଆଣିଥିଲେ – "... ରାୟ ରାଧାନାଥ ରାୟ ବାହାଦୁରଙ୍କ ପ୍ରସ୍ତାବ ଓ ବାବୁ ନନ୍ଦକିଶୋର ବଳ ବି.ଏ.ଙ୍କ ଅନୁମୋଦନ ମତେ ମୟୂରଭଞ୍ଜ ମହାରାଜା ସଭାପତି ପଦରେ ବରିତହେଲେ ।" (ଉତ୍କଳ-ଦୀପିକା, ୩୯ । ୫୧; ୩୧ । ୧୨ । ୧୯୦୪)

**୧୯୦୫** – ଜାନୁଆରୀ ମାସରେ ନଗେନ୍ଦ୍ର-ବାଳାଙ୍କର କଟକ ପୁନଃ ଆଗମନ ଓ ରାଧାନାଥଙ୍କ ଗୃହରେ ଅବସ୍ଥାନ । ସଂପୃକ୍ତ କାଳରେ ସେ କବି ମଧୁସୂଦନଙ୍କ 'ବସନ୍ତଗାଥା' କବିତାସଂଗ୍ରହର ଅନୁବାଦ କାର୍ଯ୍ୟ ସଂପନ୍ନ କରି ଅନୂଦିତ ପୁସ୍ତକର ଭୂମିକା ରଚନା କରିଥିଲେ ।

ରାଧାନାଥ ଓ ମଧୁସୂଦନଙ୍କ ପ୍ରଚେଷ୍ଟା ଫଳରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କୁ 'ବାଣୀଭୂଷଣ' ଉପାଧି ପ୍ରଦାନ କରାଯାଇଥିଲା ।

ଜୁଲାଇ ୬ ତାରିଖରେ କଲିକତାର ରାଇଟର୍ସ ବିଲଡିଂରେ ଏକ ଶିକ୍ଷା ସମ୍ମିଳନୀ ଅନୁଷ୍ଠିତ ହୋଇ-ଥିଲା । କିଣ୍ଡରଗାର୍ଟେନ୍ ପ୍ରଥାରେ ଶିକ୍ଷାଦେବା କେତେଦୂର ସମୀଚୀନ– ଏହାର ଆଲୋଚନାଥିଲା ଉକ୍ତ ସମ୍ମିଳନୀର ଉଦ୍ଦେଶ୍ୟ । ଓଡ଼ିଶାରୁ ଆମନ୍ତ୍ରିତ ହୋଇ ରାଧାନାଥ ଏହି ସମ୍ମିଳନୀରେ ଯୋଗଦାନ କରି-ଥିଲେ ।

ମହେନ୍ଦ୍ରଗିରି ଦର୍ଶନ ଉଦ୍ଦେଶ୍ୟରେ ରାଧାନାଥ ବ୍ରହ୍ମପୁର ଓ ସେଠାରୁ ମଞ୍ଜୁଷାକୁ ଯାଇଥିଲେ । ମଞ୍ଜୁଷାର ତେଲେଙ୍ଗା ଦେୱାନ ଅକାରଣରେ ନିଜର ବୃତ୍ତିଚ୍ଛେଦ ଆଶଙ୍କା କରି ରାଧାନାଥଙ୍କ ମହେନ୍ଦ୍ରଗିରି ଦର୍ଶନରେ ସହଯୋଗ କଲେନାହିଁ । ତେଣୁ ରାଧାନାଥ ମହେନ୍ଦ୍ରଗିରି ଦୂରରୁ ଦେଖି ବ୍ରହ୍ମପୁର ଫେରିଆସିଥିଲେ । ନୀଳମଣି ବିଦ୍ୟାରତ୍ନ ଓ କବି ଚିନ୍ତାମଣି ମହାନ୍ତିଙ୍କ ସହଯୋଗ ଓ ଉଦ୍ୟମରେ ବ୍ରହ୍ମପୁରରେ ରାଧାନାଥଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦିଆଯାଇଥିଲା ।

**୧୯୦୬** – ଏପ୍ରିଲ ୧୩ ତାରିଖରେ ଅଜ୍ଞାତ କାରଣରୁ ନଗେନ୍ଦ୍ରବାଳା ନିଜର ହୁଗୁଳୀସ୍ଥିତ ଗୃହରେ ଆତ୍ମହତ୍ୟା କଲେ । ମୃତ୍ୟୁ ପୂର୍ବରୁ ଚିଠିପତ୍ର, ଅସଂପୂର୍ଣ୍ଣ ପାଣ୍ଡୁଲିପି ସମେତ ସମସ୍ତ କାଗଜପତ୍ର ସେ ପୋଡ଼ି-ଦେଇଥିଲେ । ଏହି ଘଟଣା ପରେ ରାଧାନାଥ ଗଭୀର ମାନସିକ ଯନ୍ତ୍ରଣାରେ ଅଧୀର ହୋଇଛନ୍ତି ଓ ଦୀର୍ଘ ଏକବର୍ଷରୁ ଅଧିକ କାଳ ଅସ୍ଥିର ଭାବରେ କଟାଇଛନ୍ତି ।

**୧୯୦୭** – ଜୁଲାଇ ୨୫ ତାରିଖରେ ରାଧାନାଥ ଏକ ସ୍ୱୀକାରୋକ୍ତି ପ୍ରକାଶ କରିଥିଲେ । ଏହି ସ୍ୱୀକାରୋକ୍ତିରେ ନାମୋଲ୍ଲେଖ ନ କରି ନଗେନ୍ଦ୍ରବାଳାଙ୍କ ସହ ସଂପର୍କରେ ଆସି ତାଙ୍କର କିପରି ଚରିତ୍ରସ୍ଖଳନ ଘଟିଛି, ତାହା ପ୍ରକାଶକରି ସର୍ବସାଧାରଣଙ୍କଠାରୁ କ୍ଷମା ନିବେଦନ କରିଥିଲେ । ଏହାପରେ ନିଜର ଦୋଷ ସ୍ୱୀକାର କରି ସେ ଲେଫ୍‌ଟାନାଣ୍ଟ-ଗଭର୍ଣ୍ଣରଙ୍କ ନିଟ [illegible] ମଧ୍ୟ ଏକ ପତ୍ର ଲେଖିଥିଲେ ।

[illegible] – ଜାନୁଆରୀ ୧୯ ତାରିଖରେ ଧବଳେ[illegible]ଠାରୁ ଓଡ଼ିଶାର ଭୀମକାନ୍ତ ଆରଣ୍ୟକ ସୌନ୍ଦର୍ଯ୍ୟ ଉପଭୋଗ କରିବାପାଇଁ ଓ ମାନସିକ ଗ୍ଲାନିକୁ ଭୁଲିଯିବାପାଇଁ ଶଶିଭୂଷଣଙ୍କ ସହ ରାଧାନାଥ ଯାତ୍ରା ଆରମ୍ଭ କରିଥିଲେ । ପ୍ରଥମେ ଢେଙ୍କାନାଳରେ ଚାରିଦିନ ଅବସ୍ଥାନ କଲାପରେ ସେ ତାଳଚେର ଗମନ କରିଥିଲେ । ତାଳଚେର ଗଡ଼ରେ ସେ ଦୀର୍ଘ ଦେଢ଼ମାସ ରହିଥିଲେ । ଏହି ତାଳଚେର ରହଣୀ କାଳରେ ତାଙ୍କ ସ୍ୱାସ୍ଥ୍ୟାବସ୍ଥାରେ ଉନ୍ନତି ପରିଲକ୍ଷିତ ହୋଇଥିଲା ।

ତାଳଚେରଠାରୁ ଶଶିଭୂଷଣଙ୍କ ସହ ପାଲଲହଡ଼ା ରାଜ୍ୟକୁ ସେ ଯାଇଥିଲେ ଓ ସେଠାରେ କିଛିକାଳ ଅବସ୍ଥାନ କରିଥିଲେ । ମାର୍ଚ୍ଚ ୨୪ ତାରିଖରେ ପାଲଲହଡ଼ା ରାଜସଭାରେ ତାଙ୍କୁ ସମ୍ବର୍ଦ୍ଧିତ କରା-ଯାଇଥିଲା । ରାଧାନାଥଙ୍କୁ ସ୍ୱାଗତ ଜଣାଇ ତିନୋଟି କବିତା ସେହି ସମ୍ବର୍ଦ୍ଧନା ସଭାରେ ପାଠ କରାଯାଇଥିଲା । ପାଲଲହଡ଼ାର ରାଜା ଗଣେଶ୍ୱର ପାଳ ରାଧାନାଥଙ୍କୁ ସ୍ୱା 'ତକରି ଏକ କ୍ଷୁଦ୍ର ଭାଷଣ ମଧ୍ୟ ପାଠ କରିଥିଲେ । ରାଧାନାଥ ଏହି ସମ୍ବର୍ଦ୍ଧନାର ଏକ ଲିଖିତ ପ୍ରତ୍ୟୁତ୍ତର ଦେଇଥିଲେ । ଏହି ପାଲଲହଡ଼ା ରହଣୀ କାଳରେ ସେ ମାଲ୍ୟଗିରି ପର୍ବତ

ପରିଦର୍ଶନ କରି ତାହାର ସୌନ୍ଦର୍ଯ୍ୟରେ ଆତ୍ମହରା ହୋଇଥିଲେ।

ଶଶିଭୂଷଣଙ୍କ ସହ ପାଳଲହଡ଼ାଠାରୁ ସେ ବାମଣ୍ଡା ରାଜ୍ୟକୁ ଯାଇଥିଲେ। ବାମଣ୍ଡାର ପୁରକୁଣ୍ଡଠାରେ ତିନି ଦିନ ଅବସ୍ଥାନ କଲାପରେ, ସେଠାରୁ ସେ ବାମଣ୍ଡାର ରାଜଧାନୀ ଦେବଗଡ଼ ଯାଇଥିଲେ। ବାମଣ୍ଡାର ରାଜା ଓ ସୁସାହିତ୍ୟିକ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ରାଧାନାଥଙ୍କୁ ଅତିଥି ରୂପରେ ପାଇ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ଓ ତାଙ୍କର ଭ୍ରମଣ ଓ ଅବସ୍ଥାନ ନେଇ ସୁବନ୍ଦୋବସ୍ତ କରିଥିଲେ। ରାଧାନାଥ ଦେବଗଡ଼ରୁ ଫେରି କଟକରେ ଏପ୍ରିଲ ୭ ତାରିଖରେ ପହଞ୍ଚିଥିଲେ।

ବାମଣ୍ଡାରୁ ଫେରିବାର ଦଶଦିନପରେ ସାମାନ୍ୟ ଅସୁସ୍ଥତା ଭୋଗକରି ୧୭।୪।୧୯୦୮ ତାରିଖ ଚୈତ୍ର ପୂର୍ଣ୍ଣିମା ରାତ୍ରୀରେ ରାଧାନାଥଙ୍କର ମହାପ୍ରୟାଣ।

□ □ □

# ରାଧାନାଥଙ୍କ ରଚନାବଳୀ : ପରିଚୟ ଓ କାଳାନୁକ୍ରମିକ ପଞ୍ଜିକା

୧୯୦୨ ମସିହାରେ 'ରାଧାନାଥ- ଗ୍ରନ୍ଥାବଳୀ'ର ଯେଉଁ ପ୍ରଥମ ସଂସ୍କରଣ ପ୍ରକାଶିତ ହୋଇଥିଲା, ସେଥିରେ ରାଧାନାଥଙ୍କର ସମସ୍ତ ରଚନା ତ ସ୍ଥାନିତ ହୋଇନଥିଲା – ସ୍ଥାନିତ ରଚନାଗୁଡ଼ିକ ମଧ୍ୟ କାଳାନୁକ୍ରମିକ ରୀତି ସଜ୍ଜିତ ହୋଇନଥିଲା। ପ୍ରଥମ ସଂସ୍କରଣର ଅନ୍ତର୍ଭୁକ୍ତ ପଣ୍ଡିତ ଆର୍ତ୍ତତ୍ରାଣ ଶତପଥୀଙ୍କ 'ରାୟ ରାଧାନାଥ ରାୟ ବାହାଦୁରଙ୍କର ସଂକ୍ଷିପ୍ତ ଜୀବନଚରିତ'ରେ ତାଙ୍କ ରଚନାର କାଳକ୍ରମ ସମ୍ପର୍କରେ କେବଳ କୁହାଯାଇଥିଲା – "ରାଧାନାଥଙ୍କର ପ୍ରଧାନ ପ୍ରଧାନ ଉତ୍କଳ କବିତା ରଚନାର ସାମୟିକ କ୍ରମ ନିମ୍ନରେ ପ୍ରଦତ୍ତ ହେଲା; (୧) ମେଘଦୂତ, (୨) କବିତାବଳୀ, (୩) କେଦାରଗୌରୀ, (୪) ଚନ୍ଦ୍ରଭାଗା, (୫) ନନ୍ଦିକେଶ୍ୱରୀ, (୬) ଉଷା, (୭) ପାର୍ବତୀ, (ଅପୂର୍ଣ୍ଣ), (୮) ଚିଲିକା, (୯) ମହାଯାତ୍ରା, (ଅପୂର୍ଣ୍ଣ), (୧୦) ଯଯାତି-କେଶରୀ, (୧୧) ତୁଳସୀସ୍ତବକ, (୧୨) ଉର୍ବଶୀ, (ଅପୂର୍ଣ୍ଣ), (୧୩) ଦରବାର, (୧୪) ଦଶରଥ-ବିୟୋଗ। ଏହା ବ୍ୟତୀତ କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର କବିତା ମଧ୍ୟ ସମୟ ସମୟରେ ରଚିତ। ସେମାନଙ୍କ ମଧ୍ୟରୁ କେତେଗୁଡ଼ିଏ ନଷ୍ଟହୋଇଯାଇଛି। ଅବଶିଷ୍ଟ ଏହି ପୁସ୍ତକର ଅନ୍ତର୍ନିବିଷ୍ଟ ହୋଇଅଛି"। ବସ୍ତୁତଃ ଏହି କାଳକ୍ରମକୁ ସ୍ୱୀକାର ତଥା ଅନୁସରଣ କରି 'ରାଧାନାଥ ଗ୍ରନ୍ଥାବଳୀ'ର ଦ୍ୱିତୀୟ ଓ ସମସ୍ତ ସଂସ୍କରଣରେ ରଚନାଗୁଡ଼ିକ ସଜ୍ଜିତ।

କିନ୍ତୁ ପଣ୍ଡିତ ଆର୍ତ୍ତତ୍ରାଣଙ୍କ ପ୍ରଦତ୍ତ ତଥ୍ୟ ସମ୍ପୂର୍ଣ୍ଣ ନିର୍ଭୁଲ ଓ ସମସ୍ୟାହୀନ ନୁହେଁ। ପୁଣି ଏହି ତାଲିକାରେ ରାଧାନାଥଙ୍କର ବଂଗଳା ରଚନାବଳୀ, ବିକ୍ଷିପ୍ତ ରଚନାବଳୀ ଓ ଗଦ୍ୟରଚନାବଳୀର ପ୍ରସଙ୍ଗ ହିଁ ନାହିଁ। ଜଣେ କବିଙ୍କ ରଚନାବଳୀର କାଳକ୍ରମ ନ ଜାଣିଲେ ତାଙ୍କ କବିତ୍ୱର ବିକାଶଧାରା ଅଧ୍ୟୟନ କରିବା ଯେପରି ଅସମ୍ଭବ, ସେହିପରି କାଳାନୁକ୍ରମିକ ତାଲିକାର ଅଭାବରେ କୌଣସି କବିଙ୍କ ସମ୍ପର୍କରେ ବିଧିବଦ୍ଧ ଐତିହାସିକ-ଆଲୋଚନା ମଧ୍ୟ ଅସମ୍ଭବ। କିନ୍ତୁ ଦୁଃଖର ବିଷୟ ଐତିହାସିକ-ଜ୍ଞାନ ପ୍ରତି ଅନାଗ୍ରହ ହେତୁ ରାଧାନାଥଙ୍କ ରଚନାବଳୀର କାଳାନୁକ୍ରମିକ ତାଲିକା ବହୁଦିନପର୍ଯ୍ୟନ୍ତ ପ୍ରସ୍ତୁତ ହୋଇନଥିଲା। 'ରାଧାନାଥ ଜୀବନୀ'ରେ ବହୁ ଅନାବଶ୍ୟକ/ ଅବାନ୍ତର/ଅସତ୍ୟ ତଥ୍ୟର ଅବତାରଣା ପାଇଁ ସ୍ଥାନର ଅଭାବ ନ ଥିଲାବେଳେ ତାଙ୍କ ରଚନାଗୁଡ଼ିକ କେବେ, କାହାଦ୍ୱାରା ଓ କେଉଁଠାରୁ ପ୍ରଥମେ ପ୍ରକାଶିତ ହୋଇଥିଲା, ସେ ସମ୍ପର୍କରେ ପ୍ରାୟତଃ କୌଣସି ଉଲ୍ଲେଖ ନାହିଁ। ପରବର୍ତ୍ତୀ ଗବେଷକ/ ଆଲୋଚକମାନେ କେହି ଏ ବିଷୟ ପ୍ରତି ଦୃଷ୍ଟି ଦେଇନଥିଲେ। ଏଭଳି ଅବସ୍ଥାରେ ଡକ୍ଟର ନଟବର ସାମନ୍ତରାୟ "ରାଧାନାଥଙ୍କ ରଚନାବଳୀ ଓ ସେମାନଙ୍କ ପ୍ରକାଶ ସମୟ ନିର୍ଣ୍ଣୟ" [ଡଗର; ଜାନୁୟାରୀ, ୧୯୬୧ ସଂଖ୍ୟା (ରାଧାନାଥ ବିଶେଷାଙ୍କ)] ପ୍ରକାଶ କରି ପରବର୍ତ୍ତୀ ଗବେଷକ/ ସମାଲୋଚକମାନଙ୍କ ପାଇଁ ପଥ ପ୍ରସ୍ତୁତ କରିଛନ୍ତି। ଏହି ଆଲୋଚନାକୁ ଆଶ୍ରୟ କରି ସ୍ୱର୍ଗତ ଡକ୍ଟର କ୍ଷେତ୍ରବାସୀ ନାୟକ ତାଙ୍କ ସମ୍ପାଦିତ 'ରାଧାନାଥ ଗ୍ରନ୍ଥାବଳୀ'ର ଅନେକ ରଚନା ପଛରେ ତା'ର ପ୍ରଥମ ପ୍ରକାଶନକାଳର ସୂଚନା ଦେଇଥିଲେ। ରାଧାନାଥଙ୍କ ରଚନାବଳୀର କାଳାନୁକ୍ରମ ସମ୍ପର୍କରେ ଡକ୍ଟର ସାମନ୍ତରାୟଙ୍କ ମତାମତ ଏପର୍ଯ୍ୟନ୍ତ ପ୍ରାମାଣିକ ଓ ନିର୍ଭରଯୋଗ୍ୟ ହୋଇ ରହିଛି।

ଡକ୍ଟର ସାମନ୍ତରାୟଙ୍କ ସମସ୍ତ ଉଦ୍ୟମ ସତ୍ତ୍ୱେ ତାଙ୍କ ପ୍ରଦତ୍ତ ଗ୍ରନ୍ଥପଞ୍ଜି ସର୍ବଶେଷ ନୁହେଁ – ସେଥିରେ ସଂଯୋଜନ, ସଂଶୋଧନ ଓ ପରିମାର୍ଜନର ଯଥେଷ୍ଟ ଅବସର ରହିଛି ଓ ରହିବା ସ୍ୱାଭାବିକ ମଧ୍ୟ। ନୂତନ ଆବିଷ୍କାର ଫଳରେ ସେହି ତାଲିକାରେ ଏବେ କିଛି ସଂଯୋଜନାର ସୁଯୋଗ ଆସିଛି। ତେଣୁ ମୁଖ୍ୟତଃ ଡକ୍ଟର ସାମନ୍ତରାୟଙ୍କ ପ୍ରବନ୍ଧକୁ ଆଧାର କରିଥିଲେ ବି ଅଳ୍ପ କେତେକ ନୂତନ ରଚନାର ଉଲ୍ଲେଖ ଓ କେତେକ ରଚନାବଳୀର ଅସ୍ପଷ୍ଟ କାଳନିର୍ଣ୍ଣୟକୁ ଏଥିରେ ସ୍ପଷ୍ଟ କରାଯାଇଛି।

ଡକ୍ଟର ସାମନ୍ତରାୟ ରାଧାନାଥଙ୍କ ରଚନାବଳୀକୁ ଛଅଟି ପର୍ଯ୍ୟାୟରେ ବିଭକ୍ତ କରିଛନ୍ତି। ଏଠାରେ ସେହି ପର୍ଯ୍ୟାୟ-ବିଭାଗୀକରଣକୁ ଗ୍ରହଣ କରାଯାଇ

ନାହିଁ। ଦ୍ୱିତୀୟତଃ ଯେଉଁ ସବୁ ରଚନା 'ରାଧାନାଥ ଗ୍ରନ୍ଥାବଳୀ'ର ଅନ୍ତର୍ଭୁକ୍ତ ନୁହେଁ, ତାହାର ସଂକ୍ଷିପ୍ତ ପରିଚୟ ଏଠାରେ ପ୍ରଦତ୍ତ। ତୃତୀୟତଃ ଆବଶ୍ୟକସ୍ଥଳେ କେତେକ ରଚନାର ପାଠାନ୍ତରର ସୂଚନା ମଧ୍ୟ ଦିଆଯାଇଛି। ଚତୁର୍ଥରେ ଆବଶ୍ୟକସ୍ଥଳେ କେତେକ ରଚନା ସମ୍ପର୍କରେ ସମକାଳୀନ ପ୍ରତିକ୍ରିୟା ଯାହା ଥିଲା, ତାହା ଉଦ୍ଧାର କରାଯାଇଛି।

ରାଧାନାଥ ରଚନାବଳୀର ଏକ ନିର୍ଭରଯୋଗ୍ୟ ତାଲିକାର ଅଭାବ ହେତୁ ୧୯୬୧ ମସିହା ପର୍ଯ୍ୟନ୍ତ ରାଧାନାଥଙ୍କ ଉପରେ ଯେଉଁମାନେ ଆଲୋଚନା କରିଛନ୍ତି, ସେମାନେ ଅନୁମାନ ଉପରେ ନିର୍ଭର କରି ଅନେକ ମତାମତ ଦେଇଛନ୍ତି। ଅନୁମାନ-ନିର୍ଭର ସେହି ସମସ୍ତ ମନ୍ତବ୍ୟ ପରବର୍ତ୍ତୀ କାଳରେ ତଥ୍ୟ ରୂପରେ ଗୃହୀତ ହୋଇ ରାଧାନାଥ-ସାହିତ୍ୟର ବୈଜ୍ଞାନିକ ଅନୁଶୀଳନରେ ବିଘ୍ନ ସୃଷ୍ଟି କରିଛି। ତଥ୍ୟ-ବିଚ୍ୟୁତ, ଅନୁମାନ-ନିର୍ଭର ମନ୍ତବ୍ୟ ପରବର୍ତ୍ତୀ-କାଳରେ କିଭଳି ବିଚାର-ବିଭ୍ରାଟ ସୃଷ୍ଟି କରିଛି, ତାହାର କେତୋଟି ଦୃଷ୍ଟାନ୍ତ ଉପସ୍ଥାପନ କରାଯାଇପାରେ। ରାଧାନାଥ ଗଙ୍ଗାଧରଙ୍କୁ ଗୋଟିଏ ଚିଠିରେ ଲେଖି-ଥିଲେ– ''ମୋହୋର ସମସ୍ତ ବଙ୍ଗଳା ରଚନା ସ୍ୱତନ୍ତ୍ର ପୁସ୍ତକାକାରରେ ପ୍ରଚାରିତ ହୋଇନାହିଁ। କେବଳ ୨ ଖଣ୍ଡି କବିତାବଳୀ ପ୍ରକାଶିତ ହୋଇଥିଲା। ଭୂଦେବ ବାବୁ ଏଡୁକେଶନ ଗେଜେଟରେ କେତେଗୁଡ଼ିଏ କବିତା ଛପାଇଥିଲେ। 'ନବ୍ୟଭାରତ'ରେ ମଧ୍ୟ କେତେକ ପ୍ରକାଶିତ ହୋଇଥିଲା''। (୧୫।୯।୧୮୯୮ର ପତ୍ର) ଏଡୁକେଶନ ଗେଜେଟ୍‌ରେ ନିଜର କେତୋଟି କବିତା ପ୍ରକାଶିତ ହୋଇଥିଲା ରାଧାନାଥ ତାହା ସ୍ପଷ୍ଟଭାବେ କହିନାହାନ୍ତି– ଯଦିଓ ଏଡୁକେଶନ ଗେଜେଟ୍‌ରେ ତାଙ୍କର ମାତ୍ର ପାଞ୍ଚଟି କବିତା ୧୮୭୯ ମସିହାରୁ ୧୮୮୧ ମସିହା ମଧ୍ୟରେ ପ୍ରକାଶିତ ହୋଇଥିଲା। ପରବର୍ତ୍ତୀ କାଳରେ ସେହି ସମସ୍ତ କବିତା 'ଲେଖାବଳୀ'ର ଅନ୍ତର୍ଭୁକ୍ତ ହୋଇଛି। ଠିକ୍ ସେହିଭଳି ତାଙ୍କର 'ନବ୍ୟଭାରତ'ରେ କୌଣସି କବିତା ପ୍ରକାଶିତ ହୋଇନଥିବାବେଳେ ସ୍ମୃତି-ବିଭ୍ରମ ହେତୁ ରାଧାନାଥ ଏହା କହିଛନ୍ତି, ନା ପରବର୍ତ୍ତୀ କାଳର ଅନୁଲେଖନକାରମାନେ ଏହି ଅପତଥ୍ୟର ସ୍ରଷ୍ଟା, ତାହା ଆଜି ଜାଣିବା ଅସମ୍ଭବ। କିନ୍ତୁ ଏହି ପତ୍ର ଉପରେ ନିର୍ଭର କରି ଡକ୍ଟର କ୍ଷେତ୍ରବାସୀ ନାୟକ ଲେଖିଛନ୍ତି– ''କବିଙ୍କୁ ଯେତେବେଳେ ବୟସ ଅଠର, ସେତେବେଳେ ସେ କବି-କୃତିର ପରିଚୟ ଦିଅନ୍ତି ବଙ୍ଗଳା ଭାଷାରେ ପ୍ରଥମ କବିତାଗ୍ରନ୍ଥ– କବିତାବଳୀ ପ୍ରଥମଭାଗ– ପ୍ରକାଶ କରି (୧୮୬୮)। ଅବଶ୍ୟ ଏଥିପୂର୍ବରୁ ତାଙ୍କ ଲିଖିତ କବିତାରୁ କିଛି ବଙ୍ଗଳା ପତ୍ରିକା 'ନବ୍ୟଭାରତ'ରେ ସ୍ଥାନ ପାଇଥିଲା''। (କବିଚରିତ– ରାଧାନାଥ, ପୃ.୧୨) ଏଠାରେ ସୂଚନାଯୋଗ୍ୟ ଯେ, ୧୮୬୮ ବେଳକୁ 'ନବ୍ୟଭାରତ' ମାସିକପତ୍ରର ପ୍ରକାଶନ ଆରମ୍ଭ ମଧ୍ୟ ହୋଇନଥିଲା। ('ନବ୍ୟଭାରତ' ୧୮୮୩ ମସିହା ଏପ୍ରିଲ ମାସରେ ପ୍ରଥମେ ପ୍ରକାଶିତ ହୁଏ।) ନଟବରବାବୁ ତାଙ୍କର ତାଲିକାଟିକୁ କିଛିଟା ବର୍ଣ୍ଣନାତ୍ମକ କରିଥିଲେ କ୍ଷେତ୍ରବାସୀବାବୁଙ୍କ ଭଳି ପରୋକ୍ଷ ତଥ୍ୟ-ସୂତ୍ର ଉପରେ ନିର୍ଭର କରୁଥିବା ସାହିତ୍ୟ-ସମାଲୋଚକମାନେ ବିଭ୍ରାନ୍ତ ହେଉନଥାନ୍ତେ। ରାଧାନାଥଙ୍କ ରଚନାବଳୀର ପ୍ରାଥମିକ ସଂସ୍କରଣଗୁଡ଼ିକୁ ଦେଖି ନଥିବା ହେତୁ ଏଭଳି ଯେତେ ବିଭ୍ରାନ୍ତିମୂଳକ ତଥ୍ୟ/ମତାମତ ସେଗୁଡ଼ିକୁ ଯେବେ ସଂକଳନ କରାଯାଏ, ତେବେ ତାହା ଏକ ସ୍ୱତନ୍ତ୍ର ପୁସ୍ତକ ହେବ। ସେଇଥିପାଇଁ ରଚନାବଳୀର ପରିଚୟକୁ ସ୍ପଷ୍ଟ, ବର୍ଣ୍ଣନାତ୍ମକ କରିବାପାଇଁ ଚେଷ୍ଟା କରାଯାଇଛି। ଯେଉଁଠାରେ ମୌଳିକ ପୁସ୍ତକ ଦେଖିବାର ସୁଯୋଗ ଏ ଆଲୋଚକଙ୍କୁ ମିଳିନାହିଁ, ସେଠାରେ ଯେଉଁ ବିବରଣୀ ଉପରେ ଆଶ୍ରୟ କରି ସମୟ-ନିର୍ଦ୍ଦେଶ କରାଯାଇଛି, ତାହା ସୂଚିତ ହୋଇଛି।

## ପ୍ରଥମ ପର୍ଯ୍ୟାୟ (୧୮୬୮-୮୧)

(୧) କବିତାବଳୀ (ବଙ୍ଗଳା) (୧୮୬୮)। ପୁସ୍ତକରେ ପ୍ରକାଶ ସମୟ ଦିଆଯାଇଛି– ସମ୍ବତ୍ ୧୯୨୪ (୧୮୬୬-୬୭ ମସିହା)। 'ପ୍ରକାଶକେର ବିଜ୍ଞାପନ'ରେ ଥିବା ତାରିଖ ହେଲା ୧୮ ପୌଷ ୧୭୮୯ ଶକାବ୍ଦ। ସେଇ ଅନୁସାରେ ଏହାର ପ୍ରକାଶ ସମୟ ଡିସେମ୍ବର ୧୮୬୭ ବା ତାହାର କିଞ୍ଚିତ୍ ପରେ। ତେଣୁ ପୁସ୍ତକଟି ୧୮୬୮ ମସିହାରେ ହିଁ ପ୍ରକାଶିତ। କଲିକତାର ନୂତନ ସଂସ୍କୃତ ଯନ୍ତ୍ରରେ ଏହା ଶ୍ରୀ ହରିମୋହନ ମୁଖୋପାଧ୍ୟାୟଙ୍କ ଦ୍ୱାରା ମୁଦ୍ରିତ ଓ ଶ୍ରୀ ଦାମୋଦର ପ୍ରସାଦ ଦାସଙ୍କ ଦ୍ୱାରା ପ୍ରକାଶିତ। 'ପ୍ରକାଶକେର ବିଜ୍ଞାପନ'ରେ କାହିଁକି ଏହି କବିତାବଳୀ ପ୍ରକାଶିତ ହେଲା, ତାହାର ସ୍ପଷ୍ଟୀକରଣ ଦିଆଯାଇଛି– ''ଆମାର ପ୍ରିୟତମ ବନ୍ଧୁ ଗ୍ରନ୍ଥକାର ଏଇ ପୁସ୍ତକେର ପାଣ୍ଡୁଲିପିଖାନି ଆମାକେ ଉପହାର ଦେନ୍। ଏହା ମୁଦ୍ରିତ କରିୟା ପ୍ରକାଶ କରିବାର

ଉଦ୍ଦେଶ୍ୟେ ତିନି ଆମାକେ ଇହା ଦାନ କରେନ୍ ନାଇ। ପ୍ରତ୍ୟୁତ ଆମି ଇହା ପ୍ରକାଶ କରିବ ଏଇ କଥା ଶୁନିୟା ତିନି ବିରକ୍ତିର ପ୍ରକାଶ କରେନ୍, କାରନ ତାଁହାର ଧ୍ରୁବପ୍ରତ୍ୟୟ ଆଛେ ଯେ ଦିନ୍ ଦିନ୍ ବଙ୍ଗଭାଷାର୍ ଯେ ରୂପ ଉନତି ଲକ୍ଷିତ ହଇତେଛେ ଓ ମହା ମହା ବିଦ୍ୱାନ୍‌ଗଣ୍ ଯଖନ୍ ଗ୍ରନ୍ଥପ୍ରଣୟନେ ପ୍ରବୃତ୍ତ ହେଇଆଛେନ୍ ତେନ୍ ତାଁହାର ନ୍ୟାୟ ଅଳ୍ପ ବୟସ୍କ ଯୁବକେର ପ୍ରଣୀତ ଗ୍ରନ୍ଥ ଜନସମାଜେ ଅଗ୍ରାହ୍ୟ ଭିନ୍ନ କଖନର ଗ୍ରହଣୀୟ ହଇତେ ପାରେନା।

"ପ୍ରଥମତଃ, ଏଇ ପୁସ୍ତକଖାନି ପ୍ରକାଶ କରିତେ ଆମାର ଓ ଅଭିପ୍ରାୟ ଛିଲୋନା, କିନ୍ତୁ କୟେକଜଣ ବନ୍ଧୁର ପ୍ରବର୍ତ୍ତନା ପରତନ୍ତ୍ର ଲଇୟା ପ୍ରକାଶ କରିତେ ବାଧହଇଲାମ। ଏଇ ପୁସ୍ତକ-ସନ୍ନିବେଶିତ କବିତାଗୁଲି ଯେ ପାଠକ ମହାଶୟଗଣେର ହୃଦୟଗ୍ରାହିଣୀ ହଇବେ ସ୍ୱପ୍ନେଓ ଏ ପ୍ରକାର ଆଶା କରାଯାଇତେପାରେନା। କାରଣ ଗ୍ରନ୍ଥକାରେର ଏଇ ଗ୍ରନ୍ଥଖଖାନି ପ୍ରଥମ ଅଧ୍ୟବସାୟ-ସ୍ୱରୂପ ବୃକ୍ଷେର ପ୍ରସୂନ ମାତ୍ର। ଇତଃ ପୂର୍ବେ ତିନି ଏକଟି ମାତ୍ରଓ କବିତା ଲିଖେନ୍ ନାଇ। ସୁତରାଂ ଅନଭ୍ୟସ୍ତ ଲୋକେର କୋନ୍ କାର୍ଯ୍ୟର ଯେ ସର୍ବାଙ୍ଗୀନ ସୁଚାରୁ ହୟନା ଏକଥା ବଲାଇ ବାହୁଲ୍ୟ।"

ଏଇ ସଂକଳନରେ ଏକାବନଟି ଚତୁର୍ଦ୍ଦଶପଦୀ କବିତା ରହିଛି। କବିତାଗୁଡ଼ିକର ଶୀର୍ଷକ ହେଲା – ବାଗ୍‌ଦେବୀ, କଳ୍ପନାଦେବୀ, କବିବର ମଧୁସୂଦନ ଦତ୍ତ, କୁଶ, ପର୍ବତ, ନଳ, ସୀତା, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ହିରଣ୍ମୟୀ ସୀତାର ପ୍ରତି ରାମ, ଶାରଦୀୟ ନୈଶ ଗଗନ, କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ ଦାସ, କବିବର ଭାରତଚନ୍ଦ୍ର, କବିବର ରଙ୍ଗଲାଲ ବନ୍ଦୋପାଧ୍ୟାୟ, ଅଭିମନ୍ୟୁ କବି, ଶେଷଶାୟୀ ବିଷ୍ଣୁ, କାର୍ତ୍ତିକ ପୂଜା, ବିଜୟ, ଇନ୍ଦ୍ରେର ପ୍ରତି ମଦନେର ଉକ୍ତି, ବସନ୍ତ, ରୂପବତୀ କୁଲଟା, ହରିଣ, କୋନ ଧନବାନେର ପ୍ରତି, ସମୁଦ୍ରତଟେ ପୌର୍ଣ୍ଣମାସୀ ରଜନୀ, କୋନ ବନ ମଧ୍ୟେ, ସ୍ୱାଧୀନତା, ନବମେଘ, ଗୌରୀଶଙ୍କର, ଚନ୍ଦ୍ରହଂସ, ନିଦାଘ, ଲମ୍ପଟ, ଗୌରୀ ପ୍ରତି ଶିବ, ବର୍ଷାସମୟ, ଜନନୀର ଅକାଲେ ପ୍ରାଣତ୍ୟାଗ, ଚାଁଦିପୁରେ ସୂର୍ଯ୍ୟାସ୍ତ ସମୟେ, ସମୁଦ୍ର, ରତିବିଲାପ, ବନେର ମାଳତୀ, ବିପନ୍ନ ସାଧୁ, ଦର୍ପଣହସ୍ତ ଯୁବକ, ଜନ୍ମଭୂମି, ପଦ୍ମ ସରୋବର ସମୀପସ୍ଥ ସ୍ଥଳପଦ୍ମେର ପ୍ରତି, ନଦୀ, ସଂସ୍କୃତ କବିତା, ନବପରିଣିତା ଲଲନା, ଶରତ ରଜନୀ, ଏକାଧାରେ ସବ ଗୁଣ ନାଇ।"

ଏହି ପୁସ୍ତକର ପ୍ରଶଂସାମୂଳକ ଆଲୋଚନା ଅମୃତବଜାର ପତ୍ରିକା ଆଦି ବଙ୍ଗଳା ସମ୍ବାଦପତ୍ରରେ ହୋଇଥିବା କଥା ଦୁର୍ଗାଚରଣ ରାୟଙ୍କ 'ରାଧାନାଥ ଜୀବନୀ'ରେ ଉଲ୍ଲିଖିତ। "ଏହି ବଙ୍ଗଳା କବିତାବଳୀ ସେତେବେଳେ ବଙ୍ଗଦେଶର ସମ୍ବାଦପତ୍ରସମୂହରେ ବିଶେଷଭାବରେ ପ୍ରଶଂସିତ ହୋଇଥିଲା। କୌଣସି କୌଣସି କବିତା ବଙ୍ଗ କବିପ୍ରବର ମାଇକେଲ୍ ମଧୁସୂଦନଙ୍କ କବିତାଠାରୁ ଉତ୍କୃଷ୍ଟ, ଏଭଳି ମନ୍ତବ୍ୟ ମଧ୍ୟ ଅମୃତବଜାର ପତ୍ରିକା ପ୍ରଭୃତି ଦେଇଥିଲେ।" (ପୃ.୬୨) କିନ୍ତୁ ଜୀବନୀକାରଙ୍କ ଏହି ମତ ଅମୃତବଜାର ପତ୍ରିକାର ୧୮୬୭-୭୦ ମସିହା ମଧ୍ୟରେ ପ୍ରକାଶିତ ସଂଖ୍ୟାରୁ ପ୍ରତିଷ୍ଠିତ ହୋଇପାରେ ନାହିଁ।

(୨) ମେଘଦୂତ (୧୮୭୦-୭୧/୭୩) ଏହା ପ୍ରଥମେ ବାଲେଶ୍ୱରରୁ ପ୍ରକାଶିତ ବୋଧୋଦାୟିନୀରେ କ୍ରମାନ୍ୱୟରେ ମୁଦ୍ରିତ ହେଉଥିଲା। ପରେ ୧୮୭୩ ମସିହା ଜୁଲାଇ ମାସରେ ବାଲେଶ୍ୱରରୁ ପ୍ରକାଶିତ 'ଉତ୍କଳ ଦର୍ପଣ' ମାସିକ ସାହିତ୍ୟପତ୍ରରେ ପୂର୍ଣ୍ଣତଃ ପ୍ରକାଶିତ। ୧୮୭୩ ମସିହାର ଡିସେମ୍ବର ମାସରେ ପୁସ୍ତକରୂପେ ପ୍ରକାଶିତ ପ୍ରଥମ ସଂସ୍କରଣ 'ମେଘଦୂତ'ରେ ରାଧାନାଥ ଏକ ମୂଲ୍ୟବାନ ଭୂମିକା ଲେଖିଥିଲେ, ଯାହା ପରବର୍ତ୍ତୀ ସଂସ୍କରଣରେ ପରିତ୍ୟକ୍ତ ହୋଇଛି। ଏହି ଭୂମିକାର ସମୟ ୧୬।୧୨।୧୮୭୩ତାରିଖ। ଏହା ବୈକୁଣ୍ଠନାଥ ଦେଙ୍କ ଉତ୍କଳ ପ୍ରିଣ୍ଟିଂ ପ୍ରେସ୍‌ରେ ମୁଦ୍ରିତ ଓ ପ୍ରକାଶିତ।

(୩) କବିତାବଳୀ-ଦ୍ୱିତୀୟ ଖଣ୍ଡ (୧୨୮୦ ସାଲ ଅର୍ଥାତ୍ ୧୮୭୩ ମସିହା) – ଏହା ବୈକୁଣ୍ଠନାଥ ଦେଙ୍କ ଦ୍ୱାରା ପ୍ରକାଶିତ ଓ ଈଶ୍ୱରଚନ୍ଦ୍ର ବସୁଙ୍କ ଦ୍ୱାରା କଲିକତାର 'ଷ୍ଟାନହୋପ୍ ଯନ୍ତ୍ର'ରେ ମୁଦ୍ରିତ। ଏଥିରେ ବୈକୁଣ୍ଠନାଥ ଦେଙ୍କ ଦ୍ୱାରା ଲିଖିତ ଏକ ବିଜ୍ଞାପନ ସଂଯୋଜିତ (ବିଜ୍ଞାପନର ତାରିଖ ୨୦, ଆଷାଢ଼, ୧୭୭୯ ସାଲ, ଅର୍ଥାତ୍ ଜୁନ୍, ୧୮୭୨)। ଏହି ବିଜ୍ଞାପନରେ କୁହାଯାଇଛି – "ଗ୍ରନ୍ଥକାର ଆମାର ଏକଜନ ପ୍ରିୟ ସୁହୃତ୍। ଉତ୍କଳବାସୀର ବଙ୍ଗଭାଷାୟ ପୁସ୍ତକ ଲିଖିତେ ପ୍ରୟାସକରା ଯେମନ ଉପହସନୀୟ, ତାହା ଜନସମାଜେ ପ୍ରଚାରିତ କରାଓ ତଦନୁରୂପ ଉପହସନୀୟ। ତବେ ସୁହୃଦେର ରଚନା ମନ୍ଦ ହଇଲେଓ ଭାଲଲାଗେ। ପରନ୍ତୁ ଆମାର ବିଲକ୍ଷଣ ଭରସା ହଇତେଛେ ଯେ, ଉଦାର ବଙ୍ଗୀୟ ପାଠକବୃନ୍ଦ, ଅନ୍ତତଃ ଲେଖକର ଉତ୍ସାହେର ଜନ୍ୟ, ଏଇ ପଦ୍ୟ

ଗ୍ରନ୍ଥଖାନି ଜନୈକ ଉତ୍କଳୀୟେର ରଚନା ମନେ କରିୟା ପାଠକରିବେନ।

ଗ୍ରନ୍ଥକାର ପ୍ରାୟ ୪/୫ ବତ୍ସର ପୂର୍ବେ ଏଇ ପୁସ୍ତକେର ଅଧିକାଂଶ ଲିଖିୟା ରାଖିୟାଛିଲେନ୍। ଇହା ଯେ ଜନସମାଜେ ପ୍ରକାଶିତ ହୋଇବ, ତଖନ ତାଁହାର ଏ ରୂପ ଭରସା ଛିଲନା। ଏକ୍ଷଣେ ଆମାର ପ୍ରବର୍ତ୍ତନାୟ, ଆର କଏକଟୀ କବିତା ଲିଖିୟା ପୁସ୍ତକଖାନି ଆମାର ହସ୍ତେ ସମର୍ପଣ କରେନ୍। ଶେଷେର କଏକଟୀ କବିତା ଲିଖିବାର ସମୟ ଇନି ସାଂଘାତିକ ଉରୋବନ୍ଧ ରୋଗେ ଆକ୍ରାନ୍ତ ଛିଲେନ୍। ଯଥାର୍ଥ ବଲିତେ କି, ଇହାକେ ମୁଦ୍ରିତ ଦେଖିବେନ, ତଖନ ତାଁହାର ଏମନ ଆଶା ଛିଲନା। ଶେଷେର କବିତାଗୁଲିତେ ତାହାଁର ତାତ୍‌କାଳିକ ମାନସିକ ଭାବ ବିମ୍ବିତ ହଇୟାଛେ।''

ଏଥିରେ ସର୍ବମୋଟ ଅଛି ଅଣଚାଶଟି କବିତା। ଶେଷ ପାଞ୍ଚଟି ଦୀର୍ଘ କବିତାଟି ଛାଡ଼ିଦେଲେ ଅବଶିଷ୍ଟ ଚଉରାଳିଶଟି କବିତାରୁ ଏକଚାଳିଶଟି ଚତୁର୍ଦ୍ଦଶ ପଦୀ, ଗୋଟିଏ ପନ୍ଦର ପଙ୍‌କ୍ତି ଓ ଅବଶିଷ୍ଟ ଦୁଇଟି ଷୋଳ ପଙ୍‌କ୍ତି ବିଶିଷ୍ଟ। କବିତାଗୁଡ଼ିକର ଶୀର୍ଷକ ହେଲା– ଈଶ୍ୱର ସ୍ତୋତ୍ର, ନଗୋତ୍ ସଙ୍ଗେ ହ୍ରଦ, ମହାଶ୍ୱେତା, ସାବିତ୍ରୀ, ମନ୍ମଥ, ତିଲୋତ୍ତମା, ଗିରି ନିର୍ଝରିଣୀ, ନିବାତକବଚ ଯୁଦ୍ଧେ, ଶ୍ରେଣୀବଦ୍ଧ ତାରାଦ୍ୱୟ, ରତି, ଦମୟନ୍ତୀ, କୋନ ଐଶ୍ୱର୍ଯ୍ୟଶାଳୀର ପ୍ରତି, ବ୍ରାହ୍ମଣୀ ତୀର, ଯୁବକ, ଆଶା, ମାଧବ, ତୃଣାବୃତ-ଚନ୍ଦ୍ରମଲ୍ଲିକା, କପାଳ-କୁଣ୍ଡଳା, କମଳିନୀ, ସ୍ୱୀୟ ବନିତାର ପ୍ରତି ବିଦେଶୀୟ ପ୍ରତ୍ୟୁତ୍ତର, ଅଶୋକ, ଶରତ, ଶଚୀ, ପାତକୀ, ଶୀତକାଲ, ରୋଶିନାରା, ଘରଦ୍ବୁକୀ, ପ୍ରତାରିତ ପ୍ରେମିକ, ନବ-ପ୍ରଣୟୀ, କୃଷକଶିଶୁ, ଚନ୍ଦ୍ରେର ପାର୍ଶ୍ୱେ ତାରା, କୁମୁଦ୍‌ବତୀ, ସତୀ, କୋନ୍ ବିଦେଶୀୟ ବନ୍ଧୁର ପ୍ରତି, ଶୋଣିତା ନଦୀ, ହିଂସା, ଦୁର୍ଜ୍ଜନ, କ୍ରୋଧ, ବିଜ୍ଞାନ, ଦାଶରଥି, ଚନ୍ଦ୍ରୋଦୟେ କୁରରୀର ରବ ଶ୍ରବଣେ, ଦଣ୍ଡକାରଣ୍ୟ, ସାୟଂକାଳ, ନରକପାଳ, [ସନ୍ତାନ-ବିଧୁରା ମାତାର ବିଲାପ], କାଲ, ଯୁଦ୍ଧଯାତ୍ରାର ସମୟ ଉତ୍ତରାର ନିକଟ ଅଭିମନ୍ୟୁର ବିଦାୟ ପ୍ରାର୍ଥନା, ସମ୍ବଲପୁରେ ନିଦାଘ-ସନ୍ଧ୍ୟା ଦୃଶ୍ୟ, ଗ୍ରାମ ଶ୍ମଶାନ ଦର୍ଶନେ ବିଦେଶ ହଇତେ ପ୍ରତ୍ୟାଗତ ମାତୃହୀନେର ଉକ୍ତି।

ବଙ୍କିମଚନ୍ଦ୍ରଙ୍କ ଦ୍ୱାରା ସମ୍ପାଦିତ 'ବଙ୍ଗଦର୍ଶନ' ପତ୍ରିକାର ଦ୍ୱିତୀୟବର୍ଷ ତୃତୀୟ ସଂଖ୍ୟା (ଜୁନ୍, ୧୮୭୩)ର 'ପ୍ରାପ୍ତ ଗନ୍ଥେର ସଂକ୍ଷିପ୍ତ ସମାଲୋଚନ' ସ୍ତମ୍ଭରେ ଆଲୋଚ୍ୟ ପୁସ୍ତକର ଆଲୋଚନା କରାଯାଇଥିଲା – ''କବିତାବଳୀ – ଦ୍ୱିତୀୟ ଖଣ୍ଡ। ଶ୍ରୀ ରାଧାନାଥ ରାୟ ପ୍ରଣୀତ ଓ ଶ୍ରୀ ବୈକୁଣ୍ଠନାଥ ଦେ କର୍ତ୍ତୃକ ପ୍ରକାଶିତ। କଲିକତା। ଶ୍ରୀଯୁକ୍ତ ଈଶ୍ୱରଚନ୍ଦ୍ର ବସୁ କୋଂ., ୧୨୮୦।

ଏଇ କବିତାଗୁଲି ଉତ୍ତମ। ବୈକୁଣ୍ଠବାବୁ ବିଜ୍ଞାପନେ ପ୍ରସଙ୍ଗତଃ ଜାନାଇୟାଛେନ ଯେ, ଇହା ଏକ ଜନ ଉତ୍କଳବାସୀର ପ୍ରଣୀତ; ଅଥଚ ସେ କଥା ସ୍ପଷ୍ଟ ଲେଖେନ୍ ନାଇ। ବସ୍ତୁତଃ ଉଡ଼ିୟା କି ନା, ଆମରା ଠିକ୍ ବୁଝତେ ପାରଲାମନା। ଫଲେ ଇନି ଯେଇ ହଉନା, ଆମରା ଇହା ମୁକ୍ତକଣ୍ଠେ ବଲିତେ ପାରି ଯେ ତାଁହାର ଲିଖିତ ବାଙ୍‌ଲା ଭାଷା ସାଧାରଣ ବାଙ୍ଗାଲି-ଲେଖକେର ଭାଷାର ଅପେକ୍ଷା ଭାଲ। କବିତ୍ୱ ଓ ସାଧାରଣ ବାଙ୍ଗାଲି-କବିର କବିତ୍ୱ ଅପେକ୍ଷା ଭାଲ। ତାଁହାର ପ୍ରଣୀତ ଚତୁର୍ଦ୍ଦଶପଦୀ କବିତାର ମଧ୍ୟେ ଦୁଇ ଏକଟି ଶ୍ରୀଯୁକ୍ତ ଦତ୍ତଜ ମହାଶୟେର ପ୍ରଣୀତ ଚତୁର୍ଦ୍ଦଶ-ପଦୀର ତୁଲ୍ୟ ବଲିୟା ବୋଧ ହୟ। ଏଇ କବି ଦତ୍ତଜ ମହାଶୟେର ଅନୁକାରୀ।''

(୪) ଇତାଲୀୟ ଯୁବା – ଉତ୍କଳ ଦର୍ପଣ (ଜୁଲାଇ, ୧୮୭୩)

(୫) ବିବେକୀ – ଉତ୍କଳ ଦର୍ପଣରେ ପ୍ରକାଶିତ ବୋଲି ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ଉନବିଂଶ ଶତାବ୍ଦୀର ଉତ୍କଳ ପତ୍ରିକା ପ୍ରବନ୍ଧରେ କହନ୍ତି। ପ୍ରବନ୍ଧର ସମ୍ଭାବିତ ପ୍ରକାଶ କାଳ ୧୮୭୪ ମସିହା।

(୬) ପବନ – 'ଉତ୍କଳ ଦର୍ପଣ'ରେ ପ୍ରକାଶିତ। (ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଉଲ୍ଲେଖ ଅନୁସାରେ) ପରେ 'କବିତାବଳୀ' (ଓଡ଼ିଆ)ରେ ସଂଯୋଜିତ। ସମ୍ଭାବ୍ୟ ପ୍ରକାଶକାଳ ୧୮୭୪ ମସିହା।

(୭) କାଳିଦାସ – ଏଇଟି ମଧ୍ୟ 'ଉତ୍କଳ ଦର୍ପଣ'ରେ ପ୍ରକାଶିତ ବୋଲି ପଣ୍ଡିତ ରଥ କହନ୍ତି। କିନ୍ତୁ ଏହା 'କବିତା' କି 'ପ୍ରବନ୍ଧ' ତାହା ଜଣାଯାଏ ନାହିଁ। ଏଇ ରଚନାଟି ଏ ପର୍ଯ୍ୟନ୍ତ ସଂଗୃହୀତ ହୋଇନାହିଁ। ଏହା ମଧ୍ୟ ୧୮୭୪ ମସିହାରେ ପ୍ରକାଶିତ ହୋଇଥିବା ସମ୍ଭବ।

(୮) ଉତ୍କଳ ରଚନା – ପ୍ରଥମଖଣ୍ଡ – ୧୮୭୬ ମସିହା ଫେବୃୟାରୀ। ବୈକୁଣ୍ଠନାଥ ଦେଙ୍କ 'ଉତ୍କଳପ୍ରେସ୍'ରୁ ପ୍ରକାଶିତ। ଏହା ନିରୋଳା ପାଠ୍ୟପୁସ୍ତକ ଉଦ୍ଦେଶ୍ୟରେ ଲିଖିତ ରାଧାନାଥଙ୍କର ପ୍ରଥମ ପୁସ୍ତକ। ଓଡ଼ିଶାର କମିଶନରଙ୍କୁ ଏହା ଉତ୍ସର୍ଗ

କରାଯାଇଥିଲା । ଏଥିରେ ତତ୍କାଳୀନ ଡେପୁଟି ଇନ୍‌ସ୍ପେକ୍ଟର ନନ୍ଦକିଶୋର ଦାସଙ୍କର ଏକ 'ମେମୋ' ଓ ରେଭେନ୍‌ସାଙ୍କର ଏକ 'ନୋଟ୍' ସଂଯୁକ୍ତ ହୋଇଥିଲା – ଉଭୟର ତାରିଖ ଥିଲା ୧୫ । ୧୧ । ୧୮୭୪ ତାରିଖ । ନନ୍ଦକିଶୋର ଦାସଙ୍କ 'ମେମୋ'ରେ କୁହାଯାଇଥିଲା – "A class-book on Oriya Composition has now more than ever become a pressing necessity in consequence of the student for the vernacular scholarship examination being now required to pass in Oriya language and not in Oriya literature as before.

Oriya Composition which ought always to form a principal and distinct subject of study is most deplorably neglected on account of there being no class-book to help the teachers and their pupils.

In the junior classes, the young pupils receive no instruction on the subject and when in the higher classes they are atonce required to write essays on different subjects, it is no wonder that they acquit themselves most miserably. This book, it is hoped, will to a great extent, supply the want above indicated."

ରେଭେନ୍‌ସା ସାହେବଙ୍କ 'ନୋଟ'ରେ ଲେଖାଥିଲା – "This book has been favourably reviewed by the Joint-Inspector and his remarks may be communicated to the another, but there are no funds at my disposal and therefore, I cannot afford pecuniary assistance in its publication."

ଉତ୍କଳ ରଚନା – ପ୍ରଥମଖଣ୍ଡର ସଂକ୍ଷିପ୍ତ ପରିଚୟ/ ସମାଲୋଚନା ବାଲେଶ୍ୱର ସମ୍ବାଦବାହିକା (୮/୧୩; ୮ । ୨ । ୧୮୭୬) ଓ ଉତ୍କଳ-ଦୀପିକା (୧୧/୭; ୧୨ । ୨ । ୧୮୭୬)ରେ ପ୍ରକାଶିତ ହୋଇଥିଲା । 'ଉତ୍କଳ-ଦୀପିକା'ରେ କୁହାଯାଇଥିଲା – "ଓଡ଼ିଆ ଭାଷାରେ ଏପରି ପୁସ୍ତକ ଦେଖାନାହିଁ ଓ ବଙ୍ଗଳା ଭାଷାରେ ମଧ୍ୟ ଥିବାର ଆମ୍ଭେମାନେ ଶୁଣିନାହୁଁ ।... ବାବୁ ରାଧାନାଥ ରାୟ ଏ ପୁସ୍ତକ ଖଣ୍ଡିକ ବାହାର କରି କେବଳ ଉକ୍ତ ଅଭାବ ଦୂର କଲେ ଏମନ୍ତ ନୁହେଁ, ଉପଯୁକ୍ତ ଲୋକଙ୍କୁ ଏ ଗୁରୁତର ବିଷୟରେ ପୁସ୍ତକ ରଚନା କରିବାର ବାଟ ଦେଖାଇଲେ ।" ଏହି ପୁସ୍ତକର ବହୁ ସଂସ୍କରଣ ପରବର୍ତ୍ତୀ କାଳରେ ହୋଇଥିଲା । ପରବର୍ତ୍ତୀ ସଂସ୍କରଣର 'ଉତ୍କଳ ରଚନା' ସ୍ୱର୍ଗତ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ଦ୍ୱାରା ସମ୍ପାଦିତ ରାଧାନାଥ ଗ୍ରନ୍ଥାବଳୀ (୧୯୭୪)ରେ ସଂଯୁକ୍ତ ।

(୯) ସାବିତ୍ରୀ (Girls' Reader) – ୧୮୭୫-୭୬ ସାଲରେ ପୁସ୍ତକଟି 'ଉତ୍କଳ ପ୍ରେସ୍'ରୁ ପ୍ରକାଶିତ ହୋଇଥିଲା । ଏ ପୁସ୍ତକ ସମ୍ପର୍କରେ ରାଧାନାଥ-ଜୀବନୀକାର କହନ୍ତି – ଏହି ସମୟରେ କୁମାର ବୈକୁଣ୍ଠନାଥ ପ୍ରଥମ ବାଳିକାସ୍କୁଲ ସ୍ଥାପନ କରି ଉପଯୁକ୍ତ ପାଠ୍ୟପୁସ୍ତକ ନ ପାଇବାରୁ ରାଧାନାଥଙ୍କୁ ଅନୁରୋଧ କରିବାରେ ସେ 'ସାବିତ୍ରୀ' ନାମକ ଗୋଟିଏ ପୁସ୍ତକ ଲେଖିଥିଲେ ଏବଂ ତାହା 'ଦେଙ୍କର ଉତ୍କଳ ପ୍ରେସ୍' (De's Utkal Press)ରେ ପ୍ରକାଶିତ ହୋଇ Girls' Reader ନାମ ଧାରଣ କଲା । ସେ ପୁସ୍ତକର ଅସ୍ତିତ୍ୱ ବର୍ତ୍ତମାନ ନାହିଁ । (ପୃ.୬୦)

(୧୦) ପ୍ରଥମ ପାଠ – ୧୮୭୫-୭୬ । ମଧୁସୂଦନ ରାଓଙ୍କ ସହଯୋଗରେ ରଚିତ । ଏଇଟି ମଧ୍ୟ ଦେ'ଙ୍କ ଉତ୍କଳ ପ୍ରେସ୍‌ରୁ ପ୍ରକାଶିତ ହୋଇଥିଲା । (ରାଧାନାଥ ଜୀବନୀ, ପୃ.୬୧)

(୧୧) କବିତାବଳୀ [ଓଡ଼ିଆ] – ୧୮୭୬ । ମଧୁସୂଦନ ରାଓଙ୍କ ସହଯୋଗରେ ରଚିତ ଓ ଦେ'ଙ୍କ 'ଉତ୍କଳ ପ୍ରେସ୍'ରେ ମୁଦ୍ରିତ । ଏହି ସଂକଳନରେ ରାଧାନାଥଙ୍କର ତିନୋଟି କବିତା – ପବନ (ପୂର୍ବରୁ 'ଉତ୍କଳ ଦର୍ପଣ'ରେ ପ୍ରକାଶିତ), ନିଜ ସୈନ୍ୟ ପ୍ରତି ଶିବାଜୀ ଓ ବେଣୀସଂହାର ସ୍ଥାନ ପାଇଥିଲା । ବୈକୁଣ୍ଠନାଥ ଦେ ଥିଲେ ଏହି ପୁସ୍ତକର ପ୍ରକାଶକ ଓ ଏହା ଜନ୍ ବିମ୍‌ସଙ୍କୁ ଉତ୍ସର୍ଗ କରାଯାଇଥିଲା । ଏହି ପୁସ୍ତକ ଉପରେ ମନ୍ତବ୍ୟ ଦେଇ ବାଲେଶ୍ୱର ସମ୍ବାଦବାହିକା (୯/୭; ୧୬ । ୯ । ୧୮୭୬) ଲେଖିଥିଲେ – "ଉକ୍ତ ଉଭୟ ଭାଷା [ସଂସ୍କୃତ ଓ ଇଂରାଜୀ]ର କବିତା ଯେପରି ନାନା ରସ, ନାନା ଗୁଣ ଇତ୍ୟାଦି ଧାରଣ କରିଥାଏ, ଶଂସିତ

ପୁସ୍ତକର କବିତାମାନ ତାହା ଧାରଣ କରିଅଛି। ପ୍ରକୃତ ବୋଲୁଅଛୁଁ ଶଂସିତ ପୁସ୍ତକର କବିତାମାନ ଆଧୁନିକ ଉତ୍କଳ ପଦ୍ୟସଂସାରର ନମୁନା ସ୍ୱରୂପ ହୋଇଅଛି। ରାଧାନାଥବାବୁ ବଙ୍ଗଭାଷାରେ 'କବିତାବଳୀ' ଲେଖି ବଙ୍ଗସାହିତ୍ୟର ଆଲୋଚନା-କାରୀଙ୍କଠାରୁ ପ୍ରଶଂସା ପାଇଛନ୍ତି, ଉତ୍କଳ ଭାଷାରେ ଯେ ସେ ସୁକବିତା ଲେଖି ଯଶସ୍ୱୀ ହେବେ ଏଥିରେ ବିଚିତ୍ର କି ?''

(୧୨) ଇଉକ୍ଲିଡ଼ ଓ କ୍ଷେତ୍ର ବ୍ୟବହାର– ୧୮୭୬। ଶିବନାରାୟଣ ନାୟକଙ୍କ ସହଯୋଗରେ ରଚିତ ଓ 'ଦେ'ଙ୍କ ଉତ୍କଳ ପ୍ରେସ୍'ରୁ ପ୍ରକାଶିତ। ଏହାର ଇଂରାଜୀ ଶିରୋନାମା ଥିଲା : Geometry, Mensuration and Survey। ଏହି ପୁସ୍ତକରେ ଲେଖକଦ୍ୱୟ [ରାଧାନାଥ ଓ ଶିବ ନାରାୟଣ ନାୟକ]ଙ୍କ ଦ୍ୱାରା ୧୧।୯।୧୮୭୬ତାରିଖରେ ଲିଖିତ ଏକ ବିଜ୍ଞାପନ ଥିଲା, ଯେଉଁଥିରେ ଏହି ପୁସ୍ତକ ରଚନାର ଆବଶ୍ୟକତା ସମ୍ପର୍କରେ ସୂଚନା ଦିଆଯାଇଥିଲା।

(୧୩) କ୍ଷେତ୍ରତତ୍ତ୍ୱ– ୧୮୭୭ ଜୁଲାଇ। ବାଲେଶ୍ୱର ନର୍ମାଲ ସ୍କୁଲର ଦ୍ୱିତୀୟ ଶିକ୍ଷକ ଶିବନାରାୟଣ ନାୟକଙ୍କ ସହଯୋଗରେ ଏହା ସଂକଳିତ ଓ 'ଦେ'ଙ୍କର ଉତ୍କଳ ପ୍ରିଣ୍ଟିଂ ପ୍ରେସ୍'ରେ ମୁଦ୍ରିତ।

(୧୪) ଆଦର୍ଶ ପ୍ରଶ୍ନାବଳୀ– ପ୍ରଥମ ଖଣ୍ଡ (ମାନସାଙ୍କ)– ୧୮୭୭। 'ଦେ'ଙ୍କ ଉତ୍କଳ ପ୍ରିଣ୍ଟିଂ ପ୍ରେସ୍‌ରେ ମୁଦ୍ରିତ ଓ ବାଲେଶ୍ୱର ସମ୍ବାଦବାହିକାର ନବମ ଭାଗ ଷୋଡ଼ଶ ସଂଖ୍ୟା (ତା ୧।୪।୧୮୭୭)ରେ ବିଜ୍ଞାପିତ।

(୧୫) ଭୂଗୋଳ ବ୍ୟାବହାରିକ, ପ୍ରଥମ ଭାଗ– ୧୮୭୭। ଶିବନାରାୟଣ ନାୟକଙ୍କ ସହଯୋଗରେ ରଚିତ ଓ ଦ୍ୱାରକାନାଥ ଦେ'ଙ୍କ ଦ୍ୱାରା ପ୍ରକାଶିତ ଓ 'ଉତ୍କଳ ପ୍ରିଣ୍ଟିଂ କୋମ୍ପାନୀ ପ୍ରେସ୍'ରେ ମୁଦ୍ରିତ। ପୁସ୍ତକଟି ଓଡ଼ିଶାର ତତ୍କାଳୀନ କମିଶନର୍ ଜନ୍ ବିମସ୍‌କୁ ଉତ୍ସର୍ଗ କରାଯାଇଥିଲା–

''ମହାମତି ଶ୍ରୀଯୁକ୍ତ ଯୋହନ ବୀମସ୍ ଓଡ଼ିଶାର କମିଶନର ମହୋଦୟ ଉଦାରଚରିତେଷୁ ସମୁଚିତ ସମ୍ମାନ ପୁରଃସର ସାନୁନୟ ନିବେଦନମ୍... ହେ ସୁଧୀବର !

ଆପଣଙ୍କର ପ୍ରଜାବାତ୍ସଲ୍ୟ ଗୁଣରେ ଏହି ଓଡ଼ିଶା ଆପଣଙ୍କଠାରେ ଋଣୀ ଅଟେ। ଆମ୍ଭେମାନେ ଏହି ଓଡ଼ିଶାର ନିବାସୀ, ସୁତରାଂ ଆପଣଙ୍କଠାରେ ଚିରଋଣୀ...''

ଏଥିରେ ଲେଖକଙ୍କ ଦ୍ୱାରା ୧।୧୧।୧୮୭୭ ତାରିଖରେ ଲିଖିତ ଏକ ବିଜ୍ଞାପନ ସଂଯୋଜିତ। ସେହି ବିଜ୍ଞାପନରେ ଏହା ଡେପୁଟି ଇନ୍‌ସ୍‌ପେକ୍ଟର ନନ୍ଦକିଶୋର ଦାସଙ୍କ ଉତ୍ସାହରେ ଲିଖିତ ବୋଲି ସୂଚିତ। ଏହାର ପ୍ରାପ୍ତି ସ୍ୱୀକାର ବାଲେଶ୍ୱର ସମ୍ବାଦବାହିକାର ଦଶମ ବର୍ଷ ସପ୍ତମ ସଂଖ୍ୟା (୧୬।୧୧।୧୮୭୭) ଓ ସମାଲୋଚନା ସେହି ପତ୍ରିକାର ଦଶମ ବର୍ଷ ଅଷ୍ଟମ ସଂଖ୍ୟା (୧।୧୨।୧୮୭୭)ରେ କରାଯାଇଥିଲା।

(୧୬) ଭୂଗୋଳ ପ୍ରାକୃତିକ, ଦ୍ୱିତୀୟ ଭାଗ– ୧୮୭୮। ଶିବନାରାୟଣ ନାୟକଙ୍କ ସହଯୋଗରେ ରଚିତ ଓ ଦ୍ୱାରକାନାଥ ଦେ'ଙ୍କ ଦ୍ୱାରା ପ୍ରକାଶିତ। ବାଲେଶ୍ୱରର 'ଉତ୍କଳ ପ୍ରିଣ୍ଟିଂ କୋମ୍ପାନୀ ପ୍ରେସ୍'ରେ ଏହା ମୁଦ୍ରିତ। ଏଥିରେ ଲେଖକଦ୍ୱୟଙ୍କ ଦ୍ୱାରା ୧୨।୧।୧୮୭୮ତାରିଖରେ ଲିଖିତ ଏକ 'ବିଜ୍ଞାପନ' ରହିଛି।

(୧୭) ଭୂଗୋଳ ସାର ସଂଗ୍ରହ– ୧୮୭୮। ଭୀମଚରଣ ପଣ୍ଡାଙ୍କ ସହଯୋଗରେ ସଂକଳିତ ଓ ବାଲେଶ୍ୱରରୁ ପ୍ରକାଶିତ ବୋଲି ସ୍ୱର୍ଗତ ପ୍ରିୟରଞ୍ଜନ ସେନ ତାଙ୍କର 'Modern Oriya Literature' (ପୃ.୬୧)ରେ ଉଲ୍ଲେଖ କରିଛନ୍ତି। ଏହି ପୁସ୍ତକଟିର ନାମ ଜେ.ଏଫ୍. ବ୍ଲୁମ୍‌ହର୍ଟଙ୍କ ପୁସ୍ତକ ତାଲିକାରେ ମଧ୍ୟ ଦେଖିବାକୁ ମିଳେ। (କବିଲିପି, ପୃ.୧୬୨)

(୧୮) ସାହିତ୍ୟବିଷୟକ ଆଦର୍ଶ ପ୍ରଶ୍ନାବଳୀ– ୧୮୭୯। ପୁସ୍ତକଟିର ମଲାଟରେ ଏହା ଭୁବନେଶ୍ୱର ଦତ୍ତଙ୍କ ଦ୍ୱାରା ପ୍ରଣୀତ ବୋଲି ଲିଖିତ। କଟକ ପ୍ରିଣ୍ଟିଂ କୋମ୍ପାନୀରେ ମୁଦ୍ରିତ ହୋଇ ଏହା ୧୮୭୯ ସାଲ ଅଗଷ୍ଟ ମାସରେ ପ୍ରକାଶିତ ୨୧।୬।୧୮୭୯ ତାରିଖରେ ଭୁବନେଶ୍ୱର ଦତ୍ତଙ୍କଦ୍ୱାରା ଲିଖିତ 'ଭୂମିକା'ରେ କୁହାଯାଇଥିଲା– ''ଏ ପୁସ୍ତକର ପ୍ରଣେତା, ବନ୍ଧୁ ମାନ୍ୟାସ୍ପଦ ଶ୍ରୀଯୁକ୍ତ ବାବୁ ରାଧାନାଥ ରାୟ ଅଟନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ।''

(୧୯) ଲେଖାବଳୀ (ବଙ୍ଗଳା)– ୧୮୭୯/୧୯୦୦– ଯଦିଓ ପୁସ୍ତକଟି ୧୯୦୦ ମସିହାରେ କଲିକତାର 'ହେୟାର ପ୍ରେସ୍'ରେ ମୁଦ୍ରିତ, ଏଥିରେ ଛଅଗୋଟି କବିତାରୁ ପାଞ୍ଚଗୋଟି କବିତା ଭୂଦେବ ମୁଖୋପାଧ୍ୟାୟଙ୍କ 'ଏଡୁକେଶନ୍ ଗେଜେଟ୍'ର ଷୋହଳଟି ସଂଖ୍ୟାରେ ୧୮୭୯ ମସିହାରୁ ୧୮୮୧

ମଧ୍ୟରେ ପ୍ରକାଶିତ ହୋଇଥିଲା । 'ଏଡୁକେଶନ୍ ଗେଜେଟ୍'ରେ ପ୍ରକାଶିତ ପାଞ୍ଚଟି କବିତା ହେଲା – 'ରାମଚନ୍ଦ୍ରେର ପ୍ରତି ଜାନକୀ', 'ଅର୍ଜ୍ଜୁନେର ପ୍ରତି ସୁଭଦ୍ରା', 'କଚେର ପ୍ରତି ଦେବଯାନୀ', 'ପୁଣ୍ଡରୀକେର ପ୍ରତି ମହାଶ୍ୱେତା', 'କୁମାରନାଥେର ପ୍ରତି କମଳ-କାମିନୀ' । ପୁସ୍ତକାକାରରେ ପ୍ରକାଶିତ ହେଲାବେଳେ ସେଥିରେ ଗୋଟିଏ ନୂତନ କବିତା ସଂଯୋଜିତ – 'ମଦନେର ପ୍ରତି ମାୟାବତୀ' । ସମସ୍ତ କବିତା ଭିତରେ ଏଇଟି ଦୀର୍ଘତମ । ପୁସ୍ତକଟି ବାମଣ୍ଡାର ବଡ଼କୁମାର ବଳଭଦ୍ର ଦେବଙ୍କୁ ଉତ୍ସର୍ଗୀକୃତ । ୬ । ୯ । ୧୯୦୦ ତାରିଖରେ ଲିଖିତ ଏହାର ଭୂମିକାରେ ରାଧାନାଥ ଲେଖିଛନ୍ତି – "ତେଇଶ ବତ୍ସର ପୂର୍ବେ ଆମି ଏଇ ପତ୍ରିକାଗୁଲି ଲିଖିୟା ଆମାର ପୂଜ୍ୟପାଦ ଗୁରୁଦେବ ସ୍ୱର୍ଗତ ଭୂଦେବ ମୁଖୋପାଧ୍ୟାୟ ମହାଶୟକେ ଦେଖାଇୟାଛିଲାମ୍ । ତିନି ପତ୍ରିକାଗୁଲି ପାଠ କରିୟା ପ୍ରୀତିପ୍ରକାଶ କରିୟାଛିଲେନ ଏବଂ ଏଡୁକେଶନ୍ ଗେଜେଟେ ୫ଟି ପତ୍ରିକା ମୁଦ୍ରିତ କରାଇୟା ଆର କତକଗୁଲି ଲିଖିତେ ଏବଂ ସମସ୍ତଗୁଲି ପୁସ୍ତକାକାରେ ପ୍ରକାଶ କରିବାର ଜନ୍ୟ ଆମାକେ ଉପଦେଶ ଦିୟାଛିଲେନ୍ । ଏତଦିନେ ତାଁହାର ସେଇ ଉପଦେଶ ଅଂଶତଃ କାର୍ଯ୍ୟେ ପରିଣତ ହଇଲ ।"

ଏହି 'ଲେଖାବଳୀ'ର ସମାଲୋଚନା ବଙ୍ଗଳା 'ମେଦିନୀ ବାନ୍ଧବ' (୨୪ । ୩ । ୧୯୦୨) ଓ 'ଉତ୍କଳ-ସାହିତ୍ୟ' (୫/୩, ଜୁନ୍, ୧୯୦୧ ଆଦି ପତ୍ର-ପତ୍ରିକାରେ ପ୍ରକାଶିତ ହୋଇଥିଲା । 'ମେଦିନୀ ବାନ୍ଧବ'ର ସମାଲୋଚନା ପ୍ରଶଂସାସୂଚକ ଥିଲାବେଳେ, 'ଉତ୍କଳ-ସାହିତ୍ୟ'ରେ ବିଶ୍ୱନାଥଙ୍କ ଦୀର୍ଘ ସମା-ଲୋଚନା ଥିଲା ଅଭିମାନଭରା ।

(୨୦) ସମାଲୋଚନା – ପ୍ରବନ୍ଧମାଳା – ୧୮୮୦ । ଏହି ପ୍ରବନ୍ଧଟି ରାଧାନାଥଙ୍କର ନାମ ନ ଥାଇ ବାଲେଶ୍ୱର ସମ୍ବାଦବାହିକାର ତ୍ରୟୋଦଶ ବର୍ଷ ଏକଚତ୍ୱାରିଂଶ ସଂଖ୍ୟା (୭ । ୧୦ । ୧୮୮୦)ର ଅତିରିକ୍ତ ପୃଷ୍ଠାରେ ପ୍ରକାଶିତ । ମଧୁସୂଦନ ରାଓ ଉତ୍କଳଦୀପିକାରେ ପ୍ରକାଶିତ ଏକ ପତ୍ରରେ (୧୭/୭; ୬ । ୧ । ୧୮୮୨) ଏଇ ଲେଖାଟି ରାଧାନାଥଙ୍କର ବୋଲି କହିଛନ୍ତି – "..."Babu Radhanath Roy criticised the work in the Bahika in his private capacity of a critic..." । ଏଂମ୍ବୁକ୍ତ ପ୍ରବନ୍ଧ ବିରୁଦ୍ଧରେ ଉତ୍କଳ-ଦୀପିକା ଆଦି ଓଡ଼ିଆ ସମ୍ବାଦପତ୍ରରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଥିଲା । ଉତ୍କଳ-ଦୀପିକାର ସମ୍ପାଦକ ଗୌରୀଶଙ୍କର ଲେଖିଥିଲେ – "ବାସ୍ତବରେ ଆମ୍ଭେ-ମାନେ ସମାଲୋଚନାର ଶବ୍ଦତରଙ୍ଗରେ ପଡ଼ି ତ୍ରାହି ତ୍ରାହି ଡାକିଲୁଁ ଏବଂ ଖଣ୍ଡିଏ ଉତ୍କୃଷ୍ଟ ଅଭିଧାନ ବାହାର କରେଇବା ପୂର୍ବେ ସାହିତ୍ୟ ପୁସ୍ତକ ପରେ ତିନିଶତ ଟଙ୍କା ବ୍ୟୟ କରିଥିବାରୁ ଶିକ୍ଷାବିଭାଗକୁ ଅନେକ ନିନ୍ଦା କଲୁଁ । (ଉତ୍କଳ-ଦୀପିକା, ୧୪/୪୨, ତା ୨୩ । ୧୦ । ୧୮୮୦)

(୨୧) ବ୍ୟାକରଣ – ୧୮୮୧ । କାଲକାଟା ସ୍କୁଲ୍ ବୁକ୍ ସୋସାଇଟି ଦ୍ୱାରା ପ୍ରକାଶିତ ଓ ବାପ୍ଟିଷ୍ଟ ମିଶନ୍ ପ୍ରେସ୍‌ରେ J.W.Thomasଙ୍କ ଦ୍ୱାରା ମୁଦ୍ରିତ । ରାଧାନାଥ ଗଙ୍ଗାଧରଙ୍କ ନିକଟକୁ ଏକ ଚିଠିରେ ସେ ଏହି ପୁସ୍ତକର ପ୍ରକୃତ ଲେଖକ ନୁହନ୍ତି ବୋଲି କହିଛନ୍ତି – "ସ୍କୁଲ ବୁକ୍ ସୋସାଇଟିର ଯେଉଁ ବ୍ୟାକରଣ ମୋହୋ ନାମରେ ଚଳୁଅଛି ମୁଁ ତାହାର ପ୍ରକୃତ ଲେଖକ ନୁହେଁ । ମୋହୋର ଅଫିସ୍‌ର ଭୂତପୂର୍ବ ହେଡ୍‌କ୍ଲର୍କ ଭୁବନବାବୁ [ଭୁବନେଶ୍ୱର ଦତ୍ତ] ତାହା ଲେଖିଥିଲେ । ତାହାଙ୍କ ଅନୁରୋଧରେ ତାହାଙ୍କର ଆର୍ଥିକ ଉପକାର ସକାଶ ମୁଁ ମୋହୋର ନାମ ଦେବାକୁ ସମ୍ମତ ହୋଇ ପୁସ୍ତକର ପାଣ୍ଡୁଲିପି ଅଂଶତଃ ଦେଖିଥିଲି ।" (କବିଲିପି – ପୃ.୮୪)

## ଦ୍ୱିତୀୟ ପର୍ଯ୍ୟାୟ (୧୮୮୫-୧୮୯୮)

(୧) କେଦାରଗୌରୀ – ୧୮୮୫ । ପ୍ରଥମେ 'ସଂସ୍କାରକ ଓ ସେବକ' ସାପ୍ତାହିକ ପତ୍ରର ଦ୍ୱିତୀୟବର୍ଷ ସପ୍ତବିଂଶତି ସଂଖ୍ୟା (୨୪ । ୬ । ୧୮୮୫)ରେ ପ୍ରକାଶିତ (ପୃ.୧୪୩-୪୫) । ସେଥିରେ ଲେଖକଙ୍କର ନାମ ନ ଥିଲା । କାବ୍ୟଟି ଆରମ୍ଭ ହେବା ପୂର୍ବରୁ ଲେଖାଥିଲା – "କେଦାରଗୌରୀ ନିର୍ଝର – ଭୁବନେଶ୍ୱର ।" (ଭୁବନେଶ୍ୱରରେ ଗୋଟିଏ ସୁନ୍ଦର ନିର୍ଝର ଅଛି । ତାହାର ନାମ କେଦାରଗୌରୀ କାହିଁକି ହେଲା ପଦ୍ୟରୁ ଜଣାପଡ଼ିବ) ସେହି ବର୍ଷ ଶେଷଆଡ଼କୁ 'ଦେ'ଙ୍କ ଉତ୍କଳ ପ୍ରିଣ୍ଟିଂ କୋମ୍ପାନୀ ପ୍ରେସ୍'ରୁ ଏହା ପୁସ୍ତିକାକାରରେ ଲେଖକ ଭାବରେ ରାଧାନାଥଙ୍କ ନାମ ଥାଇ ପ୍ରକାଶିତ । ପୁସ୍ତିକାର ପ୍ରାରମ୍ଭରେ ଉପକ୍ରମଣିକା ଥିଲା )– "ଭୁବନେଶ୍ୱରରେ କେଦାରଗୌରୀ ନାମରେ ରମଣୀୟ ନିର୍ଝର ଅଛି । ନିମ୍ନଲିଖିତ ପଦ୍ୟରେ ସେଥିର ପୌରାଣିକ କଥା· ଲିପିବଦ୍ଧ ହୋଇଅଛି ।" ପରବର୍ତ୍ତୀ ସଂସ୍କରଣରେ

'କେଦାରଗୌରୀ'ର ନାମକରଣ ସମ୍ପର୍କରେ ପ୍ରାଥମିକ ଓ ପରବର୍ତ୍ତୀ ଉଭୟ ସୂଚନା ବାଦ୍‌ଦିଆଯାଇଛି।

ପତ୍ରିକାରେ ପ୍ରକାଶିତ 'କେଦାରଗୌରୀ' ଓ ପୁସ୍ତିକା (ପରେ 'ଗ୍ରନ୍ଥାବଳୀ') ଆକାରରେ ପ୍ରକାଶିତ କେଦାରଗୌରୀ ମଧ୍ୟରେ ବିଶେଷ କୌଣସି ପାଠ ଭେଦନାହିଁ । ପତ୍ରିକାରେ ଥିବା "ପ୍ରୀତିକି ସଁପିଛି ମନପ୍ରାଣ ବାଳା, ଆନ କଥା ମନେ ନାହିଁ" ଓ ପତ୍ରିକାରେ ଥିବା "ମନପ୍ରାଣ ଯା'କୁ ସଁପିଛି ନିରେଖି ଦେଖିଲା ଏ ସେହି ଯୁବା" ପୁସ୍ତିକାରେ/ଗ୍ରନ୍ଥାବଳୀରେ "ମନପ୍ରାଣ ଯା'କୁ ଦେଇଛି, ନିରେଖି ଦେଖିଲା ଏ ସେହି ଯୁବା"ରେ ପରିଣତ ହୋଇଛି।

ପୁସ୍ତିକା ଆକାରରେ ପ୍ରକାଶିତ ହେଲାପରେ କେଦାରଗୌରୀ – ଅନୁକୂଳ ଓ ପ୍ରତିକୂଳ – ଉଭୟ ପ୍ରକାର ସମାଲୋଚନାର ଶରବ୍ୟ ହୋଇଛି ।

'ସଂସ୍କାରକ'ରେ କେଦାରଗୌରୀ'ର ଏକାଧିକ ଆଲୋଚନା ପ୍ରକାଶିତ ହୋଇଥିଲା ଓ ସେ ସମସ୍ତ ଆଲୋଚନା ଥିଲା ନିନ୍ଦାସୂଚକ – ଦୋଷୋଦ୍‌ଘାଟନୀ-ମୂଳକ। ଶିକ୍ଷାବନ୍ଧୁ (୨/୨-୩, ଫେବୃୟାରୀ, ୧୮୮୬)ରେ ପ୍ରକାଶିତ ଆଲୋଚନା ପ୍ରଶଂସାସୂଚକ ହେଲେ ବି ଆପେକ୍ଷିକଭାବେ ଥିଲା ସମତୁଲ । ସେହି ଆଲୋଚନାଟି ହେଲା –

"କେଦାରଗୌରୀ – ଶ୍ରୀ ରାଧାନାଥ ରାୟ କର୍ତ୍ତୃକ ପ୍ରଣୀତ – ଗତ ବିଂଶତି ବର୍ଷ ମଧ୍ୟରେ ଉତ୍କଳ ସାହିତ୍ୟର ଉନ୍ନତି ନିମିତ୍ତ ଯେଉଁମାନେ ଲେଖନୀ ଧାରଣ କରିଅଛନ୍ତି, ସେମାନଙ୍କ ମଧ୍ୟରେ ରାଧାନାଥବାବୁ ଅଗ୍ରଗଣ୍ୟ ଅଟନ୍ତି । ରାଧାନାଥ ବାବୁ ପ୍ରକୃତିଜାତ କବି ଏବଂ ପ୍ରତିଭାଶାଳୀ ଲେଖକ । ସେ ଓଡ଼ିଆରେ ଅଧିକ ଲେଖିନାହାନ୍ତି; କିନ୍ତୁ ଯାହା ଲେଖି ଅଛନ୍ତି ତାହା ସର୍ବୋତ୍କୃଷ୍ଟ ହୋଇଅଛି । 'କବିତାବଳୀ'ରେ ଥିବା 'ବେଣୀସଂହାର' ପରି ଉତ୍କୃଷ୍ଟ କବିତା ଏବଂ ମେଘଦୂତର ଅନୁବାଦ ପରି ଉତ୍କୃଷ୍ଟ ଅନୁବାଦ ଆମ୍ଭେମାନେ ଓଡ଼ିଆ ଭାଷାରେ ଦେଖିନାହୁଁ । ଦୁଃଖର ବିଷୟ ଯେ ରାଧାନାଥବାବୁ ବହୁଦିନ ହେଲା କବିତାରଚନା ଏକପ୍ରକାର ପରିତ୍ୟାଗ କରି ଆପଣାର ପ୍ରତିଭାକୁ କ୍ଷୁଦ୍ର-ସଂସାରର କ୍ଷୁଦ୍ର ବ୍ୟାପାର ମଧ୍ୟରେ କାରାରୁଦ୍ଧ କରି ରଖିଅଛନ୍ତି । ଯେଉଁ ପ୍ରତିଭା ଅନନ୍ତ ନିସର୍ଗରୂପ ଲୀଳାଭୂମିରେ ବିଚରଣ କରିବା ନିମିତ୍ତ ବିଧାତା କର୍ତ୍ତୃକ ଆହୂତ ହୋଇଅଛି, ତାହାକୁ ଚୀନଦେଶୀୟ ମହିଳାମାନଙ୍କ ଲୌହପାଦୁକାବଦ୍ଧ ଚରଣପ୍ରାୟ ସଂକୁଚିତ ଦେଖିଲେ ଆମ୍ଭମାନଙ୍କ ହୃଦୟ ବ୍ୟଥିତ ହୁଏ । ଆମ୍ଭେମାନେ ଆଶା କରୁଁ ରାଧାନାଥବାବୁ ତାହାଙ୍କ ପ୍ରତିଭାର ଅପବ୍ୟବହାର ନକରି ସରସ୍ୱତୀଙ୍କର ସେବାରେ ଆପଣାକୁ ନିଯୁକ୍ତ କରିବେ ।

. . .ଏହି କବିତାର ଆରମ୍ଭରେ ଉପକ୍ରମଣିକା ରୂପେ ଲେଖାହୋଇଅଛି ଯେ, ଭୁବନେଶ୍ୱରରେ କେଦାରଗୌରୀ ନାମରେ ଗୋଟିଏ ରମଣୀୟ ନିର୍ଝର ଅଛି । ନିମ୍ନଲିଖିତ ପଦ୍ୟରେ ସେଥିର ପୌରାଣିକ କଥା ଲିପିବଦ୍ଧ ହୋଇଅଛି । ବାସ୍ତବରେ ଯେଉଁ ଉପାଖ୍ୟାନଟି କବିତାରେ ଲିପିବଦ୍ଧ ହୋଇଅଛି, ତାହା ପୌରାଣିକ ନୁହେଁ, କବିବରଙ୍କ କଳ୍ପନାପ୍ରସୂତ । ଏପରି ସ୍ଥଳରେ ତାହାକୁ ପୌରାଣିକ ଆଖ୍ୟାୟିକା ବୋଲି ଉଲ୍ଲେଖ କରିବା ଅନୁଚିତ ହୋଇଅଛି । କବିତାଟିରେ ପ୍ରକୃତ କବିତ୍ୱ ଶକ୍ତି, ଭାଷାରେ ଲାଳିତ୍ୟ ଏବଂ ବର୍ଣ୍ଣନାର ସୌନ୍ଦର୍ଯ୍ୟ ସମ୍ୟକ୍‌ରୂପେ ପରିସ୍ଫୁଟ ହୋଇଅଛି । ଆମ୍ଭେମାନେ ଏଠାରେ ସେହି କବିତା ମଧ୍ୟରୁ କିୟଦଂଶ ଉଦ୍ଧାର କଲୁଁ । ସାୟଂକାଳର ବର୍ଣ୍ଣନାଟି କେମନ୍ତ ମନୋହର ଏବଂ ସ୍ଥାନୋପଯୋଗୀ ହୋଇଅଛି ।"

(୨) କବିତାବଳୀ, ଦ୍ୱିତୀୟଭାଗ (ଓଡ଼ିଆ)– ୧୮୮୪-୮୬ । ୧୮୮୪ ସାଲରେ କବିତାବଳୀ ଦୁଇଭାଗରେ ବିଭକ୍ତ ହୋଇ ଦେ'ଙ୍କ ଉତ୍କଳ ପ୍ରିଣ୍ଟିଂ କୋମ୍ପାନୀ ପ୍ରେସ୍‌ରୁ ପ୍ରକାଶିତ ହୁଏ । ଦ୍ୱିତୀୟ ଭାଗର ପ୍ରଥମ ସଂସ୍କରଣରେ ରାଧାନାଥଙ୍କର ଗୋଟିଏ କବିତା ଥିଲା–ବେଣୀସଂହାର। ୧୮୮୬ ମସିହାର ଦ୍ୱିତୀୟ ସଂସ୍କରଣରେ 'କବିତାବଳୀ – ଦ୍ୱିତୀୟଭାଗ'ରେ ରାଧାନାଥଙ୍କର ଗୋଟିଏ ନୂଆ କବିତା– 'ଭାରତେଶ୍ୱରୀ-ଭିକ୍ଟୋରିଆ' ସଂଯୁକ୍ତ ହୁଏ ।

(୩) ପରଲୋକଗତ ଦାଶରଥି କବିଚନ୍ଦ୍ର – ୧୮୮୬। 'ସଂସ୍କାରକ' (୩/୫, ୩୦ । ୧ । ୧୮୮୬)ରେ ଏକ ପତ୍ର ଆକାରରେ ପ୍ରକାଶିତ । ପ୍ରବନ୍ଧ/ପତ୍ରଟିର ସମୟ ତା ୨୬ । ୧ । ୮୬ । ଏହାର ଆରମ୍ଭରେ ଲେଖାଅଛି – "ଶ୍ରୀଯୁତ ସଂସ୍କାରକର ସମ୍ପାଦକ ମହାଶୟ ସମୀପେଷୁ, ମହାଶୟ ।" ତା'ପରେ ସାଧାରଣ ପ୍ରବନ୍ଧ ରୀତିରେ ରଚନାଟି ଲିଖିତ ।

(୪) ଚନ୍ଦ୍ରଭାଗା– ୧୮୮୬ । ବାଲେଶ୍ୱରର ଦେ'ଙ୍କ ପ୍ରିଣ୍ଟିଂ କୋମ୍ପାନୀ ପ୍ରେସ୍‌ରେ ମୁଦ୍ରିତ ହୋଇ ସ୍ୱୟଂ ରାଧାନାଥଙ୍କ ଦ୍ୱାରା ପ୍ରକାଶିତ । ପ୍ରକାଶିତ ହେଲାପରେ ପୁସ୍ତକଟି ସଂସ୍କାରକ (୩/୪୦;

୨୭ । ୧୦ । ୮୬ ତାରିଖଠାରୁ କ୍ରମଶଃ ପ୍ରକାଶିତ) ଉତ୍କଳଦୀପିକା (୨୧/୪୪, ୬ । ୧୧ । ୮୬), ଶିକ୍ଷାବନ୍ଧୁ (୨/୧୦-୧୨, ଅକ୍ଟୋବର-ଡ଼ିସେମ୍ବର, ୧୮୮୬) ଆଦି ପତ୍ରପତ୍ରିକାରେ ଆଲୋଚିତ । ଏ ସମସ୍ତ ଆଲୋଚନା ଭିତରେ 'ସଂସ୍କାରକ'ରେ ପ୍ରକାଶିତ ଭୋଳାନାଥ ଦାସଙ୍କ ଲିଖିତ ଆଲୋଚନାଟି ଦୀର୍ଘତମ । ଏହା 'ସଂସ୍କାରକ'ର ୩/୪୦ (୨୭ । ୧୦ । ୧୮୮୭) ସଂଖ୍ୟା ବ୍ୟତୀତ ଆଉ ତିନୋଟି ସଂଖ୍ୟା (୩/୪୧, ୩/୪୨ ଓ ୩/୪୩)ରେ ପ୍ରକାଶିତ । ସେହି ଆଲୋଚନାରେ କୁହାଯାଇଥିଲା – "କେଦାରଗୌରୀର ସମାଲୋଚନାରେ ତତ୍ତୁଲ୍ୟ ଆଉ କେତେକ କବିତା ପ୍ରକାଶିତ ହେବାର ପ୍ରତ୍ୟାଶା ସୂଚୀତ ହୋଇଥିଲା । ଉତ୍କଳ କାବ୍ୟୋନ୍ନତିର ସୁଲକ୍ଷଣ ସ୍ୱରୂପ ଚନ୍ଦ୍ରଭାଗାଠାରେ ସେ ଆଶା ଅଚିରାତ୍ ଫଳଦାୟିନୀ ହୋଇଅଛି । ଆଉ ଫଳରେ ମଧ ଆଶା ରହିଲା । ନୋହିଥିଲା ନାହିଁ, ଆସ୍ୱାଦନ କରି ନିର୍ବର୍ଣ୍ଣ ହେବା କଷ୍ଟଦାୟକ । ଯାହାହେଉ ଶ୍ରୀରାଧାନାଥବାବୁ ଆମ୍ଭର ପ୍ରଚ୍ଛନ୍ନ ଉପେନ୍ଦ୍ର ଭଞ୍ଜ । ଯେଉଁ ଦୋଷଟି ପରିହାର କରିଥିଲେ ଉପେନ୍ଦ୍ର ଭଞ୍ଜ ପୃଥିବୀମାନ୍ୟ ହୋଇଥାନ୍ତେ ସେଟି ରାଧାନାଥବାବୁ ତ୍ୟାଗ କରିଅଛନ୍ତି । ଚନ୍ଦ୍ରଭାଗାରେ ଶୃଙ୍ଗାର ରସର ସୁରୁଚିଦ୍ୱ ସମ୍ପୂର୍ଣ୍ଣ ବିକସିତ ହୋଇଅଛି ଓ କେତେକ ସ୍ଥଳରେ ଉପମେୟର ସୂକ୍ଷ୍ମତା ଓ ଉପମାନର ମୌଳିକତା ଲକ୍ଷିତ ହୁଅଇ; ଏ ଦୁଇ ବିଷୟରେ ପ୍ରାଚୁର୍ଯ୍ୟ ଉତ୍କଳ କାବ୍ୟରେ ସୁବିରଳ । (୩/୪୦) . . . "ରାୟକବି ଚନ୍ଦ୍ରଭାଗା"ର ଅନତିପ୍ରସାରିତ କବିତାବଲ୍ଲୀରେ ମଧୁମୟ କବିତା-କୁସୁମ ଫୁଟାଇ ଆମ୍ଭମାନଙ୍କୁ ମୋହିତ କରିଅଛନ୍ତି; କିନ୍ତୁ ଆଶା ପୂର୍ଣ୍ଣ ହେଲାନାହିଁ" । (୩/୪୧) . . . "ଧନ୍ୟ କବି ତୁମ୍ଭର ଏହି ମିଶାମିଶି ଭାବକୁ ଧନ୍ୟ । ଏହି କ୍ଷୁଦ୍ର କବିତାଲତାରେ ମୂଳରୁ ଅଗ ପର୍ଯ୍ୟନ୍ତ କବି ଯେଉଁ କବିତାକୁସୁମମାନ ଫୁଟାଇ ଅଛନ୍ତି, ଭାବୁକ ସେହି ପ୍ରତ୍ୟେକ ଫୁଲର ସୌନ୍ଦର୍ଯ୍ୟରେ ମୋହିତ ହେବ ।" (୩/୪୨). . . "ଏଡ଼େ କ୍ଷୁଦ୍ର ପୁସ୍ତକର ଏଡ଼େ ବୃହତ୍ ସମାଲୋଚନା ହେବାର କାରଣ ଏହି ଯେ, ପୁସ୍ତକ ଖଣ୍ଡିକରେ ପ୍ରକୃତ କବିତା ଅଛି । ମାତ୍ର ସେଥିରେ ଗୋଟିଏ ଭୟଙ୍କର ଦୋଷ ଥିବାରୁ ପୁସ୍ତକଖଣ୍ଡିକ କଳଙ୍କିତ ହୋଇଯାଇଅଛି । ପୁସ୍ତକଖଣ୍ଡିକ କୌଣସି ପୌରାଣିକ ଆଖ୍ୟାୟିକା ଅବଲମ୍ବନ କରି ଲିଖିତ ହୋଇନାହିଁ; ଏ ରୂପ ସ୍ଥଳେ ହିନ୍ଦୁମାନଙ୍କର ପୂଜ୍ୟ ଦେବତା ସୂର୍ଯ୍ୟଦେବତାଙ୍କୁ ବ୍ୟଭିଚାରୀ ବୋଲି ପ୍ରକାଶ କରିବା କବିଙ୍କ ପକ୍ଷରେ ଉଚିତ କାର୍ଯ୍ୟ ହୋଇନାହିଁ । ପୁଣି ଏତାଦୃଶ ଅଶ୍ଳୀଳତାବ୍ୟଞ୍ଜକ ଘଟଣାବଳୀ ଉଦ୍ଭାବନ କରି କବି ନିଜର ଦୂଷିତ କଳ୍ପନାର ପରିଚୟ ଦେଇଛନ୍ତି ।" (୪/୪୩) ପାଠ୍ୟପୁସ୍ତକ ନେଇ ସମକାଳରେ ଯେଉଁ ଆନ୍ଦୋଳନ ଲାଗିଥିଲା, ସେଥିନେଇ 'ଉତ୍କଳ-ଦୀପିକା' ରାଧାନାଥ-ବିରୋଧୀ ହୋଇପଡ଼ିଥିଲା; କିନ୍ତୁ 'ଚନ୍ଦ୍ରଭାଗା' ସମ୍ପର୍କରେ ଉତ୍କଳ-ଦୀପିକା ପ୍ରଶଂସାମୂଳକ ମନ୍ତବ୍ୟ ପ୍ରକାଶ କରିଥିଲା – ". . .ରାଧାନାଥବାବୁ ଉତ୍କଳ ସମାଜରେ ଅପରିଚିତ ନୁହନ୍ତି ଏବଂ ଅନେକ ଦିନ ସେ କବିତା ଲେଖିବା ଛାଡ଼ିଦେଇଥିବାର ଦେଖି ଆମ୍ଭେମାନେ ଦୁଃଖିତ ହୋଇଥିଲୁ । ବର୍ତ୍ତମାନ 'କେଦାରଗୌରୀ' ପଛେ ପଛେ 'ଚନ୍ଦ୍ରଭାଗା' ପ୍ରକାଶିତ ହେବାରୁ ବାବୁ ମହାଶୟଙ୍କର କବିତା ଲେଖିବା ପ୍ରତି ଅନୁରାଗର ପୁନାରବୃତ୍ତି ହେବାର ଦେଖି ଆମ୍ଭେମାନେ ଆନନ୍ଦିତ ହୋଇଅଛୁଁ । ଗ୍ରନ୍ଥଖଣ୍ଡି ସାଧାରଣ ପଠନୋଯୋଗୀ ହୋଇଅଛି ଏବଂ ଆମ୍ଭେମାନେ ତାହା ପାଠକରି ଆନନ୍ଦ ଲାଭ କରିଥିବାର ମୁକ୍ତକଣ୍ଠରେ ସ୍ୱୀକାର କରୁଅଛୁଁ ।" (୨୧/୪୪)

(୫) ଭ୍ରମଣକାରୀର ପତ୍ର – ୧୮୮୭ । ଏହି ଭ୍ରମଣ ବୃତ୍ତାନ୍ତଟି 'ନବସମ୍ବାଦ' ସାପ୍ତାହିକ ପତ୍ରର ପ୍ରଥମବର୍ଷ ତୃତୀୟ ସଂଖ୍ୟା (୬ । ୨ । ୧୮୮୭)ରୁ ଆରମ୍ଭ ହୋଇ ପ୍ରଥମ ବର୍ଷ ଅଷ୍ଟାଦଶ ସଂଖ୍ୟା (୨୬ । ୫ । ୧୮୮୭)ରେ ଶେଷ ହୋଇଛି । ଏହା ବାରଟି ଛେଦରେ ପ୍ରକାଶିତ । ପତ୍ରିକାରେ ପ୍ରକାଶିତ ହେଲାବେଳେ ଏଥିରେ ଲେଖକଙ୍କ ନାମ ନଥିଲା । ଲେଖାଥିଲା– 'ଭ୍ରମଣକାରୀଠାରୁ ପ୍ରାପ୍ତ' । ଶଶିଭୂଷଣ 'ରାଧାନାଥ-ଗ୍ରନ୍ଥାବଳୀ' ଦ୍ୱିତୀୟ ସଂସ୍କରଣରେ ରାଧାନାଥଙ୍କର ଅନ୍ୟତମ ରଚନା ଭାବରେ ଏହାକୁ ପତ୍ରସ୍ଥ କରିଥିଲେ ।

(୬) ମହାରାଣୀ ଭିକ୍ଟୋରିଆଙ୍କ ପଞ୍ଚାଶତ ବର୍ଷର ଜୁବିଲୀ ସଙ୍ଗୀତ – ୧୮୮୭ । ଏହି କବିତାଟି ପ୍ରଥମେ 'ସଂସ୍କାରକ' (୧୪/୭; ୧୬ । ୨ । ୧୮୮୭)ରେ 'ଜୁବୁଲୀ ସଙ୍ଗୀତ' ଶୀର୍ଷକରେ ପ୍ରକାଶିତ ହୋଇଥିଲା । ୧୯୦୨ରେ ପ୍ରକାଶିତ 'ରାଧାନାଥ ଗ୍ରନ୍ଥାବଳୀ'ରେ ଏହାର ଶୀର୍ଷକ ଥିଲା :– ପଞ୍ଚାଶତ୍ ବର୍ଷ ଜୁବୁଲୀ ସଙ୍ଗୀତ' । କବିତାଟିକୁ ଗ୍ରନ୍ଥାବଳୀରେ ସ୍ଥାନିତ କଲାବେଳେ ରାଧାନାଥ କେତେକ ଶବ୍ଦର ପରିବର୍ତ୍ତନ କରିଥିଲେ । ଗ୍ରନ୍ଥାବଳୀର ପରବର୍ତ୍ତୀ ସଂସ୍କରଣରେ

ପ୍ରଥମ ସଂସ୍କରଣ ପାଠ ହିଁ ଗୃହୀତ। ପତ୍ରିକାର ପାଠ 'ପୂର୍ବ ଚୌଦିଗେ ଦେଶ, ଆନନ୍ଦ ରବେ' ଗ୍ରନ୍ଥାବଳୀରେ 'ପୂର୍ବ ଚୌଦିଗେ ଯଶ ଆନନ୍ଦ ରବେ'ରେ ଓ ପତ୍ରିକାର ପାଠ 'ଶିଶୁସଙ୍ଗୀତ-ରଙ୍ଗ, ଉଠୁ ସୁରବେ' ଗ୍ରନ୍ଥାବଳୀରେ 'ହର୍ଷ ଚହଳ ଉଠୁ ଭୂତଳୁଁ ନଭେ'ରେ ପରିଣତ ହୋଇଛି।

(୭) ନନ୍ଦିକେଶ୍ୱରୀ– ୧୮୮୭। କଟକର 'ଭିକ୍ଟୋରିଆ ପ୍ରେସ୍'ରେ ମୁଦ୍ରିତ ଓ ସୁଦ୍ଧଳଦେବଙ୍କ ସୌଜନ୍ୟରୁ ପ୍ରକାଶିତ। ପ୍ରକାଶିତ ହେଲା ପରେ ପରେ 'ନବସମ୍ବାଦ'ର ପ୍ରଥମ ବର୍ଷ ଏକଚାଳିଶ ସଂଖ୍ୟା (୧୭।୧୧।୧୮୮୭)ରେ ଏହାର ଏକ ଦୀର୍ଘ ସମୀକ୍ଷା ପ୍ରକାଶିତ ହୋଇଥିଲା– "କବି ରାଧାନାଥଙ୍କର କଳ୍ପତୁଳିକା ଆଉ ଏବେ ନିଷ୍କ୍ରିୟ ନୁହେଁ। ବର୍ଷକ ମଧ୍ୟରେ ସେହି ତୁଳିକାର ଦୁଇଖଣ୍ଡି ନୂତନ ଚିତ୍ର ଆମ୍ଭମାନଙ୍କ ନିକଟରେ ଉପସ୍ଥାପିତ ହୋଇଛି। ଶୁକ୍ତି-ଚାରକିତ ମହୋଦଧି– ବେଳା-ବିଳାସିନୀ ନୀଳାମ୍ବୁନିଧି ନୀଳତରଙ୍ଗବିଲୀନା ଲାବଣ୍ୟମୟୀ ଚନ୍ଦ୍ରଭାଗାର ଚାରୁଚିତ୍ର ଦର୍ଶନ କରି କିଏ ପ୍ରୀତ ହୋଇନାହିଁ? କବି ସେହି ପ୍ରେମାଭୂତ-ରସାଭିଷିକ୍ତ ଆଲେଖ୍ୟ ଦର୍ଶକର ସ୍ମୃତିପଟରୁ ଅପସାରିତ ହେବାପାଇଁ ଯେହେତୁ ଅବସର ଦେଇ-ନାହାନ୍ତି। ପୁଣି ନୂତନ ଚିତ୍ରର ଅବତାରଣା... ଏହି ଆଖ୍ୟାୟିକା ଐତିହାସିକ ଭିତ୍ତିଶୂନ୍ୟ ନୋହିଲେ ହେଁ ପ୍ରଧାନତଃ କବିକଳ୍ପିତ ଅଟେ। ସୁବର୍ଣ୍ଣକେଶରୀ ଏବଂ ଚୋରଗଙ୍ଗ ଐତିହାସିକ ବ୍ୟକ୍ତି ହେଲେହେଁ ନାୟିକା ନନ୍ଦିକା ସମ୍ପୂର୍ଣ୍ଣରୂପେ କଳ୍ପନାର ସୃଷ୍ଟି।".. "ଘଟନାର ସ୍ୱଳ୍ପକାଳତା ପ୍ରତି ବିଚାର କଲେ, ନାୟକ ନାୟିକା ଉଭୟର ଚରିତ୍ର ଚିତ୍ର ପରିସ୍ଫୁଟ ରୂପେ ବ୍ୟକ୍ତ ହୋଇଅଛି।" ... "ନନ୍ଦିକେଶ୍ୱରୀ ଓ ଚନ୍ଦ୍ରଭାଗା ଉଭୟେ ବିୟୋଗାନ୍ତକ।" ... "ବର୍ଣ୍ଣନା ବିଷୟରେ କବିଙ୍କର ଲିପିକୁଶଳତା ସର୍ବୋପରି ପ୍ରଶଂସନୀୟ। ବାସ୍ତବରେ ଏପରି ସରସ, ସୁପାଠ୍ୟ, ସୁସ୍ନିଗ୍ଧ ଏବଂ ସୌନ୍ଦର୍ଯ୍ୟସିକ୍ତ ବର୍ଣ୍ଣନା ସମଗ୍ର ଉତ୍କଳ ସାହିତ୍ୟ ମଧ୍ୟରେ ଅତି ବିରଳ।" ... "ନନ୍ଦିକେଶ୍ୱରୀ ଉତ୍କଳଭାରତୀ କଣ୍ଠର ଗୋଟିଏ ବହୁମୂଲ୍ୟ ମଣି। ଆମ୍ଭେମାନେ ଆଶା କରୁଁ ଶିକ୍ଷିତ ସମ୍ପ୍ରଦାୟ ଏହି କାବ୍ୟର ସମୁଚିତ ସମାଦର କରି କବି ମହୋଦୟଙ୍କୁ ଉତ୍ସାହିତ କରିବେ।" 'ନବସମ୍ବାଦ'ର ଏହି ଦୀର୍ଘ ସମା-ଲୋଚନାରେ 'ନନ୍ଦିକେଶ୍ୱରୀ' କାବ୍ୟର ଏକ ସନ୍ତୁଳିତ ଆଲୋଚନା କରାଯିବାର ଉଦ୍ୟମ ରହିଛି। କିନ୍ତୁ 'ସଂସ୍କାରକ'ରେ ଯେଉଁ ଦୀର୍ଘ ଆଲୋଚନା ପ୍ରକାଶିତ, ତାହା ବର୍ଣ୍ଣନାତ୍ମକ ଓ କାବ୍ୟର ବିଭିନ୍ନ ଉପାଦାନ/ବିଭାବର ପରିଚୟାତ୍ମକ ଆଲୋଚନା। ଅବସର ମତେ ରାଧାନାଥଙ୍କୁ ଦୁଇପଦ ଶୁଣାଇବାର ମାନସିକତା ସମ୍ଭବତ ଆଲୋଚକଙ୍କର ରହିଛି। ପ୍ରଥମ ଚାରୋଟି ଛେକରେ ପ୍ରକାଶିତ ଆଲୋଚନାରେ 'ନନ୍ଦିକେଶ୍ୱରୀ'ର କାହାଣୀ, ବର୍ଣ୍ଣନାଚାତୁରୀ, ଛନ୍ଦ ଓ ଉପଧା ଆଲୋଚନା ପରେ ପଞ୍ଚମ ଛେକରେ ରସ, ଷଷ୍ଠ ଛେକରେ ଚରିତ୍ରଚିତ୍ରଣ ଓ ସପ୍ତମ ଛେକରେ କାବ୍ୟର ଐତିହାସିକତା ଓ ନୈତିକ-ଆଧାର ଆଲୋଚିତ। ରସର ଆଲୋଚନା କରିବାକୁ ଯାଇ ସଂସ୍କାରକ (୫/୯, ୧.୩.୧୮୮୮)ର ସେହି ସଂଖ୍ୟାରେ କୁହାଯାଇଛି– "...କାବ୍ୟଖଣ୍ଡିକ କ୍ଷୁଦ୍ର ହେଲେ ସୁଦ୍ଧା ଆମ୍ଭମାନଙ୍କର କବି ସକଳ ପ୍ରକାର ରସରୁ କିଛି କିଛି ଅବତାରଣା କରାଇ କାବ୍ୟଖଣ୍ଡିକ ଚିତ୍ତାକର୍ଷକ ଓ ମନୋହର କରାଇଅଛନ୍ତି। କାବ୍ୟଖଣ୍ଡିକ କେଉଁ ରସପ୍ରଧାନ ତାହା ନିର୍ଣ୍ଣୟ କରିବା କଠିନ ଅଟେ, ତଥାପି 'କାବ୍ୟ ଯେଉଁ ରସରେ ସମାପ୍ତ ହୁଏ, ତାହାକୁ ସେହି ରସପ୍ରଧାନ ବୋଲାଯାଏ'– ଏହି ନିୟମର ବଶବର୍ତ୍ତୀ ହୋଇ ଆମ୍ଭେମାନେ ନନ୍ଦିକେଶ୍ୱରୀକୁ କରୁଣରସପ୍ରଧାନ ବୋଲିପାରୁଁ... [ଏହାପରି] କରୁଣ ଉକ୍ତି ଓ ହୃଦୟଭେଦୀ ଏବଂ ଅନୁତପ୍ତ ଭାବବିକାସ ଆମ୍ଭେମାନେ ଉତ୍କଳ କାବ୍ୟମାନଙ୍କରେ ଅତ୍ୟଳ୍ପ ଦେଖିବାକୁ ପାଉଁ।" ... "କାବ୍ୟଖଣ୍ଡିକ କରୁଣରସ ପ୍ରଧାନ ହେଲେ ସୁଦ୍ଧା ଏଥିରେ ଏତେ ଆଦିରସର ସଞ୍ଚାର ହୋଇଅଛି ଯେ ଏହାକୁ ସାବଧାନପୂର୍ବକ ପାଠ ନ କଲେ ଯୁବକମାନଙ୍କ ଚିତ୍ତରେ ବିକାର ଉପସ୍ଥିତ ହୋଇପାରେ। ଏମନ୍ତ କି ସ୍ଥାନେ ସ୍ଥାନେ କବି ଆଦିରସରେ କବିତାମାନଙ୍କୁ କଦର୍ଯ୍ୟ କରିପକାଇଅଛନ୍ତି। ଆଦିରସ ବର୍ଣ୍ଣନାରେ କବିଙ୍କ ରୁଚି ପରିମାର୍ଜିତ ହୋଇ ନଥିବା ଦୁଃଖର ବିଷୟ।" ସଂସ୍କାରକର ପ୍ରଥମ ଚାରୋଟି କିସ୍ତିରେ ପ୍ରକାଶିତ ସମୀକ୍ଷାର ଏକ ପ୍ରତ୍ୟୁତରମୂଳକ ସମାଲୋଚନା ବାଲେଶ୍ୱରରୁ ପ୍ରକାଶିତ 'ଓଡ଼ିଆ ଓ ନବସମ୍ବାଦ'ର ଦ୍ୱିତୀୟ ବର୍ଷ ପଞ୍ଚଦଶ ସଂଖ୍ୟା (୧।୨।୧୮୮୮)ରେ ପ୍ରକାଶ କରାଯାଇଥିଲା। 'କେଦାରଗୌରୀ'ର ଆଲୋଚନା ମଧ୍ୟଦେଇ ଯେଉଁ ଧରଣର ରାଧାନାଥଚର୍ଚ୍ଚା ଆରମ୍ଭ ହୋଇଥିଲା 'ନନ୍ଦିକେଶ୍ୱରୀ'ର ଆଲୋଚନା ମଧ୍ୟରେ ତାହା ଶୀର୍ଷବିନ୍ଦୁରେ ପହଞ୍ଚିଛି।

(୮) ଉଷା – ୧୮୮୮ । କଟକର 'ଭିକ୍ଟୋରିୟା ପ୍ରେସ୍'ରେ ମୁଦ୍ରିତ । ନନ୍ଦିକେଶ୍ୱରୀ ଭଳି ଉଷ୍ଟତା 'ଉଷା' କାବ୍ୟ ସୃଷ୍ଟି କରି ନଥିଲା । 'ନବସମ୍ବାଦ' ଓ 'ସଂସ୍କାରକ' ଭଳି ପତ୍ରିକାର ଏତେବେଳକୁ ଅନ୍ତର୍ଦ୍ଧାନ ଏହାର ଏକ ପ୍ରଧାନ କାରଣ । 'ଉତ୍କଳ-ଦୀପିକା' (୨୩/୪୬; ୧।୧୨।୧୮୮୮)ରେ ଏହାର ଏକ ସଂକ୍ଷିପ୍ତ ଆଲୋଚନା ପ୍ରକାଶିତ । ଏହି ଆଲୋଚନାର ଉପ- ସଂହାରରେ କୁହାଯାଇଥିଲା – "କବି ଯେପରି ଏହି କବିତାକୁ ରଚନା କରିଗଲେ ଆମ୍ଭେ ପଢ଼ିଗଲେ ତାହାଙ୍କର ପରିଶ୍ରମ ଉତ୍ତମରୂପେ ଜଣାଯିବ । ପ୍ରକୃତରେ ଏହି କବିତା ବଡ଼ ଉତ୍କୃଷ୍ଟ ହୋଇଅଛି ଏବଂ ବୀର କରୁଣରସାଦିର ଅବତାରଣା ସ୍ଥାନେ ସ୍ଥାନେ ଯେମନ୍ତ ସୁକୌଶଳ ଓ ନିପୁଣତା ସହିତ କରାଯାଇଅଛି ଓ ଅଷ୍ଟସାତ୍ତ୍ୱିକ୍ୟର ବର୍ଣ୍ଣନା ଯେପରି ପରିପାଟୀରେ ହୋଇଅଛି ଗୀତ ଗ୍ରାହକ ପାଠକମାନେ ଅବଶ୍ୟ କବିତାର ପ୍ରଶଂସା କରିବେ, ସନ୍ଦେହ ନାହିଁ ।"

(୯) କବିତା ସଂଗ୍ରହ – ୧୮୮୮ । ଲାଲା ରାମନାରାୟଣ ରାୟଙ୍କ ଦ୍ୱାରା ସମ୍ପାଦିତ, ଡାକ୍ତର ରାମକୃଷ୍ଣଙ୍କ ଦ୍ୱାରା ପ୍ରକାଶିତ ଓ କଟକର ଭିକ୍ଟୋରିୟା ପ୍ରେସ୍‌ରେ ମୁଦ୍ରିତ । ଏହି କବିତା ସଂକଳନଟି ଟି କବିତା ବା କାବ୍ୟାଂଶ ମଧ୍ୟରୁ ନଅଟି କାବ୍ୟାଂଶ ହେଉଛି ରାଧାନାଥଙ୍କର । ତେଣୁ ଏହାକୁ ରାଧାନାଥଙ୍କର କାବ୍ୟାଂଶଗୁଡ଼ିକର ଏକ ସଂକଳନ କହିଲେ ଅତ୍ୟୁକ୍ତି ହେବନାହିଁ । ଅବଶିଷ୍ଟ ତିନୋଟି କବିତାରୁ ଦୁଇଟି ହେଉଛି ମଧୁସୂଦନଙ୍କର ଓ ଅପରଟି ହେଉଛି ବଳରାମ ଦାସଙ୍କର । ରାଧାନାଥଙ୍କର ଯେଉଁ କାବ୍ୟାଂଶଗୁଡ଼ିକ ଏଥିରେ ସ୍ଥାନିତ, ସେଗୁଡ଼ିକ ହେଲା – (୧) ନନ୍ଦିକେଶ୍ୱରୀର ଯୁଦ୍ଧବର୍ଣ୍ଣନା, (୨) ପ୍ରଦୋଷ ବର୍ଣ୍ଣନା ('ନନ୍ଦକେଶ୍ୱରୀ' ଦ୍ୱିତୀୟ ସର୍ଗରୁ ଉଦ୍ଧୃତ), (୩) ଚନ୍ଦ୍ରାଲୋକରେ କାଠଯୋଡ଼ି ତୀର (ନନ୍ଦିକେଶ୍ୱରୀ ପ୍ରାଚୀନଭେ ଏବେ ରାଜହଂସବନ'ରୁ ଆରମ୍ଭ), (୪) ଉଷାର ମୃଗୟା, (୫) ବାଲେଶ୍ୱରର ପ୍ରାତଃ-କାଳୀନ ଦୃଶ୍ୟ ('ଉଷା' କାବ୍ୟରୁ ଗୃହୀତ), (୬) ଉଷା ସ୍ୱୟମ୍ବରରେ ଭିନ୍ନ ଭିନ୍ନ ପ୍ରଦେଶରୁ ରାଜପୁତ୍ରମାନଙ୍କ ଆଗମନ, (୭) ଉଷାର ବିବାହ, (୮) ରାମାଭିଷେକ ['ଚନ୍ଦ୍ରଭାଗା' କାବ୍ୟର ପ୍ରଥମାଂଶ], (୯) ମହୋଦଧି ତୀରରେ ପ୍ରଦୋଷ ବର୍ଣ୍ଣନା ['ଚନ୍ଦ୍ରଭାଗା' କାବ୍ୟର] । ଏହି ସଂକଳନର ଏକ ବିଜ୍ଞାପନ ଲେଖିଥିଲେ ଲାଲା ରାମନାରାୟଣ ରାୟ । ସେଥିରେ ସେ ଲେଖିଥିଲେ – "ଓଡ଼ିଶ୍ୟାରେ ପଦ୍ୟ ପାଠ୍ୟପୁସ୍ତକର ଅଭାବ ନାହିଁ । ମାତ୍ର ଓଡ଼ିଶ୍ୟାରେ ପ୍ରାଚୀନ ଇତିହାସ ଅଥବା ଓଡ଼ିଶ୍ୟାର ଦୃଶ୍ୟସମ୍ବନ୍ଧୀୟ ବର୍ଣ୍ଣନା ସେହି ଗ୍ରନ୍ଥମାନଙ୍କରେ ପ୍ରାୟ ଦେଖାଯାଏ ନାହିଁ । ଓଡ଼ିଶ୍ୟାର ପ୍ରାଚୀନ ଇତିହାସ ଯେମନ୍ତ କୀର୍ତ୍ତି ଉଜ୍ଜ୍ୱଳ, ଓଡ଼ିଶ୍ୟାର ପ୍ରାକୃତିକ ଦୃଶ୍ୟ ମଧ୍ୟ ସେହିପରି ବିଚିତ୍ର ଓ ମନୋହର । କବିତା ଦର୍ପଣରେ ସେହି ଓଡ଼ିଶ୍ୟାକୁ ପ୍ରତିବିମ୍ବିତ କରି ପାଠାର୍ଥୀମାନଙ୍କୁ ଦେଖାଇବାର ଏହି କବିତା ସଂଗ୍ରହର ମୁଖ୍ୟ ଉଦ୍ଦେଶ୍ୟ ଅଟେ ।

"ଆଧୁନିକ ରୀତିରେ ଯେତେଗୁଡ଼ିଏ କବିତା ପୁସ୍ତକ ପ୍ରଚାରିତ ହୋଇଅଛି ସେଥିମଧ୍ୟରେ କେବଳ ପୂଜ୍ୟାସ୍ପଦ କବିବର ଶ୍ରୀଯୁକ୍ତ ବାବୁ ରାଧାନାଥଙ୍କର ପ୍ରଣୀତ ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ ଓ ଉଷାରେ ଉପରୋକ୍ତ ପ୍ରାକୃତିକ ଦୃଶ୍ୟର ଯେମନ୍ତ ବିସ୍ତାରିତ ବର୍ଣ୍ଣନା ଦେଖାଯାଏ ତଦ୍ରୂପ ଅନ୍ୟ କୌଣସି ପଦ୍ୟ-ପୁସ୍ତକରେ ଦେଖାଯାଏନାହିଁ; ଦେଖାଯାଏ ନାହିଁ କାହିଁକି, ଏକାବେଳେକେ ନାହିଁ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ..."

ରାଧାନାଥଙ୍କୁ ଓଡ଼ିଶାର ଜାତୀୟ ତଥା ଶ୍ରେଷ୍ଠ କବି ଭାବରେ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ମନରେ ଧାରଣା ସୃଷ୍ଟି ଓ ପ୍ରତିଷ୍ଠା କରିବାରେ ଏହି 'କବିତା-ସଂଗ୍ରହ'ର ଭୂମିକା ସର୍ବାଧିକ ।

(୧୦) ପାର୍ବତୀ – ୧୮୯୦-୯୧ । ଏହି କାବ୍ୟଟି ପ୍ରଥମ ଥରକରେ ସମ୍ବଲପୁର ହିତୈଷିଣୀର ଦ୍ୱିତୀୟ ବର୍ଷ ନବମ ସଂଖ୍ୟା (୧୩।୮।୧୮୯୦)ରୁ ଆରମ୍ଭ ହୋଇ ଦ୍ୱିତୀୟ ବର୍ଷ ପଞ୍ଚଦଶ ସଂଖ୍ୟା (୨୪।୯।୯୦) ପର୍ଯ୍ୟନ୍ତ ସାତଟି ସଂଖ୍ୟାରେ ପ୍ରକାଶିତ । ଦ୍ୱିତୀୟ ଥରକରେ ଦ୍ୱିତୀୟ ବର୍ଷ ଏକ ବିଂଶ (୫।୧୧।୯୦) ସଂଖ୍ୟାରୁ ଆରମ୍ଭ ହୋଇ ଦ୍ୱିତୀୟ ବର୍ଷ ଷଡ଼ବିଂଶ (୧୦।୧୨।୧୮୯୦) ସଂଖ୍ୟା ପର୍ଯ୍ୟନ୍ତ ପ୍ରକାଶିତ । ପୁସ୍ତକାକାରରେ ୧୮୯୧ ମସିହାରେ ବାମଣ୍ଡାର ଜଗନ୍ନାଥବଲ୍ଲଭ ପ୍ରେସ୍‌ରେ ମୁଦ୍ରିତ ହୋଇ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ପ୍ରକାଶିତ ।

'ପାର୍ବତୀ' କାବ୍ୟ 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶିତ ହେଲାବେଳୁ ହିଁ ପ୍ରତିକୂଳ ଓ ଅନୁକୂଳ ସମାଲୋଚନାର ସମ୍ମୁଖୀନ ହୋଇଥିଲା । 'ସମ୍ବଲପୁର ହିତୈଷିଣୀ' ପତ୍ରିକାର ଦ୍ୱିତୀୟ ବର୍ଷ ଦ୍ୱାଦଶ ସଂଖ୍ୟା (୩।୯।୧୮୯୧)ରୁ ଏଭଳି ଆଲୋଚନା ଆରମ୍ଭ ହୋଇଛି । ଏ ଭିତରୁ ଅନେକ ଆଲୋଚନା ଥିଲା

ପ୍ରାଚୀନ ଟୀକାର ଧରଣରେ । ପୁସ୍ତକ ଆକାରରେ ପ୍ରକାଶିତ ହେଲା ପରେ ପରେ ଜଣେ ଅଜ୍ଞାତନାମା ଲେଖକ ପ୍ରେରିତପତ୍ର ଆକାରରେ ଏହାର ସମାଲୋଚନା କରନ୍ତି ୧୮୯୧ ମସିହାର ମେ ମାସ ତେର ତାରିଖରେ (ସମ୍ବଲପୁର ହିତୈଷିଣୀ ୨/୪୮) । ସେହି ବର୍ଷ ସମ୍ବଲପୁର ହିତୈଷିଣୀର ଜୁନ୍ ତିନି ତାରିଖ ସଂଖ୍ୟା (୨/୫୧)ରେ ନୀଳମଣି ବିଦ୍ୟାରତ୍ନ ଏହାର ଏକ ପରିଚୟ ପ୍ରକାଶ କରନ୍ତି । ଉତ୍କଳପ୍ରଭାର ଦ୍ୱିତୀୟ ବର୍ଷ ସପ୍ତମ ସଂଖ୍ୟା (ଅକ୍ଟୋବର, ୧୮୯୧)ରେ 'ପାର୍ବତୀ'ର ଏକ ସଂକ୍ଷିପ୍ତ ସମାଲୋଚନା ପ୍ରକାଶିତ ହୋଇଥିଲା । ଏହି ସମସ୍ତ ଆଲୋଚନା/ପୁସ୍ତକ ସମୀକ୍ଷା ମଧ୍ୟରେ 'ଉତ୍କଳ ଦୀପିକା' (୨୬/୪୦, ୩/୧/୧୮୯୧)ରେ ପ୍ରକାଶିତ ସମାଲୋଚନା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ପରବର୍ତ୍ତୀ ସମୟରେ 'ପାର୍ବତୀ' କାବ୍ୟ ସମ୍ପର୍କରେ ଯେତେ ଆଲୋଚନା ହୋଇଛି 'ଉତ୍କଳ ଦୀପିକା'ର ଏହି ଆଲୋଚନା ସେ ସବୁର ଦିଗ୍-ନିର୍ଦ୍ଦେଶକ/ଭିତ୍ତି ଭାବରେ କାର୍ଯ୍ୟ କରିଛି । ତେଣୁ ସେହି ଆଲୋଚନାଟିକୁ ଅବିକଳ ଉଦ୍ଧାର କରାଯାଉଛି—

"ପାର୍ବତୀ ଶୀର୍ଷାଙ୍କିତ ପୁସ୍ତକ ଖଣ୍ଡିଏ ଆମ୍ଭେମାନେ ବାମଣ୍ଡାର ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ନିକଟରୁ ସମାଲୋଚନାର୍ଥେ ପ୍ରାପ୍ତ ହୋଇଅଛୁଁ । ଏହା ଆଧୁନିକ ଉତ୍କଳୀୟ କବି ରାଧାନାଥ ରାୟଙ୍କର ରସମୟୀ ଲେଖନୀରୁ ବିନିଃସୃତ । ଗ୍ରନ୍ଥଖଣ୍ଡି ବାରପେଜୀ ସାଇଜର ପୃ.୧୦୩ଷ୍ଠା ଅଧିକାର କରିଥିଲେହେଁ ଅସମ୍ପୂର୍ଣ୍ଣ ଭାବରେ ରହିଅଛି, ଏମନ୍ତ କି ସର୍ବଶେଷରେ ସେମିକୋଲନ ଭିନ୍ନ ପୂର୍ଣ୍ଣଚ୍ଛେଦର ଅବସ୍ଥାନ ହୋଇନାହିଁ ଏବଂ ରତ୍ନପୁର ରାଜଜେମା ଅନ୍ନପୂର୍ଣ୍ଣାଙ୍କ ଉକ୍ତି ହେଉଁ ହେଉଁ ବନ୍ଦ ରହିଅଛି । ଏପରି ଅବସ୍ଥାରେ ପୁସ୍ତକ ସମାଲୋଚନା କରିବା ବିଡ଼ମ୍ବନା ମାତ୍ର । ଭୂମିକାରୁ ଜଣାଯାଏ ରାଧାନାଥବାବୁ ଯେତିକି ରଚନା କରିଥିଲେ ତେତିକି ପ୍ରକାଶିତ ହୋଇଅଛି । ପୁତ୍ରର ଅସୁସ୍ଥତା ହେତୁ ସେ ନିତାନ୍ତ ଦୁଃଖିତ ଥିବାରୁ ଅବଶିଷ୍ଟାଂଶ ଶୀଘ୍ର ରଚିତ ହେବାର ଆଶା ନାହିଁ । ଯେତକ ରଚିତ ହୋଇଅଛି ତହିଁରେ କବିଙ୍କର କାରିଗରିର ଯଥେଷ୍ଟ ପରିଚୟ ମିଳୁଥିବାରୁ ଆ ପାତତଃ ଅସମ୍ପୂର୍ଣ୍ଣ ଭାବରେ ପୁସ୍ତକଖଣ୍ଡିକ ପ୍ରକାଶିତ କରିଥିବାର ପଣ୍ଡିତ ମହାଶୟ ବ୍ୟକ୍ତ କରିଅଛନ୍ତି । ଏଥିରୁ ବୋଧହୁଏ କାରିଗରି କିପରି ହୋଇଅଛି କେବଳ ସେହି ସମ୍ବନ୍ଧରେ ଆମ୍ଭମାନଙ୍କର ମତାମତ ଜାଣିବା ପଣ୍ଡିତ ମହାଶୟଙ୍କ ଅଭିପ୍ରାୟ; କିନ୍ତୁ କାରିଗରି ମଧ୍ୟରେ ବିଷୟ ଓ ରଚନା ଉଭୟ ଆସୁଥିବାରୁ ସମୁଦାୟ ଆଲୋଚନା କରିବା ଆବଶ୍ୟକ ହେଲା ।

ବିଷୟ – ଉତ୍କଳର ସୁବିଖ୍ୟାତ ସମରପ୍ରିୟ ପରାକ୍ରମଶାଳୀ ନୃପତି ଗଙ୍ଗେଶ୍ୱର ଦେବ ସ୍ୱୀୟ କନ୍ୟାସହବାସଜନିତ ଯେଉଁ ମହାପାପରେ ଲିପ୍ତ ହୋଇଥିଲେ ସେହି ବିଷୟ ଘେନି ଏ କାବ୍ୟ ଲିଖିତ ହୋଇଅଛି । ଗଙ୍ଗାବଂଶୀୟ ରାଜାଙ୍କ ପକ୍ଷେ ଏହା ଗୌରବର ବିଷୟ ନୁହଇ କିମ୍ବା ସେଭଳି ବିଷୟ ଚିରସ୍ମରଣୀୟ ହୋଇ ରହିବାର ଉପଯୁକ୍ତ ନୁହଇ । ରାଧାନାଥବାବୁ କେଉଁ ଉଦ୍ଦେଶ୍ୟ ସାଧନାର୍ଥ ବୀରପ୍ରସୂ ଓଡ଼ିଶାର ବିସ୍ତୀର୍ଣ୍ଣ ଇତିହାସରୁ ଏହି ଜଘନ୍ୟ ପାପମୟ ବିଷୟ ଉଦ୍ଧାର କରି କବିତାମୟୀ ପୁସ୍ତିକାରେ ଲିପିବଦ୍ଧ କରିବାକୁ ପ୍ରୟାସ ପାଇଅଛନ୍ତି, ତାହା ଆମ୍ଭେମାନେ ଅନୁମାନ ସୁଦ୍ଧା କରିପାରୁ ନାହୁଁ । ଆମ୍ଭେମାନେ କେବଳ ଏତିକି କହିବୁଁ ଯେ ଏଭଳି ବିଷୟ ଲିପିବଦ୍ଧ କରିବାକୁ ଯାଇ ତାଙ୍କର ସୁନ୍ଦର ଲେଖନୀ କଳଙ୍କିତ ହୋଇଅଛି ।

ରଚନା – ରାଧାନାଥ ବାବୁଙ୍କର ରଚନାଶକ୍ତିର ପରିଚୟ ଆମ୍ଭେମାନେ ତାଙ୍କ ପ୍ରଣୀତ ପୂର୍ବ କବିତାମୟୀ ପୁସ୍ତିକାରୁ ପାଇଅଛୁଁ ଏବଂ ପାର୍ବତୀରୁ ତାହା କେବଳ ଦୃଢ଼ୀଭୂତ ହୋଇଅଛି । ପାର୍ବତୀର ରଚନା ବଡ଼ ସୁନ୍ଦର ହୋଇଅଛି । ପୁଣି ସ୍ଥାନେ ସ୍ଥାନେ କବିତା ଏଡ଼େ ସୁକୋମଳ ଏବଂ ରମଣୀୟ ହୋଇଅଛି ଯେ ବାସ୍ତବରେ ପାଠକେ ତହିଁରେ ବିମୋହିତ ହୋଇଯିବେ । ଏଭଳି ରଚନାକୁ ବିଷୟଟି ଏଡ଼େ ନିକୃଷ୍ଟ ଥିବାର ଦେଖି ଆମ୍ଭମାନଙ୍କର ଦୁଃଖ ହୋଇଅଛି । ଉପମାଗୁଡ଼ିକ ଯଥାଯୋଗ୍ୟ ଏବଂ ସ୍ଥାନେ ସ୍ଥାନେ ଅତୀବ ଉପଯୁକ୍ତ ହୋଇ ମନୋହରଣ କରୁଅଛି । ଗୁଣଭାଗ ଏଥିରେ ଏତେ ଅଧିକ ଯେ ଦୋଷଭାଗ ଧର୍ତ୍ତବ୍ୟ ନୁହଇ । କେବଳ ସୁନ୍ଦର ଶୁକ୍ଳ ବସ୍ତ୍ରରେ ଠାବେ ଠାବେ ଈଷତ୍ ମସିଦାଗ ସୁଦ୍ଧା ବାରି ହୋଇପଡ଼ିଲା ପରି ଜଣାଯାଉଥିବାରୁ ତହିଁ ମଧ୍ୟରୁ କେତେଗୁଡ଼ିକର ଆମ୍ଭେମାନେ ଉଲ୍ଲେଖ କଲୁଁ; ଯଥା— "କେଭେ ପୁଷ୍ପେ କେଭେ ପର୍ଣ୍ଣେ"— ଏ ସ୍ଥାନରେ "କେଭେ" ସ୍ଥାନରେ "କେବେ" ହେବା ଉଚିତ । "ଆନ କଥା ଥାଉ ଯତିଜନମନ ହେଉଛି ଯନ୍ତ୍ର ଅଥୟ, ଦେଖୁଥିଲେ ଯେହୁ ବ୍ରହ୍ମମୟ ବିଶ୍ୱ, ଦେଖନ୍ତି ସେ ନାରୀମୟ"— କବିମାନେ ସୁନ୍ଦରୀଙ୍କି ଦେଖି ଯତିମନ ଟଳିବାର ବର୍ଣ୍ଣନା କରିଅଛନ୍ତି, ମାତ୍ର ଏତେ ସରିକି ଯିବାଟା

ଅନ୍ୟାୟ । ''ମଦନ ଶତଘ୍ନୀ ଦ୍ୱିଜସୀମନ୍ତିନୀ'' ପଢ଼ି ଉଚ୍ଛିକାବ୍ୟ ମନେପଡ଼ିଗଲା । ଏହା ସୁରୁଚିସଙ୍ଗତ କିମ୍ବା ସରଳପାଠ୍ୟ ହୋଇନାହିଁ । ''ପ୍ରବଳେ ରାସନୀ ନୀତି ଆଚରଣ, ଦାଶନୀ ନୀତି ଦୁର୍ବଳେ'', ''ରାସନୀ'' ଓ ''ଦାଶନୀ'' ଶବ୍ଦ ବ୍ୟାକରଣ ସଙ୍ଗତ ବୋଲି ଆମ୍ଭମାନଙ୍କୁ ସନ୍ଦେହ ହେଉଅଛି । ''ମାରିବ ଚିଲା'' ନିତାନ୍ତ ଗ୍ରାମ୍ୟଭାଷା । ଏଭଳି ଗ୍ରାମ୍ୟ ପ୍ରୟୋଗ ଏ ପୁସ୍ତକର ଅନେକ ସ୍ଥଳରେ ଦେଖାଯାଏ । ସ୍ଥାନେ ସ୍ଥାନେ ଭାବମାନ ଟିକିଏ ଜଟିଳ ହୋଇଯାଇଅଛି ଏବଂ ଏକଏକ ସ୍ଥାନରେ ଭାବଗ୍ରହଣ କରିବା କଠିନ ହୋଇଅଛି । ଏସବୁ ଦୋଷ ଛାଡ଼ିଦେଲେ ବାକ୍ୟବିନ୍ୟାସ କରିବାରେ ରାଧାନାଥବାବୁ ଏ ଗ୍ରନ୍ଥରେ କାରିଗରିର ଉତ୍ତମ ପରିଚୟ ପ୍ରଦାନ କରିଅଛନ୍ତି । ଗ୍ରନ୍ଥଖଣ୍ଡିକ ଶେଷ ନ ହେଲେ ବିଷୟ-ବିକାଶରେ କାରିଗରି କେତେଦୂର ହୋଇଅଛି ବୋଲାଯାଇ ନ ପାରେ । କୌଶଲ୍ୟାର ପ୍ରେତଆତ୍ମା ଛାୟାମୟ ରୂପ ଧାରଣ କରି ପାର୍ବତୀଙ୍କ ସମ୍ମୁଖେ ଉପସ୍ଥିତ ହୋଇ ନିଜ କାହାଣୀ ବ୍ୟକ୍ତ କରିବା ନିହାତି ଅସ୍ୱାଭାବିକ ଓ ଅସମ୍ଭବ ହୋଇଅଛି । ଯେବେ ପାର୍ବତୀ ଆ[illegible] ରାଜାଙ୍କର ଏତାଦୃଶ ପାପ କଥା ଜାଣି[illegible] ତାହାହେଲେ ଏହା ନିତାନ୍ତ ସ୍ୱାଭାବିକ ଓ ସମ୍ଭବଯୋଗ୍ୟ ହୋଇଥାନ୍ତା । ଏଭଳି ବର୍ଣ୍ଣନା ପ୍ରତି ସେକ୍ସପିୟରଙ୍କ 'ହାମଲେଟ' ମନେପଡ଼ିଗଲା । ହାମଲେଟ୍‌ର ମୃତ ପିତା ଭୂତ ରୂପେ ହାମଲେଟ୍ ସମକ୍ଷରେ ଆବିର୍ଭୂତ ହୋଇ ହାମ୍‌ଲେଟ୍ ଯେ ବିଷୟରେ ନିତାନ୍ତ ଚିନ୍ତାନ୍ୱିତ ଓ ଚେଷ୍ଟିତ ସେହି ବିଷୟରେ କଥା କହିବା ଅତୀବ ସ୍ୱାଭାବିକ ଓ ସମ୍ଭବଯୋଗ୍ୟ ହୋଇଅଛି । ମାତ୍ର ପାର୍ବତୀରେ ତଦ୍‌ବିପରୀତ । ତେବେ ଜଗନ୍ନାଥଙ୍କ ମାୟାରେ ସବୁ ହୋଇପାରେ । ତଥାପି ଏଭଳି ଅସମ୍ଭବ ଓ ଅସ୍ୱାଭାବିକ ଘଟନା ଘଟାଇବାରେ ଜଗନ୍ନାଥଙ୍କର ବିଶେଷ କୌଣସି ଉଦ୍ଦେଶ୍ୟ ସଫଳ ହେଉ ନ ଥିବାରୁ ତାହା ସଙ୍ଗତ ବୋଲି ବୋଲାଯାଇ ନ ପାରେ । ପାର୍ବତୀ ଏ ବିଷୟ ଆଗହୁଁ ଜାଣିଥିଲେ ଜଗନ୍ନାଥଙ୍କ ଆଜ୍ଞା ଓ ଏ ରୂପ ବର୍ଣ୍ଣନା ଅତୀବ ସ୍ୱାଭାବିକ ଓ ରମଣୀୟ ହୋଇଥାନ୍ତା । ପାର୍ବତୀର ପ୍ରଧାନ ବିଷୟ ରାଜାଙ୍କ ନିଜ ଦୁହିତା ସହିତ ସହବାସ । ମାତ୍ର କବି ପାର୍ବତୀର ଏହି ଅଂଶ କୌଶଲ୍ୟାର କଥାରେ ଭଲରୂପେ ଚିତ୍ରିତ କରିପାରି ନାହାନ୍ତି । ଏମନ୍ତ କି ରାଜା ପ୍ରଥମେ ଆସି କୌଶଲ୍ୟା କୁ ପ୍ରଶ୍ନ କରିବାଠାରୁ ''ପାପ ପରିପାକ'' ଯାଏ ଘଟନାବଳୀ ପରସ୍ପର ନିତାନ୍ତ ବିରୋଧୀ ହୋଇ ପଡ଼ିଅଛି । କବିତାର ପ୍ରଧାନ ବିଷୟ ଏପରି ଦୋଷରେ ଦୂଷିତ ହେବା ମହତ୍ ଦୋଷ । ଏହି ଦୁଇ ବିଷୟରେ କବିଙ୍କର 'କାରିଗରି' ଆମ୍ଭମାନଙ୍କୁ ଭଲଲାଗିନାହିଁ । ଏ ଛଡ଼ା ପ୍ରାକୃତିକ ବର୍ଣ୍ଣନା ଇତ୍ୟାଦିରେ କବିଙ୍କ କାରିଗରି ଉତ୍ତମ ହୋଇଅଛି ।

ଆମ୍ଭେମାନେ ଉପରେ ଯେଉଁ ଦୋଷସବୁ ଦେଖାଇଲୁଁ ତାହା କେବଳ ଉତ୍କଳ ଶିକ୍ଷା ବିଭାଗର ଶୀର୍ଷସ୍ଥାନୀୟ କବିଙ୍କ ରଚିତ ନୁହେଁ ବୋଲି ବ୍ୟକ୍ତ କଲୁଁ । ଏହାଙ୍କ ଲେଖା ଯେପରି ବିଶଦ ଓ ରସମୟ ତହିଁକି ଉପରୋକ୍ତ ଦୋଷମାନ ନ ଥିଲେ 'ପାର୍ବତୀ' କାବ୍ୟ ଉତ୍କଳସାହିତ୍ୟର ଗୋଟିଏ ଅତି ଉତ୍କୃଷ୍ଟ ଗ୍ରନ୍ଥ ହୋଇଥାନ୍ତା ସନ୍ଦେହ ନାହିଁ ।''

'ଉତ୍କଳ ଦୀପିକା'ରେ 'ପାର୍ବତୀ'ର ଉପରୋକ୍ତ ସମାଲୋଚନାର ଏକ ଉତ୍ତର ସମ୍ବଲପୁର ହିତୈଷିଣୀ (୩/୨୫; ୨/୧୨/୧୮୯୧, ପୃ.୯୯)ରେ ପ୍ରକାଶିତ ହୋଇଥିଲା । 'ଓଡ଼ିଆ ଓ ନବସମ୍ବାଦ' (୬/୨୨; ୩୦/୩/୧୮୯୨)ରେ ରାଧାନାଥଙ୍କ ନିକଟ ସମ୍ପର୍କରେ ଆସିଥିବା କେହି ଜଣେ ଆଲୋଚକ (ବୋଧହୁଏ ଏହି ଅଜ୍ଞାତନାମା ଲେଖକ ଲାଲା ରାମନାରାୟଣ ରାୟ) ପାର୍ବତୀ ସମ୍ପର୍କରେ ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହା 'ପାର୍ବତୀ କାବ୍ୟର ଉପସଂହାର' ଅଂଶର ଯାଥାର୍ଥ୍ୟକୁ ପ୍ରତିଷ୍ଠିତ କରେ । ସେହି ଆଲୋଚନାରେ କୁହାଯାଇଥିଲା—''ପାର୍ବତୀରେ ଯେଉଁ ଉଚ୍ଚ ଭାବଗୁଡ଼ିକ ଯେପରି ଭାବରେ ବ୍ୟକ୍ତ ହୋଇଅଛି, ତାହା କି ପ୍ରାଚୀନ କି ଆଧୁନିକ କାହିଁରେ ନାହିଁ । ଏଥି ଉପରେ ପୁଣି ବିଶେଷତ୍ୱ ଅଛି । ଉତ୍କଳର ପ୍ରାଚୀନ କବିମାନେ କଳ୍ପନାସେବକ ଥିଲେ, ଶ୍ରୀ-ସେବକ ପ୍ରାୟ କେହି ଥିଲେ ନାହିଁ । ପାର୍ବତୀପ୍ରଣେତା ଏହି ଅଭାବ ଘୁଞ୍ଚାଇ ଅଛନ୍ତି । କମଳା-ବିଳାସ-ଭୂମି ଛବିକ 'ଉତ୍କଳ' ଦେଶର ଛବିମାନ ପାର୍ବତୀର ଅବୟବରେ ଇତସ୍ତତଃ ଅନୁସ୍ୟୂତ ହୋଇ କାବ୍ୟର ଗୌରବକୁ ବର୍ଦ୍ଧିତ କରିଅଛି । ଅଗମ୍ୟାଗମନ ରୂପକ ବିଷୟ-ଦୋଷହିଁ କାବ୍ୟର ଏକମାତ୍ର ଗୌରବ ହାନିକର । କିନ୍ତୁ କାବ୍ୟ ସମ୍ପୂର୍ଣ୍ଣ ହୋଇଥିଲେ ଏ ଦୋଷ ଏତେ ଗାଢ଼ ବୋଧ ହୁଅନ୍ତା ନାହିଁ । କାରଣ ଅଗମ୍ୟାଗମନ ଅବାନ୍ତର ବିଷୟ ମାତ୍ର । କାବ୍ୟର ପ୍ରଧାନ ବିଷୟର ଅବତାରଣା ହେବାକୁ ବହୁତ ବିଳମ୍ବ ଥିଲା । ଅନୁଧାବନଶୀଳ ପାଠକ ପ୍ରଥମ ପାଠରେହିଁ ଦେଖିପାରିଥିବେ ଯେ, କାବ୍ୟ ମଧ୍ୟ[illegible] 'ପାର୍ବତୀ' ଶବ୍ଦଟି ତିନିଥରରୁ ଅଧିକ ବ୍ୟବହୃତ

ହୋଇନାହିଁ; ଅଥଚ କାବ୍ୟର ନାମ 'ପାର୍ବତୀ'। କାବ୍ୟ ଶେଷ ହୋଇଥିଲେ ସେଥିରେ ତିନୋଟି ଦୁର୍ଘଟନାର ଚିତ୍ର ଥା'ନ୍ତା। ତନ୍ମଧ୍ୟରୁ ପ୍ରଥମଟି ଲୋମହର୍ଷଣ, ଦ୍ୱିତୀୟଟି କରୁଣ, ତୃତୀୟଟି ଅଘମର୍ଷଣ ବା ପ୍ରଥମଟିର ପ୍ରାୟଶ୍ଚିତ୍ତକର। କାବ୍ୟର ପ୍ରଧାନ ଅବଲମ୍ବନ ଏହି ଶେଷୋକ୍ତ ବିଷୟଟି କବିଙ୍କ ସଙ୍କଳ୍ପ, ଅତୀତର ଗର୍ବ ଓ ଇତିହାସର କଙ୍କାଳରେ ରହିଅଛି, କାବ୍ୟରେ ବିନ୍ୟସ୍ତ ହୋଇନାହିଁ।''

(୧୧) ଚିଲିକା – ସେପ୍ଟେମ୍ବର, ୧୮୯୧। 'ଉତ୍କଳପ୍ରଭା' ମାସିକ ପତ୍ରିକାର ପ୍ରଥମ ବର୍ଷ ଷଷ୍ଠ ସଂଖ୍ୟାରେ (ସେପ୍ଟେମ୍ବର, ୧୮୯୧, ପୃ. ୧୪୪-୧୬୫)ରେ ପ୍ରକାଶିତ। ଗୋଟିଏ ମାସ ପରେ କାବ୍ୟଟି ସମ୍ବଲପୁର ହିତୈଷିଣୀ [୩/୨୧, ୪।୧୧।୧୮୯୧) ଓ ୩/୨୨ (୧୧।୧୧।୧୮୯୧)]ରେ ପୁନଃମୁଦ୍ରିତ। ପୁନଃମୁଦ୍ରଣ କରିବା ପୂର୍ବରୁ 'ଚିଲିକା' ସମ୍ପର୍କରେ ନିଜର ପ୍ରତିକ୍ରିୟା ପ୍ରକାଶ କରି 'ସମ୍ବଲପୁର ହିତୈଷିଣୀ'ର ତତ୍କାଳୀନ ସମ୍ପାଦକ ନୀଳମଣି ବିଦ୍ୟାରତ୍ନ ଲେଖିଥିଲେ –

''ଷଷ୍ଠ ସଂଖ୍ୟା 'ଉତ୍କଳପ୍ରଭା' ଆମ୍ଭମାନଙ୍କର ହସ୍ତଗତ ହୋଇଅଛି। ଏହି ସଂଖ୍ୟାରେ ଗୋଟିଏ ମାତ୍ର ପଦ୍ୟ ପ୍ରବନ୍ଧ ଅଛି, ସେହି ପ୍ରବନ୍ଧର ନାମ ଚିଲିକା। ଚିଲିକା ଉତ୍କଳର ଏକମାତ୍ର ପ୍ରଧାନ ହ୍ରଦ ଏବଂ ଏହା ପୁରୀ ଜିଲ୍ଲାର (ଦକ୍ଷିଣ-ପୂର୍ବୋପକୂଳରେ ଅବସ୍ଥିତ ଅଟେ)। ଏହି ପ୍ରବନ୍ଧର ଲେଖକ 'ପାର୍ବତୀ' ପ୍ରଭୃତି ଗ୍ରନ୍ଥ-ପ୍ରଣେତା କବିବର ଶ୍ରୀଯୁକ୍ତ ରାଧାନାଥ ରାୟ ଅଟନ୍ତି। ଉତ୍କଳପ୍ରଭାର ପୂର୍ବ ଦୁଇ ସଂଖ୍ୟାରେ ପାଞ୍ଚ/ସାତଗୋଟି ଲେଖାଏଁ ପ୍ରବନ୍ଧ ରହୁଥିବାର ଦେଖିଅଛୁଁ; କିନ୍ତୁ ଏଥର ପ୍ରଭା ଗୋଟିଏ ମାତ୍ର ପ୍ରବନ୍ଧ ଧାରଣ କରିଥିଲେହେଁ ପୂର୍ବାପେକ୍ଷା ଅନେକ ଅଧିକ ଗୁଣରେ ନିଜର ପ୍ରଭା ବିସ୍ତାର କରିଅଛି। ଆମ୍ଭେମାନେ ଆଶା କରୁଁ, ପାଠକମାନେ ଉତ୍କଳପ୍ରଭା ସମ୍ପାଦକଙ୍କ ନିକଟକୁ ବାରିପଦା, ମୟୂରଭଞ୍ଜ ଠିକଣାରେ ଦଶଗୋଟି ଲେଖାଏଁ ପଇସା ପଠାଇ ଅନ୍ତତଃ ଏହି ଷଷ୍ଠସଂଖ୍ୟାର ଉତ୍କଳପ୍ରଭା ଗ୍ରହଣ କରିବାକୁ ବିମୁଖ ହେବେ ନାହିଁ।

ଚିଲିକାହ୍ରଦ ଉତ୍କଳୀୟ ପାଠକବୃନ୍ଦଙ୍କଠାରେ ସୁପରିଚିତ, ମାତ୍ର ଯେଉଁମାନେ ଉକ୍ତ ହ୍ରଦ ସ୍ୱଚକ୍ଷୁରେ ସନ୍ଦର୍ଶନ କରି ତା'ର ଅତୁଳନୀୟ ଶୋଭା ଅନୁଭବ କରିନାହାନ୍ତି ସେମାନଙ୍କ ନିକଟରେ ତାହା ଗୋଟିଏ ଶୁଷ୍କ ଭୌଗୋଳିକ ଆଖ୍ୟା ମାତ୍ର। ଭୌଗୋଳିକ ଚିଲିକା ଏବଂ କବିକଳ୍ପିତ ଚିଲିକାର ପ୍ରଭେଦ ଦେଖାଇବା ଉଦ୍ଦେଶ୍ୟରେ ଆମ୍ଭେମାନେ 'ଉତ୍କଳ-ପ୍ରଭା'ରୁ ନିମ୍ନାଙ୍କିତ ପଦ୍ୟ ଉଦ୍ଧୃତ କରିଦେଲୁଁ। 'ଉତ୍କଳପ୍ରଭା'ରେ ପ୍ରକଟିତ ପଦ୍ୟର ଏକ ଏକ ସ୍ଥାନରେ କାରଣବଶତଃ କେତେଗୁଡ଼ିଏ ପଙ୍କ୍ତି ସନ୍ନିବିଷ୍ଟ ହୋଇ-ନଥିଲା। ନିମ୍ନାଙ୍କିତ ପଦ୍ୟରେ ସେହି ପଙ୍କ୍ତିମାନ ଯଥାସ୍ଥାନରେ ସନ୍ନିବିଷ୍ଟ ହେଲା। ମନୋଯୋଗର ସହିତ ପାଠ କଲେ ପ୍ରକୃତ ଅଧିକାରୀ ପାଠକମାନେ କବି-ଚାତୁର୍ଯ୍ୟରେ ବିମୁଗ୍ଧ ହେବେ।'' (ପୃ.୮୨)

'ଚିଲିକା' କାବ୍ୟ ସ୍ୱତନ୍ତ୍ର ପୁସ୍ତିକାକାରରେ 'ମୟୂରଭଞ୍ଜ ପ୍ରେସ୍'ରୁ ସେହି ୧୮୯୧ ମସିହାରେ ପୁନଃମୁଦ୍ରିତ ହୋଇ ପ୍ରକାଶିତ ହୋଇଥିଲା। ଏଠାରେ ସୂଚନାଯୋଗ୍ୟ ଯେ 'ଉତ୍କଳପ୍ରଭା'ରେ ପ୍ରକାଶିତ ଚିଲିକାରେ ଥିଲା ୩୭୪ଟି ପଦ, କିନ୍ତୁ 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶିତ ଚିଲିକାରେ ଥିଲା ୪୩୫ଟି ପଦ। 'ଚିଲିକା'ର ପ୍ରଥମ ସଂସ୍କରଣ ଓ ପରେ ପ୍ରକାଶିତ 'ରାଧାନାଥ ଗ୍ରନ୍ଥାବଳୀ'ରେ 'ଉତ୍କଳପ୍ରଭା'ର ଚିଲିକାହିଁ ପୁନଃମୁଦ୍ରିତ। 'ସମ୍ବଲପୁର ହିତୈଷିଣୀ'ରେ ଅଧିକ ଥିବା ୬୧ଟି ପଦର ଏ ପର୍ଯ୍ୟନ୍ତ ପୁନରୁଦ୍ଧାର ହୋଇପାରି ନାହିଁ।

ଚିଲିକା ପୁସ୍ତକାକାରରେ ପ୍ରକାଶିତ ହେଲାପରେ ସମକାଳୀନ ପତ୍ରପତ୍ରିକାରେ ତାହା ଉଚ୍ଛ୍ୱସିତ ପ୍ରଶଂସା ଲାଭ କରିଥିଲା। ବାଲେଶ୍ୱର ସମ୍ବାଦବାହିକାରେ ପ୍ରେରିତ ପତ୍ର ସ୍ତମ୍ଭରେ କେହି ଜଣେ ଏହାକୁ 'ଅଭିନବ ସୃଷ୍ଟି' ଭାବରେ ଆଖ୍ୟାୟିତ କରିଥିଲେ। (୨୪/୪୮, ୧୪।୧୧।୯୧)। 'ସମ୍ବଲପୁର ହିତୈଷିଣୀ (୩/୨୬; ୯।୧୨।୧୮୯୧)ରେ ଦାମୋଦର ମିଶ୍ର ଶର୍ମା ମଧ 'ଚିଲିକା'ର ପ୍ରଶଂସା କରି ଏକ ଦୀର୍ଘ ପତ୍ର ପ୍ରକାଶ କରିଥିଲେ। ନାରୀକବି ନଗେନ୍ଦ୍ରବାଳା ଚିଲିକାର ଏକ ବଙ୍ଗଳାନୁବାଦ ବୀରଭୂମ ଜିଲ୍ଲାର ବାଂଶବେଡିୟାରୁ ପ୍ରକାଶିତ 'ପୂର୍ଣ୍ଣିମା' ପତ୍ରିକାର ନବମବର୍ଷ ଚତୁର୍ଥ-ପଞ୍ଚମ-ଷଷ୍ଠ ସଂଖ୍ୟା (ଜୁଲାଇ-ଅଗଷ୍ଟ-ସେପ୍ଟେମ୍ବର, ୧୯୦୧)ରେ ପ୍ରକାଶ କରିଥିଲେ।

(୧୨) ମହାଯାତ୍ରା – (୧୮୯୨/୯୬) 'ମହାଯାତ୍ରା' ପଞ୍ଚମ ସର୍ଗର ପ୍ରଥମାଂଶ ପ୍ରଥମେ 'ଓଡ଼ିଆ ଓ ନବସମ୍ବାଦ' ସାପ୍ତାହିକ ପତ୍ର (୬/୧୬; ୧୭।୨।୧୮୯୨)ରେ ପ୍ରକାଶିତ ହୋଇଥିଲା। ପରେ ପ୍ରଥମ ସର୍ଗଠାରୁ ସପ୍ତମ ସର୍ଗ ପର୍ଯ୍ୟନ୍ତ

'ଉତ୍କଳପ୍ରଭା'ର ଦ୍ୱିତୀୟ ବର୍ଷ ତୃତୀୟ ସଂଖ୍ୟା (ଜୁନ୍, ୧୮୯୨) ଠାରୁ କ୍ରମାନ୍ୱୟରେ ପ୍ରକାଶିତ। ସମକାଳରେ ଏହା ସମ୍ବଲପୁର ହିତୈଷିଣୀ (୪/୩୩; ୧୮।୧।୯୩ ଠାରୁ ଆରମ୍ଭ)ରେ ମଧ୍ୟ ପୁନଃମୁଦ୍ରିତ। ୧୮୯୬ ମସିହାରେ ଏହା ପୁସ୍ତକାକାରରେ କଟକର 'ରାୟ ପ୍ରେସ୍'ରେ ମୁଦ୍ରିତ ହୋଇ କନିକାର ରାଣୀ କୃଷ୍ଣପ୍ରିୟା ପାଟମହାଦେଈଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା।

୧୮୯୬ ମସିହାରେ ପୁସ୍ତକାକାରରେ ଅସମ୍ପୂର୍ଣ୍ଣ 'ମହାଯାତ୍ରା' ପ୍ରକାଶିତ ହେଲା ପରେ, ଏହା ସମ୍ପର୍କରେ ଅଜସ୍ର ଆଲୋଚନା ପ୍ରକାଶ ପାଇଥିଲା। କେବଳ ସମ୍ବଲପୁର ହିତୈଷିଣୀରେ ମଧୁସୂଦନ ମିଶ୍ର (୭/୪୭; ୩୦।୩।୧୮୯୬), ଶ୍ରୀ ସାହିତ୍ୟସେବକ (୭/୪୭; ୩୦।୩।୧୮୯୬), ସଦାଶିବ ମିଶ୍ର (୭/୫୦; ୨୦।୪।୧୮୯୬), ଭୋଳାନାଥ ସାମନ୍ତରାୟ ('ଅତୀତକାଳ ଓ କବି ରାଧାନାଥ ରାୟଙ୍କର ମହାଯାତ୍ରା', ୮/୬ (୮।୭।୧୮୯୬) ଓ 'ମହାଯାତ୍ରା ଓ କବି ରାଧାନାଥ ରାୟ' ୮/୨୫ (୧୮।୧୧।୧୮୯୬) ଭାଗୀରଥି ରଥ (୮/୧୪; ୨।୯।୧୮୯୬) ଓ ସଂପାଦକ ନୀଳମଣି ବିଦ୍ୟାରତ୍ନ (୮/୨୭; ୨।୧୨।୧୮୯୬) ପ୍ରମୁଖଙ୍କର ମହାଯାତ୍ରା ସମ୍ପର୍କରେ ଆଲୋଚନା ପ୍ରକାଶିତ। ଏହି ସମସ୍ତ ଆଲୋଚନା ଥିଲା ପ୍ରଶଂସାମୂଳକ। ୧୮୯୭ 'ସାରଳାଦାସ' ନାମକ ଛଦ୍ମବେଶୀ ଲେଖକଙ୍କର 'ସମାଲୋଚନା' ଶୀର୍ଷକ ଯେଉଁ ପୁସ୍ତକ ପ୍ରକାଶିତ ହୋଇଥିଲା ତାହା 'ମହାଯାତ୍ରା'ର ପ୍ରତିଷ୍ଠାକୁ ଅନେକାଂଶରେ କ୍ଷୁଣ୍ଣ କରିଥିଲା। 'ମହାଯାତ୍ରା'ର ପ୍ରଥମ ସର୍ଗ ନଗେନ୍ଦ୍ରବାଳା ସରସ୍ୱତୀଙ୍କ ଦ୍ୱାରା ବଙ୍ଗଳାରେ ଅନୂଦିତ ହୋଇ ପୂର୍ବୋକ୍ତ ପୂର୍ଣ୍ଣିମା ପତ୍ରିକାର ବିବିଧ ସଂଖ୍ୟାରେ ପ୍ରକାଶିତ ହୋଇଥିଲା।

(୧୩) ପ୍ରେରିତ ପତ୍ର– ୧୮୯୪। ଇନ୍ଦ୍ରଧନୁ-ବିଜୁଳି ବିବାଦ ସମୟରେ ନିଜ ସ୍ଥିତିକୁ ସ୍ପଷ୍ଟ କରିବାପାଇଁ ରାଧାନାଥ ଯେଉଁ ପତ୍ର ୫।୨।୧୮୯୪ ତାରିଖରେ ଲେଖିଥିଲେ ତାହା 'ଓଡ଼ିଆ ଓ ନବସମ୍ବାଦ'ର ଅଷ୍ଟମବର୍ଷ ବିଂଶତି ସଂଖ୍ୟା (୧୪।୩।୧୮୯୪)ରେ ପ୍ରକାଶିତ ହୋଇଥିଲା। ଉକ୍ତ ପତ୍ରଟିର ପ୍ରକାଶନ ଫଳରେ ଇନ୍ଦ୍ରଧନୁ-ବିଜୁଳି ବିବାଦର ଆପାତତଃ ଅବସାନ ଘଟିଥିଲେ ହେଁ ବିଶ୍ୱନାଥ କର ପ୍ରମୁଖ ଏଥିପାଇଁ ରାଧାନାଥଙ୍କର ପତ୍ରକୁ ସ୍ୱବିରୋଧୀ କହି ବିରକ୍ତି ପ୍ରକାଶ କରିଥିଲେ।

(୧୪) ଯଯାତିକେଶରୀ– ୧୮୯୪/୯୫। ଏହାର ପ୍ରଥମ ସର୍ଗର କେତେକାଂଶ ପ୍ରଥମେ 'ଉତ୍କଳପ୍ରଭା' (୪/୩; ଜୁନ୍, ୧୮୯୪)ରେ ପ୍ରକାଶିତ। ପରେ ପରେ ସମଗ୍ର କାବ୍ୟଟି ସମ୍ବଲପୁର ହିତୈଷିଣୀର ଷଷ୍ଠ ବର୍ଷ ସପ୍ତଦଶ ସଂଖ୍ୟା (୨୬।୯।୧୮୯୪)ରୁ ଆରମ୍ଭ ହୋଇ ସପ୍ତମ ବର୍ଷ ଷଷ୍ଠ ସଂଖ୍ୟା (୧୦।୭।୧୮୯୫)ରେ ପରିସମାପ୍ତ ହୋଇଥିଲା। ପୁସ୍ତକାକାରରେ ଏହା ୧୮୯୫ ମସିହାରେ ବାମଣ୍ଡାର ସୁଦ୍ଦଳ ଯନ୍ତ୍ରରେ ମୁଦ୍ରିତ ହୋଇ ନୀଳମଣି ମିଶ୍ରଶର୍ମା (ବିଦ୍ୟାରତ୍ନ)ଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା। ଏଠାରେ ସୂଚନାଯୋଗ୍ୟ ଯେ 'ଯଯାତିକେଶରୀ' ପ୍ରଥମେ 'ଉତ୍କଳପ୍ରଭା'ରେ ପ୍ରକାଶିତ ହେଲାବେଳେ ସେଥିରେ ଲେଖକଙ୍କ ନାମକୁ ଗୁପ୍ତ ରଖାଯାଇଥିଲା।

'ଉତ୍କଳପ୍ରଭା'ରେ ଯଯାତିକେଶରୀ ପ୍ରକାଶିତ ହେଲା ପରେ ପରେ ସମ୍ବଲପୁର ହିତୈଷିଣୀର ଷଷ୍ଠ ବର୍ଷ ତ୍ରୟୋଦଶ ସଂଖ୍ୟା (୨୯।୮।୧୮୯୪)ରେ ଏହାର ଏକ ସମାଲୋଚନା ପ୍ରକାଶ କରିଥିଲେ ବନମାଳୀ ନାୟକ। 'ଯଯାତିକେଶରୀ'କୁ ନିର୍ଦ୍ଦୋଷ ଆଦିରସାତ୍ମକ କାବ୍ୟର ସାର୍ଥକ ଦୃଷ୍ଟାନ୍ତ କହିଲା ପରେ ଏହାର ଲେଖକ ଯେ ରାଧାନାଥ, ତାହା ସେ ସ୍ପଷ୍ଟତଃ ପ୍ରକାଶ କରିଥିଲେ। ସେହି ସମ୍ବଲପୁର ହିତୈଷିଣୀର ଷଷ୍ଠବର୍ଷ ସପ୍ତଦଶ ସଂଖ୍ୟା (୨୬।୯।୧୮୯୪)ରେ 'ଜଣେ ପାଠକ' ଛଦ୍ମନାମରେ ବିଶ୍ୱନାଥ କର 'ଯଯାତିକେଶରୀ' ଯେ ରାଧାନାଥଙ୍କ କବିପ୍ରତିଭାର ଉପଯୁକ୍ତ ନୁହେଁ ତାହା ପ୍ରକାଶ କରନ୍ତି। ବିଶ୍ୱନାଥ କରଙ୍କ ଆଲୋଚନା ପ୍ରକାଶିତ ହେବାର ତିନି ସପ୍ତାହ ପରେ ଲାଲା ରାମନାରାୟଣ ରାୟ ଯଯାତିକେଶରୀ (ଆଲୋଚନା) ଶୀର୍ଷକରେ ଏକ ଦୀର୍ଘ ପ୍ରବନ୍ଧ 'ସମ୍ବଲପୁର ହିତୈଷିଣୀ' (୬/୨୦; ୧୭।୧୦।୧୮୯୪)ରେ ପ୍ରକାଶ କରନ୍ତି। ଲାଲାଙ୍କ ପ୍ରବନ୍ଧରେ କୁହାଯାଇଥିଲା :

..."ମୋହ ମତରେ 'ମହାଯାତ୍ରା', 'ତୁଳସୀ ସ୍ତବକ' ଏବଂ 'ଚିଲିକା' ରଚୟିତାଙ୍କ ଗୌରବ 'ଯଯାତିକେଶରୀ' ପ୍ରକାଶଦ୍ୱାରା (ଇହ ବଂଶୀୟଙ୍କଠାରେ ପ୍ରଶଂସିତ ହେଲେ ମଧ୍ୟ ଭବିଷ୍ୟତ୍ ବଂଶୀୟଙ୍କଠାରେ) ଅଣୁମାତ୍ର ବର୍ଦ୍ଧିତ ହୋଇନାହିଁ।... ମୋହ ମତରେ ଯାହା କାବ୍ୟଜଗତ୍‌ର ଉତ୍କୃଷ୍ଟ ବସ୍ତୁ, ଯାହା କାବ୍ୟ ରଚନାର ଚରମୋତ୍କର୍ଷ, ପୁଣି ଯାହା କାବ୍ୟପାଠର ସ୍ଥାୟୀ ଓ ଚରମଫଳ ତାହା 'ଯଯାତିକେଶରୀ'ରେ କାହିଁ ?"

(୧୫) ଭୂଦେବ ପ୍ରସଙ୍ଗ – (୧୮୯୪) ଭୂଦେବ ମୁଖୋପାଧ୍ୟାୟଙ୍କ ଦେହାନ୍ତ ହୁଏ ୧୪।୫।୧୮୯୪ ତାରିଖରେ। ରାଧାନାଥ ଭୂଦେବଙ୍କ ସମ୍ପର୍କରେ ଏକ ପଦ୍ୟ ୧୨।୬।୧୮୯୪ରେ ରଚନା କରି ବଙ୍ଗଳାର 'ବଙ୍ଗବାସୀ' ସାପ୍ତାହିକ ପତ୍ରର ୨୩।୬।୧୮୯୪ ସଂଖ୍ୟାରେ ପ୍ରକାଶ କରନ୍ତି। ଏହି ପତ୍ରର କେତେକାଂଶ ଅନୂଦିତ ହୋଇ 'ଭୂଦେବଙ୍କ ଉପଦେଶ' ଶୀର୍ଷକରେ ସମ୍ବଲପୁର ହିତୈଷିଣୀରେ (୬/୮; ୨୫।୭।୧୮୯୪)ରେ ପ୍ରକାଶିତ। ଉତ୍କଳ ଦୀପିକାର ଊର୍ନ୍ତ୍ରିଂଶ ବର୍ଷ ସପ୍ତବିଂଶ ସଂଖ୍ୟା (୭।୭।୧୮୯୪) ସଂଖ୍ୟାରେ ପ୍ରକାଶିତ 'କବି ଉପେନ୍ଦ୍ରଭଞ୍ଜ ଓ ରାଧାନାଥ ରାୟ' ଶୀର୍ଷକ ସମ୍ପାଦକୀୟ ଆଲୋଚନାରେ ରାଧାନାଥଙ୍କ ଏହି ବଙ୍ଗଳାପଦ୍ୟ ଆଲୋଚିତ। 'ସମ୍ବଲପୁର ହିତୈଷିଣୀ'ର ସମ୍ପାଦକ ଷଷ୍ଠବର୍ଷ ୨୯ ମ ସଂଖ୍ୟା (୮।୮।୧୮୯୪)ରେ ପ୍ରକାଶିତ 'କବିବର ରାଧାନାଥ ରାୟ' ଶୀର୍ଷକ ରଚନାରେ ଏ ସମ୍ପର୍କରେ ମନ୍ତବ୍ୟ ପ୍ରକାଶ କରି ଲେଖିଥିଲେ – "ବର୍ତ୍ତମାନ ଘଟିଥିବା ଭଞ୍ଜୀୟ ଆନ୍ଦୋଳନରେ କବିବର ରାଧାନାଥ ରାୟ ଗୁପ୍ତଭାବରେ ଲିପ୍ତ ଥିବା କଥା ଅନେକ ସନ୍ଦିଗ୍ଧମନା ଲୋକଙ୍କର ବିଶ୍ୱାସ। ସେମାନେ ସେହି ବିଶ୍ୱାସର ବଶବର୍ତ୍ତୀ ହୋଇ ପତ୍ରିକା ସାହାଯ୍ୟରେ ଓ ଅନ୍ୟାନ୍ୟ ଉପାୟରେ ରାଧାନାଥ ବାବୁଙ୍କୁ ଅନୁଚିତ ରୂପେ ଆକ୍ରମଣ କରିଅଛନ୍ତି ଓ କରୁଅଛନ୍ତି। 'ଓଡ଼ିଆ ଓ ନବସମ୍ବାଦ'ରେ ଏବଂ 'ବଙ୍ଗବାସୀ'ରେ ଭଞ୍ଜଙ୍କ ସମ୍ବନ୍ଧେ ରାଧାନାଥବାବୁଙ୍କ ମତ ପାଠକରି ସେମାନେ ଏବେ ବଡ଼ ହରବରରେ ପଡ଼ିଅଛନ୍ତି।"

(୧୬) ବନ୍ୟପୁଷ୍ପାଞ୍ଜଳି ଦ୍ୱିତୀୟଭାଗ [ସଂକ୍ଷିପ୍ତ ସମାଲୋଚନା], ୧୮୯୪। ଏହା ରାଜନାରାୟଣ ଦାସଙ୍କ ପୁସ୍ତକର ଏକ ସମୀକ୍ଷା। ସମ୍ବଲପୁର ହିତୈଷିଣୀ (୬/୬; ୧୧।୭।୧୮୯୪)ରେ ପ୍ରକାଶିତ ଲେଖାର ସମୟ ୨।୭।୧୮୯୪ତାରିଖ।

(୧୭) ତୁଳସୀସ୍ତବକ – ୧୮୯୪। ଏକ କ୍ଷୁଦ୍ର ପୁସ୍ତିକା ଆକାରରେ ଏହା 'ରାୟ ପ୍ରେସ୍'ରେ ମୁଦ୍ରିତ। ୧୮୯୪ ମସିହା ଜୁଲାଇ/ଅଗଷ୍ଟ ମାସରେ ପ୍ରକାଶିତ ହେଲା ପରେ ଏହା ଉଚ୍ଛ୍ୱସିତ ପ୍ରଶଂସା ଲାଭ କରିଥିଲା। 'ବାଲେଶ୍ୱର ସମ୍ବାଦବାହିକାର ରାଜନାରାୟଣ ଦାସଙ୍କ ତୁଳସୀସ୍ତବକର ପ୍ରଶସ୍ତିସୂଚକ କବିତା (୨୭/୩୨; ୯।୮।୧୮୯୪), ଭୋଳାନାଥ ସାମନ୍ତରାୟଙ୍କ 'କବି ରାଧାନାଥ ରାୟ ଓ ତୁଳସୀ ସ୍ତବକ' (୨୭/୩୬; ୬।୯।୧୮୯୪); 'ଓଡ଼ିଆ ଓ ନବସମ୍ବାଦ'ରେ ଆର୍ତ୍ତତ୍ରାଣ ଶତପଥୀଙ୍କ ତୁଳସୀସ୍ତବକ (୮/୪୯; ୩।୧୦।୧୮୯୪); ଉତ୍କଳ-ଦୀପିକାର 'ପୁସ୍ତକପ୍ରାପ୍ତି' ଶୀର୍ଷକରେ ଆଲୋଚନା (୨୯/୩୮; ୨୨।୯।୧୮୯୪) ଓ ସମ୍ବଲପୁର ହିତୈଷିଣୀରେ ସମ୍ପାଦକୀୟ ଆଲୋଚନା 'ତୁଳସୀସ୍ତବକ' (୬/୧୪; ୫।୯।୧୮୯୪), ଭୋଳାନାଥ ସାମନ୍ତରାୟଙ୍କ 'ରାୟକବି ଓ ତୁଳସୀସ୍ତବକଦ୍ୱୟ' (୬/୨୬; ୨୮।୧୧।୧୮୯୪ ଓ ୬/୩୦, ୨୫।୧୨।୧୮୯୪) ତଥା ତୁଳସୀସ୍ତବକ (୭/୨୩; ୨୦।୧୧।୧୮୯୫) ଆଦି ପ୍ରକାଶିତ ରଚନା ଏହାର ଦୃଷ୍ଟାନ୍ତ।

(୧୮) ଦରବାର – ୧୮୯୪/୯୭। ଲେଖକଙ୍କ ନାମ ନ ଥାଇ ଏହାର ଶେଷାଂଶ ସମ୍ବଲପୁର ହିତୈଷିଣୀ (୬/୨୧; ୨୪।୧୦।୧୮୯୪)ରେ ପ୍ରକାଶିତ। ପରେ ସମଗ୍ର କାବ୍ୟଟି 'ଉତ୍କଳ-ସାହିତ୍ୟ'ର ପ୍ରଥମ ବର୍ଷ ପ୍ରଥମ ସଂଖ୍ୟା (ଜାନୁଆରୀ, ୧୮୯୭) ଠାରୁ ସେହି ବର୍ଷ ଚତୁର୍ଥ ସଂଖ୍ୟା (ଏପ୍ରିଲ, ୧୮୯୭) ପର୍ଯ୍ୟନ୍ତ କ୍ରମାନ୍ୱୟରେ ଚାରୋଟି ସଂଖ୍ୟାରେ ପ୍ରକାଶିତ। 'ଉତ୍କଳ-ସାହିତ୍ୟ'ରେ ପ୍ରକାଶିତ 'ଦରବାର'ରେ ମଧ୍ୟ କବିଙ୍କ ନାମ ନ ଥିଲା। ପରେ ସମଗ୍ର କାବ୍ୟଟି ୧୮୯୮ ମସିହାରେ 'ରାୟପ୍ରେସ୍'ରୁ ପ୍ରକାଶିତ। ପ୍ରକାଶିତ ପୁସ୍ତକର ପାଠ ସହିତ ପତ୍ରିକାରେ ପ୍ରକାଶିତ ପାଠ ମଧ୍ୟରେ କେତେକ ପ୍ରଭେଦ ରହିଛି।

(୧୯) ଉର୍ବଶୀ – ୧୮୯୫/୯୭। ଅସମ୍ପୂର୍ଣ୍ଣ ଆକାରରେ ପ୍ରଥମେ ଏହା 'ଓଡ଼ିଆ ଓ ନବସମ୍ବାଦ' ସାପ୍ତାହିକ ପତ୍ରର ନବମବର୍ଷ ଏକବିଂଶତି ସଂଖ୍ୟା (୨୦।୩।୧୮୯୫)ରେ ପ୍ରକାଶିତ ହୋଇଥିଲା। ପରେ ସେହି ଅସମ୍ପୂର୍ଣ୍ଣ ଆକାରରେ ତାହା ଉତ୍କଳ-ସାହିତ୍ୟ (୧୦/୬, ଜୁନ୍, ୧୮୯୭)ରେ ପୁନଃ-ମୁଦ୍ରିତ। ଏ ସମ୍ପର୍କରେ ମନ୍ତବ୍ୟ ଦେଇ ଉତ୍କଳ-ସାହିତ୍ୟର ସମ୍ପାଦକ ବିଶ୍ୱନାଥ କର ଲେଖିଥିଲେ – "କବିବର ଶ୍ରୀଯୁକ୍ତ ରାଧାନାଥ ରାୟ ମହାଶୟ 'ଉର୍ବଶୀ' ନାମକ ଖଣ୍ଡିଏ କାବ୍ୟର ଅତି ଅଳ୍ପାଂଶ ମାତ୍ର ଲେଖିଥିଲେ। ସେହି ଅଂଶ ୧୮୯୫ ସାଲ ମାର୍ଚ୍ଚ ୨୦ ତାରିଖର 'ଓଡ଼ିଆ ଓ ନବସମ୍ବାଦ'ରେ ପ୍ରକାଶିତ ହୋଇଥିଲା। ତାହା ମଧ୍ୟ ଉତ୍କଳର ଅଧିକାଂଶ ସାହିତ୍ୟରସିକମାନଙ୍କର ଦୃଷ୍ଟିପଥରେ ପଡ଼ିଥିଲା କି ନାହିଁ ସନ୍ଦେହର ବିଷୟ। ବର୍ତ୍ତମାନ ଆମ୍ଭମାନଙ୍କର ବିଶେଷ ଅନୁରୋଧରେ କବିବର ଦୟାକରି 'ଉତ୍କଳ-ସାହିତ୍ୟ'ରେ ପ୍ରକାଶ କରିବାପାଇଁ ପରବର୍ତ୍ତୀ

ଅଂଶମାନ କ୍ରମଶଃ ଲେଖିଦେବାକୁ ପ୍ରତିଶ୍ରୁତି ଦେବାରୁ ଆମ୍ଭେମାନେ ତାଙ୍କ ଅନୁମତିକ୍ରମେ 'ଓଡ଼ିଆ ଓ ନବସମ୍ବାଦ'ରେ ପ୍ରକାଶିତ ଅଂଶ ପୁନର୍ମୁଦ୍ରିତ କଲୁଁ।'' ଏଠାରେ ସୂଚନାଯୋଗ୍ୟ ଯେ ରାଧାନାଥ ପ୍ରତିଶ୍ରୁତି ରକ୍ଷା କରିବାକୁ ଯାଇ 'ଉର୍ବଶୀ'ର ପରବର୍ତ୍ତୀ ଅଂଶ ଲେଖିନାହାନ୍ତି।

(୨୦) ବାମଣ୍ଡା — ୧୮୯୬। 'ଓଡ଼ିଆ ଓ ନବସମ୍ବାଦ' ଦଶମ ବର୍ଷ ପଞ୍ଚଦଶ ସଂଖ୍ୟା (୫।୨।୧୮୯୬)ରୁ ଆରମ୍ଭ ହୋଇ ସେହି ବର୍ଷ ଅଷ୍ଟାଦଶ ସଂଖ୍ୟା (୨୬।୨।୧୮୯୬)ରେ ଶେଷ ହୋଇଛି।

## ଦ୍ୱିତୀୟ ପର୍ଯ୍ୟାୟ (୧୮୯୭-୧୯୦୮)

(୧) ଅଭିନନ୍ଦନର ଉତ୍ତର — ୧୮୯୭। ରାଧାନାଥ 'ରାୟବାହାଦୁର' ଉପାଧି ଲାଭ କଲାପରେ ବାମଣ୍ଡାର ଯୁବରାଜ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ସଭାପତିତ୍ୱରେ ଏକ ଅଭିନନ୍ଦନ ସଭା ବାମଣ୍ଡାରେ ୨୬।୬।୯୭ତାରିଖରେ ଅନୁଷ୍ଠିତ ହୋଇଥିଲା ଓ ଏହାର ବିବରଣୀ ସମ୍ବଲପୁର ହିତୈଷିଣୀର ନବବର୍ଷ ୬ଷ୍ଠ ସଂଖ୍ୟା (୭।୭।୧୮୯୭)ରେ ପ୍ରକାଶିତ ହୋଇଥିଲା। ଏହି ବିବରଣୀର ଏକକିତା ନକଲ ସଭାପତିଙ୍କ ସ୍ୱାକ୍ଷରରେ ରାଧାନାଥଙ୍କୁ ପ୍ରେରିତ ହୋଇଥିଲା। ରାଧାନାଥ ଏହାର ଯେଉଁ ଉତ୍ତର ଦେଇଥିଲେ ତାହା 'ପ୍ରେରିତପତ୍ର' ଶିରୋନାମାରେ ସେହି 'ସମ୍ବଲପୁର ହିତୈଷିଣୀ'ର ନବମବର୍ଷ ଅଷ୍ଟମ ସଂଖ୍ୟା (୨୧।୭।୧୮୯୭)ରେ ପ୍ରକାଶିତ ହୋଇଥିଲା।

(୨) ତିନିବନ୍ଧୁ — ୧୮୯୮। 'ଉତ୍କଳ-ସାହିତ୍ୟ'ର ଦ୍ୱିତୀୟ ବର୍ଷ ଚତୁର୍ଥ ସଂଖ୍ୟା (ଏପ୍ରିଲ, ୧୮୯୮)ରେ ପ୍ରକାଶିତ)।

(୩) ବ୍ୟାକରଣ ପ୍ରବେଶ — ୧୮୯୯। ଶଶିଭୂଷଣ ରାୟଙ୍କ ଦ୍ୱାରା 'କଟକ ପ୍ରିଣ୍ଟିଂ କୋମ୍ପାନୀ'ରେ ମୁଦ୍ରିତ ହୋଇ ପ୍ରକାଶିତ। ଏଥିରେ ସଂଯୁକ୍ତ ଶଶିଭୂଷଣଙ୍କ ବିଜ୍ଞାପନର ସମୟ ୩।୫।୧୮୯୯ତାରିଖ।

(୪) ବ୍ୟାକରଣ ପରିଚୟ — ୧୮୯୯। ଏହା ମଧ୍ୟ କଟକ 'ରାୟପ୍ରେସ୍'ରେ ମୁଦ୍ରିତ ହୋଇ ଶଶିଭୂଷଣ ରାୟଙ୍କ ଦ୍ୱାରା ପ୍ରକାଶିତ। ଏହି ପୁସ୍ତକ ସମ୍ବନ୍ଧରେ ରାଧାନାଥ ଗଙ୍ଗାଧରଙ୍କ ନିକଟକୁ ଲେଖିଥିଲେ — ''ବ୍ୟାକରଣ ପରିଚୟ', 'ବ୍ୟାକରଣ ପ୍ରବେଶ'ର କ୍ଷୁଦ୍ର ସଂସ୍କରଣ ମାତ୍ର''। (କବିଲିପି, ପୃ.୮୬) ଦୁଇ ଭାଗରେ ପ୍ରକାଶିତ ଏହି କ୍ଷୁଦ୍ର ପୁସ୍ତକଟି ସ୍ୱର୍ଗତ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ଦ୍ୱାରା ସମ୍ପାଦିତ 'ରାଧାନାଥ ଗ୍ରନ୍ଥାବଳୀ'ରେ ପୁନର୍ମୁଦ୍ରିତ। କିନ୍ତୁ ତାହାର ପ୍ରକାଶ-କାଳ ସେଠାରେ ଭ୍ରମବଶତଃ ୧୮୮୧ ମସିହା ବୋଲି ଦିଆଯାଇଛି।

(୫) ପଣକିଆବୋଧିନୀ — ୧୮୯୯। 'ବ୍ୟାକରଣ ପରିଚୟ'ର ସମକାଳରେ ଏହା ମୁଦ୍ରିତ। ଏ ପୁସ୍ତକ ସମ୍ପର୍କରେ 'ରାଧାନାଥ ଜୀବନୀ'ରେ କୁହାଯାଇଛି — ''ବ୍ୟାକରଣ ପ୍ରବେଶ ଯେପରି ବହୁ ତଥ୍ୟରେ ପରିପୂର୍ଣ୍ଣ, ପଣକିଆବୋଧିନୀ ସେହିପରି ସମ୍ପୂର୍ଣ୍ଣ ନୂତନ ଧରଣରେ ମାନସାଙ୍କ ଶିକ୍ଷାର ଉପାଦେୟ ପୁସ୍ତିକା। ପଣକିଆବୋଧିନୀ ଆୟତ୍ତ କଲେ ଅଙ୍କ ସମ୍ବନ୍ଧୀୟ ଜଟିଳ ପ୍ରଶ୍ନସମୂହର ସମାଧାନ ଅନାୟାସରେ ହେବ।'' (ପୃ.୩୦୮)

(୬) ଦଶରଥ ବିୟୋଗ — ୧୯୦୧। କଟକର 'ରାୟପ୍ରେସ୍'ରେ ମୁଦ୍ରିତ ଓ ଶଶିଭୂଷଣ ରାୟଙ୍କ ଦ୍ୱାରା ପ୍ରକାଶିତ।

(୭) 'ରାଧାନାଥ-ଗ୍ରନ୍ଥାବଳୀ' — ୧୯୦୨। କଟକସ୍ଥିତ 'ଅରୁଣୋଦୟ ଯନ୍ତ୍ରାଳୟ'ରେ ଏହା ମୁଦ୍ରିତ ଓ ଖଡ଼ିଆଳର ରାଜକୁମାର ଲାଲା ଶିବନାରାୟଣ ଦେବଙ୍କ ଦ୍ୱାରା ପ୍ରକାଶିତ। ମଲାଟ ଉପରେ ବାବୁ ଶଶିଭୂଷଣ ରାୟଙ୍କ ସ୍ୱାକ୍ଷର ଦେଖି ପୁସ୍ତକ କ୍ରୟ କରିବେ — ଏଥିରେ ଏହିପରି ଏକ ସୂଚନା ଥିଲା।

(୮) ନଗେନ୍ଦ୍ରବାଳାଙ୍କ ଜୀବନ-ଚରିତ — ୧୯୦୨। ବଙ୍ଗୀୟ ନାରୀକବି ନଗେନ୍ଦ୍ରବାଳା ସରସ୍ୱତୀଙ୍କ 'ଅମିୟଗାଥା' ପୁସ୍ତକରେ 'ଗ୍ରନ୍ଥକର୍ତ୍ତ୍ରୀର ସଂକ୍ଷିପ୍ତ ଜୀବନୀ' ଶୀର୍ଷକରେ ସଂଯୋଜିତ। ୧।୧।୧୯୦୨ତାରିଖରେ ଏହାର ରଚନା। ସଂପୃକ୍ତ ପୁସ୍ତକଟି ୧୯୦୨ ମସିହାରେ କଲିକତାର 'କାଳିକା-ଯନ୍ତ୍ର'ରେ ଶରଚ୍ଚନ୍ଦ୍ର ଚକ୍ରବର୍ତ୍ତୀଙ୍କ ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ।

(୯) କାଳିଦାସ-ସୂକ୍ତୟଃ — ୧୯୦୨। ସୁଶୀଳ କୁମାର ଚାଟୁର୍ଜ୍ଜୀଙ୍କ ଦ୍ୱାରା ପ୍ରକାଶିତ ଏହି ପୁସ୍ତିକାରେ କାଳିଦାସଙ୍କ ରଘୁବଂଶ, କୁମାରସମ୍ଭବ, ମେଘଦୂତ, ଅଭିଜ୍ଞାନଶାକୁନ୍ତଳ, ମାଳବିକାଗ୍ନିମିତ୍ର ଓ ବିକ୍ର-ମୋର୍ବଶୀ — ଏହି ଛଅଟି କାବ୍ୟ/ନାଟକରୁ ୧୯୧ଟି ସୂକ୍ତ ଦେବନାଗରୀ ଲିପିରେ ସଂକଳିତ। ପ୍ରତ୍ୟେକ ସୂକ୍ତର ଇଂରାଜୀ ଅନୁବାଦ ଓ ଭାବାର୍ଥ ତଥା ବଙ୍ଗଳା ଅନୁବାଦ ଓ ଭାବାର୍ଥ ପ୍ରଦତ୍ତ।

ଏହି ପୁସ୍ତିକାଟିର ସଂକ୍ଷିପ୍ତ ସମାଲୋଚ଼ନା ଓଡ଼ିଆ, ବଙ୍ଗଳା ଓ ଇଂରାଜୀ ଭାଷାର ଅନେକ ପତ୍ରପତ୍ରିକାରେ ପ୍ରକାଶିତ। ସେଥିମଧ୍ୟରୁ କେତୋଟି 'ରାଧାନାଥ ଜୀବନୀ'ରେ ପୁନର୍ମୁଦ୍ରିତ। (ପୃ.୩୮୫-୩୯୪) 'ଉତ୍କଳ-ସାହିତ୍ୟ'ର ସପ୍ତମବର୍ଷ ଚତୁର୍ଥ ସଂଖ୍ୟା (ଜୁଲାଇ, ୧୯୦୩)ରେ ବିଶ୍ୱନାଥ କର 'କାଳିଦାସ ସୂକ୍ତୟଃ'ର ଯେଉଁ ସଂକ୍ଷିପ୍ତ ସମାଲୋଚ଼ନା କରିଥିଲେ, ତାହା ଉଦ୍ଧାରଯୋଗ୍ୟ। "ଶ୍ରୀଯୁକ୍ତ ରାୟ ରାଧାନାଥ ରାୟବାହାଦୁରଙ୍କ ଦ୍ୱାରା ସଙ୍କଳିତ ଏବଂ ଶ୍ରୀଯୁକ୍ତ ସୁଶୀଳ କୁମାର ଚାଟୁର୍ଜୀଙ୍କ ଦ୍ୱାରା ପ୍ରକାଶିତ। ଅମର କବି କାଳିଦାସଙ୍କ ଲେଖାବଳୀ ସୌନ୍ଦର୍ଯ୍ୟ ସଦୁପଦେଶରେ ପରିପୂର୍ଣ୍ଣ। ଆମ୍ଭମାନଙ୍କର ରାୟ-ବାହାଦୁର ମହୋଦୟ ପ୍ରାଚ୍ୟ ଓ ପ୍ରତୀଚ୍ୟ ଉଭୟ କାବ୍ୟସିନ୍ଧୁ ମନ୍ଥନ କରି ରତ୍ନ ସଂଗ୍ରହ କରିବାରେ ସର୍ବଦା ନିବିଷ୍ଟମନା, ବିଶେଷତଃ କାଳିଦାସଙ୍କର ସେ ଜଣେ ନିଷ୍କାପର ଭକ୍ତ। ମହାକବିଙ୍କର ଯେଉଁସବୁ ଉକ୍ତି ସର୍ବଦେଶରେ ଓ ସର୍ବକାଳରେ ଦୃଷ୍ଟାନ୍ତ ବାକ୍ୟ ସ୍ୱରୂପ ପ୍ରଯୋଜ୍ୟ ହୋଇପାରେ, ସେହିଗୁଡ଼ିକ ସଂଗ୍ରହ କରି କବିବର ତାହାର ଇଂରାଜୀ ଓ ବଙ୍ଗଳା ଅନୁବାଦ ଏବଂ ବିଶେଷ ବିଶେଷ ସ୍ଥଳରେ ତାତ୍ପର୍ଯ୍ୟ ପ୍ରଦାନ କରିଅଛନ୍ତି। ସଂଗୃହୀତ ଉକ୍ତିଗୁଡ଼ିକ ସମ୍ବନ୍ଧରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଏଥିରୁ ମାନବ ଜୀବନର ଉପଯୋଗୀ ବହୁ ପ୍ରୟୋଜନୀୟ ଉପଦେଶ ଲବ୍ଧ ହେବ। ଅପିଚ଼ ଗୋଟିଏ ଗୋଟିଏ ଉକ୍ତିର ସୌନ୍ଦର୍ଯ୍ୟ ଓ ଉନ୍ନତ ଭାବରେ ମନ ମୋହିତ ହୋଇଯିବ। ଅନୁବାଦର ଭାଷା ଅତି ସୁନ୍ଦର, ସରଳ ଓ ସୁବୋଧ ହୋଇଅଛି। ଏପରି ସର୍ବାଙ୍ଗସୁନ୍ଦର ଅନୁବାଦ ରାୟ ବାହାଦୁରଙ୍କ ତୁଲ୍ୟ ସିଦ୍ଧହସ୍ତ ବ୍ୟକ୍ତିଙ୍କ ପକ୍ଷରେ କେବଳ ସମ୍ଭବ। ଉତ୍କଳାନୁବାଦ ସହିତ ଏହାର ଗୋଟିଏ ସଂସ୍କରଣ ହେବା ସର୍ବଥା ବାଞ୍ଛନୀୟ ମନେକରୁଅଛୁଁ। ରାୟ ବାହାଦୁର ମହୋଦୟଙ୍କ ଉତ୍ସାହୀ ପୁତ୍ର ଶଶିବାବୁ ଏ ବିଷୟରେ ଉଦ୍ୟୋଗୀ ହେଲେ ଅତ୍ୟନ୍ତ ସୁନ୍ଦର ବିଷୟ ହେବ। ପୁସ୍ତକର କାଗଜ, ଛାପା ଓ ବନ୍ଧା ସବୁ ସୁନ୍ଦର।"

(୧୦) ଧବଳେଶ୍ୱର ସ୍ତୋତ୍ରମ୍— ୧୯୦୩। 'ଉତ୍କଳ ସାହିତ୍ୟ'ର ସପ୍ତମବର୍ଷ ସପ୍ତମ ସଂଖ୍ୟା (ଅକ୍ଟୋବର, ୧୯୦୩)ରେ ପ୍ରକାଶିତ। ସମକାଳରେ ଏହା ଗଡ଼ଜାତବାସିନୀଙ୍କ (୧୪।୧୦।୧୯୦୩)ରେ ମଧ୍ୟ ପ୍ରକାଶିତ।

(୧୧) ସାର୍ ବାସୁଦେବ ସୁଢ଼ଳଦେବ କେ.ସି.ଆଇ.ଇ.— ୧୯୦୩। ସୁଢ଼ଳ ଦେବଙ୍କର ୧୯।୧୧।୧୯୦୩ତାରିଖରେ ଦେହାନ୍ତ ପରେ ତାଙ୍କର ସ୍ମୃତିଚାରଣ ଉଦ୍ଦେଶ୍ୟରେ ଏହା ଲିଖିତ ଓ 'ଉତ୍କଳ-ସାହିତ୍ୟ' (୭/୯; ଡିସେମ୍ବର, ୧୯୦୩)ରେ ପ୍ରକାଶିତ।

(୧୨) ଉତ୍କଳ-ସାହିତ୍ୟର ଉନ୍ନତି— ୧୯୦୩। ଏହି ରଚ଼ନାଟି ସଭାପତି ଅଭିଭାଷଣ ରୂପେ 'ଉତ୍କଳ ସାହିତ୍ୟ ସମାଜ'ର ପ୍ରଥମ ଅଧିବେଶନରେ ୨୯।୧୨।୧୯୦୩ତାରିଖରେ ପଠିତ ହୋଇଥିଲା। ରାଧାନାଥଙ୍କ ଗଳା ଅସ୍ୱଷ୍ଟ ଥିବାରୁ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଏଇ ରଚ଼ନାଟିକୁ ପାଠ କରିଥିଲେ। ଏହା ଉତ୍କଳ ସାହିତ୍ୟର ସପ୍ତମ ବର୍ଷ ଏକାଦଶ-ଦ୍ୱାଦଶ ସଂଖ୍ୟା (ଫେବୃଆରୀ- ମାର୍ଚ୍ଚ, ୧୯୦୪)ରେ ପ୍ରଥମେ ପ୍ରକାଶିତ ହୋଇଥିଲା।

(୧୩) କେତୋଟି ଉପଦେଶ ବାକ୍ୟ—. ୧୯୦୩। 'ଉତ୍କଳ ସମ୍ମିଳନୀ' ପ୍ରଥମ ଅଧିବେଶନ (ତା ୩୦।୧୨।୧୯୦୩) ମଣ୍ଡପରେ ଏହି ଉପଦେଶାତ୍ମକ ପଙ୍‌କ୍ତିଗୁଡ଼ିକ ବଡ଼ ବଡ଼ ଅକ୍ଷରରେ ଲିଖିତ ହୋଇ ପ୍ରଦର୍ଶିତ ହୋଇଥିଲା। ରାଧାନାଥଙ୍କ ମୃତ୍ୟୁ ପରେ ଏହା ଉତ୍କଳ-ସାହିତ୍ୟ (୧୪/୧୨, ମାର୍ଚ୍ଚ, ୧୯୧୧)ରେ ପ୍ରକାଶିତ ହୋଇଥିଲା। ପ୍ରାୟତଃ ସମକାଳରେ ସମ୍ବଲପୁର ହିତୈଷିଣୀ (୨୨/୨୭; ୨୨।୪।୧୯୧୧)ରେ ଏହା 'ସ୍ୱର୍ଗୀୟ କବିବର ରାଧାନାଥଙ୍କର କେତୋଟି ଅପ୍ରକାଶିତ ଉପଦେଶ ବାକ୍ୟ' ଶୀର୍ଷକରେ ପ୍ରକାଶିତ।

(୧୪) ଭାରତଗୀତିକା— ୧୯୦୩। ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନର ଦ୍ୱିତୀୟ ଦିନ (୩୧।୧୨।୧୯୦୩)ରେ ଉଦ୍‌ଯାପନୀ ସଂଗୀତ ଆକାରରେ ଏଇ ଗୀତିକାଟି ଗାନ କରାଯାଇଥିଲା। ବହୁ ବର୍ଷ ପରେ 'ସମ୍ବଲପୁର ହିତୈଷିଣୀ' (୨୪/୮, ୨୧।୧୨।୧୯୧୨)ରେ ଏହା ପ୍ରଥମେ ମୁଦ୍ରିତ ହୋଇଥିଲା।

(୧୫) ବାଣହରଣ— ୧୯୦୪। 'ଉତ୍କଳ-ସାହିତ୍ୟ'ର ଅଷ୍ଟମ ବର୍ଷ ଦ୍ୱିତୀୟ ସଂଖ୍ୟା (ମେ, ୧୯୦୪)ରେ ପ୍ରକାଶିତ।

(୧୬) ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ— ୧୯୦୪। 'ଉତ୍କଳ-ସାହିତ୍ୟ'ର ଅଷ୍ଟମ ବର୍ଷ ତୃତୀୟ ସଂଖ୍ୟା (ଜୁନ୍, ୧୯୦୪)ରେ ପ୍ରକାଶିତ।

(୧୭) ଏକାଗ୍ରତା – ୧୯୦୪। 'ଉତ୍କଳ-ସାହିତ୍ୟ'ର ଅଷ୍ଟମ ବର୍ଷ ଚତୁର୍ଥ ସଂଖ୍ୟା (ଜୁଲାଇ, ୧୯୦୪)ରେ ପ୍ରକାଶିତ।

(୧୮) ଶ୍ମଶାନ ଦୃଶ୍ୟ – ୧୯୦୪। 'ଉତ୍କଳ-ସାହିତ୍ୟ'ର ଅଷ୍ଟମ ବର୍ଷ ଚତୁର୍ଥ ସଂଖ୍ୟା (ଜୁଲାଇ, ୧୯୦୪)ରେ ଏହା ପ୍ରକାଶିତ।

(୧୯) ସାବିତ୍ରୀ ଚରିତ – ୧୯୦୬। 'ଉତ୍କଳ-ସାହିତ୍ୟ'ର ଦଶମ ବର୍ଷ ଅଷ୍ଟମ ସଂଖ୍ୟା (ନଭେମ୍ବର, ୧୯୦୬)। ୧୯୦୭ ମସିହାରେ 'ରାୟପ୍ରେସ୍'ରେ ମୁଦ୍ରିତ ହୋଇ ଶଶିଭୂଷଣ ରାୟଙ୍କ ଦ୍ୱାରା ସ୍ୱତନ୍ତ୍ର ପୁସ୍ତିକାରୂପେ ପ୍ରକାଶିତ।

(୨୦) ମହେନ୍ଦ୍ରଗିରି – ୧୯୦୬। ଏହି ଅସମ୍ପୂର୍ଣ୍ଣ ଓ କ୍ଷୁଦ୍ର ପ୍ରକୃତିବର୍ଣ୍ଣନାତ୍ମକ କାବ୍ୟଟି ୧୯୦୬ ମସିହାରେ 'ରାୟପ୍ରେସ୍'ରେ ମୁଦ୍ରିତ ହୋଇ ଶଶିଭୂଷଣଙ୍କ ଦ୍ୱାରା ପ୍ରକାଶିତ।

(୨୧) ଆତ୍ମନିବେଦନ – (୧୯୦୭) ଏହି 'ଆତ୍ମନିବେଦନ' ଉଭୟ ବଙ୍ଗଳା ଓ ଓଡ଼ିଆ ଭାଷାରେ ଲିଖିତ ହୋଇ 'କଟକ ପ୍ରିଣ୍ଟିଂ କୋମ୍ପାନୀ' ଦ୍ୱାରା ପ୍ରକାଶିତ ହୋଇଥିଲା। ଏହା ୨୫।୭।୧୯୦୩ ତାରିଖରେ ଲିଖିତ।

## ରଚନାକାଳ ଅଜ୍ଞାତ ଓ ମୃତ୍ୟୁପରେ ପ୍ରକାଶିତ ରଚନାବଳୀ :

(୧) ସତୀ ପ୍ରତି ସତୀଦ୍ରୋହୀ ପତିର ଉକ୍ତି – ୧୯୦୯। ଉତ୍କଳ ସାହିତ୍ୟ, ୧୨/୨ (ମେ, ୧୯୦୯)

(୨) ବନ୍ଦନା – ୧୯୧୧। ଉତ୍କଳ-ସାହିତ୍ୟ, ୧୪/୧୧ (ଫେବୃଆରୀ, ୧୯୧୧)

(୩) ସତ୍ୟବାଦୀ – ୧୯୧୧। ଉତ୍କଳ-ସାହିତ୍ୟ, ୧୪/୧୧ (ଫେବୃଆରୀ ୧୯୧୧)

(୪) ସାହିତ୍ୟ ସମ୍ବନ୍ଧରେ ଏଣୁତେଣୁ ପାଞ୍ଚକଥା – ୧୯୧୧। ଉତ୍କଳ ସାହିତ୍ୟ, ୧୪/୧୧ (ଫେବୃଆରୀ, ୧୯୧୧)

(୫) ଖଣ୍ଡିଏ ପତ୍ର – ୧୯୧୧। ଉତ୍କଳ ସାହିତ୍ୟ, ୧୪/୧୧ (ଫେବୃଆରୀ, ୧୯୧୧)

(୬) ନିବେଦନ – ୧୯୧୧। ଉତ୍କଳ ସାହିତ୍ୟ, ୧୪/୧୨ (ମାର୍ଚ୍ଚ, ୧୯୧୧)

(୭) ପ୍ରତାପରୁଦ୍ର – ୧୯୧୧। ଉତ୍କଳ ସାହିତ୍ୟ ୧୪/୧୨ (ମାର୍ଚ୍ଚ, ୧୯୧୧)

(୮) ପାର୍ବତୀ କାବ୍ୟର ଉପସଂହାର – ୧୯୧୧। ଉତ୍କଳ ସାହିତ୍ୟ, ୧୫/୪ (ଜୁଲାଇ, ୧୯୧୧)

ଏହା ବଙ୍ଗଳାରେ ଲିଖିତ ପାଣ୍ଡୁଲିପିରୁ ଅନୂଦିତ ବୋଲି କବିପୁତ୍ର ଶଶିଭୂଷଣ ରାୟଙ୍କ ଦ୍ୱାରା 'ପାଦଟୀକା'ରେ ସୂଚିତ ହୋଇଥିଲା।

(୯) ରାଧାନାଥଙ୍କ ଉକ୍ତି – ୧୯୧୨। ସମ୍ବଲପୁର ହିତୈଷିଣୀ, ୨୩/୩୪ (୮।୬।୧୯୧୨)। ଏହା 'ଜନୈକ ଉଚ୍ଚ ସାହିତ୍ୟିକ ବନ୍ଧୁଙ୍କ ସଂଗୃହୀତ' ବୋଲି ସମ୍ପାଦକଙ୍କ ଦ୍ୱାରା ସୂଚିତ ହୋଇଥିଲା।

(୧୦) ଶ୍ରୀ କାଳିକା ସ୍ତୁତିଃ – (୧୯୧୩ ମସିହାରେ ଶଶିଭୂଷଣ ରାୟଙ୍କ ଦ୍ୱାରା ପ୍ରକାଶିତ) 'ରାଧାନାଥ-ଗ୍ରନ୍ଥାବଳୀ' ଦ୍ୱିତୀୟ ସଂସ୍କରଣରେ ପ୍ରଥମଥର ପାଇଁ ମୁଦ୍ରିତ।

(୧୧) ହଂସଦୂତ – ୧୯୧୩। 'ରାଧାନାଥ-ଗ୍ରନ୍ଥାବଳୀ' ଦ୍ୱିତୀୟ ସଂସ୍କରଣରେ ପ୍ରଥମେ ପ୍ରକାଶିତ।

(୧୨) ଯୁଧିଷ୍ଠିରଙ୍କ ପ୍ରତି ବ୍ୟାସ – ୧୯୧୩। 'ରାଧାନାଥ ଗ୍ରନ୍ଥାବଳୀ' ଦ୍ୱିତୀୟ ସଂସ୍କରଣରେ ପ୍ରଥମେ ମୁଦ୍ରିତ।

(୧୩) ଫୁଲରାଣୀ – ୧୯୧୩। 'ରାଧାନାଥ-ଗ୍ରନ୍ଥାବଳୀ' ଦ୍ୱିତୀୟ ସଂସ୍କରଣରେ ପ୍ରଥମଥର ପାଇଁ ପ୍ରକାଶିତ।

(୧୪) ଉର୍ବଶୀ (ଗଦ୍ୟଭାଗ) – ୧୯୧୩। 'ରାଧାନାଥ-ଗ୍ରନ୍ଥାବଳୀ' ଦ୍ୱିତୀୟ ସଂସ୍କରଣରେ ପ୍ରଥମଥର ପାଇଁ ପ୍ରକାଶିତ।

(୧୫) ଟିପାଖାତା – ୧୯୧୩। 'ରାଧାନାଥ-ଗ୍ରନ୍ଥାବଳୀ' ଦ୍ୱିତୀୟ ସଂସ୍କରଣରେ ପ୍ରଥମଥର ପାଇଁ ମୁଦ୍ରିତ।

(୧୬) ମେହେର କବି (୧୯୨୫)। ପଣ୍ଡିତ ରାଘବ ମିଶ୍ରଙ୍କ ଦ୍ୱାରା ରଚିତ ଗଙ୍ଗାଧର ମେହେରଙ୍କର ଏହି ଜୀବନୀଗ୍ରନ୍ଥରେ (ଉତ୍କଳ ସାହିତ୍ୟ ପ୍ରେସ୍‌ରୁ ୧୯୨୫ ମସିହାରେ ପ୍ରକାଶିତ) ରାଧାନାଥଙ୍କର ଦୁଇଗୋଟି ପତ୍ର ସମ୍ପୂର୍ଣ୍ଣ ଭାବରେ ଓ ଏଗାରଟି ପତ୍ରର ଅଂଶବିଶେଷ ମୁଦ୍ରିତ ହୋଇଥିଲା।

(୧୭) ରାଧାନାଥଙ୍କର ଅପ୍ରକାଶିତ ରଚନା – ୧୯୨୮। ଏହି ଶୀର୍ଷକରେ ପାଞ୍ଚପଦ ବିଶିଷ୍ଟ ଏକ କବିତା 'ଉତ୍କଳ-ସାହିତ୍ୟ' (୩୧/୪; ଜୁଲାଇ, ୧୯୨୮)ରେ ପ୍ରକାଶିତ ହୋଇଥିଲା। କବିତାଟିର ପରିଚୟ ଦେଇ କୁହାଯାଇଥିଲା – "୧୮୮୬ ସାଲରେ ସ୍ୱର୍ଗତ ରାଧାନାଥ ଯେତେବେଳେ ମହାରାଜା

ସର୍ ସୁଦ୍ଧଳଦେବଙ୍କ ନିମନ୍ତ୍ରଣରେ ପ୍ରଥମେ ବାମଣ୍ଡା ଯାଇଥିଲେ, ସେତେବେଳେ ତତ୍ରତ୍ୟ ତୋଷାମୋଦି-ମାନଙ୍କର ବ୍ୟବହାର ଦେଖି କବି ମହାରାଜାଙ୍କୁ ଗୋଟିଏ କବିତା ଲେଖି ଦେଇଥିଲେ। ମହାରାଜା ସେଥିରେ ସନ୍ତୁଷ୍ଟ ହୋଇ ତାହାଙ୍କର ପାଞ୍ଚପଦ କବିତା ସକାଶେ ତାହାଙ୍କୁ ପାଞ୍ଚଶତ ଟଙ୍କା ପୁରସ୍କାର ଦେଇଥିଲେ।'' କବିତାଟି ପରେ ରାଧାନାଥ ଜୀବନୀ (ପୃ.୧୭୦-୧୭୧)ରେ ପୁନର୍ମୁଦ୍ରିତ ହୋଇଥିଲା।

(୧୮) କବିଲିପି – ୧୯୪୦। ଗଙ୍ଗାଧରଙ୍କ ନିକଟକୁ ରାଧାନାଥଙ୍କର ଚଉଦଟି ପତ୍ର କୈଳାଶଚନ୍ଦ୍ର ରାଓଙ୍କ ଦ୍ୱାରା ସହକାର ମାସିକପତ୍ରର ଏକବିଂଶ ଭାଗ ଦ୍ୱିତୀୟ ସଂଖ୍ୟା (ମେ, ୧୯୪୦)ରେ ପ୍ରକାଶିତ। ପୂର୍ବରୁ ଆଦୌ ପ୍ରକାଶିତ ହୋଇନଥିବା ଆଠଟି ପତ୍ର ଏହି ସଂକଳନର ଅନ୍ତର୍ଭୁକ୍ତ ଥିଲା।

(୧୯) ରାଧାନାଥ ଜୀବନୀ – ୧୯୪୧। ଦୁର୍ଗାଚରଣ ରାୟଙ୍କ ଦ୍ୱାରା ଲିଖିତ ଓ ପ୍ରକାଶିତ ତଥା 'ଉତ୍କଳ ସାହିତ୍ୟ ପ୍ରେସ୍'ରେ ମୁଦ୍ରିତ ରାଧାନାଥଙ୍କର ଏହି ବିରାଟ ଜୀବନୀଗ୍ରନ୍ଥରେ ରାଧାନାଥଙ୍କର ଓଡ଼ିଆ, ଇଂରେଜୀ ଓ ବଙ୍ଗଳାରେ ପ୍ରାୟ ଶତାଧିକ ପତ୍ର ଓ ପତ୍ରାଂଶ, ଶଶିଭୂଷଣଙ୍କୁ ପ୍ରଦତ୍ତ କେତେକ ଉପଦେଶ, ଏକ କବିତା, ରାଧାନାଥଙ୍କ ଦ୍ୱାରା ପ୍ରସ୍ତୁତ ଶିକ୍ଷାବିଭାଗୀୟ ରିପୋର୍ଟର ଅଂଶବିଶେଷ, ନୋଟ୍‌ବହିର ଗୋଟିଏ ପୃଷ୍ଠା ଓ ଆତ୍ମକଥାର କିୟଦଂଶ ପ୍ରଥମଥର ପାଇଁ ପ୍ରକାଶିତ।

(୨୦) କବିଲିପି – ୧୯୫୭। ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ଦ୍ୱାରା ସମ୍ପାଦିତ ଓ ବିଶ୍ୱଭାରତୀ ଗବେଷଣା ବିଭାଗ (ଶାନ୍ତିନିକେତନ) ଦ୍ୱାରା ପ୍ରକାଶିତ ଏହି ପୁସ୍ତକରେ ରାଧାନାଥଙ୍କର ୪୫ଟି ଚିଠି, ୩ଟି ମନ୍ତବ୍ୟ ଓ ଖଣ୍ଡିଏ ନିମନ୍ତ୍ରଣ ପତ୍ର ସଂକଳିତ। ଏଥିରୁ ତିନୋଟି ମନ୍ତବ୍ୟ ଓ ଚବିଶଟି ପତ୍ର ବା ପତ୍ରାଂଶ ପୂର୍ବରୁ ପ୍ରକାଶିତ ହୋଇଥିଲା।

□ □ □